ପ୍ରକାଶକ :
**ଅଲକା ପ୍ରକାଶନୀ**
ଜେଲ୍‌ରୋଡ୍, କଟକ - ୧

ପ୍ରଥମ ପ୍ରକାଶ - ୧୯୯୪
ମୂଲ୍ୟ - ଏକ ଶହ ଟଙ୍କା

ପ୍ରାପ୍ତି ସ୍ଥାନ :
**ନାଳନ୍ଦା**
ବିନୋଦ ବିହାରୀ, କଟକ
**କିତାବ ମହଲ**
କଲେଜ ସ୍କୋୟାର, କଟକ -
**ଫ୍ରେଣ୍ଡସ୍ ପବ୍ଲିଶର୍ସ**
ବିନୋଦ ବିହାରୀ, କଟକ

ମୁଦ୍ରାକର :
**ଶ୍ରୀ ସତ୍ୟନାରାୟଣ ପ୍ରେସ**
ଡ଼ଗରପଡ଼ା, କଟକ

ପ୍ରଚ୍ଛଦ ଶିଳ୍ପୀ - ପ୍ରଦୀପ ତ୍ରିପାଠୀ

**BHULI NAHIN**
by
**Gangadhar Rath**
Former Advocate General, Orissa

First Edition - 1994

Price - Rs.100/- only

Publisher :

**ALAKA PRAKASHANI**

Jail Road, Cuttack. - 1

'ଭୁଲି ନାହିଁ' ଲେଖକର ଆତ୍ମଜୀବନୀ ନୁହେଁ ବା ସମସାମୟିକ ଇତିହାସ ନୁହେଁ । ଯେଉଁ ସବୁ ଐତିହାସିକ ଘଟଣାବଳୀ ମୋ ଜୀବନ ଉପରେ ବିଶେଷ ରେଖାପାତ କରିଛି; ସ୍ୱାଧୀନତା ସଂଗ୍ରାମ ଓ ସମାଜବାଦୀ ଆନ୍ଦୋଳନର ଯେଉଁ ରୋମାଞ୍ଚକର କାହାଣୀ ମୋ ଜୀବନଧାରାକୁ ପ୍ରଭାବିତ କରିଛି; ଯେଉଁ ଆଦର୍ଶ, ଅନୁଭୂତି ଓ ଆଇନ ପ୍ରତି ଆସକ୍ତି ଜୀବନ ପ୍ରବାହରେ ଉଲ୍ଲେଖନୀୟ ପରିବର୍ତ୍ତନର ସୂତ୍ରପାତ କରିଛି ଏବଂ ଯାହା ଭୁଲି ହୁଏନା; ସେହି ଅଭୁଲା ସ୍ମୃତିକୁ ଏ ବହିରେ ରୂପ ଦେବାକୁ ପ୍ରୟାସ କରିଛି ମାତ୍ର ।

ଜୀବନ କାଳରେ ବହୁ ପ୍ରଖ୍ୟାତ ଓ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଛି । କେତେକଙ୍କୁ ମନରେ ଦେବତାର ସମ୍ମାନ ଦେଇଛି, କେତେକଙ୍କୁ ସାଧାରଣ ମଣିଷ ଭାବରେ ବିଚାର କରିଛି; କିନ୍ତୁ ସେମାନଙ୍କ ସଂପର୍କରେ ଉଲ୍ଲେଖ କରିବାକୁ ଯାଇ କାହା ପ୍ରତି ଆକ୍ଷେପ କରିବା ବା କାହାର ସମାଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେଁ । ବହୁ ଘଟଣାବଳୀ ସହିତ ଘନିଷ୍ଠ ଭାବରେ ଜଡ଼ିତ ଥିଲେ ମଧ୍ୟ, ସେ ସବୁଗୁଡ଼ିକୁ ବହିରେ ସ୍ଥାନ ଦେବା ସଂଭବ ହୋଇନାହିଁ । ସ୍ମୃତିର ସାଗରରେ ଅନେକ ଉତ୍ତାଳ ତରଂଗ ଅବିରତ କଲ୍ଲୋଳ ସୃଷ୍ଟି କରେ । ସମସ୍ତଙ୍କୁ ସ୍ପର୍ଶ କରିବା ସନ୍ତରଣକାରୀ ପକ୍ଷରେ ସଂଭବ ନୁହେଁ ।

ଯେଉଁମାନେ ସ୍ୱ ସ୍ୱ କ୍ଷେତ୍ରରେ ଅସାମାନ୍ୟ ପ୍ରତିଷ୍ଠା ଅର୍ଜ୍ଜନ କରିଛନ୍ତି, ମୋର ସେହି ସହଧର୍ମିଣୀ, ପୁତ୍ର, ପୁତ୍ରବଧୂ, ଭାଇ, ଭଉଣୀଙ୍କ ସଂପର୍କରେ ଏ ବହିରେ ବିଶେଷ କିଛି ଉଲ୍ଲେଖ କରିନାହିଁ; କାରଣ ସମାଲୋଚକଙ୍କ ଦୃଷ୍ଟିରେ ପୁସ୍ତକଟି ଯେପରି ସଂପୂର୍ଣ୍ଣ 'ବ୍ୟକ୍ତି କେନ୍ଦ୍ରିକ' ହୋଇ ନଯାଏ । 'ମତେ' ଓ 'ମୋର' ଶବ୍ଦର ପ୍ରୟୋଗ ଯଥା ସଂଭବ ସୀମିତ ରଖିବାକୁ ଉଦ୍ୟମ କରି, ଆପଣାର ପ୍ରିୟଜନଙ୍କ ସଂପର୍କରେ ସମସ୍ତ ଅନୁଭୂତିକୁ ଲେଖାରୁ ବାଦ୍ ଦେଇଛି । କିନ୍ତୁ 'ମୁଁ' କୁ ବାଦ୍ ଦେଇ ସ୍ମୃତିଚାରଣ ବୋଧହୁଏ ସଂଭବ ନୁହେଁ । ସୁଧୀ ପାଠକ ସମାଜ ସହୃଦୟତା ସହ ଏ ନିବେଦନ ଗ୍ରହଣ କରିବେ ।

ଗଂଗାଧର ରଥ

# ସୂଚୀ

| ବିଷୟ | ପୃଷ୍ଠା |
|---|---|
| ଦରବାରୀ ମିଜାଜ୍ | ୩୨୪ |
| ମିସ୍ ସିଦ୍ଧିକ୍‌ର ଛାଇ | ୩୩୮ |
| ବୀରେନ୍ ମିତ୍ରଙ୍କ ଲୋକ | ୩୪୬ |
| ରାଜା ଓ ରାଜତରଙ୍ଗିଣୀ | ୩୫୪ |
| ଗୋଆରୁ କାଶ୍ମୀର | ୩୫୯ |
| ଭାରତୀୟ ବାର୍ କାଉନସିଲ୍‌ରେ | ୩୭୭ |
| ମସ୍କୋ ଅଭିମୁଖେ | ୩୮୪ |
| ବିଭେଦର ତରଂଗ | ୩୯୧ |
| ଆଡ୍‌ଭୋକେଟ୍ ଜେନେରାଲ୍ | ୩୯୮ |
| କାଠଗଡ଼ାରେ ରାଜମୁକୁଟ | ୪୦୪ |
| ବିଜୁ ବନାମ୍ ରାଷ୍ଟ୍ରପତି | ୪୨୫ |
| କଟକରୁ ଦିଲ୍ଲୀ | ୪୪୧ |
| ସଭା ସମିତି | ୪୪୮ |
| ଅମାବାସ୍ୟାର ଗ୍ରାସ | ୪୫୭ |
| ଋତୁରାଜ ବସନ୍ତ | ୪୬୪ |
| ପ୍ରତିହିଂସାର ବହ୍ନି | ୪୬୯ |
| ଅଳକା ମହାବିଦ୍ୟାଳୟ | ୪୭୯ |
| ଦ୍ରୋହୀ ନିରଂଜନ | ୪୮୯ |
| ଆଇନଜୀବି ସମ୍ମିଳନୀ | ୪୯୬ |
| ତୃତୀୟ ଥର | ୫୦୨ |
| ବୃତ୍ତିର ନାଗଫାଶରେ | ୫୦୬ |





ପୂଜନୀୟ ନନା
ସ୍ୱର୍ଗୀୟ ଲକ୍ଷ୍ମୀଧର ଶତପଥୀଙ୍କ
ପବିତ୍ର ସ୍ମୃତିରେ

# ଆମ ଗାଁ

ଆମ ଗାଁ ବାଗଲପୁର । ଜିଲ୍ଲା କଟକ, ଥାନା ଜଗତ୍‌ସିଂପୁର, ପ୍ରଗନା ସାଇବିରି । ଜଗତ୍‌ସିଂପୁର ଏବେ ଓଡ଼ିଶାର ଅନ୍ୟତମ ନୂଆ ଜିଲ୍ଲା । କଟକ ଠାରୁ ଜଗତ୍‌ସିଂପୁର ରାସ୍ତାରେ ତିରିଶ କିଲୋମିଟର ଯିବା ପରେ, ଡାହାଣକୁ ଭାଙ୍ଗି, ମାଛଗାଁ କେନାଲ ଅଳକା ଓ ବିଲୁଆଖାଇ ନଦୀ ପାର ହେଲେ ଆମ ଗାଁ - ଦେବୀ ନଦୀର ଗୋଟିଏ ଟାପୁ ମଧ୍ୟରେ । ଦେବୀ ନଦୀରୁ ହାଜିପୁର ନିକଟରେ ଅଳକା ନଈ ବାହାରିଛି । ପାଂଚ ଛ' କିଲୋମିଟର ପରେ ଆମ ଗାଁ ସାମନାରେ ଅଳକା ନଈ ଦକ୍ଷିଣ ପୂର୍ବ ମୁହାଁ ହୋଇ, ଜଗତ୍‌ସିଂପୁର ଦେଇ ସମୁଦ୍ର ଆଡ଼କୁ ଧାଇଁ ଯାଇଛି । ଅଳକା ନଈର ଗୋଟିଏ ଧାର ବିଲୁଆଖାଇ ସେହିଠାରୁ ବାହାରି ସାତ ଆଠ କିଲୋମିଟର ଯିବା ପରେ 'କୂଳଶ୍ରୀ' ଗ୍ରାମ ସାମନାରେ ପୁଣି ସେହି ଦେବୀ ନଦୀରେ ମିଶି ଯାଇଛି । ଦେବୀ ନଦୀ, ଅଳକା ଓ ବିଲୁଆଖାଇ ମଧ୍ୟବର୍ତ୍ତୀ ଟାପୁଟିକୁ ବାଇଶି ମୌଜା କହନ୍ତି । ବାଗଲପୁର ଏହି ବାଇଶି ମୌଜାରୁ ଗୋଟିଏ ।

ଗତ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ଉପକୂଳବର୍ତ୍ତୀ ଅଂଚଳରେ କେନାଲ ବ୍ୟବସ୍ଥା ପ୍ରଚଳନ କରିବା ପାଇଁ ଉଦ୍ୟମ ଆରମ୍ଭ ହେଲା । ନ'ଙ୍କ ପରିସ୍ଥିତିର ଯେପରି ପୁନରାବୃତ୍ତି ନ ହୁଏ, ସେଥିପାଇଁ ବଡ଼ ବଡ଼ ନଦୀମାନଙ୍କରେ ଆନିକଟ୍ ତିଆରି ହେଲା । କଟକଠାରେ ମହାନଦୀରେ ନିର୍ମିତ ଆନିକଟର ଉପର ଭାଗରେ ଜଳ ସଂଚୟ କରାଯାଇ, ଆବଶ୍ୟକତା ଅନୁଯାୟୀ ସଂଚିତ ଜଳକୁ କେନାଲ ଜରିଆରେ ଛାଡ଼ିବାର ବ୍ୟବସ୍ଥା କରାହେଲା । ଏହି ପର୍ଯ୍ୟାୟରେ ପ୍ରାୟ ଶହେ ବର୍ଷ ତଳେ ଆମ ଗାଁ ସାମନାରେ ଅଳକା ନଦୀର ପ୍ରବାହ ବନ୍ଦ କରି ଦିଆଯାଇଛି । ନଈ ମଝିରେ ବିରାଟ କେନାଲ ବନ୍ଧ । ନଦୀ ଜଳ ବିଲୁଆଖାଇ ଦେଇ ପୁଣି ସେହି ଦେବୀ ନଦୀକୁ ବହି ଯାଉଛି । ଅଳକାର ବୁକୁ ଭେଦ କରି ମାଛଗାଁ କେନାଲର ଉଣେଇଶ ନମ୍ବର ଶାଖା ବିସ୍ତୀର୍ଣ୍ଣ ଅଂଚଳକୁ କେନାଲ ପାଣି ବୋହି ନେଉଛି ।

ଅଳକା ଏବେ ସୁପ୍ତ ଓ ଶୁଷ୍କ । ଜଳ ପ୍ରବାହ ନାହିଁ । ନାମ ବି ଲୋପ ପାଇବା ଉପରେ । 'ଅଳକା' ନାଁଟା ବର୍ତ୍ତମାନ ଅଳକାଶ୍ରମ, ଅଳକା ସିନେମା, ଅଳକା ହାଇସ୍କୁଲ ଓ ଅଳକା ମହାବିଦ୍ୟାଳୟରେ ଆବଦ୍ଧ ରହିଲାଣି । ଅଥଚ କ୍ଷୁଦ୍ର ବିଲୁଆଖାଇ ବେଳେ ବେଳେ ଉଦ୍‌ଭ୍ରାନ୍ତ କରାଳ ରୂପ ଧାରଣ କରି

ସମ୍ବାଦପତ୍ରର ଦୃଷ୍ଟି ଆକର୍ଷଣ କରୁଛି । ଗତ କୋଡ଼ିଏ ବର୍ଷ ମଧ୍ୟରେ ବାଇଶ ମୌଜା ପଟରେ କେନାଲ ବଂଧ ତିଆରି ହେବା ପରେ, ବିଲୁଆଖାଇ ବଢ଼ି ସମୟରେ ଦୁଇଥର ବଂଧ ଭାଂଗି ଅପରପାର୍ଶ୍ଵର କେନାଲ କୂଳିଆ ଗାଁ ମାନଙ୍କର ପ୍ରବଳ କ୍ଷତି ଘଟାଇଛି ।

ଗାଁର ଅବସ୍ଥିତି ସଂପର୍କରେ ଏତେ କଥା ଫେଣେଇ କହିବାର ଉଦ୍ଦେଶ୍ୟ ହେଲା, କେବଳ କଟକ ଜିଲ୍ଲାରେ ଦୁଇଟି ବାଗଲପୁର । ପୁରୀ ଜିଲ୍ଲାରେ ମଧ୍ୟ ସେହି ନାମରେ ଗୋଟିଏ ଗାଁ । କଟକ ଭୁବନେଶ୍ଵର ରାସ୍ତାରେ ଫୁଲନଖରା ଠାରୁ ନିଆଳୀ ଆଡ଼କୁ ପ୍ରାୟ ବାର କିଲୋମିଟର ଗଲେ, ବାଗଲପୁର ବୋଲି ଗୋଟିଏ ଛୋଟିଆ ଗାଁ ପଡ଼େ । ଗାଁ ମୁଣ୍ଡରେ ରାସ୍ତାକଡ଼ରେ ଗୋଟିଏ ଦେବମନ୍ଦିର ଅଛି । ଅନ୍ୟ କୌଣସି ବିଶେଷତ୍ଵ ଥିଲା ପରି ମନେ ହୁଏ ନାହିଁ । ପୁରୀ ଜିଲ୍ଲା ବାଲିପାଟଣା ଥାନାରେ ଆଉ ଗୋଟିଏ ବାଗଲପୁର, ଚଣାହାଟ ନିକଟରେ, କଳିଯୋଡ଼ୀ ବାଗଲପୁର ନାମରେ ଖ୍ୟାତ । ଏହି ଗାଁଟି ଜଷ୍ଟିସ ରାଜକିଶୋର ଦାସଙ୍କ ଜନ୍ମସ୍ଥାନ ଏବଂ ତାହାହିଁ ବୋଧହୁଏ ତା'ର ପରିଚୟ । ରାଜୁବାବୁଙ୍କ ବଡ଼ବାପା ପୁଅ ଭାଇ ସ୍ଵର୍ଗୀୟ ସତ୍ୟବାଦୀ ଦାସ ମୋର ସ୍ତ୍ରୀ ନିରୁପମାଙ୍କୁ ଝିଅ କରି ନେଇଥିଲେ । ପୁରୀ ଜିଲ୍ଲାର ଏହି ବାଗଲପୁର ମୋର ଶଶୁର ଘର ଗାଁ ।

ଭୌଗୋଳିକ ଦୃଷ୍ଟିରୁ ଆମ ଗାଁର ସ୍ଥିତି ଅତି ଦୁର୍ଭାଗ୍ୟଜନକ । ବର୍ଷସାରା ବାଇଶି ମୌଜାର କୌଣସି ଗାଁକୁ ଗାଡ଼ି ମଟର କି ସାଇକେଲ ମଧ୍ୟ ଯାଇପାରେ ନାହିଁ । ପାଦରେ ଚାଲିଯିବା ପାଇଁ ଆଗକାଳେ ସାଧାରଣ ମାଟି ରାସ୍ତା ମଧ୍ୟ ନଥିଲା । ବର୍ଷା ଚାରିମାସ, ବିଶେଷତଃ ବଢ଼ି ସମୟରେ ବାଇଶି ମୌଜା ବାହାର ଦୁନିଆ ଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ରହେ । ଛୋଟ ଡଂଗାରେ ନଈ ପାର ହୋଇ ସ୍ଥାନୀୟ ଲୋକେ ଯିବା ଆସିବା କରନ୍ତି । ନିତାନ୍ତ ଜରୁରୀ କାର୍ଯ୍ୟ ନ ଥିଲେ କେନାଲ କୂଳିଆ ଲୋକେ ନଦୀ ପାର ହେବାକୁ ଦୁଃସାହସ କରନ୍ତି ନାହିଁ । ସ୍ଵାଧୀନତା ପରେ ଅବସ୍ଥାରେ ସାମାନ୍ୟ ପରିବର୍ତ୍ତନ ଘଟିଛି । ହୀରାକୁଦ ବଂଧ ତିଆର ହେବା ପରେ ବଢ଼ିର ପ୍ରକୋପ କମି ଯାଇଛି । ଏବେ ବାଇଶି ମୌଜା ଚାରିପଟେ ବନ୍ଧବାଡ଼ ତିଆରି ହୋଇଛି । ନଈରେ ପ୍ରସ୍ତୁତ ସାଇଫୋନ ଦେଇ ମଂଗୁଲୀଠାରୁ ଗେଲପୁର ପର୍ଯ୍ୟନ୍ତ କେନାଲ ଶାଖା ଘୁରି ଯାଇଛି, ଯଦିଓ ଆମ ଗାଁ ପର୍ଯ୍ୟନ୍ତ କେନାଲ ପାଣି ଯଥେଷ୍ଟ ପରିମାଣରେ ଯାଏ ନାହିଁ । ବଢ଼ି ପାଣି ଏବେ ନଈରେ ଯାଏ, ବାଇଶି

ମୌଜାରେ ପ୍ରବେଶ କରି ପାରେ ନାହିଁ । ୧୯୮୮ ମସିହା ଜୁନ ମାସରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଆମ ଗାଁ ପାଖ ମଇନ୍ଦିପୁର ସାମନାରେ ବିଲୁଆଖାଇ ନଈ ଉପରେ ଏକ ପକ୍କା ପୋଲ ନିର୍ମାଣର ଶୁଭ ଦେଇ ଆସିଥିଲେ । ପୋଲ ତିଆରି ପ୍ରାୟ ସମାପ୍ତ ହେବା ଉପରେ ।

ବାଗଲପୁର ଗାଁଟି ବେଶ୍ ବଡ଼ । ପାଖ ଆଖ ଗାଁମାନଙ୍କଠାରୁ ଲୋକସଂଖ୍ୟା ଅନେକ ବେଶି । ନଈକୂଳରେ ପୂର୍ବ ଦିଗକୁ ବ୍ରାହ୍ମଣ ସାହି, ସ୍ଥାନୀୟ ନାମ କୂଳସାହି । ମଝିରେ ବିରାଟ କରଣ ବସ୍ତି । ବାମ ପଟେ ପୂଜାରୀ ସାହୀ, ବାରିକ ସାହୀ, ଧୋବା ସାହୀ । ଡାହାଣ ପଟେ କେତେ ଘର ଗଉଡ଼, ଗୁଡ଼ିଆ, କେଉଟ । ହରିଜନ ବସ୍ତିରେ ମୁଖ୍ୟତଃ ରହନ୍ତି ପାଣ ଓ ବାଉରୀ । ଏହି ବିରାଟ ସନ୍ମିଶ୍ରଣର ଭାରା ଧରି ଜୀବନ-ସ୍ରୋତ ବହି ଚାଲେ । ଆମ ହେତୁ ପାଇବା ବେଳକୁ କେତେ ଘର ମହାନ୍ତିଙ୍କୁ ବାଦ୍ ଦେଲେ, କରଣ ସାହିର ସମସ୍ତଙ୍କ ଉପାଧି ଦାସ । ଦୁଇପିଢ଼ୀ ଆଗରୁ ଦାସଙ୍କ ପୂର୍ବପୁରୁଷମାନେ 'ଦାସ' ନଥିଲେ । କିଏ ଥିଲେ ପଟ୍ଟନାୟକ, କିଏ କାନୁଗୋଇ, କେହି କେହି ଦାସ । କରଣ ବସ୍ତିରେ ଥିଲା ବକ୍ସି ସାହୀ, କାନୁଗୋଇ ସାହୀ, ପଟ୍ଟନାୟକ ସାହୀ, ଦାସ ସାହି ଇତ୍ୟାଦି । ମୋର ଜଣେ ସହପାଠୀ ରତ୍ନାକର ଦାସଙ୍କ ଜେଜେଙ୍କ ନାମ ମନ୍ଦରଧର ପଟ୍ଟନାୟକ । ଆଉ ଜଣେ ଦାସ ଉପାଧିଧାରୀ ସମବୟସୀର ଜେଜେଙ୍କ ନାମ ରାଧାକୃଷ୍ଣ କାନୁନ୍‌ଗୋ । ମନ୍ଦରଧର ପଟ୍ଟନାୟକ ଓ ରାଧାକୃଷ୍ଣ କାନୁଗୋଇ ଶ୍ଳୋକ ଓ ଛାନ୍ଦ ଆବୃତ୍ତି କରିବାରେ ଧୁରନ୍ଧର । ଥରେ ଉଚ୍ଚ ଗଳାରେ ଆବୃତ୍ତି ଆରମ୍ଭ ହେଲେ ଗାଁ ଦାଣ୍ଡରେ ଚହଳ ପଡ଼ିଯାଏ ।

ଏ କାଳରେ ଗାଁ ଗାଁରେ ମଧ୍ୟ ଇଂରାଜୀ ସ୍କୁଲ । ପ୍ରତି ଦୁଇ ତିନି ଖଣ୍ଡ ଗାଁରେ ଗୋଟିଏ ଉଚ୍ଚ ଇଂରାଜୀ ସ୍କୁଲ । କେବଳ ବାଇଶି ମୌଜାରେ ସାତଟି ଉଚ୍ଚ ଇଂରାଜୀ ସ୍କୁଲ ଅଛି । କିନ୍ତୁ ଆମ ପିଲାଦିନେ କେବଳ ଜିଲ୍ଲା ଓ ସବଡ଼ିଭିଜନ ମହକୁମାରେ ଗୋଟିଏ ହାଇସ୍କୁଲ ଥିଲା । ଜଗତ୍‌ସିଂପୁର ଶ୍ରୀକୃଷ୍ଣ ଆକାଡ଼େମୀ ମାତ୍ର ୧୯୩୬ ମସିହାରେ ପ୍ରତିଷ୍ଠିତ । ଦଶ ପନ୍ଦର ମାଇଲ ଇଲାକା ଭିତରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ମଧ୍ୟ ନ ଥିଲା । ମୋ ନନା ସ୍ୱର୍ଗୀୟ ଲକ୍ଷ୍ମୀଧର ଶତପଥୀ ଆମ ଘରଠାରୁ ପ୍ରାୟ ପନ୍ଦର କିଲୋମିଟର ଦୂର ସିଦ୍ଧେଶ୍ୱରପୁର ମାଇନର ସ୍କୁଲରେ ପାଠ ପଢ଼ିଥିଲେ । ଆମ ଗାଁରେ ଅବଶ୍ୟ ଦୁଇଟି ନିମ୍ନ ପ୍ରାଥମିକ ସ୍କୁଲ ଥିଲା - ଗୋଟିଏ ବାଳକମାନଙ୍କ ପାଇଁ, ଅନ୍ୟଟି କେବଳ ବାଳିକାମାନଙ୍କ ପାଇଁ । ବହୁ ଛାତ୍ର ଛାତ୍ରୀଙ୍କ ସମାବେଶରେ କିଶୋର ଜୀବନ ଥାଏ ଚଂଚଳ ।

୧୯୨୭ ମସିହାରେ ଗ୍ରାମର କେତେକ ଶିକ୍ଷିତ ଯୁବକ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନେଲେ । ଏଥିପାଇଁ ପ୍ରାଣପାତ ଉଦ୍ୟମ ଆରମ୍ଭ ହେଲା । କିଏ ଜମି ଦେଲେ, କିଏ ସ୍କୁଲ ପାଇଁ ନଡ଼ା ବାଉଁଶ ଯୋଗାଇଲେ, କିଏ ଅର୍ଥ ସାହାଯ୍ୟ ଦେଲେ । ଆମ ଗାଁର ଓ ସେ ଅଂଚଳର ପ୍ରଥମ ଗ୍ରାଜୁଏଟ ଶ୍ରୀ କାହ୍ନୁଚରଣ ଦାସ କଲେଜ ଶିକ୍ଷା ସମାପ୍ତ କରି, ସ୍କୁଲର ପ୍ରଥମ ଅବୈତନିକ ହେଡ଼୍‌ମାଷ୍ଟର ଦାୟିତ୍ୱ ଗ୍ରହଣ କଲେ । କାଳକ୍ରମେ ଏହି ବିଦ୍ୟାଳୟ ବେଶ ପ୍ରସିଦ୍ଧି ଲାଭ କଲା । ଆଠ ଦଶ କିଲୋମିଟର ଦୂର ଗ୍ରାମର ଛାତ୍ରମାନେ ଆସି ନାମ ଲେଖାଇଲେ ।

ଶିକ୍ଷା ପ୍ରସାର ଦୃଷ୍ଟିରୁ ବାଗଲପୁର ଏବେ ବହୁତ ଆଗେଇ ଯାଇଛି । ନୂଆ ନୂଆ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବା ବାଗଲପୁରବାସୀଙ୍କର ଅଭ୍ୟାସ ଦୋଷ । ପଂଚ ଦଶକରେ ପାର୍ବତୀ ଚରଣ ଦାସ, କାହ୍ନୁଚରଣ ଦାସ, ଲକ୍ଷ୍ମୀଧର ଶତପଥୀ, ବାମନ ଚରଣ ଦାସ ଓ ଗୌରାଙ୍ଗ ଚରଣ ଦାସଙ୍କ ପ୍ରଚେଷ୍ଟାରେ ନଈ ସେ ପଟେ ବାଲିଆମାଳରେ ଅଳକା ହାଇସ୍କୁଲ ପ୍ରତିଷ୍ଠିତ ହୋଇଥିଲା । ବର୍ତ୍ତମାନ ଏହା ଏକ ସରକାରୀ ହାଇସ୍କୁଲରେ ପରିଣତ । ସପ୍ତମ ଦଶନ୍ଧିରେ ମଧ୍ୟ ଇଂରାଜୀ ବିଦ୍ୟାଳୟ ନିକଟରେ ବାଳିକାମାନଙ୍କ ପାଇଁ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହୋଇଛି । ଅନନ୍ତ ବଟରେ ୧୯୭୯ ମସିହାରେ ଅଳକା ମହାବିଦ୍ୟାଳୟର ପ୍ରତିଷ୍ଠା ସଦ୍ୟ ଘଟଣା । କିଛିଦିନ ପୂର୍ବେ ଗୋଟିଏ ସଂସ୍କୃତ ଟୋଲ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରାଯାଇଥିଲା । ମାତ୍ର ତାହା ଚାଲିଲା ନାହିଁ । ସଂସ୍କୃତ ଶିକ୍ଷା ପ୍ରତି ଲୋକଙ୍କର ଆଗ୍ରହ କମି ଯାଇଛି ।

ବାଗଲପୁର ଗାଁରେ ଦେଢ଼ଶହରୁ ଅଧିକ ଗ୍ରାଜୁଏଟ୍ ଅଛନ୍ତି । ଡାକ୍ତର, ଇଂଜିନିଅର ମଧ୍ୟ ଅଛନ୍ତି । କେତେକ ପାଠ ପଢ଼ିବାକୁ ଯାଇ ଇଂଲାଣ୍ଡ, ଜର୍ମାନୀ ପ୍ରଭୃତି ଦେଶରେ ସ୍ଥାୟୀ ବାସିନ୍ଦା ହୋଇ ରହିଲେଣି । କମ୍ୟୁନିଷ୍ଟ ନେତା ବଂଧୁ ଗୋବିନ୍ଦ ଚନ୍ଦ୍ର ମହାନ୍ତି କହନ୍ତି, ବାଗଲପୁର ବାସିନ୍ଦାଙ୍କର କଟକ ଭୁବନେଶ୍ୱର ରାଉରକେଲାରେ ଅନୂନ୍ୟ ଶହେଟି କୋଠା ଅଛି । ଗୋବିନ୍ଦ ବାଗଲପୁରର ଜ୍ୱାଇଁ । ସେ ମଧ୍ୟ ବାଗଲପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପୁରାତନ ଛାତ୍ର । ତାଙ୍କ ଗଣନାରେ ହୁଏତ ମମତା ଜନିତ ବାହୁଲ୍ୟ ଥାଇପାରେ । କିନ୍ତୁ କଥାଟା ମୋଟାମୋଟି ସତ୍ୟ । ଶିକ୍ଷିତ ଲୋକେ ଏବେ ଗାଁରେ ରହିବାକୁ ଚାହୁଁ ନାହାନ୍ତି । ପାଠଶାଠ ପଢ଼ି ଚାକିରୀ ବାକିରି କରି ସହରବାସୀ ହେବା ପାଇଁ ସମସ୍ତେ ଆଗ୍ରହୀ । ଷାଠିଏ ବର୍ଷ ଆଗେ ଗାଁ ଲୋକେ ମନେ କରୁଥିଲେ,

ଦେଶପ୍ରେମ ଆରମ୍ଭ ହୁଏ ଗାଁ ପ୍ରୀତିରୁ । ଗାଁରେ ରାସ୍ତାଘାଟ ତିଆରିଠାରୁ ଆରମ୍ଭ କରି ସବୁ ପ୍ରକାର ସାଧାରଣ କାମ ଲୋକେ ନିଜ ହାତକୁ ନେଉଥିଲେ । ସମୟ ବଦଳି ଗଲାଣି । ସରକାରୀ ଅନୁଗ୍ରହ ନ ହେଲେ, ଆଜିକାଲି କୁଟାଖଣ୍ଡ ଦିଖଣ୍ଡ ହୋଇ ପାରୁନାହିଁ । ଭାରତ ସାରା ଶିକ୍ଷିତ ଲୋକଙ୍କର ଗାଁ ପ୍ରତି ମମତା କ୍ଷୀଣ ହୋଇ ଆସୁଛି ।

ଗାଁର ଦକ୍ଷିଣ ମୁଣ୍ଡରେ ଦଧିବାମନ ଜୀଉଙ୍କ ଠାକୁର ଘର । ଉତ୍ତର ଦିଗରୁ ନଈ ପାର ହୋଇ ଗାଁରେ ପ୍ରବେଶ କଲେ ନଈ ଅତଡ଼ା ଉପରେ ବଂଧ ତଳେ ଗୋଟିଏ ପକ୍କା ମଣ୍ଡପ ଦୃଷ୍ଟିରେ ପଡ଼େ । ସେହି ମଣ୍ଡପ ଉପରେ ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗୀୟ ଗୌରାଙ୍ଗ ଚରଣ ଦାସଙ୍କ ଆବକ୍ଷ ପ୍ରତିମୂର୍ତ୍ତି । ତାଙ୍କ ମୃତ୍ୟୁ ପରେ ୧୯୭୨ ମସିହାରେ ଗୁଣମୁଗ୍ଧ ସହଯାତ୍ରୀ ଓ ଗ୍ରାମବାସୀଙ୍କ ଦ୍ୱାରା ଏହା ପ୍ରତିଷ୍ଠିତ ହୋଇଛି । ଗୌରୀବାବୁଙ୍କର ପରମ ବଂଧୁ ଆଜନ୍ମ ବିପ୍ଳବୀ ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଏହି ପ୍ରତିମୂର୍ତ୍ତି ଉନ୍ମୋଚନ କରିଥିଲେ । ମଣ୍ଡପରେ ଗୋଟିଏ ମାର୍ବଲ ପଥରର ଫଳକ ଖଞ୍ଜା ଯାଇଛି ଓ ସେଥିରେ ଲେଖା ଅଛି ଅଠର ଜଣ ସ୍ୱାଧୀନତା ସଂଗ୍ରାମୀଙ୍କର ନାମ । ୧୯୪୨ ଆନ୍ଦୋଳନରେ ଗୋଟିଏ ଗାଁରୁ ଏତେ ଲୋକ ସ୍ୱାଧୀନତା ପାଇଁ ସ୍ୱେଚ୍ଛାରେ କାରାବରଣ କରିବା ଓଡ଼ିଶା ଇତିହାସରେ ଏକ ଅଦ୍ୱିତୀୟ ଘଟଣା ।



# ପିଲାଦିନ

ସ୍କୁଲ ସାର୍ଟିଫିକେଟ୍‌ରେ ଲେଖାଅଛି, ମୋର ଜନ୍ମ ସେପ୍ଟେମ୍ବର ସାତ ତାରିଖ ୧୯୨୨ ମସିହା । କିନ୍ତୁ ନନାଙ୍କ ଠାରୁ ଶୁଣିଛି, ମୋର ଜନ୍ମ ତାର ପୂର୍ବ ବର୍ଷ ଦଶହରା ନବମୀ ଦିନ । ସେ ଦିନଟା କେଉଁ ତାରିଖ, ତା' କେବେ ଜାଣିବାକୁ ଚେଷ୍ଟା କରିନାହିଁ । ପିଲାଟିଏ ଜନ୍ମ ହେବା ମାତ୍ରେ ନାହାକ ଅବଧାନେ ଆସନ୍ତି । "ମଙ୍ଗଳମ୍ ଭଗବାନ୍ ବିଷ୍ଣୋଃ ମଙ୍ଗଳମ୍ ମଧୁସୂଦନମ୍" ଗାଇ ଗାଇ ସମସ୍ତଙ୍କର କୁଶଳ କାମନା କରନ୍ତି । ଶିଶୁର ଜନ୍ମ ବାର, ବେଳା, ନକ୍ଷତ୍ର ଦେଖି ଗଣନା କରି ଜାତକ ତିଆରି କରନ୍ତି । ମୋର ଯେ ସେପରି ଜାତକ ତିଆର ହୋଇ ନ ଥିଲା, ତା ନୁହେଁ; କିନ୍ତୁ ଜନ୍ମ ପତ୍ରିକା ବହୁଦିନୁ ହଜି ଯାଇଛି । ନନାଙ୍କର ଜ୍ୟୋତିଷ ବିଦ୍ୟାରେ ଅଳ୍ପ ବହୁତ ପ୍ରବେଶ ଥିଲା । ତଥାପି ଏ ଗଣନାର ଫଳାଫଳ ତାଙ୍କୁ ପ୍ରଭାବିତ କରୁ ନ ଥିଲା । ତାଙ୍କ ଦେଖାଦେଖି ମୁଁ ଜାତକ ବିଷୟରେ ବିଶେଷ ଆଗ୍ରହୀ ହୋଇନାହିଁ ।

ପାଠଶାଳାରେ ନାମ ଲେଖା ସମୟରେ ପିଲାର ବୟସ କମ୍ ଲେଖାଇବା ଏକ କଳଙ୍କିତ ପରଂପରା । ଇଂରେଜ ଶାସନ ଅମଳରେ ପାଠ ପଢ଼ାଇବାର ଏକମାତ୍ର ଉଦ୍ଦେଶ୍ୟ ଥିଲା ପିଲାକୁ ଚାକିରୀ ପାଇଁ ପ୍ରସ୍ତୁତ କରିବା । ଚାକିରୀ ସଂଖ୍ୟା ଥିଲା କମ୍, ଚାକିରୀ ପାଇବାର ସୁଯୋଗ ଅତି ସୀମିତ । ତଦନୁଯାୟୀ ସ୍କୁଲ କଲେଜ ସଂଖ୍ୟା ଥିଲା ନଗଣ୍ୟ । ନିର୍ଦ୍ଦିଷ୍ଟ ବୟସ ସୀମା ଅତିକ୍ରମ କଲେ କେହି ସରକାରୀ ଚାକିରୀରେ ପ୍ରବେଶ କରି ପାରୁ ନ ଥିଲେ । ଏଣୁ ବୟସଟା ଯଥା ସଂଭବ କମ୍ ଲେଖାଇବାକୁ ପିତା ବା ଅଭିଭାବକ ଚେଷ୍ଟା କରୁଥିଲେ । ଜନ୍ମ ତାରିଖର ଅଭେଦ୍ୟ ପ୍ରମାଣ ଜନ୍ମ ପତ୍ରିକା ବା ଜାତକ ବଦଳରେ ବିଦ୍ୟାଳୟ ଖାତାରେ ପରବର୍ତ୍ତୀ ସମୟରେ ଲେଖାହୋଇଥିବା ତାରିଖକୁ ପ୍ରମାଣ ପତ୍ର ରୂପେ ଗ୍ରହଣ କରାହେଲା । ଶୁଣାଅଛି, ଓଡ଼ିଶାର ଜଣେ ଅତି ବିଶିଷ୍ଟ ଲୋକ, କଲେଜ ଛାଡ଼ିବାର ବହୁବର୍ଷ ପରେ, ଜୀବନର ମଧ୍ୟାହ୍ନ କାଳରେ 'ସତ୍ୟପାଠ' (ଆଫିଡାଭିଟ୍) ବଳରେ ବୟସ କମାଇ ପରବର୍ତ୍ତୀ କାଳରେ ହାଇକୋର୍ଟ ଜଜ୍ ହେବାକୁ ସମର୍ଥ ହୋଇଥିଲେ । ଯାହାହେଉ, ମୋର ସାର୍ଟିଫିକେଟ୍ ବୟସଟା ପ୍ରକୃତ ବୟସଠାରୁ ବର୍ଷକରୁ ଊଣା ।

ପିଲାଦିନେ ଗାଁଟା ଯାକର ମୁଁ ଥିଲି ଗେହ୍ଲା ପୁଅ । ନନାଙ୍କର ଅଠର ବର୍ଷ ବୟସରେ ମୁଁ ତାଙ୍କର ପ୍ରଥମ ସନ୍ତାନ । ବୋଉକୁ ସେତେବେଳେ ମାତ୍ର

ଷୋହଳ ବର୍ଷ । ନନାଙ୍କର ସମବୟସୀ ଓ ସାଙ୍ଗସାଥିଙ୍କର ସମସ୍ତ ଶ୍ରଦ୍ଧା ମୋ ଉପରେ ଅଜାଡ଼ି ହୋଇ ପଡୁଥିଲା । ବଡ଼ମାନଙ୍କର ଆଶୀର୍ବାଦ କହିଲେ ନ ସରେ । ଜାତକ ଲିଖିତ ଶ୍ରଦ୍ଧାନାମ 'ଗଂଗାଧର ଶତପଥୀ' । ଚାରି ଅକ୍ଷରିଆ ନାମଟା ବୋଧହୁଏ ସହଜରେ ପାଟିରେ ପଶୁ ନ ଥିଲା । ସେଥିପାଇଁ ଛୋଟ ବଡ଼ ସମସ୍ତଙ୍କ ପାଇଁ ମୋର ଡାକ ନାମ ଥିଲା 'ଗଂଗୁ' । ଏବେ ପରିଣତ ବୟସରେ ମଧ୍ୟ ନନାଙ୍କର ସମବୟସୀ ବଂଧୁ, ଏବଂ ସେମାନଙ୍କର ସଂଖ୍ୟା ଶେଷ ହେବା ଉପରେ, ମତେ 'ଗଂଗୁ' ବୋଲି ସଂବୋଧନ କଲେ, ମୋ ଭିତରେ ଗୋଟାଏ ସ୍ନେହବୋଳା ଆନନ୍ଦର ଲହରୀ ଖେଳିଯାଏ ।

ମୋତେ ଯେତେବେଳେ ସାତ ବର୍ଷ ବୟସ, ଦୂର ଗାଁ ଦଳବାଡ଼ର ଜଣେ ସଂପର୍କୀୟ ମତେ ପାଳିତ ପୁତ୍ର କରି ନେଲେ । ବର୍ଷକ ଆଗରୁ ମୋତେ ପୁଅ କରି ନେବାର ପ୍ରସ୍ତାବ ଆସିଥିଲା । ସେତେବେଳେ ମୋର ତଳ ଭାଇ ରଂଗାଧରର ବୟସ ଏକ ବର୍ଷ । ମୋତେ ଛାଡ଼ିବା ପାଇଁ ନନା ରାଜି ନ ଥିଲେ । ଏ ମଧ୍ୟରେ ମୋର ପ୍ରସ୍ତାବିତ ପାଳକ ପିତା ବାସୁଦେବ ରଥଙ୍କର ଅକାଳ ବିୟୋଗ ଘଟିଲା । ଏହାପରେ ସବୁ ନିଷ୍ପତ୍ତି ଓଲଟ ପାଲଟ ହୋଇଗଲା । ନନା ରାଜି ହେଲେ । କିନ୍ତୁ ଘର ଛାଡ଼ିଯିବାରେ ମତେ ଟିକିଏ ବି କାନ୍ଦ ଲାଗି ନ ଥିଲା । ମୁଁ ହସି ଆସି ଗାଁରୁ ବିଦାୟ ନେଲି । ମୋ ନାଁରୁ 'ଶତପଥୀ' କଟି 'ରଥ' ଯୋଡ଼ା ହେଲା ।

ଦଳବାଡ଼ରେ ବୋଉଙ୍କ ସ୍ନେହ ବନ୍ଧନରେ ମୁଁ ଛନ୍ଦି ହୋଇଗଲି । ମମତାର ଆତିଶଯ୍ୟରେ ସେ ବୈଧବ୍ୟ ଦୁଃଖ ଭୁଲିଯିବାକୁ ଚେଷ୍ଟା କରୁଥିଲେ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । କିନ୍ତୁ ସନ୍ତାନହୀନା ମାଙ୍କର ମୁଁ ଥିଲି ସବୁକିଛି । ମୁଁ ପହଂଚିବାର କିଛିଦିନ ପରେ ବୋଉ ଫତେଗଡ଼ରୁ ବଣିଆ ଡକାଇ ମୋ ପାଇଁ ଅଳଙ୍କାର ଗଢ଼ିବାର ବରାଦ ଦେଲେ । ହାତରେ ଦୁଇ ପଟ ଖଡୁ ପିନ୍ଧିଲି, ଅଣ୍ଟାରେ ଗୋଟାଏ ଗୋଠ ଓ ବେକରେ କଣ୍ଠିମାଳ । ରକ୍ଷା ହୋଇଛି, ସେତେବେଳକୁ ମୋର କାନଫୋଡ଼ା ହୋଇ ନ ଥିଲା । କାନରେ ନୋଳି ପିନ୍ଧିବାର ସୁଯୋଗ ମିଳିଲା ନାହିଁ । ମୋର ମନେ ଅଛି, ଦେଢ଼ବର୍ଷ ପରେ ମୁଁ ଯେତେବେଳେ ଏହି ବେଶରେ ବାଗଲପୁର ଫେରିଲି, ସାଥୀ ପିଲାମାନେ ମତେ ଚିଡ଼ାଇବାକୁ ଆରମ୍ଭ କଲେ । କିନ୍ତୁ ଥଟ୍ଟା ପରିହାସ ବେଶି ଦିନ ସ୍ଥାୟୀ ହେଲା ନାହିଁ । ଶୀଘ୍ର ମୁଁ ଅଳଙ୍କାର ଜଂଜାଳରୁ ମୁକ୍ତ ହେଲି ।

ଦଳବାଡ଼ରେ ବୋଉଙ୍କ ସ୍ନେହ ଆଦର ଛଡ଼ା ଅନ୍ୟ କିଛି ଆକର୍ଷଣ ନ ଥିଲା । ବାଗଲପୁର ଓ ଦଳବାଡ଼ର ପରିବେଶ ମଧ୍ୟରେ ବହୁ ପାର୍ଥକ୍ୟ । ବାଗଲପୁର ନଈକୂଳିଆ ଗାଁ । ପ୍ରତିବର୍ଷ ବର୍ଷାଦିନେ ଦୁଇ ତିନିଥର ବଢ଼ି ଆସେ । ନଈ ପାଣି ଦୁଇକୂଳ ଖାଇ ଉପରକୁ ଉଠେ । ବିଲ, ବାଡ଼ି, ଏପରି କି ଗାଁ ଦାଣ୍ଡରେ ମଧ୍ୟ ପାଣିର ସୁଅ ଚାଲେ । କିନ୍ତୁ ସେଥିରେ ବି ଥାଏ ଆନନ୍ଦ । ନଈବଢ଼ି ବର୍ଷ ପରେ ବର୍ଷ ସୃଷ୍ଟି ଓ ସଂହାରର ନୂଆ ନୂଆ ଚିତ୍ର ଆଣିଦିଏ, ପରିବର୍ତ୍ତନର ଝଲକ୍ ସୃଷ୍ଟି କରେ । ସ୍ରୋତର ପ୍ରଖରତା ମଧ୍ୟରେ ପାଦ ଥୟ ରଖିବାର ଦୃଢ଼ତା ଆଣିଦିଏ । ଏହାର ପଟାନ୍ତର ନାହିଁ । ବଢ଼ି ଛାଡ଼ିଗଲେ ପୁଣି ନଈରେ ଗାଧୁଆ, ଉପରବେଳା ନଈ ବାଲିରେ ଖେଳ କୁଦ । ଜୀବନ କୋଳାହଳମୟ ହୋଇ ଉଠେ । ଦଳବାଡ଼ରେ ନଈ ନାଳ ବା ପାହାଡ଼ କିଛି ନଥିଲା । ଗାଁ ଚାରିପଟେ ଚାଷ ଜମି । ଗୋଟାଏ ପାଖରେ ଗୋଟିଏ ଦଳପୂର୍ଣ୍ଣ ପୋଖରୀ, ଦଳ ଆଡ଼େଇ ପଙ୍କରେ ପଶି ଗାଧୋଇବାକୁ ହୁଏ । ଗାଁରେ ଥିଲା ଗୋଟିଏ ପ୍ରାଇମେରୀ ସ୍କୁଲ । କିନ୍ତୁ ପାଠପଢ଼ା ପ୍ରତି ଛାତ୍ର ଶିକ୍ଷକ ଅଭିଭାବକ କାହାରି ଆଗ୍ରହ ନ ଥାଏ । ତଦୁପରି ଗାଁର ସାମାଜିକ ଜୀବନ ସଂପୂର୍ଣ୍ଣ ସ୍ଥାଣୁ ।

ମୁଁ ପୁଅ ହୋଇ ଯିବାର ଦେଢ଼ ବର୍ଷ ପରେ ନନା ଦିନେ ହଠାତ୍ ପହଂଚିଲେ । ସେ ସେତେବେଳେ କଟକ ଟ୍ରେନିଂ ସ୍କୁଲରେ ଅଧ୍ୟୟନ କରୁଥାନ୍ତି । ଦଶହରା ଛୁଟି ଆରମ୍ଭରେ କଟକରୁ ତାଙ୍କର ସିଧା ଆଗମନ । ନନାଙ୍କୁ ଦେଖି ମୋ ଛାତି କୁଣ୍ଢେ ମୋଟ ହୋଇଗଲା । ମନେହେଲା, ବହୁ ଏରଣ୍ଡ ମଧ୍ୟରେ ଗୋଟିଏ ଦ୍ରୁମର ଆବିର୍ଭାବ ହେଲା । ଦିନେ ଗାଁ ଦାଣ୍ଡରେ ଏକୁଟିଆ ଗଲାବେଳେ ନନା ପଚାରିଲେ, ସେ କ'ଣ କେବେ ମନେ ପଡ଼ନ୍ତି ? ମୁଁ କହିଲି, "ହଁ ମନେ ପଡ଼ିଲେ ମୁଁ ଲୁଚେଇ ଲୁଚେଇ କାନ୍ଦେ ।" ନନା ମତେ ହଠାତ୍ କୋଳକୁ ଉଠାଇ ନେଲେ । ମୁଁ ଦେଖିଲି, ତାଙ୍କ ଆଖି ଛଳ ଛଳ । ତା' ପର ଦିନ ନନା ବୋଉଙ୍କୁ ବୁଝାଇଦେଲେ, ବାଗଲପୁର ନ ଗଲେ ମୋର ପଢ଼ାରେ ବ୍ୟାଘାତ ଘଟିବ । ବୋଉ ତୁରନ୍ତ ରାଜି ହୋଇଗଲା । ତହିଁଆର ଦିନ ବାପ ପୁଅ ଦୁହେଁ ବାଗଲପୁର ଫେରିଲୁ । ୧୯୩୦ ଜାନୁଆରୀ ମାସରେ ମୁଁ ନିମ୍ନ ପ୍ରାଥମିକ ସ୍କୁଲରେ ଦ୍ୱିତୀୟ ଶ୍ରେଣୀରେ ନାମ ଲେଖାଇଲି । ମଝିରେ ଦେଢ଼ଟି ବର୍ଷ ପଢ଼ା ନଷ୍ଟ ହେଲା ।

୧୯୩୦ ମସିହାରେ ବାଗଲପୁରରେ ନିଆଁ ଜଳୁଥାଏ । ଇନ୍‌କିଲାବ୍ ଜିନ୍ଦାବାଦ, ମହାତ୍ମା ଗାନ୍ଧିକି ଜୟ ଧ୍ୱନି କରି ଗାଁ ଦାଣ୍ଡରେ ଶୋଭାଯାତ୍ରା ହୁଏ । ଆମେ ପିଲାମାନେ ଏହାର ତାତ୍ପର୍ଯ୍ୟ ବୁଝି ନ ଥାଉ । କେବଳ ଏତିକି ବୁଝୁ ଯେ ଏହା ସରକାର ବିରୁଦ୍ଧରେ ଏକ ଯୁଦ୍ଧ ଡାକରା । ଥରେ ଆମ ଗାଁ ଦୋଳବେଦୀଠାରେ, ପ୍ରତି ଘରୁ ବିଲାତି ଲୁଗା ସଂଗ୍ରହ କରାଯାଇ ନିଆଁ ଲଗାଇ ଦିଆହେଲା । ମୁହୂର୍ତ୍ତକ ମଧ୍ୟରେ ଲୁଗା ସବୁ ଜଳି ପାଉଁଶ ହୋଇଗଲା । ଆମେ ଶୁଣିଲୁ ଗାନ୍ଧିଜୀଙ୍କ ଡାକରାରେ ବିଦେଶୀ ଜିନିଷ ବର୍ଜନ କରାଯାଉଛି, ସେଥିପାଇଁ ଏ ଅଗ୍ନି ପର୍ବ । ଗାଁ ଯୁବକମାନଙ୍କର ନେତା ଥିଲେ ନନାଙ୍କର ବ୍ୟକ୍ତିଗତ ବନ୍ଧୁ ଗୌରାଙ୍ଗ ଚରଣ ଦାସ । ଉଭୟ ପରସ୍ପରକୁ 'ଅବର୍ଯ୍ୟା' ଡାକୁଥିଲେ । ଅବର୍ଯ୍ୟା ଗୌରାଂଗ ସତ୍ୟାଗ୍ରହ ଆନ୍ଦୋଳନରେ ଗିରଫ ହୋଇ ଜେଲ ଗଲେ । କେତେ ମାସ ପରେ ଗୌରାଂଗ ବାବୁ ଯେତେବେଳେ ଜେଲରୁ ଖଲାସ ହୋଇ ଆସିଲେ, ତାଙ୍କୁ ଯୁବକମାନେ ଅଣଖିଆ ବସ୍ ରହଣୀଠାରୁ ସମ୍ବର୍ଦ୍ଧନା କରି ଆଣିଲେ । ପୁଣି ସେହି ସଭା ଶୋଭାଯାତ୍ରା, ପୁଣି ସେହି ଜୟଗାନ । ଏ ସବୁ ଘଟଣାର ତାତ୍ପର୍ଯ୍ୟ ବୁଝିବାକୁ ମୋର ବୟସ ହୋଇ ନ ଥିଲା । କେବଳ ମନରେ ରହିଗଲା ଜାତୀୟ ସଂଘର୍ଷର ଏକ ଛାୟା, ଯାହା କି ବାନରସେନାଙ୍କ ମନରେ ସୃଷ୍ଟି କରୁଥିଲା ଏକ ପ୍ରକାରର ଉଦ୍‌ବେଳନ ।

ସେହିବର୍ଷ ଆମ ପ୍ରାଥମିକ ମହାବିଦ୍ୟାଳୟକୁ ପୁରୀରୁ ଜଣେ ନୂଆ ହେଡ୍‌ପଣ୍ଡିତ ଆସିଥାନ୍ତି । ନାମ ପଣ୍ଡିତ ଦାମୋଦର ମିଶ୍ର । ଘର ସାକ୍ଷୀଗୋପାଳ ନିକଟସ୍ଥ ବାସୁଦେବପୁର । ପଣ୍ଡିତେ ଅତି ନୈଷ୍ଠିକ ବ୍ରାହ୍ମଣ । ପରିବାରକୁ ଗ୍ରାମରେ ଛାଡ଼ି, ପାର୍ବତୀ ବାବୁଙ୍କ ଦାଣ୍ଡଘରେ ରହନ୍ତି । ନିଜ ହାତରେ ରୋଷାଇବାସ କରନ୍ତି । କିନ୍ତୁ କର୍ତ୍ତବ୍ୟରେ ଅବହେଳା ନ ଥାଏ । ମନ ପ୍ରାଣ ଦେଇ ସହଜ ସରଳ ଭାଷାରେ ପିଲାଙ୍କୁ ପଢ଼ାଇବା ଥିଲା ତାଙ୍କର ବ୍ରତ । ପଣ୍ଡିତଙ୍କ ତତ୍ତ୍ୱାବଧାନରେ ମୁଁ ଦୁଇବର୍ଷ ପଢ଼ିଥିଲି । ଜୀବନର ମୂଳଦୁଆ ସେ ଗଢ଼ି ଦେଇଥିଲେ ।

ଦ୍ୱିତୀୟ ଶ୍ରେଣୀରେ ଆମେ ସିଲଟ୍ ଖଡ଼ି ଛାଡ଼ି, କାଗଜ, କଲମ, ପେନ୍‌ସିଲ ବ୍ୟବହାର କରିବାକୁ ଆରମ୍ଭ କଲୁ । ଦୁଦୁରାପତ୍ର ରସରେ ହାଣ୍ଡିକଳା ମିଶାଇ କାଳି ତିଆର କରାଯାଏ, ତା ସାଂଗକୁ ପରକଲମ । ଏହି ପରକଲମରେ ପ୍ରତିଦିନ ହସ୍ତାକ୍ଷର ଲେଖିବାକୁ ପଡ଼େ । ଶ୍ରେଣୀରେ କେହି କେହି ପେନ୍‌ସିଲ ବ୍ୟବହାର କରନ୍ତି । ଥରେ ମୋର ପେନ୍‌ସିଲ ସରି ଯାଇଥାଏ । ପଣ୍ଡିତେ

ବିରକ୍ତ ହେଲେ । ମୁଁ ଗାଁ ଦୋକାନରେ ଦେଖିଥିଲି ନାନା ରଂଗର ଛାପାନୀ ପେନ୍‌ସିଲ ଓ ରବର ବିକ୍ରି ହେଉଛି । ମୋର ଲୋଭ ହେଲା । ଆମ ଜେଜେବାପାଙ୍କ ଶୋଇବା ଘରେ ନ'ଟା ତମ୍ବା ପଇସା ନାଲି କନାରେ ଗଣ୍ଡିପଡ଼ି ଖୁଣ୍ଟରେ ବଂଧା ହୋଇଥିଲା । ମା ମଙ୍ଗଳାଙ୍କ ନାଁରେ ସେ ପଇସା ସେଠି ବହୁଦିନରୁ ଥାଏ । ମୁଁ ଦିନେ ଦ୍ୱିପହରରେ କନାରୁ ନ'ଟି ପଇସା କାଢ଼ି ନେଇ ନାଲି କନାଟି ପୂର୍ବଭଳି ଖୁଣ୍ଟରେ ବାଂଧି ଦେଲି । ଘର ବାଡ଼ିପଟେ ଗୋଟିଏ ଆମ୍ବ ତୋଟା ଦେଇ ଆମେ ସ୍କୁଲକୁ ଯାଉ । ମୁଁ ଆଗତୁରା ଯାଇ ଆମ୍ବ ତୋଟାର ଶେଷ ଗଛ ଆଗରେ ପଇସାତକ ରଖି ଦେଇ ଆସିଲି । ଫେରିଆସି ଅନ୍ୟ ପିଲାଙ୍କ ସାଙ୍ଗରେ ସ୍କୁଲକୁ ଗଲାବେଳେ ମୁଁ ଆଗେ ଆଗେ ଚାଲିଥାଏ । ହଠାତ୍ ଆମ୍ବ ମୂଳରେ ମୁଁ ଚିତ୍କାର କଲି, ଆରେ ପଇସା ପଡ଼ିଛି! ପଇସାତକ ଉଠାଇ ନେଲି । ସାଥୀପିଲାମାନେ ବଧାଇ ଦେଲେ । ସଂଧ୍ୟାବେଳେ ଦୋକାନରୁ ଦୁଇଟା ପେନ୍‌ସିଲ୍, ରବର ଓ ଖାତା କିଣିଲି । ସେ କାଳେ ଜିନିଷ ଥିଲା ଶସ୍ତା, ପଇସା ମହରଗ । କଥାଟା କିନ୍ତୁ ଲୁଚି ରହିଲା ନାହିଁ । ଦୁଇ ଦିନ ପରେ ଜେଜେମା ଆବିଷ୍କାର କଲେ, କନା ଅଛି, କର୍ପୂର ନାହିଁ । ପେନସିଲ୍ କିଣାରୁ ମୋ ଉପରେ ସଂଦେହ ହେଲା । ମୁଁ କିପରି ଆଗେ ଆଗେ ଯାଇ ଆମ୍ବ ମୂଳରୁ ପଇସା ଉଠାଇଥିଲି, ସାଥୀ ପିଲାମାନେ ସେ କଥା ବର୍ଣ୍ଣନା କଲେ । ମୁଁ ଦୋଷ ମାନିଗଲି । କିନ୍ତୁ ମା ମଂଗଳାଙ୍କ ପାଖରେ ମୁଣ୍ଡିଆ ମାରି ନାହିଁ ।

ଆମେ ତୃତୀୟ ଶ୍ରେଣୀରେ ପଢ଼ିଲାବେଳେ, ଗାଁରେ ନୂଆ କରି ଗୋଟିଏ ହରିଜନ ସ୍କୁଲ ଆରମ୍ଭ କରାହେଲା । ମାଇନର ସ୍କୁଲ ସାମନାରେ ଗୋଟିଏ ଚାଳଘର ତିଆର ହେଲା । ଗାଁର କେତେଜଣ ମାମଲତ୍‌କାର, ବିଶେଷତଃ କରଣ ସାମନ୍ତମାନେ ଏହାର ବିରୋଧ କରୁଥିଲେ । କିନ୍ତୁ ଗୌରାଙ୍ଗ ବାବୁ ଓ ଅନ୍ୟ ଯୁବକମାନଙ୍କ ଉଦ୍ୟମରେ ସ୍କୁଲଟି ଠିଆହେଲା । ଜଗତ୍‌ସିଂପୁର ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲରୁ ଇସ୍ତଫା ଦେଇ କଂଗ୍ରେସରେ ଯୋଗଦାନ କରିଥିବା ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ଏହାକୁ ଉଦ୍‌ଘାଟନ କରିଥିଲେ । ଆମେ ସବୁ ସଭାରେ ଯୋଗଦେଇ ଗାନ୍ଧିଜୀଙ୍କ ଜୟଜୟକାର କଲୁ । ପାଣ ସାହୀ ଓ ବାଉରୀ ସାହୀର ଅନେକ ପିଲା ନାମ ଲେଖାଇଲେ । ସେମାନଙ୍କୁ ମାଗଣା. ସିଲଟ୍, ଖଡ଼ୀ ଯୋଗାଇ ଦିଆହେଲା । ଅଳ୍ପ ଦିନ ପରେ ଆମେ ଦିନେ ସକାଳେ ସ୍କୁଲ ଗଲାବେଳେ ଦେଖିଲୁ, ହରିଜନ ବିଦ୍ୟାଳୟ ପୂର୍ବ ରାତିରେ ପୋଡ଼ି ଭସ୍ମୀଭୂତ ହୋଇଯାଇଛି । କିଏ କାହିଁକି ଏ ଅପକର୍ମ କଲା, ଆମେ ତାହା ବୁଝିପାରିଲୁ ନାହିଁ । କିନ୍ତୁ କେତେ ବୁଢ଼ା ମାମଲତ୍‌କାରଙ୍କ ଉପରେ ସଂଦେହ ରହିଗଲା ।

ପଣ୍ଡିତ ଦାମୋଦର ମିଶ୍ର ଆମେ କେତେଜଣ ପିଲାଙ୍କୁ ବିନା ପାରିଶ୍ରମିକରେ ସଂଧ୍ୟାବେଳେ ଟିଉସନ କରନ୍ତି । ବୃତ୍ତି ପରୀକ୍ଷା ପାଇଁ ଆମକୁ ପ୍ରସ୍ତୁତ କରିବା ପଣ୍ଡିତଙ୍କର ଲକ୍ଷ୍ୟ । ସେତେବେଳେ ନିମ୍ନ ପ୍ରାଥମିକ ସ୍ତରରେ ବୃତ୍ତି ଦେବା ପାଇଁ ଗୋଟିଏ ସ୍ୱତନ୍ତ୍ର ପରୀକ୍ଷା ହୁଏ । ଆମର ପରୀକ୍ଷା କେନ୍ଦ୍ର ଥିଲା ଜଗତ୍‌ସିଂପୁର ମଧ୍ୟ ଇଂରାଜୀ ବିଦ୍ୟାଳୟ । ଆମ ସ୍କୁଲରୁ ଦୁଇ ଜଣ ଛାତ୍ର, ମୁଁ ଓ ସୁରେନ୍ଦ୍ରନାଥ ଦାସ ବୃତ୍ତି ପରୀକ୍ଷା ଦେବାପାଇଁ ମନୋନୀତ ହୋଇଥାଉ । ପରୀକ୍ଷା ପୂର୍ବଦିନ ଆମେ ଦୁଇଜଣ ଛାତ୍ର, ପଣ୍ଡିତ ମହାଶୟ ଓ ମୋ ଜେଜେବାପା ଜଗତ୍‌ସିଂପୁର ଗଲୁ । ବସ୍‌ରେ ବସିବାର ସେଇଟା ମୋର ପ୍ରଥମ ଅଭିଜ୍ଞତା । ଦୁଇଦିନ ପରେ ଆମ୍ଭେମାନେ ଫେରିଲୁ ଚାଲି ଚାଲି, କାରଣ ବସ୍‌ରେ ଜାଗା ମିଳିଲା ନାହିଁ । ଗ୍ରାମକୁ ଫେରି ଜେଜେବାପା କହିଲେ, ମୁଁ ଯଦି ବୃତ୍ତି ପାଏ, ତାହାହେଲେ ଗୋଟିଏ ପଂଚାନନ ମେଳା କରାଯିବ ।

୧୯୩୧ ମସିହା ବଡ଼ ଦିନ ଛୁଟି । ଦିନେ ସଂଧ୍ୟାରେ ମୁଁ, ମୋ ପିଉସୀ, କକେଇ ଓ ଭାଇ ଭଉଣୀ, ବୁଢ଼ୀମା ସାଂଗରେ ଚୁଲି ପାଖରେ ବସି ନିଆଁ ପୋଉଥୁ । ନନା ଘରକୁ ଆସି କହିଲେ ମୁଁ ସ୍କଲାରସିପ ପାଇଛି । ଏହାର ଗୁରୁତ୍ୱ ବୁଝିବାକୁ ମୋର ବୟସ ହୋଇ ନ ଥିଲା, କିନ୍ତୁ ଘରେ ସମସ୍ତେ ଖୁସି ହେଲେ । ମୋ ବିଧବା ପିଉସୀ ମତେ ଦୁଇଥର ଗେହ୍ଲା କରିଦେଲେ । ଏହାପରେ ମୁଁ ଅନେକ ଥର କୃତିତ୍ୱର ସହ ସ୍କୁଲ ପରୀକ୍ଷାମାନଙ୍କରେ ପାସ କରିଛି । ମଧ୍ୟ ଇଂରାଜୀ ଏବଂ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସ୍କଲାରସିପ ମଧ୍ୟ ପାଇଛି । କିନ୍ତୁ ପଂଚାନନ ଗୋସେଇଁଙ୍କ ମେଳା ଏ ପର୍ଯ୍ୟନ୍ତ କରାଯାଇ ପାରିନାହିଁ । ନନା ବୋଧହୁଏ ଭାବୁଥିଲେ, ପୁଅର କୃତିତ୍ୱ ପାଇଁ ପଂଚାନନ ଗୋସାଇଁଙ୍କର ଅବଦାନ ନଗଣ୍ୟ ।



# ତୁହି ମା ଜନମ ଭୂମି

ବାଲ୍ୟ ଜୀବନର ରୋମାଂଚକର ଦିନଗୁଡ଼ିକ ଆରମ୍ଭ ହେଲା, ଯେତେବେଳେ ପ୍ରାଇମେରୀ ସ୍କୁଲ ଛାଡ଼ି ୧୯୩୨ ମସିହାରେ ମୁଁ ବାଗଲପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲି । ବିଦ୍ୟାଳୟର ପରିବେଶ ଥିଲା ସଂପୂର୍ଣ୍ଣ ଭିନ୍ନ । ନଈକୂଳଠାରୁ କିଛି ଦୂରରେ, ଗାଁର ମୁଖ୍ୟବସ୍ତି ଗୁଡ଼ିକଠାରୁ ଅନେକଟା ବିଚ୍ଛିନ୍ନ, ଇଟା କାନ୍ଥର ପାଂଚ ବଖରା ଚାଳଘର । ଦକ୍ଷିଣ ଦିଗରେ ପିଇବା ପାଣିର ଏକମାତ୍ର ଉତ୍ସ ଏକ ପକ୍କା ବାଂଫି । ହତା ଚାରିପଟେ ବାଉଗବା ବାଡ଼, ସ୍କୁଲର ପଛପଟେ ଦୁଇ ଧାଡ଼ି ଘର, ଗୋଟିଏ ଶିକ୍ଷକମାନଙ୍କ ପାଇଁ, ଅନ୍ୟଟି ଛାତ୍ରମାନଙ୍କର ଆବାସ ।

ସେତେବେଳେ ସ୍କୁଲର ହେଡ଼ମାଷ୍ଟର ଥିଲେ ବାଂଛାନିଧି ରଥ । ଗୋରା ତକ ତକ ଚେହେରା, ଲମ୍ବା ନାକ, ରାଗିଲେ ଲାଲ ପଡ଼ିଯାନ୍ତି । ଆଇ.ଏ. ପାସ କରା ଏକମାତ୍ର ଶିକ୍ଷକ, ଏଣୁ ଇଂରାଜୀ ପଢ଼ାନ୍ତି । ଅନ୍ୟ ଶିକ୍ଷକମାନେ ହେଲେ ମୋର ନନା ଲକ୍ଷ୍ମୀଧର ଶତପଥୀ, ପୂର୍ଣ୍ଣଗ୍ରାମର ରାଜକିଶୋର ଦାସ ଓ ପୁରୀର ପଣ୍ଡିତ ସତ୍ୟବାଦୀ ମିଶ୍ର । ଏହି କୁଶଳୀ କଳାକାରମାନଙ୍କ ଉପରେ ନ୍ୟସ୍ତ ମଣିଷ ଗଢ଼ିବାର ଦାୟିତ୍ୱ । କଂଚା ମାଟି ଚକଟି, ସେଥିରେ ପିତୁଳା ଗଢ଼ି, ତାକୁ ଜୀବନ୍ୟାସ ଦେବା ଏମାନଙ୍କର ବ୍ରତ । ଛାତ୍ରମାନେ କେବଳ ଭଲ ପାଠ ପଢ଼ିବେ ନାହିଁ, ଭଲ ମଣିଷ ହେବେ, ବଡ଼ ମଣିଷ ହେବେ, ସେଥି ପ୍ରତି ଶିକ୍ଷକମାନଙ୍କର ତୀବ୍ର ଦୃଷ୍ଟି ।

ସ୍କୁଲ ବଢ଼ି ଅଂଚଳରେ ପ୍ରତିଷ୍ଠିତ । ନଈବଢ଼ି ସମୟରେ ଅନେକ ଦୂର ଗାଁର ଛାତ୍ର କ୍ଲାସକୁ ଆସି ପାରନ୍ତି ନାହିଁ । ଏଣୁ ଖରାଛୁଟି ପରିବର୍ତ୍ତେ ବର୍ଷାଛୁଟି କରାଯାଏ । ମଇ ଜୁନ୍ ମାସରେ ଛୁଟି ନ ହୋଇ ଜୁଲାଇ ଅଗଷ୍ଟରେ ଛୁଟି କରାଯାଏ । ବ୍ୟକ୍ତିଗତ ଅସୁବିଧା ହେଲେ ମଧ୍ୟ, ଶିକ୍ଷକମାନେ ଏହି ବ୍ୟବସ୍ଥାରେ ପୂର୍ଣ୍ଣ ସହଯୋଗ କରନ୍ତି । ଫଳରେ ଛାତ୍ରମାନଙ୍କ ପଢ଼ାପଢ଼ିରେ ବ୍ୟାଘାତ ଘଟେ ନାହିଁ ।

ପଣ୍ଡିତ ସତ୍ୟବାଦୀ ମିଶ୍ର ହଷ୍ଟେଲର ତତ୍ତ୍ୱାବଧାରକ । ପଣ୍ଡିତେ ବ୍ରାହ୍ମ ମୂହୂର୍ତ୍ତରେ ଉଠନ୍ତି । ପ୍ରାର୍ଥନା ପରେ ପ୍ରାୟ ଚାଳିଶ ଜଣ ହଷ୍ଟେଲ ପିଲାଙ୍କୁ ସାଂଗରେ ନେଇ ନଈକୂଳକୁ ଯାଆନ୍ତି । ସେଠାରେ ନିତ୍ୟକର୍ମ ଓ ସ୍ନାନ ଇତ୍ୟାଦି ଶେଷ କରି ହଷ୍ଟେଲକୁ ଫେରନ୍ତି । ସକାଳ ଛ'ଟାରେ ପଣ୍ଡିତେ ପୂଜାପାଠ

ସାରି ବାହାରିଲା ବେଳକୁ ଛାତ୍ରମାନେ ସ୍କୁଲ ବାରଣ୍ଡାରେ ଅଧ୍ୟୟନରତ। ମାଡ଼ ଗାଳି ନାହିଁ, ବେତ୍ରାଘାତ ନାହିଁ, କେବଳ ପଣ୍ଡିତଙ୍କର ସ୍ୱୀୟ ନିଷ୍ଠା ଓ ଆଦର୍ଶ ଛାତ୍ରମାନଙ୍କୁ ଅନୁପ୍ରାଣିତ କରେ।

ଆମ ଘର ସ୍କୁଲଠାରୁ ମାତ୍ର ପାଂଚ ଶହ ହାତ ଦୂର। କିନ୍ତୁ ପଢ଼ାପଢ଼ିରେ ସୁବିଧା ହେବ ବୋଲି ମୁଁ ହଷ୍ଟେଲରେ ରହେ। ହଷ୍ଟେଲରେ ସକାଳେ ସଂଧ୍ୟାରେ ପ୍ରାର୍ଥନା କରାଯାଏ। ମଧୁସୂଦନ ରାଓଙ୍କ ରଚିତ ''ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ'' ସମବେତ କଂଠରେ ଦୁଇଓଳି ବୋଲାଯାଏ। ହଷ୍ଟେଲରେ ରହିବାର ବର୍ଷକ ପରେ ସ୍ଥିର ହେଲା, ସକାଳେ ବ୍ରହ୍ମ ପ୍ରାର୍ଥନା ଓ ସଂଧ୍ୟାରେ ଜନ୍ମଭୂମିର ସ୍ତୁତିଗାନ କରାଯିବ। ତା ପରେ ପ୍ରତି ସଂଧ୍ୟାରେ-

''ତୁହି ମା ଜନମ ଭୂମି
ପବିତ୍ର ଭାରତ ଭୂମି....''

ଗୀତଟି ମିଳିତ କଂଠରେ ବୋଲା ହେଲା। ଏ ଗୀତଟି ମଧ୍ୟ ମଧୁ ରାଓଙ୍କ ଦ୍ୱାରା ଲିଖିତ ଓ ପାଠ୍ୟପୁସ୍ତକରେ ସନ୍ନିବେଶିତ। ପରିବର୍ତ୍ତିତ ସମୟ ଓ ଗାଁର ଦେଶାତ୍ମବୋଧକ ବାତାବରଣ ସହିତ ଏପରି ସମବେତ ଗାନ ଥିଲା ବେଶ ପରିପୂରକ। ଆଉ ଗୋଟିଏ ଗୀତ ଛାତ୍ରମାନଙ୍କର ଅତି ପ୍ରିୟ ଥିଲା, ସେ ହେଲା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ରଚନା :

''ତୁଙ୍ଗ ଶିଖରୀ ଚୂଳ କୁଞ୍ଜ କାନନମାଳ
ପୁଣ୍ୟ ଜଳଧି ଜଳ ଖେଳି ଉଠ ସଘନେ,
ପ୍ରାଚୀ ଗଗନ ଶିରେ ଭାସି କନକ ନୀରେ
ଆସେ ତପନ ଉଇଁ ଏ ଉତ୍କଳ ଭୁବନେ''

ଗୋଦାବରୀଶଙ୍କ ରଚନାର ଛନ୍ଦେ ଛନ୍ଦେ ଦେଶପ୍ରୀତିର ଗୁଞ୍ଜନ ଶୁଣିବାକୁ ମିଳେ। ସ୍କୁଲର ସବୁ ଅନୁଷ୍ଠାନରେ ବିଶେଷତଃ ପୁରସ୍କାର ବିତରଣ ଉତ୍ସବରେ ଏ ଗୀତଟି ବୋଲାଯାଏ।

ପ୍ରତି କ୍ଲାସରେ ଜଣେ ପିଲାକୁ ବଡ଼ଚାଟ ରୂପେ ମନୋନୀତ କରିବା ଏକ ଚିରାଚରିତ ପ୍ରଥା। ତାଙ୍କୁ କହୁଥିଲେ ମନିଟର। ଶ୍ରେଣୀରେ ଶୃଙ୍ଖଳା ରକ୍ଷା କରିବା ଓ ଅନ୍ୟ ପିଲାଙ୍କୁ ସାହାଯ୍ୟ କରିବା ମନିଟରମାନଙ୍କର କାମ। ମୁଁ ଚାରିବର୍ଷ ଧରି ସବୁବେଳେ କ୍ଲାସର ମନିଟର ଥିଲି। ପରେ ଅନୁଭବ କରିଛି, ମନିଟରମାନେ ଯଦି ବିଶେଷ କର୍ମତତ୍ପର ହୁଅନ୍ତି, ତାହାହେଲେ ତାଙ୍କୁ ଅସୁବିଧାରେ ପଡ଼ିବାକୁ ହୁଏ। ହେଡ୍‌ମାଷ୍ଟର ବାଂଛାନିଧି ବାବୁଙ୍କର ଅଭ୍ୟାସ

ଥିଲା, ପ୍ରଶ୍ନୋତ୍ତର ଛଳରେ ସେ ଇଂରାଜୀ ପଢ଼ାନ୍ତି। ପିଲାଙ୍କୁ ଗୁଡ଼ାଇ ତୁଡ଼ାଇ ପ୍ରଶ୍ନ କରନ୍ତି। କୌଣସି ପିଲା ଠିକ୍ ଉତ୍ତର ଦେଇ ନ ପାରିଲେ ତାକୁ କାନମୋଡ଼ା ଦିଆଯାଏ। ଯିଏ ଠିକ୍ ଉତ୍ତର ଦିଅନ୍ତି ସେ କାନ ମୋଡ଼ନ୍ତି। ଏହି ପର୍ଯ୍ୟାୟରେ ଚତୁର୍ଥ ପଂଚମ ଶ୍ରେଣୀରେ ପଢ଼ିଲା ବେଳେ ମତେ ବହୁ ସହପାଠୀଙ୍କର କାନ ମୋଡ଼ିବାକୁ ପଡୁଥିଲା। ମୁଁ ଦିନେ ସାହସ ଧରି ହେଡ୍‌ମାଷ୍ଟରଙ୍କୁ କହିଲି, ପାଠ ନ ଆସୁଥିବା ଛାତ୍ରଙ୍କୁ ଦଣ୍ଡଦେବା କାମ ମୋ ଜରିଆରେ କରା ନଯାଉ। କାରଣ ବହୁ ସହପାଠୀ ମୋ ଉପରେ ଅସନ୍ତୁଷ୍ଟ ହେଉଛନ୍ତି। ସେହିଦିନ ଠାରୁ ମତେ ଏ କାନ ମୋଡ଼ିବା ଦାୟିତ୍ୱରୁ ଅବ୍ୟାହତି ମିଳିଲା।

ଆଜିକାଲି ସ୍କୁଲ କଲେଜମାନଙ୍କରେ ତର୍କସଭା କ୍ୱଚିତ୍ କରାଯାଉଛି। ହାଇସ୍କୁଲମାନଙ୍କରୁ ଏହା ପ୍ରାୟ ଉଠିଗଲାଣି କହିଲେ ଚଳେ। ନଗଦ ପୁରସ୍କାର ଓ ବିଶିଷ୍ଟ ଲୋକେ ପୁରସ୍କାର ଦେବା ପାଇଁ ଉପସ୍ଥିତ ନ ରହିଲେ ବିତର୍କରେ ଛାତ୍ରଛାତ୍ରୀମାନେ ଭାଗ ନେଉ ନାହାନ୍ତି। କିନ୍ତୁ ଆମେ ପଢ଼ିଲା ବେଳେ ପ୍ରତି ଶନିବାର ଦିନ ସ୍କୁଲରେ ତର୍କସଭା ଅନୁଷ୍ଠିତ ହୁଏ। ଛାତ୍ରମାନଙ୍କ ମଧ୍ୟରୁ ଜଣେ ଡିବେଟିଂ ସୋସାଇଟିର ସେକ୍ରେଟାରୀ ରହନ୍ତି। ଶିକ୍ଷକମାନେ କିମ୍ବା କେବେ କେବେ ସେ ଅଂଚଳର ବିଶିଷ୍ଟ ଲୋକେ ସଭାପତିତ୍ୱ କରନ୍ତି। ଛାତ୍ରମାନଙ୍କ ମଧ୍ୟରୁ ଅନେକେ ନିୟମିତ ରୂପେ ବିତର୍କରେ ଅଂଶ ଗ୍ରହଣ କରନ୍ତି। ସାତପୁରାର ଗୋବିନ୍ଦ ଚନ୍ଦ୍ର ମହାନ୍ତି (ବର୍ତ୍ତମାନର କମ୍ୟୁନିଷ୍ଟ ନେତା) ଅଢ଼ଙ୍ଗର ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ, ବାଗଲପୁରର ଚିତ୍ତରଂଜନ ଦାସ (ସୁବିଖ୍ୟାତ ପ୍ରାବଂଧିକ) ଓ ମୁଁ ଆଲୋଚନାରେ ଭାଗ ନେଉ। କିଏ ଆଗ କହିବ, ସେଥିପାଇଁ ଛାତ୍ରମାନଙ୍କ ମଧ୍ୟରେ ପ୍ରଚ୍ଛନ୍ନ ପ୍ରତିଯୋଗିତା ଲାଗି ରହିଥାଏ। ଗୋଟିଏ ଘଟଣା ମନେ ପଡୁଛି। ଷଷ୍ଠ ଶ୍ରେଣୀରେ ପଢ଼ିଲାବେଳେ ମୁଁ ଡିବେଟିଂ ସୋସାଇଟିର ସେକ୍ରେଟାରୀ ଥାଏ। ବିତର୍କ ସଭା ଆରମ୍ଭ ହେଲେ ସେକ୍ରେଟାରୀଙ୍କୁ ପୂର୍ବସଭାର ବିବରଣୀ ପାଠ କରିବାକୁ ହୁଏ। ଏଣୁ ସେକ୍ରେଟାରୀଙ୍କ ପକ୍ଷରେ ପ୍ରଥମ ବକ୍ତା ହେବାରେ କେତେକ ଅସୁବିଧା ଥାଏ। ଥରେ ପୂର୍ବଦିନର ବିବରଣୀ ପଠନ ଶେଷ କରିବାର ମୁହୂର୍ତ୍ତକ ମଧ୍ୟରେ ବସି ପଡ଼ି ପୁଣି ଠିଆ ହୋଇ ମୁଁ ନିର୍ଦ୍ଧାରିତ ବିଷୟରେ କହିବାକୁ ଆରମ୍ଭ କରିଦେଲି। ସଭାରେ ଘନ ଘନ କରତାଳି ଓ ହାସ୍ୟରୋଳ ଉଠିଲା। ହାସ୍ୟରୋଳ ମଧ୍ୟରେ ମୋର ଅସଂଗତି ଲୁଚିଗଲା।

ମୁଁ ଥିଲି ଅତି ଲାଜକୁଳା। ବଡ଼ମାନଙ୍କ ଆଗରେ କୌଣସି କଥା ଦମ୍ଭର ସହିତ କହିବାକୁ ମୋର ସାହସ ନ ଥିଲା। କିନ୍ତୁ ବିତର୍କରେ ନିୟମିତ ଅଂଶ

ଗ୍ରହଣ କରିବା ଫଳରେ ଏ ଲାଜକୁଳା ଢ଼ଙ୍ଗ ଧୀରେ ଧୀରେ ଭାଂଗି ଗଲା। ସଂକ୍ଷେପରେ ସାବଲୀଳ ଭାଷାରେ ନିଜର ମତାମତ ଜାହିର କରିବାକୁ ଶିଖିଲି। ପର ଜୀବନରେ ଏ ଅଭିଜ୍ଞତା ବହୁତ ସହାୟକ ହୋଇଛି। ସାଧାରଣ ସଭା ସମିତିରେ ଏପରିକି ଅଦାଲତ ସମ୍ମୁଖରେ ଦୃଢ଼ତାର ସହିତ ମତାମତ ବ୍ୟକ୍ତ କରିବାକୁ ମୁଁ କେବେ ସଂକୋଚ ବୋଧ କରିନାହିଁ। ୧୯୩୮ ମସିହାରେ ଥରେ ଶ୍ରୀରାମଚନ୍ଦ୍ର ଭବନରେ ସ୍କୁଲ ଛାତ୍ରମାନଙ୍କ ପାଇଁ ଇଂରାଜୀ, ଓଡ଼ିଆ ଓ ହିନ୍ଦୀ ଭାଷାରେ ବିତର୍କ ପ୍ରତିଯୋଗିତାର ଆୟୋଜନ କରାଯାଇଥାଏ। ପ୍ରଥମ ଦିନ ଇଂରାଜୀ ଭାଷାରେ ପ୍ରତିଯୋଗୀତା। ସଭାସ୍ଥଳରେ ଆଲୋଚ୍ୟ ବିଷୟଟି ଘୋଷଣା କରାହେଲା। ପାଂଚ ମିନିଟ୍ ପରେ ପ୍ରତିଯୋଗୀମାନଙ୍କର ନାମ ଡକା ହେଲା। ମୁଁ ହେଲି ପ୍ରଥମ ବକ୍ତା। ଚିନ୍ତା କରିବାକୁ ସମୟ ନ ଥିଲା। ମୁଁ ଭାବିଲି ମୋର ବିତର୍କ ଉଚ୍ଚ ସ୍ତରର ହୋଇ ପାରିଲା ନାହିଁ। ଲାଜ ଲାଗିଲା, ହଷ୍ଟେଲ ଫେରିଆସି ମୁଁ ମନଦୁଃଖରେ ଶୋଇ ପଡ଼ିଲି। ସଂଧ୍ୟାବେଳେ ସହପାଠୀମାନେ ନିଦରୁ ଉଠାଇ କହିଲେ, ମୁଁ ଇଂରାଜୀ ଡିବେଟ୍ କମ୍ପିଟେସନରେ ଫାଷ୍ଟ ହୋଇଛି। ମୋର ମନବଳ ଫେରି ଆସିଲା। ପରଦିନ ଓଡ଼ିଆ ଓ ହିନ୍ଦୀ ପ୍ରତିଯୋଗୀତାରେ ମଧ୍ୟ ମୁଁ ପ୍ରଥମ ହେଲି। ମନେ ହେଲା, ମୋର ଏ କୃତିତ୍ୱ ପଛରେ ଅଛି ବାଗଲପୁର ମାଇନ୍‌ର ସ୍କୁଲର ସାଧନା।

ସ୍କୁଲରେ ପ୍ରତି ମାସରେ ଅନ୍ତତଃ ଦୁଇଥର ପଦ୍ୟାନ୍ତ ବା ଶ୍ଳୋକାନ୍ତ ପ୍ରତିଯୋଗିତା ହୁଏ। ଏଥିରେ ମୁଖ୍ୟତଃ ହଷ୍ଟେଲ ଛାତ୍ରମାନେ ଭାଗ ନିଅନ୍ତି। ଶିକ୍ଷକମାନଙ୍କ ମଧ୍ୟରୁ ନନା ଓ ପଣ୍ଡିତେ ଏଥିରେ ଅଂଶ ଗ୍ରହଣ କରନ୍ତି। ପିଲାମାନେ ଦୁଇ ଦଳ ହୋଇ ବସନ୍ତି। ଗୋଟିଏ ଦଳରୁ କେହି ଜଣେ ପଦ୍ୟ ଆବୃତ୍ତି କଲେ, ଉକ୍ତ ପଦ୍ୟର ଶେଷ ଅକ୍ଷରରୁ ଆରମ୍ଭ ହେଉଥିବା ଅନ୍ୟ ଗୋଟିଏ ପଦ୍ୟ ବିପକ୍ଷ ଦଳକୁ ଆବୃତ୍ତି କରିବାକୁ ହୁଏ। ଏହି ରୀତିରେ ଶ୍ଳୋକାନ୍ତ ପ୍ରତିଯୋଗିତା ମଧ୍ୟ କରାଯାଏ। ପ୍ରତିଯୋଗିତାରେ ଯଶସ୍ୱୀ ହେବା ପାଇଁ ଛାତ୍ରମାନଙ୍କୁ ବହୁ ପଦ୍ୟ, ଗୀତ ଓ ଶ୍ଳୋକ କଂଠସ୍ଥ କରିବାକୁ ପଡୁଥାଏ। ସେ କାଳରେ ମଧ୍ୟ-ଇଂରାଜୀ ସ୍ତରରେ ସଂସ୍କୃତ ପଢ଼ା ଯାଉ ନ ଥିଲା, ବର୍ତ୍ତମାନ ବି ହେଉ ନାହିଁ। କିନ୍ତୁ ସଂସ୍କୃତ ଶ୍ଳୋକର ଆବୃତ୍ତି ପ୍ରୌଢ଼ୀ ଓ ସଂସ୍କୃତିର ନିଦର୍ଶନ ରୂପେ ବିବେଚିତ ହେଉଥିଲା। ଏ ସଂକ୍ରାନ୍ତରେ ଗୋଟିଏ ଗଳ୍ପ ମନେ ପଡୁଛି। ସ୍ୱର୍ଗୀୟ ପଣ୍ଡିତ ନୀଳକଂଠ ଦାସ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ତାଙ୍କ ପିଲାଦିନେ ବ୍ରାହ୍ମଣ ସମାଜରେ ଅଳ୍ପ ବୟସରେ ବିବାହ

ପ୍ରଥା ପ୍ରଚଳିତ ଥିଲା। ବିବାହ ଦିନ ଫୁଲ ସଭାରେ ବ୍ରାଇଁ ଏକ ବା ଏକାଧିକ ଶ୍ଳୋକ ବୋଲିବାର ପରଂପରା ଥାଏ। ଅନେକ କ୍ଷେତ୍ରରେ ବାଳକ ବ୍ରାଇଁକୁ ଶ୍ଳୋକ ଜଣା ନ ଥାଏ। ଅବଧାନେ ଶ୍ଳୋକ ଶିଖାଇ ଦିଅନ୍ତି, ବାଳକ ବ୍ରାଇଁ ସେ ଶ୍ଳୋକକୁ ମୁଖସ୍ତ କରି ସଭାରେ ବୋଲନ୍ତି। ଜଣେ ବାଳକ ଅବଧାନଙ୍କ ଠାରୁ ଶିଖି ଫୁଲସଭାରେ ଯେଉଁ ଶ୍ଳୋକ ବୋଲିଥିଲେ, ତାହା ହେଉଛି

ଗର୍ଜନ୍ତି ମେଘାଃ ବର୍ଷନ୍ତି ପାଣି
ଉଠନ୍ତି ବେଙ୍ଗାଃ ବେଳକାଳ ଜାଣି
(ଆତ୍ମଜୀବନୀ - ପୃ-୯୦)

ମୂର୍ଖ ଅବଧାନଙ୍କର ବୋଧହୁଏ ଧାରଣା ଥିଲା, ଓଡ଼ିଆ ଶବ୍ଦରେ ଅନୁସ୍ୱାର ବିସର୍ଗ ଯୋଡ଼ି ଦେଲେ ସଂସ୍କୃତ ହୋଇଯାଏ। ଯାହାହେଉ ଆମ ଶ୍ଳୋକାନ୍ତ ସଭାରେ ଏ ପ୍ରକାରର ଆଧୁନିକ ଶ୍ଳୋକର ପରିବେଷଣ କରାଯାଉ ନ ଥିଲା। ବାର ତେର ବର୍ଷ ବୟସରେ ସଂସ୍କୃତ ଶ୍ଳୋକ କଂଠସ୍ଥ କରିବା ପାଇଁ ଛାତ୍ରମାନେ ପ୍ରୟାସୀ ଥିଲେ। ଶଙ୍କରାଚାର୍ଯ୍ୟଙ୍କର 'ମୋହମୁଦ୍‌ଗର'ରୁ

ନଳିନୀ ଦଳଗତ ଜଳବତ୍ତ ତରଳଂ
ତଦ୍‌ବଜ୍ଜୀବନ ମତିଶୟ ଚପଳଂ
ମା କୁରୁ ଧନଜନ ଯୌବନ ଗର୍ବଂ
ହରତି ନିମେଷାଦ୍ କାଳଃ ସର୍ବମ୍।

ଶ୍ଳୋକଟିକୁ ସୁର ଦେଇ ଗାଇବା ହେତୁ ଥରେ ପୁରସ୍କାର ବିତରଣୀ ସଭାରେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ଠାରୁ ମତେ ପୁରସ୍କାର ମିଳିଥିଲା। ବର୍ତ୍ତମାନ ଏ ସବୁ ଶ୍ଳୋକର ବିନ୍ଦୁ ବିସର୍ଗ ମଧ୍ୟ ମନେ ନାହିଁ। କେବଳ ଗୋଟିଏ ଶ୍ଳୋକ ମନରେ ଛାପ ମାରି ରହିଯାଇଛି।

ନିନ୍ଦନ୍ତୁ ନୀତି ନିପୁଣାଃ, ଯଦି ବା ସ୍ତୁବନ୍ତୁ
ଲକ୍ଷ୍ମୀ ସମାବିଶତୁ ଗଚ୍ଛତୁ ବା ଯଥେଚ୍ଛମ୍
ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା
ନ୍ୟାଯ୍ୟାଦ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ

ଅର୍ଥାତ୍, ନୀତି ବାଗୀଶମାନେ ନିନ୍ଦା କରନ୍ତୁ ବା ପ୍ରଶଂସା କରନ୍ତୁ; ଲକ୍ଷ୍ମୀ ଆସନ୍ତୁ ବା ସଂପୂର୍ଣ୍ଣ ବିଦାୟ ନିଅନ୍ତୁ, ଆଜି ମୃତ୍ୟୁ ହେଉ ବା ଯୁଗ ପରେ ହେଉ, ବିଜ୍ଞ ଲୋକେ ସତ୍ ପଥରୁ ସ୍ଖଳିତ ହୁଅନ୍ତି ନାହିଁ। ଦୀର୍ଘ ଷାଠିଏ ବର୍ଷ ପରେ, ଆଜି ମଧ୍ୟ ମୁଁ ପ୍ରାର୍ଥନା କରୁଛି, ନିନ୍ଦା ପ୍ରଶଂସା, ଲୋଭ ବା ଭୟ ହେତୁ କେହି ସତ୍ ପଥରୁ ବିଚ୍ୟୁତ ନ ହୁଅନ୍ତୁ।

୧୯୩୪ ମସିହାରେ ଆମେ ଷଷ୍ଠ ଶ୍ରେଣୀରେ ପଢ଼ିଲାବେଳେ, ଖବର କାଗଜରେ ବାହାରିଲା, ମଧୁସୂଦନ ଦାସଙ୍କର ପରଲୋକ ହୋଇଯାଇଛି। ଗାଁ ସଭା ସମିତିରେ ଆମେ ବହୁବାର ଗାନ୍ଧୀ ଗୋପବଂଧୁଙ୍କ ନାମ ଶୁଣିଥିଲୁ। କିନ୍ତୁ ମଧୁବାବୁଙ୍କ ସଂପର୍କରେ ସେହି ପୁରୁଣା ଢଗ :

"କାଳିଆ ଘୋଡ଼ାରେ ଚଢ଼ିବି
ମଧୁବାବୁ ସଂଗେ ଲଢ଼ିବି"

ଏହା ଛଡ଼ା ବିଶେଷ କିଛି ଜଣା ନଥିଲା। ସମସ୍ତେ କହୁଥିଲେ, ମଧୁବାବୁ ଜଣେ ବଡ଼ ଓକିଲ, ସେ ଖୁବ୍ ଲଢ଼ି ପାରନ୍ତି। କିନ୍ତୁ ଓକିଲମାନେ ବାହୁବଳରେ ଲଢ଼ନ୍ତି ନା ବୁଦ୍ଧି ବଳରେ ଲଢ଼ନ୍ତି, ସେ କଥା ଆମକୁ ଜଣା ନ ଥାଏ। ସ୍କୁଲରେ ଗୋଟିଏ ଶୋକସଭା ହେଲା। ହେଡ୍‌ମାଷ୍ଟ୍ରେ ଓ ଆଉ ଜଣେ ଶିକ୍ଷକ ତାଙ୍କ ଭାଷଣରେ କହିଲେ, "ଉତ୍କଳର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ନିଭି ଯାଇଛି, ଓଡ଼ିଶାର ନିର୍ମାତା ଆଉ ନାହାନ୍ତି।" କିଛି ଦିନ ପରେ ଆମ ହେଡ୍‌ମାଷ୍ଟର ବାଂଛାନିଧି ବାବୁ ଆମ ସ୍କୁଲରୁ ଇସ୍ତଫା ଦେଇ ଜଗତ୍‌ସିଂପୁର ସ୍କୁଲରେ ଯୋଗ ଦେଲେ। କେହି କେହି କହିଲେ, ଦେଶକୁ ବିପତ୍ତି ସ୍କୁଲ ମୁଣ୍ଡରେ ଗଲା। ଚାତ୍ରାର ଶ୍ରୀ ଚୌଧୁରୀ ନୂଆ ହେଡ୍‌ମାଷ୍ଟର ହୋଇ ଆସିଲେ। ବାହକ ଘୋଡ଼ାର ପରିବର୍ତ୍ତନ ସତ୍ତ୍ୱେ ସ୍କୁଲର ସାମୂହିକ ଜୀବନ ଯାତ୍ରାରେ ବିଶେଷ କିଛି ପରିବର୍ତ୍ତନ ହେଲା ନାହିଁ।

ନୂଆ ହେଡ୍‌ମାଷ୍ଟ୍ରେ ପ୍ରଥମେ ପ୍ରଥମେ ମୋ ଉପରେ ସନ୍ତୁଷ୍ଟ ନ ଥିଲେ। ଆମ ସାଂଗରେ ପଢୁଥିବା ଜାହାନପୁରର ମଥୁରୀ ଭୋଇ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରେ। ତାର ଡ୍ରଇଂ କରିବାର ଦକ୍ଷତା ଚମତ୍କାର। ମଥୁରୀ ଥିଲା ମୋର ଘନିଷ୍ଠ ସାଂଗ। ଆମ ମଧ୍ୟରେ କୌଣସି ପ୍ରକାର ଅସୂୟା ଭାବ ନଥିଲା। କିନ୍ତୁ ହେଡ୍‌ମାଷ୍ଟ୍ରେ ଭାବିଲେ, ହରିଜନ ପିଲାର ଅଧ୍ୟୟନ ପ୍ରତି ଶିକ୍ଷକମାନେ ଅଧିକ ଧ୍ୟାନ ଦେଲେ, ସେ ବୋଧହୁଏ ପ୍ରଥମ ସ୍ଥାନ

ଅଧିକାର କରିବ ଏବଂ ସେ ସେହି ଦିଗରେ ଉଦ୍ୟମ ଆରମ୍ଭ କଲେ। ମୋ ସଂପର୍କରେ ତାଙ୍କର ସମୀକ୍ଷା ବୋଧହୁଏ ଠିକ୍ ନ ଥିଲା। ମୁଁ ପୂର୍ବଭଳି ସବୁ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଚାଲିଲି। ସପ୍ତମ ଶ୍ରେଣୀ ଷାଣ୍ମାସିକ ପରୀକ୍ଷାରେ ଯେ କୌଣସି ଘଟଣା ଉପରେ ଗୋଟିଏ ପ୍ରବଂଧ ଲେଖିବାକୁ ପ୍ରଶ୍ନ ପଡ଼ିଥିଲା। ସେ ଅଂଚଳରେ ନିକଟରେ ଘଟିଥିବା ଏକ ଅପମୃତ୍ୟୁ ଘଟଣା ସଂପର୍କରେ ମୁଁ ପ୍ରବଂଧ ପରିବର୍ତ୍ତେ ଗୋଟିଏ ପଦ୍ୟ ଲେଖିଦେଲି। ପଦ୍ୟ ଲେଖକର ଦକ୍ଷତା ସଂପର୍କରେ ଶିକ୍ଷକମାନଙ୍କ ମଧ୍ୟରେ ଆଲୋଚନା ହେଲା। ସେହି ପ୍ରଶ୍ନ ଉପରେ ଅବଶ୍ୟ ମତେ ନମ୍ବର ମିଳି ନ ଥିଲା, କିନ୍ତୁ ମୋର ପ୍ରଥମ ସ୍ଥାନରେ କୌଣସି ଆଂଚ ଅସିଲା ନାହିଁ। ଜଣେ ଶିକ୍ଷକ ମନ୍ତବ୍ୟ ଦେଲେ, ମୁଁ ଭବିଷ୍ୟତରେ ଭଲ କବିତା ଲେଖି ପାରିବି। ହେଡ୍‌ମାଷ୍ଟ୍ରେ ଅନୁଭବ କଲେ ଯେ ସେ ନିରର୍ଥକ ଭୁଲ ବାଟରେ ଚାଲିଛନ୍ତି। ଏହାପରେ ତାଙ୍କର ମନୋଭାବ ସଂପୂର୍ଣ୍ଣ ବଦଳିଗଲା। ମଥୁରୀ ସହିତ ମୋର ସଂପର୍କ ଶେଷ ପର୍ଯ୍ୟନ୍ତ ସ୍ନେହସିକ୍ତ ଥିଲା। କଲେଜିଏଟ୍ ସ୍କୁଲରେ ସେ ମୋର ସହପାଠୀ ହେଲା। ପ୍ରଥମ ବର୍ଷ ପରୀକ୍ଷାରେ ଆମେ ଦୁହେଁ ପୂର୍ବବତ୍ ପ୍ରଥମ ଦ୍ୱିତୀୟ ହେଲୁ। ତା ପରେ ସେ କେଜାଣି କାହିଁକି ପଛେଇଗଲା। ଆଇ.ଏ. ପଢ଼ିବା ସମୟରେ ସେ ବିବାହ କଲା ଓ ଟେଲିଫୋନ୍ ବିଭାଗରେ ଚାକିରୀ ନେଇ କଲେଜ ଛାଡ଼ିଦେଲା। ଦୁଃଖୀର ଜୀବନ ଦୁଃଖରେ ହିଁ ସମାପ୍ତି ଘଟେ। କେତେ ବର୍ଷ ପରେ ଆମେ ଶୁଣିଲୁ, କୌଣସି ପାରିବାରିକ କନ୍ଦଳ ହେତୁ ସେ ଆତ୍ମହତ୍ୟା କରିଛି।

ସପ୍ତମ ଶ୍ରେଣୀରେ ପଢ଼ିଲା ବେଳେ ପରମ ଦେଶସେବୀ, ଭାରତ ସେବକ ସମାଜର ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ ବିସ୍ମୟକର ପରିସ୍ଥିତିରେ ପରିଚୟ ଘଟିଲା। ସେ ଥରେ ଆସି ଆମ ସ୍କୁଲରେ ପହଂଚିଲେ। ଉପରବେଳା ଛାତ୍ରମାନଙ୍କ ସଭାରେ ଭାଷଣ ଦେଲେ ଏବଂ ସେ ଦିନ ରାତିଟା ସେ ଆମ ସ୍କୁଲରେ କଟାଇଲେ। ଖାଇବା, ପିଇବା ଶୋଇବାରେ ତାଙ୍କର କୌଣସି ବାଛବିଚାର ନ ଥାଏ। ଆମେ ଯେଉଁ କ୍ଲାସ ଘରେ ଶୋଉ, ସେହି ଘରେ ଦୁଇଟା ଡେସ୍କ ଯୋଡ଼ି ସେ ଶୋଇଲେ। ବଡ଼ି ସକାଳୁ ଉଠି ଦେଖିଲୁ, ସାହୁଜୀ ଅନ୍ଧାରରେ ଗୋଟିଏ କବିତା ଲେଖୁଛନ୍ତି। ଟିକିଏ ଆଲୁଅ ହେବାରୁ କବିତାଟି ସେ ପଢ଼ି ଶୁଣାଇଲେ। ଅନ୍ଧାରରେ କିପରି ଲେଖିଲେ ବୋଲି ପ୍ରଶ୍ନ ହେବାରୁ ସେ କହିଲେ ଖାତା ଉପରେ ବାମ ଆଙ୍ଗୁଠିରେ ଚିହ୍ନ ରଖି ଗୋଟିଏ ଧାଡ଼ି ଲେଖିଲା ପରେ, ଆଙ୍ଗୁଠି ତଳକୁ ଘୁଂଚେ ଓ ସେହି ସିଧାରେ ଦ୍ୱିତୀୟ ଧାଡ଼ି ଲେଖାଯାଏ।

ଏହିପରି ଭାବରେ ଲେଖିବାରେ ଲାଇନ ବଙ୍କା ହୋଇପାରେ, କିନ୍ତୁ ଭାବନାର ଉଚ୍ଛ୍ୱାସକୁ ଲିପିବଦ୍ଧ କରିବାରେ ଅସୁବିଧା ହୁଏ ନାହିଁ। ତାଙ୍କ ମତରେ ଭାବନା ଓ କଳ୍ପନା ପାଇଁ ଅନ୍ଧାର ପ୍ରତିବଂଧକ ସୃଷ୍ଟି କରିପାରିବ ନାହିଁ। ପର ଜୀବନରେ ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ମୁଁ ଘନିଷ୍ଠ ସଂପର୍କରେ ଆସିଛି। ୧୯୫୦ ମସିହାରେ ମୋର 'ସଂକେତ ପ୍ରେସ' ନାମରେ ଗୋଟିଏ ଛାପାଖାନା ଥିଲା। ସେହି ପ୍ରେସରେ ଲକ୍ଷ୍ମୀନାରାୟଣ ବାବୁଙ୍କର ମୁଁ ପନ୍ଦର ଖଣ୍ଡି କବିତା ପୁସ୍ତକ ଛପାଇଥିବି। ୧୯୩୫ ମସିହାର ଏ କବିତା ଲେଖା ଘଟଣାଟି ମନେ ପକାଇ ଦେଲେ ସେ କେବଳ ଟିକିଏ ହସି ଦିଅନ୍ତି। ତାଙ୍କ ପରି ସ୍ନେହୀ, ସଦାଚାରୀ ସୁପୁରୁଷ ଭାରତରେ ବିରଳ। ୧୯୬୩ ମସିହାରେ ସେ ଦେହତ୍ୟାଗ କଲେ।

ଏହାର କିଛିଦିନ ପୂର୍ବରୁ ଏପରି ଗୋଟିଏ ଘଟଣା ଘଟିଥିଲା, ଯାହାର ଗୁରୁତ୍ୱ ମୁଁ ସେତେବେଳେ ବୁଝି ପାରି ନ ଥିଲି। ଏବେ ଭାବିଲେ ଦେହ ଶିହରି ଉଠେ। ଆମ ଜେଜେବାପାଙ୍କର ନଈକୂଳେ ଗୋଟିଏ ତେଜେରାତି ଦୋକାନ ଥାଏ। କଟକରୁ ଦୋକାନ ପାଇଁ ସଉଦା କିଣା ହୋଇ ଆସେ। ଥରେ ଜିନିଷ ଆସି ନଈ ଆର ପାରିରେ ରହିଲା ଏବଂ ଜେଜେବାପା ଖବର ଦେଲେ, ଡଂଗା ଆଣିଲେ, ଜିନିଷ ବୋଝାଇ ହୋଇ ଆସିବ। ସେତେବେଳେ ବଢ଼ି ଅନେକ କମି ଯାଇଥାଏ। କିନ୍ତୁ ମଝି ନଈରେ ପ୍ରଖର ସୁଅ ଥାଏ। ଡଂଗାଟା ଆମ ଘରଠାରୁ ଅଧ ମାଇଲିଏ ଉପରକୁ ନେବାକୁ ହେବ। ସେତେବେଳକୁ ପ୍ରାୟ ପାଂଚଟା ହେବ। ଖବର ପାଇ ମୁଁ, ଅକ୍ଷୟ କକେଇ ଓ ଅନ୍ୟ କେତେକ ପିଲା ଡଂଗାରେ ଉଠିଲୁ। କାତ ମାରି ମାରି ମୁଁ ଡଂଗାଟାକୁ କୂଳେ କୂଳେ ଉପରକୁ ନେଉଥାଏ। ହଠାତ୍ ଡଂଗାର ପଛ ମଂଗ କାତ ଉପରେ ଚଢ଼ିଗଲା। ପୋଖତ ନାଉରୀ ଏ ପରିସ୍ଥିତିରେ ଧୀରେ କାତ କାଢ଼ି ଆଣି ଆଉଥରେ ପକାଏ, ନଚେତ୍ କାତ ସହିତ ନାଉରୀକୁ ପାଣିରେ ପଡ଼ିଯିବାକୁ ହେବ। ଡଂଗା ବାହିବାରେ ମୋର ବିଶେଷ ଅଭିଜ୍ଞତା ନ ଥିଲା ବା ପାରଦର୍ଶିତା ନ ଥିଲା। କାତକୁ ଜୋରରେ ଧରି ମଂଗ ମୋଡ଼ି ଦେବାକୁ ମୋର ତାକତ ବି ନ ଥିଲା। ତେଣୁ କାତଟି ଛାଡ଼ି ଦେଲି, ନଚେତ୍ ମତେ ହୁଏ ତ ପାଣିରେ ପଡ଼ିବାକୁ ହୋଇଥାନ୍ତା। ଏହା ଦେଖି ଅନ୍ୟ ପିଲାମାନେ ଡଂଗାରୁ କୂଳକୁ ଡେଇଁ ପଡ଼ିଲେ। ତାଙ୍କ ଦେଖାଦେଖି ମୁଁ ମଧ୍ୟ ଡଂଗାରୁ ଅଳ୍ପ ପାଣିରେ ଡେଇଁ ପଡ଼ିଲି। କେବଳ ଅକ୍ଷୟ କକେଇ ଡଂଗାରୁ ଓହ୍ଲାଇ ପାରିଲା ନାହିଁ। ଆମେ କାତଟା ଡଂଗା ଆଡ଼କୁ ବଢ଼ାଇ ତାକୁ ଧରିବାକୁ କହିଲୁ। ସେ

ଧରି ପାରିଲା ନାହିଁ, କେବଳ ଭୋ ଭୋ ହୋଇ ବଡ଼ ପାଟିରେ କାନ୍ଦିବାକୁ ଆରମ୍ଭ କଲା। ତା କାନ୍ଦଣା ଶୁଣି ସାଇ ଭିତରୁ ପିଲା ମାଇପେ ଆସି ନଈ କୂଳରେ ଜମା ହୋଇଗଲେ। ବେଳ ଗତ ଗତ, ଡଂଗା ମଝି ସୁଅରେ ତଳକୁ ଭାସି ଚାଲିଲା। ଏଣେ ଅକ୍ଷୟର କାତର କାନ୍ଦଣା ବଢ଼ିବାକୁ ଲଗିଲା। କ'ଣ କରିବି କିଛି ଭାବି ପାରୁ ନ ଥାଏ। ନାନା ଦୁଶ୍ଚିନ୍ତାରେ ମୋ ମୁଣ୍ଡ ଘୁରିବାକୁ ଲାଗିଲା। ଡଂଗାଟା ଭାସି ଯାଇ ପାଂଚ ସାତ ମାଇଲ ପରେ ଦେବୀ ନଦୀରେ ପଡ଼ିବ, ସେଠୁ ଭାସିଯିବ ସମୁଦ୍ର ଆଡ଼କୁ। ସବୁ ଅନ୍ଧାର ଦିଶିଲା। ଆଗପଛ ନ ବିଚାରି, ପାଇକଛା ମାରି ମୁଁ ପାଣିକୁ ଲଂଫ ଦେଲି। ଯଦିଓ ମୁଁ ପହଁରା ଜାଣିଥିଲି, କିନ୍ତୁ ସୁଅରେ ପହଁରିବାର ମୋର ଅଭିଜ୍ଞତା ନ ଥିଲା। ଯାହାହେଉ ପହଁରି ପହଁରି କେତେ ସମୟ ପରେ ଡଂଗାକୁ ଧରିଲି। ପଟୁଆ ଡଂଗାର ଦୁଇ ପଟେ ଶିଉଳୀ। ମଝି ନଈରେ ମୁଁ ଡଂଗାରେ ଉଠିବାକୁ ଯେତେଥର ଚେଷ୍ଟା କରେ, ଗୋଡ଼ ଖସିଯାଏ। ଏହିପରି ବହୁବାର ଚେଷ୍ଟା କରିବା ପରେ ଶେଷରେ ଅକ୍ଷୟ ସାହାଯ୍ୟରେ ଡଂଗା ଭିତରକୁ ଚଢ଼ିବାରେ ସମର୍ଥ ହେଲି। ତାପରେ ଆମେ ଦୁଇଜଣ ଗୋଡ଼ରେ ଆହୁଲା ମାରି ମାରି କୂଳକୁ ଆସିଲୁ। ନଈକୂଳେ ଲୋକ ଭରା। ମୋ ବୋଉ ଚୁପ୍ ଚୁପ୍ କାନ୍ଦୁଥାଏ। ଅକ୍ଷୟ ବୋଉର ଆଖି କୃତଜ୍ଞତାରେ ଛଳଛଳ। ମୋର ଏ ଦୁଃସାହସିକତା ପାଇଁ ସମସ୍ତେ ଗାଳି ଦେଲେ। ମୁଁ କିନ୍ତୁ ଜିଦ୍ ଧରିଲି ଯେ, କିଛି ଭୁଲ କରିନାହିଁ। ନନା ଘରେ ନ ଥଲେ। ଅଧଘଣ୍ଟାଏ ପରେ କେଉଁଠୁ ଶୁଣି ଘରେ ପହଂଚିଲେ। ନନା କେବଳ ମୋ ମୁହଁକୁ ବଲବଲ କରି ଚାହିଁଲେ, କିନ୍ତୁ କିଛି କହିଲେ ନାହିଁ। ନନା ବିରକ୍ତ ହେଲେ କି ନାହିଁ, କିଛି ଜାଣି ହେଲା ନାହିଁ। ପରଦିନ ସ୍କୁଲକୁ ଗଲାବେଳକୁ ପୂର୍ବ ସଂଧ୍ୟାର ଘଟଣା ପିଲାଙ୍କ ମଧ୍ୟରେ ଚର୍ଚ୍ଚାର ବିଷୟ ହୋଇଛି।

ସେ ସମୟରେ ସ୍କୁଲ ପରିଚାଳନା ସମିତିର ସଂପାଦକ ଥିଲେ ପାର୍ବତୀ ଚରଣ ଦାସ। କିଛି ଦିନ ପରେ ବୋଧହୁଏ ବିମଳା ଚରଣ ଦାସ ସଂପାଦକ ହେଲେ। ଗୌରୀବାବୁ (ସ୍ୱର୍ଗୀୟ ଗୌରାଂଗ ଚରଣ ଦାସ) ସ୍କୁଲ ପରିଚାଳନା ସହିତ ସଂପୃକ୍ତ ଥାନ୍ତି। ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ "ଗୌରୀ ଭାଇ" ବୋଲି ଡାକନ୍ତି। ସେ ସ୍କୁଲ କଲେଜରେ ଇଂରେଜୀ ପାଠ ପଢ଼ି ନ ଥିଲେ। ବନ୍ଦୋବସ୍ତ ବିଭାଗରେ ସାମାନ୍ୟ କିରାନୀ କାମ କରୁଥିବା ସମୟରେ ଗାନ୍ଧିଜୀଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଝାସ

ଦେଇଥିଲେ। ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ପ୍ରେରଣାରେ ସେ ଚାଷୀ ଆନ୍ଦୋଳନ ଓ ହରିଜନ ଆନ୍ଦୋଳନର ପୁରୋଧା ଥିଲେ। ଜଣେ ନିଷ୍ଠାପର ଦେଶସେବକ ଭାବରେ ତାଙ୍କର ଅଶେଷ ସୁଖ୍ୟାତି ଥିଲା ଏବଂ ଛାତ୍ରମାନେ ମଧ୍ୟ ତାଙ୍କୁ ଖୁବ୍ ଖାତିର କରୁଥିଲେ। ଥରେ ସ୍କୁଲରେ ଖବର ହେଲା, ଗୌରୀ ବାବୁ ନଈ ସୁଅରେ ଭାସି ଯାଉଛନ୍ତି। ଆମେ କେତେ ଜଣ ପିଲା ନଈକୂଳକୁ ଦୌଡ଼ି ଗଲୁ। ପ୍ରକୃତରେ ସେ ଭାସି ଯାଉ ନ ଥିଲେ। ଗାଧୋଇଲା ବେଳେ ସାଂଗମାନଙ୍କ ସହିତ ବାଜି ପକାଇ ନଈ ଆରକୂଳକୁ ପହଁରି ଯାଉଥିଲେ। ତାଙ୍କର ଗୋଟିଏ ହାତ। ଡାହାଣ ହାତ ଜନ୍ମରୁ କହୁଣି ତଳକୁ ନ ଥାଏ। ସେଇ ଗୋଟିଏ ହାତରେ ସେ ବାଗୁଡ଼ି ଖେଳନ୍ତି, ସ୍କୁଲ ପିଲାଙ୍କ ସହିତ ଭଲି ବଲ ଖେଳନ୍ତି ଓ ନଈ ପହଁରନ୍ତି। ସେ ଯେଉଁଠି ନଈକୁ ଡ଼େଇଁଲେ, ତା ଠାରୁ ପ୍ରାୟ ଏକ ମାଇଲ ତଳେ ଆର ପାରିରେ ଉଠିଲେ। ସେତେବେଳେ ନଈ ପୂରା ବଢ଼ି, ପାଣି ଦୁଇକୂଳ ଖାଉଥାଏ। ଅନେକ ବୟସ୍କ ଲୋକେ ଏ ଦୁଃସାହସିକତା ପାଇଁ ତାଙ୍କୁ ଭର୍ତ୍ସନା କଲେ। କିନ୍ତୁ ଏହି ଦୁର୍ଦ୍ଧର୍ଷତା ଥିଲା ତାଙ୍କର ଚରିତ୍ରର ବିଶେଷତ୍ୱ।

ଦିନେ କଥା ପ୍ରସଂଗରେ, ପ୍ରାଠ୍ୟ ପୁସ୍ତକ ଛଡ଼ା ଅନ୍ୟ କ'ଣ ବହି ପଢ଼ିଛି ବୋଲି ଗୌରୀ ବାବୁ ପଚାରିଲେ। ମୁଁ ସେତେବେଳେକୁ କାଳିନ୍ଦି ପାଣିଗ୍ରାହୀଙ୍କ ମାଟିର ମଣିଷ, ଅମର ଚିତା ଓ ମୁକ୍ତାଗଡ଼ର କ୍ଷୁଧା ଏବଂ ଫକୀର ମୋହନଙ୍କ ମାମୁଁ, ଲଛମା ଓ ଛମାଣ ଆଠ ଗୁଣ୍ଠ ଇତ୍ୟାଦି ପଢ଼ି ସାରିଥିଲି। ସେ ଖୁସି ହୋଇ ମହାତ୍ମା ଗାନ୍ଧିଙ୍କ ଆତ୍ମକଥାର ଓଡ଼ିଆ ଅନୁବାଦ, ବୋଧହୁଏ ପ୍ରଥମ ଭାଗ, ପଢ଼ିବାକୁ ଦେଲେ। ମୁଁ ସେ ବହିଟି ସପ୍ତାହକ ମଧ୍ୟରେ ପଢ଼ି ଶେଷ କରିଦେଲି। ଦିନେ ସକାଳେ ଅକ୍ଷୟ ଜକେଇ ଓ ମୁଁ ନାଳକୂଳକୁ ଗାଧୋଇବାକୁ ଯାଉଛୁ, ଦେଖିଲୁ ଗୌରାଂଗ ବାବୁ ଆମ ଗାଁର ଆଉ ଜଣେ ଲୋକ ସହିତ ତରିକୁନ୍ଦ ଚାଲିଛନ୍ତି। ତରିକୁନ୍ଦ ଆମ ଘର ପାଖରୁ ପ୍ରାୟ ପାଂଚ କିଲୋମିଟର ଦୂର। ସେ ଆମକୁ ସାଙ୍ଗରେ ଡାକିନେଲେ। ତରିକୁନ୍ଦରେ ନବ ବାବୁଙ୍କର (ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ) କିଛି ଜମି ଓ ଗୋଟିଏ ଘର ଥାଏ। ସେଠାରେ କୌଣସି ଗୋଳମାଳ ଥିବା ହେତୁ ଗୌରୀ ବାବୁ ବୁଝିବାକୁ ଯାଉଥାନ୍ତି। ନଭେମ୍ବର ମାସ, ଧାନ କଟାକଟି ସରି ନ ଥାଏ। ଆମେ ନାଳ ବଂଧେ ବଂଧେ ଗଲୁ। ଯିବା ଆସିବା ଚାରିଘଣ୍ଟାର ବାଟ। କିନ୍ତୁ ଯାତ୍ରା ହେଲା ଅତି ଚିତ୍ତାକର୍ଷକ ଓ

ଜ୍ଞାନପ୍ରଦ। ଗୌରା ବାବୁ ଗଳ୍ପ ଆରମ୍ଭ କଲେ କଂଗ୍ରେସର ଇତିହାସ ଉପରେ। ୧୮୮୫ ମସିହାରେ ଜଣେ ଉଦାରପନ୍ଥୀ ଇଂରେଜଙ୍କ ସହାୟତାରେ ଜାତୀୟ କଂଗ୍ରେସର ସ୍ଥାପନା। ଧୀରେ ଧୀରେ କଂଗ୍ରେସର ରୂପାନ୍ତର - ଉଦାରପନ୍ଥୀ ଓ ତିଳକଙ୍କ ମଧ୍ୟରେ ସଂଘର୍ଷ - ଦକ୍ଷିଣ ଆଫ୍ରିକାରୁ ଫେରି ଗାନ୍ଧିଜୀଙ୍କର କଂଗ୍ରେସରେ ଯୋଗ ଦାନ - ଚୌରୀ ଚୌରା ହିଂସାକାଣ୍ଡ ଲାଗି ଅସହଯୋଗ ଆନ୍ଦୋଳନର ପ୍ରତ୍ୟାହାର ଓ ୧୯୩୧ ମସିହାରେ ସତ୍ୟାଗ୍ରହ ଆନ୍ଦୋଳନର ପୂର୍ଣ୍ଣାହୁତି ଇତ୍ୟାଦି ସମସ୍ତ ଘଟଣା ସଂପର୍କରେ ସେ ଏକ ନିଖୁଣ ଚିତ୍ର ଦେଲେ। ଏହାର ଦୁଇ ବର୍ଷ ପରେ କଟକରେ ମୁଁ ପଣ୍ଡିତ ଜବାହରଲାଲ ନେହୁରୁଙ୍କ ଆତ୍ମଜୀବନୀର ବଙ୍ଗଳା ଅନୁବାଦ ପଢ଼ିବାର ସୁଯୋଗ ପାଇଥିଲି। ସେତେବେଳେ ବୁଝିଲି, ଗୌରାଙ୍ଗ ବାବୁଙ୍କ ଚିନ୍ତାଧାରା ପଣ୍ଡିତ ନେହୁରୁଙ୍କ ଦ୍ୱାରା ପ୍ରଭାବିତ। ବସ୍ତୁତଃ ୧୯୩୮ ମସିହା ଆଡ଼କୁ ସେ କଂଗ୍ରେସ-ସମାଜବାଦୀ ଗୋଷ୍ଠୀର ସଦସ୍ୟ ହେଲେ।

୧୯୩୫ ମସିହା ଡିସେମ୍ବର ମାସ ଆରମ୍ଭରେ ଆମର ମଧ୍ୟ ଇଂରାଜୀ ପରୀକ୍ଷା ହେଲା। ପଣ୍ଡିତଙ୍କ ସହିତ କଟକ ଆସି ଆମେ ସପ୍ତମ ଶ୍ରେଣୀ ପିଲାମାନେ ପ୍ରାକ୍ଟିସିଂ ସ୍କୁଲରେ ପରୀକ୍ଷା ଦେଲୁ। ପରୀକ୍ଷା ପରେ କିଛି ଦିନ ଘରେ ରହିବାକୁ ହେଲା। ସେହି ବର୍ଷ ବଡ଼ଦିନ ଛୁଟିରେ ଜାତୀୟ କଂଗ୍ରେସର ସୁବର୍ଣ୍ଣ ଜୟନ୍ତୀ ପାଳିତ ହେଉଥାଏ। କଂଗ୍ରେସ ଜନ୍ମ ହେବାର ପଚାଶ ବର୍ଷ ପୂର୍ଣ୍ଣ ହୋଇଥିଲା, ସେଥିପାଇଁ ଆମ ଗାଁରେ ସଭା ଶୋଭାଯାତ୍ରାର ଆୟୋଜନ। ସେ ଦିନ ଶୋଭାଯାତ୍ରାରେ ଯିବାପାଇଁ ମୋର ସଫା ଲୁଗା ଓ କୁର୍ତ୍ତା ନ ଥାଏ। ବ୍ରତଘର ଲାଗି କିଣା ହୋଇଥିବା ପାଟ ସେ ପର୍ଯ୍ୟନ୍ତ ପେଡ଼ିରେ ଥାଏ। ଲାଲ ପାଟ ଧୋତି ପିନ୍ଧି, ବେକରେ ପାଟ ଚାଦର ପକାଇ, ଶୋଭା ଯାତ୍ରାରେ ଆଗେ ଆଗେ ପତାକା ଧରି ମୁଁ ଚାଲିଥିଲି।



# କଟକ ଯାତ୍ରୀ

୧୯୩୬ ମସିହା ଜାନୁୟାରୀ ଦୁଇ ତାରିଖ - ଜୀବନର ଗୋଟିଏ ଅବିସ୍ମରଣୀୟ ଦିନ । ସେ ଦିନ ମୁଁ ଏକା ଏକା ଗାଁରୁ କଟକ ଆସିଲି, ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରିବା ପାଇଁ ।

ଜାନୁଆରୀ ଦୁଇ ତାରିଖର ପାଠପଢୁଆ ପିଲାଙ୍କ ପାଇଁ ବିଶେଷ ଗୁରୁତ୍ୱ ଥିଲା । ନୂଆ ବର୍ଷ ଆରମ୍ଭ ହୁଏ ଜାନୁଆରୀ ପହିଲାରେ । ସେ ଦିନଟା ସବୁଆଡ଼େ ଛୁଟି । ଦୁଇ ତାରିଖ ଦିନ ସ୍କୁଲ, କଲେଜ, ଅଫିସ, କଚେରୀ ସବୁ ଖୋଲେ । ଅନ୍ୟଥା ସେ ଦିନ ରବିବାର ପଡୁ ନ ଥିଲେ, ଦୁଇ ତାରିଖରେ ସ୍କୁଲ କଲେଜ ଖୋଲିବାରେ କୌଣସି ବ୍ୟତିକ୍ରମ ହୁଏ ନାହିଁ । ବଡ଼ଦିନ ଛୁଟି ପରେ ଶିକ୍ଷକ ଅଧ୍ୟାପକ କାମକୁ ଫେରନ୍ତି । ଛାତ୍ରମାନେ ଉପର ଶ୍ରେଣୀରେ ନାମ ଲେଖାନ୍ତି । ସ୍କୁଲ କଲେଜରେ କୋଳାହଳ ଫେରି ଆସେ । ନୂଆ ଆନନ୍ଦ ଉନ୍ମାଦନାରେ ପଢ଼ାପଢ଼ି ଆରମ୍ଭ ହୁଏ ।

ଆଜିକାଲି ଜାନୁଆରୀ ଦୁଇ ତାରିଖର କୌଣସି ଗୁରୁତ୍ୱ ନାହିଁ । ଏବେ ପାଠ ପଢ଼ାର କାର୍ଯ୍ୟାରମ୍ଭ ଜୁନ ଜୁଲାଇରେ ଆରମ୍ଭ ହେଉଛି । କେଉଁ ଦିନ ବିଦ୍ୟାଳୟ ଖୋଲିବ ତା'ର କୌଣସି ନିର୍ଦ୍ଦିଷ୍ଟ ତାରିଖ ନାହିଁ । ପ୍ରତ୍ୟେକ ଅନୁଷ୍ଠାନ ନିଜର ଛୁଟି ତାଲିକା ଅନୁଯାୟୀ ଖୋଲୁଛି । ଜାନୁଆରୀ ଦୁଇର ଝଲକ ଲିଭି ଯାଇଛି ।

ଯାହାହେଉ, ସେଦିନ ସକାଳ ଦଶଟା ବେଳକୁ ନନା, ଘନ ଜଜେଇ ଓ ମୁଁ ଆମ ଗାଁରୁ ଅଣଖିଆ ବସ୍‌ଷ୍ଟାଣ୍ଡକୁ ଆସିଲୁ । ହାତରେ ଗାମୁଛାରେ ବନ୍ଧା ଗୋଟିଏ ପୁଟୁଳୀ । ସେଥିରେ ଖଣ୍ଡିଏ ଧୋତି, କୁର୍ତ୍ତା ଓ ଶୀତ ରାତିରେ ଏକମାତ୍ର ସମ୍ବଳ ଏକ ପତଳା ସାଲ । ପକେଟରେ ଦେଢ଼ଟଙ୍କା । ସେ ଦିନ ବସ୍‌ରେ ଖୁବ୍ ଭିଡ଼ । ଦୁଇ ଘଣ୍ଟା ପରେ ଛୋଟ ଗଣ୍ଠିଲିଟି ଧରି ଏକା ଏକା ବସ୍‌ରେ ଉଠିଲି । ସପ୍ତାହ ଶେଷ ଆଡ଼କୁ କଟକ ଆସିବେ ବୋଲି ନନା ଆଶ୍ୱାସନା ଦେଲେ ।

ଏହା ପୂର୍ବରୁ ମୁଁ ଥରେ କଟକ ଦେଖିଥିଲି । ମାସକ ଆଗରୁ ମାଇନର ପରୀକ୍ଷା ଦେବା ପାଇଁ ପଣ୍ଡିତଙ୍କ ସହିତ ଆମେ କୋଡ଼ିଏ ପଚିଶ ଜଣ ପିଲା କଟକ ଆସିଥିଲୁ । ଟାଉନହଲ ରୋଡ଼୍‌ରେ ଥିବା ଜଣେ ମୁକ୍ତିଆରଙ୍କ ଭଡ଼ାଘରେ

ଆମ୍ଭେମାନେ ରହୁ । ସକାଳୁ ନିତ୍ୟକର୍ମ ପାଇଁ କାଠଯୋଡ଼ୀ ନଈକୂଳକୁ ଯାଉ । ସାଢ଼େ ନ'ଟା ବେଳକୁ ଭାତ, ଡାଲି ଗଣ୍ଡେ ଖାଇ ଟ୍ରେନିଂ ସ୍କୁଲ ସଂଲଗ୍ନ ପ୍ରାକ୍ଟିସିଂ ସ୍କୁଲକୁ ପରୀକ୍ଷା ଦେବାକୁ ଯାଉ । ଗଲାବେଳେ ଟାଉନହଲ ରୋଡ଼ରୁ ନଈକୂଳ ରାସ୍ତାରେ ଯାଉ ଓ ଫେରିଲାବେଳେ ବାଲୁ ବଜାର, ଚୌଧୁରୀ ବଜାର ଦେଇ ବସାକୁ ଫେରୁ । କଟକ ନାଲି ରାସ୍ତା ସହିତ ଏହି ମୋର ପ୍ରଥମ ପରିଚୟ । ସେତେବେଳେ ପିଚୁ ରାସ୍ତା ନ ଥିଲା । ଖାଲ ଢ଼ିପ ନାଲି ରାସ୍ତା । ସ୍କୁଲରୁ ଫେରିଲାବେଳେ ଲୁଗାର ତଳକାନି ନାଲି ଧୂଳିରେ ରଙ୍ଗ ହୋଇଯାଏ । ଘରେ ପହଂଚି ଗାମୁଛା ବଦଳି ଥରେ ଲୁଗା ଝାଡ଼ିଦେଲେ ଅଧପାଏ ଓଜନର ଧୂଳି ଚଟାଣରେ ଜମିଯାଏ ।

ସେଦିନ ଜଗତ୍‌ସିଂପୁର ବସ୍ ଆମକୁ ଗୌରୀଶଙ୍କର ପାର୍କ ନିକଟରେ ଛାଡ଼ିଦେଲା । ସେଠାରୁ ଚାଲିଚାଲି କଚେରୀ ପାଖ କାଠଯୋଡ଼ୀ କୂଳରେ ଅବସ୍ଥିତ ସ୍କୁଲ ବିଭାଗର ଜିଲ୍ଲା ଇନ୍‌ସ୍ପେକ୍ଟରଙ୍କ ଅଫିସରେ ପହଂଚିଲି । ଆମ ଗାଁର କାହ୍ନୁ ଚରଣ ଦାସ, ସେ ଅଫିସରେ ସ୍କୁଲ ସବ୍‌ଇନସ୍ପେକ୍ଟର ପାହ୍ୟାରେ କାମ କରୁଥିଲେ । ସେ ଆମ ଅଂଚଳର ପ୍ରଥମ ଗ୍ରାଜୁଏଟ । ବହୁ ଛାତ୍ରଙ୍କୁ ଉଚ୍ଚ ଶିକ୍ଷା ପାଇବାରେ ନାନା ଭାବରେ ସାହାଯ୍ୟ କରୁଥିଲେ । ସେ ଥିଲେ ନନାଙ୍କର ଘନିଷ୍ଠ ବଂଧୁ ଏବଂ କଲେଜିଏଟ୍ ସ୍କୁଲରେ ନାମ ଲେଖାଇବାର ବ୍ୟବସ୍ଥା କରିଦେବା ପାଇଁ ନନା ତାଙ୍କୁ ଅନୁରୋଧ କରିଥିଲେ । କାହ୍ନୁ ବାବୁଙ୍କ ସହିତ କଲେଜିଏଟ୍ ସ୍କୁଲ ଯିବା ପାଇଁ ବାହାରିଛୁ, ହଠାତ୍ ଜଣେ ଗୋରା ତକ୍‌ତକ୍ ସାହେବ ଚେହେରାର ହାଫ୍‌ପ୍ୟାଣ୍ଟ ହାଫ୍‌ସାର୍ଟ ପିନ୍ଧିଥିବା ଭଦ୍ରଲୋକ ଅଫିସରୁ ବାହାରିଲେ । କାହ୍ନୁ ବାବୁ ମତେ ତାଙ୍କ ସହିତ ପରିଚୟ କରାଇଦେଇ କହିଲେ, ''ଗଂଗାଧର ଏଥର ଆମ ଗାଁ ମାଇନର ସ୍କୁଲରୁ ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରି ସ୍କଲାରସିପ୍ ପାଇଛି ।'' ଯାହାଙ୍କ ସହିତ ପରିଚୟ କରାଇ ଦେଲେ, ସେ ହେଉଛନ୍ତି ଭକ୍ତକବି ମଧୁସୂଦନ ରାଓଙ୍କର ତୃତୀୟ ପୁତ୍ର ସୁକାନ୍ତ ରାଓ, କଟକର ସ୍କୁଲ ଇନ୍‌ସ୍ପେକ୍ଟର । ସୁକାନ୍ତ ବାବୁ ମୋ ମୁଣ୍ଡରେ ହାତ ବୁଲାଇ କହିଲେ, ''ମୁଁ ତ ଦୁଇବର୍ଷ ତଳେ ଲେଖି ଦେଇ ଆସିଥିଲି, ଏ ପିଲା ନିଶ୍ଚୟ ସ୍କଲାରସିପ ପାଇବ । ମୁଁ ଭାରି ଖୁସି ଯେ ମୋର ଭବିଷ୍ୟତ ବାଣୀ ସଫଳ ହୋଇଛି ।

ସେ କାଳରେ ଜିଲ୍ଲା ସ୍କୁଲ ଇନ୍‌ସ୍ପେକ୍ଟର ପଦର ପ୍ରତିଷ୍ଠା ଥାଏ । ବିହାର ଓଡ଼ିଶା ପ୍ରଦେଶ ପାଇଁ ଜଣେ ଡ଼ିରେକ୍ଟର । ତାଙ୍କ ଅଧୀନରେ ଓଡ଼ିଶା ଡ଼ିଭିଜନ

ପାଇଁ ଜଣେ ମାତ୍ର ଇନ୍‌ସ୍ପେକଟର ଓ ତାଙ୍କ ତଳେ ଦୁଇ ତିନି ଜଣ ଜିଲ୍ଲା ଇନ୍‌ସ୍ପେକଟର । ଏହା ବ୍ୟତୀତ ଶିକ୍ଷକ ଓ ଛାତ୍ରମାନଙ୍କ ଦୃଷ୍ଟିରେ ସୁକାନ୍ତ ବାବୁଙ୍କର ଖାତିର୍ ଅନେକ ବେଶି । ମଧୁବାବୁଙ୍କ ପୁଅ ହେବାର ସୌଭାଗ୍ୟ, ହୁଏତ ତାର ଅନ୍ୟତମ କାରଣ ହୋଇପାରିଥାଏ । ଅକ୍ଷର ଶିକ୍ଷା ଠାରୁ ଓଡିଆ ଭାଷାରେ ସମ୍ୟକ୍ ଜ୍ଞାନ ପାଇଁ ଛାତ୍ରମାନଙ୍କୁ ମଧୁସୂଦନ ରାଓଙ୍କ ପାଠ୍ୟପୁସ୍ତକ ପଢ଼ିବାକୁ ହୋଇଥାଏ । ବାଳବୋଧ, ଶିଶୁବୋଧ ଠାରୁ ଆରମ୍ଭ କରି ସାହିତ୍ୟ ପ୍ରସଙ୍ଗ ପଢ଼ିଲା ପରେ ବି.ଏ. ପର୍ଯ୍ୟନ୍ତ ଓଡ଼ିଆରେ ଛାତ୍ରମାନଙ୍କୁ ବିଶେଷ ପରିଶ୍ରମ କରିବାକୁ ପଡ଼େ ନାହିଁ । "ରେ ଆତ୍ମନ୍, ନିଦ୍ରା ପରିହରି, ଫେଡ଼ି ଚିନ୍ତାର ଲୋଚନ, କର କର ନିରୀକ୍ଷଣ, ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କିପରି, ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ" ପଢ଼ିବା ପରେ ମନେ ହୁଏ, ଯେପରି ସାହିତ୍ୟ ସାଧାନାର ଅନ୍ତିମ ପାହାଚରେ ପହଂଚିବାକୁ ଆଉ ଅଳ୍ପ ବାଟ ଅଛି । ମଧୁବାବୁଙ୍କ କବି ପ୍ରତିଭାର ଝଲକ ତାଙ୍କ ପୁତ୍ର କନ୍ୟା ମାନଙ୍କଠାରେ କେତେକାଂଶରେ ପ୍ରତିଫଳିତ ହୋଇଥିଲା ।

ସୁକାନ୍ତ ରାଓ ବାଗଲପୁର ମାଇନର ସ୍କୁଲ ପରିଦର୍ଶନରେ ଯାଇଥିଲେ, ବୋଧହୁଏ ୧୯୩୪ ମସିହା ଏପ୍ରିଲ ମାସରେ । ମୁଁ ଷଷ୍ଠ ଶ୍ରେଣୀରେ ପଢୁଥାଏ । କାନ୍ଥରେ ଇୟୁରୋପର ଗୋଟିଏ ମାନଚିତ୍ର ଝୁଲୁଥିଲା ଏବଂ ଭୂଗୋଳ ଶିକ୍ଷକ ପଢ଼ାଇବା ସମୟରେ ସୁକାନ୍ତ ବାବୁ କ୍ଲାସରେ ପ୍ରବେଶ କଲେ । ଯେତେଦୂର ମନେ ଅଛି, ଇନ୍‌ସ୍ପେକ୍ଟର ସୋଭିୟେତ ରୁଷିଆର ନାମ ନ ଧରି, ତାର ସମାଜ ବ୍ୟବସ୍ଥା ସଂପର୍କରେ କେତେକ ପ୍ରଶ୍ନ ପଚାରିଥିଲେ ଓ ମୁଁ ତାର ଉତ୍ତର ଦେଇଥିଲି । କ୍ଲାସ ପରିଦର୍ଶନ ଶେଷ କରି ଇନ୍‌ସ୍ପେକ୍ଟର ହେଡ୍‌ମାଷ୍ଟ୍ରଙ୍କ ଅଫିସରେ ମୋ ସଂପର୍କରେ ଲେଖି ଦେଇଗଲେ, "ଏ ପିଲା ବିଚକ୍ଷଣ ଭାବରେ ମୋର ସବୁ ପ୍ରଶ୍ନର ଉତ୍ତର ଦେଇଛି । ମୋର ବିଶ୍ୱାସ ଏ ନିଶ୍ଚୟ ସ୍କଲାରସିପ ପାଇବ ।" ତାଙ୍କ ଲିଖିତ ମନ୍ତବ୍ୟରେ ସ୍କୁଲରେ ଚହଳ ପଡ଼ି ଯାଇଥିଲା । ପାଖଆଖ ଗାଁରେ ତାହା କେତେଦିନ ଆଲୋଚ୍ୟ ବିଷୟ ହେଲା । ସେତେବେଳେ ମୁଁ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲି ଯେ ପଚାଶ ବର୍ଷ ପରେ ମଧୁରାଓଙ୍କ ନାତି ଓ ସୁକାନ୍ତ ବାବୁଙ୍କର ବଡ଼ ଭାଇଙ୍କ ପୁଅ ଡାକ୍ତର ପାର୍ଥ ରାଓ ମୋର ସମୁଦୀ ହେବେ ଏବଂ ତାଙ୍କ ଝିଅ ପିକୁ ସହିତ ମୋର ସାନ ପୁଅ ଜୟନ୍ତର ବିବାହ ହେବ ।

ଆମ ପିଲାଦିନେ ମାଇନର ପରୀକ୍ଷାରେ ବୃତ୍ତି ହାସଲ କରିବା ଏକ ବିଶେଷ ଯୋଗ୍ୟତା ରୂପେ ବିବେଚିତ ହେଉଥିଲା । ବହୁ ମେଧାବୀ ଛାତ୍ର ଏହି ବୃତ୍ତି ଫଳରେ ଉଚ୍ଚ ବିଦ୍ୟାଳୟରେ ପଢ଼ିବାକୁ ସମର୍ଥ ହେଉଥିଲେ । ନଚେତ୍ ଦାରିଦ୍ର୍ୟର କଷାଘାତରେ ହୁଏତ ସେମାନଙ୍କର ପାଠ ପଢ଼ାରେ ଡ଼ୋରି ବନ୍ଧା ହେଉଥାନ୍ତା । କିନ୍ତୁ ଏହି ସରକାରୀ ଅନୁଗ୍ରହ ଥିଲା ସମୁଦ୍ରକୁ ଶଙ୍ଖେ ପାଣି ପରି । ଉଦାହରଣ ସ୍ୱରୂପ, ସେତେବେଳେ କଟକ ଜିଲ୍ଲାର ଲୋକସଂଖ୍ୟା ଥିଲା ପ୍ରାୟ କୋଡ଼ିଏ ଲକ୍ଷ । ଅଥଚ ସାରା ଜିଲ୍ଲାର ମଧ୍ୟ ଇଂରାଜୀ ପାସ କରୁଥିବା ଛାତ୍ରଛାତ୍ରୀମାନଙ୍କ ପାଇଁ ମାତ୍ର ଦଶଟି ମାସିକ ପାଂଚ ଟଂକିଆ ବୃତ୍ତିର ବ୍ୟବସ୍ଥା ଥିଲା ।

ଯାହାହେଉ, ସୁକାନ୍ତ ବାବୁଙ୍କ ସହିତ ଏହି ଅପ୍ରତ୍ୟାଶିତ ସାକ୍ଷାତ ଓ ତାଙ୍କର ଆଶୀର୍ବାଦ ସଂଭାରରେ ମୋର ଗଣ୍ଠିଲିର ଓଜନ ବଢ଼ିଗଲା । କଲେଜିଏଟ୍ ସ୍କୁଲରେ ପହଂଚିଲା ବେଳକୁ ପ୍ରାୟ ସାଢ଼େ ତିନିଟା । କଲେଜିଏଟ୍ ସ୍କୁଲ ସେତେବେଳେ ଓଡ଼ିଶାର ସର୍ବ ବିଖ୍ୟାତ ଉଚ୍ଚ ଇଂରାଜୀ ବିଦ୍ୟାଳୟ । ଓଡ଼ିଶାର ବହୁ ବଶିଷ୍ଟ ଲୋକ ଏହି ଅନୁଷ୍ଠାନରେ ଶିକ୍ଷାଲାଭ କରିଛନ୍ତି । ସୁଭାଷ ଚନ୍ଦ୍ର ବୋଷ ଏହି ସ୍କୁଲର ପୁରାତନ ଛାତ୍ର । ଶତାବ୍ଦୀର ପ୍ରାରଂଭରେ ରେଭେନ୍ସା କଲେଜ ଏହି କଲେଜିଏଟ୍ ସ୍କୁଲ ହତାରେ ଚାଲୁଥିଲା । ପରେ କଲେଜ ଚାଉଳିଆଗଂଜକୁ ସ୍ଥାନାନ୍ତରିତ ହୋଇଛି । ୧୯୩୬ ମସିହା ପ୍ରାରମ୍ଭରେ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଏହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲେ । ସେ ହେଲେ ସ୍ୱର୍ଗୀୟ ବିଶ୍ୱମ୍ଭର ମିଶ୍ର । ଜଣେ ଦକ୍ଷ ପ୍ରଶାସକ ଓ ସୁଯୋଗ୍ୟ ଅଥଚ ଛାତ୍ରବତ୍ସଳ ଶିକ୍ଷକ ରୂପେ ତାଙ୍କର ଅଶେଷ ଖ୍ୟାତି ଥିଲା । କାହ୍ନୁ ବାବୁ ମତେ ପ୍ରଧାନ ଶିକ୍ଷକଙ୍କ ପାଖକୁ ନେଇ ନାମ ଲେଖାଇବାର ଅନୁମତି ଲୋଡ଼ିଲେ । ବିଶ୍ୱମ୍ଭର ବାବୁ ଅଳ୍ପ କଥାରେ କହିଲେ, ସ୍କଲାରସିପ୍ ତ ପାଇଛି, ଫ୍ରି ଷ୍ଟୁଡ଼େଣ୍ଟସିପ୍ ପାଇଁ ଦରଖାସ୍ତ କରୁ । ତହିଁ ପରଦିନ, ଜାନୁଆରୀ ତିନି ତାରିଖରେ ରେଭେନ୍ସା କଲେଜିଏଟ୍ ସ୍କୁଲର ଅଷ୍ଟମ ଶ୍ରେଣୀରେ ମୋର ନାମ ଲେଖାହେଲା ।



# ମଫସଲିଆ

କଲେଜିଏଟ୍ ସ୍କୁଲରେ ଜୀବନର ଏକ ନୂଆ ପର୍ବ ଆରମ୍ଭ ହେଲା । କଟକବାସୀଙ୍କ ଜୀବନ-ଯାତ୍ରା ସହିତ ପରିଚିତ ହେବା ପାଇଁ ବେଶି ସମୟ ଲାଗିଲା ନାହିଁ । କିନ୍ତୁ ଗାଁରୁ ସିଧା ଆସି କଟକର ସାମାଜିକ ଜୀବନରେ ନିଜକୁ ମିଶାଇ ଦେବା ସଂଭବ ନ ଥିଲା । ଗାଁର ପରିବେଶ, ଗାଁର ପାଣି ପବନ, ନଈ ନାଳ, ପୋଖରୀ, ଆମ୍ବତୋଟା, ଠାକୁର ମନ୍ଦିର, କଟକରେ ହେଲା ସ୍ୱପ୍ନ । ଗାଁ ଲୋକଙ୍କ ପରସ୍ପର ସ୍ନେହ, ଆସକ୍ତି, ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ, ସୁଖ ଦୁଃଖ, ଆପଦ ବିପଦରେ ଭାଗୀଦାର ହେବା ପାଇଁ ଆଗ୍ରହ, ସବୁ କିଛି ରହିଗଲା ସ୍ମୃତିର ଫରୁଆରେ । କଟକର ସ୍ଥାୟୀ ବାସିନ୍ଦାଙ୍କର ବେଶଭୂଷା, ଚାଲିଚଳଣୀ ଓ ରଂଗଢ଼ଂଗ ଥିଲା ଆମଠାରୁ ସଂପୂର୍ଣ୍ଣ ଭିନ୍ନ ।

ଏଣେ ସ୍କୁଲରେ ସହପାଠୀ ହେଲେ ଅଭିଜାତ ଶ୍ରେଣୀର ପିଲାମାନେ । ଅଥଚ ମୁଁ ଓ ମୋ ପରି ମଫସଲ ସ୍କୁଲମାନଙ୍କରୁ ଆସିଥିବା ଅଧିକାଂଶ ଛାତ୍ର ଥିଲେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର । ସେତେବେଳେ ବିହାର ଓଡ଼ିଶା ଗୋଟିଏ ପ୍ରଦେଶ ଥିଲା । ବିହାରରୁ ଆସିଥିବା ବହୁ ବଂଗଳାଭାଷୀ ଉଚ୍ଚ ପଦସ୍ଥ ଅଫିସର କଟକରେ ଚାକିରୀ କରୁଥିଲେ । ସେମାନଙ୍କର ପିଲାମାନେ କଲେଜିଏଟ୍ ସ୍କୁଲର ଛାତ୍ର । କଲେଜ ଅଧ୍ୟାପକ, ଉଚ୍ଚ ସରକାରୀ କର୍ମଚାରୀ ଓ ପ୍ରତିଷ୍ଠିତ ଡାକ୍ତର ଓ ଓକିଲଙ୍କ ଘରର ପିଲାମାନେ କଲେଜିଏଟ୍ ସ୍କୁଲରେ ପଢ଼ନ୍ତି । ପ୍ରତି ଶ୍ରେଣୀରେ ଦୁଇଟି ସେକ୍‌ସନ୍ ଥାଏ । 'ଏ' ସେକ୍‌ସନ୍‌ରେ ଆମ ସହିତ ମୁଖ୍ୟତଃ ବଂଗାଳୀ ଛାତ୍ରମାନେ ଅଧ୍ୟୟନ କରୁଥାନ୍ତି । କଲେଜ ଛକ ଓ ମେଡ଼ିକାଲ ଆଡୁ ଆସୁଥିବା କେତେକ ଛାତ୍ର ଘୋଡ଼ାଗାଡ଼ିରେ ଆସନ୍ତି, କେତେକ ସାଇକେଲରେ ମଧ୍ୟ ଏବଂ ଆମ ପରି ମଫସଲି ଛାତ୍ରମାନଙ୍କର ବାହନ ହେଲା ଆପଣାର ପାଦ । ହାଫ୍‌ପ୍ୟାଣ୍ଟ ହାଫସାର୍ଟ କେତେକଙ୍କ ପରିଧାନ, ମାତ୍ର ଆମ ପରି ଛାତ୍ରମାନେ ଧୋତି ଓ ସାର୍ଟ ପିନ୍ଧନ୍ତି । ଖାଲି ପାଦରେ ଚାଲି ଚାଲି ଆମେ ସ୍କୁଲକୁ ଆସୁ । ମୋର ମନେ ଅଛି, ସ୍କୁଲରେ ନାମ ଲେଖାଇବାର ଚାରିମାସ ପରେ ମୁଁ ପ୍ରଥମେ ଚଟି ହଳେ କଣିଲି । ଆମେ ଥିଲୁ ଅନ୍ୟମାନଙ୍କ ତୁଳନାରେ ପଛୁଆ ଓ ଗାଉଁଲୀ ।

ଏହି ଗାଉଁଲୀ ପିଲାଙ୍କୁ ହେୟ ଜ୍ଞାନ କରିବା ସହରୀ ପିଲାଙ୍କ ପକ୍ଷରେ ସ୍ୱାଭାବିକ । ଖେଳ ପଡ଼ିଆରେ ଆମକୁ ଖେଳିବାର ସୁଯୋଗ ମିଳେ ନାହିଁ ।

ସନ୍‌ସାଇନ୍ ଫିଲଡ୍‌ରେ ଆମେ ଫୁଟବଲ୍ ମାରିବାକୁ ଚେଷ୍ଟା କରିବା ମାତ୍ରେ, ପଡ଼ିଆରୁ ମଫସଲିଆ ବଲ୍ ମାରିଲେ ବୋଲି ଚିତ୍କାର ଉଠେ । ଏପରି କି କ୍ଲାସରେ ମଧ୍ୟ ଅଭିଜାତ ଶ୍ରେଣୀର ପିଲାମାନେ ଆଗ ବେଂଚରେ ବସନ୍ତି । କେବଳ ପାଠ ପ୍ରତି ସଂପୂର୍ଣ୍ଣ ଅନାସକ୍ତ ଓ ଶିକ୍ଷକମାନଙ୍କୁ ଭୟ କରୁଥିବା କେତେକ ଛାତ୍ର ଆମ ସହିତ ପଛ ବେଂଚରେ ବସନ୍ତି । ଶିକ୍ଷକ ମାନଙ୍କର ମଧ୍ୟ ପଛ ବେଂଚ ପ୍ରତି ବିଶେଷ ନଜର ନ ଥାଏ । ଗାଁ ମାଇନର ସ୍କୁଲ ଶିକ୍ଷକ ମାନଙ୍କର ଆନ୍ତରିକତା, ପ୍ରତ୍ୟେକ ଛାତ୍ର ସହିତ ବ୍ୟକ୍ତିଗତ ସଂପର୍କ, ତାର ପଢ଼ାପଢ଼ି ଓ ଅଭାବ ଅସୁବିଧା ସଂପର୍କରେ ଶିକ୍ଷକଙ୍କର ପ୍ରତ୍ୟକ୍ଷ ଜ୍ଞାନ କଟକରେ ପରିଦୃଷ୍ଟ ହେଲା ନାହିଁ । ମନେ ହେଲା, ଶିକ୍ଷକମାନେ ଯେପରି ଆମ ପ୍ରତି ସଂପୂର୍ଣ୍ଣ ଅନାସକ୍ତ । ମାତ୍ର ଅଳ୍ପ କେତେ ମାସ ପରେ ଆମ୍ଭେମାନେ ଅଭିଜ୍ଞତାରୁ ଜାଣିଲୁ, ଏପରି ଧାରଣା ଥିଲା ସଂପୂର୍ଣ୍ଣ ଭ୍ରମାତ୍ମକ ।

ସେତେବେଳେ କଲେଜିଏଟ୍ ସ୍କୁଲରେ ବହୁ ବିଶିଷ୍ଟ ଶିକ୍ଷାବିତ୍, କବି ଓ ଲେଖକ ଶିକ୍ଷକତା କରୁଥିଲେ । ସବୁଜ ଯୁଗର ପ୍ରଖ୍ୟାତ ଦରଦୀ କବି ବୈକୁଣ୍ଠ ନାଥ ପଟ୍ଟନାୟକ ଥିଲେ ଆମର ଇଂରାଜୀ ଶିକ୍ଷକ । ସୁବିଖ୍ୟାତ ପାଠ୍ୟ ପୁସ୍ତକ ରଚୟିତା ଲଳିତ ମୋହନ ଘୋଷ ଓ ମୌଲବୀ ହମିଦ୍ ଖାଁ ଥିଲେ ଆମର ଭୂଗୋଳ ଶିକ୍ଷକ । ସୁଲେଖକ ପଣ୍ଡିତ କୁଳମଣି ଦାଶ ଥିଲେ ଆମର ସଂସ୍କୃତ ଶିକ୍ଷକ ଓ ବିଶିଷ୍ଟ ଚିତ୍ରଶିଳ୍ପୀ ଗୋପାଳ ଚନ୍ଦ୍ର କାନୁନ୍‌ଗୋ ଥିଲେ ଆମର ଡ୍ରଇଂ ଶିକ୍ଷକ । ପ୍ରକୃତ କଥା ହେଲା ଆମର ପଛୁଆ ଢଂଗ ଓ ହୀନମନ୍ୟ ସ୍ୱଭାବ ହେତୁ ଆମେ ପ୍ରଥମ ଅବସ୍ଥାରେ ଏହି ସୁପ୍ରସିଦ୍ଧ ଶିକ୍ଷକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରୁ ନ ଥିଲୁ । ଗୋପାଳ ଚନ୍ଦ୍ର ସିହ୍ନା ଓ ଫନୀନ୍ଦ୍ର ନାଥ ଦାସଙ୍କ ପରି ଶିକ୍ଷକମାନଙ୍କଠାରୁ ଆମ୍ଭେମାନେ ଦୂରେଇ ରହୁଥିଲୁ ।

ପାଠପଢ଼ା ଦୃଷ୍ଟିରୁ କଲେଜିଏଟ୍ ସ୍କୁଲର ସ୍ଥାନ ଥିଲା ସମସ୍ତଙ୍କ ଆଗରେ । ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟ ମାଟ୍ରିକ ପରୀକ୍ଷା ପରିଚାଳନା କରୁଥିଲେ । ମ୍ୟାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରତିବର୍ଷ କଲେଜିଏଟ୍ ଛାତ୍ରମାନେ ବୃତ୍ତି ଲାଭ କରୁଥିଲେ । ସୁଯୋଗ୍ୟ ଶିକ୍ଷକମାନଙ୍କର ସମୁଚିତ ଅବଦାନ ଏହାର ଅନ୍ୟତମ କାରଣ । ୧୯୩୬ ମସିହାରେ ପୂର୍ବବର୍ଷ ମାଇନର ସ୍କଲାରସିପ୍ ପାଇଥିବା ଦଶଜଣ ଛାତ୍ରଙ୍କ ମଧ୍ୟରୁ ନ'ଜଣ କଲେଜିଏଟ୍ ସ୍କୁଲରେ ନାମ ଲେଖାଇଥିଲେ । ଏ ସମସ୍ତଙ୍କ ପ୍ରତି ଏହି ସୁଯୋଗ୍ୟ ଶିକ୍ଷକମାନେ ବୀତସ୍ପୃହ ହୁଅନ୍ତେ କାହିଁକି ?

ଅସଲ କଥା, ଆମର ଗାଉଁଲିଆ ଢଂଗ ହେତୁ ଆମେ ସହଜରେ ଅନ୍ୟମାନଙ୍କ ସହିତ ମିଶି ପାରୁ ନ ଥିଲୁ । କିନ୍ତୁ ତିନି ଚାରି ମାସ ମଧ୍ୟରେ କ୍ରମାଗତ ଏପରି କେତେକ ଘଟଣା ଘଟିଲା, ଯାହା କି ଓଡ଼ିଶାର ଜଳବାୟୁରେ କ୍ରାନ୍ତିକାରୀ ପରିବର୍ତ୍ତନ ସୃଷ୍ଟି କଲା ଓ ତା ସହିତ ଲୋପ ପାଇଲା ଆମର ଦୟନୀୟ ହୀନମନ୍ୟତା ।

୧୯୩୬ ଏପ୍ରିଲ ପହିଲା ତାରିଖରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଘୋଷିତ ହେଲା । ସିଂହଭୂମି, ମେଦିନୀପୁରର କେତେକ ଅଂଶ ଓ ଦକ୍ଷିଣର କେତେକ ଉପାନ୍ତ ଅଂଚଳ ବାଦ୍ ରହିଗଲେ ମଧ୍ୟ, ଓଡ଼ିଶାର ବହୁ ବରପୁତ୍ରଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେ ବ୍ରିଟିଶ ସରକାର ଓଡ଼ିଶାକୁ ବିହାରରୁ ବିଚ୍ଛିନ୍ନ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କଲେ । ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ପ୍ରଦେଶରୁ ଅଲଗା ହୋଇ ଓଡ଼ିଶାରେ ମିଶିଲା । ଏପ୍ରିଲ ପହିଲା ସକାଳେ ନୂତନ ଗଭର୍ଣ୍ଣର ସାର୍ ଜନ୍ ହବାକ୍ ସେଲୁନରେ ଆସି କଟକ ଷ୍ଟେସନରେ ଓହ୍ଲାଇଲେ । ତୋପ ଧ୍ୱନି ଦ୍ୱାରା ତାଙ୍କୁ ଉଚ୍ଛ୍ୱସିତ ସଂବର୍ଦ୍ଧନା ଦିଆଗଲା । ଅନ୍ୟମାନଙ୍କ ସହିତ ଆମେ ଛାତ୍ରମାନେ ଏହି ସଂବର୍ଦ୍ଧନାରେ ବହୁ ସଂଖ୍ୟାରେ ଯୋଗ ଦେଇଥିଲୁ । ପରେ ରେଭେନ୍ସା କଲେଜରେ ସୁସଜ୍ଜିତ ମଣ୍ଡପରେ ସେ ଗଭର୍ଣ୍ଣର ପଦର ଶପଥ ନେଲେ । ସାଢ଼େ ଛ' ଫୁଟିଆ ମାନ୍‌ସଫିଲଡ୍ ସାହେବ ଓଡ଼ିଶାର ପ୍ରଥମ ଚିଫ୍ ସେକ୍ରେଟାରୀ ହେଲେ । ଇଂରେଜମାନେ ଏପ୍ରିଲ୍ ପହିଲାକୁ 'ଫୁଲ୍‌ସ୍ ଡ଼େ' ବା ବୋକାଙ୍କ ଦିନ ବୋଲି ଅଭିହିତ କରନ୍ତି । ଅନେକେ ଯଥାର୍ଥରେ ପରିହାସ କଲେ, ବହୁ ଓଡ଼ିଆ-ଭାଷୀ ଅଂଚଳକୁ ବାଦ୍ ଦେଇ, ନୂଆ ପ୍ରଦେଶ ନାମରେ ଇଂରେଜମାନେ ଓଡ଼ିଆଙ୍କୁ ବୋକା ବନାଇ ଅଛନ୍ତି । ଯେଉଁ ସଂଗ୍ରାମୀ ଉତ୍କଳୀୟ ବରପୁତ୍ରଙ୍କ ଉଦ୍ୟମରେ ନୂଆ ପ୍ରଦେଶ ଗଠନର ଭିତ୍ତି ପଡ଼ିଥିଲା, ସେମାନଙ୍କ ମଧ୍ୟରୁ ଅନେକେ ସେତେବେଳେକୁ ଇହଧାମରୁ ବିଦାୟ ନେଇଥିଲେ । ୧୯୨୮ ମସିହାରେ ଉତ୍କଳମଣି ଗୋପବଂଧୁ ଦାସଙ୍କର ଅକାଳ ବିୟୋଗ ହୋଇଥିଲା । ୧୯୩୪ରେ କୁଳବୃଦ୍ଧ ମଧୁସୂଦନ ଦେହତ୍ୟାଗ କରିଥିଲେ । ପଣ୍ଡିତ ନୀଳକଂଠ ପ୍ରଭୃତି କେତେଜଣଙ୍କୁ ବାଦ୍ ଦେଲେ, ଓଡ଼ିଆ ନେତାଙ୍କ ମଧ୍ୟରୁ ବଂଚି ରହିଥିଲେ କେତେକ ଉଦାରପନ୍ଥୀ ବ୍ରିଟିଶ-ସହଯୋଗୀ ରାଜା ବାହାଦୁର, ରାୟ ବାହାଦୁର ଗୋଷ୍ଠୀର ନେତୃବୃନ୍ଦ । ବସ୍ତୁତଃ, ଏହି ବାହାଦୁର ଉମେଦାରମାନେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ବାହାଦୁରୀ ନେବାକୁ ପଶ୍ଚାତ୍‌ପଦ ହେଲେ ନାହିଁ ।

ସେ ଯାହାହେଉ, ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପରେ ଓଡ଼ିଶାରେ ଓଡ଼ିଆମାନଙ୍କର ପ୍ରାଧାନ୍ୟ ବଢ଼ିଲା । ପରବର୍ତ୍ତୀ କାଳରେ ଜନ୍ମଲାଭ କରିଥିବା ଲୋକେ ଏହି ପ୍ରାଧାନ୍ୟର ପାର୍ଥକ୍ୟ ଉପଲବ୍ଧି କରିପାରିବେ ନାହିଁ । ମାତ୍ର ଅନୁଭବୀ ମାତ୍ରେ ତାହା ବୁଝି ପାରିବେ । ପ୍ରଥମ ଥର ପାଇଁ ରେଭେନ୍ସା କଲେଜର ଓଡ଼ିଆ ପ୍ରିନ୍ସିପାଲ ହେଲେ ଭାରତୀୟ ଏଡୁକେସନ ସର୍ଭିସର ଶ୍ରୀ ଶ୍ୟାମଚନ୍ଦ୍ର ତ୍ରିପାଠୀ । ଶାସନ କ୍ଷେତ୍ରରେ ମଧ୍ୟ ବହୁ ପରିବର୍ତ୍ତନ ହେଲା । ପାଟନାରୁ ଫେରି ବହୁ ଓଡ଼ିଆ ଅଫିସର କଟକ ସେକ୍ରେଟାରୀଏଟ୍‌ରେ ପ୍ରତିଷ୍ଠା ଜମାଇଲେ । ଓଡ଼ିଆମାନଙ୍କର ଆତ୍ମମର୍ଯ୍ୟାଦା ଓ ସ୍ୱାଭିମାନ କେତେକାଂଶରେ ଫେରି ଆସିଲା । ସ୍କୁଲରେ ମଧ୍ୟ ଆମେ ଏହି ପରିବର୍ତ୍ତନର ପ୍ରଭାବ ଅନୁଭବ କଲୁ । ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରକ୍ରିୟାରେ ବହୁ ବଂଗାଳୀ ଛାତ୍ର କଲେଜିଏଟ୍ ସ୍କୁଲରୁ ବିଦାୟ ନେଲେ ଓ କଟକ ସେକ୍ରେଟାରୀଏଟ୍‌ରେ ନାମ ଲେଖାଇଥିବା ଓଡ଼ିଆ ଅଫିସରଙ୍କ ପିଲାମାନେ ସ୍କୁଲରେ ନାମ ଲେଖାଇଲେ । ସ୍କୁଲରେ ଓଡ଼ିଆ ଛାତ୍ରଙ୍କର ପ୍ରତିପତ୍ତି ବଢ଼ିଲା । 'ମଫସଲିଆ' ବିଶେଷଣଟା ଆମ ନାଁ ପଛରୁ ସମୂଳେ ଉଡ଼ିଗଲା ।

ଏହାର ଗୋଟିଏ ମାସ ପରେ ଗ୍ରୀଷ୍ମ ଛୁଟି ପୂର୍ବରୁ ଷାଣ୍ମାସିକ ପରୀକ୍ଷା ହେଲା । ଏହି ପରୀକ୍ଷାରେ ମୁଁ ପ୍ରଥମ ସ୍ଥାନ ଅଧିକାର କଲି । ଏହାପରେ କ'ଣ ହେଲା କେଜାଣି, ସମସ୍ତଙ୍କର ମନୋଭାବରେ ପରିବର୍ତ୍ତନ ଲକ୍ଷ୍ୟ କଲି । ସହପାଠୀମାନେ ମୋ ପ୍ରତି ଅଧିକ ଧ୍ୟାନ ଦେବାକୁ ଆରମ୍ଭ କଲେ । ଶିକ୍ଷକମାନେ ଅଧିକ ଆଗ୍ରହ ଓ ସ୍ନେହପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କଲେ । ଆବେଗପୂର୍ଣ୍ଣ ସଶ୍ରଦ୍ଧ ସଂଭାଷଣ ଅବହେଳାର ସ୍ଥାନ ନେଲା । ମନେହେଲା, ଯେପରି ଏହି ବିଦ୍ୟାଳୟର ପୂର୍ବସୂରୀମାନଙ୍କର ଉପଯୁକ୍ତ ଦାୟାଦ ରୂପେ ମୁଁ ବିବେଚିତ ହେଉଛି । ବାସ୍ତବ ସତ୍ୟ ଥିଲା, ଆମର ହୀନମନ୍ୟତା ବା 'ଇନଫିରିୟେରିଟି କଂପ୍ଲେକ୍ସ'ର ଅବସାନ ।



# ଅଧର୍ମୀର କୁଳଗୁରୁ

କଟକ ଆସି ସାରଳା ମେସ୍‌ରେ ଦୁଇ ମାସ ରହିବା ପରେ 'ରାମକୃଷ୍ଣ କୁଟୀର'ରେ ରହିବା ପାଇଁ ସ୍ଥାନ ମିଳିଲା । ସେ ସମୟରେ ରାମକୃଷ୍ଣ କଟେଜରେ ସ୍ଥାନ ପାଇବା ନିମନ୍ତେ ବିଧିବଦ୍ଧ ଭାବରେ ସାକ୍ଷାତ୍‌କାର କରାଯାଇ ମନୋନୟନ କରାଯାଉଥିଲା । ମଫସଲରେ ହାଇସ୍କୁଲ ସଂଖ୍ୟା ଥିଲା ନଗଣ୍ୟ । ମାଇନର ସ୍କୁଲରୁ ପାସ କରି ଅଧିକ ପଢ଼ିବାକୁ ଆଗ୍ରହୀ ଛାତ୍ରମାନେ କଟକ ହାଇସ୍କୁଲ ଗୁଡ଼ିକରେ ନାମ ଲେଖାଉଥିଲେ । ସ୍କୁଲ ହଷ୍ଟେଲମାନଙ୍କରେ ସ୍ଥାନାଭାବ, ଏଣୁ ବହୁ ଘରୋଇ ମେସ୍ ଓ ହଷ୍ଟେଲରେ ବାହାର ଛାତ୍ରମାନେ ବସବାସ କରୁଥିଲେ । କଟକର ରାମକୃଷ୍ଣ ପରମହଂସଙ୍କର ଭକ୍ତମାନେ "ରାମକୃଷ୍ଣ ସେବକ ସଂପ୍ରଦାୟ" ନାମରେ ଗୋଟିଏ ଅନୁଷ୍ଠାନ ଗଠନ କରିଥାନ୍ତି ଏବଂ ଏହି ସଂପ୍ରଦାୟର ତତ୍ତ୍ୱାବଧାନରେ 'ରାମକୃଷ୍ଣ କୁଟୀର' ଛାତ୍ରାବାସ ପ୍ରତିଷ୍ଠିତ ହୋଇଥାଏ । ସଂକ୍ଷେପରେ, ଏହି ଛାତ୍ରାବାସକୁ କଟେଜ କୁହାଯାଉଥିଲା । କଟକ ଟ୍ରେନିଂ ସ୍କୁଲର ସୁପ୍ରସିଦ୍ଧ ହେଡ୍‌ମାଷ୍ଟର କୃଷ୍ଣଚନ୍ଦ୍ର ସେନଗୁପ୍ତ, ଡାକ୍ତର କାଶୀନାଥ ମିଶ୍ର (ମେଡ଼ିକାଲ କଲେଜର ପୂର୍ବତନ ସର୍ଜରୀ ଅଧ୍ୟାପକ) କଟକ ଟ୍ରେଡ଼ିଂ କଂପାନୀର ପଣ୍ଡିତ ଆକୁଳ ମିଶ୍ର ଓ କଟକ ପବ୍ଲିଶିଂ ହାଉସର ଉମାଚରଣ ମହାନ୍ତି ଓ ଆଡ଼ଭୋକେଟ୍ ରାୟ ବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ପ୍ରମୁଖ ଏହି ଅନୁଷ୍ଠାନ ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ ।

ଅନୁଷ୍ଠାନ ପାଇଁ ପାଣ୍ଠି ସଂଗ୍ରହ କରିବା ନିମନ୍ତେ ପ୍ରତି ରବିବାର ସକାଳ ଓଳି ଛାତ୍ରମାନେ ମୁଷ୍ଟିଭିକ୍ଷା କରନ୍ତି । ସେବକ ସଂପ୍ରଦାୟର ଉଦ୍ୟୋକ୍ତାମାନେ କଟକର ବହୁ ପ୍ରତିଷ୍ଠିତ ପରିବାର ସହିତ ପୂର୍ବରୁ ଯୋଗାଯୋଗ କରି, ସପ୍ତାହରେ ଥରେ ଚାଉଳ ଦାନ କରିବାର ବ୍ୟବସ୍ଥା କରିଥାନ୍ତି । କଟେଜବାସୀ ଛାତ୍ରମାନେ ରବିବାର ଦିନ ଏହା ସଂଗ୍ରହ କରନ୍ତି । ଚାଉଳ ବିକ୍ରି ଲବ୍ଧ ଅର୍ଥ କଟେଜର ରକ୍ଷଣାବେକ୍ଷଣ ଓ ଉନ୍ନତି ବାବଦରେ ଖର୍ଚ୍ଚ କରାଯାଏ । କଟକ ସହରକୁ ମୁଖ୍ୟତଃ ଆଠଟି ପଡ଼ାରେ ବିଭକ୍ତ କରାଯାଇଥାଏ । ପ୍ରତି ପଡ଼ାରୁ ମୁଷ୍ଟିଭିକ୍ଷା ସଂଗ୍ରହ ପାଇଁ ଦୁଇଜଣ ଛାତ୍ରଙ୍କୁ ଦାୟିତ୍ୱ ଦିଆଯାଏ । ଜଣେ ପୁରୁଣା ଛାତ୍ର ଓ ତାଲିମ ନେବା ପାଇଁ ଓ ଦାତାମାନଙ୍କ ଘର ସବୁ ଚିହ୍ନିବା ପାଇଁ ଜଣେ ନୂଆ ଛାତ୍ର । ସପ୍ତାହରେ ହାରାହାରୀ ଦେଢ଼ ମହଣ ଚାଉଳ ଆଦାୟ । ତାର ଦାମ ପ୍ରାୟ ସାତରୁ ଆଠ ଟଙ୍କା । ସେତେବେଳେ ଚାଉଳ ଦାମ ଥିଲା ଟଙ୍କାରେ ଆଠ ସେର ।

ମୁଷ୍ଟିଭିକ୍ଷା କାର୍ଯ୍ୟଟା ପ୍ରଥମେ ପ୍ରଥମେ ବଡ଼ ଅଡୁଆ ଲାଗିଲା । ଅବଶ୍ୟ ଏକ ସର୍ବସାଧାରଣ କାର୍ଯ୍ୟ ପାଇଁ ଆମେ ଶ୍ରମଦାନ କରୁଥିଲୁ, ନିଜ ପାଇଁ ନୁହେ । ମନକୁ ବୁଝାଇବାକୁ ଅନେକ ଚେଷ୍ଟା କଲି - ଭିକ୍ଷା ଓ ଚାନ୍ଦା ସଂଗ୍ରହ ଏ ଦେଶର ଐତିହ୍ୟ । ନିଜେ ଅର୍ଜନ ନ କରି ଅନ୍ୟର ଅନୁଦାନ ଉପରେ ଚଳିବା ଯୁଗ ଯୁଗର ପରଂପରା । ଏଣୁ ରାମକୃଷ୍ଣ କଟେଜ ପରି ଏକ ସାଧାରଣ ଅନୁଷ୍ଠାନ ପାଇଁ ମୁଷ୍ଟିଭିକ୍ଷା ସଂଗ୍ରହ କରିବାରେ ଦୋଷ କେଉଁଠି ? କିନ୍ତୁ ଦାନ ସଂଗ୍ରହ ବେଳେ ଦାତା ସମ୍ମୁଖରେ ଗ୍ରହୀତା ଯେପରି ଛୋଟ ହୋଇଯାଏ, ସେ କଥା ଅନୁଭବୀ ମାତ୍ରେ ବୁଝି ପାରିବେ । ଶେଷ ପର୍ଯ୍ୟନ୍ତ ମୁଷ୍ଟିଭିକ୍ଷାକୁ ମୁଁ ସମ୍ମାନଜନକ କାର୍ଯ୍ୟ ବୋଲି ଗ୍ରହଣ କରି ପାରିଲି ନାହିଁ ।

ରାମକୃଷ୍ଣ କୁଟୀର ଥିଲା ଏକ ଆଦର୍ଶ ସ୍ଥାନୀୟ ଛାତ୍ରାବାସ । ସକାଳେ ସଂଧ୍ୟାରେ ଦୁଇଥର ପ୍ରାର୍ଥନା କରାଯାଏ । ପ୍ରତିଦିନ ସଂଧ୍ୟାରେ ଅଧ୍ୟୟନ ଆରମ୍ଭ ହେବା ପୂର୍ବରୁ ରାମକୃଷ୍ଣ ଚରିତାମୃତ ବା ସେହି ଶ୍ରେଣୀୟ ଅନ୍ୟ ପୁସ୍ତକରୁ ଗୋଟିଏ ଅଧ୍ୟାୟ ପାଠ କରାଯାଏ । ନିୟମ ଅନୁଯାୟୀ, ତତ୍ତ୍ୱାବଧାରକଙ୍କ ଅନୁମତି ବିନା କୌଣସି ଛାତ୍ର ସଂଧ୍ୟା ପରେ ଅନୁପସ୍ଥିତ ରହି ପାରନ୍ତି ନାହିଁ । ଅନ୍ତେବାସୀମାନେ ନିଜେ ମେସ୍ ପରିଚାଳନା କରନ୍ତି, ବଗିଚାରେ ପାଣି ଦିଅନ୍ତି । ସ୍ୱାବଲମ୍ବୀ ହେବା ପାଇଁ ସମସ୍ତ ସୁଯୋଗ ଲାଭ କରନ୍ତି । କଟେଜରେ ରହିବାର କେତେ ମାସ ପରେ କଟକରେ ଏକ ସର୍ବ ଧର୍ମ ସମ୍ମିଳନୀ ଅନୁଷ୍ଠିତ ହେଲା । ରାମକୃଷ୍ଣ ମିଶନ ତରଫରୁ ବେଲୁର ମଠର ଦୁଇଜଣ ସନ୍ୟାସୀ, ବ୍ରାହ୍ମ ସମାଜ ତରଫରୁ ଜ୍ଞାନାଂଜନ ନିୟୋଗୀ ଓ ବିଭିନ୍ନ ଧର୍ମର ଉପାସକ ବହୁ ଧର୍ମଗୁରୁ ଭାଷଣ ଦେଇଥିଲେ । ଅନ୍ୟମାନଙ୍କ ମଧ୍ୟରେ ରାମକୃଷ୍ଣ ସେବକ ସଂପ୍ରଦାୟ ଏହାର ମୁଖ୍ୟ ଉଦ୍ୟୋକ୍ତା ଥିଲେ ଏବଂ ଆମେ ରାମକୃଷ୍ଣ କୁଟୀରବାସୀ ଛାତ୍ରମାନେ ସମ୍ମିଳନୀରେ ସ୍ୱେଚ୍ଛାସେବକ ରୂପେ କାର୍ଯ୍ୟ କରିଥିଲୁ ।

ରବିବାର ସଂଧ୍ୟାରେ କଟେଜରେ ଏକ ବିଶେଷ ଅନୁଷ୍ଠାନ ହୁଏ । ରାମକୃଷ୍ଣ କୁଟୀରର ପୃଷ୍ଠପୋଷକମାନେ ଯଥା କୃଷ୍ଣଚନ୍ଦ୍ର ସେନଗୁପ୍ତ, ଡାକ୍ତର କାଶୀନାଥ ମିଶ୍ର, ଉମା ଚରଣ ମହାନ୍ତି, ଚନ୍ଦ୍ରମଣି ମହାପାତ୍ର ଓ ମୁକ୍ତାର ନଟବର ମହାପାତ୍ର, ଆଉ ଅନେକେ କଟେଜରେ ମିଳିତ ହୁଅନ୍ତି । ପୂଜା ଗୃହରେ କୀର୍ତ୍ତନ ହୁଏ, ରାମକୃଷ୍ଣ ସଂଗୀତ ଗାନ କରାଯାଏ । କୃଷ୍ଣ ବାବୁ କୀର୍ତ୍ତନର ମୁଖ୍ୟ ପୁରୋଧା ଓ ଅନ୍ୟମାନେ ପାଳି ଦିଅନ୍ତି । ''ଜୟ ଗୁରୁ ଜୟ ରାମକୃଷ୍ଣ'' ଗାନର ପ୍ରତିଧ୍ୱନିରେ ଛାତ୍ରାବାସ ଗୁଞ୍ଜରି ଉଠେ । ତାପରେ

ଉପସ୍ଥିତ ଭକ୍ତ ଓ ଛାତ୍ରମାନେ ରାମକୃଷ୍ଣ ଓ ବିବେକାନନ୍ଦଙ୍କ ସୁସଜ୍ଜିତ ଫଟୋ ସାମନାରେ ମୁଣ୍ଡିଆ ମାରି ପ୍ରାର୍ଥନା ଶେଷ କରନ୍ତି । କୀର୍ତ୍ତନରେ ମୃଦଙ୍ଗ ବଜାଇବାର ଦାୟିତ୍ୱଟା ସାଧାରଣତଃ ଛାତ୍ରମାନଙ୍କର । ମୋର ମନେ ଅଛି, ଆମେ ଏକାଦଶ ଶ୍ରେଣୀରେ ପଢ଼ିବା ବେଳେ, ଛାତ୍ରାବାସର କୌଣସି ଛାତ୍ର ମୃଦଙ୍ଗ ବଜାଇ ଜାଣି ନ ଥିଲେ । କେତେଦିନ ଛାତ୍ରାବାସର ଚାକର ବାଞ୍ଛାନିଧି ଏ କାର୍ଯ୍ୟଟା ଚଳାଇନେଲେ । ଶେଷକୁ ଦାୟିତ୍ୱଟା ମୋ ଉପରେ ପଡ଼ିଲା, କାରଣ ମୁଁ ସାମାନ୍ୟ ମାତ୍ରାରେ ସେ ବିଦ୍ୟା ହାସଲ କରିଥିଲି । ସେତେବେଳକୁ କୃଷ୍ଣ ବାବୁଙ୍କର ସମ୍ବଲପୁର ବଦଳି ହୋଇଥାଏ ଓ ରବିବାରୀୟ କୀର୍ତ୍ତନର ମୁଖ୍ୟ ଗାୟକ ଥାଆନ୍ତି କାଶୀନାଥ ବାବୁ । କାଶୀ ବାବୁଙ୍କ ସହିତ ତାଙ୍କର ଦୁଇ ପୁଅ ରମାନାଥ (ଡାକ୍ତର ରମାନାଥ ମିଶ୍ର) ଓ ବ୍ରଜନାଥ (ଜଷ୍ଟିସ ବ୍ରଜନାଥ ମିଶ୍ର) ମଧ୍ୟ ବହୁ ସମୟରେ କୀର୍ତ୍ତନରେ ଯୋଗ ଦିଅନ୍ତି । କୀର୍ତ୍ତନ ଶେଷରେ ସମସ୍ତେ ଯେତେବେଳେ "ଜୟ ଗୁରୁ ରାମକୃଷ୍ଣ" ଧ୍ୱନି ନେଇ ଠାକୁରଙ୍କୁ ଫଟୋ ସାମନାରେ ମୁଣ୍ଡିଆ ମାରନ୍ତି, ମୁଁ ଖୋଳଟି ରଖିଦେଇ ସିଧା ବସିରହେ । ସତକଥା କହିବାକୁ ହେଲେ, ମୋର ଏ କୀର୍ତ୍ତନରେ ଆଦୌ ବିଶ୍ୱାସ ନ ଥିଲା । ଦେବତୁଲ୍ୟ ପୂଜ୍ୟ ମଣିଷଙ୍କୁ ଭଗବାନ ରୂପେ ବର୍ଣ୍ଣନା କରିବାର ମୁଁ ଘୋର ବିରୋଧୀ ଥିଲି । ମାଷ୍ଟର ମଶାୟଙ୍କ ରଚିତ ରାମକୃଷ୍ଣ କଥାମୃତ ପଢ଼ିବାକୁ ମତେ ଭଲ ଲାଗୁଥିଲା । ଦେଶ ବିଦେଶରେ ସ୍ୱାମୀ ବିବେକାନନ୍ଦଙ୍କର ଧର୍ମ ପ୍ରଚାରର ଗାରିମାରେ ମୁଁ ଗର୍ବ ଅନୁଭବ କରୁଥିଲି । ତା ସତ୍ତ୍ୱେ ରାମକୃଷ୍ଣ ବିବେକାନନ୍ଦଙ୍କୁ ଭଗବାନ ରୂପେ ବିବେଚନା କରି ପାରୁ ନ ଥିଲି । ରବିବାରୀୟ ପୂଜା କୀର୍ତ୍ତନରେ ଶୃଙ୍ଖଳିତ ଅନ୍ତେବାସୀ ଭାବରେ ସମସ୍ତଙ୍କ ସାଙ୍ଗରେ ଯୋଗ ଦିଏ, କିନ୍ତୁ ସେଥିରେ ମୋର ଆନ୍ତରିକତା ନ ଥାଏ । ଚାରି ବର୍ଷର ରହଣୀ ଭିତରେ ମୁଁ ଦିନକ ପାଇଁ ମଧ୍ୟ ପୂଜା କରାଯାଉଥିବା ଫଟୋ ସାମନାରେ ନତମସ୍ତକ ହୋଇ ନାହିଁ । ପ୍ରଥମ ଅବସ୍ଥାରେ ମୋର ଏହି ମନୋଭାବ ପ୍ରଚ୍ଛନ୍ନ ଥିଲା । ଏ ବିଷୟରେ ଅନ୍ୟମାନଙ୍କ ସହିତ ଯୁକ୍ତିତର୍କ କରିବାକୁ କୁଣ୍ଠିତ ଥିଲି । କାହାର ଧର୍ମ ବିଶ୍ୱାସରେ ଅଘାତ କରିବା ମୋ ବିଚାରରେ ନ୍ୟାୟସଂଗତ ନ ଥିଲା । ସମୟକ୍ରମେ କେହି କେହି ସହପାଠୀ ମୋର ଅବଜ୍ଞା-ସୂଚକ ମନୋଭାବ ବିଷୟରେ ଜ୍ଞାତ ହେଲେ ଏବଂ ତାର କଠୋର ସମାଲୋଚନା କଲେ । ଜଣେ ଅଧେ ମତେ ନାସ୍ତିକ ବୋଲି ଆକ୍ଷେପ କଲେ । ଏ ଅଭିଯୋଗ ଅସ୍ୱୀକାର କରି ମୁଁ କହୁଥିଲି, ଆସ୍ତିକ - ନାସ୍ତିକ ବିବାଦ ସହିତ ଏ ଫଟୋ ପୂଜାର କୌଣସି ସଂପର୍କ ନାହିଁ । ଦେବଦେବୀ ବା ବିଗ୍ରହ-ପୂଜା ଭଗବଦ୍ ବିଶ୍ୱାସର ଅଂଗ ନୁହେ ।

ଧର୍ମ ଚର୍ଚ୍ଚାରେ ମୋର ଯେ ବିଶେଷ ପ୍ରବେଶ ଥିଲା, ତା ନୁହେ । କିନ୍ତୁ ଧର୍ମ ନାମରେ ଅହେତୁକ ପ୍ରଥା ପଦ୍ଧତି ଓ ପୂଜାପାଠରେ ମୁଁ ବିଶ୍ୱାସ କରୁ ନ ଥିଲି । ଧର୍ମ ନାମରେ ଚାଲିଥିବା ଭଣ୍ଡାମୀ ଦ୍ୱାରା ମୁଁ ପ୍ରତାରିତ ହେଉ ନ ଥିଲି । ଗାଁ ସ୍କୁଲରେ ପଢ଼ିଲା ବେଳେ, ପୌରାଣିକ ଚରିତ୍ର ଠାରୁ ବୁଦ୍ଧଙ୍କ ଜୀବନାଦର୍ଶ ମୋ ପାଇଁ ଅଧିକ ଆକର୍ଷଣୀୟ ଥିଲା । ଅନ୍ଧ ବିଶ୍ୱାସ ଓ କୁସଂସ୍କାର ପ୍ରତି ମୋର ଏହି ବୈରଭାବ କେବେ କିପରି କାହାଠାରୁ ଶିଖିଲି, ତାହା କହି ପାରିବି ନାହିଁ । କିନ୍ତୁ ଦଶ ବର୍ଷ ବୟସରେ ନାନା ଧର୍ମ କର୍ମ ପରେ ବ୍ରତୋପନୟନରେ ଯେଉଁ ଯଜ୍ଞୋପବୀତ ଗ୍ରହଣ କରିଥିଲି, ତେର ବର୍ଷ ବୟସରେ ତାକୁ ଛ ସୂତିଆ ପଇତା ଖିଅ କହି ଫୋପାଡ଼ି ଦେଇଥିଲି । ବ୍ରତ ହେବା ପରେ ମଧ୍ୟ ମୁଁ ଘରେ ଠାକୁର ପୂଜା କରେ ନାହିଁ । ଚନ୍ଦ୍ର କରେ ନାହିଁ । ଛୁଆଁ ଅଛୁଆଁ ବାରେ ନାହିଁ । ମନ ନ ମାନିଲେ କୌଣସି କଥା ଗ୍ରହଣ କରେ ନାହିଁ । ଏ ଥିଲା ମୋର ଚରିତ୍ର ଦୋଷ । ଜଟାଧାରୀ ବାବାଜୀ ହୁଅନ୍ତୁ ବା କୌପୀନ ପିନ୍ଧା ସନ୍ୟାସୀ ହୁଅନ୍ତୁ, ମୋର କେହି ଗୁରୁ ନ ଥିଲେ । ନନା କହୁଥିଲେ, ବିବେକ ହିଁ ସବୁ ମଣିଷର ଆଦ୍ୟ ଗୁରୁ - ନନାଙ୍କ କଥା ମୁଁ ବେଦ ପରି ଗ୍ରହଣ କରୁଥିଲି । କଲେଜ ଛାଡ଼ିବାର ଦୀର୍ଘ ତିରିଶ ବର୍ଷ ପରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଆତ୍ମଜୀବନୀ ''ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ'' ବହି ଖଣ୍ଡି ପଢ଼ିବାର ସୁଯୋଗ ମିଳିଲା । 'କୁସଂସ୍କାର' ଅଧ୍ୟାୟରେ ପଣ୍ଡିତଜୀ ଲେଖିଛନ୍ତି ''ମୋର ଇଂରାଜୀ ପଢ଼ିବା ଯୋଗେ ହେଉ ବା ନିଜ ପ୍ରକୃତି ଦୋଷରୁ ହେଉ, ମୁଁ ପିଲାଦିନୁ ନାସ୍ତିକ ଥିଲି ବୋଲି କହିଲେ ଚଳେ । ଫଳରେ ମୁଁ ଦେଉଳକୁ ଗଲେ ମୁଣ୍ଡିଆ ମାରେ ନାହିଁ । ଏକାଦଶୀ ଉପବାସ ଛାଡ଼ିଦେଲି । ପଇତା କାଢ଼ି ହାତରେ ଧରି ଖେଳିଲି । ମୁଣ୍ଡର ଚୈତନ ଚୁଟି କାଟି ପକାଇଲି । ସନ୍ଧ୍ୟା ଚନ୍ଦ୍ର ପ୍ରଭୃତି ଛାଡ଼ିଦେଲି'' ଇତ୍ୟାଦି । ପଣ୍ଡିତ ଗୋଦାବରୀଶଙ୍କ ଆତ୍ମଜୀବନୀ ପଢ଼ିବା ପରେ ଧାରଣା ଜନ୍ମିଛି, ମୋ ପରି ଅଧର୍ମୀର ମଧ୍ୟ ଜଣେ କୁଳଗୁରୁ ଥିଲେ ।

ରାମକୃଷ୍ଣ କଲେଜକୁ ଗାନ୍ଧିଜୀଙ୍କ ''ହରିଜନ'' କାଗଜ ବେଳେବେଳେ ଆସେ । ଗାନ୍ଧିଜୀ ଲେଖୁଥିଲେ, ଅସତ୍ୟ ଅନ୍ୟାୟକୁ ମାନି ନିଅ ନାହିଁ । କିନ୍ତୁ ଅହେତୁକ ନିୟମ କାନୁନ୍‌କୁ ଅମାନ୍ୟ କରିବା ଓ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରିବାକୁ ମୁଁ ଶିଖିଲି ନିଜ ଅଭିଜ୍ଞତାରୁ । କଲେଜର ଅନ୍ତେବାସୀମାନେ

ସାହିତ୍ୟ ସଭା ବା ଧର୍ମ ସଭାକୁ ଯିବାରେ ମନା ନ ଥାଏ । କିନ୍ତୁ ରାଜନୈତିକ ସଭା ସମିତିକୁ ଯିବା ପାଇଁ କର୍ତ୍ତୃପକ୍ଷ ବାରଣ କରନ୍ତି । ସେ ସମୟରେ ସାହିତ୍ୟିକ ବା ସାଂସ୍କୃତିକ ଅନୁଷ୍ଠାନ ଶ୍ରୀରାମଚନ୍ଦ୍ର ଭବନରେ ହେଉଥିଲା । ଶ୍ରୀରାମଚନ୍ଦ୍ର ଭବନ ଯିବାକୁ କେହି ମନା କରନ୍ତି ନାହିଁ । ମାତ୍ର ରାଜନୈତିକ ସଭା ସମିତି ଟାଉନ ହଲ ବା ଟାଉନ ହଲ ପଡ଼ିଆରେ ହୁଏ ଏବଂ ସେ ସଭାକୁ ଯିବାରେ ସବୁ ଆପତ୍ତି । ସବୁ ସଭା ସମିତିରେ ଯୋଗ ଦେବାକୁ ମୁଁ ବଦ୍ଧ ପରିକର ଥିଲି । ମୋର ଧାରଣା ଥିଲା, ସଭାକୁ ଗଲେ ଜ୍ଞାନ ବଢ଼େ, ଶ୍ରୋତା ମଧ୍ୟ ବକ୍ତା ପରି କହିବାକୁ ଶିଖେ । ଏଣୁ ସଭା ସମିତିରେ ଯୋଗଦେବା ବିଷୟରେ ତତ୍ତ୍ୱାବଧାରକଙ୍କର କଟକଣା ଅମାନ୍ୟ କରିବାକୁ ମୁଁ ଦୋଷାବହ ମନେ କରୁ ନ ଥିଲି ।

ପ୍ରଥମ ଅବସ୍ଥାରେ ନିୟମ ଭାଙ୍ଗିବାଟା ଗୋପନରେ ଚାଲିଥିଲା । କର୍ତ୍ତୃପକ୍ଷ ଏହାର ସାମାନ୍ୟ ଆଭାସ ପାଉଥିଲେ ମଧ୍ୟ, ଏ ବିଷୟରେ ସଂପୂର୍ଣ୍ଣ ଅବଗତ ନ ଥିଲେ । ଦେଶର ରାଜନୈତିକ ଅବସ୍ଥାର ପରିବର୍ତ୍ତନ ସଂଗେ ପ୍ରଚ୍ଛନ୍ନ ଅମାନ୍ୟ ମୁକ୍ତ ବିରୋଧରେ ପରିଣତ ହେଲା । ୧୯୩୭ ମସିହାରେ ନବମ ଶ୍ରେଣୀରେ ପଢ଼ିଲା ବେଳେ କଂଗ୍ରେସ ଦଳ ଶାସନ ଦାୟିତ୍ୱରେ ଥାଆନ୍ତି । ବିଶ୍ୱନାଥ ଦାସ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ବିଶାଳ ମାନ୍ଦ୍ରାଜ ପ୍ରଦେଶର ପ୍ରଧାନମନ୍ତ୍ରୀ । ୧୯୩୫ ମସିହାର ଭାରତ ଶାସନ ଆଇନ ଅନୁସାରେ ପ୍ରଦେଶର ମୁଖ୍ୟମନ୍ତ୍ରୀମାନଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ଚକ୍ରବର୍ତ୍ତୀ ରାଜଗୋପାଳ ଚାରୀ ତତ୍‌କାଳୀନ କମ୍ୟୁନିଷ୍ଟ ନେତା ସୋଲି ବଟଲିବାଲାଙ୍କୁ ରାଜଦ୍ରୋହମୂଳକ ବକ୍ତୃତା ଦେବା ଅଭିଯୋଗରେ ଗିରଫ କରାଇଥିଲେ । ଏହା ବିରୁଦ୍ଧରେ ଭାରତ ସାରା ପ୍ରତିବାଦ ସଭା କରାଗଲା । ଏ ସଂକ୍ରାନ୍ତରେ କଟକ ଟାଉନ ହଲରେ ଅନୁଷ୍ଠିତ ସଭାରେ ନବକୃଷ୍ଣ ଚୌଧୁରୀ ସଭାପତି ହୋଇଥାନ୍ତି । ସଭାରେ ଛାତ୍ରମାନଙ୍କ ତରଫରୁ ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ, ନୀଳମଣି ରାଉତରାୟ, ମୁଁ ଓ ଅନ୍ୟ କେତେକ ଭାଷଣ ଦେଲୁ । ଏହି ସମ୍ବାଦଟି ପରଦିନ ଖବରକାଗଜରେ ବାହାରିଲା । ରାମକୃଷ୍ଣ କୁଟୀରର କର୍ତ୍ତୃପକ୍ଷ ଜାଣିଲେ ଯେ ମୁଁ ସଭା ସମିତିରେ ଯୋଗ ଦେଉଛି ଏବଂ ପ୍ରତ୍ୟକ୍ଷ ରାଜନୀତିରେ ଭାଗ ନେଉଛି । ସେମାନଙ୍କର ବିରକ୍ତି ବଢ଼ିଗଲା । ମୁଁ କିନ୍ତୁ ମୁଣ୍ଡ ନୋଇଁବାକୁ ପ୍ରସ୍ତୁତ ନ ଥିଲି ।

କଟେଜରେ ପ୍ରାୟ ଦୁଇ ବର୍ଷ ରହିବା ପରେ, ତତ୍କାଳୀନ ତତ୍ତ୍ୱାବଧାରକଙ୍କର କଟକରୁ ବଦଳି ହେଲା । ଶ୍ରୀ ନିଶାମଣି ତ୍ରିପାଠୀ ବି.ଏ. ପାସ କରି କଟକ

ପବ୍ଲିଶିଂ ହାଉସ୍‌ରେ ଚାକିରୀ କରୁଥାନ୍ତି । ସେ କଟେଜର ନୂଆ ତତ୍ତ୍ୱାବଧାରକ ହେଲେ । ସେ ଥିଲେ ଅତି ଉଦାର ଓ ସ୍ନେହୀ ମଣିଷ । ତାଙ୍କ ସମୟରେ ଏ ପୁରୁଣାକାଳିଆ ନିୟମ ଗୁଡ଼ିକରେ ଧୀରେ ଧୀରେ କଳଂକି ଲାଗିଗଲା ।

କଟେଜ ତେଲେଙ୍ଗା ବଜାର ବଂଗାଳୀ ସାହିରେ - କଲେଜିଏଟ ସ୍କୁଲ ଠାରୁ ପ୍ରାୟ ତିନି କିଲୋମିଟରରୁ ଅଧିକ ଦୂର । ଆମ୍ଭେମାନେ ପ୍ରତିଦିନ ସ୍କୁଲକୁ ଚାଲି ଚାଲି ଯାଉ । କେବଳ ମୁଁ ନୁହେ, ଅନ୍ୟ ସମସ୍ତ ଅନ୍ତେବାସୀ ମଧ୍ୟ ଚାଲି କରି ନିଜ ନିଜ ସ୍କୁଲକୁ ଯାଆନ୍ତି । କାହାରି ଜଣକର ମଧ୍ୟ ସାଇକେଲ ନ ଥାଏ । ମୁଁ ଇଚ୍ଛା କରିଥିଲେ, କଟେଜ ଛାଡ଼ି କଲେଜିଏଟ୍ ସ୍କୁଲ ହଷ୍ଟେଲରେ ରହି ପାରିଥାନ୍ତି । ଜଣେ ବୃତ୍ତିଭୋଗୀ ଛାତ୍ର ହିସାବରେ ହଷ୍ଟେଲ ଦ୍ୱାର ମୋ ପାଇଁ ଉନ୍ମୁକ୍ତ ଥିଲା । କିନ୍ତୁ ସବୁ ଅସୁବିଧା ସତ୍ତ୍ୱେ କଟେଜ ପ୍ରତି ଗୋଟାଏ ପ୍ରକାରର ମମତା ଜନ୍ମି ଯାଇଥାଏ । ଏଠାରେ ରହି, କଟେଜ ସହିତ ସଂପୃକ୍ତ ବହୁ ବିଶିଷ୍ଟ ଲୋକଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ମିଳିଥିଲା । ରାୟ ବାହାଦୁର ଚିନ୍ତାମଣି ଆଚାର୍ଯ୍ୟ, ପଣ୍ଡିତ ଆର୍ତ୍ତ୍ୱଳ ମିଶ୍ର, ସମାଜର ତତ୍‌କାଳୀନ ପରିଚାଳକ (ପରେ ସଂପାଦକ) ରାଧାନାଥ ରଥଙ୍କ ସହିତ କଟେଜ ସୂତ୍ରରେ ପରିଚୟ ହୋଇଥିଲା । କଂଗ୍ରେସ ନେତା ରାଜକୃଷ୍ଣ ବୋଷ କଟେଜ ସହିତ ସଂପୃକ୍ତ ଥିଲେ । ଏହିଠାରେ ରହି ଯୁବନେତା ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, କବି ସଚ୍ଚି ରାଉତରାୟ ଓ ତତ୍‌କାଳୀନ କଂଗ୍ରେସ ସମାଜବାଦୀ ଗୋଷ୍ଠିର ସଦସ୍ୟ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ଓ ସହୃଦୟତା ଆରମ୍ଭ ହୁଏ । ମୋଟାମୋଟି କଟେଜ ସହିତ ବଂଧନ ଥିଲା ଅତି ନିବିଡ଼ । ଏ ଛାତ୍ରାବାସକୁ ଆମେ ନିଜର ବୋଲି ମନେ କରୁଥିଲୁ । ମାଟ୍ରିକ୍ୟୁଲେସନ ପାସ କରିବା ପର୍ଯ୍ୟନ୍ତ ଏହିଠାରେ ମୁଁ ଚାରିବର୍ଷ ରହିଲି ।



# ପ୍ରଳୟର ଝଞ୍ଜା

୧୯୩୬ରୁ ୧୯୩୯ ମସିହା ମଧ୍ୟରେ ଭାରତର ରାଜନୀତିରେ ବହୁ ଚମକପ୍ରଦ ପରିବର୍ତ୍ତନମାନ ଘଟିଲା । ଘଟଣାର ପ୍ରବାହ ଥିଲା ଅତି କ୍ଷିପ୍ର ଏବଂ ତା'ର ତାତ୍ପର୍ଯ୍ୟ ବୁଝିବା ଆମ ଭଳି ସ୍କୁଲ ଛାତ୍ରଙ୍କ ପକ୍ଷରେ ଥିଲା ଅସାଧ୍ୟ । ୩୦-୩୧ ମସିହାର, ସତ୍ୟାଗ୍ରହ, ଲୁଣମରା ଆନ୍ଦୋଳନ ପରେ ବ୍ରିଟିଶ ସରକାର ଭାରତୀୟ ନେତାମାନଙ୍କ ସହିତ ଶାସନ ସଂସ୍କାର ପାଇଁ ଆଲୋଚନା ଆରମ୍ଭ କଲେ । କ୍ଷମତା ଓ କର୍ତ୍ତୃତ୍ୱର ଚାବି ଢିଲା ନ କରି, ଶାସନ କ୍ଷେତ୍ରରେ ଭାରତୀୟମାନଙ୍କୁ କେତେକ ସୀମିତ ଅଧିକାର ଦେଇ ରାଜନୈତିକ ସଂଘର୍ଷ ଏଡ଼ାଇବା ବ୍ରିଟିଶ ସରକାରଙ୍କର ନୂତନ କାର୍ଯ୍ୟକ୍ରମ ହେଲା । ୧୯୩୫ ମସିହାରେ ବ୍ରିଟିଶ ପାର୍ଲିଆମେଣ୍ଟ ଭାରତ ଶାସନ ଆଇନର ଚିଠା ଗ୍ରହଣ କଲେ ଓ ତାହା ଆଇନ ରୂପେ ଅନୁମୋଦିତ ହେଲା । ତଦନୁଯାୟୀ ପ୍ରଦେଶ ଗୁଡ଼ିକରେ ନୂତନ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ପ୍ରଚଳନ କରିବାରେ ବାଧା ରହିଲା ନାହିଁ । କେନ୍ଦ୍ରରେ କି ପ୍ରକାରର ଶାସନ ଚାଲିବ, ଦେଶୀୟ ରାଜାମାନଙ୍କର ସ୍ଥାନ କ'ଣ ହେବ, ଗଭର୍ଣ୍ଣର-ଜେନେରାଲଙ୍କ ହାତରେ ନ୍ୟସ୍ତ କ୍ଷମତା କେତେଦୂର ଭାରତୀୟ ପ୍ରତିନିଧିଙ୍କୁ ହସ୍ତାନ୍ତର କରାଯିବ, ଏ ସବୁ ବିଷୟରେ ବ୍ରିଟିଶ ସରକାରଙ୍କ ସହିତ ଭାରତୀୟ ନେତୃବୃନ୍ଦଙ୍କର ତୀବ୍ର ମତଭେଦ ଥିଲା । ସେହି ପରିପ୍ରେକ୍ଷୀରେ ପ୍ରାଦେଶିକ ସ୍ତରରେ ପ୍ରସ୍ତାବିତ ନିର୍ବାଚନରେ କଂଗ୍ରେସ ଦଳ ଅଂଶ ଗ୍ରହଣ କରିବେ କି ନାହିଁ, ସେ ବିଷୟରେ ମଧ୍ୟ ନେତାମାନଙ୍କ ମଧ୍ୟରେ ଘୋର ମନାନ୍ତର ଆରମ୍ଭ ହେଲା । ବହୁ ବାଦ ବିବାଦ, ତର୍କ ବିତର୍କ ଓ ବିଚାର ବିମର୍ଷ ପରେ କଂଗ୍ରେସ ଦଳ ନିର୍ବାଚନରେ ଭାଗ ନେବାକୁ ନିଷ୍ପତ୍ତି ନେଲେ । ନିର୍ବାଚନରେ ବିଜୟକୁ ସ୍ୱାଧୀନତା ସଂଗ୍ରାମର ଏକ ସୋପାନ ରୂପେ ବିବେଚନା କରାଗଲା ।

୧୯୩୬ ମସିହା ବଡ଼ଦିନ ଛୁଟିରେ ଗାଁରେ ପହଂଚିଲାବେଳକୁ ଗାଁର ବାୟୁମଣ୍ଡଳ ସରଗରମ । ନିର୍ବାଚନ ପ୍ରଚାରରେ ଗାଁ ଯୁବକମାନେ ମାତି ଯାଇଛନ୍ତି । ମୁଁ ବି ସେ ସୁଅରେ ଭାସିବାକୁ ଆରମ୍ଭ କଲି । ରାଜକୃଷ୍ଣ ବୋଷ ସେ ନିର୍ବାଚନରେ କଂଗ୍ରେସ ପକ୍ଷରୁ ପ୍ରତିଦ୍ୱନ୍ଦିତା କରୁଥାନ୍ତି । ଗୌରାଂଗ ବାବୁ ଓ ରାଜକୃଷ୍ଣ ବାବୁଙ୍କ ସହିତ ମୁଁ ନିର୍ବାଚନ ପ୍ରଚାରରେ କେତେ ଦିନ ବୁଲିଲି । ମନେ ଅଛି, ଏହି ସମୟରେ ବାଲିଆ ନିର୍ବାଚନ ସଭାରେ ଯୁବନେତା ବିଶ୍ୱନାଥ

ପଣ୍ଡାୟତଙ୍କ ସହିତ ପ୍ରଥମ ସାକ୍ଷାତ ହୁଏ । ତାଙ୍କ ଘର ଆମ ଗାଁ ଠାରୁ ଛ'ସାତ ମାଇଲ ଦୂର, ରାଣୀପଡ଼ା । ସେତେବେଳେ ସେ ରେଭେନ୍ସା କଲେଜର ଛାତ୍ର । ପ୍ରଥମ ସାକ୍ଷାତର ପରିଚୟ ପରେ ଆତ୍ମୀୟତାରେ ପରିଣତ ହେଲା ।

୧୯୩୭ ମସିହା ଜାନୁଆରୀ ମାସରେ ପଣ୍ଡିତ ଜହରଲାଲ ନେହୁରୁ କଟକ ଆସିଲେ - ନିର୍ବାଚନ ପ୍ରଚାରରେ । ଏହା ପୂର୍ବରୁ ମହାତ୍ମା ଗାନ୍ଧି ଦୁଇଥର ଓଡ଼ିଶା ଆସିଥିଲେ । କିନ୍ତୁ ଜହରଲାଲଙ୍କର ଏଇଟା ପ୍ରଥମ ଓଡ଼ିଶା ଆଗମନ । ସେତେବେଳ ପଣ୍ଡିତ ନୀଳକଂଠ ଦାସ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି । ନେହୁରୁଙ୍କ ପାଇଁ ଷ୍ଟେସନ ଠାରୁ ମ୍ୟୁନିସିପାଲିଟି ପଡ଼ିଆ ପର୍ଯ୍ୟନ୍ତ ଶୋଭାଯାତ୍ରାର ଆୟୋଜନ ହୋଇଥିଲା । ସଂଧ୍ୟାରେ ମ୍ୟୁନିସିପାଲିଟି ପଡ଼ିଆରେ ସଭା । ନୀଳକଂଠଙ୍କ ହୁଡ଼୍‌ବଂଧା ପୁରୁଣା ଫୋର୍ଡ଼ ଗାଡ଼ିରେ ବସି ଦୁଇ ପଣ୍ଡିତ ମଫସଲ ଅଂଚଳର ବହୁ ସଭାରେ ଭାଷଣ ଦେଇଥିଲେ । ବିରିଡ଼ି ହାଟ ଓ ଜଗତ୍‌ସିଂପୁର ସଭା ସାରି ନେହୁରୁ ପ୍ରାୟ ପାଂଚଟା ସୁଦ୍ଧା କଟକରେ ପହଂଚିଲେ ।

ସେ ଦିନ ନେହୁରୁଙ୍କୁ ଯେଉଁ ହାର୍ଦ୍ଦିକ ଉଚ୍ଛ୍ୱସିତ ସଂବର୍ଦ୍ଧନା ଦିଆଗଲା, କଟକ ଇତିହାସରେ ତା ବିରଳ । ଷ୍ଟେସନ ଠାରୁ ଚୌଧୁରୀ ବଜାର ପର୍ଯ୍ୟନ୍ତ ହଜାର ହଜାର ନରନାରୀ ରାସ୍ତା ଦୁଇ କଡ଼ରେ ଜମା ହୋଇଥାନ୍ତି । ଜହରଲାଲ ଗାଡ଼ିରେ ଠିଆ ହୋଇଥାନ୍ତି ଓ ଗାଡ଼ି ଧୀରେ ଧୀରେ ଚାଲିଥାଏ, ସଂବର୍ଦ୍ଧନା କୋଳାହଳର ବୁକୁ ଭେଦ କରି । ଶୀତଦିନିଆ ଗେଣ୍ଡୁଫୁଲ ମାଳରେ ଗାଡ଼ି ଭରି ଯାଇଥାଏ । ମଝିରେ ମଝିରେ ଜବାହାରଲାଲଙ୍କୀ ସ୍ତ୍ରୀ ଲୋକ ଓ ପିଲାମାନଙ୍କ ଆଡ଼କୁ ଫୁଲ ଫୋପାଡୁଥାନ୍ତି । "ଇନ୍ କିଲାବ ଜିନ୍ଦାବାଦ" - "ଜବହାରଲାଲ ନେହୁରୁ ଜିନ୍ଦାବାଦ" ଧ୍ୱନିରେ ଗଗନ ପବନ ପ୍ରକଂପିତ ହେଉଥାଏ । ରାସ୍ତାକଡ଼ କୋଠା ଉପରୁ ସ୍ତ୍ରୀଲୋକମାନଙ୍କର ହୁଳୁହୁଳି ମଧ୍ୟ ପଡୁଥାଏ । ସାଧାରଣ ଜନତା ମଧ୍ୟରେ କି ଚାଂଚଲ୍ୟ, କି ଉତ୍ସାହ, କି ଉନ୍ମାଦନା, ତାହା ଅବର୍ଣ୍ଣନୀୟ ।

ଆମେ ସେଦିନ ଉପରବେଳା ତିନିଟାରୁ ସ୍କୁଲ ଛାଡ଼ି ପଳାଇ ଆସିଥିଲୁ । ହେଡ଼ମାଷ୍ଟ୍ରେ ଛୁଟି ଦେବେ ନାହିଁ କି ସ୍କୁଲ ଆଗତୁରା ବଂଦ କରିବେ ନାହିଁ, ଏ ବିଷୟରେ ସଂଦେହ ନଥିଲା । ଏଣୁ ଛୁଟି ପାଇଁ ଅନୁମତି ଭିକ୍ଷା କରିବାକୁ ଧୈର୍ଯ୍ୟ ନ ଥିଲା । ଆମେ ଆଗରୁ ଆସି ବକ୍ସିବଜାର ଛକ ପାଖରେ ଅପେକ୍ଷା କରିଥାଉ । ଶୋଭାଯାତ୍ରା ବକ୍ସିବଜାର ଛକ ଅତିକ୍ରମ କଲାବେଳେ ଆମେ ଜନ ସମୁଦ୍ରରେ ମିଶିଗଲୁ ।

ସେ କାଳରେ ମ୍ୟୁନିସିପାଲିଟି ପଡ଼ିଆ ଥିଲା ଉନ୍ମୁକ୍ତ ପ୍ରାନ୍ତର । ମ୍ୟୁନିସିପାଲିଟି ବିଲ୍‌ଡ଼ିଂକୁ ଲାଗି ପଶ୍ଚିମ ପଟେ ଯେଉଁ ଘର ଗୁଡ଼ିକ ତିଆରି ହୋଇଛି କିମ୍ବା ସାମନାରେ ନିର୍ମିତ ଶହୀଦ ଭବନ ବା କଳିଙ୍ଗ ବ୍ୟାୟାମଶାଳା ଆଦି କିଛି ନ ଥିଲା ଏବଂ କଟକର ସବୁ ବଡ଼ ବଡ଼ ସଭା ଓ ସର୍କସ ଆଦି ଏହିଠାରେ ଅନୁଷ୍ଠିତ ହେଉଥିଲା । ମ୍ୟୁନିସିପାଲିଟି ପଡ଼ିଆରେ ଜହରଲାଲଙ୍କ ବକ୍ତୃତାର କୀୟଦଂଶ ମଧ୍ୟ ମନେ ନାହିଁ । କେବଳ ମନେ ଅଛି, ଜଗତ୍‌ସିଂପୁର ସଭାକୁ ଗଲାବେଳେ, ପୋଲିସ ଗାଡ଼ି କିପରି ନେହୁରୁଙ୍କ ଗାଡ଼ି ଆଗେ ଆଗେ ନାଲି ଧୂଳିର ପଟଳ ଉଡ଼ାଇ ଚାଲିଥିଲା, ସଭାରେ ନେହୁରୁ ତାହା ଉଲ୍ଲେଖ କରିଥିଲେ । ଲୋକେ ଉତ୍ୟକ୍ତ ହୋଇ ଉଠିଲେ ଓ ସଭାରୁ ପୋଲିସର ନିନ୍ଦାବାଦ ସୂଚକ ଧ୍ୱନିମାନ ଉଠିଲା । ସାଧାରଣ ସଭା ପରେ ଜହରଲାଲଜୀ ଟାଉନହଲ ପଡ଼ିଆକୁ ଗଲେ - ଭଗବତୀ ଚରଣ ପାଣିଗ୍ରାହୀ ଓ ଅନନ୍ତ ପଟ୍ଟନାୟକ ପ୍ରମୁଖ ଅଗ୍ରଗାମୀ ସାହିତ୍ୟିକମାନଙ୍କ ଦ୍ୱାରା ସଂଗଠିତ ''ନବଯୁଗ ସାହିତ୍ୟ ସଂସଦ'' ଉଦ୍‌ଘାଟନ କରିବା ପାଇଁ । ବାମପନ୍ଥୀ, ସୋସାଲିଷ୍ଟ ବା କମ୍ୟୁନିଷ୍ଟ ମାନଙ୍କ ପ୍ରତି ସେ ସମୟରେ ଜବହାରଲାଲଙ୍କର ଯେ କୌଣସି ପ୍ରକାରର ଅଶ୍ରଦ୍ଧା, ଅସୂୟା ବା ବିରୋଧ ଭାବ ନ ଥିଲା, ନବଯୁଗ ସାହିତ୍ୟ ସଂସଦର ଉଦ୍‌ଘାଟନ ତାର ଅନ୍ୟତମ ଉଦାହରଣ ।

ଏହାପରେ ଜହରଲାଲ ଅନେକ ଥର କଟକ ଆସିଛନ୍ତି । ନୂତନ ପରିସ୍ଥିତିରେ ବହୁ ସ୍ଥାନରେ ତାଙ୍କୁ ବିପୁଳ ସଂବର୍ଦ୍ଧନା ଦିଆଯାଇଛି । କିନ୍ତୁ ୧୯୩୭ ମସିହାର ଜନଶ୍ରଦ୍ଧାର ଏହି ସ୍ୱତଃସ୍ଫୂର୍ତ୍ତ ବିସ୍ଫୋରଣ ଅନ୍ୟ କେଉଁଠି ଦେଖାଯାଇ ନାହିଁ ।

ସାଧାରଣ ନିର୍ବାଚନ ପାଇଁ ଆମ ସ୍କୁଲ ସପ୍ତାହଟିଏ ଛୁଟି ହେଲା । ନନା ସେତେବେଳକୁ ବାଗଲପୁର ସ୍କୁଲରୁ ଇସ୍ତଫା ଦେଇ ବାଣପୁର ସ୍କୁଲରେ ଶିକ୍ଷକତା କରୁଥାନ୍ତି । ଛୁଟି ବାଣପୁରରେ କଟେଇବା ପାଇଁ ସେ ଚିଠି ଲେଖିଥିଲେ । ରାତି ପାହାନ୍ତିଆରେ ମାଡ୍ରାସ ମେଲ କଟକ ଛାଡ଼ି ସକାଳ ଆଠଟାରେ ବାଲୁଗାଁରେ ପହଂଚେ । ମୁଁ ଏକା ଏକା ମାଡ୍ରାସ ମେଲରେ ଉଠିଲି । ସକାଳୁ ସକାଳୁ ମାମୁ ଭଣଜା ପାହାଡ଼ ଅତିକ୍ରମ କଲୁ । ଚିଲିକା ପବନର ପ୍ରଥମ ପରଶ ଛୁଇଁଲା । ବାଲୁଗାଁ ଷ୍ଟେସନରୁ ଚାରି ମାଇଲ ରାସ୍ତା ଶଗଡ଼ରେ ଗଲେ ବାଣପୁର ।

ଯଦିଚ ମୁଁ ଆଗରୁ ବାଣପୁର ଦେଖି ନ ଥିଲି, ତଥାପି ବାଣପୁର ନାଁଟା ଥିଲା ଆମ ନିକଟରେ ଅତି ପରିଚିତ, ଅତି ପ୍ରିୟ । ଆମ ଗାଁର ବାମନ ଚରଣ ଦାସ ବାଣପୁର ମାଇନର ସ୍କୁଲରେ ଚାଳିଶ ବର୍ଷରୁ ଅଧିକ

କାଳ ପ୍ରଧାନ ଶିକ୍ଷକ ଥିଲେ । କବି ଗୋଦାବରୀଶ ମହାପାତ୍ର ଥରେ ଆମ ଗାଁକୁ ଯାଇ ଆମ ସ୍କୁଲରେ ତିନି ଚାରି ଦିନ ରହିଥିଲେ । ସତ୍ୟବାଦୀ ସ୍କୁଲ ଭାଙ୍ଗିଯିବା ପରେ ପଣ୍ଡିତ ଗୋଦାବରୀଶ ବାଣପୁରରେ ବରଗଛ ମୂଳେ ଯେଉଁ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ, ତାକୁ ବନ ବିଦ୍ୟାଳୟ କୁହାଯାଉଥିଲା । ଆମ ଗାଁର ଦୁଇ ତିନି ଜଣ ପିଲା ବାଣପୁର ହାଇସ୍କୁଲରେ ପଢୁଥିଲେ । ଯାହାହେଉ, ବାଣପୁରରେ ପହଂଚି ପ୍ରଥମେ କେତେ ସ୍କୁଲ ପିଲାଙ୍କ ସାଂଗରେ ଚାରିଆଡ଼େ ବୁଲି ଦେଖିଲି । ବଜାର, ହାଇସ୍କୁଲ, ସାଳିଆ ନଈ, ଘଣ୍ଟଶିଳା ପାହାଡ଼ କିଛି ବାକି ରହିଲା ନାହିଁ । ମନେ ପଡ଼ିଲା ରାଧାନାଥଙ୍କ ଚିଲିକା କାବ୍ୟର କେତୋଟି ପଙ୍କ୍ତି :

"ବହଇ ସାଳିଆ ପ୍ରସନ୍ନ ସଲିଳା
ତଟ ଦେଶେ ଯାର ଶୈଳ ଘଣ୍ଟଶିଳା" ...ଇତ୍ୟାଦି

ସାଳିଆ ନଈ ରଣପୁରରୁ ବାହାରି, ବାଣପୁର ଦେଇ ଚିଲିକାରେ ପଡ଼ିଛି । କିନ୍ତୁ ସାଳିଆର କ୍ଷୀଣ ଜଳସ୍ରୋତରେ କୌଣସି ପ୍ରସନ୍ନତା ନଥିଲା । ଘଣ୍ଟଶିଳା ପାହାଡ଼ର ମଧ୍ୟ କୌଣସି ବୈଶିଷ୍ଟ୍ୟ ପରିଦୃଷ୍ଟ ହେଲା ନାହିଁ । ମୁଁ ଅନୁଭବ କଲି, କବିସୁଲଭ ଦିବ୍ୟଦୃଷ୍ଟି ନ ଥିଲେ, ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରିହେବ ନାହିଁ ।

ବାଣପୁର ନିର୍ବାଚନ ଲଢ଼େଇରେ କଂଗ୍ରେସ ପ୍ରାର୍ଥୀ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ତାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦୀ ରାୟ ସାହେବ ହରିବଂଧୁ ପରିଡ଼ା - କ୍ଷତ୍ରିୟ ଖଣ୍ଡାୟତ ମହାସଭାର ପ୍ରାର୍ଥୀ । ବାଣପୁର ହାଇସ୍କୁଲର ଅନେକ ଛାତ୍ର ଗୋଦାବରୀଶ ବାବୁଙ୍କ ପାଇଁ ନିର୍ବାଚନ ପ୍ରଚାର କରୁଥାନ୍ତି । ଅରକ୍ଷିତ ପାତ୍ରଙ୍କ ସାନ ଭାଇ କପିଳେଶ୍ୱର ପାତ୍ର (ପରେ ଡ଼େପୁଟୀ କଲେକ୍ଟର) ଏହି ଛାତ୍ରମାନଙ୍କର ନେତୃତ୍ୱ ନେଇଥାନ୍ତି । ଢେଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ । ବାଣପୁରରେ ପହଂଚି ଏହି ଛାତ୍ର ଦଳଙ୍କ ସହିତ ନିର୍ବାଚନ ପ୍ରଚାରରେ ଝାସ ଦେଲି । ହରିବଂଧୁ ପରିଡ଼ାଙ୍କ କ୍ୟାଂପରେ ତାଙ୍କ ସମର୍ଥକ ମାନଙ୍କ ପାଇଁ ପ୍ରଚୁର ଖାଇବା ପିଇବାର ବନ୍ଦୋବସ୍ତ ହୋଇଥାଏ । ଗୋଦାବରୀଶଙ୍କ କ୍ୟାଂପରେ, ଭୋଟରମାନେ ଗାଁରୁ ଦଳ ଦଳ ହୋଇ ପତାକା ଧରି ଆସି, ନାରା ଲଗାଇ, ପଣ୍ଡିତଙ୍କୁ ପ୍ରଣିପାତ କରି ଭୋଟ ଦେବାକୁ ଯାଆନ୍ତି । କିଛିଦିନ ପରେ ଫଳାଫଳ ପ୍ରକାଶିତ ହେଲା । ଗୋଦାବରୀଶ ଜୟଲାଭ କଲେ । ସାରା ଓଡ଼ିଶାରେ କଂଗ୍ରେସ ଆସେମ୍ବ୍ଲିର ଷାଠିଏ ସ୍ଥାନରୁ ଛତିଶଟି ସ୍ଥାନ ଅଧିକାର କଲେ ।

ଏ ଚମକପ୍ରଦ ବିଜୟ ପାଇଁ କଂଗ୍ରେସ ନେତା ଜହରଲାଲ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତି ନୀଳକଂଠ ଦାସଙ୍କୁ ବାହାବା ଜଣାଇଲେ ।

ଆମେ ଭାବିଥିଲୁ, ଏ ବିଜୟ ପରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିବ । ନୀଳକଂଠ ଦାସ ପ୍ରଧାନମନ୍ତ୍ରୀ ହେବେ ଓ ଅଭିଜ୍ଞତା ଦୃଷ୍ଟିରୁ ଗୋଦାବରୀଶ ବାବୁ ମଧ୍ୟ ଜଣେ ମନ୍ତ୍ରୀ ହେବେ । କାର୍ଯ୍ୟତଃ ତାହା ହେଲା ନାହିଁ । ୧୯୩୫ ମସିହା ଭାରତ ଶାସନ ଆଇନରେ ମନ୍ତ୍ରୀମଣ୍ଡଳର ନିଷ୍ପତ୍ତିରେ ହସ୍ତକ୍ଷେପ କରିବା ପାଇଁ ପ୍ରାଦେଶିକ ଗଭର୍ଣ୍ଣର ମାନଙ୍କ ହାତରେ ଅଖଣ୍ଡ କ୍ଷମତା ଦିଆଯାଇଥାଏ । ଏହି କ୍ଷମତାର ଅପବ୍ୟବହାର ବିରୁଦ୍ଧରେ ଉପଯୁକ୍ତ ପ୍ରତିଶ୍ରୁତି ନ ମିଳିଲେ କଂଗ୍ରେସ ଦଳ ମନ୍ତ୍ରୀମଣ୍ଡଳ ଗଠନ କରିବେ ନାହିଁ ବୋଲି ନିଷ୍ପତ୍ତି ନେଲେ । କଂଗ୍ରେସର ଅସହଯୋଗ ହେତୁ, ପ୍ରତି ରାଜ୍ୟରେ ଗଭର୍ଣ୍ଣରମାନେ ସଂଖ୍ୟାଲଘୁ ଜମିଦାର ଗୋଷ୍ଠୀର ନେତାମାନଙ୍କୁ ମନ୍ତ୍ରୀମଣ୍ଡଳ ଗଢ଼ିବାକୁ ଆହ୍ୱାନ କଲେ । ତଦନୁଯାୟୀ ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ । ୧୯୩୫ ମସିହା ଶାସନ ବିଧାନରେ ପ୍ରଦେଶର ମୁଖ୍ୟମନ୍ତ୍ରୀମାନଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ତାଙ୍କ ମନ୍ତ୍ରୀ ପରିଷଦର ଅନ୍ୟ ଦୁଇଜଣ ସଦସ୍ୟ ହେଲେ ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହେମାନ । ସଂଖ୍ୟା ଗରିଷ୍ଠତା ଅଭାବରେ ବିଧାନ ସଭାର ବୈଠକ ଡାକିବାକୁ ଏମାନେ ସାହସ କରି ନଥିଲେ ।

ଏ ଅବସ୍ଥା ବେଶି ଦିନ ରହିଲା ନାହିଁ । ଜୁଲାଇ ମାସ ଆଡ଼କୁ ବଡ଼ଲାଟଙ୍କର କଂଗ୍ରେସ ନେତୃତ୍ୱ ସହ ଏକ ପ୍ରକାରର ମିଳାମିଶା ହେଲା । ମନ୍ତ୍ରୀମଣ୍ଡଳ ନିଷ୍ପତ୍ତିରେ ଗଭର୍ଣ୍ଣରମାନେ ହସ୍ତକ୍ଷେପ କରିବେ ନାହିଁ ବୋଲି ବ୍ରିଟିଶ କର୍ତ୍ତୃପକ୍ଷ ଆଶ୍ୱାସନା ଦେଲେ । ପାରଳା ମହାରାଜା ଇସ୍ତଫା ଦେଲେ ଓ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କଲେ ।

କିଏ ପ୍ରଧାନମନ୍ତ୍ରୀ ହେବ ସେଥିପାଇଁ ଓଡ଼ିଶା କଂଗ୍ରେସ ଦଳ ମଧ୍ୟରେ ଆରମ୍ଭ ହେଲା ତୁମୁଳ ବାଦ ବିବାଦ । ନୀଳକଂଠ ବାବୁ ରାଜ୍ୟ କଂଗ୍ରେସର ସଭାପତି ଓ ସ୍ୱାଭାବିକ ନେତା ଥିଲେ ମଧ୍ୟ, ତାଙ୍କର ବିରୋଧୀମାନେ ଚକ୍ରାନ୍ତ କରି ଗୋଟିଏ ପ୍ରସ୍ତାବ ଗ୍ରହଣ କରାଇ ନେଲେ ଯେ, ବିଧାନ ସଭାର ସଦସ୍ୟ ନ ଥିବା ବ୍ୟକ୍ତିଙ୍କୁ ଦଳର ନେତା ନିର୍ବାଚିତ କରାଯାଇ ପାରିବ ନାହିଁ । ନୀଳକଂଠ ବାବୁ ଯୋଜନା କରିଥିଲେ, ସେ ପ୍ରଧାନମନ୍ତ୍ରୀ ହେଲେ, ଛ'ମାସ ମଧ୍ୟରେ

କୌଣସି ସହକର୍ମୀଙ୍କୁ ଇସ୍ତଫା ଦିଆଇ, ସେହି ସ୍ଥାନରେ ନିର୍ବାଚିତ ହୋଇ ଆସି ପାରିବେ । କିନ୍ତୁ ଉପରୋକ୍ତ ନିଷ୍ପତ୍ତି ଫଳରେ ଏପରି ନିର୍ବାଚନର ପ୍ରଶ୍ନ ଉଠିଲା ନାହିଁ । ଦଳୀୟ ଚକ୍ରାନ୍ତର ଫଳ ସ୍ୱରୂପ ବିଶ୍ୱନାଥ ଦାସ ହେଲେ ପ୍ରଧାନମନ୍ତ୍ରୀ, ନିତ୍ୟାନନ୍ଦ କାନୁନ୍‌ଗୋ ଓ ବୋଧରାମ ଦୁବେ ତାଙ୍କର ସହମନ୍ତ୍ରୀ । ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ ଓ ଜଗନ୍ନାଥ ମିଶ୍ର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ନିଯୁକ୍ତ ହେଲେ । ସତ କଥା କହିବାକୁ ଗଲେ, ଆମ୍ଭେମାନେ ସେ ପର୍ଯ୍ୟନ୍ତ ବିଶ୍ୱନାଥ ଦାସଙ୍କ ନାମ ସୁଦ୍ଧା ଶୁଣି ନ ଥିଲୁ ।

କଂଗ୍ରେସ ମନ୍ତ୍ରୀମାନେ ଯେଉଁଦିନ କ୍ଷମତା ଗ୍ରହଣ କଲେ, କଟକବାସୀଙ୍କର ତାହା ଥିଲା ଏକ ଉତ୍ସବର ଦିନ । ବିଧାନ ସଭା ପାଇଁ ସ୍ୱତନ୍ତ୍ର ଗୃହ ନ ଥିଲା । ନିଷ୍ପତ୍ତି ହୋଇଥିଲା, ରେଭେନ୍ସା କଲେଜ ହଲରେ ବିଧାନ ସଭାର ବୈଠକ ବସିବ, ସଦସ୍ୟମାନେ ସେହିଠାରେ ଶପଥ ନେବେ । ସକାଳ ଆଠଟାରୁ ସ୍ୱରାଜ୍ୟ ଆଶ୍ରମରେ ହଜାର ହଜାର ଲୋକ ଓ ଛାତ୍ର ଜମା ହେଲେ । ସେହିଠାରୁ ଶୋଭାଯାତ୍ରା ବାହାରିଲା କଲେଜ ଛକ ପର୍ଯ୍ୟନ୍ତ । 'ଇନ୍ କିଲାବ ଜିନ୍ଦାବାଦ', 'ସାମ୍ରାଜ୍ୟବାଦ ମୁର୍ଦ୍ଦାବାଦ' ଡାକରାରେ ସହର ବଜାର କମ୍ପୁଥିଲା । କଟକ ଜିଲା କଂଗ୍ରେସ କମିଟିର ତତ୍କାଳୀନ ସଂପାଦକ ମଦନ ମୋହନ ପଟ୍ଟନାୟକ ଶୋଭାଯାତ୍ରା ପରିଚାଳନା କରୁଥାନ୍ତି । ମଦନ ବାବୁ ଢେଙ୍ଗା ଓ ସ୍ୱାସ୍ଥ୍ୟବାନ ଲୋକ । ମୋ ଭଳି ଜଣେ ଛ' ଫୁଟିଆ ଟୋକା ତାଙ୍କର ଅନ୍ୟତମ ସାହାଯ୍ୟକାରୀ ଥାଏ । ଦିନ ଦଶଟାରେ କଲେଜ ହତାରେ ଶୋଭାଯାତ୍ରା ପହଂଚିଲା । ଟାଣ ଖରାରେ ଟେନିସ୍ ପଡ଼ିଆରେ ସଭା ହେଲା । ଟେବୁଲ ଉପରେ ଠିଆ ହୋଇ ଅନ୍ୟମାନଙ୍କ ସହିତ ବାଗ୍ମୀ ଯଦୁମଣି ମଙ୍ଗରାଜ ଓ ରାଜକୃଷ୍ଣ ବୋଷ ଭାଷଣ ଦେଲେ । ଦିନ ଏଗାରଟାରେ ସଦସ୍ୟମାନେ କଲେଜ ହଲରେ ପ୍ରବେଶ କଲେ । ସେ ଦିନ ଥିଲା ୧୯୩୭ ମସିହା ଜୁଲାଇ ଅଠେଇଶ ତାରିଖ ।



# ଛାତ୍ର ସଂଗଠନ

୧୯୩୬ ମସିହାରେ ତତ୍‌କାଳୀନ ଛାତ୍ରନେତା କବି ନବକିଶୋର ଦାସ ଓ ରାମକୃଷ୍ଣ ପତିଙ୍କ ଉଦ୍ୟମରେ ଏକ ପ୍ରାଦେଶିକ ଛାତ୍ର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥି ପୂର୍ବରୁ ମଧ୍ୟ ସମୟ ସମୟରେ ଏପରି ଛାତ୍ର ସମ୍ମିଳନୀମାନ ଅନୁଷ୍ଠିତ ହୁଏ । ଉଦାରପନ୍ଥୀ ନେତାମାନେ ସାଧାରଣତଃ ଏହାର ପୃଷ୍ଠପୋଷକତା କରିଥାନ୍ତି । ସଭା ମଂଚରେ ପ୍ରଦର ବକ୍ତୃତାର ପ୍ରତିଧ୍ୱନି ଅସ୍ପଷ୍ଟ ହେବା ପୂର୍ବରୁ, ନେତାମାନେ ସଭା ମଣ୍ଡପରୁ ବିଦାୟ ନେଇ ସାରିଥାନ୍ତି । ସମ୍ମିଳନୀର କାର୍ଯ୍ୟକ୍ରମ ବକ୍ତୃତାରେ ହିଁ ଶେଷ ହୁଏ । ଛତ୍ରିଶ ମସିହା ସମ୍ମିଳନୀରେ ମଧ୍ୟ ଠିକ୍ ତାହାହିଁ ହେଲା । ଉଦ୍ୟୋକ୍ତାମାନଙ୍କର ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନ ଥିଲା । ନବକିଶୋର ଦାସ (ପରେ ଉତ୍କଳ-ସମ୍ମିଳନୀର ସଂପାଦକ) କୌଣସି ରାଜନୈତିକ ଦଳ ସହିତ ସଂପୃକ୍ତ ନ ଥିଲେ ବା କୌଣସି ରାଜନୈତିକ ମତବାଦର ପୃଷ୍ଠପୋଷକ ନ ଥିଲେ । ସମ୍ମିଳନୀରେ ଆଲୋଚିତ ହେଲା ସାଂସ୍କୃତିକ ଓ ଓଡ଼ିଆ ସ୍ୱାର୍ଥ ସମ୍ବଳିତ ବିଷୟାବଳୀ । ପ୍ରଚଳିତ ରାଜନୈତିକ ହାଓ୍ୱା ସଭା ମଣ୍ଡପକୁ ସ୍ପର୍ଶ କରି ନ ଥିଲା । ସଭାରେ ଗୃହୀତ ପ୍ରସ୍ତାବ ଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଏହି ସମାବେଶ ଜରିଆରେ ସ୍ଥାୟୀ ସଂଗଠନ ଗଢ଼ିବାକୁ ମଧ୍ୟ ଉଦ୍ୟମ କରାହୋଇ ନ ଥିଲା ।

୧୯୩୭ ମସିହାରେ ଆମେ ନବମ ଶ୍ରେଣୀରେ ପଢ଼ିବା ସମୟରେ ଗୋଟିଏ ସର୍ବ ଭାରତୀୟ ଛାତ୍ରସଂଘ ବା ଅଲ୍ ଇଣ୍ଡିଆ ଷ୍ଟୁଡେଣ୍ଟସ୍ ଫେଡ଼େରେସନ ଗଠିତ ହେବା କଥା ଖବର କାଗଜରୁ ପଢ଼ିଲୁ । ଭାରତର ସ୍ୱାଧୀନତା ଓ ସଚ୍ଚା ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ସବୁ ଶ୍ରେଣୀର ଛାତ୍ରଙ୍କର ଏହା ଏକ ମିଳିତ ଅନୁଷ୍ଠାନ ବୋଲି ଆହ୍ୱାନ ଦିଆହେଲା । ସାଧାରଣ ନିର୍ବାଚନ ପରେ ଓଡ଼ିଶାରେ ମଧ୍ୟ ଏହି ସର୍ବଭାରତୀୟ ଅନୁଷ୍ଠାନର ଏକ ଶାଖା ପ୍ରତିଷ୍ଠା କରିବା ପାଇଁ କବି ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ ଓ ବୈଦ୍ୟନାଥ ରଥ ପ୍ରମୁଖ ଉଦ୍ୟମ ଆରମ୍ଭ କଲେ । ତଦନୁଯାୟୀ କଟକରେ ଏକ ପ୍ରାଦେଶିକ ସମ୍ମିଳନୀ ଡକା ହେଲା । କଟକର ବିଶିଷ୍ଟ ଆଡ଼ଭୋକେଟ୍ ଶ୍ରୀଯୁକ୍ତ ହରିହର ମହାପାତ୍ର (ପରେ ପାଟନା ହାଇକୋର୍ଟର ଜଷ୍ଟିସ ମହାପାତ୍ର) ଏଥିରେ ସଭାପତିତ୍ୱ କରିଥିଲେ ଏବଂ କଟକ ଟ୍ରେନିଂ କଲେଜର ତତ୍କାଳୀନ ପ୍ରିନ୍ସିପାଲ ଶ୍ରୀଯୁକ୍ତ ଭବନାଥ ମୁଖାର୍ଜି ମୁଖ୍ୟ ଅତିଥି ରୂପେ ସମ୍ମିଳନୀରେ ଭାଷଣ ଦେଇଥିଲେ । ରେଭେନ୍ସା କଲେଜ, ଖଲ୍ଲିକୋଟ କଲେଜ ଓ ବିଭିନ୍ନ ହାଇସ୍କୁଲର ବହୁ ଛାତ୍ର ପ୍ରତିନିଧି ରୂପେ ଯୋଗ ଦେଇଥିଲେ ।

ସେତେବେଳେ ସ୍କୁଲ କଲେଜର ସଂଖ୍ୟା ଥିଲା ନଗଣ୍ୟ । ଶିକ୍ଷାର ସୁଯୋଗ ମଧ୍ୟ ଥିଲା ଅତି ସୀମିତ । ତଦୁପରି ଛାତ୍ରମାନଙ୍କର ସମସ୍ୟା ଥିଲା ଅନେକ । ସ୍କୁଲ କଲେଜରେ ସଭା ସମିତି କରିବାକୁ ଅନୁମତି ଦିଆଯାଉ ନ ଥିଲା । କେତେକ ହଷ୍ଟେଲରେ ଇଂରେଜ ବ୍ୟବସାୟୀ ଗୋଷ୍ଠି ଦ୍ୱାରା ପରିଚାଳିତ 'ଷ୍ଟେଟ୍‌ସମ୍ୟାନ' କାଗଜ ପଢ଼ିବାକୁ ଦିଆଯାଏ ଅଥଚ ସ୍ୱଦେଶୀ ବାର୍ତ୍ତାର ବାହକ ଅମୃତ ବଜାର ପତ୍ରିକା ବା ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼ ପଢ଼ିବାକୁ ସୁଯୋଗ ମିଳେ ନାହିଁ । କୌଣସି ରାଜନୈତିକ ଲୋକଙ୍କୁ ଶିକ୍ଷାନୁଷ୍ଠାନ ବା ହଷ୍ଟେଲରେ ପ୍ରବେଶ କରିବାକୁ ଅନୁମତି ଦିଆଯାଏ ନାହିଁ । ରାଜନୈତିକ ଦଳ, ମୁଖ୍ୟତଃ କଂଗ୍ରେସ ବା ଦଳୀୟ ନେତାଙ୍କ ସହିତ ସଂପର୍କ ଥିବାର ଜଣାପଡ଼ିଲେ କର୍ତ୍ତୃପକ୍ଷ ସଂପୃକ୍ତ ଛାତ୍ର ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରନ୍ତି । ସରକାରୀ ହାଇସ୍କୁଲର ଛାତ୍ରାବାସ ଏପରିକି ରେଭେନ୍ସା କଲେଜର ପୂର୍ବ ଓ ପଶ୍ଚିମ ଛାତ୍ରାବାସ ଥିଲା ସମୁନ୍ନତ କଏଦୀ ଘର ପରି । ପୁରୁଣା କାଳିଆ ନିୟମ କାନୁନ ବିନା ଦ୍ୱିଧାରେ ପ୍ରୟୋଗ କରାଯାଉଥିଲା । କେତେକ ବ୍ୟକ୍ତି ବିଶେଷଙ୍କୁ ବାଦ୍ ଦେଲେ, ଅଧ୍ୟକ୍ଷ, ଅଧ୍ୟାପକ ଓ ହେଡ଼୍‌ମାଷ୍ଟର ମାନଙ୍କର ପୋଲିସ ଦୃଷ୍ଟିଭଙ୍ଗୀ ଓ ସରକାରୀ ସମର୍ଥକ ମନୋଭାବ ଫଳରେ ସ୍ୱାଧୀନ ମନୋବୃତ୍ତିର ଛାତ୍ରମାନେ ହନ୍ତସନ୍ତ ହେଉଥିଲେ । ଏହି ପରିସ୍ଥିତିରେ 'ଛାତ୍ରସଂଘ'ର ଆବିର୍ଭାବ ଛାତ୍ରମାନଙ୍କ ମନରେ ନୂତନ ଆଶା ଓ ଆଶ୍ୱାସନା ସଂଚାର କରିଥିଲା ।

ସମ୍ମିଳନୀରେ ଛାତ୍ର ସମସ୍ୟା ଉପରେ ବହୁ ଆଲୋଚନା ପରେ କେତେଗୁଡ଼ିଏ ପ୍ରସ୍ତାବ ଗୃହୀତ ହେଲା । ନାମ ରଖା ହେଲା "ନିଖିଳ ଉତ୍କଳ ଛାତ୍ର ସଂଘ" ଏବଂ ନିଖିଳ ଭାରତ ଛାତ୍ର ଫେଡ଼େରେସନ୍‌ର ଏହା ପ୍ରାଦେଶିକ ଶାଖା ରୂପେ ଅନ୍ତର୍ଭୁକ୍ତ ହେଲା । ଅନନ୍ତ ପଟ୍ଟନାୟକ ଓ ବିଶ୍ୱନାଥ ପଶାୟତ ଯୁଗ୍ମ ସାଧାରଣ ସଂପାଦକ ଓ ନୀଳମଣି ରାଉତରାୟ ସହକାରୀ ସଂପାଦକ ନିର୍ବାଚିତ ହେଲେ । କାର୍ଯ୍ୟକାରୀ ସମିତିକୁ ବିଭିନ୍ନ ସ୍କୁଲରୁ ମଧ୍ୟ କେତେକ ସଭ୍ୟ ନିର୍ବାଚିତ ହୋଇଥିଲେ । ମୁଁ ଥିଲି ସେମାନଙ୍କ ମଧ୍ୟରେ ଅନ୍ୟତମ ।

"ଶାନ୍ତି ମୁକ୍ତି ପ୍ରଗତି" ଥିଲା ଛାତ୍ର ଫେଡ଼େରେସନର ଅନ୍ତିମ ଆଦର୍ଶ । ଅଧିକରୁ ଅଧିକ ଛାତ୍ରଙ୍କୁ ସ୍ୱାଧୀନତା ସଂଗ୍ରାମର ପତାକା ତଳେ ସମ୍ମିଳିତ କରାଇବା, ଶିକ୍ଷାନୁଷ୍ଠାନ ଗୁଡ଼ିକୁ ସାମ୍ରାଜ୍ୟବାଦୀ ସରକାରୀ ନିୟନ୍ତ୍ରଣରୁ ଯଥା ସଂଭବ ମୁକ୍ତ ରଖିବା, ଛାତ୍ରମାନଙ୍କ ମଧ୍ୟରେ ନବ ପ୍ରବାହିତ ପ୍ରଗତିର ଧାରା ଉନ୍ମୁକ୍ତ କରିବା ଏବଂ ଛାତ୍ର ସମାଜର ନ୍ୟାୟସଂଗତ ଦାବୀ ପାଇଁ ସଂଗ୍ରାମ କରିବା ଥିଲା ସଂଗଠନର ଆଭିମୁଖ୍ୟ । ଏହି ଲକ୍ଷ୍ୟରେ ସେ ବର୍ଷ ସେପ୍ଟେମ୍ବର ମାସରେ ଛାତ୍ରମାନଙ୍କର ଦାବୀପତ୍ର ନୂତନ ମନ୍ତ୍ରୀମଣ୍ଡଳ ନିକଟରେ

ଉପସ୍ଥାପିତ କରିବା ପାଇଁ ଏକ ଶୋଭାଯାତ୍ରା ବାହାରିଲା । ଏହି ଶୋଭାଯାତ୍ରା ପରିଚାଳନା କରୁଥିଲେ ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଣ୍ଡାୟତ, ବୈଦ୍ୟନାଥ ରଥ, ସଚ୍ଚି ରାଉତରାୟ ଓ ନୀଳମଣି ରାଉତରାୟ ପ୍ରମୁଖ । ସେତେବେଳେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଆଲମଚାନ୍ଦ ବଜାରର ଗୋଟିଏ ଘରେ ରହୁଥାନ୍ତି । ବୋଧରାମ ବାବୁ ଶିକ୍ଷାମନ୍ତ୍ରୀ । ବୋଧରାମ ବାବୁଙ୍କର ରାଜନୈତିକ ଅଭିଜ୍ଞତା ସୀମିତ ଓ ସବୁ କଥାରେ ସେ ପ୍ରଧାନମନ୍ତ୍ରୀଙ୍କ ଉପରେ ନିର୍ଭର କରନ୍ତି । ସେ ସମୟରେ ପ୍ରାଦେଶିକ ମୁଖ୍ୟ ମନ୍ତ୍ରୀମାନଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ମୋର ମନେ ଅଛି, ଶୋଭାଯାତ୍ରା ବିଶ୍ୱନାଥ ବାବୁଙ୍କ ଘରେ ପହଂଚିବା ମାତ୍ରେ, ସେ ତାଙ୍କର ସ୍ୱାଭାବିକ "ନମସ୍ତେ ନମସ୍ତେ" ଅଭିନନ୍ଦନ ଜଣାଇ ଦାବୀପତ୍ର ଗ୍ରହଣ କଲେ । କିନ୍ତୁ ପ୍ରଧାନମନ୍ତ୍ରୀ କୌଣସି ବିଷୟରେ କିଛି ରକମର ପ୍ରତିଶ୍ରୁତି ଦେଲେ ନାହିଁ । ହସି ହସି କାଗଜ ଗ୍ରହଣକୁ କେତେକ "କୂଟନୈତିକ ନାସ୍ତି" ବୋଲି ପରିହାସ କରିଥିଲେ । ସେତେବେଳେ ଓଡ଼ିଶାରେ ମେଡ଼ିକାଲ କଲେଜ ନ ଥିଲା, ଇଂଜିନିଅରିଂ କଲେଜ ନ ଥିଲା । ପ୍ରତି ଜିଲ୍ଲାର ସଦର ମହକୁମାରେ କଲେଜଟିଏ ନ ଥିଲା, ବିଶ୍ୱବିଦ୍ୟାଳୟ ମଧ୍ୟ ନ ଥିଲା । କିନ୍ତୁ ପ୍ରଧାନମନ୍ତ୍ରୀ କେବଳ ବିଚାର କରିବେ ବୋଲି ଆଶ୍ୱାସନା ଦେଲେ । ସେ ଆଶ୍ୱାସନା ପଛରେ କୌଣସି ଆନ୍ତରିକତା ଥିବା ଭଳି ମନେ ହେଲା ନାହିଁ ।

ଏହି ସମୟରେ କ୍ଷମତାସୀନ କଂଗ୍ରେସ ଦଳ ମଧ୍ୟରେ ଦୁଇଟି ବିବଦମାନ ଗୋଷ୍ଠି କାର୍ଯ୍ୟ କରୁଥାଏ । ନୀଳକଂଠ ଦାସଙ୍କୁ ପ୍ରଧାନମନ୍ତ୍ରୀ କରାଇ ନ ଦେବା ଏ ଗୋଷ୍ଠୀ ବିବାଦର ମୂଳ କାରଣ । ବିଶ୍ୱନାଥ ଦାସ ପ୍ରଥମେ ନୀଳକଂଠଙ୍କ ସମର୍ଥନରେ ପ୍ରଧାନମନ୍ତ୍ରୀ ହୋଇଥିଲେ । ନୀଳକଂଠ ବାବୁ ଆଶା କରୁଥିଲେ ଯେ ବିଶ୍ୱନାଥ ଦାସ ତାଙ୍କ ପାଇଁ ସ୍ଥାନ ଛାଡ଼ିଦେବେ । କିନ୍ତୁ ଥରେ ଗାଦିରେ ବସିଲା ପରେ, ଗାଦି ନିଶା ଲାଗିଗଲା । ବିଶ୍ୱନାଥ ବାବୁ ଅନ୍ୟ ଗୋଷ୍ଠୀର ସମର୍ଥନରେ କ୍ଷମତାସୀନ ରହିଲେ । ପରସ୍ପର ସଂପର୍କ ଏତେ ତିକ୍ତ ହୋଇ ଉଠିଲା ଯେ, ଯଦି ଛାତ୍ରସଂଘ ତରଫରୁ କୌଣସି ସମସ୍ୟା ଉପରେ ଆନ୍ଦୋଳନ ହୁଏ, ତେବେ ବିଶ୍ୱନାଥ ବାବୁ ସଂଦେହ କରନ୍ତି ଯେ, ଏ ଆନ୍ଦୋଳନ ବିରୋଧୀ ଗୋଷ୍ଠୀ ଅର୍ଥାତ୍ ପଣ୍ଡିତ ନୀଳକଂଠଙ୍କ ପ୍ରରୋଚନାରେ କରାଯାଇଛି ।

ବୋଧହୁଏ ଏହି ଧାରଣାର ବଶବର୍ତ୍ତୀ ହୋଇ ମହତାବ ବାବୁ ମଧ୍ୟ ଛାତ୍ର ଆନ୍ଦୋଳନର ବିରୋଧ କରୁଥିଲେ । ଡକ୍ଟର ମହତାବ ତାଙ୍କ ଆତ୍ମଜୀବନୀ "ସାଧନାର ପଥେ" ବହିରେ ଛାତ୍ର ଧର୍ମଘଟ ସଂପର୍କରେ ଲେଖିଛନ୍ତି "କଂଗ୍ରେସ

ମନ୍ତ୍ରୀଙ୍କୁ ବିବ୍ରତ କରିବା ଉଦ୍ଦେଶ୍ୟରେ ଏକ ଛାତ୍ର-ଧର୍ମଘଟ ଆରମ୍ଭ କରାଗଲା । ସେତେବେଳେ ମୁଁ ସବୁ ସ୍କୁଲକୁ ଯାଇ ଖବର କାଗଜରେ ଲେଖି ଏ ଛାତ୍ର-ଧର୍ମଘଟ ବିରୁଦ୍ଧରେ ପ୍ରଚାର କରିଥିଲି ।''

ଗୋଟିଏ ଆନ୍ଦୋଳନ ବ୍ୟାପକ ହେଲେ, ବିଭିନ୍ନ ରାଜନୈତିକ ଗୋଷ୍ଠୀ ସେଥିରୁ ବିଭିନ୍ନ ପ୍ରକାର ଫାଇଦା ଉଠାଇଥାନ୍ତି । କିନ୍ତୁ ଛାତ୍ର-ଧର୍ମଘଟ ଉଦ୍ଦେଶ୍ୟ ପ୍ରଣୋଦିତ ଏବଂ କ୍ଷମତାସୀନ ମନ୍ତ୍ରୀମାନଙ୍କୁ ଅସୁବିଧାରେ ପକାଇବା ପାଇଁ ପରିଚାଳିତ, ଏପରି ଅଭିଯୋଗର କୌଣସି ଯଥାର୍ଥତା ନ ଥିଲା । କଂଗ୍ରେସ ଦଳର ତିନି ଜଣ ଅଗ୍ରଗାମୀ ସଦସ୍ୟ, ନବକୃଷ୍ଣ ଚୌଧୁରୀ, ମୋହନ ଦାସ ଓ ପ୍ରାଣନାଥ ପଟ୍ଟନାୟକ ଛାତ୍ର ଆନ୍ଦୋଳନକୁ ସବୁ ପ୍ରକାରେ ସମର୍ଥନ କରୁଥିଲେ ।



# ସଂଗ୍ରାମର ଅୟମାରମ୍ଭ

କଲେଜିଏଟ୍ ସ୍କୁଲ ସରକାରଙ୍କ ପୂର୍ଣ କର୍ତ୍ତୃତ୍ୱାଧୀନରେ ପରିଚାଳିତ । ଜାତୀୟ ଆନ୍ଦୋଳନରୁ ଛାତ୍ରମାନଙ୍କ ଦୃଷ୍ଟି ଅପସାରିତ କରିବା ପାଇଁ ସରକାରୀ ସ୍ତରରେ ଯାହା କିଛି ନିଷ୍ପତ୍ତି ନିଆଯାଏ, କଲେଜିଏଟ୍‌ରେ ତାହା ପ୍ରଥମେ କାର୍ଯ୍ୟକାରୀ ହୁଏ । ଉତ୍ସବ ଦିନ ମାନଙ୍କରେ ସ୍କୁଲ ଛାତ ଉପରେ ୟୁନିଅନ୍ ଜ୍ୟାକ୍ ଉଡ଼ାଇବା, ଶିକ୍ଷକମାନେ ସୁଟ ପିନ୍ଧି ଆସିବା ଓ ଅନ୍ୟାନ୍ୟ ସାହେବୀ ଆଦବ୍ କାଏଦା ଅନୁକରଣ କରିବା ପାଇଁ ପ୍ରୋତ୍ସାହନ ଦିଆଯାଏ । ୧୯୩୬ ଜାନୁଆରୀ ମାସରେ ସମ୍ରାଟ ପଂଚମ ଜର୍ଜଙ୍କର ମୃତ୍ୟୁ ହେଲା । ଉପରୁ ନିର୍ଦ୍ଦେଶ ଆସିଲା, ଛାତ୍ର ଓ ଶିକ୍ଷକମାନେ ଶୋକ ପ୍ରକାଶର ନିଦର୍ଶନ ସ୍ୱରୂପ, ସାର୍ଟ ଉପରେ ଖଣ୍ଡେ କଳା କନାର ପଟି ବାନ୍ଧିବେ । କଳାପଟିକୁ ମୁଁ ଦାସତ୍ୱର ସନ୍ତକ ରୂପେ ମନେ କରିଥିଲି । ରାଜା ପଂଚମ ଜର୍ଜ ଆମର ସମ୍ରାଟ ନୁହନ୍ତି ଏବଂ ଆମେ ଭାରତୀୟମାନେ ବ୍ରିଟିଶ ସାମ୍ରାଜ୍ୟରୁ ସ୍ୱତନ୍ତ୍ର ହେବାକୁ ପ୍ରୟାସୀ, ଏ କଥା ମୁଁ ପିଲାଦିନୁ ଶିଖିଥିଲି । ଗାଁ ଶୋଭାଯାତ୍ରାରେ "ଡାଉନ୍ ଡାଉନ୍ ୟୁନିଅନ ଜ୍ୟାକ୍" ଧ୍ୱନି ଦେବା ଆମର ଅଭ୍ୟାସ ଦୋଷ ଥିଲା, ଯଦିଓ ଏ ଧ୍ୱନିର ତାତ୍ପର୍ଯ୍ୟ ଆମେ ଭଲକରି ବୁଝି ନ ଥିଲୁ । ଏଣୁ ବିଦେଶୀ ଶାସକଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ରାସ୍ତାରେ କଳାପଟି ବାନ୍ଧି ଯିବାକୁ ଅପମାନ ଲାଗୁଥିଲା । କିନ୍ତୁ ନୂଆକରି ଯୋଗ ଦେଇଥିବା ସ୍କୁଲରେ ଏ ବିଷୟରେ ପ୍ରତିବାଦ କରିବାକୁ ମୋର ସାହସ ନ ଥିଲା । ମୁଁ କଳାପଟି ସାର୍ଟରେ ଲଗାଏ ଏବଂ ସ୍କୁଲ ହତାରୁ ବାହାରିଲା ପରେ ପଟିଟି କାଢ଼ି ପକେଟ୍‌ରେ ରଖିଦିଏ ।

ଏହାର କେତେ ବର୍ଷ ପୂର୍ବରୁ ସ୍କୁଲ କଲେଜ ମାନଙ୍କରେ 'ବଏ ସ୍କାଉଟ୍' ସଂଗଠନ ପ୍ରତିଷ୍ଠା କରାଯାଇଥାଏ । ସ୍କାଉଟ୍‌ମାନେ "ରାଜା ଦୀର୍ଘଜୀବୀ ହୁଅନ୍ତୁ" ଧ୍ୱନି ଦେଇ ଶପଥ ନିଅନ୍ତି । ବ୍ରିଟିଶ ସାମ୍ରାଜ୍ୟର ଜଣେ ପ୍ରଖ୍ୟାତ ଧ୍ୱଜାଧାରୀ ଲର୍ଡ଼ ବେଡ଼େନ ପାଓ୍ୱେଲ ଥିଲେ ଏହି ସଂଗଠନର ମୁଖ୍ୟ । ବ୍ରିଟିଶ ସାମ୍ରାଜ୍ୟର ବିଭିନ୍ନ ରାଜ୍ୟର ନବ ଜାଗ୍ରତ ଯୁବଶକ୍ତିର ଚିନ୍ତାଧାରକୁ ନିୟନ୍ତ୍ରଣ କରିବା ଏହି ଆନ୍ଦୋଳନର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସ୍କାଉଟମାନେ ନିୟମିତ ଡ୍ରିଲ କରନ୍ତି, ଖେଳ କସରତ ଶିଖନ୍ତି, ବିପଦ ଆପଦରେ, ଅସୁସ୍ଥ ଅବସ୍ଥାରେ, ଦୁର୍ଘଟଣା କାଳରେ କିପରି ଆଶୁ ପ୍ରତୀକାର କରିବାକୁ ହେବ, ସେ ବିଷୟରେ ତାଲିମ୍ ନିଅନ୍ତି । କଂଗ୍ରେସ ଓ ସାମ୍ୟବାଦୀ ନେତାମାନେ ପରିହାସ କରନ୍ତି, ସ୍କାଉଟମାନେ

ବ୍ରିଟିଶ ସାମ୍ରାଜ୍ୟବାଦର ଆଗୁଆ ବାହିନୀ । ବାସ୍ତବିକ ଦକ୍ଷ ସ୍କାଉଟମାନଙ୍କୁ ଦେଶ ବିଦେଶ ଭ୍ରମଣ କରିବାର ସୁବିଧା ଦିଆଯାଏ, ଚାକିରୀ କ୍ଷେତ୍ରରେ ନାନା ସୁଯୋଗ ଓ ବିଶେଷ ଅଧିକାର ଦିଆଯାଏ ।

କଲେଜିଏଟ୍ ସ୍କୁଲରେ 'ବଏ ସ୍କାଉଟ୍' ସଂଗଠନର ଦାୟିତ୍ୱରେ ଥିଲେ ଅନ୍ୟତମ ଇଂରାଜୀ ଶିକ୍ଷକ ମହୀମ୍ ଚନ୍ଦ୍ର ନନ୍ଦୀ । ପ୍ରାୟ ୫୦ ରୁ ୬୦ ଜଣ ଛାତ୍ର ସ୍କାଉଟ୍ ତାଲିକାରେ ନାମ ଲେଖାଇଥାଉ । ମୋ ସହିତ ଅନ୍ୟତମ ବୃତ୍ତିଭୋଗୀ ଛାତ୍ର ପ୍ରଦୀପ୍ତ କିଶୋର ଦାସ (ଭବିଷ୍ୟତର ଶିକ୍ଷାମନ୍ତ୍ରୀ) ମଧ୍ୟ ଏଥିରେ ଯୋଗ ଦେଇଥାନ୍ତି । ସେହି ବର୍ଷ ଅକ୍ଟୋବର ମାସରେ ପୁରୀରେ ପ୍ରାଦେଶିକ ବଏ ସ୍କାଉଟ ରାଲି ଅନୁଷ୍ଠିତ ହେଲା । ମୋଗଲବନ୍ଦୀ ଓଡ଼ିଶାର ବିଭିନ୍ନ ସ୍କୁଲର ସ୍କାଉଟ ଛାତ୍ର ଓ ଶିକ୍ଷକମାନେ ପୁରୀରେ ସମବେତ ହୋଇଥିଲେ । ଜିଲ୍ଲା ସ୍କୁଲ ଖେଳ ପଡ଼ିଆରେ (ବର୍ତ୍ତମାନର ସାମନ୍ତ ଚନ୍ଦ୍ରଶେଖର କଲେଜ ପଡ଼ିଆ) ଆମ୍ଭେମାନେ ତମ୍ବୁ ପକାଇ ରହିଥାଉ । ସକାଳେ ଓଡ଼ିଶାର ଛୋଟ ଲାଟ ହବାକ୍ ସାହେବ ରାଲି ଉଦ୍‌ଘାଟନ କଲେ ଓ ସ୍କାଉଟ ମାନଙ୍କଠାରୁ ସଲାମୀ ଗ୍ରହଣ କଲେ । ଡ୍ରିଲ ମାର୍ଚ୍ଚ ଆରମ୍ଭ ହେବାର ଅଳ୍ପ ସମୟ ପରେ କୁଆଡୁ ମାଡ଼ି ଆସିଲା ଦୁର୍ଦ୍ଦାନ୍ତ ଝଡ଼ ବର୍ଷା ଓ ତୋଫାନ । ଲାଟ ସାହେବଙ୍କ ପାଇଁ ନିର୍ମିତ ସଲାମୀ ମଂଚ ଭାଂଗି ପଡ଼ିଲା । ତମ୍ବୁ ସବୁ ପବନରେ ଉଡ଼ିବାକୁ ଲାଗିଲା । ସ୍କାଉଟ୍‌ମାନେ ବିକଳରେ ବେଡ଼ିଂ ପତ୍ର ଧରି ଜିଲ୍ଲା ସ୍କୁଲ କ୍ଲାସ ଘରମାନଙ୍କରେ ଆଶ୍ରୟ ନେଲେ । ଅଦିନିଆ ବର୍ଷା ତୋଫାନ ହେତୁ ରୋଷାଇବାସର ମଧ୍ୟ ବନ୍ଦୋବସ୍ତ ହୋଇ ପାରିଲା ନାହିଁ । ଦିନଯାକ ଆମେ ଉପାସ ରହିଲୁ । ରାତିରେ ବର୍ଷା ଝଡ଼ କମିଯିବା ପରେ, ଦେଉଳରୁ ଆସିଥିବା କିଛି କିଛି ମହାପ୍ରସାଦ ମିଳିଲା । ଶୁଣିଲୁ, ଏମାର ମଠର ମହନ୍ତ ମହାରାଜ କୁଆଡ଼େ ଏ ମହାପ୍ରସାଦ ପଠାଇଛନ୍ତି । ବ୍ରିଟିଶ ସାମ୍ରାଜ୍ୟବାଦର ମୂଳୋତ୍ପାଟନ ପାଇଁ ଦେଶରେ ଚାଲିଥିବା ରାଜନୈତିକ ସଂଘର୍ଷ ସହିତ ପ୍ରକୃତି ଯେପରି ଆପ୍ରାଣ ସହଯୋଗ କରିଥିଲେ ।

ପୁରୀର ଏହି ରାଲି ଥିଲା ପ୍ରାଦେଶିକ ସ୍ତରରେ ବଏ ସ୍କାଉଟମାନଙ୍କର ଅନ୍ତିମ ମିଳନ । ପରବର୍ଷ କଂଗ୍ରେସ ମନ୍ତ୍ରୀମଣ୍ଡଳ ପ୍ରତିଷ୍ଠିତ ହେଲା । ସ୍ୱଦେଶୀ ନେତୃତ୍ୱର ଆହ୍ୱାନରେ ହିନ୍ଦୁସ୍ଥାନୀ ବାଳଚର ଆନ୍ଦୋଳନ ଜନ୍ମଲାଭ କଲା । ଲର୍ଡ଼ ବେଡ଼େନ୍ ପାଓ୍ୱେଲଙ୍କ 'ବଏ ସ୍କାଉଟ' ଆନ୍ଦୋଳନର ଭିତ୍ତି ବିଧ୍ୱସ୍ତ ହୋଇଗଲା । ସାମ୍ରାଜ୍ୟବାଦର ମୁଦ୍‌ମୋର୍ଚ୍ଚା 'ବଏ ସ୍କାଉଟ୍' ସଂଗଠନରୁ ଇସ୍ତଫା

ଦେବା ପାଇଁ ନବ ଗଠିତ ଛାତ୍ର ଫେଡ଼େରେସନ ଆହ୍ୱାନ ଦେଲେ । ଫେଡ଼େରେସନର ଜଣେ ସକ୍ରିୟ ସଭ୍ୟ ଭାବରେ ମୁଁ ସ୍କାଉଟ ସଂଗଠନରୁ ଇସ୍ତଫା ଦେଲି । ସ୍କୁଲରେ ଏହାକୁ ସରକାର-ବିରୋଧୀ କାର୍ଯ୍ୟ ବୋଲି ବିଚାର କରାଗଲା । ସ୍କାଉଟ ଶିକ୍ଷକ ମହୀମ୍ ବାବୁ ଓ ଫନୀ ବାବୁ ମୋ ଉପରେ ଅତ୍ୟନ୍ତ ବିରକ୍ତ ହେଲେ । ମୁଁ ଭାବିଲି, ଦାସତ୍ୱ ବଂଧନରୁ ମୁକ୍ତ ହୋଇଛି ।

ବର୍ତ୍ତମାନ ଯେଉଁ କୋଠା କଟକର ଛିଲା ଜଜ୍ କୋର୍ଟ ଓ ସବଜଜ୍ କୋର୍ଟ ରୂପେ ବ୍ୟବହୃତ ହେଉଛି, ହାଇକୋର୍ଟ ପ୍ରତିଷ୍ଠିତ ହେବା ପୂର୍ବରୁ ତାହା ଥିଲା ଟ୍ରେନିଂ କଲେଜ ଓ କଲେଜିଏଟ ସ୍କୁଲ ହେଡ୍‌ମାଷ୍ଟରଙ୍କ ବାସଗୃହ । ଟ୍ରେନିଂ କଲେଜର ଛାତ୍ରମାନେ, ପ୍ରଶିକ୍ଷଣର ଅଂଗ ରୂପେ ବିଭିନ୍ନ ସ୍କୁଲମାନଙ୍କରେ କ୍ଲାସ ନିଅନ୍ତି । କଲେଜିଏଟ୍ ଛାତ୍ରମାନେ ବହୁ ସମୟରେ ଟ୍ରେନିଂ କଲେଜକୁ ଯାଆନ୍ତି ଏବଂ ସେଠାରେ କଲେଜ ଛାତ୍ରମାନେ ତାଙ୍କ ପ୍ରିନ୍ସିପାଲ ବା ଅଧ୍ୟାପକଙ୍କ ସାମନାରେ ଡିମୋନଷ୍ଟ୍ରେସନ କ୍ଲାସ ନିଅନ୍ତି । ୩୬-୩୭ ମସିହାରେ ଭବନାଥ ମୁଖାର୍ଜି ଥିଲେ ଟ୍ରେନିଂ କଲେଜର ପ୍ରିନ୍ସିପାଲ ଓ ମହେଶ ଚନ୍ଦ୍ର ପ୍ରଧାନ ଅଧ୍ୟାପକ । ଯେତେଦୂର ମନେ ପଡୁଛି, ତିରିଶ ବତ୍ରିଶ ଜଣ ଛାତ୍ରଙ୍କ ମଧ୍ୟରେ ସାଲେପୁର ହାଇସ୍କୁଲର ଶିକ୍ଷକ ମନମୋହନ ପଟ୍ଟନାୟକ, ମିଶନ ହାଇସ୍କୁଲର ସରସୀ ମୋହନ ଦାସ ଓ ତାଳଚେରର ପବିତ୍ର ମୋହନ ପ୍ରଧାନ ଥିଲେ ଅନ୍ୟତମ । ଥରେ ଶ୍ରୀ ପ୍ରଧାନ ଭୂଗୋଳ କ୍ଲାସରେ ଦିନରାତି କିପରି ହୁଏ ପଢ଼ାଉଥିଲେ । ବ୍ଲାକ୍‌ବୋର୍ଡ଼ରେ ସୂର୍ଯ୍ୟ ଓ ପୃଥିବୀର ଚିତ୍ର କାଟି, ପୃଥିବୀ ଘୂରିବା ଅବସ୍ଥାରେ, ଯେଉଁ ଅଧକରେ ସୂର୍ଯ୍ୟ କିରଣ ପଡ଼େ, ସେଠାରେ ଦିନ ଏବଂ ଯେଉଁ ଅଧକରେ ସୂର୍ଯ୍ୟ ଦେଖାଯାନ୍ତି ନାହିଁ ସେଠାରେ ରାତି; ଏହା ହିଁ ଥିଲା ତାଙ୍କର ବକ୍ତବ୍ୟ । ଧଳା କାଗଜରେ ଛପା ଭୂଗୋଳ ବହିରେ ଯେଉ ଚିତ୍ର ଛପା ଯାଇଥାଏ, ସେଥିରେ ପୃଥିବୀର ଯେଉଁ ଅଧକରେ ଦିନ, ସେ ଅଂଶରେ କିଛି ରଂଗ ଦିଆଯାଏ ନାହିଁ । ମାତ୍ର ଯେଉଁ ଅଧକରେ ରାତି, ସେ ଅଂଶରେ କଳା କାଳି ବୋଳା ଯାଇଥାଏ । କିନ୍ତୁ ବ୍ଲାକବୋର୍ଡ଼ ତ କଳା । ପବିତ୍ର ବାବୁ ବୋର୍ଡ଼ରେ ସୂର୍ଯ୍ୟ ଓ ପୃଥିବୀର ଚିତ୍ର କାଟି ଦିନ ରାତି ଦେଖାଇଲା ବେଳେ ଯେଉଁ ଅଂଶରେ ସୂର୍ଯ୍ୟ କିରଣ ପଡୁନାହିଁ ଓ ରାତି ହୋଇଛି, ସେ ଅଂଶରେ ଧଳା ଚକ୍ ବୋଳି ଦେଲେ । ଫଳରେ ବ୍ଲାକ୍‌ବୋର୍ଡ଼ ଉପରେ ରାତି ଅଂଶ ଦେଖାଗଲା ଧଳା ଓ ଦିନ ଅଂଶ ଦେଖାଗଲା କଳା ।

ସେ ସମୟରେ ଶିକ୍ଷାର ମାଧ୍ୟମ ଥିଲା ଇଂରାଜୀ । ମୁଁ ତତ୍‌କ୍ଷଣାତ୍ ତାଙ୍କୁ ଇଂରାଜୀରେ ପଚାରିଲି, ସୂର୍ଯ୍ୟ କିରଣ କେବେ ଠାରୁ କଳା ହେଲା । ସେ ପ୍ରଶ୍ନର ତାତ୍ପର୍ଯ୍ୟ ବୁଝି ପାରିଲେ ନାହିଁ । ମୁଁ ଦ୍ୱିତୀୟ ବାର ସେହି ପ୍ରଶ୍ନ କଲି । ସେ ବିବ୍ରତ ହୋଇ ପଡ଼ିଲେ ଓ ମୋର ସହପାଠୀମାନେ ହସିବାକୁ ଆରମ୍ଭ କଲେ । ତୃତୀୟ ଥର ପଚାରିଲା ପରେ ସେ ବୁଝି ପାରିଲେ ଯେ ବ୍ଲାକବୋର୍ଡ଼ରେ ଚିତ୍ର ଆଂକିଲା ବେଳେ ସେ ରାତି ଅଂଶ ଉପରେ ଧଳା ଚକ୍ ବୋଲି ଦେଇଛନ୍ତି । ସେହିଦିନ ଠାରୁ ଟ୍ରେନିଂ କଲେଜ ଛାତ୍ରମାନଙ୍କ ମଧ୍ୟରେ ମୋର ଖାତିର ବଢ଼ିଗଲା ଓ ବିଭିନ୍ନ ସମୟରେ ରଂଗ ବେରଂଗର ଚକ୍ ମତେ ଅନୁଦାନ ମିଳିଲା । ପରେ ମୁଁ ଶୁଣିଲି, ମୋର ଏ ନିରୀହ ଅବାଂଛିତ ପ୍ରଶ୍ନ ହେତୁ ପବିତ୍ର ବାବୁଙ୍କର ନମ୍ବର କଟି ଯାଇଛି । ମୋର ଏପରି କୌଣସି ମନ୍ଦ ଉଦ୍ଦେଶ୍ୟ ନ ଥିଲା ।

ଟ୍ରେନିଂ କଲେଜ ଛାଡ଼ିବାର ଦେଢ଼ବର୍ଷ ପରେ ତାଳଚେର ପ୍ରଜାମଣ୍ଡଳର ନେତୃତ୍ୱ ଗ୍ରହଣ କରି, ଦେଶପ୍ରେମର ସେ ଯେଉଁ ପରାକାଷ୍ଠା ଦେଖାଇଥିଲେ ତାହା ଅଦ୍ୱିତୀୟ । ସେ ଉପ ମୁଖ୍ୟମନ୍ତ୍ରୀ ଥିବା ସମୟରେ ତାଙ୍କ ସହିତ ମୋର ଘନିଷ୍ଠ ସଂପର୍କ ଥିଲା ଏବଂ ମୋର ଦକ୍ଷତା ଉପରେ ତାଙ୍କର ଭରସା ଅଛି ବୋଲି, ସେ ବହୁ କ୍ଷେତ୍ରରେ ବାରବାର କହୁଥିଲେ ।

ବିଶ୍ୱମ୍ଭର ବାବୁ ନୂଆ ପ୍ରଦେଶ ଗଠିତ ହେବା ପରେ ଡି.ପି.ଆଇ.ଙ୍କର ସହକାରୀ ଭାବରେ ବଦଳି ହୋଇଗଲେ । ତାଙ୍କ ସ୍ଥାନରେ ନୂଆ ହେଡ୍‌ମାଷ୍ଟର ଆସିଲେ ଶ୍ରୀ ଶରତ୍ ଘୋଷାଲ । ସେ ଅତି ଗମ୍ଭୀର ପ୍ରକୃତିର ଲୋକ । ତାଙ୍କ ମୁହଁରେ ଟିକିଏ ହସ ନ ଥାଏ । ଥରେ ଅଧେ ଛାତ୍ରମାନଙ୍କୁ ବେତ୍ରାଘାତ କରନ୍ତି । ତାଙ୍କର ରୁକ୍ଷ ଓ କଠୋର ଶାସନ ବିରୁଦ୍ଧରେ ଛାତ୍ରମାନଙ୍କ ମଧ୍ୟରେ ଅସନ୍ତୋଷ ଜମାଟ ବାଂଧେ । ନୂଆ ପରିସ୍ଥିତି ସହିତ ପାଦ ମିଳାଇ ଚାଲିବାକୁ ସେ ଥିଲେ ସଂପୂର୍ଣ୍ଣ ଅକ୍ଷମ ।

ଦଶମ ଶ୍ରେଣୀରେ ପଢ଼ିବା ସମୟରେ ସୁକାନ୍ତ ବାବୁ (ସୁକାନ୍ତ ରାଓ) ହେଡ୍‌ମାଷ୍ଟର ହୋଇ ଆସିଲେ । ସେ ଥିଲେ ଅତି ସ୍ନେହୀ ଓ ଛାତ୍ରବତ୍ସଳ । ପିଲାମାନେ ତାଙ୍କୁ ଭୟ କରନ୍ତି ନାହିଁ । କିନ୍ତୁ ତାଙ୍କ କଥା ମାନନ୍ତି । ଥରେ ଦୁଇଜଣ ଖେଳାଳୀ ପିଲା ସନ୍‌ସାଇନ୍ ପଡ଼ିଆରେ ଝଗଡ଼ା କଲେ । ଜଣେ ଅନ୍ୟ ଜଣକୁ ମାରି ତାର ସାର୍ଟ ଛିଣ୍ଡାଇ ଦେଲା । ଆହତ ଖେଳାଳୀ ହେଡ୍‌ମାଷ୍ଟରଙ୍କ ନିକଟରେ ଫେରାଦ୍ ହେଲା । କ୍ଲାସ ଶେଷ ହେବା ପରେ, ସୁକାନ୍ତ ବାବୁ

ଦୁହିଁଙ୍କୁ ନିଜ କୋଠିକୁ ଡକାଇଲେ । ସବୁ କଥା ନୀରବରେ ଶୁଣିଲେ । ଛଳ ଛଳ ଆଖିରେ ନିଜର ସୋଟିଂ ଜ୍ୟାକେଟ୍ କାଢ଼ି ଆହତ ଛାତ୍ରକୁ ପିନ୍ଧାଇ ଦେଲେ । ଏହାପରେ ଉଭୟ ଛାତ୍ର ସୁକାନ୍ତ ବାବୁଙ୍କ ପାଦ ଧରି ଭୋ ଭୋ ହୋଇ କାନ୍ଦିବାକୁ ଲାଗିଲେ । କଳି ତୁଟିଗଲା । ବେତ୍ରାଘାତ ନୁହେଁ, ସ୍ନେହର ଶାସନରେ ସେ ବୋଧହୁଏ ବିଶ୍ୱାସ କରୁଥିଲେ ।

ଏପ୍ରିଲ ମାସରେ ସ୍କୁଲର ପୁରସ୍କାର ବିତରଣ ଉତ୍ସବକୁ ହେଡ଼୍‌ମାଷ୍ଟ୍ରେ ଢେଙ୍କାନାଳର ତତ୍‌କାଳୀନ ରାଣୀ ରତ୍ନପ୍ରଭା ଦେବୀଙ୍କୁ ପ୍ରଧାନ ଅତିଥି ଭାବରେ ନିମନ୍ତ୍ରଣ କରିଥିଲେ । ରତ୍ନପ୍ରଭା ଥିଲେ ଜଣେ ସଦ୍‌ଗୁଣ ସଂପନ୍ନା ମହୀୟସୀ ମହିଳା । ବ୍ୟକ୍ତିଗତ ଭାବରେ ତାଙ୍କ ବିରୁଦ୍ଧରେ କାହାର କିଛି ଅଭିଯୋଗ ନ ଥିଲା । କିନ୍ତୁ ଅତ୍ୟାଚାରୀ ଢେଙ୍କାନାଳ ରାଜାଙ୍କର ରାଣୀ ସାହେବାଙ୍କୁ ଏପରି ଭାବରେ ସମ୍ମାନିତ କରିବାର ବହୁଲୋକ ବିରୋଧୀ ଥିଲେ । ବେଢ଼ି ସାଂଗକୁ କୋରଡ଼ା ମାଡ଼ ପରି, ତହିଁ ପରଦିନ କେତେକ ଛାତ୍ର ଓ ବାହାର ଲୋକ ମିଶି ଟାଉନ୍ ହଲ୍‌ରେ ରାଣୀ ସାହେବାଙ୍କୁ ସଂବର୍ଦ୍ଧନା ଦେଲେ । ଏହା ପଛରେ ସୁକାନ୍ତ ବାବୁଙ୍କର ପ୍ରଚ୍ଛନ୍ନ ସମର୍ଥନ ଥିଲା ବୋଲି ସଂଦେହ କରାଯାଇଥିଲା । ସେତେବେଳକୁ ଗଡ଼ଜାତ ପ୍ରଜା ଆନ୍ଦୋଳନ ଆରମ୍ଭ ହୋଇଯାଇଥାଏ । ଢେଙ୍କାନାଳ ଅତ୍ୟାଚାରର କାହାଣୀ ଧୀରେ ଧୀରେ ପଦାକୁ ଆସୁଥାଏ । କଟକ ସହର ବୁକୁରେ ଅତ୍ୟାଚାରୀ ରାଜ ପରିବାରର ପ୍ରତିନିଧିଙ୍କୁ ଏପରି ଭାବରେ ସମ୍ମାନିତ କରିବା ବିରୁଦ୍ଧରେ ଆମେମାନେ ପ୍ରତିବାଦ କଲୁ । ଆମର ଏହି ପ୍ରତିବାଦ ପଛରେ ନବ ବାବୁଙ୍କର ସମର୍ଥନ ଥିଲା । ଆମ୍ଭେମାନେ ଟାଉନ ହଲ ସଭାରେ ବିକ୍ଷୋଭ ପ୍ରଦର୍ଶନ କଲୁ । ତହିଁ ପରଦିନ ସ୍କୁଲରେ ପ୍ରତିବାଦ ସଭା ହେଲା । କଲେଜିଏଟ୍ ସ୍କୁଲର ସୁଦୀର୍ଘ ଜୀବନ କାଳରେ ଏହା ବୋଧହୁଏ ପ୍ରଥମ ପ୍ରତିବାଦ ସଭା । ପରଦିନ ଶୁଣିଲୁ ଆମର ବୃତ୍ତି କାଟି ଦିଆଯିବ ଓ ଫ୍ରିଷ୍ଟୁଡ଼େଣ୍ଟସିପ ସୁବିଧା ପ୍ରତ୍ୟାହାର କରାଯିବ । ଐକ୍ୟବଦ୍ଧ ଶକ୍ତି ଉପରେ ଭରସା ରଖିବା ବ୍ୟତୀତ ଆମର ଅନ୍ୟ କୌଣସି ସାହା ନ ଥିଲା । କିନ୍ତୁ କୌଣସି ଶାସ୍ତି ଭୋଗିବାକୁ ପଡ଼ିଲା ନାହିଁ । ହେଡ଼୍‌ମାଷ୍ଟ୍ରେ ବୋଧହୁଏ ଭାବିଲେ, ଜଳନ୍ତା ନିଆଁକୁ ଉଖାରିଲେ ତାହା ଆହୁରି ଜୋରରେ ଜଳିବ ।

୧୯୩୯ ମସିହାରେ ଏକାଦଶ ଶ୍ରେଣୀରେ ପଢ଼ିବା ସମୟରେ ଛାତ୍ର ଆନ୍ଦୋଳନର ଏକ ଭୟାନକ ଝଞ୍ଜା ଆମ ସମସ୍ତଙ୍କୁ ଦୋହଲାଇ ଦେଲା । ବହୁଦିନର ପୁଞ୍ଜୀଭୂତ ଅସନ୍ତୋଷର ବିସ୍ଫୋରଣ ଘଟିଲା, କଟକ ମେଡ଼ିକାଲ

ସ୍କୁଲରେ । ଓଡ଼ିଶାରେ ସେତେବେଳେ କୌଣସି ମେଡ଼ିକାଲ କଲେଜ ନ ଥିଲା । କଟକରେ ପ୍ରତିଷ୍ଠିତ ମେଡ଼ିକାଲ ସ୍କୁଲ ଥିଲା ଏକ ପୁରୁଣା କାଳିଆ ଅନୁଷ୍ଠାନ । ଏଠାରୁ ପାସ୍ କରୁଥିବା ଛାତ୍ରମାନଙ୍କୁ ଏକ ଲାଇସେନ୍ସ ଦିଆ ଯାଉଥିଲା, ଯାହାର ନାମ ଥିଲା ଏଲ୍.ଏମ୍.ପି । ତଦୁପରି ଏହି ସ୍କୁଲର ତତ୍କାଳୀନ ଗୋରା ଅଧ୍ୟକ୍ଷ କର୍ଣ୍ଣେଲ ଓନିଲ୍ ଛାତ୍ରମାନଙ୍କ ପ୍ରତି ଦୁର୍ବ୍ୟବହାର ପାଇଁ ପ୍ରସିଦ୍ଧ ଥିଲେ । ପୂର୍ବ ବର୍ଷ ଛାତ୍ର ଅସନ୍ତୋଷକୁ ଦମନ କରିବାକୁ ଯାଇ କେତେଜଣ ଛାତ୍ରଙ୍କୁ ସ୍କୁଲରୁ ବହିଷ୍କାର କରାଯାଇଥିଲା । ଅସନ୍ତୋଷର କାରଣ ଦୂର କରିବା ପରିବର୍ତ୍ତେ, ସେ ବର୍ଷ ମଧ୍ୟ ଅନୁରୂପ ଦମନ-ମୂଳକ ପନ୍ଥା ଅବଲମ୍ବନ କରାହେଲା ।

୧୯୩୯ ମାର୍ଚ୍ଚ ୨୬ ତାରଖରେ ମେଡ଼ିକାଲ ସ୍କୁଲ ଧର୍ମଘଟ ଆରମ୍ଭ ହେଲା । ଜଣେ ଛାତ୍ର ସୁଧୀର ଜବି ଆମରଣ ଅନଶନ ଆରମ୍ଭ କଲେ । ଧର୍ମଘଟର ନେତା ଥିଲେ ମୋତିଲାଲ ତ୍ରିପାଠୀ, ରବି ଘୋଷ, ପଦ୍ମନାଭ ତ୍ରିପାଠୀ, ନରସିଂହ ସାମନ୍ତସିଂହାର ପ୍ରମୁଖ । ରବି ଘୋଷଙ୍କର ଜନ୍ମ କଟକର ଏକ ସଂଭ୍ରାନ୍ତ ପରିବାରରେ । କଲିକତାର କେତେକ ସମାଜବାଦୀ ଓ ସନ୍ତ୍ରାସବାଦୀ ଗୋଷ୍ଠୀ ସହିତ ତାଙ୍କର ସଂପର୍କ ଥିଲା । ସ୍ୱାଧୀନତା ପ୍ରାପ୍ତିର ଅଳ୍ପ ଦିନ ପରେ ରବିଦା ସାଂଗ ସାଥିମାନଙ୍କଠାରୁ ଚିର ବିଦାୟ ନେଇଛନ୍ତି । ସେତେବେଳେ ଓଡ଼ିଶାରେ କଂଗ୍ରେସ ଶାସନ ଚାଲିଥାଏ । ବିଶ୍ୱନାଥ ଦାସ ପ୍ରଥମ ପ୍ରଧାନମନ୍ତ୍ରୀ । ବହୁ କଂଗ୍ରେସ ନେତା ଓ ବିଶିଷ୍ଟ ନାଗରିକ ଧର୍ମଘଟର ଆଶୁ ସମାଧାନ ପାଇଁ ସରକାରଙ୍କୁ ନିବେଦନ କଲେ । କିନ୍ତୁ ସରକାରୀ ଅଫିସରଙ୍କ ପରାମର୍ଶରେ ମନ୍ତ୍ରୀମାନେ ନୀରବ-ଦ୍ରଷ୍ଟା ହୋଇ ରହିଲେ । ଏ ପରିସ୍ଥିତିରେ ମେଡ଼ିକାଲ ସ୍କୁଲ ଛାତ୍ରମାନଙ୍କୁ ସମର୍ଥନ ଦେବା ଛାତ୍ରସଂଘ ପକ୍ଷରେ ଅନିବାର୍ଯ୍ୟ ହୋଇ ଉଠିଲା । ଅନ୍ୟ ସ୍କୁଲ କଲେଜରେ ଧର୍ମଘଟ ପାଇଁ ଛାତ୍ରସଂଘ ଆହ୍ୱାନ ଦେଲେ । ସଚ୍ଚି ରାଉତରାୟଙ୍କ ସଂପାଦନାରେ ଧର୍ମଘଟର ସମ୍ବାଦ ପ୍ରକାଶ କରିବା ପାଇଁ 'ଛାତ୍ର' ପତ୍ରିକା ପ୍ରକାଶିତ ହେଲା, ମଧୁ ବାବୁ (ମଧୁସୂଦନ ମହାନ୍ତି)ଙ୍କ ଅବ୍ଜରଭର ପ୍ରେସରୁ । ଛାତ୍ରାବସ୍ଥାରେ ମଧ୍ୟ ସଚ୍ଚି ରାଉତରାୟ ଥିଲେ ପ୍ରଖ୍ୟାତ କବି । ତାଙ୍କ ଲିଖିତ କେତେ ଖଣ୍ଡ କବିତା ସଂକଳନ ମଧ୍ୟ ସେତେବେଳକୁ ପ୍ରକାଶ ପାଇଥାଏ । 'ସହକାର' ପ୍ରଭୃତି ସାହିତ୍ୟ ପତ୍ରିକା ମାନଙ୍କରେ ସେ ନିୟମିତ ଲେଖୁଥାନ୍ତି । 'ଛାତ୍ର' ପତ୍ରିକାରେ ପ୍ରକାଶିତ ସଚ୍ଚି ବାବୁଙ୍କର ଗୋଟିଏ କବିତାର ପ୍ରଥମ ଦୁଇ ଧାଡ଼ି ମନେ ପଡୁଛି :

"ସ୍ୱପ୍ନ ସାଗର ଅଳସ ଛେଦିରେ
ଜାଗିଛି ତରୁଣ ଛାତ୍ର
ଅରୁଣ କିରଣେ ଉଷାର ତୋରଣେ
ଲିଭିଛି ତିମିର ରାତ୍ର"

ମଧୁସୂଦନ ମହାନ୍ତିଙ୍କ ଘର ଆମ ସ୍କୁଲର ପୂର୍ବ ପଟ ଗଳି ଓଲ୍ଡ଼ କଲେଜ ଲେନ୍‌ରେ । ସେହିଠାରେ ମିଳିତ ହୋଇ ବିଜୟ ଚନ୍ଦ୍ର ଦାସ, ଅଶୋକ ଦାସ, ମନମୋନ ମିଶ୍ର, ଗଂଗାଧର ମହାପାତ୍ର, ବିବୁଧେନ୍ଦ୍ର ମିଶ୍ର ପ୍ରଭୃତି ଛାତ୍ରନେତାମାନେ ଆନ୍ଦୋଳନର ଗତିଧାରା ନିୟନ୍ତ୍ରଣ କରନ୍ତି । ସ୍କୁଲ ଛୁଟି ପରେ ଆମ୍ଭେମାନେ ମଧୁ ବାବୁଙ୍କ ଘରେ ବହୁ ସଂଖ୍ୟାରେ ରୁଣ୍ଡ ହେଉ ଓ 'ଛାତ୍ର' ପତ୍ରିକା ବିକ୍ରି କରିବାକୁ ବାହାରି ପଡୁ ।

ଧର୍ମଘଟ ସମୟରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ପୁରୀ ଆସି ରାଜ୍ୟ ସରକାରଙ୍କର ଅତିଥି ହେଲେ । ମହତାବ ବାବୁଙ୍କ ପରି କେତେକ କଂଗ୍ରେସ ନେତାଙ୍କ ପରାମର୍ଶରେ ସରକାର କଟକରୁ ପୁରୀ ଏକ ସ୍ୱତନ୍ତ୍ର ରେଳଗାଡ଼ିର ବ୍ୟବସ୍ଥା କଲେ ଓ ବିନା ଟିକଟରେ ପୁରୀ ଯାଇ ବିଶ୍ୱ କବିଙ୍କୁ ଦର୍ଶନ କରିବା ନିମନ୍ତେ ଛାତ୍ରମାନଙ୍କୁ ଆହ୍ୱାନ କଲେ । ଆନ୍ଦୋଳନ ଏକ ନିଷ୍ପତ୍ତିମୂଳକ ଅବସ୍ଥାରେ ପହଞ୍ଚିଥିବା ସମୟରେ ଛାତ୍ରମାନଙ୍କୁ ପୁରୀ ନେଇଯିବାର ଉଦ୍ୟମକୁ ଏକ ଚକ୍ରାନ୍ତ ବୋଲି ଆମେମାନେ ବିଚାର କରିଥିଲୁ । ଏ ସ୍ପେଶାଲ ଟ୍ରେନ ଯାତ୍ରା ସହିତ ସଂପୂର୍ଣ୍ଣ ଅସହଯୋଗ କରିବାକୁ ଛାତ୍ରସଂଘ ନିଷ୍ପତ୍ତି ନେଲେ । ବିଶ୍ୱକବିଙ୍କୁ ଅସମ୍ମାନ ଦେଖାଇବା ଆମର ଉଦ୍ଦେଶ୍ୟ ନ ଥିଲା । କୌଣସି ଛାତ୍ର ପୁରୀ ଗଲେ ନାହିଁ । ଛାତ୍ରସଂଘର ଆହ୍ୱାନ ଫଳପ୍ରଦ ହେଲା । ସରକାରୀ ଷଡ଼ଯନ୍ତ୍ର ବ୍ୟର୍ଥ ହେଲା ।

ସବୁ ସଭା ଶୋଭାଯାତ୍ରା, ପ୍ରତିବାଦ ଓ ଧର୍ମଘଟ ସତ୍ତ୍ୱେ କଂଗ୍ରେସ ସରକାରଙ୍କ ନିଦ ଭାଙ୍ଗିଲା ନାହିଁ । ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳ ଛାତ୍ର ଧର୍ମଘଟ ପଛରେ କଂଗ୍ରେସ ଭିତରେ ଥିବା ବିରୋଧୀ ଗୋଷ୍ଠିର ଭୂତ ଦେଖୁଥିଲେ । ମେଡ଼ିକାଲ ଛାତ୍ରମାନଙ୍କ ନ୍ୟାୟସଂଗତ ଦାବୀ ପୂରଣ ପାଇଁ ସରକାର ଭ୍ରୁକ୍ଷେପ କଲେ ନାହିଁ । ଏଣୁ ନିଷ୍ପତ୍ତି ହେଲା, ୧୪୪ ଧାରା ଆଦେଶ ଭଂଗ କରାଯିବ ଓ ଛାତ୍ର ସତ୍ୟାଗ୍ରହୀମାନେ ଦଳ ଦଳ ହୋଇ ପ୍ରତିଦିନ କାରାବରଣ କରିବେ । ପ୍ରଥମ ଦିନ ବିଶ୍ୱନାଥ ପଶାୟତଙ୍କ ନେତୃତ୍ୱରେ ଦଳେ ସତ୍ୟାଗ୍ରହୀ ଗିରଫ ହେଲେ । ଦ୍ୱିତୀୟ ଦଫାରେ ମନମୋହନ ମିଶ୍ର ଓ ପରେ ପରେ ବିବୁଧେନ୍ଦ୍ର

ମିଶ୍ର ଓ ଅନ୍ୟମାନଙ୍କ ନେତୃତ୍ୱରେ ଦଳ ଦଳ ହୋଇ ଛାତ୍ର ସତ୍ୟାଗ୍ରହୀ କାରାବରଣ କଲେ । ଆମ ତଳ ଶ୍ରେଣୀରେ ପଢୁଥିବା ଚିତ୍ତରଂଜନ ଦାସ, ଭିକ୍ଟୋରିଆ ସ୍କୁଲର ସୁବୋଧ ବେଉରିଆ, ପଣ୍ଡିତ ନୀଳକଂଠଙ୍କ ସାନ ପୁଅ ମୋର ସହପାଠୀ ବିକ୍ରମ ଦାସ ଛାତ୍ର ସତ୍ୟାଗ୍ରହୀ ଭାବେ ଦ୍ୱିତୀୟ ଦଫାରେ ଗିରଫ ହେଲେ ।

ଯେତେଦୂର ମନେ ଅଛି, ଏପ୍ରିଲ ୨୩ ତାରିଖରେ ଆମେ ଶୋଭାଯାତ୍ରାରେ ମେଡ଼ିକାଲ ସ୍କୁଲ ଆଡ଼କୁ ଯିବା ସମୟରେ ଦୋଳମୁଣ୍ଡାଇ ଛକଠାରେ ଗିରଫ ହେଲୁ । ଅଖା ବସ୍ତା ପରି ଟେକି ନେଇ ପୋଲିସ ଅଫିସର ଓ କନେଷ୍ଟବଲମାନେ ଆମ ଚାଳିଶ ପଚାଶ ଜଣଙ୍କୁ ଗୋଟିଏ ପୋଲିସ ବସ୍‌ରେ ଭର୍ତ୍ତି କରିଦେଲେ । ଓ.ଏମ୍.ପି. ଛକରେ ଥିବା ମରହଟ୍ଟା କୋଠିରେ ଦିନ ଚାରିଟା ପର୍ଯ୍ୟନ୍ତ ବଂଦ କରି ରଖାଗଲା । ଉପରବେଳା ପାଂଚଟା ସମୟରେ ଆମକୁ କଟକ ଜେଲରେ ଭର୍ତ୍ତି କରାଗଲା । ଏ ଥିଲା ମୋର ପ୍ରଥମ ଜେଲଯାତ୍ରା ।

ଜେଲରେ ଆମକୁ ଦୁଇ ଓଳି ବଗଡ଼ା ଭାତ, ଡାଲି ପାଣି ଓ ମଂଛିଆ ବାଇଗଣ ଝୋଳ ଦିଆଯାଏ । ପ୍ରତି ଓ୍ୱାର୍ଡ଼ରେ ଥିବା ସିମେଣ୍ଟ ପିଣ୍ଡି ଆମର ଖଟ । ବିଛଣା ତକିଆ ବା ମଶାରୀ ଦିଆଯାଏ ନାହିଁ । କିନ୍ତୁ ସ୍ଲୋଗାନ୍, ସଂଗୀତ, ରାଜନୈତିକ ଆଲୋଚନା ଓ ନାନା ଖୁସି ଗପ ଭିତରେ ସମୟ କଟିଯାଏ । ବିଚାରାଧୀନ ବଂଦୀଙ୍କ ପାଇଁ ସୁନିର୍ଦ୍ଦିଷ୍ଟ ଓ୍ୱାର୍ଡ଼ରେ ଆମେ ରହିଥାଉ । ଏହି ଓ୍ୱାର୍ଡ଼ରେ ଦକ୍ଷିଣ ପାଖରେ ସେକ୍ରେଟାରୀଏଟ ବିଲ୍‌ଡ଼ିଂ (ବର୍ତ୍ତମାନର ସିଟି ହସପିଟାଲ) ଓ ଗୌରୀଶଙ୍କର ପାର୍କ । ପ୍ରତିଦିନ ସଂଧ୍ୟାରେ ଗୌରୀଶଙ୍କର ପାର୍କରେ ଛାତ୍ରସଭା ଅନୁଷ୍ଠିତ ହୁଏ । ଡାକବାଜି ଯନ୍ତ୍ରରେ ପ୍ରଚାରିତ ପାର୍କ ବକ୍ତୃତା ଜେଲ ଭିତରୁ ଆମେ ସହଜରେ ଶୁଣିପାରୁ । ଏହିପରି ଚାରିଦିନ ଜେଲରେ ରହିବା ପରେ କଲିକତାରୁ ବଙ୍ଗଳା ଛାତ୍ରସଂଘର ସଂପାଦକ ଶ୍ରୀ ବିଶ୍ୱନାଥ ମୁଖାର୍ଜୀ (ପରକାଳର ସୁବିଖ୍ୟାତ କମ୍ୟୁନିଷ୍ଟ ନେତା ଓ ପଶ୍ଚିମ ବଙ୍ଗଳାର ମନ୍ତ୍ରୀ) କଟକ ଆସି ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ସହିତ ଆଲୋଚନାରେ ସମାଧାନର ସୂତ୍ର ବାହାର କଲେ । ଆମ୍ଭେମାନେ ପ୍ରାୟ ଦୁଇ ଶହ ଛାତ୍ର ୨୭ ତାରଖ ଦିନ କଟକ ଜେଲରୁ ଖଲାସ ହେଲୁ । ଛାତ୍ର ଧର୍ମଘଟର ଅବସାନ ହେଲା । କିନ୍ତୁ ସେତେବେଳକୁ ସ୍କୁଲ କଲେଜ ସବୁ ସରକାରୀ ଆଦେଶ ବଳରେ ଗ୍ରୀଷ୍ମ ଛୁଟି ପାଇଁ ଆଗତୁରା ବନ୍ଦ କରି ଦିଆଯାଇଥାଏ ।

୧୯୩୯ ସେପ୍ଟେମ୍ବର ମାସରେ କଟକରେ ସପ୍ତାହକ ଅନ୍ତରରେ ଦୁଇଟି ଯୁବ ସମ୍ମିଳନୀ ଅନୁଷ୍ଠିତ ହେଲା । ପ୍ରଥମ ସମ୍ମିଳନୀର ଉଦ୍ୟୋକ୍ତା ପଣ୍ଡିତ ନୀଳକଂଠ ଦାସ ଓ ବାଗ୍ମୀ ଯଦୁମଣି ମଙ୍ଗରାଜ ପ୍ରଭୃତି । ମୁଖ୍ୟ ଅତିଥି ହେଲେ ନିଖିଳ ଭାରତ କଂଗ୍ରେସ କମିଟି ସଭାପତି ପଦରୁ ନିକଟରେ ଇସ୍ତଫା ଦେଇଥିବା ଫରୱାର୍ଡ ବ୍ଲକ୍‌ର ପ୍ରତିଷ୍ଠାତା ସୁଭାଷ ଚନ୍ଦ୍ର ବୋଷ । ଦ୍ୱିତୀୟ ସମ୍ମିଳନୀର ଆୟୋଜକ ଥିଲେ ନବକୃଷ୍ଣ ଚୌଧୁରୀ, ମୋହନ ଦାସ, ଭଗବତୀ ପାଣିଗ୍ରାହୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ଅନ୍ୟାନ୍ୟ ବହୁ କଂଗ୍ରେସ ଓ ସାମ୍ୟବାଦୀ ନେତା । ଏହାର ମୁଖ୍ୟ ଅତିଥି ହେଲେ ଜୟ ପ୍ରକାଶ ନାରାୟଣ । ଆମ୍ଭେମାନେ ଶେଷୋକ୍ତ ସମ୍ମିଳନୀର ସ୍ୱେଚ୍ଛାସେବକ ଥିଲୁ । ମୁଁ, ନିଶାମଣି ଖୁଣ୍ଟିଆ ଓ ଶୈଲେନ ମହାପାତ୍ର ପ୍ରଭୃତି କଲେଜିଏଟ୍ ସ୍କୁଲର ଛାତ୍ରମାନେ ଜୟ ପ୍ରକାଶଙ୍କ ସମ୍ମିଳନୀର ସଫଳତା ପାଇଁ କାର୍ଯ୍ୟ କରୁଥିଲୁ । ବଂଧୁ ନିଶାମଣି ଓ ଶୈଲେନ୍ ଏବେ ନାହାନ୍ତି, ମୁଁ କେବଳ ବଂଚି ରହିଛି ସ୍ମୃତି ଚାରଣ ପାଇଁ ।

ସୁଭାଷ ଚନ୍ଦ୍ର ବୋଷ ଥିଲେ କଲେଜିଏଟ୍ ସ୍କୁଲର ପୁରାତନ ଛାତ୍ର । ଆମେ ସ୍ଥିର କଲୁ, ଏପରି ଜଣେ ପ୍ରଖ୍ୟାତ ପୁରାତନ ଛାତ୍ରଙ୍କୁ ବିଦ୍ୟାଳୟ ପରିସରରେ ସଂବର୍ଦ୍ଧନା ଦେଲେ, ବିଦ୍ୟାଳୟ ଗୌରବାନ୍ୱିତ ହେବ । ରାଜନୈତିକ ମତଭେଦ ଏଥିରେ ସ୍ଥାନ ପାଇବା ଉଚିତ ନୁହେ । ସହପାଠୀ ଶୈଳେନ ରାୟ (ବିଶିଷ୍ଟ ଖେଳଓ୍ୱାର୍ଡ଼) ବିଜୟ ପାଲିତ, ବଳରାମ ନନ୍ଦ ପ୍ରମୁଖ ଏ ନିଷ୍ପତ୍ତିରେ ପୂର୍ଣ୍ଣ ସହଯୋଗ କଲେ । ବହୁ ଶିକ୍ଷକଙ୍କର ମଧ୍ୟ ପ୍ରଚ୍ଛନ୍ନ ସମର୍ଥନ ଥିଲା । ସେତେବେଳେ କୃଷ୍ଣଚନ୍ଦ୍ର ମହାନ୍ତି କଲେଜିଏଟ୍ ସ୍କୁଲର ହେଡ୍‌ମାଷ୍ଟର । ଏ ପ୍ରକାର ସଂବର୍ଦ୍ଧନାର ସେ ବିରୋଧୀ ଥିଲେ । ସରକାରଙ୍କ ଅନୁଗତ ଭୃତ୍ୟ ଭାବରେ ଏ ଶ୍ରେଣୀର କର୍ମଚାରୀମାନେ ସର୍ବତ୍ର କେବଳ ଭୂତର ଭୟ ଦେଖୁଥିଲେ । କିନ୍ତୁ ଛାତ୍ରମାନଙ୍କର ସମ୍ମିଳିତ ଚାପରେ ସେ ନଇଁ ଗଲେ । ସୁଭାଷ ବାବୁଙ୍କ ସଂବର୍ଦ୍ଧନା ପାଇଁ ଆମ୍ଭେମାନେ ଗୋଟିଏ ମାନପତ୍ର ଲେଖିଥିଲୁ । ସେଥିରେ ଜାତୀୟ ଆନ୍ଦୋଳନରେ ସୁଭାଷ ଚନ୍ଦ୍ରଙ୍କର ଭୂମିକା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । ଆମର ଅତି ପ୍ରିୟ ଶିକ୍ଷକ ଚିତ୍ରଶିଳ୍ପୀ ଗୋପାଳ ଚନ୍ଦ୍ର କାନୁନ୍‌ଗୋ ସୁନ୍ଦର ଅକ୍ଷରରେ ମାନପତ୍ରଟି ଲେଖି ଦେଇଥିଲେ । କିନ୍ତୁ ସ୍କୁଲ କର୍ତ୍ତୃପକ୍ଷଙ୍କ ଦ୍ୱାରା ଏହା ଅନୁମୋଦିତ ହେଲା ନାହିଁ । ହେଡ୍‌ମାଷ୍ଟ୍ରେ ଅନ୍ୟ କେତେକ ଶିକ୍ଷକଙ୍କ ସହାୟତାରେ ତରବରିଆ ଭାବରେ ଏକ ମାନପତ୍ର ଛପାଇ, ସେଇଟି ସଭାରେ ପଢ଼ିବା ପାଇଁ ନିର୍ଦ୍ଦେଶ ଦେଲେ ।

ପ୍ରାୟ ଦିନ ଏଗାରଟା ବେଳକୁ ସୁଭାଷ ବାବୁ ପଣ୍ଡିତ ନୀଳକଂଠଙ୍କ ସହିତ ସ୍କୁଲରେ ପ୍ରବେଶ କଲେ । ତାଙ୍କ ସାମ୍ନାରେ ବାଣ ଫୁଟିଲା । ପିଲାମାନେ ଅତିଥିମାନଙ୍କୁ ପୁଷ୍ପ ସଂଭାରରେ ଭରିଦେଲେ । ମାନପତ୍ର ପଢ଼ିବାର ଦାୟିତ୍ୱ ମୋ ଉପରେ । ସହପାଠୀ ଶୈଳେନ ମହାପାତ୍ର ସହିତ ମୁଁ ବ୍ୟବସ୍ଥା କରିଥାଏ ଯେ, ହେଡ୍‌ମାଷ୍ଟରଙ୍କ ଦ୍ୱାରା ପ୍ରସ୍ତୁତ ମାନପତ୍ରଟି ପଢ଼ି ସାରିବା ପରେ, ଆମ ଦ୍ୱାରା ଲିଖିତ ମାନପତ୍ରଟି ସେ ମୋତେ ତୁରନ୍ତ ବଢ଼ାଇ ଦେବ । ମୁଦ୍ରିତ ମାନପତ୍ରଟି ପଢ଼ି ସାରିବା ପରେ ମୁଁ ସଭାରେ ସୁଭାଷ ବାବୁଙ୍କୁ ସମ୍ବୋଧନ କରି କହିଲି, ହେଡ୍‌ମାଷ୍ଟରଙ୍କ ଦ୍ୱାରା ପ୍ରସ୍ତୁତ ମାନପତ୍ରଟି ପାଠ କରିଅଛି, ବର୍ତ୍ତମାନ ଛାତ୍ରମାନଙ୍କ ଦ୍ୱାରା ଲିଖିତ ମାନପତ୍ରଟି ଆପଣଙ୍କୁ ସସମ୍ମାନେ ଅର୍ପଣ କରୁଛି । ସୁଭାଷ ବାବୁ ଅଳ୍ପ ହସି ଆମ ମାନପତ୍ରଟିକୁ ଗ୍ରହଣ କଲେ ଓ ପଣ୍ଡିତ ନୀଳକଂଠଙ୍କ ହାତକୁ ବଢ଼ାଇଦେଲେ । ସଭାରେ ଘନଘନ କରତାଳି ପଡ଼ିଲା ।



# ଚପେଟିକା ଚାବୁକ୍ ଉପାଖ୍ୟାନ

ସାହିତ୍ୟ-ସେବା କରିବାର ଅଭିଳାଷଟା ମୋର ସ୍ୱପ୍ନରେ ରହିଗଲା । ସ୍କୁଲ ଜୀବନରେ ପାଠ୍ୟ ପୁସ୍ତକ ପଢ଼ା ବାହାରେ, ଲେଖା ପଢ଼ା କରିବା ବା କବିତା ଲେଖିବା ପାଇଁ ଆଦୌ ସମୟ ହୁଏ ନାହିଁ । ଅନୁକୂଳ ବାତାବରଣ ମଧ୍ୟ ନ ଥାଏ । କଟେଜରୁ ସ୍କୁଲକୁ ଯିବା ଆସିବା, ଖେଳିବା ପାଇଁ ସନ୍-ସାଇନ ପଡ଼ିଆକୁ ଯିବା ବା ଫୁଟବଲ ମ୍ୟାଚ୍ ଦେଖିବା ପାଇଁ କିଲ୍ଲା ମଇଦାନ ଯିବା, ଏ ସବୁ ପାଇଁ ଏକମାତ୍ର ବାହନ ଆପଣାର ପାଦ । ସାଇକେଲ ଚଢ଼ିବା ଥିଲା ଗୋଟାଏ ବିଳାସ ଏବଂ ସେ ବିଳାସ ଉପଭୋଗ କରିବାର ସୌଭାଗ୍ୟ ଆମର ନ ଥିଲା । ଏ ଦୈହିକ ଶ୍ରମ, ତା ଛଡ଼ା ପ୍ରତିଦିନ କ୍ଲାସ ପଢ଼ା ପାଇଁ ପ୍ରସ୍ତୁତି, ଏ ରୁଟିନ୍ ଭିତରେ ଲେଖାଲେଖି କରିବା ପାଇଁ ସମୟ ବାହାର କରିବା କଷ୍ଟକର ହୋଇ ଉଠେ ।

ପ୍ରେମ କବିତା ଲେଖିବା ଥିଲା ସ୍କୁଲ ଛାତ୍ରମାନଙ୍କ ପାଇଁ ନିଷିଦ୍ଧ ବଟିକା । ଭଗବତ୍ ପ୍ରାର୍ଥନା, ଦେବ-ଦେବୀ ପୂଜାଅର୍ଚ୍ଚନା ବା ପ୍ରକୃତି ଉପାସନା ଥିଲା ଆମ ପାଇଁ କବିତାର ଉପଜୀବ୍ୟ । ସ୍କୁଲ ମ୍ୟାଗାଜିନ୍‌ରେ ସିପାହୀ ବିଦ୍ରୋହ ଉପରେ ମୁଁ ଇଂରାଜୀରେ ପ୍ରବନ୍ଧ ଲେଖିଥିଲି । ଏ ବିଦ୍ରୋହ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅଧ୍ୟାୟ ବୋଲି ବର୍ଣ୍ଣନା କରିଥିଲି । କବି ବୈକୁଣ୍ଠ ନାଥ ପଟ୍ଟନାୟକ ଓ ଶିଳ୍ପୀ ଗୋପାଳ ଚନ୍ଦ୍ର କାନୁନ୍‌ଗୋଙ୍କ ପରି କେତେଜଣ ଅଗ୍ରଗାମୀ ଶିକ୍ଷକ ଲେଖାଟି ଖୁବ୍ ପ୍ରଶଂସା କରିଥିଲେ । ସେମାନେ ଆଶ୍ଚର୍ଯ୍ୟ ହେଲେ ଯେ ସ୍କୁଲ ମ୍ୟାଗାଜିନ୍‌ରେ ଏହା କିପରି ପ୍ରକାଶିତ ହେଲା । ସେମାନଙ୍କର ଧାରଣା ହେଲା, ସଂପାଦନା ଦାୟିତ୍ୱରେ ଥିବା ଶିକ୍ଷକ (ଜଣେ ଇଂରାଜୀ ଶିକ୍ଷକ) ଲେଖାଟିକୁ ଆମୂଳଚୂଳ ପଢ଼ି ନାହାନ୍ତି । କିନ୍ତୁ ମୋର କବିତାଗୁଡ଼ିକ ଗ୍ରହଣୀୟ ହୁଏ ନାହିଁ । ନିଷିଦ୍ଧ ବଟିକା ସେବନ ନ କଲେ ବୋଧହୁଏ କବିତାର ମୂର୍ଚ୍ଛନା ବାହାରେ ନାହିଁ ।

୧୯୩୭ ମସିହା ଫେବ୍ରୁଆରୀ ମାସରେ ମୁଁ ବାଣପୁର ଯାଇଥିଲି । ସେଠାରୁ ବାଲୁଗାଁ ଯାଇ ଚିଲିକା ବୁଲିବାର ସୌଭାଗ୍ୟ ମିଳିଲା । କେତେଜଣ ଶିକ୍ଷକ ଓ ସ୍କୁଲ ଛାତ୍ର ଡ଼ଂଗାରେ କାଳିଜାଇ ଗଲୁ । ପାଂଚ ଛ' ଘଣ୍ଟା ଅତି ଆନନ୍ଦରେ କଟିଲା । ଶିକ୍ଷକ ମାୟାଧର ଦାଶ ଓ ବାଲୁଗାଁର ପଦ୍ମଚରଣ ପ୍ରଭୃତି କେତେଜଣ ଛାତ୍ର ଗୀତ ଗାଇଲେ । ଗୋଦାବରୀଶଙ୍କ କାଳିଜାଇ କବିତାରୁ କେତେଧାଡ଼ି ବୋଲାହେଲା । ବାଣପୁରରୁ ଫେରି ମୁଁ ଚିଲିକା ଉପରେ ଗୋଟିଏ ଦୀର୍ଘ

କବିତା ଲେଖିଥିଲି । ''ବିଦାୟ ଦିଅ ଗୋ ମତେ ଚିଲିକା ସୁନ୍ଦରୀ'' ଇତ୍ୟାଦି । ଆମ ସ୍କୁଲ ମ୍ୟାଗାଜିନର ମୁଖ୍ୟ ସଂପାଦକ, ସୁପ୍ରସିଦ୍ଧ ସାହିତ୍ୟିକ ପଣ୍ଡିତ କୁଳମଣି ଦାଶଙ୍କୁ ଦେଖାଇଲି । ସେ ଖୁବ୍ ଖୁସି ହେଲେ ଓ କିଛି ମାସ ପରେ କବିତାଟି ସ୍କୁଲ ମ୍ୟାଗାଜିନରେ ଛପା ହେଲା । ସେ ବର୍ଷ ମ୍ୟାଗାଜିନରେ ଆଉ ଗୋଟିଏ କବିତା ଛପା ହୋଇଥିଲା । ତାର ଲେଖକ, ମୋର ସହପାଠୀ ନାରାୟଣ ସାହୁ ।

ନାରାୟଣ ଜଗତ୍‌ସିଂପୁର ମାଇନର ସ୍କୁଲରୁ ପାଶ କରି କଲେଜିଏଟ୍‌ର ଛାତ୍ର, ରାମକୃଷ୍ଣ କଟେଜର ଅନ୍ତେବାସୀ । ଅଥଚ ତା ସହିତ କୌଣସି ବିଶେଷ ଭାବ ନ ଥିଲା । ବରଂ ମୁଁ ତା ପ୍ରତି ଉଦାସୀନ ଥିଲି କହିଲେ ଠିକ୍ ହେବ । କିନ୍ତୁ ସ୍କୁଲ ପତ୍ରିକାରେ ତାର କବିତା ଛପା ହେବା ପରେ ତାର ଓ ମୋର ଦୁଇଟିଯାକ କବିତା ପଢ଼ି ଅନୁଭବ କଲି, ତା କବିତାଟି ଉଚ୍ଚକୋଟୀର ଆଧୁନିକ କବିତା । ମୋର କବିତାଟି ଥିଲା ପୁରୁଣାକାଳିଆ, କୌଣସି ନୂତନତ୍ୱ ନ ଥିଲା । ଏହା ପରେ ନାରାୟଣ ସହିତ ମୋର ବଂଧୁତା ଜମିଲା ।

ରାମକୃଷ୍ଣ କୁଟୀରରେ ଗୋଟିଏ ହାତଲେଖା ସାମୟିକ ପତ୍ରିକା ପ୍ରକାଶିତ ହେଉଥାଏ 'କୁଟୀର ବାଣୀ' । ସେ କାଳରେ ହାତ ଲେଖା ପତ୍ରିକା ପ୍ରକାଶନ ଚଳନୀ ଥିଲା । ବିଭିନ୍ନ ହଷ୍ଟେଲ, କ୍ଲବ ଓ ଆସୋସିଏସନ ନିଜ ନିଜର ଆମୋଦ ପାଇଁ ହାତଲେଖା ପତ୍ରିକା ପ୍ରକାଶ କରୁଥିଲେ । ଆମେ ଦୁହେଁ ମିଶି କୁଟୀର-ବାଣୀର ପୁନରୁଦ୍ଧାର କଲୁ । ସେଥିରେ କଟେଜର ନୀତି-ନିୟମ ସଂପର୍କରେ ମୁଁ ଗୋଟିଏ ସମାଲୋଚନା-ମୂଳକ ନିବନ୍ଧ ଲେଖିଥିଲି । କର୍ତ୍ତୃପକ୍ଷ ତାକୁ ପସନ୍ଦ କଲେ ନାହିଁ । ତା ପରେ 'କୁଟୀର ବାଣୀ' ପ୍ରତି ଆମେ ଆଉ ଧ୍ୟାନ ଦେଲୁ ନାହିଁ । ନାରାୟଣ ନିଜ ହାତରେ ଲେଖି ଖଣ୍ଡେ ଛୋଟ ପତ୍ରିକା ବାହାର କଲା, ପନ୍ଦର ଷୋଳ ପୃଷ୍ଠା ମଧ୍ୟରେ । ଗୋଟିଏ ଦିଓଟି କବିତା ଓ କିଛି ଟିପ୍ପଣୀ ତାର ବିଷୟବସ୍ତୁ । ପତ୍ରିକାଟିର ନାମ ଥିଲା ''ଚପେଟିକା'' । ପିଲାମାନଙ୍କ ମଧ୍ୟରେ ବେଶ ଆଦୃତ ହେଲା । ତାକୁ ଦେଖି ମୁଁ ମଧ୍ୟ ଖଣ୍ଡେ ହାତ ଲେଖା ପତ୍ରିକା ପ୍ରକାଶ କଲି । ନାମ ଦେଲି ''ଚାବୁକ୍'' । ମୋ କାଗଜଟି 'ଚପେଟିକା'ର ଅନୁରୂପ । କିନ୍ତୁ ଚପଳ ଲଘୁ ଲେଖା ସହିତ, ସେଥିରେ ଥିଲା କିଛି ବ୍ୟଂଗ କବିତା ଓ ନାନା ବିଷୟରେ ଟୀକା ଟିପ୍ପଣୀ- କେତେକ ହାସ୍ୟ ରସାତ୍ମକ, କେତେକ ଭାବ-ଗମ୍ଭୀର । କ୍ରମେ 'ଚପେଟିକା' ଓ 'ଚାବୁକ୍' ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହେଲା । ରବିବାରୀୟ କୀର୍ତ୍ତନ

ପରେ ବୟସ୍କ ରାମକୃଷ୍ଣ ଭକ୍ତମାନେ ବିଦାୟ ନେବା ପରେ, ରାମକୃଷ୍ଣ କଟେଜର କେତେକ ସାହିତ୍ୟପ୍ରେମୀ ପୁରାତନ ଛାତ୍ର ଓ ଅନ୍ତେବାସୀମାନଙ୍କ ସମାବେଶରେ ପତ୍ରିକା ଦୁଇଟିର ଚଳନ୍ତି ସଂଖ୍ୟା ପଢ଼ାଯାଏ । ମୋର ମନେ ଅଛି ଶ୍ରୀ ଘନଶ୍ୟାମ ମହାନ୍ତି (ପରେ ଧରମ ଝିଅ ଉପନ୍ୟାସର ଲେଖକ) ଓ ଶ୍ରୀ ନିଶାମଣି ତ୍ରିପାଠୀ (ଷ୍ଟାଣ୍ଡାର୍ଡ଼ ବୁକ୍ ମାର୍ଟର ସ୍ୱତ୍ୱାଧିକାରୀ) ଏହି ଚର୍ଚ୍ଚାରେ ବିଶେଷ ଭାଗ ନିଅନ୍ତି ଓ ଆମକୁ ଉତ୍ସାହିତ କରନ୍ତି । ଚାରି ପାଞ୍ଚଟି ସଂଖ୍ୟା ବାହାରିଲା ପରେ ମ୍ୟାଟ୍ରିକ ପରୀକ୍ଷା ନିକଟେଇ ଆସିଲା । ଚପେଟିକା ଓ ଚାବୁକ ପରସ୍ପରକୁ ଆଲିଙ୍ଗନ କରି ବିଦାୟ ନେଲେ । ଆମର ଘରୋଇ ସାହିତ୍ୟ ସେବାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ପୂର୍ଣ୍ଣଚ୍ଛେଦ ପଡ଼ିବାର ଆଉ ଗୋଟିଏ କାରଣ ହେଲା - ରାଜନୀତି, ବିଶେଷତଃ ସମାଜବାଦୀ, ମାର୍କ୍ସବାଦୀ ରାଜନୀତି ପ୍ରତି ମୋର ଆଗ୍ରହ । ସଭା ସମିତିରେ ଯୋଗ ଦେବାରେ ମୋର ବହୁ ସମୟ କଟିଯାଏ । ଏହି ସମୟରେ ଭଗବତୀ ପାଣିଗ୍ରାହୀ ସାପ୍ତାହିକ 'କୃଷକ'ର ସଂପାଦକ ଥାଆନ୍ତି ଓ ତାଙ୍କର ସହକାରୀ ଗୁରୁଚରଣ ପଟ୍ଟନାୟକ । କୃଷକରେ ଛଦ୍ମ ନାମରେ ମୋର ଗୋଟିଏ ଦିଓଟି ଲେଖା ପ୍ରକାଶ ପାଇଲା । ଏହାପରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ 'କୃଷକ'ର ସଂପାଦନା ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ସହିତ ମଧ୍ୟ ମୋର ସଦ୍‌ଭାବ ଥାଏ । 'କୃଷକ'ରେ ମୋର ଦୁଇଟି ନିବଂଧ ପ୍ରକାଶିତ ହେଲା । ମୁଁ ସେତେବେଳକୁ ଛଦ୍ମବେଶ ଛାଡ଼ି ସାରିଥିଲି । ଏହି ପରିସ୍ଥିତିରେ ଲଘୁ ସାହିତ୍ୟ ରଚନା ପ୍ରତି ମୋର ଆଗ୍ରହ ରହିଲା ନାହିଁ ।

ଆଇ.ଏ. ପାସ୍ କରି ନାରାୟଣ ଯୋଗାଣ ବିଭାଗ ଅଧୀନରେ ଚାକିରୀରେ ଯୋଗ ଦେଲା । ସାତ ଆଠ ବର୍ଷ ପରେ ଚାକିରୀରୁ ଇସ୍ତଫା ଦେଇ କଟକରେ ବ୍ୟବସାୟ ଆରମ୍ଭ କଲା । ଏଣେ ମୁଁ କିଛିଦିନ ସକ୍ରିୟ ରାଜନୀତି, ସମାଜ ସେବା ଓ ସାଂବାଦିକତାରେ ମାତି, ପରେ ଓକିଲାତି ବୃତ୍ତି ଗ୍ରହଣ କଲି । ନାରାୟଣଙ୍କ ଘର ଜୟୀଶୋଳ - ଆମ ଗାଁ ପାଖରୁ ପ୍ରାୟ ଚାରି ମାଇଲ ଦୂର । କିନ୍ତୁ ନିଜ ନିଜ କାର୍ଯ୍ୟରେ ବ୍ୟସ୍ତ ରହି ବଂଧୁତାର ଆଦାନ ପ୍ରଦାନ କ୍ରମେ କ୍ଷୀଣ ହୋଇ ଆସିଲା । ପଂଚାବନ ମସିହା ପରେ ଆଉ ସାକ୍ଷାତ ନାହିଁ କହିଲେ ଚଳେ । ଦୁଇବର୍ଷ ତଳେ, ଦୀର୍ଘ ତେତ୍ରିଶ ବର୍ଷ ପରେ ହଠାତ୍ ଖଣ୍ଡିଏ ପୋଷ୍ଟକାର୍ଡ଼ ପାଇଲି - ଲେଖିଛନ୍ତି ନାରାୟଣ ସାହୁ, ପୁରାତନ ବଂଧୁ । ସମୟ ଦେଲେ ସେ ଆସି ଦେଖା କରିବେ । ପୁରୁଣା ଦିନର ସ୍ମୃତି ମନରେ ଉଙ୍କି ମାରିଲା । ଡାକରେ ଉତ୍ତର ଦେବା ପରିବର୍ତ୍ତେ, ମୁଁ ଜଣେ ଲୋକ ରାଣୀହାଟ ପଠାଇଲି - ସେହିଦିନ ସଂଧ୍ୟାରେ ଆସିବା ପାଇଁ ।

ସଂଧ୍ୟା ଛ'ଟାରେ କଲିଂ ବେଲ ବାଜିଲା । କବାଟ ଖୋଲି ଦେଖେ, ଜଣେ ରୁଗ୍ଣ କୃଷକାୟ ବୃଦ୍ଧ ବାରଣ୍ଡାରେ ବସିଛନ୍ତି । ସେ ନିଜେ ଆଗନ୍ତୁରା ପରିଚୟ ଦେଇ ନ ଥିଲେ, ହୁଏତ ଚିହ୍ନି ପାରି ନ ଥାନ୍ତି । ନାରଣ କହିଲା, କିଛି କାମ ନାହିଁ, ସେ କେବଳ ମତେ ଦେଖିବାକୁ ଆସିଛି । ମୁଁ ଖୁସିରେ ତା ହାତ ଧରି ଘର ଭିତରକୁ ଟାଣି ନେଲି । ବହୁତ ପୁରୁଣା କଥା ମନେ ପଡ଼ିଲା, ଭଲମନ୍ଦ ବିଷୟରେ ଆଳାପ ହେଲା, ତାଠାରୁ ଶୁଣିଲି, ସେ ଆଉ ବ୍ୟବସାୟ ପ୍ରତି ବିଶେଷ ଧ୍ୟାନ ଦେଉନାହିଁ । ଗାଁରେ ରାସ୍ତାକଡ଼ରେ ଥିବା ଦୁଇ ଏକର ଜମି ସ୍ଥାନୀୟ ବାଳିକା ଉଚ୍ଚ ବିଦ୍ୟାଳୟକୁ ଦାନ କରିଦେଇଛି । କଥା ପ୍ରସଂଗରେ କହିଲା, ଏ ମଧ୍ୟରେ ସେ ଅଳକା ମହାବିଦ୍ୟାଳୟ ଆଡ଼େ ବୁଲି ଯାଇଥିଲା । ମଶାଣିରେ ଯେ ଫୁଲ ଫୁଟେ, ଅଳକା କଲେଜ ତାର ନମୁନା । ମୁଁ ଯେ ଆମ ଅଂଚଳ ପାଇଁ ଏତେ ବଡ଼ ଶିକ୍ଷାନୁଷ୍ଠାନଟିଏ ଗଢ଼ି ଦେଇଛି, ସେ କୁଆଡ଼େ ସେଥିପାଇଁ ମତେ ବଧେଇ ଜଣାଇବାକୁ ଆସିଛି । ଅଧ ଘଣ୍ଟାଏ ପରେ ସେ ବିଦାୟ ନେଲା ।

ଏବେ ଦିନେ, ଏ ବହିଟି ଲେଖିଲା ବେଳେ "ଚପେଟିକା" ଓ "ଚାବୁକ୍" କଥା ମନେ ପଡ଼ିଲା । ଭାବିଲି ନାରାୟଣ ସହିତ ଦେଖା ହେଲେ, କିଛି ତଥ୍ୟ ମିଳିବ । ତାର ହୁଏତ ସବୁକଥା ମନେଥିବ କିମ୍ବା ତା ପାଖରେ କିଛି କାଗଜ ଥିବ । ଦିନେ ଉପରବେଳା ପାଂଚଟା ବେଳେ ନାରାୟଣ ଅନ୍ୱେଷଣରେ ବାହାରିଲି । ରାଣୀହାଟ କଲେଜ ଛକ ସାମନା ପାଟରା ସାହିରେ ତା ଘର ଠାବ କଲି । ଘର ସାମନାରେ ଜଣେ ଅପରିଚିତ ଯୁବକ ଠିଆ ହୋଇଥିଲେ । ମୁଁ ପଚାରିଲି, ଏଇଟା କ'ଣ ନାରାୟଣ ସାହୁଙ୍କ ଘର ?

ଯୁବକ ଉତ୍ତର ଦେଲେ "ହଁ" । ମୁଁ କହିଲି, ଟିକେ ନାରଣକୁ ଡାକି ଦିଅନ୍ତୁ । ଭଦ୍ରଲୋକ କହିଲେ "ତାଙ୍କ ପୁଅ ଅଛି, ଡାକି ଦେବି ?" ମୁଁ କହିଲି "ନା, ନାରଣକୁ ଡାକନ୍ତୁ" ଯୁବକ ଜଣକ ଉତ୍ତର ଦେଲେ - ସେ ତ ନାହାନ୍ତି, ଦୁଇ ବର୍ଷ ହେଲା ତାଙ୍କର କାଳ ହେଲାଣି ।"

ମୁଁ ନିର୍ବେଦ ହୋଇଗଲି । ସେଠି ମୁହୂର୍ତ୍ତଟିଏ ରହିବାକୁ ମୋର ସାହସ ନ ଥିଲା । ରୁମାଲରେ ଆଖିର ଲୁହ ଲୁଚାଇ ମୁଁ ଗାଡ଼ି ଫେରାଇ ଆଣିଲି । ସବୁକଥା ଛାଇପରି ଆଖି ଆଗରେ ନାଚିଗଲା । ଦୁଇ ବର୍ଷ ତଳେ, ନାରଣ ନାରାୟଣ ପ୍ରାପ୍ତି ପୂର୍ବରୁ ମୋ'ଠାରୁ ଚିର ବିଦାୟ ନେଇ ଆସିଛି, ତାକୁ ଆଉ ପାଇବି କେଉଁଠି ?



# ବାଜି ରାଉତର ଭୂତ

କଲେଜିଏଟ ସ୍କୁଲର ଛାତ୍ର ଥିବା ସମୟରେ କଟକ ଥିଲା ଓଡ଼ିଶାର ରାଜଧାନୀ । ସାହିତ୍ୟ ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ମଧ୍ୟ କଟକ ଥିଲା ଓଡ଼ିଶାର ପ୍ରାଣକେନ୍ଦ୍ର । କଟକରୁ ଢେଙ୍କାନାଳ ଚାଳିଶ ମାଇଲ ଦୂର । ଢେଙ୍କାନାଳରେ ୧୯୩୮ ସେପ୍ଟେମ୍ବର ଅକ୍ଟୋବର ଆଡ଼କୁ ଯେଉଁ ପ୍ରଜା ବିଦ୍ରୋହ ମୁଣ୍ଡ ଟେକିଲା, ତାର ପ୍ରଭାବ ମଧ୍ୟ କଟକ ଉପରେ ପଡ଼ିଲା । କାର୍ଯ୍ୟତଃ କାଠଯୋଡ଼ୀ କୂଳରେ ଥିବା ନବ ବାବୁଙ୍କ (ନବକୃଷ୍ଣ ଚୌଧୁରୀ) ଏକ ମହଲା ଘରଟି ଥିଲା ଏହାର ନିୟନ୍ତ୍ରଣ କେନ୍ଦ୍ର । ଏହିଠାରେ ମିଳିତ ହୋଇ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ଭଗବତୀ ଚରଣ ପାଣିଗ୍ରାହୀ, ସାରଂଗଧର ଦାସ, ଅନନ୍ତ ପଟ୍ଟନାୟକ ଓ ହରମୋହନ ପଟ୍ଟନାୟକ ପ୍ରମୁଖ ଆନ୍ଦୋଳନର ଲକ୍ଷ୍ୟ, ରୂପରେଖ ଓ ଗତିବିଧି ବିଷୟରେ ଆଲୋଚନା କରୁଥିଲେ ଓ ନିଷ୍ପତ୍ତି ନେଉଥିଲେ । ସଚ୍ଚି ରାଉତରାୟ, ବିଶ୍ୱନାଥ ପଶାୟତ, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ମୁଁ, ଜଗଦ୍‌କୃଷ୍ଣ ଦାସ (ଟିକ ଭାଇ) ଓ ସତ୍ୟବାଦୀ ମିଶ୍ର (ପର ଜୀବନରେ ଦର୍ଶନ ଅଧ୍ୟାପକ ଓ ପୁରୀ ଚନ୍ଦ୍ରଶେଖର କଲେଜର ଅଧ୍ୟକ୍ଷ) ଇତ୍ୟାଦି ନବବାବୁଙ୍କ ଘରେ ମିଳିତ ହୋଇ, ଛାତ୍ରମାନଙ୍କ ତରଫରୁ ପ୍ରଜାମଣ୍ଡଳ ଆନ୍ଦୋଳନକୁ କିପରି ସାହାଯ୍ୟ କରାଯାଇ ପାରିବ, ତାର ଯୋଜନା କରୁଥିଲୁ ।

ଭାରତର ବ୍ରିଟିଶ ଶାସିତ ଅଂଚଳରେ କଂଗ୍ରେସ ଆନ୍ଦୋଳନ ଓ ସମାଜବାଦୀ ଓ କମ୍ୟୁନିଷ୍ଟ ନେତୃତ୍ୱରେ ପରିଚାଳିତ କୃଷକ ଆନ୍ଦୋଳନର ପ୍ରଭାବ ଦେଶୀୟ ରାଜ୍ୟର ପ୍ରଜାମାନଙ୍କ ଉପରେ ପଡୁଥାଏ । ୧୯୩୭ ଜୁଲାଇରେ ବିଭିନ୍ନ ପ୍ରଦେଶରେ କଂଗ୍ରେସ ସରକାର ଗଠିତ ହେବା ପରେ ଗଡ଼ଜାତ କର୍ମୀମାନଙ୍କର ସାହସ ବଢ଼ିଲା ଓ ଆନ୍ଦୋଳନ ଅଧିକ ଶକ୍ତିଶାଳୀ ହେଲା । ଗଡ଼ଜାତ ପ୍ରଜାମାନେ ରାଜ-ଅତ୍ୟାଚାର ବିରୁଦ୍ଧରେ ସଂଗଠିତ ସଂଘର୍ଷ ଆରମ୍ଭ କଲେ । ଓଡ଼ିଶାରେ ମଧ୍ୟ ଏହି ସମୟରେ ଗଡ଼ଜାତ ପ୍ରଜା ସମ୍ମିଳନୀ ପୁନର୍ଗଠିତ ହେଲା । ଆମେରିକାରୁ ଉଚ୍ଚଶିକ୍ଷା ଲାଭ କରି ଫେରିଥିବା ଢେଙ୍କାନାଳର ସାରଂଗଧର ଦାସ ଏହାର ସଂପାଦକ ହେଲେ । ଏହାର ଶାଖାମାନ ବିଭିନ୍ନ ରାଜ୍ୟରେ ଗଠିତ ହେଲା । ଆଠଗଡ଼, ନୀଳଗିରି, ଢେଙ୍କାନାଳ, ତାଳଚେର, ରଣପୁର, ନୟାଗଡ଼, ବଡ଼ମ୍ବା ଓ ବାମଣ୍ଡା ପ୍ରଭୃତି ଗଡ଼ଜାତରେ ପ୍ରଜାମଣ୍ଡଳ ମୁଣ୍ଡ ଟେକିଲା ।

ଆଠଗଡ଼ ପ୍ରଜାମଣ୍ଡଳର ସଭାପତି ଥିଲେ ସମାଜ ସଂପାଦକ ଶ୍ରୀ ରାଧାନାଥ ରଥ, ସଂପାଦକ ବ୍ରଜ କିଶୋର ପଟ୍ଟନାୟକ; ତାଳଚେର ପ୍ରଜାମଣ୍ଡଳର ସଭାପତି ଶ୍ରୀ ପବିତ୍ର ମୋହନ ପ୍ରଧାନ; ନୀଳଗିରି ପ୍ରଜାମଣ୍ଡଳର ସଭାପତି ଶ୍ରୀ କୈଳାଶ ଚନ୍ଦ୍ର ମହାନ୍ତି ଓ ସଂପାଦକ ବନମାଳୀ ଦାସ; ଢେଙ୍କାନାଳ ପ୍ରଜାମଣ୍ଡଳର ସଭାପତି ହରମୋହନ ପଟ୍ଟନାୟକ ଓ ସଂପାଦକ ଲକ୍ଷ୍ମୀଧର ସାହୁ । ଏହି ଢେଙ୍କାନାଳ ଆନ୍ଦୋଳନର ପ୍ରାଣ ପ୍ରତିଷ୍ଠାତା ଥିଲେ ମହେଶ୍ୱର ସୁବାହୁସିଂହ ଓ ତାଙ୍କର ସହଯୋଗୀ ବୀର ବୈଷ୍ଣବ ପଟ୍ଟନାୟକ ଓ ବ୍ରଜ କିଶୋର ଧଳ; ବାମଣ୍ଡା ଆନ୍ଦୋଳନର ନେତା ଥିଲେ ଦୟାନନ୍ଦ ଶତପଥୀ ଓ ରଣପୁର ପ୍ରଜାମଣ୍ଡଳର ସଭାପତି ଥିଲେ ଆଡ୍‌ଭୋକେଟ୍ ରାମଚନ୍ଦ୍ର ରାମଙ୍କ ପିତା ବନମାଳୀ ରାମ ।

ପ୍ରଥମେ ନୀଳଗିରିରେ ସଂଘର୍ଷ ଆରମ୍ଭ ହେଲା । ନୀଳଗିରିରେ ସଭା ଶୋଭାଯାତ୍ରା ବନ୍ଦ କରି ଦିଆହେଲା । ଯେଉଁମାନେ ବିରୋଧ କଲେ, ସେମାନଙ୍କୁ ମାଡ଼ ଦେଇ ଜେଲରେ ଭର୍ତ୍ତି କରାଗଲା । କିନ୍ତୁ ଆନ୍ଦୋଳନ ଏତେ ବ୍ୟାପକ ହେଲା ଯେ, ନୀଳଗିରି ପୋଲିସ ଅବସ୍ଥା ସଂଭାଳି ପାରିଲେ ନାହିଁ । ଯୁବକ ବନମାଳୀ ଦାସ ଥିଲେ ଏହି ଆନ୍ଦୋଳନର ସଂଗଠକ । ସେତେବେଳର ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଶ୍ରୀ ହରେକୃଷ୍ଣ ମହତାବଙ୍କ ହସ୍ତକ୍ଷେପ ଫଳରେ ରାଜପକ୍ଷ ପ୍ରଜାମାନଙ୍କର କେତେକ ଦାବୀ ଗ୍ରହଣ କରିବାକୁ ସମ୍ମତ ହେଲେ । ଏକ ପ୍ରକାରର ସମାଧାନ ହେଲା । ଏହାପରେ ବନମାଳୀ ଦାସ କାର୍ଯ୍ୟବଶତଃ କଟକ ଆସିଥିଲେ । ତାଙ୍କର ବୀରୋଚିତ କାର୍ଯ୍ୟ ପାଇଁ ତାଙ୍କୁ ଟାଉନ୍ ହଲରେ ଛାତ୍ରସଂଘ ତରଫରୁ ସଂବର୍ଦ୍ଧନା ଦିଆଯାଇଥିଲା ।

ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ ତାଳଚେର ଆନ୍ଦୋଳନ ଏକ ଭିନ୍ନ ରୂପ ନେଲା । ରାଜ ଦରବାରଙ୍କ ଉତ୍ପୀଡ଼ନରେ ଉତ୍କ୍ଷିପ୍ତ ହୋଇ ପ୍ରାୟ ୩୦ ହଜାର ଲୋକ ତାଳଚେର ଛାଡ଼ି ମୋଗଲବନ୍ଦୀ ଅଂଚଳ ଅନୁଗୁଳରେ ଆଶ୍ରୟ ନେଲେ । ଡକ୍ଟର ମହତାବ ତାଙ୍କ "ସାଧନାର ପଥେ" ପୁସ୍ତକରେ ଲେଖିଛନ୍ତି ଯେ ଗାନ୍ଧିଜୀଙ୍କ ପରାମର୍ଶ ଅନୁଯାୟୀ ସେ ଏପରି ନିଷ୍ପତ୍ତି ନେଇଥିଲେ । ଅନୁଗୁଳରେ ଖୋଲା ପଡ଼ିଆରେ ରହି ଲୋକେ ବହୁତ କଷ୍ଟ ପାଇଲେ । ପରେ ଭାରତ ସରକାରଙ୍କ ରାଜନୈତିକ ବିଭାଗର ସହାୟତାରେ ତାଳଚେର ରାଜାଙ୍କ ଉପରେ ଚାପ ଦିଆଗଲା ଓ ସେ କେତେକ ସର୍ତ୍ତ ଗ୍ରହଣ କରିବାକୁ ରାଜି ହେବାରେ, ଏହି ପଳାତକମାନେ ରାଜ୍ୟକୁ ଫେରିଲେ ।

କିନ୍ତୁ ଢେଙ୍କାନାଳ ଆନ୍ଦୋଳନ ଥିଲା ସବୁଠାରୁ ଶକ୍ତିଶାଳୀ, ଏକ ସୁସଂଗଠିତ ବିରାଟ ଜନ ଆନ୍ଦୋଳନ । ତାର କାରଣ ଢେଙ୍କାନାଳର ତତ୍କାଳୀନ ରାଜା ଶଙ୍କର ପ୍ରତାପ ଥିଲେ ସବୁଠାରୁ ବେଶି ଅତ୍ୟାଚାରୀ ଓ ପ୍ରଜାପୀଡ଼କ । ୧୯୩୭ ମସିହା ଓଡ଼ିଶା ଗଡ଼ଜାତ ପ୍ରଜା ସମ୍ମିଳନୀରେ ସଭାପତିତ୍ୱ କରି କଂଗ୍ରେସ ସଭାପତି ଡକ୍ଟର ପଟ୍ଟାଭି ସୀତାରାମାୟା କଟକ ଟାଉନ ହଲରେ ରାଜା ଶଙ୍କର ପ୍ରତାପଙ୍କ କୁତ୍ସିତ ମନ ଓ ବିକୃତ ଯୌନପ୍ରୀତି ସଂପର୍କରେ କଠୋର ମନ୍ତବ୍ୟ କରିଥିଲେ ବୋଲି ହରମୋହନ ପଟ୍ଟନାୟକଙ୍କ ଲିଖିତ "ଢେଙ୍କାନାଳ ଆନ୍ଦୋଳନ" ବହିରେ ଉଲ୍ଲେଖ ଅଛି । କେତେକ କ୍ଷେତ୍ରରେ ସାମାନ୍ୟ ତ୍ରୁଟି ବିଚ୍ୟୁତି ବା ମତାନ୍ତର ହେତୁ, ସେ ନିକଟତମ ବଂଧୁଙ୍କୁ ମଧ୍ୟ କଠୋର ନିର୍ଯ୍ୟାତନା ଓ ଅପମାନ ଦିଅନ୍ତି । ଏପରିକି ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ପ୍ରଣେତା ରାୟ ବାହାଦୁର ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରି ବ୍ରିଟିଶ ସମର୍ଥକ ମଧ୍ୟ ପଣ୍ଡିତ ନୀଳକଂଠଙ୍କ ନବଭାରତ ପତ୍ରିକାରେ "ସ୍ୱପ୍ନରେ ରାଜଯୋଗ" ଶୀର୍ଷକ ଲେଖାରେ ରାଜଦରବାରଙ୍କ ଅତ୍ୟାଚାର କାହାଣୀ ବର୍ଣ୍ଣନା କରୁଥାଆନ୍ତି ।

ସେପ୍ଟେମ୍ବର ପହିଲାରେ ବ୍ରାହ୍ମଣୀ ନଦୀ କୂଳ ଜେନାପୁର ନିକଟରେ ସେ ବର୍ଷର ଚାଷୀ ଦିବସ ପାଳିତ ହେଲା । ଏହି ସଭାରେ ପ୍ରାୟ ପଚାଶ ହଜାର ଲୋକ ଯୋଗ ଦେଇଥାନ୍ତି । ବ୍ରାହ୍ମଣୀ ନଈ ଆର ପଟ ଢେଙ୍କାନାଳ ସୀମାକୁ ଲାଗିଛି । ଢେଙ୍କାନାଳରୁ ମଧ୍ୟ ମହେଶ୍ୱର ସୁବାହୁସିଂ ପରି ବହୁ ନେତା ଓ ସାଧାରଣ ଲୋକ ଏ ସଭାରେ ଯୋଗ ଦେଇଥିଲେ । ନବ ବାବୁ, ମୋହନ ଦାସ, ଭଗବତୀ ଚରଣ ପାଣିଗ୍ରାହୀ ଓ ଡାକ୍ତର ଫନୀ ପାଲ ପ୍ରମୁଖ ବହୁ କଂଗ୍ରେସ ସମାଜବାଦୀ, କମ୍ୟୁନିଷ୍ଟ ଓ କୃଷକ ଆନ୍ଦୋଳନର ନେତାମାନେ ଚାଷୀମାନଙ୍କ ଦାବୀ ସଂପର୍କରେ ଆଲୋଚନା କରିବାକୁ ଯାଇ ଢେଙ୍କାନାଳ ପ୍ରଜାମାନଙ୍କର ଦାବୀ ଉପରେ ମଧ୍ୟ ଭାଷଣ ଦେଇଥିଲେ । ଏହି ସଭାର ବିବରଣୀ ଢେଙ୍କାନାଳ ସାରା ବିଜୁଳି ବେଗରେ ବ୍ୟାପିଗଲା । ଚାରିଆଡ଼େ ସଭା ସମିତି ହୋଇ ଦାବୀପତ୍ର ରାଜାଙ୍କ ନିକଟକୁ ପଠାଗଲା । ରାଜା ବାହାଦୁର ଦାବୀ ଗ୍ରହଣ କରିବା ପରିବର୍ତ୍ତେ ପ୍ରଜାମଣ୍ଡଳ କର୍ମକର୍ତ୍ତାମାନଙ୍କୁ ଜେଲରେ ଭର୍ତ୍ତି କଲେ । ଏହାର ପ୍ରତିବାଦରେ ସେପ୍ଟେମ୍ବର ବାର ତାରିଖ ଦିନ ଢେଙ୍କାନାଳ ସହରରେ ବିରାଟ ପ୍ରତିବାଦ ଆନ୍ଦୋଳନ ଆରମ୍ଭ ହେଲା । ରାଜ୍ୟ ସାରା ଚାରିଆଡୁ ଲୋକେ ଚୁଡ଼ା ଚାଉଳ ବାଂଧି ଢେଙ୍କାନାଳରେ ଜମାଟ୍ ବାଂଧିଲେ ।

ଜନ ସମାବେଶ କ୍ରମେ ବଢ଼ିବାକୁ ଲାଗିଲା । ଲୋକେ ସ୍ଲୋଗାନ ଦେଇ, ଗୀତ ଗାଇ ସହର ସାରା ଶୋଭାଯାତ୍ରା କଲେ । ଢେଙ୍କାନାଳ ରାଜା ହାତୀ ମଡ଼ାଇ ଜନ ସମୁଦ୍ରକୁ ଛିନ୍ନଛତ୍ର କରିବାକୁ ଉଦ୍ୟମ କଲେ, ଲାଠି ପ୍ରହାର ବଳରେ ଜନତାକୁ ଭୟଭୀତ କରିବାକୁ ଚେଷ୍ଟା କଲେ । କିନ୍ତୁ ତାଙ୍କର ଉଦ୍ୟମ ସଫଳ ହେଲା ନାହିଁ । ସଂଧ୍ୟା ପରେ ଖୋଦ୍ ରାଜସରକାରଙ୍କର ଭୟ ବଢ଼ିବାକୁ ଲାଗିଲା । ଅନ୍ୟ ଉପାୟ ନ ଦେଖି, ରାତିରେ ପ୍ରଜାମଣ୍ଡଳ ନେତାମାନଙ୍କୁ ଜେଲରୁ ମୁକ୍ତ କରିଦିଆଗଲା । ଢେଙ୍କାନାଳ ହାଇସ୍କୁଲର ଛାତ୍ରମାନେ ମଧ୍ୟ ଏହି ଆନ୍ଦୋଳନରେ ଭାଗ ନେଇଥିଲେ । ତହିଁପର ଦିନ ଛାତ୍ରସଂଘର ସଂପାଦକ ବିଶ୍ୱନାଥ ପଶାୟତ ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତି ଢେଙ୍କାନାଳ ଯାଇ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଲେ । କିନ୍ତୁ ସମସ୍ତେ ଜାଣିଥିଲେ ଯେ ରାଜାଙ୍କର ଏ ପଛଘୁଂଚା ଅତି ସାମୟିକ ଏବଂ ପରେ ସେ ଯେଉଁ ପ୍ରତିଆକ୍ରମଣ ଆରମ୍ଭ କରିବେ, ତାହା ହେବ ବଂଧୁକ ଗୁଳିରେ ।

ଅନନ୍ତ ପଟ୍ଟନାୟକଙ୍କ ଲିଖିତ ଗୋଟିଏ ଗୀତ ଢେଙ୍କାନାଳରେ ଖୁବ୍ ଜନପ୍ରିୟ ହୋଇଥିଲା । ଆନ୍ଦୋଳନକାରୀମାନେ ଏ ଗୀତଟି ଗାଇ ଗାଇ ଶୋଭାଯାତ୍ରା କରନ୍ତି । ସବୁ ଦୁଃଖ କଷ୍ଟ ଭିତରେ ଏ ଗୀତଟି ସେମାନଙ୍କୁ ଅବାରିତ ପ୍ରେରଣା ଦିଏ । ଗୀତର ପ୍ରଥମ କେତୋଟି ଧାଡ଼ି ମନେ ପଡୁଛି :

"ଚାଲରେ ଚାଲରେ ଚାଲ୍
ମୁଲକ ଯାକର ମାଲିକ ଚାଷୀ
ମଜୁରିଆ କୁଲି ହେ ଉପବାସୀ
ଟେକି ଧର ତୋର ପତାକା ଆସି
ତୋହରି ରକତେ ଲାଲ.."

ଏହି ସମୟରେ ପ୍ରଜାମଣ୍ଡଳକୁ ସମର୍ଥନ କରି କଟକରେ ପ୍ରାୟ ପ୍ରତି ସପ୍ତାହରେ ସଭା ଶୋଭାଯାତ୍ରା ହୁଏ । ଏହାର ଆୟୋଜନ କରିବାର ଦାୟିତ୍ୱ ଆମପରି ଛାତ୍ରମାନଙ୍କ ଉପରେ । ବକ୍ତା ଥିଲେ ନବ ବାବୁ, ସାରଂଗଧର ବାବୁ ଓ ଭଗବତୀ ବାବୁ ଇତ୍ୟାଦି । ଏହି ସବୁ କାର୍ଯ୍ୟରେ ବ୍ୟସ୍ତ ରହି ମୋର ପଢ଼ାପଢ଼ିରେ ବହୁତ କ୍ଷତି ହେଉଥାଏ । କେତେକ ଶୁଭାକାଂକ୍ଷୀ ଶିକ୍ଷକ ମୋତେ ବାରଣ କରନ୍ତି । କିନ୍ତୁ ଆମେ ତ ଆନ୍ଦୋଳନ ନିଶାରେ ଜର୍ଜରିତ, ଆଗକୁ ଯିବା ଆମର ଲକ୍ଷ୍ୟ, ପଛକୁ ଫେରିବୁ କିପରି ?

କବି ସଚ୍ଚି ରାଉତରାୟ ସେତେବେଳେ ରେଭେନ୍ସା କଲେଜର ଛାତ୍ର । ସେ ମଧ୍ୟ ଆନ୍ଦୋଳନ ସହିତ ଘନିଷ୍ଠ ଭାବରେ ଜଡ଼ିତ । ତାଙ୍କ ଲିଖିତ ଗୋଟିଏ କବିତା ସାପ୍ତାହିକ ''କୃଷକ''ରେ ପ୍ରକାଶିତ ହୋଇଥାଏ ଏବଂ ତାହା ଥିଲା ଢେଙ୍କାନାଳରେ ଆନ୍ଦୋଳନକାରୀ ମାନଙ୍କର ମାର୍ଚ୍ଚିଂ ସଂଗ୍ ବା ଯାତ୍ରା ସଂଗୀତ । କଟକରେ ଥରେ ଗୋଟିଏ ଶୋଭାଯାତ୍ରାରେ ସେ କବିତାଟିକୁ ସଂଗୀତ ରୂପ ଦେଇ ଉଚ୍ଚ ଗଳାରେ ମିଳିତ କଂଠରେ ଗାଇ ଆମେ ପ୍ରଜାମଣ୍ଡଳ ପାଇଁ ଚାନ୍ଦା ସଂଗ୍ରହ କରିଥିଲୁ । ପ୍ରାୟ ଅଢ଼େଇ ଶହ ଟଙ୍କା ଆଦାୟ ହେଲା । ବର୍ତ୍ତମାନ ତାର ମୂଲ୍ୟ ହେବ ପ୍ରାୟ ବାର ହଜାର ଟଙ୍କା । ଆନ୍ଦୋଳନ ପଛରେ ସାଧାରଣ ଲୋକଙ୍କ ସମର୍ଥନର ବ୍ୟାପକତା ଏଥିରୁ ବୁଝା ପଡ଼ିବ । ସେ କବିତାର ପ୍ରଥମ କେତୋଟି ପଂକ୍ତି ହେଲା :

''ମାର୍ ତୁ ଯେତେ ଗୁଳି
ମରିବୁ ପଛେ ଡରିବୁ ନାହିଁ, ଯାଅନା ଏହା ଭୁଲି ।
ଘୋଡ଼ା ସବାର ସିପାହୀ ତୋର, ଚଢ଼ାଉ ଯେତେ କର
ପତାଇ ଦେଇ ଛାତିର ହାଡ଼, ହୋଇବୁ ଆଗଭର ।
ରଖ ତୋ ଲାଠି, କାଠର ଲାଠି, ହାଡ଼ର ଆମ ଛାତି
ମରଣ ଆମ ମୈତ୍ର ଜାଣ, କଷଣ ଆମ ସାଥୀ ।''

କବିତା ଗୁଡ଼ିକରେ ଦଳିତ, ଶୋଷିତ, ଗୁଳି, ଲାଠି, ମରଣ, କଷଣ ଆଦି ଶବ୍ଦର ପ୍ରୟୋଗ ଆଧୁନିକ ପାଠକ ସମାଜରେ କେତେ ଦୂର ଗ୍ରହଣୀୟ ହେବ ଜାଣେ ନାହିଁ । ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସମୃଦ୍ଧି ଭିତରେ ବଢ଼ିଥିବା ସଜ୍ଜନମାନଙ୍କ ଦୃଷ୍ଟିରେ ଏହା ଆଦୃତ ହୋଇ ନ ପାରେ । କିନ୍ତୁ ବ୍ରିଟିଶ ସାମ୍ରାଜ୍ୟବାଦ ଏବଂ ଗଡ଼ଜାତୀ ଅତ୍ୟାଚାର ବିରୋଧୀ ସଂଗ୍ରାମର ଏହା ହିଁ ଥିଲା ଭାବନା, କଳ୍ପନା ଓ ଅଗ୍ରଗତିର ମୂଳମନ୍ତ୍ର । ସେଥିପାଇଁ ସେ କବିତା ସବୁ ଥିଲା ଅଗ୍ନିବର୍ଷୀ, ଜ୍ୱାଳାମୟୀ, ଛନ୍ଦ ଥିଲା ଉଗ୍ର ତାଣ୍ଡବ ।

ସେପ୍ଟେମ୍ବର ବାର ତାରିଖର ପଚ୍ଛଘଣ୍ଟା ପରେ ରାଜଶକ୍ତି ପୁନର୍ବାର ନିଜକୁ ଗୁଳି ଗୋଳାରେ ସଜ୍ଜିତ କରି ପ୍ରଜା ଆନ୍ଦୋଳନକୁ ନିଶ୍ଚିହ୍ନ କରିବା ପାଇଁ ଆଗେଇ ଆସିଲେ । ଦୁଇ ଦିନ ପରେ ଗୋରା ଫଉଜ କଟକ ବାଟ ଦେଇ ଢେଙ୍କାନାଳ ଗଲେ । ପଂଜାବୀ ଫୌଜ ଓ ହାଇଦରାବାଦ ଫୌଜ ଓ ଅନ୍ୟ କେତେକ ଦେଶୀୟ ରାଜ୍ୟର ପୋଲିସଙ୍କୁ ଭାରତ ସରକାରଙ୍କ ରାଜନୈତିକ ଦପ୍ତର ଢେଙ୍କାନାଳ ପଠାଇଲେ । ଏହାପରେ ଆରମ୍ଭ ହେଲା ବର୍ବର ଦମନ-ଲୀଳା ।

ଗାଁ ଗାଁରେ ଗିରଫଦାରୀ, ଲାଠି ମାଡ଼ ଓ ପୋଲିସର ଗୁଳି । ଗୋଡିଡ଼ିହ, ତୁମସିଂଗା, ପରଜଂଗର କଇସିଂହା ଓ ଭୁବନ ଆଦି ଅନେକ ସ୍ଥାନରେ ଗୁଳିରେ ଅନେକ ଲୋକ ମଲେ । ଭୁବନ ଗୁଳିକାଣ୍ଡ ପରେ ପୋଲିସ ଫୌଜ ବ୍ରାହ୍ମଣୀ କୂଳ ନୀଳକଂଠପୁର ଘାଟରେ ପହଂଚିଲେ ଓ ସେଠାରେ ଡଙ୍ଗା ପାରିହୋଇ ଆରପାରିକୁ ଯିବାକୁ ଚେଷ୍ଟା କଲେ । ବାଜି ରାଉତ ଓ ଆଉ କେତେ ଜଣ ପ୍ରଜାମଣ୍ଡଳ କର୍ମୀ ଏହାର ପ୍ରତିରୋଧ କଲେ ଓ ଡଂଗା ଛାଡ଼ିଲେ ନାହିଁ । ପୋଲିସ ଜବରଦସ୍ତି ଡଂଗା ଛଡ଼ାଇ ନେଲେ ଓ ଡଂଗାରେ ବସି କୂଳରେ ଥିବା ପ୍ରତିରୋଧକାରୀମାନଙ୍କୁ ଆଖିବୁଜା ଗୁଳି କଲେ । ସେହି ଗୁଳିରେ ବାଜି ରାଉତ ଓ ଅନ୍ୟ ପାଂଚ ଜଣ କର୍ମୀ ଢଳି ପଡ଼ିଲେ । ଛ'ଜଣ ଶହୀଦଙ୍କ ଉଷ୍ମ ରକ୍ତରେ ବ୍ରାହ୍ମଣୀ ନଦୀର ଜଳ ଲାଲ ହୋଇଗଲା । ଏହା ଅକ୍ଟୋବର ଦଶ ତାରିଖର ଘଟଣା ।

କିନ୍ତୁ ସବୁ ଲାଠିମାଡ଼, ଗୁଳି, ବାଜିରାଉତର ହତ୍ୟା ଓ ନିର୍ଯ୍ୟାତନା ସତ୍ତ୍ୱେ ଆନ୍ଦୋଳନ ଦବିଗଲା ନାହିଁ । ମୋଗଲବନ୍ଦୀର ସାହାଯ୍ୟକାରୀମାନେ ମଧ୍ୟ ସେମାନଙ୍କର ଉଦ୍ୟମରୁ ବିରତ ହେଲେ ନାହିଁ । ବାଜି ରାଉତ ଗୁଳିକାଣ୍ଡର ପ୍ରାୟ ମାସକ ପରେ ବୈଦ୍ୟନାଥ ରଥ ଓ ଅନନ୍ତ ପଟ୍ଟନାୟକ ଗୋଟିଏ ସଭାରୁ ଫେରୁଥିବା ସମୟରେ ଢେଙ୍କାନାଳ ରାଜାର ଗୁଣ୍ଡାମାନେ କବାଟବଂଧ ଠାରେ ଏମାନଙ୍କୁ ଧରିବା ପାଇଁ ଲୁଚି ରହିଥିଲେ । ବୈଦ୍ୟନାଥ ରଥଙ୍କୁ ସେମାନେ ଧରି ପାରିଲେ ନାହିଁ, ସେ ସାଇକଲ ଛୁଟାଇ ଚାଲି ଆସିଲେ । ଅନନ୍ତ ପଟ୍ଟନାୟକଙ୍କୁ ସେମାନେ ମାଡ଼ି ବସିଲେ । ମଡା ଜେଲରେ ତାଙ୍କୁ ବଂଦୀ କରି ରଖାଗଲା । ମେଡ଼ିକାଲ ଛାତ୍ର ରବି ଘୋଷ ଆନ୍ଦୋଳନ ସଂକ୍ରାନ୍ତରେ ଅନୁଗୁଳ ଯିବା ବାଟରେ ମେରାମୁଣ୍ଡଳୀଠାରେ ବେଆଇନ ଭାବରେ ରେଳବାଇ ଇଲାକାରୁ ଗିରଫ ହେଲେ । ଚାଷୀନେତା ଗୌରାଙ୍ଗ ଚରଣ ଦାସଙ୍କୁ ଢେଙ୍କାନାଳ ପୋଲିସ ଗିରଫ କରି ବାଡ଼େଇ ବାଡ଼େଇ ସେ ମରିଗଲେ ବୋଲି ଛାଡ଼ି ଦେଇ ଯାଇଥିଲେ । ପରେ ସେ ଜୀବିତ ଥିବାର ଜାଣି ତାଙ୍କୁ ନେଇ ଜେଲରେ ବଂଦୀ କଲେ । ଏମାନେ ସମସ୍ତେ ଓ ଆହୁରି ଅନେକେ ଢେଙ୍କାନାଳର ବିଭିନ୍ନ ଜେଲରେ ବର୍ଷାଧିକ କାଳ ଅକଥନୀୟ ଦୁର୍ଦ୍ଦଶା ଭୋଗିଥିଲେ ବିନା ବିଚାରରେ ।

ନୀଳକଂଠପୁର ବ୍ରାହ୍ମଣୀ ଘାଟରେ ବାଜି ରାଉତ ହତ୍ୟାକାଣ୍ଡ ପରେ କଟକରେ ଚହଳ ପଡ଼ିଯାଇଥିଲା । ଜେନାପୁରର କଂଗ୍ରେସ ନେତା ଶ୍ରୀ ବଳଦେବ

ଲାଲା ଓ ଚାଷୀନେତା ଡାକ୍ତର ଫନୀ ପାଲ ଏ ଶହୀଦମାନଙ୍କର ଶବକୁ ଢେଙ୍କାନାଳୁ ପର୍ଯ୍ୟନ୍ତ ଡଙ୍ଗାରେ ନେଇ ଆସିଲେ । ଢେଙ୍କାନାଳୁରେ ବୈଷ୍ଣବ ପଟ୍ଟନାୟକ ଓ ରବି ଘୋଷଙ୍କ ସାହାଯ୍ୟରେ ଶବଗୁଡ଼ିକୁ ଟ୍ରେନ ଓ୍ୱାଗନରେ କଟକ ଅଣାହେଲା । ପୋଷ୍ଟମର୍ଟମ ପରେ ତୃତୀୟ ଦିନ ଛ'ଟି ଶଗଡ଼ ଗାଡ଼ିରେ ଶବଗୁଡ଼ିକୁ ରଖି, ଖାନନଗରକୁ ଶବ ଶୋଭାଯାତ୍ରା ଆରମ୍ଭ ହେଲା ।

ଶବବାହୀ ଶଗଡ଼ର ଚାଳକ ଥିଲେ ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ବିଶ୍ୱନାଥ ପଣ୍ଡାୟତ, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ମେଡ଼ିକାଲ ଛାତ୍ର ରବି ଘୋଷ ଓ ମୋତିଲାଲ ତ୍ରିପାଠୀ । ଶବବାହୀ ଗାଡ଼ି ପଛରେ ଚାଲିଥାନ୍ତି ନବକୃଷ୍ଣ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ଭଗବତୀ ପାଣିଗ୍ରାହୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ, ସାରଙ୍ଗଧର ଦାସ, ବୈଷ୍ଣବ ଚରଣ ପଟ୍ଟନାୟକ ଓ ଅନ୍ୟମାନେ । ଆମେ କେତେ ଜଣ ହଜାର ହଜାର ଲୋକଙ୍କର ଏହି ବିରାଟ ଶୋଭାଯାତ୍ରାକୁ ନିୟନ୍ତ୍ରଣ କରି ଚାଲିଥାଉ । ଖାନନଗର ଶ୍ମଶାନ ପାଖରେ ପହଂଚିଲା ବେଳକୁ ଦେଖିଲି, କେତେ ଜଣ ଫ୍ରକ୍ ପିନ୍ଧା ଝିଅ ମଧ୍ୟ ଶୋଭାଯାତ୍ରା ପଛରେ ଚାଲିଛନ୍ତି । ସେମାନଙ୍କ ମଧ୍ୟରେ ଥିଲେ ନିରୁପମା (ଡାକ୍ତର ନିରୁପମା ରଥ) ମନୁ (ସ୍ୱର୍ଗୀୟା ଡାକ୍ତର ସରୋଜିନୀ ପ୍ରଧାନ) ଓ ମାଳତୀ ଦେବୀଙ୍କ ଝିଅ ବୁବୁ (ସ୍ୱର୍ଗୀୟା ଉତ୍ତରା ଦେଶାଇ) । କେହି କେହି କହୁଥାନ୍ତି ମଧୁସୂଦନ ଦାସଙ୍କ ଶବ ଶୋଭାଯାତ୍ରା ପରେ ଏତେ ବଡ଼ ଶୋକଯାତ୍ରା କଟକରେ ହୋଇନାହିଁ । ଶ୍ମଶାନରେ ଛ'ଟି ଶବକୁ ଗୋଟିଏ ଚିତାରେ ରଖି ମୁଖାଗ୍ନି ଦିଆହେଲା । ସମବେତ ଜନତା କଂଠରେ ସେହି ଗୋଟିଏ ନାରା "ସାମ୍ରାଜ୍ୟବାଦ ଧ୍ୱଂସ ହେଉ - ଢେଙ୍କାନାଳ ଅତ୍ୟାଚାର ଧ୍ୱଂସ ହେଉ" ।

ବାଜି ରାଉତ ଓ ଅନ୍ୟ ଶହୀଦମାନଙ୍କର ଅନ୍ତିମ ଯାତ୍ରା ପରେ, କବି ସଚ୍ଚି ରାଉତରାୟ ଯେଉଁ କବିତା ଲେଖିଥିଲେ, କବିଙ୍କ ଭାଷାରେ ତାର ନାୟକ କୌଣସି ବିଖ୍ୟାତ ସେନାପତି, ଜନ-ନାୟକ କିମ୍ବା ମଧ୍ୟଯୁଗୀୟ ସର୍ଦ୍ଦାର ନୁହେ । ବାଜିରାଉତ ନାମକ ଏକ ଛୋଟ ବାର ବର୍ଷର ନାଉରୀ ପିଲା ଏ କବିତାର ପ୍ରଧାନ ଉପଜୀବ୍ୟ ।

ଦେଶର ଅଗଣିତ ସ୍ୱାଧୀନତା ସଂଗ୍ରାମୀଙ୍କର ଅନ୍ତରର ବେଦନାକୁ ଏ କବିତା ଯଥାର୍ଥ ରୂପ ଦେଇଥିଲା । କବିତାର ପ୍ରଥମ କେତୋଟି ଧାଡ଼ି ଉଦ୍ଧାର କରୁଛି :

''ନୁହେ ବଂଧୁ, ନୁହେ ଏହା ଚିତା
ଏ ଦେଶ ତିମିର ତଳେ
ଏ ଅଳିଭା ମୁକତି ସଳିତା ।
ନୁହେ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି, ଜାଳି ପୋଡ଼ି
ଦେବାକୁ ଧସାଇ ।

ଏ ଶିଖା ଦେଇଚି ଆଜି
ଇତିହାସେ ହାତ ଟେକି ଦାନ
ଶତାବ୍ଦୀର ଶ୍ରେଷ୍ଠ ଫୁଲ
ମୁକୁଳିତ ମୃତ୍ୟୁହୀନ ପ୍ରାଣ ।।
ଜ୍ୱଳନ୍ତ ଏ ଲେଲିହାନ,
ସ୍ୱାହାହୀନ ଶିଖାର ଅନଳେ
ଜୀବନର ମାଲ୍ୟ ଥରେ,
ମରଣର ଚାରୁ ସ୍ୱୟମ୍ବରେ,
ରଚିବାକୁ ସୃଷ୍ଟିର ଭୂମିକା;
ଉଷାର ଗୋପନ ଅର୍ଥ
ରଜନୀର ଲୁପ୍ତ ପାଦଟୀକା
ରଖେ ଯଥା ଧରି,
ଆପଣା ମୃତ୍ୟୁରେ ଫୁଟେ,
ଆଜି ସେତ ଝରି ସେଇପରି''

ପ୍ରଖ୍ୟାତ କବି କାଳିନ୍ଦୀ ଚରଣ ପାଣିଗ୍ରାହୀ 'କୃଷକ' ପତ୍ରିକାରେ ଛଦ୍ମ ନାମରେ ଲେଖିଥିଲେ :

''ଝାଳ ଦେଇ ତୁରେ ଗଢ଼ିଲୁ ରାଇଜ ରଜା
ଲହୁ ଢାଳି ଆଜି ହତିଆର ତୋର ପଜା
ବେଳ ଏହି ବେଳ ଏହି
ଗଢ଼ିଥିଲୁ ଯାକୁ ତଡ଼ିବୁ ତାହାକୁ ନ ଶୁଅରେ ଆଉ ଚେଇଁ ।
କୋଣାରକ ଠାରୁ ଗଢ଼ିଲୁ ଦେଉଳ ବଡ଼
ନ ମାନିଲୁ ରାଜା ଗୁଳି ବଂଧୁକ ଝଡ଼
ଏଡ଼େ ଅବିନୀତ ଟୋକା
ଢେଙ୍କାନାଳର ଜଙ୍ଗଲ ଟାଣି ବଜାଇଲୁ ଜୟ ଢଙ୍କା ।

ବଜାଇଲୁ ତୁ ତ ଦୁନିଆ ଉପରେ ବାଜା
ଛାତିକି ଫୁଲାଇ 'ନାହିଁ ରାଜା ! ନାହିଁ ରାଜା !'
କାହୁଁ ଶିଖିଲୁ ଏ କଥା
କହ କହ ବାଜି କାହା ଲାଗି ଆଜି
ବଳିଦେଲୁ ନିଜ ମଥା !''

ଶବଦାହର ପରଦିନ, ଟାଉନ ହଲ ପଡ଼ିଆରେ ଏକ ବିରାଟ ପ୍ରତିବାଦ ସଭା ହେଲା । ସାରଂଗଧର ଦାସ ବା ଭଗବତୀ ପାଣିଗ୍ରାହୀ କିଏ ସଭାପତି ହୋଇଥିଲେ, ତାହା ମନେ ପଡୁ ନାହିଁ । ମୁଖ୍ୟବକ୍ତା ଥିଲେ ନବକୃଷ୍ଣ ଚୌଧୁରୀ । ସଭା ଆରମ୍ଭରେ ଖବର ମିଳିଲା ଯେ ରାଜା ଶଙ୍କର ପ୍ରତାପ ସାମରିକ ପୋଲିସ ପହରାରେ ଡାଲଟେନ୍ ଟ୍ରେନ୍‌ରେ ଆସି, କଟକରୁ ପୁରୀ ଏକ୍ସପ୍ରେସରେ କଲିକତା ଯାଉଛନ୍ତି ଏବଂ ତାଙ୍କ ପାଇଁ ଏକ ଫାଷ୍ଟ କ୍ଲାସ କଂପାର୍ଟମେଣ୍ଟ ରିଜର୍ଭ କରାଯାଇଛି । ନବ ବାବୁ ଉତ୍‌କ୍ଷିପ୍ତ ହୋଇ ଭାଷଣ ଆରମ୍ଭ କଲେ, ''ରାଜା ଫାଷ୍ଟକ୍ଲାସ କଂପାର୍ଟମେଣ୍ଟର ଦରଜା ଭିତରୁ ବନ୍ଦ କରି ମନେ କରୁଛି, ସେ ଏଥର ନିରାପଦ । ଅନ୍ତତଃ ପାଖ ଡବାରେ ବଂଧୁକଧାରୀ ପୋଲିସ ଅଛନ୍ତି । କିନ୍ତୁ ସେ ଜାଣେନା, କଂପାର୍ଟମେଣ୍ଟ ଭିତରେ ଅଛି ଭୂତ । ଶହୀଦ ବାଜି ରାଉତର ଭୂତ । ଭୂତ ଚିତ୍କାର କରୁଛି, ତୁ ଆମର ଘାତକ, ତୁ ଆମର ହତ୍ୟାକାରୀ- ଏଥର ତୋର ମୁକ୍ତି ନାହିଁ, ଏଥର ପରିତ୍ରାଣ ନାହିଁ । ଭୟ ଆତଙ୍କରେ ରାଜା ଆଖି ବଂଦ କରି ଦେଉଛି । କିନ୍ତୁ ନିଦ୍ରା କାହିଁ? ଆଖି ଖୋଲିବା ମାତ୍ରେ ଦେଖୁଛି, କେବଳ କଂକାଳ, ତାଣ୍ଡବ ନୃତ୍ୟରତ ଛ'ଟା ମଣିଷର କଂକାଳ । ବାଜି, ହୁରୁଷି, ରଘୁ, ଗୁରି, ନଟ ଓ ଲକ୍ଷ୍ମଣର କଂକାଳ - ବିକଟ ଅଟ୍ଟହାସ୍ୟରେ କଂପାର୍ଟମେଣ୍ଟ ଫାଟି ପଡୁଛି'' . ଇତ୍ୟାଦି ଇତ୍ୟାଦି ।

ସେକ୍ସପିଅରଙ୍କ ''ଜୁଲିଅସ ସିଜର'' ନାଟକରେ ସିଜରଙ୍କ ମୃତ୍ୟୁ ପରେ, ହତ୍ୟାକରୀ ବ୍ରୁଟସ୍‌କୁ ଆକ୍ଷେପ କରି ସିଜରଙ୍କ ବଂଧୁ ଆଣ୍ଟୋନୀ ଯେଉଁ ବକ୍ତୃତା ଦେଇଥିବାର ଉଲ୍ଲେଖ ଅଛି, ଇଂରାଜୀ ସାହିତ୍ୟରେ ତାହା ଏକ ଅବିସ୍ମରଣୀୟ ରଚନା । କିନ୍ତୁ ବାଳକ ବାଜି ରାଉତର ହତ୍ୟା ଉପରେ ନବ ବାବୁଙ୍କର ଭାଷଣ ଥିଲା ତାଠାରୁ ଆହୁରି ତୀକ୍ଷ୍ଣ, ଆହୁରି ଶାଣିତ, ଆହୁରି ଉତ୍ତେଜକ ଓ ଶକ୍ତିମାନ । ମୁଁ ଜୀବନରେ ନବ ବାବୁଙ୍କର ଶହ ଶହ ବକ୍ତୃତା ଶୁଣିଛି । ସ୍ୱାଧୀନତା ସଂଗ୍ରାମ କାଳରେ, କ୍ଷମତାକୁ ଆସିବା ପରେ ଏବଂ ପୁଣି ସ୍ୱେଚ୍ଛାରେ କ୍ଷମତା ଛାଡ଼ି ଜନସେବାରେ ଆତ୍ମୋତ୍ସର୍ଗ କରିବା ପରେ । କିନ୍ତୁ ବାଜିରାଉତ ଶୋକ ସଭାରେ ତାଙ୍କର ଏହି ବକ୍ତୃତା ଥିଲା ସବୁଠାରୁ ବେଶି ମର୍ମଭେଦୀ, ସବୁଠାରୁ ବେଶି ପ୍ରାଣସ୍ପର୍ଶୀ ।

# ସହପାଠୀ

ମୋର ଗୋଟାଏ ଦୋଷ, କୌଣସି ଲୋକର କିଛି ବିଶେଷତ୍ୱ ନ ଦେଖିଲେ, ମୁଁ ତା ସହିତ ମିଶେ ନାହିଁ । ଗାଁ ମାଇନର ସ୍କୁଲରେ ପଢ଼ିଲା ବେଳେ, ମୋର ସହପାଠୀଙ୍କ ମଧ୍ୟରୁ ଜଣେ ଅଧେ ମୋର ବଂଧୁ, ଅଥଚ ଉପର ଶ୍ରେଣୀରେ ପଢୁଥିବା କେତେକଙ୍କ ସହିତ ମୋର ଘନିଷ୍ଠତର ସଂପର୍କ ଥାଏ । ଏ ଅଭ୍ୟାସ ମୋର ବହୁଦିନ ପର୍ଯ୍ୟନ୍ତ ଥିଲା । ମୋ ଠାରୁ ଅଧିକ ଜ୍ଞାନୀ, ଗୁଣୀ, ଅଧିକ କୁଶଳୀ ନ ହେଲେ ମୁଁ ସେମାନଙ୍କ ସହିତ ବଂଧୁତା ଯୋଡ଼ିବାର ଆବଶ୍ୟକତା ମନେ କରେ ନାହିଁ ।

ରାମକୃଷ୍ଣ କଟେଜରେ ସିନେମା ଦେଖିଯିବାକୁ ନିଷେଧ ଥାଏ । ବହୁ ଅହେତୁକ ନିୟମ ମଧ୍ୟରୁ ଏ ଗୋଟିଏ । ତତ୍ତ୍ୱାବଧାରକମାନେ, ବିଶେଷତଃ ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ସେନଗୁପ୍ତ ମନେ କରୁଥିଲେ, ସିନେମା ଦେଖିଲେ ଚରିତ୍ର ଖରାପ ହୋଇଯିବ । ନିୟମ ଅଯୌକ୍ତିକ ହେଲେ ତାକୁ ନ ମାନିବା ତରୁଣର ସ୍ୱାଭାବିକ ପ୍ରବୃତ୍ତି । ମୁଁ କଟେଜରେ ଥିବା ବେଳେ କେତେ ଥର ଲୁଚି ଲୁଚି ସିନେମା ଦେଖିଯାଇଛି । ନିଜ ଶ୍ରେଣୀର ସହପାଠୀଙ୍କ ସହିତ ନୁହେ, ମୋ ଠାରୁ ତିନିବର୍ଷ ସିନିଅର ଏକାଦଶ ଶ୍ରେଣୀର ଛାତ୍ର କାହ୍ନୁଚରଣ ସାମଲଙ୍କ ସହିତ । ସେ କଟେଜ ଛାଡ଼ିବା ପରେ କେବେ ଯଦି ସିନେମା ଯାଏ, ତେବେ ମୋ ଠାରୁ ଦୁଇ ବର୍ଷ ସିନିଅର କିଶୋର ଚନ୍ଦ୍ର ମିଶ୍ରଙ୍କ ସହିତ । ସେହିପରି ଫାଷ୍ଟ ଇୟରରେ ପଢ଼ିଲାବେଳେ ଏମ୍.ଏ. ଛାତ୍ର ଉମାକାନ୍ତ ମିଶ୍ର (ଏବେ ପୁରୀର ବିଶିଷ୍ଟ ଆଡ୍‌ଭୋକେଟ୍) ଓ ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ଶ୍ରୀ ରାମଚନ୍ଦ୍ର ମହାନ୍ତି (ପରେ କଟକର ଏ.ଡ଼ି.ଏମ୍)ଙ୍କ ସହ ବେଶ୍ ସଦ୍‌ଭାବ ଥିଲା । ରାଜନୀତିରେ ମଧ୍ୟ ବୟସ୍କ ଲୋକଙ୍କ ସହିତ ଥିଲା ଅଧିକ ସାନ୍ନିଧ୍ୟ । ତତ୍କାଳୀନ କମ୍ୟୁନିଷ୍ଟ ନେତା ବିଜୟ ଚନ୍ଦ୍ର ଘୋଷ ମୋଠାରୁ ବୟସରେ ଆଠ ବର୍ଷ ବଡ଼ । ରାଜନୀତିରେ ସେ ଥିଲେ ମୋର ଗୁରୁ, ଅଥଚ ପରେ ସେ ହେଲେ ଘନିଷ୍ଠତମ ବ୍ୟକ୍ତିଗତ ବଂଧୁ । ଏ ବିଷୟରେ ପରେ ଅନେକ ଭାବିଛି । ଅନୁଭବ କରିଛି, ଏହା ଦ୍ୱାରା କିଛି ଭୁଲ କରି ନାହିଁ । ଯଦି ମଣିଷ ଚିହ୍ନିବାରେ ଭୁଲ ହୋଇ ନ ଥାଏ, ତେବେ ଜ୍ଞାନୀ, ଗୁଣୀ ଲୋକଙ୍କ ସହିତ ବଂଧୁତା ହେଲେ, ନିଜର ଜ୍ଞାନ ବଢ଼େ, ନିଜର ମାନ ମର୍ଯ୍ୟାଦା ବରଂ ବୃଦ୍ଧି ପାଏ, କ୍ଷତି ହୁଏ ନାହିଁ ।

କଲେଜିଏଟ୍ ସ୍କୁଲରେ ମୋର ସାଙ୍ଗ ସାଥୀ ଥିଲେ ଅନେକ, କିନ୍ତୁ ଘନିଷ୍ଠ ବଂଧୁଙ୍କ ସଂଖ୍ୟା ଅତି ସୀମିତ । ପ୍ରଦୀପ୍ତ କିଶୋର ଦାସ ଓ ଜଗଦ୍‌କୃଷ୍ଣ ଦାସ (ସାର୍ବଜନୀନ ଟିକ ଭାଇ) ଆମ ଉପର କ୍ଲାସରେ ପଢୁଥିଲେ । ଭଲ ଛାତ୍ର ଭାବରେ ପ୍ରଦୀପ୍ତଙ୍କର ସୁଖ୍ୟାତି ଥିଲା । ମ୍ୟାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ସେ ସ୍କଲାରସିପ ପାଇଥିଲେ । ପରେ ସୋସାଲିଷ୍ଟ ଦଳରେ ଯୋଗଦେଲେ ଓ ୧୯୭୭ ମସିହାରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ହୋଇଥିଲେ । ସ୍ୱାମୀ ବଚିଦ୍ରାନନ୍ଦ ଦାସଙ୍କ ପୁତୁରା ଟିକ ଭାଇ ଅତି ସ୍ନେହୀ ଓ ମିଳାପୀ । ଅନ୍ୟକୁ ସାହାଯ୍ୟ କରି ସେ ଆନନ୍ଦ ପାଏ ଏବଂ ଏବେ ମଧ୍ୟ ସେବା ତାର ଜୀବନର ଧର୍ମ । ଉଭୟ ଛାତ୍ର ଫେଡ଼େରେସନ ସହିତ ସଂପୃକ୍ତ ଥାଆନ୍ତି ଓ ଉଭୟଙ୍କ ସହିତ ମୋର ସୌହାର୍ଦ୍ଦ୍ୟ ଥାଏ ।

ଉତ୍କଳମଣି ଗୋପବଂଧୁଙ୍କ ନାତି (ଝିଅର ପୁଅ) ସତ୍ୟବାଦୀ ମିଶ୍ର ଅଷ୍ଟମ ଶ୍ରେଣୀରୁ ମୋର ସହପାଠୀ । ପିଲାଦିନୁ ତାର ସାଧାରଣ କାର୍ଯ୍ୟ ପ୍ରତି ଆଗ୍ରହ ଥାଏ । ଭଲମନ୍ଦ ସୁଖ ଦୁଃଖରେ ଆମେ ଥିଲୁ ସହଯାତ୍ରୀ । ଛାତ୍ର ଫେଡ଼େରେସନର ସେ ଥିଲା ସକ୍ରିୟ କର୍ମୀ । ମେଡ଼ିକାଲ ଛାତ୍ର ଧର୍ମଘଟରେ ଗିରଫ ହୋଇ ଆମେ ଦୁହେଁ ଏକାଦିନେ ଜେଲକୁ ଯାଇଥିଲୁ । ୧୯୪୨ ସାଲ ଅଗଷ୍ଟ ଆନ୍ଦୋଳନରେ ଗିରଫ ହୋଇ ସେ ବର୍ଷେକାଳ ଜେଲରେ ରହିଲା । ପରେ ରେଭେନ୍ସା କଲେଜରୁ ବି.ଏ. ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଏମ୍.ଏ ପାସ କରି ସେ ସରକାରୀ କଲେଜରେ ଲେକ୍‌ଚରର ହେଲା । ୧୯୭୨ ମସିହାରେ ମୁଁ ଆଡ୍‌ଭୋକେଟ୍ ଜେନେରାଲ ଥିବା ସମୟରେ ସେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ଅଧ୍ୟକ୍ଷ ଥାଏ । ମୁଁ ସେ ବର୍ଷ କଲେଜର ବାର୍ଷିକ ସମାରୋହକୁ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରିତ ହୋଇଥିଲି । ପୁରୀରେ ଥିବା ସମୟରେ ସେ ଦର୍ଶନ ଶାସ୍ତ୍ରରେ ଡକ୍ଟରେଟ୍ ଲାଭ କଲା । ଚାକିରୀରୁ ଅବସର ନେବାର କିଛି ଦିନ ପରେ ଦୁଇ ବର୍ଷ ପୂର୍ବେ ତାର ଦେହାନ୍ତ ହୋଇଅଛି ।

ମୁଁ ଯେଉଁଦିନ କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲି, ସେ ଦିନ ଆଉ ଜଣେ ପିଲା ମଧ୍ୟ ନାମ ଲେଖାଇ ଥିଲା । ତାର ନାମ ସୋମନାଥ ମହାନ୍ତି । ସେ ତେଲେଙ୍ଗାବଜାର ପ୍ରାଣନାଥ ମିଶ୍ରଙ୍କ ଘରେ ରହୁଥିଲା, ମୁଁ ତା ପାଖାପାଖି କାହ୍ନୁ ଚରଣ ଦାସଙ୍କ ଘରେ ରହୁଥିଲି । ଆମେ ଦୁହେଁ ଏକାଠି ନଈକୂଳ ବାଟେ ବସାକୁ ଫେରିଲୁ । ଦୁଇ ମାସ ପରେ ଦୁହେଁ

ରାମକୃଷ୍ଣ କଟେଜରେ ରହିବା ପାଇଁ ମନୋନୀତ ହେଲୁ । କଟେଜରେ ସେ ଥିଲା ସବୁଠାରୁ ସ୍ୱାସ୍ଥ୍ୟବାନ୍ । ଏକାଥରକେ ପଚାଶ ବାଲ୍ଟି ପାଣି କୂଅରୁ କାଢ଼ିଦିଏ । ଖରାଦିନେ ଆମେ ଚାରିଟା ପରେ ଦିନେ ଦିନେ କାଠଯୋଡ଼ୀକୁ ଗୋଧୋଇବାକୁ ଯାଉ । ସେତେବେଳେ ହୀରାକୁଦ ବନ୍ଧ ହୋଇ ନଥାଏ । ବର୍ଷ ସାରା ନଈରେ ଗୋଟିଏ କ୍ଷୁଦ୍ର ପାଣି ଧାର ଚାଲିଥାଏ । ସେ ବର୍ଷ ପାଣି ଧାର ଥାଏ ମୁଣ୍ଡମୁହାଣ ପଟକୁ । ଅଧମାଇଲରୁ ଅଧିକ ବାଟ ବାଲିରେ ଚାଲି ଚାଲି ଗଲେ ଗାଧୋଇବାକୁ ହୁଏ । ଆମେ ଥରେ ପାଣି କୂଳରେ ବସିଛୁ, ସୋମନାଥ କହିଲା, ଯଦି କିଏ ନଈ ଆର ପଟକୁ ପହଁରି ଯାଇ ପାରିବ, ତାହାହେଲେ ସେ ଟଂକାଟିଏ ଦେବ । ନ ଯାଇ ପାରିଲେ, ପହଁରାଳୀକୁ ଟଂକାଏ ସୋମନାଥକୁ ଦେବାକୁ ହେବ ।

ମୁଁ ବାଜି ଗ୍ରହଣ କରି ନେଲି । ଏପ୍ରିଲ ମାସରେ ନଈରେ ପ୍ରାୟ ଶହେ ଦେଢ଼ଶହ ଫୁଟ ଚଉଡ଼ାର ପାଣି ଥାଏ । ସ୍ରୋତ ନ ଥାଏ କହିଲେ ଚଳେ । ମୁଁ ଅଧାଅଧି ପହଁରିଗଲା ପରେ, ସୋମନାଥ ହଠାତ୍ କୂଳରୁ ଚିତ୍କାର କଲା "ଫେରିଆ ଫେରିଆ, ଆଗକୁ ଯିବା ଦରକାର ନାହିଁ । ମୁଁ ବାଜି ହାରୁଛି, ଫେରିଆ" । ତାର କାତର ଡାକରା ଶୁଣି ମନେ ହେଲା, ସେ ମୋର ନିରାପତ୍ତା ଲାଗି ଆତଙ୍କିତ ହୋଇ ଉଠିଛି । ମୁ ତା ଡାକରା ନ ଶୁଣି ସେ କୂଳରେ ପହଂଚିଲି ଓ ପାଂଚ ମିନିଟ୍ ବିଶ୍ରାମ ନେଇ ପୁଣି ଏ କୂଳକୁ ପହଁରି ଆସିଲି । ଫେରି ଦେଖିଲି, ସୋମନାଥ ସତକୁ ସତ ଖୁବ୍ ଡରି ଯାଇଛି, କାଳେ ମୋର କ'ଣ ହୋଇଯିବ । ଯାହାହେଉ ସେ ବାଜି ହାରିଲା । ମ୍ୟାଟ୍ରିକ୍ ପାସ କରିବା ପରେ ସେ ମିଲିଟାରୀରେ ଯୋଗ ଦେଇଛି ବୋଲି ଶୁଣିଲି ।

୧୯୪୩ ମସିହା ଜାନୁଆରୀ ମାସରେ ମୁଁ ରାଜନୈତିକ କାର୍ଯ୍ୟରେ କଲିକତା ଯାଇଥିଲି । ସ୍ୱର୍ଗୀୟ ସୁବୋଧ ଦାସଙ୍କ ବସାରେ ହଠାତ୍ ସୋମନାଥ ସହିତ ଦେଖାହେଲା । ତା ଠାରୁ ଶୁଣିଲି, ତାଙ୍କ କମ୍ପାନୀ ମିଲିଟାରୀ ଟ୍ରେନ୍ ଯୋଗେ ସରକାରୀ କାର୍ଯ୍ୟରେ ପୁରୀ ଆସିଥିଲେ । ସେଠାରେ ସେମାନଙ୍କୁ ଦୁଇଦିନ ଛୁଟି ମିଳିଲା ବୁଲିବା ପାଇଁ । ଏହି ଅବସରରେ ସେ ପୁରୀ ନିକଟସ୍ଥ ତାଙ୍କ ଗାଁକୁ ଯାଇଥିଲା । ଦିନକ ଡେରିରେ ଫେରିଲା, ସେତେବେଳକୁ ମିଲିଟାରୀ ଟ୍ରେନ ଚାଲିଯାଇଛି । ହେଳାରେ ହେଳାରେ ସେ ଗାଁରେ ରହିଗଲା । ସାମରିକ ବାହିନୀରୁ ପଳାତକ ଥିବା ହେତୁ ତା ନାମରେ ଗିରଫ ପରୱାନା ବାହାରିଛି । ଏଣୁ ସେ କଲିକତା ପଳାଇ ଆସି ଏଠି ଛଦ୍ମ ନାମରେ ଚାକିରୀ କରୁଛି ।

ଏହାର ଦେଢ଼ବର୍ଷ ପରେ, କଟକ ଜେଲ୍‌ରେ ବନ୍ଦୀ ଥିବା ଜଣେ ରାଜନୈତିକ ବନ୍ଧୁଙ୍କୁ ସାକ୍ଷାତ କରିବା ପାଇଁ ମୁଁ ଜେଲ୍‌କୁ ଯାଇଥିଲି । ହଠାତ୍ ଦେଖିଲି, ସୋମନାଥ କଏଦୀ ପୋଷାକ ପିନ୍ଧି ଜେଲ ଅଫିସରେ କାମ କରୁଛି । ଲୁହଭରା ଆଖିରେ ସୋମନାଥ ମତେ ଜାବୋଡ଼ି ଧରିଲା । ଶୁଣିଲି, କଲିକତାରୁ ଗାଁକୁ ପଠାଇଥିବା ଚିଠିରୁ ପୋଲିସ ତାର ଠିକଣା ଜାଣି ତାକୁ ଗିରଫ କଲେ । କୋର୍ଟ ମାର୍ସିଆଲ ଦ୍ୱାରା ଦଣ୍ଡିତ ହୋଇ, ସେ ଜେଲ ଦଣ୍ଡ ଭୋଗ କରୁଚି । ସ୍ୱାଧୀନତା ପରେ ସେ ରେଲୱେରେ ଚାକିରୀ କରୁଥିଲା ବୋଲି ଶୁଣିଥିଲି ।

ନିଶାମଣି ଖୁଣ୍ଟିଆ କାନପୁର ମେଟକାଫ ମାଇନର ସ୍କୁଲରୁ ପାସ୍ କରି କଲେଜିଏଟ ସ୍କୁଲରେ ନାମ ଲେଖାଇଥାଏ । ମୋର 'ଏ' ସେକ୍‌ସନ୍ ଓ ତାର 'ବି' ସେକ୍‌ସନ୍ । ସେ ମଧ୍ୟ କଟେଜର ଅନ୍ତେବାସୀ । ପିଲାଦିନୁ ନିଶାମଣିର ସାଧାରଣ କାର୍ଯ୍ୟ ପ୍ରତି ଆଗ୍ରହ ଥାଏ । କଲେଜିଏଟ୍ ସ୍କୁଲରେ ପଢ଼ିବା ସମୟରେ କାନପୁର ସ୍କୁଲ ପରିଚାଳନା ବ୍ୟାପାରରେ, ତତ୍‌କାଳୀନ ହେଡ୍‌ମାଷ୍ଟର କେତେଥର କଟେଜ ଆସି ତା ସହିତ ପରାମର୍ଶ କରୁଥିବାର ମୁଁ ଦେଖିଛି । ମାଲି ମୋକଦ୍ଦମାରେ ପଡ଼ିଥିବା ଲୋକେ ତା ପାଖକୁ ଅନେକ ସମୟରେ ସାହାଯ୍ୟ ପାଇଁ ଆସନ୍ତି । ଆମେ ଦୁହେଁ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ଘରକୁ ଅନେକ ସମୟରେ ଯାଉ । ବାଙ୍କ ବିହାରୀ ଦାସ ମଧ୍ୟ ବେଳେ ବେଳେ ଆସନ୍ତି । ଦ୍ୱିବେଦୀ ୩୦ ମସିହା ସତ୍ୟାଗ୍ରହ ଆନ୍ଦୋଳନରେ ଗିରଫ ହୋଇ ସ୍କୁଲ ଛାଡ଼ିଥିଲେ । ପରେ ଘରୋଇ ଭାବରେ ପଢ଼ାପଢ଼ି କରି ସେ ନିଜର ମାନ ଉନ୍ନତ କରି ପାରିଥିଲେ । ସେ ସମୟରେ ତାଙ୍କ ମାମୁଁ ପଣ୍ଡିତ ଆକୁଳ ମିଶ୍ରଙ୍କ ତେଲେଙ୍ଗା ବଜାର ଘର ସାମନାରେ ଗୋଟିଏ ଛୋଟ ଘରେ ଦ୍ୱିବେଦୀଙ୍କ ଅଫିସ । ସେ ସ୍ୱନାମଧନ୍ୟ ସଂବାଦ ସରବରାହ ପ୍ରତିଷ୍ଠାନ ୟୁ.ପି. ଆଇର ସମ୍ବାଦଦାତା ଥାଆନ୍ତି । ତାଙ୍କ ଅଫିସକୁ ସବୁ ଇଂରାଜୀ କାଗଜ ଆସେ । ଆମ୍ଭେମାନେ ସେହିଠାରେ ବିଭିନ୍ନ କାଗଜ ପଢ଼ିବାର ସୁବିଧା ପାଉ ।

ସୁରେନ୍ଦ୍ର ନାଥ ଦ୍ୱିବେଦୀ କଂଗ୍ରେସ - ସମାଜବାଦୀ ଦଳ ଓ କୃଷକ ସଭା ସହିତ ସଂପୃକ୍ତ ଥାଆନ୍ତି । ବୟାଳିଶ ଆନ୍ଦୋଳନରେ ସେ କିଛି କାଳ ଅଣ୍ଡର ଗ୍ରାଉଣ୍ଡରେ ରହି ଆନ୍ଦୋଳନ ଚଳାଇବାର ଦାୟିତ୍ୱରେ ଥିଲେ । ପରେ ଗିରଫ ହେଲେ । ଜେଲ୍‌ରୁ ଖଲାସ ହେବା ପରେ କଂଗ୍ରେସରୁ ଅଲଗା ହୋଇ

ପ୍ରଜା ସାମ୍ୟବାଦୀ ଦଳ ସହିତ ସାମିଲ ହେଲେ । ନିଶାମଣି ମଧ୍ୟ ପ୍ରଜା ସମାଜବାଦୀ ଦଳରେ ତାଙ୍କର ପଟ୍ଟଶିଷ୍ୟ ଭାବରେ କାମ କରୁଥାଏ । ସମାଜବାଦୀ ଦଳର ପ୍ରାର୍ଥୀ ଭାବରେ ସେ ବୋଧହୁଏ କଟକ ଜିଲ୍ଲାର ତିର୍ତ୍ତୋଲ ନିର୍ବାଚନ ମଣ୍ଡଳୀରୁ ତିନିଥର ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲା । ଏପରି ଜନପ୍ରିୟତା ଖୁବ୍ କମ ଲୋକ ହାସଲ କରିଛନ୍ତି । ଏପରି ସଫଳତା ଖୁବ କମ୍ ଲୋକଙ୍କ ଭାଗ୍ୟରେ ଘଟେ ।

ଅକାଳେ ସକାଳେ କେଉଁଠି ଦେଖାହେଲେ, ସେ ଯେଉଁ ସ୍ନେହ ସାନ୍ନିଧ୍ୟ ଦେଖାଏ, ତାହା ଭୁଲିବାର ନୁହେ । ଦୁର୍ଦ୍ଦିନ ଏକଲା ଆସେ ନାହିଁ । ପ୍ରଥମେ ତାର ସ୍ତ୍ରୀ ତାକୁ ଛାଡ଼ି ଚାଲିଗଲା । ତାର ପ୍ରାୟ ଦୁଇ ତିନି ବର୍ଷ ପରେ ଏକ ମୋଟର ଦୁର୍ଘଟଣାରେ ଆହତ ହୋଇ, ଦୀର୍ଘଦିନ ଅଚେତ ଅବସ୍ଥାରେ ରହିବା ପରେ, ବଂଧୁ ବାନ୍ଧବ ସମସ୍ତଙ୍କୁ ଶୋକ ସାଗରରେ ଭସାଇ ନିଶାମଣି ଚାଲି ଯାଇଛି । ରହିଛି କେବଳ ତାର ଅଲିଭା ସ୍ମୃତି ।

ପଣ୍ଡିତ ନୀଳକଂଠଙ୍କ ସାନପୁଅ ବିକ୍ରମ ଥିଲେ ମୋର ଅନ୍ୟତମ ସହପାଠୀ । ମୁଁ 'ଏ' ସେକ୍‌ସନ୍ ଓ ସେ 'ବି' ସେକ୍ସନରେ । ବିକ୍ରମ ଖଦଡ଼ ଲୁଗା ଓ ହାଫସାର୍ଟ ପିନ୍ଧି କ୍ଲାସକୁ ଆସନ୍ତି । ସ୍କୁଲ ହଷ୍ଟେଲରେ ଥାଆନ୍ତି । ୧୯୩୯ ମସିହା ମେଡ଼ିକାଲ ଛାତ୍ର ଧର୍ମଘଟରେ ସେ ଗିରଫ ହୋଇ ଜେଲକୁ ଗଲେ । ଚାରି ପାଂଚ ଦିନ ପରେ ଆମେ ସମସ୍ତେ ଖଲାସ ହେଲୁ । ସେତେବେଳକୁ ଆନ୍ଦୋଳନ ଶାନ୍ତ କରିବା ପାଇଁ ସ୍କୁଲ କଲେଜ ସବୁ ଆଗତୁରା ଛୁଟି ହୋଇଯାଇଥିଲା । ବିକ୍ରମ ହଠାତ୍ ଅସୁସ୍ଥ ହେଲେ । ଦୀର୍ଘଦିନ ଧରି ଅସୁସ୍ଥତା ଲାଗି ରହିଲା । ତାଙ୍କୁ ସେ ବର୍ଷ ପଢ଼ା ଛାଡ଼ିବାକୁ ହେଲା । ପର ବର୍ଷ ସେ ସତ୍ୟବାଦୀ ହାଇସ୍କୁଲରୁ ମାଟ୍ରିକ ପାସ୍ କଲେ । କଟକରେ ନବ ପ୍ରତିଷ୍ଠିତ ମେଡ଼ିକାଲ କଲେଜରୁ ପାସ କରି ଉଚ୍ଚଶିକ୍ଷା ପାଇଁ ଆମେରିକା ଗଲେ । ଡାକ୍ତର ବିକ୍ରମ ଦୀର୍ଘଦିନ ମେଡ଼ିକାଲ କଲେଜର ଅଧ୍ୟାପକ ରହିବା ପରେ ଚାକିରୀରୁ ଅବସର ନେଇ ଏବେ କଟକରେ ଅବସ୍ଥାନ କରୁଛନ୍ତି ଓ ଲେଖା ଲେଖିରେ ସମୟ କଟାଉଛନ୍ତି । ସେ ମୋର ପଡ଼ୋଶୀ ।

ସାଲେପୁର ଅଂଚଳର • ଦୁଇଜଣ ଛାତ୍ର ବଳରାମ ନନ୍ଦ ଓ ନିରଂଜନ ବଳ ଆମ ସହିତ ପଢୁଥାନ୍ତି । ନିରଂଜନ ରାମକୃଷ୍ଣ କଟେଜରେ ରହେ । ଆମେ ତିନି ଜଣ ଅନେକ ସମୟରେ ବୁଲି ଯାଉ । ଥରେ ଆମେ ଭୁବନେଶ୍ୱର ଖଣ୍ଡଗିରି ବୁଲିଗଲୁ । ସେଠାରୁ କୋଣାର୍କ ମଧ୍ୟ ଗଲୁ । ସେତେବେଳେ ଭୁବନେଶ୍ୱର

ନୂଆ ସହର ନ ଥାଏ । ଭୁବନେଶ୍ୱର ଯିବା ପାଇଁ ସବୁଦିନିଆ ରାସ୍ତା ମଧ୍ୟ ନ ଥାଏ । କାଠଯୋଡ଼ୀ ଓ କୂଆଖାଇ ପୋଲ ୧୯୫୦ ପରେ ନିର୍ମିତ ହୋଇଛି । ବଳରାମର ଆନ୍ଦୋଳନାତ୍ମକ ରାଜନୀତି ପ୍ରତି ଆଗ୍ରହ ନ ଥାଏ । କଂଗ୍ରେସ ବା ସମାଜବାଦୀ ଗୋଷ୍ଠି କାହା ସହିତ ସେ ସଂପର୍କ ରଖେ ନାହିଁ । କିନ୍ତୁ ବିଚ୍ଛିନ୍ନ ଉତ୍କଳର ଏକୀକରଣ ବିଷୟରେ ସେ ଥିଲା ଖୁବ୍ ଆଗ୍ରହୀ ଓ ତତ୍ପର । ଆମର ଉପର ଶ୍ରେଣୀରେ ପଢୁଥିବା ବୃନ୍ଦାବନ ସାହୁ, ବଳରାମ ଓ ଅନ୍ୟ କେତେକ ସହପାଠୀ ମିଶି ''ବିଚ୍ଛିନ୍ନ ଉତ୍କଳ ଅବକାଶ ବାହିନୀ'' ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ । ଖରାଛୁଟିରେ ଛାତ୍ରମାନଙ୍କୁ ବିଚ୍ଛିନ୍ନ ଅଂଚଳକୁ ପଠାଇବା, ସିଂହଭୂମି ଓ ଚାଇଁବସା ଆଦି ଅଂଚଳରେ ଓଡ଼ିଆ ଭାଷାର ପ୍ରସାର କରିବା, ଏହି ସଂସ୍ଥାର କାର୍ଯ୍ୟକ୍ରମ ଥିଲା । ''ଅବକାଶ ବାହିନୀ'' ଶୀର୍ଷକ ଏକ ସାମୟିକ ପତ୍ରିକା ସାଲେପୁରର ଚନ୍ଦ୍ରଶେଖର ମିଶ୍ରଙ୍କ ସଂପାଦନାରେ ଏମାନେ କିଛିଦିନ ପ୍ରକାଶ କରିଥିଲେ । ମୁଁ ଅବକାଶ ବାହିନୀ ସହିତ ସହଯୋଗ କରୁଥିଲି । କଲେଜିଏଟ୍ ସ୍କୁଲରେ ବାହିନୀ ପକ୍ଷରୁ ଆୟୋଜିତ ସଭାରେ ଥରେ ଅଧେ ବକ୍ତୃତା ଦେଇଥିବି । କିନ୍ତୁ ଏହି ଆନ୍ଦୋଳନର ଅନ୍ତିମ ସଫଳତା ସଂପର୍କରେ ମୁଁ ଘୋର ସନ୍ଦୀହାନ ଥିଲି । ବଳରାମ ମ୍ୟାଟ୍ରିକ୍ ପାସ କରିବା ପରେ କଲିକତାରେ ଚାକିରୀ କରୁଥାଏ । ସେଠାରେ ମଧ୍ୟ ଓଡ଼ିଆମାନଙ୍କୁ ସଂଗଠିତ କରିବା ପାଇଁ ସେ ଆପ୍ରାଣ ଉଦ୍ୟମ କରେ । ମାତ୍ର କିଛି ଦିନ ପରେ ରୋଗଗ୍ରସ୍ତ ହୋଇ ସେ ଚିର ବିଦାୟ ନେଲା ।

ନିରଂଜନ ବି.ଏ. ପାସ କରି ରାଜଭବନରେ ହେଡ୍ ଆସିଷ୍ଟାଣ୍ଟ ଥାଏ । ଆସଫ ଅଲି ସେତେବେଳେ ଓଡ଼ିଶାର ଗଭର୍ଣ୍ଣର । ତାଙ୍କର ପତ୍ନୀ ଅରୁଣା ଆସଫ. ଅଲି ଜଣେ ବିଚକ୍ଷଣ ବକ୍ତା ଓ ୪୨ ଅଗଷ୍ଟ ବିପ୍ଳବର ଅନ୍ୟତମ ପୁରୋଧା । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ତାଙ୍କର ରାଜନୈତିକ ମନୋଭାବ ଏକ ପ୍ରକାର ଦୋଦୁଲ୍ୟମାନ ଅବସ୍ଥାରେ ଥିଲା । ସେ ଧୀରେ ଧୀରେ ମାର୍କ୍ସବାଦ ଆଡ଼କୁ ଆକୃଷ୍ଟ ହେଉଥିଲେ । କଟକ ଆସିଲେ ସେ ରାଜଭବନରେ (ବର୍ତ୍ତମାନ କାଠଯୋଡ଼ୀ କୂଳ ଶିଶୁ-ଭବନ ହତା) ରହନ୍ତି ଓ ବାମପନ୍ଥୀ ସାହିତ୍ୟ ଖୋଜନ୍ତି । ନିରଂଜନ କେତେଥର ମୋ ଠାରୁ ମାର୍କ୍ସବାଦୀ ଦର୍ଶନ ଉପରେ ଲିଖିତ ବହି ନେଇ ତାଙ୍କୁ ଦେଇଥିବ । ଅଳ୍ପଦିନ ପରେ ନିରଂଜନର ଅକାଳ ମୃତ୍ୟୁ ହେଲା । ବହି ରାଜଭବନରୁ ଫେରିଲା ନାହିଁ ।

ବହୁବର୍ଷ ପରେ ଅରୁଣା ଆସଫ ଅଲ୍ଲୀଙ୍କ ସହିତ ଦିଲ୍ଲୀରେ ପରିଚୟ ହେଲା । ସେ ଦୈନିକ ପ୍ୟାଟ୍ରିଅଟ୍ କାଗଜର ପ୍ରକାଶକ ୟୁନାଇଟେଡ୍ ଇଣ୍ଡିଆ ପବ୍ଲିକେସନ୍ସର ଚେଆର ପର୍ସନ ଓ ଭାରତୀୟ ମହିଳା ଫେଡ଼େରେସନର ସଭାନେତ୍ରୀ ଥାଆନ୍ତି । ତାଙ୍କ ପ୍ରସ୍ତାବ ଅନୁସାରେ ଡାକ୍ତର ନିରୁପମା ରଥ ସେହିବର୍ଷ ମହିଳା ଫେଡ଼େରେସନର ସଭାନେତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ଉପଲକ୍ଷେ ମିସେସ୍ ଆସଫ ଅଲ୍ଲୀ ଆମ୍ଭମାନଙ୍କୁ ଦିଲ୍ଲୀ ଜନିଷ୍କ ହୋଟେଲକୁ ଚା'ପାନ ପାଇଁ ନିମନ୍ତ୍ରଣ କରିଥିଲେ । ଚା' ଟେବୁଲରେ ନାନା ଲଘୁ ଆଲୋଚନା ଓ ହସଖୁସି ଭିତରେ, ମୁଁ କଟକ ରାଜଭବନରୁ ଫେରି ନ ଥିବା ବହି କଥା ଉଲ୍ଲେଖ କଲି । ଅରୁଣା ମୃଦୁ ହସି ନିରୁପମାଙ୍କୁ କହିଲେ, ବହିତକ ତାଙ୍କ ତରଫରୁ ଖରିଦ୍ କରି ମତେ ଫେରାଇ ଦେବେ । ଟେବୁଲରେ ଉଚ୍ଚ ହାସ୍ୟରୋଳ ଉଠିଲା ।

ସ୍କୁଲ ଜୀବନର ଆଉ ଜଣେ ସାଥୀ ଶୈଳେନ ରାୟ । ଷ୍ଟୁଓ୍ୟାର୍ଟ ସ୍କୁଲ ଛାଡ଼ି ନବମ ଶ୍ରେଣୀରେ ଆମ ସାଙ୍ଗରେ ଯୋଗ ଦେଲେ । ସେ ଖୁବ ମିଳାପୀ ଓ ଜଣେ ଦକ୍ଷ ଖେଳଓ୍ୟାଡ଼ । ସବୁ ପ୍ରକାର ସାଧାରଣ କାର୍ଯ୍ୟରେ ସେ ଆଗଭର ହୋଇ ବାହାରନ୍ତି । ସ୍କୁଲ ଛାଡ଼ିବା ପରେ ସେ ସ୍ପୋର୍ଟସ କ୍ଷେତ୍ରରେ ମଧ୍ୟ ବେଶ୍ ସୁନାମ ଅର୍ଜନ କରିଅଛନ୍ତି । ବାରବାଟୀ ଷ୍ଟାଡ଼ିୟମ୍ ଓ ଓଡ଼ିଶା ଅଲିମ୍ପିକ୍ ଆସୋସିଏସନ ସହିତ ସେ ଘନିଷ୍ଠ ଭାବରେ ସଂପୃକ୍ତ ।

୧୯୩୮ ମସିହାରେ ଦୁଇ ଜଣ ନୂଆ ଛାତ୍ର ଆମ ଶ୍ରେଣୀରେ ଯୋଗ ଦେଲେ, ଯାମିନୀ ମୋହନ ଦାସ ଓ ଚିନ୍ତାମଣି ପାଣିଗ୍ରାହୀ । ଚିନ୍ତାମଣି କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ସଂପର୍କୀୟ ଓ ତାଙ୍କ ଗାଁର ଲୋକ । ସେ କଲେଜିଏଟ୍ ସ୍କୁଲ ହଷ୍ଟେଲରେ ରହୁଥାନ୍ତି । ସେ ଗମ୍ଭୀର ପ୍ରକୃତିର ଲୋକ । ପଢ଼ାପଢ଼ି ପ୍ରତି ସର୍ବାଧିକ ଧ୍ୟାନ ଦିଅନ୍ତି । ସ୍କୁଲର ସାଂସ୍କୃତିକ ପ୍ରତିଯୋଗିତା ଗୁଡ଼ିକରେ ଭାଗ ନିଅନ୍ତି । ମ୍ୟାଟ୍ରିକ ପାସ ପରେ ଆମେ ଦୁହେଁ ରେଭେନ୍ସା କଲେଜରେ ପଢ଼ିଲୁ । ପଶ୍ଚିମ ଛାତ୍ରାବାସରେ ଦୁଇଟି ପାଖାପାଖି ସିଂଗଲ୍ ରୁମ୍‌ରେ ଆମେ ରହୁ । ଅଗଷ୍ଟ ଆନ୍ଦୋଳନ ବେଳେ ସେ ପଢ଼ା ଛାଡ଼ି କଲିକତାରେ ଅଧ୍ୟୟନ କଲେ । କଲିକତାରୁ ଫେରି 'ପ୍ରଜାତନ୍ତ୍ର'ର ସଂପାଦକ ଓ ତାର କେତେ ବର୍ଷ ପରେ 'ମାତୃଭୂମି'ର ସଂପାଦକ ଭାବରେ ଯୋଗଦେଲେ । ୧୯୫୭ ସାଧାରଣ ନିର୍ବାଚନରେ ସେ କମ୍ୟୁନିଷ୍ଟ ସମର୍ଥିତ ସ୍ୱାଧୀନ ପ୍ରାର୍ଥୀ ଭାବରେ ପାର୍ଲିଆମେଣ୍ଟକୁ ନିର୍ବାଚିତ ହେଲେ । ପରେ କଂଗ୍ରେସ ଦଳରେ ଯୋଗ ଦେଇ ଓଡ଼ିଶାରୁ ଦୀର୍ଘତମ

ସମୟ ପାର୍ଲିଆମେଣ୍ଟ ସଦସ୍ୟ ରହି ଆସିଛନ୍ତି । ପଂଚମ ଥର ପାଇଁ ନିର୍ବାଚିତ ହୋଇଥିବା ସମୟରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ତାଙ୍କୁ ରାଷ୍ଟ୍ରମନ୍ତ୍ରୀ ରୂପେ ନିଯୁକ୍ତ କରିଥିଲେ । ବର୍ତ୍ତମାନ ସେ ମଣିପୁରର ଗଭର୍ଣ୍ଣର ଅଛନ୍ତି ।

ନବାଗତ ଛାତ୍ର ଯାମିନୀ ମୋହନ ଦାସ (ମିଟା) ସହଜରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ । ଭଲ ଛାତ୍ର ଭାବରେ ତାର ସୁଖ୍ୟାତି ଥାଏ । ତାର ମଧୁର ବ୍ୟବହାର ସମସ୍ତଙ୍କୁ ମୁଗ୍ଧ କରେ । କ୍ରମେ ମିଟା ସହିତ ବଂଧୁତା ହେଲା । ଆମେ ଅନେକ ସମୟରେ କ୍ଲାସରେ ଏକା ବେଂଚରେ ବସୁ । ଖେଳଛୁଟି ବେଳେ ଏକାଠି କଚେରୀ ଆଡ଼କୁ ବୁଲିଯାଉ । ଓକିଲମାନେ କିପରି ଜେରା ଜମାନବନ୍ଦୀ କରୁଛନ୍ତି ଓ କିପରି ଜବାବ ସୁଆଲ କରୁଛନ୍ତି, ଶୁଣିବାକୁ ମଜା ଲାଗେ । ପାଟନା ହାଇକୋର୍ଟ ଜଜ୍‌ମାନେ ସର୍କିଟରେ କଟକ ଆସିଲେ, ଜଜ କୋର୍ଟ କୋଠାରେ (ବର୍ତ୍ତମାନର ମୁଖ୍ୟ ହାଇକୋର୍ଟ ବିଲ୍ଡିଂ) କୋର୍ଟ କରନ୍ତି । ଅନେକ ସମୟରେ ହାଇକୋର୍ଟ ଜଜ୍‌ମାନଙ୍କୁ ଦେଖିବାକୁ ଆମେ ଜଜ୍‌କୋର୍ଟକୁ ମଧ୍ୟ ଯାଉ । ଦିନେ ଦିନେ ମୁଁ ତାଙ୍କ ଘରକୁ ଯାଏ । ଯାମିନୀର ମା' ନିର୍ମଳା ଦେବୀ (ସୁପ୍ରସିଦ୍ଧା ସାହିତ୍ୟିକା) ଅତି ସ୍ନେହୀ ମଣିଷ । ମତେ ମଧ୍ୟ ଖୁବ୍ ଆଦର କରନ୍ତି । ମୃତ୍ୟୁ ପର୍ଯ୍ୟନ୍ତ ମୋ ପ୍ରତି ତାଙ୍କର ସ୍ନେହ ଅତୁଟ ରହିଥିଲା । ଦିନକର ଘଟଣା ନ ଲେଖି ରହିପାରୁ ନାହିଁ । ସ୍କୁଲ ଛାଡ଼ିବାର ବହୁ ବର୍ଷ ପରେ ୧୯୭୬ ମସିହାର ଘଟଣା । ମୁଁ ସେତେବେଳେ ଆଡ୍‌ଭୋକେଟ୍ ଜେନେରାଲ ଥାଏ । ଥରେ ଯାଜପୁର ଏନ୍.ସି. କଲେଜର ବାର୍ଷିକ ଉତ୍ସବକୁ ମତେ ମୁଖ୍ୟ ଅତିଥି ରୂପେ ନିମନ୍ତ୍ରଣ କରାଯାଇଥାଏ । ସଂଧ୍ୟା ଛ'ଟା ବେଳେ କଲେଜ ଅଫିସରେ ପହଂଚି ଦେଖେ, ନିର୍ମଳା ଦେବୀ ମତେ ଅପେକ୍ଷା କରିଛନ୍ତି । ସ୍ନେହରେ ଆଲିଙ୍ଗନ କରି କହିଲେ, ସେ ମୋ ବକ୍ତୃତା ଶୁଣିବାକୁ ଆସିଛନ୍ତି । ଗର୍ବ ଓ ଆନନ୍ଦରେ ମୋ ଆଖିରେ ଲୁହ ଆସିଲା । ସଭା ଶେଷ ପର୍ଯ୍ୟନ୍ତ ସେ ଅପେକ୍ଷା କରି ରହିଲେ । କଲେଜଠାରୁ ତାଙ୍କ ଘର ପ୍ରାୟ ମାଇଲିଏ ଦୂର । ଫେରିଲାବେଳେ ମୁଁ ତାଙ୍କୁ ଘରେ ଛାଡ଼ି ଦେଇ ଆସିଲି । ସେ ସ୍ନେହମୟୀ ମା' ଆଉ ନାହାନ୍ତି । ପରିଣତ ବୟସରେ ୧୯୮୭ ମସିହାରେ ସେ ଇହଲୋକରୁ ବିଦାୟ ନେଇଛନ୍ତି ।

ଯାମିନୀ ସହିତ ବଂଧୁତାର ଅନ୍ୟ ଏକ ଦିଗ ଥିଲା । ସେ ଅବଶ୍ୟ କୌଣସି ରାଜନୈତିକ ଦଳ ସହିତ ସଂପୃକ୍ତ ନ ଥାଏ । କିନ୍ତୁ ସେ ସଚ୍ଚା ଦେଶପ୍ରେମୀ । ସବୁ ପ୍ରକାର ଅଗ୍ରଗାମୀ ଚିନ୍ତାଧାରା ଓ ବାମପନ୍ଥୀ ଆନ୍ଦୋଳନ

ପ୍ରତି ସେ ଥିଲା ସହାନୁଭୂତିଶୀଳ । ଏହି ସମୟରେ ଛାତ୍ର ଆନ୍ଦୋଳନରେ ମାତି ମୁଁ ପଢ଼ାପଢ଼ି ପ୍ରତି ବିଶେଷ ଧ୍ୟାନ ଦିଏ ନାହିଁ । ସେ କେତେଥର ମତେ ଆଙ୍କଟ କରିଥିବ । ପରେ ମ୍ୟାଟ୍ରିକ୍ୟୁଲେସନ ପରୀକ୍ଷାରେ ଆମେ ଦୁହେଁ ପ୍ରଥମ ଡିଭିଜନରେ ପାସ କଲୁ । ସେ ପ୍ରଥମ ସ୍ଥାନ ଅଧିକାର କରିଥିଲା, ମୁଁ ଦ୍ୱିତୀୟ । କିନ୍ତୁ ଆମ ଦୁହିଁଙ୍କ ମଧ୍ୟରେ ମାର୍କର ବ୍ୟବଧାନ ଥିଲା ଦୁଇ ନମ୍ବର । ଆମେ ଦୁହେଁ ସ୍କଲାରସିପ୍ ପାଇଲୁ ।

୧୯୪୦ ମସିହାରେ ରେଭେନ୍ସା କଲେଜରେ ସେ ବିଜ୍ଞାନ ଛାତ୍ର ଓ ମୁଁ କଳା ଛାତ୍ର । ଉଭୟ ରହିଲୁ ପଶ୍ଚିମ ଛାତ୍ରାବାସରେ । ଆମର ବଂଧୁତା ଆହୁରି ଦୃଢ଼ତର ହେଲା । ବୟାଳିଶ ଆନ୍ଦୋଳନ ବେଳେ ମୁଁ କଲେଜ ଛାଡ଼ିଥିଲି । ମିଟାର ବଡ଼ ଭାଇ ବିଧୁଭୂଷଣ ଦାସ (ପରେ ଇଂରାଜୀ ଅଧ୍ୟାପକ ଓ ଶିକ୍ଷା ବିଭାଗର ନିର୍ଦ୍ଦେଶକ) ସେତେବେଳେ ପାଟନାରେ ଏମ୍.ଏ. ପଢୁଥିଲେ । ମିଟା ମଧ୍ୟ ପାଟନା ପଢ଼ିବାକୁ ଗଲା । କିନ୍ତୁ ଅଗଷ୍ଟ ଆନ୍ଦୋଳନରେ ପାଟନା କଲେଜରେ ଜଳାପୋଡ଼ା ହେଲା, ବହୁ ଛାତ୍ର ଗିରଫ ହେଲେ, କଲେଜ ବିଶ୍ୱବିଦ୍ୟାଳୟ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ ରହିଲା । ମିଟା ପାଟନା ଛାଡ଼ି କଟକ ଫେରିଲା - ଗୋଟିଏ ବର୍ଷ ତାର ନଷ୍ଟ ହେଲା ।

ଯାମିନୀ ପରେ ରେଭେନ୍ସା କଲେଜରୁ ବି.ଏସ୍.ସି ଓ ମାଡ୍ରାସର ଗିଣ୍ଡି ଇଂଜିନିଅରିଂ କଲେଜରୁ ପାସ୍ କରି ସରକାରୀ ଚାକିରୀରେ ଯୋଗଦେଲା । ଚାକିରୀ ଜୀବନରେ ସେ ଏଠୁ ସେଠୁ ସ୍ଥାନାନ୍ତରିତ ହେଲା । କେତେଦିନ ବୁର୍ଲା ଓ ତା ପରେ ଦିଲ୍ଲୀରେ ମଧ୍ୟ ଅବସ୍ଥାପିତ ହେଲା । ମୁଁ ମଧ୍ୟ ଏଣେ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ ଓ ପରେ ଆଡ୍‌ଭୋକେଟ୍ ଜେନେରାଲ ଦାୟିତ୍ୱରେ ମଜି ରହିଲି । ସାକ୍ଷାତ ଓ ସାନ୍ନିଧ୍ୟର ସୁଯୋଗ ସଂକୀର୍ଣ୍ଣ ହୋଇଗଲେ ମଧ୍ୟ ପୂର୍ବ ଦିନର ବଂଧୁତା ଅକ୍ଷୁଣ୍ଣ ରହିଛି । ଇଲେକ୍‌ଟ୍ରିକାଲ ଚିଫ୍ ଇଂଜିନିଅର ପଦରୁ ଅବସର ନେଇ ସେ ବର୍ତ୍ତମାନ ଭୁବନେଶ୍ୱରରେ ରହୁଛି । ଯାମିନୀ ଅବିବାହିତ । ଭାଇ ଭଉଣୀ ସାଂଗ ସାଥୀ, ସମସ୍ତେ ଥାଇ ମଧ୍ୟ ସେ ଏକାକୀ ଜୀବନ କଟାଏ । ସଂସାର ପ୍ରତି ସେ ଉଦାସୀନ । କିନ୍ତୁ ତା ପରି ଭଲ ମଣିଷ କ୍ୱଚିତ୍ ମିଳନ୍ତି ।

ସହପାଠୀ ଶୈଳେନ ମହାପାତ୍ର 'ବି' ସେକସନର ଛାତ୍ର । ପାଟନାରୁ ଫେରି ଯେଉଁ କେତେଜଣ ଓଡ଼ିଆ କର୍ମଚାରୀ କଟକରେ ଚାକିରୀ କଲେ, ଶୈଳେନ୍‌ର ଦାଦା ବିଷ୍ଣୁ ବାବୁ ସେମାନଙ୍କ ମଧ୍ୟରେ ଜଣେ । ଯେତେଦୂର ମନେ ଅଛି, ୧୯୩୮ ମସିହାରେ ଶୈଳେନ କଲେଜିଏଟ୍ ସ୍କୁଲରେ ନାମ

ଲେଖାଇଲା । ଅଳ୍ପ କେତେଦିନ ମଧ୍ୟରେ ସବୁ ଆନ୍ଦୋଳନାତ୍ମକ କାର୍ଯ୍ୟରେ ସେ ଆମ ସହିତ ସହଯୋଗ କଲା । ଛାତ୍ରସଂଘର ଗୋଟିଏ ଶାଖା କଲେଜିଏଟ୍ ସ୍କୁଲରେ ଥାଏ । ତା ବ୍ୟତୀତ ଗୋଟିଏ ଛାତ୍ର ୟୁନିଅନ ମଧ୍ୟ ପ୍ରତିଷ୍ଠା କରାହେଲା । ଛାତ୍ର ଫେଡ଼େରେସନ ସହିତ ସଂପୃକ୍ତ ନ ଥିବା ବହୁ ଛାତ୍ର ମଧ୍ୟ ୟୁନିଅନରେ ଯୋଗଦେଲେ । ମୁଁ ଥିଲି ୟୁନିଅନର ସଭାପତି ଓ ଶୈଲେନ୍ ତାର ସଂପାଦକ । ଚାଳିଶ ମସିହାରେ ଆମେ ଦୁହେଁ ଏକତ୍ର ରେଭେନ୍ସା କଲେଜରେ ନାମ ଲେଖାଇଲୁ । ମୁଁ ରହୁଥିଲି ପଶ୍ଚିମ ଛାତ୍ରାବାସରେ ଓ ସେ ଘରୁ ଯିବା ଆସିବା କରୁଥିଲା । କିନ୍ତୁ ପ୍ରତିଦିନ ଆମର ଦେଖା ସାକ୍ଷାତ ନ ହେଲେ ମନ ଶାନ୍ତ ହୁଏ ନାହିଁ ।

୧୯୪୨ ଅଗଷ୍ଟ ଆନ୍ଦୋଳନରେ ଗିରଫ ହୋଇ ସେ ଦୁଇବର୍ଷ ବ୍ରହ୍ମପୁର ଜେଲରେ ଅଟକ ରହିଲା । ୧୯୪୩ ସେପ୍ଟେମ୍ବର ମାସରେ ଖବର ମିଳିଲା, ଶୈଲେନ୍ ଅତ୍ୟନ୍ତ ଅସୁସ୍ଥ ହୋଇଛି । ସରଳା ଦେବୀ ଏମ୍.ଏଲ.ଏଙ୍କୁ ଅନୁରୋଧ କରି ଆମ୍ଭେମାନେ ଆସେମ୍ବ୍ଲିରେ ଶୈଲେନ୍‌ର ଅସୁସ୍ଥତା ସଂପର୍କରେ ଗୋଟିଏ ମୁଲତବୀ ପ୍ରସ୍ତାବ ଆଗତ କରାଇଲୁ । କିନ୍ତୁ ଏ ପ୍ରସ୍ତାବ ନିଷ୍ଫଳ ହେଲା । ସରକାର ତାକୁ ଖଲାସ କଲେ ନାହିଁ । ବୟାଳିଶ ମସିହା ପରେ ସଚ୍ଚି ରାଉତରାୟ କଲିକତା କେଶୋରାମ କଟନ୍ ମିଲରେ ଚାକିରୀ କରୁଥାନ୍ତି । ହଠାତ୍ ତାଙ୍କ ସହିତ କଟକରେ ଦେଖାହେଲା । ମୁଁ ତାଙ୍କୁ ଆମେ ରହୁଥିବା ମେହେନ୍ଦୀପୁର ବସାଘରକୁ ଲଂଚ ଖାଇବା ପାଇଁ ନିମନ୍ତ୍ରଣ କଲି । ଖାଇ ବସିବା ପୂର୍ବରୁ କଥା ପ୍ରସଂଗରେ ଶୈଲେନ୍‌ର ଅସୁସ୍ଥତା ସଂପର୍କରେ ଚର୍ଚ୍ଚା ହେଲା । ରାଉତରାୟ ଖଣ୍ଡେ କାଗଜ ମାଗି ନେଇ ସେଇଠି ଶୈଲେନ୍‌ର ପୀଡ଼ା ସମ୍ବାଦ ଉପରେ ଗୋଟିଏ କବିତା ଲେଖିବାକୁ ଆରମ୍ଭ କଲେ । ଭାତ ବଢ଼ା ହେବା ପରେ କବିତା ଲେଖା ଶେଷ ହେଲା । କବିତାଟି ମୁକ୍ତିଯୁଦ୍ଧ କାଗଜରେ ଛପା ହୋଇଥିଲା । କବିତାଟି ଏଠାରେ ଉଦ୍ଧାର କରୁଛି:

''ଶୈଲେନ୍

ହସି ଉଠେ କଳା ରାତି, କୃଷ୍ଣ ମେଘ ଛିଣେ ଅହିଫେନ ।
ଭୟ ନାହିଁ ରକ୍ତ ତାରା ! ସକାଳର ରାଜଧାନୀ ଠାରୁ
ଆସିଅଛି ଆଜି ଦୂତ, ଆଣିଅଛି ବାର୍ତ୍ତା ଅତି ଚାରୁ
ସୈନିକର ନାହିଁ ପରାଜୟ
ରାତ୍ରିର ଶିବିରେ ସେ ଯେ ହାଣିଯାଏ ଅସୀମ ବିସ୍ମୟ ।

ବନ୍ଧୁ ଜନ୍ମ ମୃତ୍ୟୁ ତେଇଁ ପୂର୍ଣ୍ଣ ହୁଏ ତାର ପରିଚୟ ।

ରକ୍ତସାଥୀ

କ୍ଷୁବ୍ଧ ମୁଗ୍ଧ ଜନତାର ହେ ତରୁଣ ସବୁଜ ସାରଥି !
ଦୃଢ଼ କର ଶିଥିଳ ପିନାକ,
ଟଂକାରେ ତା ଜାଗି ଉଠୁ ନଷ୍ଟ ପକ୍ଷ ନିରୀହ ମୈନାକ ।
ପୂର୍ବ ମେଘେ ଜମେ ଝଡ଼, ଭାସି ଆସେ ଦୈତ୍ୟର ନିଃଶ୍ୱାସ
ନିଭାଏ ପ୍ରଦୀପ ତାହା, ସୀମା ଲଂଘେ ଧରଣୀର ତ୍ରାସ ।
ଜାଗ ରକ୍ତ ସ୍ୱାତି
ଏ ଆଦିମ ଅନ୍ଧକାର କଂଠେ ବାଜୁ ନୂତନ ପ୍ରଭାତୀ
ତେବେ ଯାଇ ତୁଟିବ ପ୍ରାଚୀର,
ଖସିବ ଶୃଙ୍ଖଳ ପଦୁ, ଶ୍ଳଥ ଅଶ୍ୱ ହେବ ଯେ ବର୍ଗୀର ।

ରକ୍ତ ତାରା ! ଘେନ ନମସ୍କାର
କାରାର ପ୍ରାଚୀର ଗୃହେ ଗଢୁଅଛ ସୃଷ୍ଟିର ମିନାର ।

ଜେଲରୁ ଖଲାସ ହେବା ପରେ ଶୈଳେନ୍ ଓ ମୁଁ ପୁଣି କଲେଜରେ ନାମ ଲେଖାଇଲୁ । ମୁଁ ବିଦ୍ୟାଧ୍ୟାୟୀ ସଂଘର ସଂପାଦକ ଓ ସେ ଯୁଗ୍ମ ସଂପାଦକ ନିର୍ବାଚିତ ହେଲା । ବି.ଏ. ପାସ୍ କରିବା ପରେ ଭଦ୍ରଖ ଅଂଚଳରେ ଆତ୍ମଗୋପନ କରିଥିବା ସମୟରେ ସେ ଗିରଫ ହେଲା । ସ୍ୱାଧୀନତା ପରେ ପ୍ରଥମ ସାଧାରଣ ନିର୍ବାଚନରେ ସେ ସୋରୋ ନିର୍ବାଚନ ମଣ୍ଡଳୀରୁ ନନ୍ଦ କିଶୋର ଦାସଙ୍କ ବିରୁଦ୍ଧରେ ପ୍ରତିଦ୍ୱନ୍ଦିତା କରିଥିଲା । ତାର ପରାଜୟ ଅବଶ୍ୟମ୍ଭାବୀ ବୋଲି ଆମେ ସମସ୍ତେ ଜାଣିଥିଲୁ । କିନ୍ତୁ ତାର ଆତ୍ମବିଶ୍ୱାସ ଥିଲା ପ୍ରବଳ ଏବଂ ଶେଷ ପର୍ଯ୍ୟନ୍ତ ସେ କହୁଥିଲା, ସେ ନିଶ୍ଚୟ ଜିତୁଛି ।

୧୯୫୭ର ସାଧାରଣ ନିର୍ବାଚନରେ କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠତା ହାସଲ କରି ପାରିଲେ ନାହିଁ । କିନ୍ତୁ କମ୍ୟୁନିଷ୍ଟ ସଦସ୍ୟ ଓ କେତେକ ଆଦିବାସୀ ସଭ୍ୟଙ୍କ ସମର୍ଥନରେ କଂଗ୍ରେସ ସରକାର ଗଢ଼ିଲେ । ଶୈଳେନ ସେହି ସମୟରେ କମ୍ୟୁନିଷ୍ଟ ଦଳରୁ ନିର୍ବାଚିତ ସଦସ୍ୟ ମାନଙ୍କର ସଂଯୋଜକ ଭାବରେ ଭୁବନେଶ୍ୱରରେ ଅବସ୍ଥାପିତ ହେଲା । ଏହି ପ୍ରକ୍ରିୟାର ଫଳ ସ୍ୱରୂପ ୧୯୬୧ ମସିହା ବେଳକୁ ଶୈଳେନ୍ କାର୍ଯ୍ୟତଃ କଂଗ୍ରେସ ମନ୍ତ୍ରୀ ଓ ପରେ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କର ଅନ୍ତରଂଗ ସହଯୋଗୀ ଭାବରେ କାର୍ଯ୍ୟ କରିବାକୁ ଆରମ୍ଭ କଲା । କିଛି ବର୍ଷ ପରେ ବୀରେନ୍ ମିତ୍ର କ୍ଷମତାରୁ ବହିର୍ଭୂତ ହେଲେ ଓ "ଜନଶକ୍ତି" ନାମକ

ଦୈନିକ ସଂବାଦପତ୍ର ପ୍ରତିଷ୍ଠା କଲେ । ଶୈଲେନ୍ ହେଲା ଜନଶକ୍ତିର ସହ-ସଂପାଦକ । ପ୍ରାୟ ଦୁଇ ବର୍ଷ ପରେ ଜନଶକ୍ତି ଅର୍ଥାଭାବରୁ ଅଚଳ ହେବାକୁ ଆରମ୍ଭ ହେଲା । ପୁରୁଣା ବଂଧୁମାନେ ଧୀରେ ଧୀରେ ଜନଶକ୍ତିରୁ ଓହରି ଗଲେ । କିନ୍ତୁ ଶୈଲେନ୍ ଥିଲା 'ଜନଶକ୍ତି'ର ଶେଷ ସଂପାଦକ ।

୧୯୭୨ ମସିହାରେ ନନ୍ଦିନୀ ଶତପଥୀ କେନ୍ଦ୍ର ମନ୍ତ୍ରୀ ପଦରୁ ବିଦାୟ ନେଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରନ୍ତି । ଶୈଲେନ୍ ଖୋଲାଖୋଲି କଂଗ୍ରେସ ଦଳରେ ଯୋଗଦିଏ । କିନ୍ତୁ ଏ ପ୍ରକାରର ରାଜନୈତିକ ପନ୍ଥ ପରିବର୍ତ୍ତନ ସତ୍ତ୍ୱେ, ଆମର ବ୍ୟକ୍ତିଗତ ବଂଧୁତା କୌଣସି ପ୍ରକାରେ କ୍ଷୁର୍ଣ୍ଣ ହୋଇନାହିଁ । ୧୯୭୪ ମସିହାରେ ସେ କଂଗ୍ରେସ ଟିକଟରେ ସିମୁଳିଆ ନିର୍ବାଚନ ମଣ୍ଡଳୀରୁ ନୀଳମଣି ରାଉତରାୟଙ୍କ ବିରୁଦ୍ଧରେ ପ୍ରତିଦ୍ୱନ୍ଦିତା କଲା । ରେଡ଼ିଓ ପ୍ରସାରିତ ସ୍ଥାନୀୟ ସଂବାଦରୁ ଶୁଣିଥିଲି, ଭୋଟ ଗଣତିରେ ଶୈଲେନ ଆଗୁଆ ଅଛି । ସଂଧ୍ୟାବେଳେ ଅଫିସ ଟେବୁଲ ଉପରେ ଗୋଟିଏ ପୋର୍ଟେବଲ ରେଡ଼ିଓ ରଖି ନିର୍ବାଚନ ସମ୍ବାଦକୁ ଅପେକ୍ଷା କରିଚି, ହଠାତ୍ ଶୈଲେନ୍ ଆସି ପହଂଚିଲା । ଗୋରା ଚେହେରା କଳା ପଡ଼ି ଯାଇଛି, ସେ ଦିଶୁଛି ଅତ୍ୟନ୍ତ ରୁଗ୍ଣ । ସେ କିଛି କହିବା ପୂର୍ବରୁ ଆକାଶବାଣୀର ବାର୍ତ୍ତାଘୋଷକ କହି ଚାଲିଲେ ''ସିମୁଳିଆରୁ ନୀଳମଣି ରାଉତରାୟଙ୍କୁ ପରାସ୍ତ କରି କଂଗ୍ରେସ ପ୍ରାର୍ଥୀ ଶୈଳେନ ମହାପାତ୍ର ନିର୍ବାଚିତ ହୋଇଛନ୍ତି ।'' ମୁଁ ଆନନ୍ଦରେ ତାକୁ ଜାବୋଡ଼ି ଧରିଲି । ସେ କହିଲା ''ମୁଁ ସିଧା ଭଦ୍ରଖରୁ ଆସୁଛି । ଭୁବନେଶ୍ୱର ଯିବାକୁ ଟ୍ୟାକ୍ସି ଭଡ଼ା ମଧ୍ୟ ନାହିଁ । ତୁ କିଛି ଟଙ୍କା ଦେ ।'' ମୁଁ କିଛି ପ୍ରଶ୍ନ ନ କରି ତା ପକେଟରେ ହଜାରେ ଟଙ୍କା ଗୁଞ୍ଜିଦେଲି ।

ପରେ ସେ କଂଗ୍ରେସ ଦଳର ଡେପୁଟୀ ଚିଫ୍ ହୁଇପ ମନୋନୀତ ହୋଇଥିଲା । ତାର କାର୍ଯ୍ୟଦକ୍ଷତା ଓ ମଧୁର ବ୍ୟବହାରରେ ସେ ସମସ୍ତଙ୍କୁ ଆପଣାର କରି ପାରିଥିଲା । କିନ୍ତୁ ସେ ବେଶି ଦିନ ରହିଲା ନାହିଁ । ଅଠାବନ ବର୍ଷରେ, ସାମାନ୍ୟ ଅସୁସ୍ଥତା ପରେ ସେ ସମସ୍ତଙ୍କ ଠାରୁ ସବୁଦିନ ପାଇଁ ବିଦାୟ ନେଇଛି । ଛାଡ଼ିଯାଇଛି ଶହ ଶହ ବଂଧୁ, ସୁଯୋଗ୍ୟା ପତ୍ନୀ, ଅବସର ପ୍ରାପ୍ତ ପ୍ରଧାନ ଶିକ୍ଷୟିତ୍ରୀ ସୁରମା ମହାପାତ୍ର ଓ ମନମୋହନ, ନୀରଦ ଏବଂ ସଂପଦଙ୍କ ପରି ଦାୟାଦ, ଯେଉଁମାନେ ସ୍ୱ ସ୍ୱ କ୍ଷେତ୍ରରେ ଅସାମାନ୍ୟ ପରାକାଷ୍ଠା ପ୍ରଦର୍ଶନ କରୁଛନ୍ତି ।

ଆଉ ଦୁଇ ଜଣ ସ୍କୁଲ ସାଥୀଙ୍କ କଥା ନ ଲେଖିଲେ, ଏ କାହାଣୀ ଅସମାପ୍ତ ରହିବ । ସେ ଦୁହେଁ ମାରୁଆଡ଼ୀ ସଂପ୍ରଦାୟର । କହ୍ନେୟାଲାଲ ମୋଦୀ କଟକ ଷ୍ଟେୱାର୍ଟ ସ୍କୁଲରୁ ଆସି ଆମ ସହିତ ଯୋଗଦେଲା । ସେ ପ୍ରସିଦ୍ଧ ବ୍ୟବସାୟୀ ରଙ୍ଗଲାଲ ମୋଦୀଙ୍କ ସାନ ପୁଅ । ରଂଗଲାଲ ବାବୁ ସେ ସମୟରେ ବ୍ୟବସାୟୀ ଗୋଷ୍ଠୀର ପ୍ରତିନିଧି ଭାବରେ ବିଧାନ ସଭାର ସଦସ୍ୟ । କହ୍ନେୟାଲାଲ୍ ସାହେବୀ ଠାଣିରେ ଇଂରାଜୀ କହେ ଓ ଫେସନେବଲ୍ ପୋଷାକ ପିନ୍ଧେ । କିଛି ବର୍ଷ ଆଗେ ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇ ତାର ଦେହାନ୍ତ ହୋଇଅଛି । ତାର ତିନୋଟି ଯାକ ପୁଅ ବ୍ୟବସାୟରେ ଆଗୁଆ ।

କଟକର ପ୍ରତିଷ୍ଠିତ ବ୍ୟବସାୟୀ ଗଜାନନ୍ଦ ଅଗ୍ରବାଲା ଅଷ୍ଟମ ଶ୍ରେଣୀରୁ ମୋର ସହପାଠୀ । ଆମେ ତାକୁ ଗଜାନନ୍ ବୋଲି ଡାକୁ । ତା'ର ବାପା ଜୋହରୀମଲ୍ଲ ସେ ସମୟରେ ଜଣେ ମଧ୍ୟମ ଧରଣର ବ୍ୟବସାୟୀ । ବାଂକା ବଜାରରେ ସେମାନେ ରହୁଥାନ୍ତି । ସେଠି ତାଙ୍କର କପଡ଼ା ବ୍ୟବସାୟ ଥାଏ । ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ଗଜାନନ ବିବାହିତ ଓ ଗୋଟିଏ ପୁତ୍ର ସନ୍ତାନର ପିତା । ସମୟେ ସମୟରେ ଆମେ ସେ ଛୋଟ ପୁଅଟିକୁ ଦେଖିବାକୁ ଯାଉ । ସେ ଶିଶୁ ଅବଶ୍ୟ ବେଶି ଦିନ ରହିଲା ନାହିଁ । କିନ୍ତୁ ଗଜାନନ ଏବେ ବହୁ ସନ୍ତାନର ପିତା । ଗଜାନନ ସହିତ ସେହି ଦିନୁ ମୋର ଅତି ସଦ୍‌ଭାବ । ସେ ମେଧାବୀ ଛାତ୍ର । ଫାଷ୍ଟ ଡିଭିଜନରେ ଆମ ସହିତ ମ୍ୟାଟ୍ରିକ ପାସ୍ କରି ରେଭେନ୍ସା କଲେଜରେ ପଢ଼ିଲା । ସେତେବେଳକୁ ତା ବାପାଙ୍କ ବ୍ୟବସାୟ ଖୁବ୍ ଆଗେଇ ଗଲାଣି । ଜୋହରୀମଲ୍ଲଜୀଙ୍କର ସେ ଏକମାତ୍ର ପୁତ୍ର । ଆଇ.ଏ. ପାସ କରିବା ପରେ ଗଜାନନ ବାପାଙ୍କ ବ୍ୟବସାୟରେ ଯୋଗଦେଲା । ଏଣେ ଯୁଦ୍ଧ ବଜାର । ପାଠଶାଠ ପଢ଼ି ଆଧୁନିକ ବ୍ୟବସାୟ ଚଳାଇବା ପାଇଁ ସେ ଯଥେଷ୍ଟ ଯୋଗ୍ୟତା ହାସଲ କରିଥାଏ । ଜଲ୍‌ଦି ଜଲ୍‌ଦି ତାର ବ୍ୟବସାୟର ଉନ୍ନତି ହେଲା । ଦିନେ କଥା ପ୍ରସଂଗରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଓ ବିହାର ଏବଂ ମଧ୍ୟ ପ୍ରଦେଶରେ ତାର କେଉଁଠି କ'ଣ ଶିଳ୍ପ ଓ ବ୍ୟବସାୟ କେନ୍ଦ୍ର ଅଛି, ତାର ଗୋଟିଏ ତାଲିକା ଦେଉଥିଲା । ଆଶ୍ଚର୍ଯ୍ୟ ହେଲି ଯେ ଜଣେ ସାଧାରଣ ବ୍ୟବସାୟୀରୁ "ଜୋହରୀମଲ୍ଲ ଗଜାନନ" ଏତେ ଉନ୍ନତି କରି ପାରିଛନ୍ତି । ଓଡ଼ିଶାରେ ମାରୁଆଡ଼ୀ ସଂପ୍ରଦାୟର ସେ ବୋଧହୁଏ ଏକମାତ୍ର ଲୋକ, ଯେ କି ନିଜ ବ୍ୟବସାୟର ଲାଭରୁ କିଛି ଅଂଶ ବହୁ ସତ୍ କାର୍ଯ୍ୟରେ ବିନିଯୋଗ କରେ । କଟକର ନୟାସଡ଼କରେ ତାର ବ୍ୟକ୍ତିଗତ ଉଦ୍ୟମରେ

''ଜୋହରୀମଲ୍ଲ ସେବା ସଦନ'' ନାମରେ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠିତ ହୋଇଅଛି । ମା'ଙ୍କ ନାମରେ ସେ ଗୋଟିଏ ଉଚ୍ଚ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରିଛି । କିଛି ବର୍ଷ ଆଗେ, ଶହୀଦ୍ ଭବନରେ ଅନୁଷ୍ଠିତ ଏହି ବିଦ୍ୟାଳୟର ବାର୍ଷିକ ଉତ୍ସବକୁ ମୁଁ ସଭାପତି ଓ ସମାଜର ରାଧାନାଥ ବାବୁ ମୁଖ୍ୟ ଅତିଥି ରୂପେ ନିମନ୍ତ୍ରିତ ହୋଇଥିଲୁ । ନୟାସଡ଼କରେ ପ୍ରତିଷ୍ଠିତ ''ଇମର୍ତୀ ଦେବୀ ଉଇମେନ୍ସ କଲେଜ'' ଗଜାନନ ଅଗ୍ରବାଲାଙ୍କର ନୂତନ କୀର୍ତ୍ତି ।

ଏବେ ଦିନେ ଆମ ଘରେ ବସି ''ଅଳକା ମହାବିଦ୍ୟାଳୟ'' ଓ ''ଇମର୍ତୀ ଦେବୀ ମହିଳା କଲେଜ'' ବିଷୟରେ ନିଜ ଅଭିଜ୍ଞତାର ଆଦାନ ପ୍ରଦାନ କରୁଥିଲୁ । ଘରୋଇ ଉଦ୍ୟମରେ ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନ ଗୁଡ଼ିକ ସରକାରୀ ନିୟମ ଫଳରେ କିପରି ଭାଙ୍ଗି ପଡୁଛି, ସେ ବିଷୟରେ ଆଲୋଚନା ହେଲା । ଅନ୍ୟ କେହି ସ୍ୱୀକାର କରୁ ବା ନ କରୁ, ଯେଉଁ ସମାଜ ଆମକୁ ଶିକ୍ଷା ଦୀକ୍ଷା ଦେଇ ମଣିଷ ହେବାରେ ସାହାଯ୍ୟ କରିଛି, ସେହି ସମାଜରେ ଶିକ୍ଷା ପ୍ରସାର ପାଇଁ ଆମେ ଯେ ଯତ୍‌କିଂଚିତ୍ ଉଦ୍ୟମ କରିଛୁ, ସେଇଥିରେ ହିଁ ଥିଲା ଆମର ଆନନ୍ଦ ଓ ଆତ୍ମସନ୍ତୋଷ ।



# ସମାଜବାଦର ଆକର୍ଷଣ

ଓଡ଼ିଶାରେ ସାମ୍ୟବାଦୀ ଚିନ୍ତାଧାରାର ମୁଖ୍ୟ ପ୍ରବର୍ତ୍ତକ ଥିଲେ ନବକୃଷ୍ଣ ଚୌଧୁରୀ । ମୋହନ ଦାସ ଓ ପ୍ରାଣନାଥ ପଟ୍ଟନାୟକ ଥିଲେ ତାଙ୍କର ସହଯାତ୍ରୀ । ଏ ତିନିଜଣ ଥିଲେ ବିଧାନ ସଭାର ସଦସ୍ୟ । ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ ଓ ଗୁରୁଚରଣ ପଟ୍ଟନାୟକ ପ୍ରମୁଖ ଏମାନଙ୍କର ସହଯାତ୍ରୀ ଥିଲେ ମଧ୍ୟ, ଏହି ଯୁବ ନେତାମାନେ ଥିଲେ କମ୍ୟୁନିଷ୍ଟବାଦର ସମର୍ଥକ । କମ୍ୟୁନିଷ୍ଟ ଦଳ ବ୍ରିଟିଶ ସରକାରଙ୍କ ଦ୍ୱାରା ବେଆଇନ ଘୋଷିତ ହୋଇଥାଏ । ଏଣୁ ବାହାରକୁ ଏମାନେ କଂଗ୍ରେସ-ସମାଜବାଦୀ ଦଳର ସଭ୍ୟ, କିନ୍ତୁ ଅନ୍ତରାଳରେ କମ୍ୟୁନିଷ୍ଟ ମତବାଦର ପ୍ରଚାର କରିବା ଏବଂ କମ୍ୟୁନିଷ୍ଟ ଗୋଷ୍ଠୀକୁ ସୁସଂଗଠିତ କରିବା ଥିଲା ଏମାନଙ୍କର ମୁଖ୍ୟ କାର୍ଯ୍ୟ ।

ଛାତ୍ର ଫେଡ଼େରେସନ ଥିଲା ବିଭିନ୍ନ ମତବାଦୀ ଛାତ୍ରମାନଙ୍କର ସମ୍ମିଳିତ ସଂଗଠନ । କଂଗ୍ରେସ, ନବ ପ୍ରତିଷ୍ଠିତ କଂଗ୍ରେସ ସମାଜବାଦୀ ଦଳ ଓ ସମାଜବାଦୀ ଦଳ ମଧ୍ୟରେ ଗୋଟିଏ ସୁସଂଗଠିତ ଗୋଷ୍ଠି ଭାବରେ କାର୍ଯ୍ୟ କରୁଥିବା କମ୍ୟୁନିଷ୍ଟ ଛାତ୍ରମାନେ ଫେଡ଼େରେସନର ସଭ୍ୟ ଥାନ୍ତି । କବି ଅନନ୍ତ ପଟ୍ଟନାୟକ ଓ ବୈଦ୍ୟନାଥ ରଥଙ୍କ ପରି ଯେଉଁମାନେ ଛାତ୍ର ଆନ୍ଦୋଳନ ସହିତ ସଂପୃକ୍ତ ଥାଆନ୍ତି, ସେମାନେ ଆନ୍ଦୋଳନର ଆଗୁଆ ଓ ଟାଣୁଆ କର୍ମୀମାନଙ୍କୁ ମାର୍କ୍ସବାଦରେ ଦୀକ୍ଷିତ କରିବା ପାଇଁ ସୁସଂଗଠିତ ଉଦ୍ୟମ କରୁଥାନ୍ତି । ଏହି ପ୍ରକ୍ରିୟାରେ ବହୁ ଅଗ୍ରଗାମୀ ଯୁବକ କମ୍ୟୁନିଷ୍ଟ ଦ୍ଳ ପ୍ରତି ଆସକ୍ତ ହେଲେ ଓ ଅନେକେ ଦଳର ସଭ୍ୟ ନ ହେଲେ ମଧ୍ୟ, କମ୍ୟୁନିଷ୍ଟ ମତବାଦର ସମର୍ଥକ ଓ ପୃଷ୍ଠପୋଷକ ହେଲେ ।

୧୮୪୮ ମସିହାରେ କାର୍ଲମାର୍କ୍ସ 'କମ୍ୟୁନିଷ୍ଟ ମାନିଫେଷ୍ଟୋ'ର ପ୍ରଥମ ଧାଡ଼ିରେ ଲେଖିଥିଲେ, କମ୍ୟୁନିଜମର ଭୂତ ଇୟୁରୋପକୁ ଗ୍ରାସ କରିଛି । କିନ୍ତୁ ତାର ସତୁରୀ ବର୍ଷ ପରେ କମ୍ୟୁନିଜମ୍ ପୋଥି ବିଦ୍ୟାରେ ଆବଦ୍ଧ ନ ଥିଲା । ୧୯୧୭ ମସିହାର ଅକ୍ଟୋବର ବିପ୍ଳବ ପରେ ରୁଷିଆରେ କମ୍ୟୁନିଷ୍ଟ ରାଷ୍ଟ୍ର ପ୍ରତିଷ୍ଠିତ ହୋଇଥିଲା। ପ୍ରଥମ ମହାଯୁଦ୍ଧ ସମୟରେ ରୁଷିଆର ଅବସ୍ଥା ଥିଲା ଅନେକ ପଛୁଆ । ଜାର ବା ରାଜା ଥିଲେ ରୁଷ ସାମ୍ରାଜ୍ୟର ସର୍ବ କ୍ଷମତାଶାଳୀ ସମ୍ରାଟ । ଦେଶ ଶାସିତ ହେଉଥିଲା, ଅତ୍ୟାଚାରୀ ଜାର ଓ ତାଙ୍କ ଅନୁଗୃହୀତ ବଡ଼ ବଡ଼ ଜମିଦାର ଓ ପୁଂଜିପତିଙ୍କ ଦ୍ୱାରା। ଏହି ନିପୀଡ଼ନ ବିରୁଦ୍ଧରେ

ରୁଷିଆର ଶ୍ରମିକ ଶ୍ରେଣୀ ବିଦ୍ରୋହର ନିଶାଣ ଉଠାଇଲେ । ଜାରସାହୀ ଧ୍ୱଂସ ହେଲା ଏବଂ ଲେନିନ୍‌ଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠିତ ହେଲା ।

ରୁଷ ବିପ୍ଳବର ଏହି ରୋମାଂଚକର କାହାଣୀ ମୋ ପରି ତରୁଣମାନଙ୍କ ମନକୁ ବିଶେଷ ଅନୁପ୍ରାଣିତ କରୁଥାଏ । ସମାଜରୁ ସବୁ ପ୍ରକାର ବୈଷମ୍ୟ ଦୂର ହେବ, ଦେଶରେ ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠିତ ହେବ, ଧନିକର ଶୋଷଣ ଓ ସବଳର ଅତ୍ୟାଚରର ବିଲୟ ଘଟିବ, ଦେଶ ନୂଆ ଢାଞ୍ଚାରେ ଗଢ଼ା ହେବ- ଏହି ପ୍ରକାରର ଚିନ୍ତାଧାରା ଯୁବ ପ୍ରାଣକୁ ଆଲୋଡ଼ିତ କରୁଥାଏ । କେବଳ ପରାଧୀନତାରୁ ମୁକ୍ତ ହେଲେ ଯଥେଷ୍ଟ ହେବ ନାହିଁ; ସ୍ୱାଧୀନ ଭାରତରେ ସମାଜବାଦ ପ୍ରତିଷ୍ଠିତ ହେଲେ ଜନସାଧାରଣ ଉପକୃତ ହେବେ, ଜବାହାରଲାଲ ନେହରୁଙ୍କ ଲେଖା ଓ ବକ୍ତୃତାରେ ଏହି ଭାବଧାରା ବିଶେଷ ଭାବରେ ପ୍ରତିଫଳିତ ହେଉଥାଏ । ଏଣୁ କମ୍ୟୁନିଷ୍ଟ ଦଳର ସଦସ୍ୟ ନ ଥାଇ ମଧ୍ୟ ବହୁ ଚିନ୍ତାଶୀଳ, ଭାବୁକ ଓ ବୁଦ୍ଧିଜୀବୀ କମ୍ୟୁନିଜିମ ଓ କମ୍ୟୁନିଷ୍ଟ ରାଷ୍ଟ୍ର ପ୍ରତି ସହାନୁଭୂତିଶୀଳ ମନୋଭାବ ପୋଷଣ କରୁଥାନ୍ତି । ଅଠତିରିଶ ମସିହା ଆରମ୍ଭରେ ମୁଁ ମଧ୍ୟ କମ୍ୟୁନିଷ୍ଟ ମତବାଦ ପ୍ରତି ଆକୃଷ୍ଟ ହେଲି । ସେତେବେଳେ ମୁଁ ଦଶମ ଶ୍ରେଣୀର ଛାତ୍ର ।

ଏହି ସମୟରେ ଫାସିବାଦର କରାଳ ଛାୟା ପୃଥିବୀବ୍ୟାପୀ ଆତଙ୍କ ସୃଷ୍ଟି କରିଥାଏ । ହିଟଲର ଜର୍ମାନୀରେ ଏକଛତ୍ର କ୍ଷମତା ହାସଲ କରିଥାନ୍ତି । ପ୍ରଥମ ମହାଯୁଦ୍ଧରେ ଜର୍ମାନୀର ପରାଜୟ ପାଇଁ ହିଟଲର୍ କମ୍ୟୁନିଷ୍ଟ ଓ ଜିଉ (ଇହୁଦୀ) ମାନଙ୍କୁ ଦାୟୀ କରି ବିଷୋଦ୍ଗାର କରୁଥାନ୍ତି । ୧୯୩୨ ମସିହା ନିର୍ବାଚନରେ କମ୍ୟୁନିଷ୍ଟମାନେ ନାଜୀଦଳଠାରୁ ଯଥେଷ୍ଟ ଅଧିକ ଭୋଟ ପାଇଥିଲେ ମଧ୍ୟ, ବର୍ଷକ ପରେ ହିଟଲର ହତ୍ୟା ଓ ଷଡ଼ଯନ୍ତ୍ରର ବିଭୀଷିକା ମଧ୍ୟରେ କ୍ଷମତା ଦାଖଲ କଲେ ଏବଂ ଅଷ୍ଟ୍ରିଆ ଓ ଚେକୋସ୍ଲୋଭାକିଆର କେତେକ ଅଂଶ ଦଖଲ କରିବାକୁ ପ୍ରୟାସ କଲେ । ହଜାର ହଜାର କମ୍ୟୁନିଷ୍ଟ ଓ ଇହୁଦୀଙ୍କ ରକ୍ତରେ ନାଜୀମାନଙ୍କର ହୋଲି ଖେଳ ଆରମ୍ଭ ହେଲା । ହିଟଲର ଓ ତାଙ୍କର ଫାସିବାଦ ବିରୁଦ୍ଧରେ ଦୁନିଆ ବ୍ୟାପୀ ବିକ୍ଷୋଭର ସୂତ୍ରପାତ ହେଲା । ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏତ୍ ରୁଷ ଥିଲା ଏହି ଫାସିଷ୍ଟ-ବିରୋଧୀ ଆନ୍ଦୋଳନର ମୁଖ୍ୟ ପୁରୋଧା । ଆଇନଷ୍ଟାଇନଙ୍କ ପରି ବହୁ ବିଖ୍ୟାତ ବୈଜ୍ଞାନିକ, ଦାର୍ଶନିକ, କବି ଓ ସାହିତ୍ୟିକ ଜର୍ମାନୀ ଛାଡ଼ି ବିଦେଶକୁ ପଳାୟନ କଲେ । ସ୍ୱାଧୀନତା ଓ ମାନବିକ ଅଧିକାର ଉପରେ

ଏହି ମର୍ମାନ୍ତିକ ପଦାଘାତ ବିରୁଦ୍ଧରେ ବିଶ୍ୱର ଅଗ୍ରଗାମୀ ସାହିତ୍ୟିକମାନେ କଲମ ଉତ୍ତୋଳନ କଲେ । ଓଡ଼ିଆ କବି ସଚ୍ଚି ରାଉତରାୟ 'ସହକାର' ପତ୍ରିକାରେ ପ୍ରକାଶିତ 'ହିଟ୍‌ଲର' ଶୀର୍ଷକ କବିତାରେ ଲେଖିଥିଲେ :

''ରାଇନ କୂଳର ପାଇନ ବନରେ ଶୁଭେ ଝଂଙ୍କାର ହାସ
ଗର୍ଭିଣୀ ରାତି କୂଳେ କୂଳେ ଆଜି ନଗ୍ନ ପ୍ରେତର ରାସ ।
ଲକ୍ଷ ବେକାର କପାଳରେ ଆଜି ସ୍ୱସ୍ତିକ ଟୀକା ଲେଖି
ନାତ୍ସିର ନିଶାଣ ନିଜ କଂକାଳ-ସ୍ତମ୍ଭରେ ରଖେ ଟେକି ।
ଇହୁଦୀ ରକ୍ତେ ରାଇନ୍‌ର ଜଳ ରାତି ପରି ଦିଶେ କଳା
ସାମ୍ୟବାଦୀର ସୌମ୍ୟ ଶୋଣିତେ ଜର୍ମାନ ମାଟି ଢଳା ।
ଲକ୍ଷ ଜୀବର ଚର୍ମ ଉପରେ ଜୋତାର ଗୋଇଠି ରଖି
ମଣିଷର ମୁଖା ପିନ୍ଧି ପିଶାଚ ଡେଣା ପିଟେ ଯଥା ପକ୍ଷୀ ।
ଝଡ଼ର ବାହିନୀ ପଥେ ପଥେ ଆଜି ରଚଇ ତା ପଟୁଆର
ମଣିଷର ରୂପେ ଆସିଛି ଦୈତ୍ୟ ଧରାତଳେ ହିଟ୍‌ଲର'' ।

ଛାତ୍ରନେତା ସଚ୍ଚି ରାଉତରାୟଙ୍କ ବିପ୍ଳବାତ୍ମକ କବିତା ମୋର ତରୁଣ ମନରେ ବର୍ଣ୍ଣନାତୀତ ଆଲୋଡ଼ନ ସୃଷ୍ଟି କରିଥିଲା । ସହସ୍ର ବକ୍ତୃତାଠାରୁ ଏହି କବିତାର ପ୍ରଭାବ ଥିଲା ଅଧିକ ମର୍ମଭେଦୀ । ରାଉତରାୟ କମ୍ୟୁନିଷ୍ଟ ଦଳର ବିଧିବଦ୍ଧ ସଦସ୍ୟ ନ ଥିଲେ । ତାଙ୍କ ନିଜ ଭାଷାରେ କାୟମନୋ ବାକ୍ୟରେ ସେ ଥିଲେ ସମାଜବାଦୀ ଓ ଏକ ପ୍ରକାର ନୈରାଜ୍ୟବାଦୀ । ୧୯୩୮ ମସିହାରେ ସାରସ୍ୱତ ପ୍ରେସ ଆନୁକୂଲ୍ୟରେ ପ୍ରକାଶିତ ଏକ କ୍ଷୁଦ୍ର କବିତା ସଂକଳନ 'ଅଭିଯାନ' ସେ ନବଯୁଗ ସାହିତ୍ୟ ସଂସଦର କମ୍ରେଡ୍‌ମାନଙ୍କୁ ଉତ୍ସର୍ଗ କରିଥିଲେ । କବିତା ଗୁଡ଼ିକର ଛତ୍ରେ ଛତ୍ରେ ଫୁଟିଥିଲା ଶୋଷଣ ଅତ୍ୟାଚାର ଓ ସାମାଜିକ ନିର୍ଯ୍ୟାତନା ବିରୁଦ୍ଧରେ ବିଦ୍ରୋହର ଅଗ୍ନି ସ୍ଫୁଲିଙ୍ଗ । ସେ ସମୟରେ ପ୍ରକାଶିତ ''ସର୍ବନାଶର ପଥେ'' କବିତାରେ ସେ ଲେଖିଥିଲେ:

''ଆମେ ତ ହେ ଭାଇ! ସର୍ବନାଶର ଯାତ୍ରୀ
ଆସିଅଛୁ ଆମେ ଅଗ୍ନିଦୃତ ପଥେ
ନିଭାଇବୁ ଆମେ ଫୁତ୍କାରେ ଅମାରାତ୍ରି
ପତାକା ଆମର ରଞ୍ଜିତ ନିଜ କ୍ଷତେ

ଆମେରେ ଛାଳିବୁ ପୁରାତନ ଶିରେ ନିଆଁ
ଧ୍ୱଂସ କରିବୁ ଅତୀତର ପ୍ରତିକ୍ରିୟା
ପ୍ରଗତିର ଆମେ ଋତ୍ୱିକ, ଏ ଦୁନିଆ
ମଂତ୍ରେ ଆମର ଜାଗ୍ରତ ହେବ ସତେ !"

ରାଉତରାୟଙ୍କ ସହିତ ପରିଚୟ ହେଲା ୧୯୩୭ ମସିହା ଅଗଷ୍ଟ ମାସରେ । ସେ କଲିକତାରୁ ଫେରି ରେଭେନ୍‌ସା କଲେଜ ବି.ଏ ଶ୍ରେଣୀରେ ନାମ ଲେଖାଇଥାନ୍ତି । ତାଙ୍କର କବିତା ଗୁଡ଼ିକ ନିୟମିତ ରୂପେ 'ସହକାର' ଓ ଅନ୍ୟାନ୍ୟ ପତ୍ର ପ୍ରତିକାରେ ପ୍ରକାଶିତ ହେଉଥାଏ । ମୁଁ ଥିଲି ତାଙ୍କ କବିତାର ଆଗ୍ରହୀ ପାଠକ । କ୍ରମେ ତାଙ୍କ ସହିତ ସାନ୍ନିଧ୍ୟ ବଢ଼ିଲା ।

ଛାତ୍ର ସମ୍ମିଳନୀ ଜରିଆରେ ଅନନ୍ତ ପଟ୍ଟନାୟକ ଓ ବିଶ୍ୱନାଥ ପଣାୟତଙ୍କ ସହିତ ପୂର୍ବରୁ ପରିଚୟ ହୋଇଥାଏ । ଛାତ୍ରାବସ୍ଥାରେ ମଧ୍ୟ ଅନନ୍ତ ପଟ୍ଟନାୟକଙ୍କର କବି ହିସାବରେ ଖ୍ୟାତି ଥାଏ । କବି ପରିବାରରେ ତାଙ୍କର ଜନ୍ମ । ତାଙ୍କର ଦାଦା ଚଣାହାଟାର କୃଷ୍ଣମୋହନ ପଟ୍ଟନାୟକ ଥିଲେ ବହୁ ଜାତୀୟ ସଂଗୀତର ରଚୟିତା । ନବକୃଷ୍ଣ ଚୌଧୁରୀଙ୍କର କାଠଯୋଡ଼ୀ କୂଳ ଘରେ ଅନେକଥର ଛାତ୍ରସଂଘର ବୈଠକ ବସେ ଏବଂ ସେହିଠାରେ ଅନନ୍ତ ପଟ୍ଟନାୟକଙ୍କ ସହିତ ସାକ୍ଷାତ ହୁଏ । ତାଙ୍କର କବିତା "ସର୍ବହରା" - ରଚନା କାଳ ମୋର ମନେ ନାହିଁ- ଅନେକବାର ଆମେମାନେ ସଭା ସମିତରେ ଗାନ କରିଅଛୁ । କବିତାର ପ୍ରଥମ କେତୋଟି ଲାଇନ୍ ଥିଲା :

"ଜୀବନ ଧରି ହେ ଢାଳିଲୁ ରକ୍ତ ତୋଳିଲୁ ସଉଧମାଳା
ଆମରି ଲାଗିରେ ଶାସନ ଶକ୍ତି ଆମେଇ ସର୍ବହରା ।
ଝାଞ୍ଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
ବରଷା କାଦୁଅ ଚକଟି କେତେରେ ଖିନ୍ନ କରିଲୁ ପ୍ରାଣ ।
ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସିଲେ ନିଖିଳବାସୀ
ଶକ୍ତିଶାଳୀର କରାଳ କବଳ ନେଲାରେ ସକଳ ଗ୍ରାସି ।"

ଛାତ୍ରନେତା ବୈଦ୍ୟନାଥ ରଥ (ଭବିଷ୍ୟତରେ ଏମ୍.ଏଲ୍.ଏ. ଓ ପାର୍ଲିଆମେଣ୍ଟ ସଦସ୍ୟ) ସେତେବେଳେ ଟ୍ରେନିଂ କଲେଜର ଛାତ୍ର । ମହତାବଙ୍କ ଅଗରପଡ଼ା ହାଇସ୍କୁଲ ହେଡ୍‌ମାଷ୍ଟର ପଦରୁ ଇସ୍ତଫା ଦେଇ ସେ ଟ୍ରେନିଂ କଲେଜରେ ଅଧ୍ୟୟନ କରୁଥାନ୍ତି । ସେତେବେଳେ କଲେଜିଏଟ ସ୍କୁଲ ପାଖ ବଡ଼ ଦୋ

ମହଲା କୋଠାରେ ଟ୍ରେନିଂ କଲେଜ ଚାଲୁଥାଏ । ବର୍ତ୍ତମାନ ଏହା ଜିଲା ଜଜ୍‌ଙ୍କ ଅଦାଲତ୍ ଭାବରେ ବ୍ୟବହୃତ ହେଉଛି । କଲେଜିଏଟ ସ୍କୁଲ ଛାତ୍ରମାନେ ଡ଼ିମୋନଷ୍ଟ୍ରେସନ କ୍ଲାସରେ ଯୋଗ ଦେବା ପାଇଁ ଟ୍ରେନିଂ କଲେଜକୁ ଯାଆନ୍ତି । ଏହି ସଂକ୍ରାନ୍ତରେ ବୈଦ୍ୟନାଥ ବାବୁଙ୍କ ସହ ପ୍ରଥମ ପରିଚୟ । କ୍ରମେ ତାଙ୍କ ସହିତ ସୌହାର୍ଦ୍ଦ୍ୟ ବଢ଼ିଲା ।

ମୋର ସମବୟସୀ ଦୁର୍ଗାଚରଣ ମହାନ୍ତି ଓ ରାମଚନ୍ଦ୍ର ମିଶ୍ର ଛାତ୍ରସଂଘର ଦୁଇଜଣ ଆଗୁଆ କର୍ମୀ । ଉଭୟ ଖୋର୍ଦ୍ଧା ହାଇସ୍କୁଲରୁ ପାସ କରି ରେଭେନ୍ସା କଲେଜରେ ପଢୁଥାନ୍ତି । ରାମ ଛାତ୍ର ଆନ୍ଦୋଳନରେ ଭାଗ ନେବା ହେତୁ ଖୋର୍ଦ୍ଧା ସ୍କୁଲରୁ ବିତାଡ଼ିତ ହୋଇଥିଲେ । ୧୯୮୩ ମସିହାରେ ସେ ଇହଜଗତରୁ ବିଦାୟ ନେଇଛନ୍ତି । ତାଙ୍କ ପରି ନିଷ୍ଠାପର କର୍ମଠ ଦେଶସେବୀ କ୍ୱଚିତ୍ ଦେଖିଛି । ତାଙ୍କର ମୃତ୍ୟୁରେ କମ୍ୟୁନିଷ୍ଟ ପାର୍ଟି ଗୋଟିଏ ଉଜ୍ଜ୍ୱଳ ରତ୍ନ ହରାଇଅଛି । ଦୁର୍ଗାଚରଣ ଓ ରାମ ଘନିଷ୍ଠ ବନ୍ଧୁ ଏବଂ ଉଭୟ ଥିଲେ କମ୍ୟୁନିଷ୍ଟ ମତବାଦର ଦୃଢ଼ ସମର୍ଥକ । ଦୁର୍ଗାଚରଣଙ୍କର ଭାଇମାନେ ସମସ୍ତେ ସୁପ୍ରତିଷ୍ଠିତ ସରକାରୀ କର୍ମଚାରୀ । କିନ୍ତୁ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ନିରାପତ୍ତାର ଆବରଣ ଛାଡ଼ି ସେ ସ୍ୱାଧୀନତା ଓ ସାମାଜିକ ଅଗ୍ରଗତି ପାଇଁ ସଂଘର୍ଷର ପଥ ବାଛି ନେଇଥିଲେ । କମ୍ୟୁନିଷ୍ଟ ଗୋଷ୍ଠି ପକ୍ଷରୁ ଦୁର୍ଗାଚରଣ ମୋ ସହିତ ନିରବଚ୍ଛିନ୍ନ ସଂପର୍କ ରଖୁଥିଲେ । ଚୋରାରେ ପ୍ରକାଶିତ ପ୍ରଚାରପତ୍ର ଆଦି ଯୋଗାଇବାରେ ସେ ଥିଲେ ସଂଯୋଜକ ।

ଏହି ସମୟରେ ମାର୍କ୍ସବାଦ ଉପରେ ସମ୍ୟକ୍ ଧାରଣା ଦେବା ପାଇଁ ପାଠଚକ୍ରର ଆୟୋଜନ କରାଯାଉଥିଲା । ସ୍ପେସିଆଲ ବ୍ରାଂଚ ପୋଲିସର ଦୃଷ୍ଟି ଅନ୍ତରାଳରେ ଏ ସବୁ ବୈଠକ ବସେ । କେତେଥର ଏ ଆଲୋଚନା ଚକ୍ର ଓଡ଼ିଆ ବଜାର, ଏବଂ ରାଣୀହାଟ କେନାଲ ତଳ ନାଇଡୁ କ୍ୱାଟରରେ କରାଯାଏ । କଲେଜ ସାମନା ନାଳକୂଳ ଜଙ୍ଗଲିଆ ଅଂଚଳ ଥିଲା ଓ ଲୋକବସତି ବିଶେଷ ନ ଥିଲା । ଭଗବତୀ ପାଣିଗ୍ରାହୀ ଓ ଗୁରୁଚରଣ ପଟ୍ଟନାୟକ ଏହି ପାଠଚକ୍ର ଆଲୋଚନାର ସଂଚାଳକ ଥିଲେ । ଦୁର୍ଗାଚରଣ, ରାମଚନ୍ଦ୍ର ମିଶ୍ର, ସତ୍ୟବାଦୀ ମିଶ୍ର, ଶୈଳେନ୍ ମହାପାତ୍ର, ମୁଁ ଓ ଆଉ କେତେକ ଏ ଆଲୋଚନାରେ ଯୋଗ ଦେଉ ।

ଭଗବତୀ ଚରଣ ପାଣିଗ୍ରାହୀ ମୋର ସଂପର୍କୀୟ ମାମୁ ପ୍ରତିଷ୍ଠିତ ସାହିତ୍ୟିକ କାଳିନ୍ଦି ଚରଣ ପାଣିଗ୍ରାହୀଙ୍କ ସାନ ଭାଇ । ସେ ପାଟନା ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏ. ପାସ କରି କଟକରେ ରହୁଥାନ୍ତି ଓ ନବଯୁଗ ସାହିତ୍ୟ

ସଂସଦର ମୁଖପତ୍ର ''ଆଧୁନିକ'' ସଂପାଦନା କରୁଥାଆନ୍ତି । ପରେ ଗୁରୁ ଚରଣ ପଟ୍ଟନାୟକଙ୍କ ସହିତ ସେ ସାପ୍ତାହିକ 'କୃଷକ'ର ସଂପାଦନା ଦାୟିତ୍ୱ ଗ୍ରହଣ କରିଥିଲେ । ଓଡ଼ିଶାରେ କମ୍ୟୁନିଷ୍ଟ ମତବାଦର ସଂପ୍ରସାରଣ କରିବାରେ ସେ ଥିଲେ ଅଗ୍ରଣୀ । କମ୍ୟୁନିଷ୍ଟ ପାର୍ଟି ଓଡ଼ିଶା ଶାଖାର ସେ ପ୍ରାଣ ପ୍ରତିଷ୍ଠାତା । ତାଙ୍କ ଲିଖିତ ''ଶିକାର'' ଗଳ୍ପ ମୁଁ ଏହି ସମୟରେ ପଢ଼ିଲି । ଅତ୍ୟାଚାର ଓ ଅନାଚାର ବିରୁଦ୍ଧରେ ଜଂଗଲୀ ଆଦିବାସୀ ଯୁବକ ମଧ୍ୟ ବିଦ୍ରୋହ କରେ, ଏହା ହିଁ ଗଳ୍ପର ସାର ମର୍ମ । ତାଙ୍କ ମୃତ୍ୟୁର ତିରିଶ ବର୍ଷ ପରେ, ଏହି ଗଳ୍ପର କଥାବସ୍ତୁ ଭିତିରେ କଲିକତାର ବିଶିଷ୍ଟ ନିର୍ଦ୍ଦେଶକ ମୃଣାଳ ସେନ୍ ''ମୃଗୟା'' ଫିଲ୍ମ ପ୍ରସ୍ତୁତ କରିଛନ୍ତି ଓ ସୁବିଖ୍ୟାତ ଅଭିନେତା ମିଥୁନ ଚକ୍ରବର୍ତ୍ତୀ ଏହି ଗଳ୍ପର ନାୟକ ଘିନୁଆ ଚରିତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି । ୧୯୪୦ ମସିହାରେ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମୋକଦ୍ଦମାରେ ଅଭିଯୁକ୍ତ ହୋଇ ସେ ଅନୁଗୁଳ ଜେଲରେ ଦେଢ଼ ବର୍ଷ ବଂଦୀ ହେଲେ ଓ ୧୯୪୩ ମସିହା ଅକ୍ଟୋବର ୨୩ ତାରିଖରେ ଡିସେଣ୍ଟ୍ରି ରୋଗରେ ଆକ୍ରାନ୍ତ ହୋଇ ଛତ୍ରିଶ ବର୍ଷ ବୟସରେ ଅକାଳରେ ଦେହ ତ୍ୟାଗ କଲେ । ଏହି ପ୍ରଖ୍ୟାତ ବିପ୍ଳବୀମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ଓ ଛାତ୍ର ଆନ୍ଦୋଳନର ଅଭିଜ୍ଞତା, କମ୍ୟୁନିଷ୍ଟ ଦଳ ପ୍ରତି ଆକୃଷ୍ଟ ହେବାରେ ମୋତେ ବହୁ ଭାବରେ ପ୍ରଭାବିତ କରିଥିଲା ।

ଗୋପନୀୟତା ତରୁଣ ମନରେ ରୋମାଂଚ ସୃଷ୍ଟି କରେ । ଏପରି ରୋମାଂଚକର ପରିସ୍ଥିତିର ଭାଗୀଦାର ହେବା ପାଇଁ ମୋତେ ବହୁ ସୁଯୋଗ ମିଳିଥିଲା । ପୋଲିସ ହାତରେ ଧରା ନ ପଡ଼ିବା ପାଇଁ ଲୁଚି ଲୁଚି ଏକାଠି ହେବା, ଗୋପନରେ ରାଜନୈତିକ ସମସ୍ୟା ଉପରେ ଆଲୋଚନା କରିବା, ତୋରାରେ ପ୍ରକାଶିତ ସାଇକ୍ଲୋଷ୍ଟାଇଲ କରା ବୁଲେଟିନ୍ ପଢ଼ିବା, କଲିକତା ବା ଅନ୍ୟ ଆଡୁ ଆସୁଥିବା ବିପ୍ଳବୀମାନଙ୍କ ସହିତ ଏକାନ୍ତରେ ମିଳିତ ହେବା ଏବଂ ପୋଲିସ ଦ୍ୱାରା ଧର୍ତବ୍ୟ ବୈପ୍ଳବିକ ସାହିତ୍ୟ ସାଥିମାନଙ୍କ ମଧ୍ୟରେ ସାବଧାନତା ସହ ପ୍ରଚାର କରିବା ଇତ୍ୟାଦି କାର୍ଯ୍ୟ ପ୍ରତି ମୋର ବିଶେଷ ଆଗ୍ରହ ଥାଏ । ବର୍ତ୍ତମାନ ଯୁଗର ପାଠକ ହୁଏ ତ ଏପରି କାର୍ଯ୍ୟର ଗୁରୁତ୍ୱ ଉପଲବ୍ଧି କରିପାରିବେ ନାହିଁ । କିନ୍ତୁ ସେତେବେଳେ ଭାରତ ଥିଲା ଏକ ପରାଧୀନ ଦେଶ ଓ ବ୍ରିଟିଶ ପୋଲିସ ବିପ୍ଳବୀମାନଙ୍କ ପଛରେ ତାହାଙ୍କ କୁକୁର ପରି ଲାଗି ରହିଥିଲେ ।

ସେ ସମୟରେ ମାର୍କ୍ସବାଦ ଉପରେ ଓଡ଼ିଆ ଭାଷାରେ କୌଣସି ପୁସ୍ତକ ନ ଥିଲା । ବଙ୍ଗଳା ଭାଷାରେ ପ୍ରକାଶିତ କେତେଖଣ୍ଡ ବହି ଆଣି ପଢ଼ିଲି । ରୁଷ ବିପ୍ଲବ ଉପରେ ବଂଗଳାରେ ଲିଖିତ କେତୋଟି ବହି ମଧ୍ୟ ପଢ଼ିଲି । ମାକ୍ସିମ୍ ଗୋର୍କୀଙ୍କ ଲିଖିତ 'ମଦର' ଉପନ୍ୟାସର ଇଂରେଜୀ ଅନୁବାଦ ପଢ଼ିବାର ସୁଯୋଗ ମିଳିଲା । ଜହରଲାଲ ନେହରୁଙ୍କ ଲିଖିତ ''ଗ୍ଲିଂପସେସ ଅଫ ଓ୍ୱାର୍ଲ୍ଡ ହିଷ୍ଟ୍ରି'' ଏହି ସମୟରେ ପ୍ରକାଶିତ ହେଲା । ଏ ବହିରେ ନେହରୁ ବିଶ୍ୱ ଇତିହାସର ଗତିଧାରା ଉପରେ ନୂତନ ଆଲୋକପାତ କରିଥିଲେ । ବହୁ ଐତିହାସିକ ତଥ୍ୟ ଗୁଡ଼ିକୁ ବୈଜ୍ଞାନିକ ଓ ସମାଜବାଦୀ ଦୃଷ୍ଟିକୋଣରୁ ଅତି ସାବଲୀଳ ଭାଷାରେ ଉପସ୍ଥାପିତ କରିଥିଲେ । ପୃଥିବୀର ଇତିହାସ କେବଳ ରାଜା ସମ୍ରାଟଙ୍କର ଜୀବନ କାହାଣୀ ନୁହେ, ଜନସାଧାରଙ୍କର ସାମାଜିକ ଓ ସାଂସ୍କୃତିକ ଜୟଯାତ୍ରା ଓ ରାଜନୈତିକ ସଂଗ୍ରାମର ଏହା ପ୍ରତିଛବି । ବହିଟି ପଢ଼ି ବିଶ୍ୱ ଇତିହାସ ସଂକ୍ରାନ୍ତରେ ବହୁ ପ୍ରତିଷ୍ଠିତ ବଦ୍ଧମୂଳ ଧାରଣା ଦୂର ହେଲା । ଦୃଷ୍ଟିକୋଣର ପରିବର୍ତ୍ତନ ହେଲେ, ଅତି ପୁରାତନ ଐତିହାସିକ ଘଟଣା କିପରି ନୂତନ ରୂପରେ ଆବିର୍ଭୂତ ହୁଏ, ଜହରଲାଲଙ୍କ ବହିଟି ପଢ଼ି ମୁଁ ସେ କଥା ବୁଝି ପାରିଲି । ଦୃଷ୍ଟିକୋଣର ଗୁରୁତ୍ୱ କେବଳ ଇତିହାସ ଅଧ୍ୟୟନ ପ୍ରତି ପ୍ରଯୁଜ୍ୟ ନୁହେ, କଳା ସାହିତ୍ୟ ଓ ସଂସ୍କୃତିର ଅନୁଶୀଳନରେ ମଧ୍ୟ ତାର ଗୁରୁତ୍ୱ ଅଛି । ନିଜ ଅଭିଜ୍ଞତାରୁ ଗୋଟିଏ ଘଟଣାର ଉଲ୍ଲେଖ କରୁଛି ।

୧୯୩୮ ଶେଷ ଆଡ଼କୁ ମୁଁ ସହପାଠୀ ସ୍ୱର୍ଗୀୟ ବଳରାମ ନନ୍ଦ ଓ ନିରଂଜନ ବଳଙ୍କ ସହିତ ଭୁବନେଶ୍ୱର ଓ ସେଠାରୁ କୋଣାର୍କ ବୁଲି ଯାଇଥିଲୁ । କୋଣାର୍କରେ ସକାଳେ ପହଂଚି ସଂଧ୍ୟାରେ ଫେରି ଆସିଲୁ । ସେଠାରେ ରହିବାର ସୁବିଧା ନ ଥିଲା । କିନ୍ତୁ କୋଣାର୍କରେ କଟାଇଥିବା କେତେକ ଘଣ୍ଟା ଥିଲା ଜୀବନର କେତୋଟି ଅଭୁଲା ମୁହୂର୍ତ୍ତ । ପାଷାଣ ଉପରେ ଚାରୁକଳାର ରମ୍ୟ ଅଭିନୟ ଆମ୍ଭମାନଙ୍କୁ ପାଗଳ କରି ଦେଇଥିଲା । କୋଣାର୍କରୁ ଫେରି ହଠାତ୍ ସହକାର ପତ୍ରିକାରେ ପ୍ରକାଶିତ ସଚ୍ଚି ରାଉତରାୟଙ୍କ 'କୋଣାର୍କ' କବିତା ନଜରରେ ପଡ଼ିଲା । ସେ ଲେଖିଥିଲେ :

''ତୁମେ ଦେଖିଅଛ ଶିଳାରେ ତାର ତ
ରମ୍ୟ କଳାର ରୂପ
ମୁଁ ଦେଖୁଛି ତହିଁ କୋଟି କଂକାଳ
ଭଗ୍ନ ବୁକୁର ସ୍ତୂପ ।

ତୁମେ ଦେଖିଅଛ ଫୁଟିଛି କିପରି
କଳାର କାଉଁରୀ ଲାଗି
ରାତ୍ରିର କଳା ଯବନିକା ପରେ
ସ୍ୱର୍ଣ୍ଣ ଉଷାର ଛବି ।

ମୂଲିଆର ଆଖି ନେଇ
ମୁଁ ଦେଖିଛି ସେହି ମଂଦିର ରୂପ
ବ୍ୟଥାର ଆରତି ଦେଇ
ମୁଁ ଦେଖିଛି ସେହି ଶିଳାର କବରେ
କେତେ କାରିଗର ଛାତି
ତିଳେ ତିଳେ ହାୟ ଲଭିଲା ସମାଧି
ସହିଲା କଷଣ ତାତି ।

ଦେଖିଲା ଜଗତ ବିରାଟ ଦେଉଳ
ଘୋଷିଲା ରାଜାର ଜୟ
ପଂଡ଼ିତ କହେ ଦେଶର କୁଆଡ଼େ
ଲେଖା ଏଠି ପରିଚୟ ।
କେ ରସିକ କହେ ସୁନ୍ଦରୀ ନଟୀ
ଈଳାୟିତ ନୀବୀ-ବଂଧ
ସ୍ୱତଃ ଶ୍ଳଥ ତାର କାଂଚୁଲି ତଳେ
ପଦ୍ମ କୋରକ ଛନ୍ଦ !
କିଏ ଦେଖେ ନାଗ କନ୍ୟାର ଗଳେ
ରତିଚ୍ୟୁତ ବନମାଳା
ଯକ୍ଷ ବଧୂର କବରୀରେ କିଏ
ଶତ ରାତ୍ରିର ଜ୍ୱାଳା
ଅନୁଭବେ ନିରନ୍ତର
ଜାଣିବାକୁ କିଏ ଲୋଡ଼ିଚ କି କେବେ
ଇତିହାସ ମଣିଷର ?''

କବିଙ୍କର ଦୃଷ୍ଟିକୋଣ ସହିତ ଜଣେ ଏକମତ ହୋଇ ନ ପାରେ । କିନ୍ତୁ ସ୍ୱୀକାର କରିବାକୁ ହେବ, କବିତାରେ ଥିଲା ଏକ ନୂତନ ଆଭିମୁଖ୍ୟର ନିଦର୍ଶନ । ଏହି ନୂତନ ଆଭିମୁଖ୍ୟର ସଂଧାନରେ ମୁଁ ଯାତ୍ରା ଆରମ୍ଭ କଲି ।

ବହୁ ପୁସ୍ତକାଳୟ ମୁଁ ଘୁରି ବୁଲିଲି । ସୋଭିଏତ୍ ରୁଷର ନୂତନ ସଭ୍ୟତା ଉପରେ ପ୍ରଖ୍ୟାତ ଫେବିଆନ ଲେଖକ ସିଡ୍ନି ଓ ବିଏଟ୍ରିସ ଓ୍ୱେବ୍ଙ୍କର ବିରାଟ ଗ୍ରନ୍ଥ ପଢ଼ିଲି । ଭାରତୀୟ ବଂଶୋଦ୍ଭବ ବ୍ରିଟିଶ କମ୍ୟୁନିଷ୍ଟ ନେତା ରଜନୀ ପାମି ଦତ୍ତଙ୍କର କେତେକ ଲେଖା ମଧ୍ୟ ପଢ଼ିଲି । ଇଂରାଜୀ ଭାଷାରେ ଲିଖିତ ଏ ସବୁ ବହି ପଢ଼ିବା ଓ ବୁଝିବାରେ ମୋର ସୀମିତ ଇଂରାଜୀ ଜ୍ଞାନ ପ୍ରତିବନ୍ଧକ ହେଉଥାଏ, କିନ୍ତୁ ଉଦ୍ୟମର ଅଭାବ ନ ଥାଏ । ୧୯୩୯ ମସିହାରେ କାର୍ଲମାର୍କ୍ସଙ୍କ ‘‘କମ୍ୟୁନିଷ୍ଟ ମାନିଫେଷ୍ଟୋ’’ର ଓଡ଼ିଆ ଅନୁବାଦ ପ୍ରକାଶିତ ହେଲା । ଅନୁବାଦ କରିଥିଲେ ଭଗବତୀ ବାବୁ । ପ୍ରାୟ ଶହେ ବର୍ଷ ପୂର୍ବେ ୧୮୪୮ ମସିହାର ଇୟୁରୋପୀୟ ପରିସ୍ଥିତି ଉପରେ ମାର୍କ୍ସ ଯେଉଁ ବିଶ୍ଳେଷଣ ଓ ନିର୍ଦ୍ଧାରଣମାନ ଦେଇଥିଲେ, ୧୯୩୯ ସାଲର ଭାରତୀୟ ପରିସ୍ଥିତିରେ ତାହା କେତେଦୂର ପ୍ରଯୁଜ୍ୟ, ତାର ଉତ୍ତର ମିଳିଲା ନାହିଁ । ବେଦ-କର୍ମକାଣ୍ଡ ପରି ତାହା ଅବୋଧ୍ୟ ରହିଗଲା ।

ଏହି ସମୟରେ ‘‘ନାସନାଲ ଫ୍ରଣ୍ଟ’’ ଶୀର୍ଷକ ଏକ ଇଂରାଜୀ ସାପ୍ତାହିକ ସୁବିଖ୍ୟାତ କମ୍ୟୁନିଷ୍ଟ ନେତା ଓ ସୁଲେଖକ ପି.ସି. ଯୋଶୀଙ୍କ ସଂପାଦନାରେ ବମ୍ବେରୁ ପ୍ରକାଶିତ ହେଉଥାଏ । ବସ୍ତୁତଃ ଏ ସାପ୍ତାହିକଟି ଥିଲା ବେଆଇନ ଘୋଷିତ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର । ଢେଙ୍କାନାଳ ଆନ୍ଦୋଳନ ସଂପର୍କରେ ନାସନାଲ ଫ୍ରଣ୍ଟରେ ପି.ସି. ଯୋଶୀଙ୍କର ଗୋଟିଏ ଲେଖା ପ୍ରକାଶିତ ହୋଇଥାଏ । ବି.ଟି. ରଣଦିବେ ଓ ଅଜୟ ଘୋଷ ଏଥିରେ ନିୟମିତ ଲେଖୁଥାଆନ୍ତି । ସୋଭିୟେଟ ୟୁନିଅନର ଅର୍ଥନୈତିକ ଅଗ୍ରଗତି ଓ ପରରାଷ୍ଟ୍ର-ନୀତି ସଂପର୍କରେ ‘‘ନାସନାଲ ଫ୍ରଣ୍ଟ’’ରେ ବହୁ ଆଲୋଚନା ପ୍ରକାଶ ପାଉଥାଏ । ଯୋଶୀ ମୋ ମନରେ ନୂତନ ଆଲୋକର ଦୀପ ଶିଖା ଜାଳି ଦେଇଥିଲେ ।



# କଲେଜିଏଟ୍‌ରୁ କଲେଜ

ଏକାଦଶ ଶ୍ରେଣୀରେ ପଢୁଥିବା ସମୟରେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୁଏ । ୧୯୩୯ ସେପ୍ଟେମ୍ବର ପହିଲାରେ ହିଟ୍‌ଲର୍ ପୋଲାଣ୍ଡ ଉପରେ ଆକ୍ରମଣ ଆରମ୍ଭ କଲା । ତା'ର ପ୍ରତିକ୍ରିୟା ସ୍ୱରୂପ ଇଂଲଣ୍ଡ ଓ ଫ୍ରାନ୍ସ ସେପ୍ଟେମ୍ବର ତିନି ତାରିଖରେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଭାରତର ବଡ଼ଲାଟ ଲର୍ଡ଼ ଲିନ୍‌ଲିଥିଗୋ ପ୍ରଦେଶମାନଙ୍କରେ ପ୍ରତିଷ୍ଠିତ ଲୋକ ପ୍ରତିନିଧିମୂଳକ ସରକାର ଗୁଡ଼ିକ ସହିତ ପରାମର୍ଶ ନ କରି, ଭାରତକୁ ଏ ଯୁଦ୍ଧରେ ଜଡ଼ିତ କରିଦେଲେ । କଂଗ୍ରେସ ଅବଶ୍ୟ ହିଟଲରୀ ଆକ୍ରମଣର ନିନ୍ଦା କରିଥିଲେ, କିନ୍ତୁ ବିନା ସର୍ତ୍ତରେ ବ୍ରିଟିଶ ସରକାରଙ୍କ ଯୁଦ୍ଧ ଉଦ୍ୟମରେ ସହଯୋଗ କରିବାକୁ କଂଗ୍ରେସ ପ୍ରସ୍ତୁତ ନଥିଲେ । କଂଗ୍ରେସ କାର୍ଯ୍ୟକାରୀ କମିଟିର ନିଷ୍ପତ୍ତି ଅନୁଯାୟୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ । ପ୍ରଦେଶ ଶାସନର ଦାୟିତ୍ୱ ରହିଲା ଗଭର୍ଣ୍ଣର ସାର ଜନ୍ ହବାକ୍‌ଙ୍କ ନିୟନ୍ତ୍ରଣରେ । ଯେଉଁ କେତେକ ସରକାରୀ କର୍ମଚାରୀ କଂଗ୍ରେସ ମନ୍ତ୍ରୀମଣ୍ଡଳ ଅଧୀନରେ ଦେଶପ୍ରୀତିର ଡିଣ୍ଡିମ ପିଟୁଥିଲେ ଏବେ ସେମାନେ ବ୍ରିଟିଶ ସରକାରଙ୍କ ଆଜ୍ଞାବହ ଭୃତ୍ୟ ଭାବରେ ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ନାନା ଅତ୍ୟାଚାର କରିବାକୁ ପଶ୍ଚାତ୍‌ପଦ ହେଲେ ନାହିଁ । କ୍ଷମତାର ଏହି ପୂଜକମାନଙ୍କ ମଧ୍ୟରେ ରେଭେନ୍ସା କଲେଜର ଅଧ୍ୟକ୍ଷ ଡକ୍ଟର ପରିଜା ଥିଲେ ଅନ୍ୟତମ ।

୧୯୪୦ ଫେବ୍ରୁଆରୀ ମାସରେ ଆମର ମ୍ୟାଟ୍ରିକ୍ୟୁଲେସନ୍ ପରୀକ୍ଷା ଆରମ୍ଭ ହୁଏ । ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟ ମ୍ୟାଟ୍ରିକ୍ ପରୀକ୍ଷା ପରିଚାଳନା କରୁଥାନ୍ତି । ପରୀକ୍ଷା ପ୍ରାୟ ପନ୍ଦର ଦିନ ଅଛି, ରେଭେନ୍ସା କଲେଜରେ ସଂଘର୍ଷର ସୂତ୍ରପାତ ହେଲା । ୧୯୪୦ ମସିହା ଜାନୁଆରୀ ୨୬ ତାରିଖ ଛାତ୍ର ଆନ୍ଦୋଳନ ଇତିହାସର ଏକ ଉଲ୍ଲେଖନୀୟ ଦିନ । ସ୍ୱାଧୀନତା ଦିବସ ଉପଲକ୍ଷେ କଲେଜ ଟେନିସ ପଡ଼ିଆରେ ସଭା କରିବା ଲାଗି ଛାତ୍ରସଂଘ ତରଫରୁ ନୀଳମଣି ରାଉତରାୟ (ଭବିଷ୍ୟତରେ ମୁଖ୍ୟମନ୍ତ୍ରୀ) ପ୍ରିନ୍ସିପାଲଙ୍କ ନିକଟରେ ଦରଖାସ୍ତ କଲେ । ପରିଜା ସାହେବ ଦରଖାସ୍ତ ଫେରାଇ ଦେଇ ସଭା କରିବା ପାଇଁ ମୌଖିକ ଅନୁମତି ଦେଲେ । ୨୬ ତାରିଖ ସକାଳ ଆଠଟାରେ ଟେନିସ୍ ପଡ଼ିଆରେ ବିରାଟ ଛାତ୍ରସଭା ହେଲା । ନୀଳମଣି ରାଉତରାୟ ସଭାପତି ଓ ବିବୁଧେନ୍ଦ୍ର ମିଶ୍ର ମୁଖ୍ୟବକ୍ତା । ପରୀକ୍ଷା ଆସନ୍ନ ଥିବା ସତ୍ତ୍ୱେ, ମୁଁ, ଶୈଳେନ ମହାପାତ୍ର ଓ

ଆଉ କେତେଜଣ ସଭାକୁ ଯାଇଥିଲୁ । ସଭାପତି ଓ ବକ୍ତା ସାମ୍ରାଜ୍ୟବାଦୀ ସରକାରଙ୍କ ଯୁଦ୍ଧ ଉଦ୍ୟମ ବିରୁଦ୍ଧରେ ଜ୍ୱାଳାମୟୀ ଭାଷଣ ଦେଲେ । ଟେନିସ ପଡ଼ିଆରେ ତ୍ରିରଂଗ ପତାକା ଉଡ଼ିଲା । ତାପରେ ଆରମ୍ଭ ହେଲା ଛାତ୍ର ନେତାମାନଙ୍କ ଉପରେ ସରକାରୀ ଆକ୍ରମଣ ।

ସ୍ୱାଧୀନତା ଦିବସ ପାଳନ ସଂକ୍ରାନ୍ତରେ ସରକାର ଓ ପୋଲିସ ପକ୍ଷରୁ ତନାଘନା ତଦନ୍ତ ଆରମ୍ଭ ହେଲା । ପଦସ୍ଥ ପୋଲିସ ଅଫିସରମାନେ ପ୍ରିନ୍ସିପାଲଙ୍କ କୋଠିକୁ ଆସି ମନ୍ତ୍ରଣା କରୁଥାନ୍ତି । ପ୍ରିନ୍ସିପାଲ ସଭା କରିବାକୁ ମୌଖିକ ଅନୁମତି ଦେଇଛନ୍ତି ବୋଲି ଅସ୍ୱୀକାର କଲେ । ବରଂ ତାଙ୍କ ବିନାନୁମତିରେ ସଭା ହୋଇଛି ବୋଲି ସେ ପୋଲିସ୍‌ରେ ଏତଲା ଦେଲେ । ନିଜ ଅଭିଯୋଗର ସତ୍ୟତା ପ୍ରମାଣ କରିବାକୁ ଯାଇ ସେ ରାଉତରାୟ ଓ ମିଶ୍ରଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କଲେ । ସେମାନଙ୍କୁ ପଚିଶ ଟଂକା ଲେଖାଁଏ ଜୋରିମାନା କରାଗଲା ଓ ପ୍ରିନ୍ସିପାଲଙ୍କ ନିକଟରେ ଲିଖିତ କ୍ଷମା ପ୍ରାର୍ଥନା ମାଗିବାକୁ ଆଦେଶ ହେଲା । କିଛିଦିନ ପରେ ପୁଣି ଆଦେଶ ଆସିଲା, ଯଦି ସେମାନେ ଜୋରିମାନା ନ ଦିଅନ୍ତି ଓ କ୍ଷମା ପ୍ରାର୍ଥନା ନ କରନ୍ତି, ତାହେଲେ ସେମାନଙ୍କୁ ବି.ଏ ପରୀକ୍ଷା ଦେବାରୁ ବଂଚିତ କରାଯିବ । ଏହି ଅନ୍ୟାୟ ଆଦେଶକୁ ମୁଣ୍ଡପାତି ସହି ନେବାର ପ୍ରଶ୍ନ ନଥିଲା । ପରିଜା ସାହେବଙ୍କର ଅହେତୁକ ସରକାର ପ୍ରୀତି ଓ ପୋଲିସ ସହିତ ସହଯୋଗ ବିରୁଦ୍ଧରେ ତୁମୁଳ ଆନ୍ଦୋଳନ ଆରମ୍ଭ ହେଲା । ରେଭେନ୍ସା କଲେଜରେ ପରୀକ୍ଷା ବର୍ଜନ ଆନ୍ଦୋଳନର ଏହା ହିଁ ଥିଲା ପୃଷ୍ଠଭୂମି ।

ମ୍ୟାଟ୍ରିକ ପରୀକ୍ଷାର ପ୍ରଥମ ଦିନ ପ୍ରଥମ ପରୀକ୍ଷା ପରେ ହଲ ବାହାରକୁ ଆସି ଶୁଣିଲୁ ପରୀକ୍ଷା ବର୍ଜନ ଆନ୍ଦୋଳନକୁ ଜବତ୍ କରିବା ପାଇଁ ପୋଲିସ୍ ରେଭେନ୍ସା କଲେଜର ଛାତ୍ରମାନଙ୍କ ଉପରେ ନିର୍ମମ ଲାଠି ପ୍ରହାର କରିଛି । କଲେଜ ୟୁନିଅନର ପ୍ରଥମ ନିର୍ବାଚିତ ସଭାପତି ମନମୋହନ ମିଶ୍ର ଲାଠିମାଡ଼ରେ ଆହତ ହୋଇଥିବାରୁ ତାଙ୍କୁ ଡାକ୍ତରଖାନାକୁ ନିଆଯାଇଛି । ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ରଘୁନାଥ ଦାସଙ୍କ (ପରେ ଆଡ୍‌ଭୋକେଟ୍ ଦାସ) ଛାତି ଉପରେ ଚଢ଼ି କେତେକ ସରକାରୀ କର୍ମଚାରୀଙ୍କ ସନ୍ତାନ ପରୀକ୍ଷା ହଲକୁ ଯାଇଛନ୍ତି, ଇତ୍ୟାଦି । ସ୍କୁଲମାନଙ୍କରେ ପରୀକ୍ଷା ବର୍ଜନ ପାଇଁ କୌଣସି ନିଷ୍ପତ୍ତି ନିଆହୋଇ ନଥିଲା । ତଥାପି ମୁଁ ଅତ୍ୟନ୍ତ ବିବ୍ରତ ହୋଇ ପଡ଼ିଲି । ଦ୍ୱିତୀୟାର୍ଦ୍ଧ ପରୀକ୍ଷାରେ ବିଚଳିତ ମନକୁ ଶାନ୍ତ କରିବା ପାଇଁ କିଛି ସମୟ ଲାଗିଲା । ଯାହାହେଉ ଏହି ଅଶାନ୍ତ

ପରିସ୍ଥିତିରେ ଚାରିଦିନ ପରେ ମ୍ୟାଟ୍ରିକ୍ ପରୀକ୍ଷା କୌଣସିମତେ ଶେଷ ହେଲା । ମଇ ମାସରେ ଫଳ ବାହାରିଲା । ମୁଁ ଫାଷ୍ଟ ଡିଭିଜନରେ ପାସ କରିଥିଲି ।

ଜାନୁଆରୀ ୨୬ ତାରିଖରେ ଆରମ୍ଭ ହୋଇଥିବା ଦମନଲୀଳା ଶେଷ ହେଲା ନାହିଁ । ପ୍ରିନ୍ସିପାଲଙ୍କ ଅଭିଯୋଗ କ୍ରମେ ପୋଲିସ ଯେଉଁ ଫୌଜଦାରୀ ମୋକଦ୍ଦମା ଆଗତ କରିଥିଲେ, କଟକର ଜଣେ ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ ତାର ବିଚାର ଆରମ୍ଭ ହେଲା । ଆସାମୀ ହେଲେ ନୀଳମଣି ରାଉତରାୟ, ବିବୁଧେନ୍ଦ୍ର ମିଶ୍ର, ମନମୋହନ ମିଶ୍ର, ସଚ୍ଚି ରାଉତରାୟ, ଦୁର୍ଗାଚରଣ ମହାନ୍ତି, ଗୋବିନ୍ଦ ଚନ୍ଦ୍ର ମହାନ୍ତି ଓ ଅନ୍ୟ କେତେଜଣ । ମୁଖ୍ୟ ସରକାରୀ ସାକ୍ଷୀ ପ୍ରିନ୍ସିପାଲ ପରିଜା । ମୁଦାଲା ପକ୍ଷର ଆଡ୍‌ଭୋକେଟ୍ ଶ୍ରୀ ରାଜକିଶୋର ଦାସ (ପରେ ବିଚାରପତି ଦାସ) ଓ ଆଡ୍‌ଭୋକେଟ୍ ଶ୍ରୀ ଦୀନବଂଧୁ ସାହୁ (ପରେ ଆଡ୍‌ଭୋକେଟ୍ ଜେନେରାଲ) ପରିଜା ସାହେବଙ୍କୁ ଦୁଇ ଦିନ ଧରି ଜେରା କରିଥିଲେ । ନୀଳମଣି ରାଉତରାୟ ତାଙ୍କୁ ସଭା କରିବା ପାଇଁ ଲିଖିତ ଦରଖାସ୍ତ ଦେଇଥିଲେ ଏବଂ ସେ ଦରଖାସ୍ତ ଫେରାଇ ଦେଇ କହିଲେ "ଦରଖାସ୍ତ କ'ଣ ହେବ, ଯଦି ସଭା କରିବାର କଥା, କରିଯିବ" ଏହାହିଁ ଥିଲା ଛାତ୍ରମାନଙ୍କର ସଫେଇ । ଦୀନବଂଧୁ ବାବୁଙ୍କ ଜେରାରେ ପରିଜା ସାହେବ ଅତ୍ୟନ୍ତ ଅପ୍ରତିଭ ହୋଇ ଏକ ସମୟରେ ସ୍ୱୀକାର କଲେ ଯେ, ଟେନିସ୍ ପଡ଼ିଆ ନୁହେ, ଗୋଟିଏ ଏକ ପାଖିଆ ଜାଗାରେ ସଭା କରିବାକୁ ସେ କହିଥିଲେ । ଏହି ସ୍ୱୀକାରୋକ୍ତି ସତ୍ତ୍ୱେ ମାଜିଷ୍ଟ୍ରେଟ୍ ବାଇଶି ଜଣ ଛାତ୍ରଙ୍କୁ ଦୋଷୀ ସାବ୍ୟସ୍ତ କରି ଜଣକା ପଚାଶ ଟଙ୍କା ଜୋରିମାନା କିମ୍ବା ଅନାଦାୟେ ଏକ ମାସ ଜେଲ ଦଣ୍ଡ ଭୋଗିବାକୁ ରାୟ ଦେଇଥିଲେ । କିନ୍ତୁ ଆଂଇରିଶ୍ ଜିଲ୍ଲାଜଜ୍ ମାହେର ସାହେବଙ୍କ ଅପିଲ କୋର୍ଟରେ ମାଜିଷ୍ଟ୍ରେଟଙ୍କ ରାୟ ନାକଚ ହୋଇଗଲା । ମୁଦାଲାମାନେ ନିର୍ଦ୍ଦୋଷରେ ଖଲାସ ହେଲେ ।

ଏସବୁ ଘଟଣାରେ ମୁଁ ଅତ୍ୟନ୍ତ ମର୍ମାହତ ହୋଇଥିଲି । ମନେ ମନେ ଭାବିଲି, ଯଦି ସ୍କଲାରସିପ୍ ପାଏ, ତାହେଲେ କଟକରେ ନ ପଢ଼ି, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପଢ଼ିବି । ପଣ୍ଡିତ ମଦନ ମୋହନ ମାଳବ୍ୟଙ୍କ ପ୍ରତିଷ୍ଠିତ ହିନ୍ଦୁ ବିଶ୍ୱବିଦ୍ୟାଳୟ ସେତେବେଳେ ଏକ ଖ୍ୟାତି ସଂପନ୍ନ ଅନୁଷ୍ଠାନ ଥିଲା । ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଥିଲେ ତାର ଭାଇସ୍‌ଚାନସେଲାର । ମୁଁ ଅବଶ୍ୟ ମାଟ୍ରିକ୍ ସ୍କଲାରସିପ୍ ପାଇଲି, କିନ୍ତୁ ବନାରସ୍‌ରେ ପଢ଼ିବା ପାଇଁ ଆବଶ୍ୟକ ଅର୍ଥର ଆୟୋଜନ ହୋଇ ପାରିଲା ନାହିଁ । ମୋର ଜଣେ ମାମୁ ପୁରୀରେ

ବ୍ୟବସାୟ କରୁଥିଲେ । ମୁଁ ଆଶା କରୁଥିଲି, ତାଙ୍କଠାରୁ ନିୟମିତ ସାହାଯ୍ୟ ମିଳିବ । ମୁଁ ପୁରୀ ଯାଇ ତାଙ୍କୁ ସାକ୍ଷାତ୍ କଲି । ସେ ନିରାଶ କଲେ । ବନାରସ ଯିବା ନୋହିଲା ।

ମଇ ମାସଟା ବଡ଼ ଅନିଶ୍ଚିତତା ଭିତରେ କଟିଲା । ଜୁନ ମାସ ଆରମ୍ଭରେ କବି ସଚ୍ଚି ରାଉତରାୟଙ୍କ ଉଦ୍ୟମରେ ଓ କେତେକ ମାର୍କ୍ସବାଦୀ ସାଥୀଙ୍କ ସହାୟତାରେ କଟକରେ ଗୋଟିଏ ''ସମର ସ୍କୁଲ ଅଫ ପଲିଟିକ୍ସ''ର ଆୟୋଜନ କରାଯାଇଥିଲା । ସୁଭାଷ ଚନ୍ଦ୍ର ବୋଷଙ୍କ ପିତା ସ୍ୱର୍ଗୀୟ ଜାନକୀ ନାଥ ବୋଷଙ୍କ ଓଡ଼ିଆ ବଜାର ଘର ଉପର ମହଲାରେ (ବର୍ତ୍ତମାନ ନେତାଜୀ ସେବା ସଦନ) ଏହି ସ୍କୁଲ ବସେ । କଲିକତାର ଜଣେ ବିଖ୍ୟାତ ଅଧ୍ୟାପକ (ନାମଟା ସ୍ମରଣ କରି ପାରୁନାହିଁ), ପ୍ରାୟ ତିରିଶ ଜଣ ଆଗ୍ରହୀ ଛାତ୍ରଙ୍କୁ ମାର୍କ୍ସବାଦୀ ଦର୍ଶନ ଓ ଅର୍ଥନୀତି ଉପରେ ପ୍ରତିଦିନ ଦୁଇ ଓଳି ଭାଷଣ ଦିଅନ୍ତି । ମୋର ସୌଭାଗ୍ୟ, ଏହି ସ୍କୁଲରେ ଯୋଗ ଦେବାର ସୁଯୋଗ ପାଇଥିଲି । କ୍ଳାସ ପନ୍ଦର ଦିନ ଧରି ଚାଲିଥିଲା । ତାଙ୍କର ପ୍ରବଚନ ଶୁଣିବା ପରେ ମାର୍କ୍ସବାଦ ଓ ସମାଜବାଦ ସଂପର୍କରେ ମୋର ଧାରଣା ଓ ଚିନ୍ତା ସ୍ୱଷ୍ଟତର ହେଲା । ଭବିଷ୍ୟତର ଦିଗ୍‌ଦର୍ଶନ ଉଜ୍ଜ୍ୱଳ ହୋଇ ଉଠିଲା ।

ବିଜୟ ଚନ୍ଦ୍ର ଦାସ ଓ ବୈଦ୍ୟନାଥ ରଥ ସମୟ ସମୟରେ ଏହି ଆଲୋଚନାରେ ଯୋଗ ଦିଅନ୍ତି । ସେମାନଙ୍କ ସହିତ ମୁଁ ପରାମର୍ଶ କଲି । କଟକରେ ପଢ଼ିବା ପାଇଁ ସମସ୍ତେ ପରାମର୍ଶ ଦେଲେ । ସେମାନଙ୍କ ମତରେ କଟକରେ ପଢ଼ିଲେ ରାଜନୈତିକ କାର୍ଯ୍ୟ ସହ ସଂପର୍କ ରଖିହେବ । ୧୯୪୦ ଜୁଲାଇ ଆରମ୍ଭରେ ମୁଁ ରେଭେନ୍ସା କଲେଜରେ ନାମ ଲେଖାଇଲି ।



# ଲଣ୍ଠନରୁ ବିଜୁଳିବତୀ

ମ୍ୟାଟ୍ରିକ୍ୟୁଲେସନ ପରୀକ୍ଷାରେ ସ୍କଲାରସିପ୍ ପାଇଥିବା ହେତୁ ରେଭେନ୍ସା କଲେଜରେ ସିଟ୍ ମିଳିବାରେ ଅସୁବିଧା ହେଲା ନାହିଁ । ପଶ୍ଚିମ ଛାତ୍ରାବାସରେ ମଧ୍ୟ ସିଟ୍ ମିଳିଲା । ସେତେବେଳେ ଡକ୍ଟର ପ୍ରାଣକୃଷ୍ଣ ପରିଜା କଲେଜର ଅଧ୍ୟକ୍ଷ । କେମିଷ୍ଟ୍ରି ଅଧ୍ୟାପକ ଡକ୍ଟର ବଳଭଦ୍ର ପ୍ରସାଦ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନ୍ ଏବଂ ଗଣିତ ଅଧ୍ୟାପକ ବାମାଚରଣ ଦାସ ତତ୍ତ୍ୱାବଧାରକ ଓ ଇତିହାସ ବିଭାଗର ଲେକ୍‌ଚରର ଜଗଦାନନ୍ଦ ମହାନ୍ତି ତାଙ୍କର ସହକାରୀ । ନୂଆ ପୁରୁଣା ଛାତ୍ରଙ୍କ ମେଳାରେ ଛାତ୍ରାବାସ କଂପମାନ । ମନେହେଲା ମୁଁ ଯେପରି ହଠାତ୍ ଗୋଟାଏ ନୂଆ ପୁରରେ ପ୍ରବେଶ କରିଛି । ଲଣ୍ଠନ ଆଲୁଅରୁ ବିଜୁଳିବତୀ ପର୍ଯ୍ୟନ୍ତ ଅଗ୍ରଗତି ନିଶ୍ଚୟ ଏକ ବୈପ୍ଳବିକ ପରିବର୍ତ୍ତନ । ପ୍ରଗତିର ସେ ହାଓ୍ୱାରେ ଅନେକେ ପାଦ ସ୍ଥିର ରଖି ପାରୁନଥାନ୍ତି । କଲେଜ ପିଲାଙ୍କର ବେଶଭୂଷା, ରଂଗ ଢଂଗ, ଚାଲିଚଳନୀ ଥିଲା ସଂପୂର୍ଣ୍ଣ ଭିନ୍ନ । ବାପ ମା' ଓ ଅଭିଭାବକଙ୍କ ନିୟନ୍ତ୍ରଣରୁ ମୁକ୍ତ ହୋଇ, ପକେଟରେ ପଇସା ପଡ଼ିଲେ, ହଠାତ୍ ଉଡ଼ିବାକୁ ଆରମ୍ଭ କରନ୍ତି । ଅଣ୍ଡାରୁ ସଦ୍ୟ ମୁକ୍ତି ଲାଭ କରିଥିବା ଚଢ଼େଇ ଛୁଆ ଦେହରେ ଯେପରି ନୂଆ ପର ଲାଗିଛି ।

ଯେଉଁମାନେ ସରକାରୀ ବୃତ୍ତି ବା ସାହାଯ୍ୟ ଇତ୍ୟାଦି ପାଇ ପଢ଼ନ୍ତି, ସେ ଶ୍ରେଣୀର ପିଲାଙ୍କୁ ବାଦ୍ ଦେଲେ, ସାଧାରଣତଃ ଅବସ୍ଥାପନ୍ନ ଓ ସଂଭ୍ରାନ୍ତ ଶ୍ରେଣୀର ପିଲାମାନେ ଓଡ଼ିଶାର ଏକମାତ୍ର ଡିଗ୍ରୀ କଲେଜରେ ଅଧ୍ୟୟନ କରନ୍ତି । କଲେଜ ଛକରେ ଥିବା ସୁପ୍ରସିଦ୍ଧ ମାଡ୍ରାସ ହୋଟେଲ, ମଦନା ମିଠା ଦୋକାନ ଓ କୁଞ୍ଜ ପାନ ଦୋକାନ ଥିଲା ଛାତ୍ରମାନଙ୍କର ଆଡ୍ଡାସ୍ଥଳୀ । ଅନେକେ ଷ୍ଟେସନ ବସିର୍ ମିଆଁ କ୍ୟାଣ୍ଟିନ୍‌ରେ ମଧ୍ୟ ଜୁଟନ୍ତି । ସିଲ୍‌କ ପଂଜାବୀ ଓ ଧୋତି ସାଙ୍ଗକୁ ହଲେ କାନ୍‌ପୁରୀ ଚପଲ ଥିଲେ, ଫେସନର ସର୍ବୋଚ୍ଚ ସୀମାରେ ପହଂଚିବା ପରି ମନେ କରାଯାଏ । ଆମ ପରି କେତେଜଣ ଖଦଡ଼ ଧୋତି ଓ ପଂଜାବୀ ପିନ୍ଧୁ । ରାଜା ଜମିଦାର ସନ୍ତାନ ବା ଦକ୍ଷିଣ ଓଡ଼ିଶାର ମୁଷ୍ଟିମେୟ ଛାତ୍ରଙ୍କୁ ବାଦ୍ ଦେଲେ ଟ୍ରାଉଜର ପ୍ରାୟ କେହି ପିନ୍ଧୁ ନଥିଲେ । ପ୍ରଥମ ବାର୍ଷିକ ଶ୍ରେଣୀରେ ଝିଅ ଛାତ୍ରଙ୍କ ସଂଖ୍ୟା ଥିଲା ମାତ୍ର ତିନି ଜଣ । ସୁଟ, ଟାଇ କେବଳ ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କର ପରିଧାନ ଥିଲା ।

ପୂର୍ବ ଓ ପଶ୍ଚିମ ଛାତ୍ରାବାସରେ ଖାଇବା ଚାର୍ଜ ଥିଲା ମାସିକ ଛ' ଟଙ୍କା ଆଠଅଣା । ସେଥିରେ ସକାଳ ଓଳି ଅରୁଆ ଭାତ, ମାଛ, ସାଦା ତରକାରୀ, ଭଜା ଓ ଖଟା । ରାତି ଖାଇବା ଅନୁରୂପ । ଭାତ ସହିତ ରୋଟୀ ଓ ମାଛ ବଦଳରେ ମାଂସ । ମାସ ଶେଷ ଶନିବାର ରାତିରେ ଭୋଜି ଭାତ ହୁଏ । ମାସକୁ ଆଉ ଦୁଇ ଟଂକା ଦେଲେ ଉପରବେଳା ଚାରିଟା ପୁରୀ ତର୍କାରୀ ବା ଚାରିଟା ସିଙ୍ଗଡ଼ା ଜଳଖିଆ ଦିଆଯାଏ । ଏପରି ମୋଟ ଖାଇବା ଖର୍ଚ୍ଚ ମାସିକ ଆଠଟଙ୍କା ଆଠଅଣା । ସକାଳେ ଯେଉଁମାନେ ଜଳଖିଆ ଚାହାଁନ୍ତି, ଓ୍ୟାର୍ଡ଼ବଏ ମାଡ୍ରାସ ହୋଟେଲରୁ ଉପମା ବା ଇଡ୍‌ଲୀ ଆଣି ଯୋଗାଇ ଦିଏ । ସେ ବାବଦ ସେ ହାରାହାରୀ ମାସକୁ ଦୁଇଟଙ୍କା ନିଏ । ଏବେ ମାସିକ ତିନିଶହ ଟଂକା ଦେଲେ ମଧ୍ୟ ହଷ୍ଟେଲ ମାନଙ୍କରେ ଏ ପ୍ରକାରର ଖାଇବା ମିଳୁ ନାହିଁ । ମୋର ମନେ ଅଛି, କଟକ ମାଲଗୋଦାମର ସୁପ୍ରସିଦ୍ଧ ବ୍ୟବସାୟୀ ସ୍ୱର୍ଗୀୟ ବଂଶୀଧର ମହାନ୍ତି ପ୍ରତିଦିନ ପଶ୍ଚିମ ଛାତ୍ରାବାସକୁ ଚାଉଳ ଡାଲି ଆଦି ଯୋଗାଇ ଦେଉଥାନ୍ତି । ପ୍ରାୟ ପାଂଚଟାରୁ ଛ'ଟା ମଧ୍ୟରେ ମେସ ମ୍ୟାନେଜରଙ୍କ ବାରଣ୍ଡାରେ ତାଙ୍କ ସହିତ ଦେଖା ହୁଏ ।

ପାଠପଢ଼ା ପ୍ରତି କଲେଜ ଛାତ୍ରଙ୍କର ମନୋଭାବ ଦେଖି ବିସ୍ମୟ ଲାଗେ । ସ୍କୁଲରେ ଗୋଟାଏ ପିରିଅଡ୍ ମଧ୍ୟ ଛୁଟି ନଥାଏ । ଅଧଘଣ୍ଟାଏ ଖେଳଛୁଟିକୁ ବାଦ୍‌ଦେଲେ, ସାଢ଼େ ଦଶଟାରୁ ଚାରିଟା ପର୍ଯ୍ୟନ୍ତ ବେଦମ୍ ପାଠପଢ଼ା । କଲେଜିଏଟ୍ ସ୍କୁଲ ଜୀବନର ଚାରିବର୍ଷ ମଧ୍ୟରେ କେବେ ଦିନେ କୌଣସି କ୍ଲାସ ସସ୍‌ପେଣ୍ଡ ହେବାର ମନେ ପଡୁ ନାହିଁ । ଅଥଚ କଲେଜ୍‌ରେ କ୍ଲାସ ସଂଖ୍ୟା ଥିଲା ଯଥେଷ୍ଟ କମ୍- ବିଶ୍ରାମ ବେଶି । ତଦୁପରି ପାଠପଢ଼ା ତଦାରଖ କରିବାକୁ କେହି ନାହିଁ । ଅନେକ ଛାତ୍ର, ସବୁ କ୍ଲାସରେ ଯୋଗ ଦିଅନ୍ତି ନାହିଁ । ଅନେକେ ପ୍ରକ୍ସିର ବ୍ୟବସ୍ଥା କରି କ୍ଲାସରୁ ଅନୁପସ୍ଥିତ ରହନ୍ତି । କେତେକ କ୍ଲାସରେ ଗୋଳମାଳ କରିବା ଓ ମୁଷ୍ଟିମେୟ ଝିଅ ଛାତ୍ରଙ୍କ ପ୍ରତି ଥଟ୍ଟା ପରିହାସ କରିବାରେ ସମୟ କଟାନ୍ତି । ପାଠପଢ଼ା ପ୍ରତି ନିଜେ ଧ୍ୟାନ ନ ଦେଲେ, ତତ୍ତ୍ୱାବଧାନ ଥିଲା ଶୂନ୍ ।

କିନ୍ତୁ ଏ ବାହ୍ୟିକ ଆଡମ୍ବର, ବେଶଭୂଷା ଓ ଚାକଚକ୍ୟ ମୋ ପରି କେତେକ ଛାତ୍ରଙ୍କୁ ଆଦୌ ସ୍ପର୍ଶ କରି ନଥିଲା । ଏ ସବୁକୁ ଆମେ ପ୍ରହସନ ମନେ କରୁଥିଲୁ । ଇନ୍ଦ୍ରଜାଲରେ ମୋହଗ୍ରସ୍ତ ହେବାର ବ୍ୟାଧି ମୋର ନଥିଲା । ହାଇସ୍କୁଲରେ ଯେଉଁ ପାଦ ପାଠ ପଢ଼ିବା ପାଇଁ ଦିନ ପରେ ଦିନ ଅନ୍ତତଃ ଛ' ସାତ ମାଇଲ ଚାଲିବାକୁ ଅଭ୍ୟସ୍ତ, ସେ ପାଦ ସହଜରେ ଖସି ଯାଏନାହିଁ ।

କଲେଜରେ ପ୍ରବେଶ କରିବାର ଅଳ୍ପ ଦିନ ମଧ୍ୟରେ, ପରେ ପରେ ଦୁଇଟି ଘଟଣା ଘଟିଲା, ଯେଉଁଥିରେ ମୁଁ ଅତ୍ୟନ୍ତ ମର୍ମାହତ ହୋଇଥିଲି । ସେହି ସମୟରେ ଭାଗୁ ମାମୁ (ଭଗବତୀ ପାଣିଗ୍ରାହୀ) ତାଙ୍କ ପରିବାର ସହିତ ରାଣୀହାଟ ନାଳକୂଳ ନାଇଡୁ ହତାରେ ଛୋଟ ବଡ଼ ଦୁଇଟି କୋଠରୀ ବିଶିଷ୍ଟ ଗୋଟିଏ ଘରେ ରହୁଥାନ୍ତି । ପାଖାପାଖି ଆଉ ଗୋଟିଏ ଘରେ ବୋଧହୁଏ ବୈଦ୍ୟନାଥ ରଥ ଓ ବିଜୟ ଚନ୍ଦ୍ର ଦାସ ରହୁଥାନ୍ତି । ଦିନେ ମୁଁ କଲେଜରେ ଶୁଣିଲି, ନାଇଡୁ ହତାକୁ ପୋଲିସ ଘେରାଉ କରିଛନ୍ତି । ତୁରନ୍ତ ସେଠାକୁ ଯାଇ ଦେଖେ, ଭାଗୁ ମାମୁଁଙ୍କ ଘର ତଲାସି ଚାଲିଛି । ଦୂରରୁ କେହି ଜଣେ ସେଠୁ ଚାଲିଯିବା ପାଇଁ ମତେ ଠାରି ଦେଲା । ସେଠାରୁ ଚାଲି ଆସି ଅଳ୍ପ ଦୂରରେ ଛାତ୍ରନେତା ଅଶୋକ ଦାସ ରହୁଥିବା ବାରଣ୍ଡାରେ ଠିଆ ହୋଇ ରହିଲି । ପ୍ରାୟ ଘଣ୍ଟାକ ପରେ ଇନସ୍‌ପେକ୍ଟର ଗଂଗାଧର ଦ୍ୱିବେଦୀ ଓ ଅନ୍ୟ କେତେଜଣ ପୋଲିସ ଅଫିସର କେତେକ କାଗଜ ପତ୍ର ଜବତ କଲେ ଓ ଭଗବତୀ ପାଣିଗ୍ରାହୀ, ବୈଦ୍ୟନାଥ ରଥ ଓ ବିଜୟ ଚନ୍ଦ୍ର ଦାସଙ୍କୁ ଗିରଫ କରିନେଲେ । ସେ ଦିନ ସରକାର ଓ ତାଙ୍କ ପୋଲିସ ବିରୁଦ୍ଧରେ ରାଗ, ବିଦ୍ୱେଷ ଓ ଘୃଣାରେ ଅନ୍ତର ଭରି ଉଠିଲା । ମୁଁ ଦିନ ତିନିଟା ବେଳେ ହଷ୍ଟେଲରେ ପହଁଚି ଶୋଇଗଲି । ରାତିରେ ଖାଇବା ପାଇଁ ମଧ୍ୟ ଉଠି ନାହିଁ । ସବୁ ଦୁଃଖ କଷ୍ଟ ଭୁଲିଯିବା ପାଇଁ ନିଦ୍ରାହିଁ ମୋର ପ୍ରଧାନ ଔଷଧ ଏବଂ ସେ ଔଷଧ ବ୍ୟବହାର କରିବାକୁ ମୁଁ କେବେ କୁଣ୍ଠିତ ହୁଏ ନାହିଁ । ପରେ ଖବର କାଗଜରୁ ପଢ଼ିଲି ଏମାନଙ୍କ ସହିତ ଶରତ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ଦୁର୍ଗା ଚରଣ ମହାନ୍ତି ଓ ନୀଳଗିରିର ପ୍ରଜାମଣ୍ଡଳ ନେତା ବନମାଳୀ ଦାସଙ୍କୁ ମଧ୍ୟ ଜେଲକୁ ନିଆଯାଇଛି । କଲେଜ ଛକ ସାମନା ଗୁଜୁରାଟୀ କ୍ୱାଟର 'ସିଲଭର ହାଉସ'ରେ ରହୁଥିବା ରାମକୃଷ୍ଣ ପତି ଓ କଲେଜ ଛାତ୍ର ରାମଚନ୍ଦ୍ର ମିଶ୍ରଙ୍କୁ ମଧ୍ୟ ଗିରଫ କରାଯାଇଛି । ବେଆଇନ ଘୋଷିତ କମ୍ୟୁନିଷ୍ଟ ଦଳର ସଭ୍ୟ ଥିବା ଅଭିଯୋଗରେ ଏମାନଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର ମୋକଦ୍ଦମା ଦାଏର ହେଲା । ଦୁଇ ତିନି ଦିନ ପରେ ପ୍ରମାଣ ଅଭାବରେ ରାମକୃଷ୍ଣ ପତି ଓ ରାମଚନ୍ଦ୍ର ମିଶ୍ର ଖଲାସ ହେଲେ ।

ଜୁଲାଇ ଶେଷ କିମ୍ବା ଅଗଷ୍ଟ ପ୍ରଥମ ସପ୍ତାହରେ କଲେଜ ଛାତ୍ରମାନଙ୍କର ଏକ ସାଧାରଣ ସଭା ହେଲା । ସଭା ଆହ୍ୱାନ କରିଥିଲେ ପ୍ରିନ୍ସିପାଲ ପରିଜା । ସଭାଗୃହ ଅଧ୍ୟାପକ ଓ ଛାତ୍ରମାନଙ୍କର ସମାବେଶରେ ଭରପୁର । ପରିଜା

ସାହେବ ଇଂରାଜୀରେ ତାଙ୍କର ଲିଖିତ ଭାଷଣ ପାଠ କଲେ । ରାଜନୀତିରେ ଭାଗ ନେଇ ଛାତ୍ରମାନେ କିପରି ନିଜର ଭବିଷ୍ୟତ ନଷ୍ଟ କରୁଛନ୍ତି, ଏହାହିଁ ଥିଲା ଭାଷଣର ମୁଖ୍ୟ ବିଷୟବସ୍ତୁ । ସେତେବେଳେ ରାଜନୀତି ଅର୍ଥ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ସଂଗ୍ରାମ । ଅଥଚ ଏହି ସଂଗ୍ରାମରୁ ନିବୃତ୍ତ ହେବା ପାଇଁ ସେ ଛାତ୍ରମାନଙ୍କୁ ଉପଦେଶ ଦେଉଥିଲେ । ତାଙ୍କ ଭାଷଣରେ ଆଉ ଗୋଟିଏ ଧମକ ଥିଲା ଏବଂ ସେ ଧାଡ଼ିଟି ମୋର ସ୍ପଷ୍ଟ ମନେ ଅଛି । ବୋଧହୁଏ ତିନି ଚାରି ମାସ ପୂର୍ବର ପରୀକ୍ଷା ବର୍ଜନ ଆନ୍ଦୋଳନକୁ ନଜରରେ ରଖି ପ୍ରିନ୍ସିପାଲ କହିଲେ, ‘‘ତୁମ୍ଭେମାନେ ଏହି କଲେଜର ପଥର କାନ୍ଥରେ ମୁଣ୍ଡ ପିଟି ମୁଣ୍ଡ ଫଟାଇ ଦେଇପାର, କିନ୍ତୁ ଶକ୍ତିଶାଳୀ ବ୍ରିଟିଶ ସରକାରକୁ ଭାଂଗି ଦେଇ ପାରିବ ନାହିଁ ।’’ ଭାରତର ଜଣେ ଖ୍ୟାତିସଂପନ୍ନ ଉଦ୍ଭିଦ ବିଜ୍ଞାନୀଙ୍କ ଠାରୁ ଏ ପ୍ରକାର ମନ୍ତବ୍ୟ ଶୁଣି ଆମେ ସ୍ତମ୍ଭୀଭୂତ ହୋଇଗଲୁ । ସ୍ୱାଧୀନତା-ପ୍ରୟାସୀଙ୍କ ବିରୁଦ୍ଧରେ ତାଙ୍କର ଏ ଉଦ୍‌ଗୀରଣ ଶୁଣି ଲଜ୍ଜାରେ ମୁଣ୍ଡ ତଳକୁ ହୋଇଗଲା । ଏ ଧମକରେ ଅବଶ୍ୟ ଆମେ କେତେ ଜଣ ଆଦୌ ଭୟଭୀତ ହୋଇ ନଥିଲୁ ଏବଂ ମାତ୍ର ସାତଟି ବର୍ଷ ପରେ ପରିଜା ସାହେବଙ୍କର ଏ ମତାମତ ମିଥ୍ୟା ବୋଲି ପ୍ରମାଣିତ ହେଲା । ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ବ୍ରିଟିଶ ସରକାର କ୍ଷମତାରୁ ବିତାଡ଼ିତ ହେଲେ, ଶକ୍ତିଶାଳୀ ବ୍ରିଟିଶ ସାମ୍ରାଜ୍ୟ ଭାଂଗି ପଡ଼ିଲା ।

ଏହି ସମୟରେ ପଶ୍ଚିମ ଛାତ୍ରାବାସ ୟୁନିଅନର କର୍ମକର୍ତ୍ତା ନିର୍ବାଚନ ହେଲା । ସେକ୍ରେଟାରୀ ପଦ ପାଇଁ ଷଷ୍ଠ ବାର୍ଷିକ ଶ୍ରେଣୀର ଛାତ୍ର କୈଳାଶ ଚନ୍ଦ୍ର ମହାନ୍ତି ପ୍ରାର୍ଥୀ ଥିଲେ । ମୋର ସହପାଠୀ ଯାମିନୀ, ଦ୍ୱିତୀୟ ବାର୍ଷିକ ଛାତ୍ର ଖୋର୍ଦ୍ଧାର ଫକୀର ପଟ୍ଟନାୟକ, ତୃତୀୟ ବାର୍ଷିକ ଶ୍ରେଣୀର କୃଷ୍ଣ ପ୍ରସାଦ ପଟ୍ଟନାୟକ ପ୍ରମୁଖ ସ୍ଥିର କଲେ ଯେ ଜଏଣ୍ଟ ଜେନେରାଲ ସେକ୍ରେଟାରୀ ପଦ ପାଇଁ ମୁଁ ପ୍ରତିଦ୍ୱନ୍ଦିତା କରିବି । ମୋର ପ୍ରତିଦ୍ୱନ୍ଦୀ ହେଲେ ତୃତୀୟ ବାର୍ଷିକ (କଳା) ଶ୍ରେଣୀର ଜଣେ ଅନ୍ତେବାସୀ । ମୁଁ ବହୁ ଅଧିକ ଭୋଟରେ ନିର୍ବାଚିତ ହେଲି । ପ୍ରଥମ ବାର୍ଷିକ ଶ୍ରେଣୀର ଜଣେ ଛାତ୍ର ନିର୍ବାଚନରେ ଜିତିବା ପଶ୍ଚିମ ଛାତ୍ରାବାସ ଇତିହାସରେ ପ୍ରଥମ । ଯାହାହେଉ, ହଷ୍ଟେଲର ଜଏଣ୍ଟ ଜେନେରାଲ ସେକ୍ରେଟାରୀ ନିର୍ବାଚିତ ହେବା ପରେ, ସେହି ସୂତ୍ରରେ ଓ୍ୟାର୍ଡେନ୍ ଡକ୍ଟର ବଳଭଦ୍ର ପ୍ରସାଦ ଓ ଅନ୍ୟ ଅଧ୍ୟାପକମାନଙ୍କ ସହିତ ସିଧାସଳଖ ପରିଚୟ ହେଲା ।

ନବାଗତ ହଷ୍ଟେଲ ଛାତ୍ରମାନଙ୍କୁ ସଂବର୍ଦ୍ଧନା କରିବା ପାଇଁ ପଶ୍ଚିମ ଛାତ୍ରାବାସ କମନରୁମ୍‌ରେ ଏକ ସଭା ହେଲା । ସେକ୍ରେଟାରୀ କୈଳାଶ ବାବୁ ପାଂଚ ମିନିଟ୍ ମଧ୍ୟରେ ତାଙ୍କର ଭାଷଣ ଶେଷ କଲେ । ସେ ଦିନ ସଭାରେ ରେଭେନ୍ସା କଲେଜରେ ମୋର ପ୍ରଥମ ଭାଷଣ । ମୋ ବକ୍ତୃତାରେ ସ୍ୱାଧୀନତା ସଂଗ୍ରାମର ପଛଭୂମିରେ ନୂତନ ରାଜନୈତିକ ଚିନ୍ତାଧାରା ଓ ଆଦର୍ଶବାଦ ବିଶେଷତଃ ମାର୍କ୍ସବାଦ ସଂପର୍କରେ ଅଧିକ ଅଧ୍ୟୟନ ଓ ମନୋନିବେଶ ପାଇଁ ଗୁରୁତ୍ୱ ଦେଇଥିଲି । ସେ କାଳରେ କଲେଜରେ ସବୁ ଆଲୋଚନା ଓ ବକ୍ତୃତା ଇଂରାଜୀରେ କରାଯାଉଥିଲା । ମୋର ଅଧଘଣ୍ଟିଆ ବିରାମହୀନ ବକ୍ତୃତା ପରେ ପିଲାମାନେ ଘନଘନ କରତାଳି ଦେଇଥିଲେ । କିନ୍ତୁ ପୂର୍ବ ଛାତ୍ରାବାସର ଓ୍ୱାର୍ଡେନ ଅଧ୍ୟାପକ ସୁନ୍ଦରମ୍ ଓ ଆମ ଛାତ୍ରାବାସର ତତ୍ତ୍ୱାବଧାରକଙ୍କ ମୁହଁରେ ଫୁଟି ଉଠୁଥିଲା ବିରକ୍ତିର ପ୍ରତିଛବି । ମୁଁ ଆଶଙ୍କା କଲି ଯେ ସେମାନେ ମୋ ଉପରେ ଭୀଷଣ ଅସନ୍ତୁଷ୍ଟ ହୋଇଛନ୍ତି । କିନ୍ତୁ ଅନୁଷ୍ଠାନ ଶେଷ ହେବା ପରେ ଡକ୍ଟର ବଳଭଦ୍ର ପ୍ରସାଦ ମତେ ଅଭିନନ୍ଦନ ଜଣାଇଥିଲେ । ଡକ୍ଟର ପ୍ରସାଦ ଯେ ଭିନ୍ନ ମନୋବୃତ୍ତିର ମଣିଷ ଥିଲେ, ସେ କଥା ମୁଁ ସେତେବେଳେ ଜାଣି ନଥିଲି ।

ପରୀକ୍ଷା ବର୍ଜନ ଆନ୍ଦୋଳନରେ ରେଭେନ୍ସା କଲେଜ ୟୁନିଅନ ସଭାପତିଙ୍କର କଲେଜରୁ ବହିଷ୍କାର ପରେ, ବନମାଳୀ ପଟ୍ଟନାୟକ (ପରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ଶିକ୍ଷାମନ୍ତ୍ରୀ) କଲେଜ ୟୁନିଅନର ନୂତନ ସଭାପତି ନିର୍ବାଚିତ ହୋଇଥିଲେ । ସେ ଛାତ୍ରାବସ୍ଥାରୁ ଦେଶସେବା ଓ ରାଜନୀତି ପ୍ରତି ଆକୃଷ୍ଟ ଥିଲେ । କଲେଜ ୟୁନିଅନ ଦ୍ୱାରା ଆୟୋଜିତ ବିତର୍କ ସଭାରେ ମୁଁ ନିୟମିତ ଅଂଶ ଗ୍ରହଣ କରୁଥିଲି । ସେହି ସୂତ୍ରରେ ପଟ୍ଟନାୟକଙ୍କ ସହିତ ପରିଚୟ ହୋଇଥିଲା । ଏହି ପରିଚୟ ପରେ ଘନିଷ୍ଠ ବଂଧୁତାରେ ପରିଣତ ହେଲା । ପରବର୍ଷ ସେ ଛାତ୍ରସଂଘର ସାଧାରଣ ସଂପାଦକ ନିର୍ବାଚିତ ହୋଇଥିଲେ । ରାଜନୈତିକ ମତଭେଦ ହେତୁ ତାଙ୍କ ସହିତ କେତେଥର ବିବାଦ ହୋଇଛି । ନିର୍ବାଚନ ମୋକଦ୍ଦମାରେ ମୁଁ ତାଙ୍କ ବିରୁଦ୍ଧରେ ଓକିଲାତି କରିଛି । କିନ୍ତୁ ୧୯୪୦ରୁ ଗଢ଼ି ଉଠିଥିବା ବ୍ୟକ୍ତିଗତ ସଂପର୍କ ଶେଷ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିଲା । ଦଶବର୍ଷ ତଳେ ହୃଦଯନ୍ତ୍ରକ୍ରିୟା ବନ୍ଦ ହୋଇ ସେ ସଂସାରରୁ ବିଦାୟ ନେଇଛନ୍ତି । କିନ୍ତୁ ତାଙ୍କର ହସ ହସ ମୁହଁ ଏବେ ମଧ୍ୟ ଆଖି ଆଗରେ ନାଚିଯାଏ ।

ସ୍ୱାଧୀନତା ଆନ୍ଦୋଳନ ସହିତ ସଂପୃକ୍ତ ଛାତ୍ରମାନଙ୍କୁ କଲେଜ କର୍ତ୍ତୃପକ୍ଷ କିପରି ହଇରାଣ ହରକତ୍ କରୁଥିଲେ, ତାର ବହୁ ଦୃଷ୍ଟାନ୍ତ ଅଛି । ନିଜ

ଅଭିଜ୍ଞତାରୁ ଗୋଟିଏ ଘଟଣା ଉଲ୍ଲେଖ କରୁଛି । ଅଗଷ୍ଟ ମାସରେ କଲେଜ ଅଫିସ ଫ୍ରି ଷ୍ଟୁଡେଣ୍ଟସିପ ପାଇଁ ଛାତ୍ରମାନଙ୍କଠାରୁ ଦରଖାସ୍ତ ଆହ୍ୱାନ କଲେ । ଏ ସୁବିଧା ପାଇବା ପାଇଁ ମୁଁ ନିର୍ଦ୍ଧାରିତ ସମସ୍ତ ସର୍ତ୍ତ ପୂରଣ କରୁଥିଲି ଏବଂ ଦରଖାସ୍ତ ମଧ୍ୟ ଦେଲି । ଡକ୍ଟର ପ୍ରସାଦ ସର୍ବବରିଷ୍ଠ ଅଧ୍ୟାପକ ଭାବରେ ଦରଖାସ୍ତକାରୀ ମାନଙ୍କୁ ସାକ୍ଷାତ କରୁଥିଲେ । ନିରୂପିତ ଦିନ ମୁଁ ଯେତେବେଳେ ଡକ୍ଟର ପ୍ରସାଦଙ୍କ ଅଫିସରେ ଉପସ୍ଥିତି ହେଲି, ସେ ମୋତେ କୌଣସି ପ୍ରଶ୍ନ ନ ପଚାରି ସିଧା ସଳଖ କହିଲେ, ମୁଁ ତ ସ୍କଲାରସିପ ପାଇଛି, ଫ୍ରି ଷ୍ଟୁଡେ଼ଣ୍ଟସିପ ପାଇବାରେ କୌଣସି ଅସୁବିଧା ନାହିଁ । ତାଙ୍କର ନିର୍ଭର ଆଶ୍ୱାସନା ଶୁଣି ମୋର କଲେଜିଏଟ ସ୍କୁଲର ପୂର୍ବତନ ହେଡ଼୍‌ମାଷ୍ଟର ବିଶ୍ୱମ୍ଭର ମିଶ୍ରଙ୍କ କଥା ମନେ ପଡ଼ିଲା । ୧୯୩୬ ଜାନୁଆରୀ ଦୁଇ ତାରିଖରେ ସେ ମୋତେ ଠିକ୍ ଏହିପରି କହିଥିଲେ । ଏହି ସାକ୍ଷାତକାରର ପ୍ରାୟ ତିନି ସପ୍ତାହ ପରେ ଫ୍ରିଷ୍ଟୁଡେ଼ଣ୍ଟସିପ ତାଲିକା ନୋଟିସ ବୋର୍ଡ଼ରେ ବାହାରିଲା । ତାଲିକାରେ ମୋ ନାମଟା ନ ଥିଲା । ମୁଁ ଟିକିଏ ବିବ୍ରତ ହେଲି । କେହି କେହି ସହପାଠୀ କହିଲେ, ଛାତ୍ରସଂଘ ସହିତ ସଂପୃକ୍ତ ଥିବାରୁ ମୋତେ ଏ ସୁବିଧା ମିଳିନାହିଁ । ମୁଁ ଏ କଥା ବିଶ୍ୱାସ କରି ପାରିଲି ନାହିଁ । ମାତ୍ର ଦୁଇ ମାସ ହେବ ମୁଁ କଲେଜରେ ଯୋଗ ଦେଇଛି । ଏ ମଧ୍ୟରେ କଲେଜରେ କୌଣସି ଆନ୍ଦୋଳନ ବା ସଂଘର୍ଷ ହୋଇ ନାହିଁ । ଆମ ପରି ପିଲାଙ୍କର ନାମ ସଂଗ୍ରହ କରିବା ପାଇଁ ପ୍ରିନ୍ସିପାଲଙ୍କର ଗୁପ୍ତଚର ନଥିବେ, ହୁଏତ ମୋର ନାମ ତାଙ୍କୁ ଜଣା ନଥିବ । ଯାହାହେଉ, ଏ ବିଷୟରେ ଅଧିକ ଚର୍ଚ୍ଚା ନ କରି ମୁଁ ଚୁପ୍‌ଚାପ୍ ରହିଲି ।

ତାଲିକା ପ୍ରକାଶିତ ହେବାର ତିନି ଚାରି ଦିନ ପରେ ପଶ୍ଚିମ ଛାତ୍ରାବାସର କିରାଣୀ ସାଧୁଚରଣ କାନୁନ୍‌ଗୋ ମୋତେ ଡାକି ପଠାଇଲେ । ସାଧୁବାବୁ କଲେଜର କିରାଣୀ, ତା ସହିତ ହଷ୍ଟେଲ ଦାୟିତ୍ୱରେ ମଧ୍ୟ ଥାଆନ୍ତି । ସେ ଅତି ସଚ୍ଚୋଟ ଲୋକ ଓ ସମସ୍ତଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ । କିଛି ଉପକ୍ରମଣିକା ନ କରି ସେ ସିଧା ମତେ ଅଠର ଟଂକା ବଢ଼ାଇଁ ଦେଇ କହିଲେ, "ଏ ତୁମର ଜୁନ, ଜୁଲାଇ, ଅଗଷ୍ଟ ମାସର କଲେଜ ଦରମା । ମୁଁ ଏହାର ତାତ୍ପର୍ଯ୍ୟ ବୁଝି ପାରିଲି ନାହିଁ । ପଚାରିବାକୁ ଆରମ୍ଭ କରିବା ମାତ୍ରେ, ସେ କହିଲେ, "ଡକ୍ଟର ପ୍ରସାଦ ଏ ଟଙ୍କାଟା ଦେଇଛନ୍ତି । ପ୍ରତି ମାସ ଆରମ୍ଭରେ ଟଂକାଟା ମୋଠାରୁ ନେଇଯିବ ।" ମୋର ଅବସ୍ଥା ସେପରି ଅଚଳ ନ ଥିଲା । ପରନ୍ତୁ କୌଣସି ପ୍ରକାରର ବ୍ୟକ୍ତିଗତ ସାହାଯ୍ୟ ଗ୍ରହଣ କରିବାକୁ ମୁଁ ଅନିଚ୍ଛୁକ ଥିଲି ।

ଦିନେ ସାହସ ବାନ୍ଧି ଡକ୍ଟର ପ୍ରସାଦଙ୍କୁ ଦେଖା କରିବାକୁ ଗଲି । ଏ ପ୍ରଶ୍ନ ଉତ୍ଥାପନ କରିବା ମାତ୍ରେ ସେ ମତେ ଅଧିକ ଆଗେଇବାକୁ ସୁଯୋଗ ନ ଦେଇ କେବଳ ଏତିକି କହିଲେ, "ମନରେ ଗ୍ଲାନି ରହିବା ଉଚିତ ନୁହେ । ଦରମା ଟଂକାଟା ପ୍ରତି ମାସରେ ସାଧୁ ବାବୁଙ୍କ ଠାରୁ ନେଇ ନେବ ।" ମନେ ହେଲା, ତାଙ୍କର ଯେପରି ଅନେକ କିଛି କହିବାକୁ ଅଛି, ଅଥଚ ସେ ନୀରବ ରହିବାକୁ ନିଷ୍ପତ୍ତି କରିଛନ୍ତି । ମୁଁ ଅଧିକ କିଛି ନ କହି, ନମସ୍କାର କରି ଫେରି ଆସିଲି ।

ସତକୁ ସତ ତାଙ୍କର ଅନେକ କିଛି କହିବାର ଥିଲା ଏବଂ ତାହା ମୁଁ ଶୁଣିଲି ଦୀର୍ଘ ପାଂଚ ବର୍ଷ ପରେ । ୧୯୪୨ ମସିହାରେ ଆଇ.ଏ. ପାସ କରିବା ପରେ ମୁଁ କଲେଜ ଛାଡ଼ିଥିଲି । ପୁଣି ୧୯୪୫ ମସିହାରେ ବହୁ ଜେଲ ଫେରନ୍ତା ବଂଧୁଙ୍କ ସହ ମୁଁ ତୃତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲି, ଅନର୍ସ ନେଲି ଅର୍ଥନୀତିରେ । ସେ ବର୍ଷ ମୁଁ ଦିବାଧ୍ୟାୟୀ ସଂଘର ସେକ୍ରେଟାରୀ ନିର୍ବାଚିତ ହୋଇଥାଏ । କଲେଜର ଅନ୍ୟ କେତେକ ଅନୁଷ୍ଠାନ ସହ ମଧ୍ୟ ସଂପୃକ୍ତ ଥାଏ । ପରିଡ଼ା ସାହେବ କୃଷି ବିଭାଗର ଡାଇରେକ୍ଟର ପଦ ଗ୍ରହଣ କରିଥାନ୍ତି ଏବଂ ତାଙ୍କ ସ୍ଥାନରେ ଓଡ଼ିଶାର ସ୍କୁଲ ବିଭାଗର ଇନ୍‌ସ୍ପେକ୍ଟର ଶ୍ରୀ ସଚ୍ଚି ରାୟ ରେଭେନ୍ସା କଲେଜର ଅଧ୍ୟକ୍ଷ । କଲେଜ ୟୁନିଅନର ସଂବିଧାନ ରଚନା କରିବା ପାଇଁ ଏକ କମିଟି ଗଠିତ ହୋଇଥାଏ । ଏହି କମିଟିର ଚେଆରମ୍ୟାନ କଲେଜ ୟୁନିଅନର ଆଡ୍‌ଭାଇଜର ଡକ୍ଟର ବଳଭଦ୍ର ପ୍ରସାଦ ଓ ମୋ ସମେତ ଅନ୍ୟ କେତେକ ଛାତ୍ର ସଦସ୍ୟ ଥାଆନ୍ତି । ଥରେ ଦିବାଧ୍ୟାୟୀ ସଂଘ ଅଫିସରେ ଏହି କମିଟିର ବୈଠକ ଡକା ହୋଇଥାଏ । ଅନ୍ୟ ସଦସ୍ୟମାନେ ଆସିବା ପୂର୍ବରୁ ଘଟଣାଚକ୍ରରେ ମୁଁ ଓ ଡକ୍ଟର ପ୍ରସାଦ ସେ ଘରେ ଅପେକ୍ଷା କରିଥିଲୁ । ପ୍ରସାଦ ସାହେବ ପ୍ରସଂଗକ୍ରମେ ପାଂଚ ବର୍ଷ ତଳର ସେହି ପୁରୁଣା କଥା ଉତ୍ଥାପନ କଲେ । ସେ ଓଡ଼ିଆରେ ଆରମ୍ଭ କଲେ "ଗଂଗାଧର, ତୁମର ମନେ ଥିବ, ୧୯୪୦ ମସିହାରେ ତୁମକୁ ଫ୍ରି ଷ୍ଟୁଡେଣ୍ଟସିପ ଦିଆଯିବ ବୋଲି ମୁଁ ନିର୍ଭର ପ୍ରତିଶ୍ରୁତି ଦେଇଥିଲି । ତୁମ କ୍ଲାସ ପାଇଁ ପ୍ରସ୍ତୁତ ସୁପାରିଶ ତାଲିକାରେ ତୁମ ନାମ ପ୍ରଥମ ସ୍ଥାନରେ ଥିଲା । ଫାଇଲ ଯେତେବେଳେ ପ୍ରିନ୍ସିପାଲଙ୍କ ପାଖରୁ ଫେରିଲା, ମୁଁ ଦେଖିଲି ତୁମ ନାମଟା ନାହିଁ ।"

ମୁଁ ବ୍ୟଗ୍ର ହୋଇ ପଚାରିଲି "କ'ଣ ହେଲା ?" ଡକ୍ଟର ପ୍ରସାଦ କହି ଚାଲିଲେ "ମୁଁ ଭାବିଲି ନାମଟା ବୋଧହୁଏ ଭୁଲରେ କଟି ଯାଇଛି । ଫାଇଲ ଧରି ମୁଁ ପ୍ରିନ୍ସିପାଲଙ୍କ ସହିତ ଆଲୋଚନା କଲି । ପ୍ରିନ୍ସିପାଲ ପରିଚ୍ଛା କହିଲେ, "ଯେଉଁମାନେ ସରକାର ବିରୁଦ୍ଧରେ କାର୍ଯ୍ୟ କରୁଛନ୍ତି, ସେମାନେ ସାହାଯ୍ୟ ପାଇବେ କାହିଁକି ? ସେଥିପାଇଁ ତୁମେ ସେ ସୁବିଧାରୁ ବଂଚିତ ହୋଇଥଲ ... ?"

ସେ ଦିନ ମୁଁ ବୁଝିଲି ଡକ୍ଟର ପ୍ରସାଦ କାହିଁକି ଦୁଇବର୍ଷ ଧରି ସାଧୁବାବୁଙ୍କ ଜରିଆରେ ମୋ ଦରମା ଟଂକା ଦେଉଥିଲେ । ସେ ଦିନ ବୁଝିପାରିଲି ତତ୍‌କାଳୀନ ପ୍ରିନ୍ସିପାଲ ପୋଲିସ ଗୁପ୍ତଚର ଜରିଆରେ ସ୍ୱାଧୀନତା ସଂଗ୍ରାମ ସହିତ ଜଡ଼ିତ ଛାତ୍ରମାନଙ୍କର ଗୁପ୍ତ ପଞ୍ଜିକା ରଖୁଥିଲେ କି ନାହିଁ । ସେ ଦିନ ଅନୁଭବ କଲି ଦୁଇଜଣ ନମସ୍ୟ ଅଧ୍ୟାପକଙ୍କ ମଧ୍ୟରେ ପାର୍ଥକ୍ୟ । ଜଣେ ସରକାରୀ ଚାକିରୀର ବଂଧନ ଭିତରେ ରହି ମଧ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅଯାଚିତ ସାହାଯ୍ୟ କରୁଥିଲେ । ଅନ୍ୟ ଜଣେ ଅନ୍ୟାୟ ଭାବରେ ସେମାନଙ୍କର କ୍ଷତି ସାଧନ୍ କରିପାରିଲେ ସନ୍ତୋଷ ଲାଭ କରୁଥିଲେ ।

ବାସ୍ତବିକ୍ ଡକ୍ଟର ବଳଭଦ୍ର ପ୍ରସାଦଙ୍କ ପରି ସ୍ୱାଧୀନଚେତା ସଚ୍ଚା ଦେଶଭକ୍ତ ଅଧାପକ ବିରଳ । ୧୯୩୨ ମସିହାରେ ସେ ଜର୍ମାନୀରେ ପଢୁଥିବା ସମୟରେ କମ୍ୟୁନିଷ୍ଟ ଶ୍ରମିକ ଦଳ ଉପରେ ହିଟଲର ନାଜୀ ବାହିନୀର ଅତ୍ୟାଚାର ନିଜ ଆଖିରେ ଦେଖିଥିଲେ । କମ୍ୟୁନିଷ୍ଟମାନଙ୍କର ସଂଖ୍ୟାଗରିଷ୍ଠ ସମର୍ଥନ ଧ୍ୱଂସ କରିବା ଲାଗି ହିଟଲର ଖୋଲାଖୋଲି ସଂତ୍ରାସବାଦର ଆଶ୍ରୟ ନେଇଥିଲେ । ସେହିଦିନଠାରୁ ସେ ଥିଲେ ସମାଜବାଦର ପୃଷ୍ଠପୋଷକ । ସେ କୌଣସି ଦଳର ସଭ୍ୟ ନଥିଲେ, କିନ୍ତୁ ଜୟ ପ୍ରକାଶ ନାରାୟଣ ଥିଲେ ତାଙ୍କର ବ୍ୟକ୍ତିଗତ ବଂଧୁ । ୧୯୩୯ ମସିହାରେ ଜୟ ପ୍ରକାଶ କଟକ ଆସିଥିବା ସମୟରେ ତାଙ୍କର **ଅତିଥି** ହୋଇଥିଲେ । ସେଥିପାଇଁ ସରକାରଙ୍କ ତରଫରୁ ତାଙ୍କ ବିରୁଦ୍ଧରେ ଗୋଟିଏ ଅନୁସଂଧାନ କରାହୋଇଥିଲା । ୧୯୪୨ ପରେ ରେଭେନ୍ସା କଲେଜ ଛାତ୍ର ଓ ପୋଲିସ ମଧ୍ୟରେ ଯେତେବେଳେ ଯେଉଁଠି ସଂଘର୍ଷର ସଂଭାବନା ଦେଖା ଦେଇଛି, ଡକ୍ଟର ପ୍ରସାଦ ଛାତ୍ର ଓ ପୋଲିସ ମଧ୍ୟରେ ସର୍ବଂସହା ପାହାଡ଼ ପରି ଠିଆହୋଇ ଲାଠି ଗୁଳିର ପ୍ରୟୋଗ କରାଇ ଦେଇ ନାହାନ୍ତି । ୧୯୪୬ ମସିହାରେ ୟୁନିଅନ ଜ୍ୟାକ୍ ଆନ୍ଦୋଳନ ବେଳେ କଲେଜ ଛକରୁ ଗୋଟିଏ ଶୋଭାଯାତ୍ରା ବାହାରିଲା । ବହୁ ଝିଅ ମଧ୍ୟ ଶୋଭାଯାତ୍ରାରେ ଯୋଗ ଦେଇଥାନ୍ତି । ପୋଲିସ ଲାଠି ଚଳାଇବାକୁ

ଉଦ୍ୟତ । ଡକ୍ଟର ପ୍ରସାଦ ଶୋଭାଯାତ୍ରାକାରୀଙ୍କ ପାଖେ ପାଖେ ଚାଲିଲେ । ତାଙ୍କ ଉପସ୍ଥିତିରେ ଲାଠି ଅଚଳ ହେଲା । ରସାୟନ ବିଭାଗର ଅଧ୍ୟାପକ ଭାବରେ ଗବେଷଣାରେ ଅଧିକ ସମୟ ଦେବା ପାଇଁ ସେ ଅଧ୍ୟକ୍ଷ ପଦ ଗ୍ରହଣ କରି ନ ଥିଲେ । ଦେଶ ସ୍ୱାଧୀନ ହେବାପରେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବରେ ସରକାରୀ ଚାକିରୀରୁ ଅବସର ନେଲେ ।

ଓଡ଼ିଶାରୁ ଯାଇ ସେ ପାଟନା ବିଶ୍ୱବିଦ୍ୟାଳୟ ଓ ପରେ ଆଲାହାବାଦ ବିଶ୍ୱବିଦ୍ୟାଳୟର ଭାଇସଚାନସେଲାର ହୋଇଥିଲେ । ୧୯୭୩ ମସିହାରେ ମୁଁ ଆଡ୍‌ଭୋକେଟ ଜେନେରାଲ ଥିବା ସମୟରେ ବିଜୁ ପଟ୍ଟନାୟକ ଓଡ଼ିଶା ହାଇକୋର୍ଟରେ ସଂବିଧାନର ୩୫୬ ଧାରା ଅନୁଯାୟୀ ରାଷ୍ଟ୍ରପତିଙ୍କ କ୍ଷମତା ପ୍ରୟୋଗର ବୈଧତା ସଂପର୍କରେ ଏକ ରିଟ୍ ମୋକଦ୍ଦମା ଦାଏର କରିଥିଲେ । ମୁଁ ଏଥିରେ ଭାରତ ସରକାର ଓ ଓଡ଼ିଶା ସରକାରଙ୍କ ପକ୍ଷରୁ ବାଦାନୁବାଦ କରିଥିଲି । ଶୁଣାଣି ପ୍ରାୟ ମାସାଧିକ କାଳ ଚାଲିଲା । ଭାରତର ସବୁ ଦୈନିକ କାଗଜରେ ଡବଲ କଲମ ହେଡ଼ିଂ ଦେଇ ମୋର ସୁଆଲ ଜବାବ ପ୍ରକାଶିତ ହେଉଥାଏ । ଦିନେ ପାଟନାରୁ ପ୍ରେରିତ ଖଣ୍ଡେ ପୋଷ୍ଟକାର୍ଡ଼ ପାଇଲି, ଲେଖିଥିଲେ ଡକ୍ଟର ବି. ପ୍ରସାଦ । ହିନ୍ଦୁସ୍ଥାନ ଟାଇମସ କାଗଜରୁ କ୍ରମାଗତ ପ୍ରକାଶିତ ମୋର ଯୁକ୍ତିମାଳା ପଢ଼ି ସେ ମୋତେ ଅଭିନନ୍ଦନ ଜଣାଇଥିଲେ । ଆନନ୍ଦରେ ମୋ ଆଖିରେ ଲୁହ ଆସିଲା ।

ପ୍ରସାଦଙ୍କ ଜନ୍ମସ୍ଥାନ ବିହାର । କିନ୍ତୁ ଓଡ଼ିଶାକୁ ସେ ନିଜର କର୍ମଭୂମି ରୂପେ ଆଦରି ନେଇଥିଲେ । ଜଣେ ଓଡ଼ିଆ ପୁଅକୁ ସେ ପାଳିତ ପୁତ୍ର ରୂପେ ଗ୍ରହଣ କରିଥିଲେ । ନିଜର ଜନ୍ମିତ ପୁଅକୁ ଓଡ଼ିଆ ଘରେ ବିବାହ ଦେଇଛନ୍ତି । ୧୯୮୭ ମସିହାରେ ଭୁବନେଶ୍ୱରରେ ତାଙ୍କର ଦେହାନ୍ତ ହେଲା । ଏହି ମହାନ୍ ପୁରୁଷଙ୍କ ବିୟୋଗରେ ଓଡ଼ିଶାର ଆକାଶରୁ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ଖସି ପଡ଼ିଲା ।



# ଷଡ଼୍‌ଯନ୍ତ୍ରର ସହାୟକ

କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମୋକଦ୍ଦମାରେ ସବୁ ଖ୍ୟାତନାମା କମ୍ୟୁନିଷ୍ଟ ନେତା ୧୯୪୦ ଜୁଲାଇ ଦ୍ୱିତୀୟ ସପ୍ତାହରେ ଗିରଫ ହେଲେ । ଏହି ମୋକଦ୍ଦମାରେ ଅଭିଯୋଗ ଥିଲା ଯେ ୩୪ ମସିହାରେ ବେଆଇନ ଘୋଷିତ କମ୍ୟୁନିଷ୍ଟ ପାର୍ଟିର ଏକ ଶାଖା ଏମାନେ ଓଡ଼ିଶାରେ ଗଠନ କରିଛନ୍ତି ଏବଂ ବ୍ରିଟିଶ ସରକାରକୁ ଭାଙ୍ଗିବା ପାଇଁ ନାନା ଭାବରେ ଷଡ଼ଯନ୍ତ୍ର କରିଛନ୍ତି । ଏମାନଙ୍କ ମୋକଦ୍ଦମାରେ ସାହାଯ୍ୟ କରିବା ପାଇଁ କଟକରେ ରହିଲେ କେବଳ ରାମକୃଷ୍ଣ ପତି ଓ ରାମଚନ୍ଦ୍ର ମିଶ୍ର । ରାମକୃଷ୍ଣ ପତି ସେ ପର୍ଯ୍ୟନ୍ତ କମ୍ୟୁନିଷ୍ଟ ଦଳର ବିଧିବଦ୍ଧ ସଦସ୍ୟ ହୋଇ ନଥାନ୍ତି । କିନ୍ତୁ କମ୍ୟୁନିଷ୍ଟ ଆନ୍ଦୋଳନର ନିକଟତମ ସହଯୋଗୀ ଭାବରେ ତାଙ୍କୁ ଗଣା ଯାଉଥାଏ । ଷଡ଼ଯନ୍ତ୍ର ମୋକଦ୍ଦମାରେ ସଫେଇ ଆୟୋଜନ କରିବା, ଓକିଲ ନିଯୁକ୍ତ କରିବା ଓ ମୋକଦ୍ଦମାର ଖର୍ଚ୍ଚ ସଂଗ୍ରହ କରିବା ମଧ୍ୟରେ ସେ ଆପେ ଆପେ କମ୍ୟୁନିଷ୍ଟ ଦଳରେ ଘନିଷ୍ଠ ଭାବରେ ଛନ୍ଦି ହୋଇଗଲେ । ତାଙ୍କର ପ୍ରଧାନ ସହାୟକ ଥିଲେ କଲେଜର ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ର ରାମଚନ୍ଦ୍ର ମିଶ୍ର ।

ରାମକୃଷ୍ଣ ପତିଙ୍କ ସହିତ ଏହା ପୂର୍ବରୁ ମୋର ବ୍ୟକ୍ତିଗତ ଆଳାପ ପରିଚୟ ନଥିଲା । ଅବଶ୍ୟ ଛାତ୍ର ସଭାରେ ତାଙ୍କ ବକ୍ତୃତା ମୁଁ ଥରେ ଅଧେ ଶୁଣିଥିଲି । କେବଳ ଶବ୍ଦାଡ଼ମ୍ବର ଥିଲା ଏହି ବକ୍ତୃତାର ବିଶେଷତ୍ୱ । ୧୯୪୦ ମସିହା ଆରମ୍ଭରେ "କଂଗ୍ରେସର ଗତି କେଉଁଆଡ଼େ" ଶୀର୍ଷକ ଏକ କ୍ଷୁଦ୍ର ପୁସ୍ତିକା ସେ ପ୍ରକାଶ କରିଥିଲେ । କଂଗ୍ରେସ- ସମାଜବାଦୀ ଦଳର ନେତା ଜୟ ପ୍ରକାଶ ନାରାୟଣଙ୍କ ଚିନ୍ତାଧାରା ଏଥିରେ ପ୍ରତିଫଳିତ ହୋଇଥିଲା । ଏଥିପାଇଁ କମ୍ୟୁନିଷ୍ଟ ଦଳର ମୁଖ୍ୟ ପ୍ରବକ୍ତା ଭଗବତୀ ପାଣିଗ୍ରାହୀ ଏ ପୁସ୍ତିକାଟିର ସମାଲୋଚନା କରିଥିଲେ । କିନ୍ତୁ ସମସ୍ତେ ଅନୁଭବ କରିଥିଲେ ଯେ ମାର୍କ୍ସବାଦୀ ନୀତି ଗ୍ରହଣ କରିବା ପାଇଁ ତାଙ୍କର ଅକୁଣ୍ଠିତ ଆଗ୍ରହ ଥିଲା ଏବଂ ଏ ପୁସ୍ତିକାରେ ବର୍ଣ୍ଣିତ ମତାମତ ଅଜ୍ଞତା ସଂଭୂତ । ଷଡ଼ଯନ୍ତ୍ର ମୋକଦ୍ଦମା କାର୍ଯ୍ୟରେ ଜୀବନ ମୃତ୍ୟୁ ସଂଗ୍ରାମ କରି ତାଙ୍କର ରୂପାନ୍ତର ଘଟିଥିଲା ।

ରାମବାବୁ ସେତେବେଳେ କଲେଜ ଛକ ସାମନା ଗଳିରେ ଜଣେ ଗୁଜୁରାଟୀ ବ୍ୟବସାୟୀଙ୍କ ଭଡ଼ା ଘରେ ରହୁଥିଲେ । ଘରଟିର ନାମ ଥିଲା "ସିଲଭର ହାଉସ" । ତାଙ୍କ ବାପା ଆନନ୍ଦ ଚନ୍ଦ୍ର ପତି ପୁରୀ ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର

ଭାବରେ ଅବସର ଗ୍ରହଣ କରିଥିଲେ । ତାଙ୍କ ଘର ଫୁଲ ନଖରା ପାଖ ନଇ ସେପାରି ବରାମୁଣ୍ଡ ଗାଁରେ । ଘରର ଅବସ୍ଥା ମଧ୍ୟ ସ୍ୱଚ୍ଛଳ ଥିଲା । କିନ୍ତୁ ପିତାଙ୍କ ନିର୍ଦ୍ଦେଶିତ ପଥ ଗ୍ରହଣ ନ କରି ରାଜନୀତିରେ ମାତିବାରୁ ସେ କାର୍ଯ୍ୟତଃ ଘରୁ ପରିତ୍ୟକ୍ତ ହୋଇଥିଲେ । ସେଥିପାଇଁ ତଗରପଡ଼ାରେ ଥିବା ନିଜ ଘରେ ନ ରହି, କଲେଜ ଛକରେ ଭଡ଼ା ଘରେ ରହୁଥିଲେ ।

ରାମଚନ୍ଦ୍ର ମିଶ୍ରଙ୍କୁ ଆମେ "ରାମ ମିଶ୍ରେ" ବୋଲି ସଂବୋଧନ କରୁ । ମିଶ୍ରଙ୍କ ନାମ କଲେଜ ରେଜିଷ୍ଟରରେ ଥିଲେ ମଧ୍ୟ, ସେ ସଦା ସର୍ବଦା ପାର୍ଟି କାର୍ଯ୍ୟରେ ବ୍ୟସ୍ତ । ପାଠ ପଢ଼ିବା ପାଇଁ ତାଙ୍କର ସମୟ ନଥାଏ କି ଆଗ୍ରହ ନଥାଏ । ଏକାଦଶ ଶ୍ରେଣୀରେ ପଢ଼ିବା ସମୟରୁ ତାଙ୍କ ସହିତ ଛାତ୍ର ଆନ୍ଦୋଳନ ସଂକ୍ରାନ୍ତରେ ପରିଚୟ । ତାଙ୍କର କମ୍ୟୁନିଷ୍ଟ ମନୋଭାବ ଓ ଦଳ ସହିତ ସଂପର୍କ ବିଷୟରେ ମୁଁ ଅବଗତ ଥିଲି । କମ୍ୟୁନିଷ୍ଟ ସମର୍ଥକ ଆମେ ଯେତେଜଣ ଛାତ୍ର ରେଭେନ୍ସା କଲେଜରେ ପଢୁଥିଲୁ, ରାମ ମିଶ୍ରେ ସେମାନଙ୍କୁ ଏକଜୁଟ କରି ରାମକୃଷ୍ଣ ପତିଙ୍କ ସହିତ ପରିଚିତ କରାଇଲେ । ସେହିଠାରେ ଆମ୍ଭେମାନେ ଅନେକ ସମୟରେ ମିଳିତ ହୋଇ ଭବିଷ୍ୟତର କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିଲୁ । ଶୈଳେନ ମହାପାତ୍ର, ଜଗତ୍‌କୃଷ୍ଣ ଦାସ, ବିପିନ ବିହାରୀ ଦାସ (ବାଲିକୁଦା) ସତ୍ୟବାଦୀ ମିଶ୍ର ଓ ମୋ ସହିତ ରାମ ପତିଙ୍କର ଏହି ସମୟରେ ସଂପର୍କ ଆରମ୍ଭ ହେଲା । ଷଡ଼ଯନ୍ତ୍ର ମୋକଦ୍ଦମା ପାଇଁ କେତେକ ପ୍ରଗତିଶୀଳ ଅଧ୍ୟାପକ ଓ ଛାତ୍ରଙ୍କ ନିକଟରୁ ଚାନ୍ଦା ଆଦାୟ କରିବା ଓ ସେମାନଙ୍କ ମଧ୍ୟରେ ମାର୍କ୍ସବାଦୀ ସାହିତ୍ୟ ଓ ପ୍ରଚାର ପୁସ୍ତିକା ବଣ୍ଟନ କରିବା ମୋର ପ୍ରଧାନ କାର୍ଯ୍ୟ ହେଲା ।

୧୯୩୮ ମସିହା ଢେଙ୍କାନାଳ ଆନ୍ଦୋଳନ ସମୟରୁ ମୁଁ ସମାଜବାଦ ପ୍ରତି ଆକୃଷ୍ଟ ହୋଇଥିଲି । କମ୍ୟୁନିଷ୍ଟ ନେତାମାନଙ୍କ ସହିତ ମୁଁ ବିଭିନ୍ନ ଆନ୍ଦୋଳନରେ ସହଯୋଗ କରୁଥିଲି । କିନ୍ତୁ ବିଧିବଦ୍ଧ ଭାବରେ ଦଳର ସଦସ୍ୟ ନଥିଲି । ୧୯୪୦ ଜୁଲାଇ ମାସରେ ମୋ ସାମନାରେ ମୋର ନିକଟତମ ଓ ସମ୍ମାନିତ ସାଥିମାନେ ଗିରଫ ହେଲେ । ବ୍ରିଟିଶ ପୋଲିସର ଅତ୍ୟାଚାର ଓ ନିର୍ଯ୍ୟାତନା ବିରୁଦ୍ଧରେ ମନେ ମନେ ବିଦ୍ରୋହ ଘୋଷଣା କଲି । ସେହିଦିନଠାରୁ ନିଜକୁ ଦଳର ସଭ୍ୟ ଭାବରେ ବିବେଚନା କଲି ଓ ତଦନୁଯାୟୀ କାର୍ଯ୍ୟ ଆରମ୍ଭ କଲି । ସଭ୍ୟ ହେବା ପାଇଁ ଦରଖାସ୍ତ କରିବାର ଅବକାଶ ନଥିଲା, ଆବଶ୍ୟକତା ବି ନଥିଲା । କାହା ନିକଟରେ ଦରଖାସ୍ତ କରନ୍ତି ? ସମସ୍ତେ ତ ଜେଲରେ ।

କଟକ ଜେଲରେ ବିଚାରାଧୀନ ବନ୍ଦୀ ଥିବା ବେଳେ ଭଗବତୀ ମାମୁଁ ଜଣେ ବିଶ୍ୱସ୍ତ ମୁସଲମାନ ଓ୍ୱାର୍ଡ଼ର ଜରିଆରେ ଗୋଟିଏ ଚୋରା ଚିଠି ପଠାଇଥିଲେ । ଖୁବ୍ ହୁସିଆର ହୋଇ କାମ କରିବାକୁ ବାର୍ତ୍ତା ଦେଇଥିଲେ, ଯେପରି ପୋଲିସ ହାତରେ ପୁଣି ଧରା ନପଡ଼ୁ । ଏ ସତର୍କବାଣୀ କେବଳ ମୋ ପାଇଁ ନୁହେ, ବାହାରେ ରହିଯାଇଥିବା ସବୁ କ୍ମ୍ୟୁନିଷ୍ଟ କ୍ୟାଡ଼ରଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ଆକାଶଛୁଆଁ ଛ' ଫୁଟ ଉଚ୍ଚା କଳେବରଟାକୁ ଲୁଚାଇବି କେଉଁଠି ?

କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମୋକଦ୍ଦମାରେ ଆତ୍ମପକ୍ଷ ସମର୍ଥନ କରିବାରେ ସାହାଯ୍ୟ କରିବା ପାଇଁ ଏକ ପ୍ରତିରକ୍ଷା କମିଟି ଗଢ଼ା ହୋଇଥିଲା । କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ହରେକୃଷ୍ଣ ମହତାବ ଏହି କମିଟିର ଚେଆରମ୍ୟାନ୍ ଥିଲେ । ମୋକଦ୍ଦମା ଚଳାଇବା ପାଇଁ ଯେଉଁ ଓକିଲମାନେ ଆଗଭର ହୋଇଥିଲେ ସେମାନେ ହେଲେ ରାଜକିଶୋର ଦାସ, ଦୀନବନ୍ଧୁ ସାହୁ ଓ ଚନ୍ଦ୍ରକାନ୍ତ ଘୋଷ । ରାଜୁବାବୁ ଅନନ୍ତ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକଙ୍କର ଦାଦା, ଦୀନବନ୍ଧୁ ବାବୁ ଭଗବତୀ ବାବୁଙ୍କର ସହପାଠୀ ଓ ବ୍ୟକ୍ତିଗତ ବନ୍ଧୁ ଏବଂ ଚନ୍ଦ୍ରକାନ୍ତ ଘୋଷ ବିଶିଷ୍ଟ ବିପ୍ଲବୀ ରବି ଘୋଷଙ୍କର ଭାଇ । ଏଥି ପୂର୍ବରୁ ଛାତ୍ର ଆନ୍ଦୋଳନ ସଂକ୍ରାନ୍ତରେ ଚାଲିଥିବା ମାଲି ମୋକଦ୍ଦମାରେ ରାଜୁ ବାବୁ ଓ ଦୀନବନ୍ଧୁ ବାବୁ ଅଶେଷ ସାହାଯ୍ୟ କରିଥିଲେ । ଷଡ଼ଯନ୍ତ୍ର ମୋକଦ୍ଦମାରେ ପୂର୍ବବତ୍ ସାହାଯ୍ୟ କରିବାକୁ ସେମାନେ ଆଗେଇ ଆସିଲେ । କୌଣସି ଫିସ୍ ଗ୍ରହଣ ନ କରି, ବରଂ ନିଜ ପକେଟରୁ ପଇସା ଖର୍ଚ୍ଚ କରି ଏହି ଓକିଲମାନେ କାର୍ଯ୍ୟାରମ୍ଭ କରିଥିଲେ ।

ପ୍ରଥମେ କଟକ କଲେକ୍ଟରେଟ୍‌ରେ ମୋକଦ୍ଦମା ବିଚାର ଆରମ୍ଭ ହେଲା । ହରବଂଶ ଲାଲ ଆଇ.ସି.ଏସ. ଏଥିପାଇଁ ସ୍ପେଶିଆଲ ମାଜିଷ୍ଟ୍ରେଟ ନିଯୁକ୍ତ ହୋଇଥିଲେ । କମ୍ୟୁନିଷ୍ଟ ବନ୍ଦୀ ମାନଙ୍କୁ ଦେଖିବା ପାଇଁ କଚେରୀରେ ଖୁବ ଭିଡ଼ ହୁଏ । ଦୁର୍ଦ୍ଧାନ୍ତ ଡି.ଏସ.ପି. ମନବୋଧ ପଣ୍ଡା ଓ ଗଂଗାଧର ଦ୍ୱିବେଦୀ ଇନସ୍‌ପେକ୍ଟର ମକଦ୍ଦମାର ତତ୍ତ୍ୱାବଧାନ କରୁଥା'ନ୍ତି । ପରେ ତତ୍‌କାଳୀନ ସରକାରୀ ଓକିଲ ବାଂଛାନିଧି ମହାପାତ୍ର ସରକାରଙ୍କ ପକ୍ଷରୁ ଅଭିଯୋକ୍ତା ନିଯୁକ୍ତ ହେଲେ । କଟକ ଜେଲ ଭିତରେ ଗୋଟିଏ ସ୍ୱତନ୍ତ୍ର କୋଠରୀରେ ବିଚାର ହେବ ବୋଲି ସରକାର ନିଷ୍ପତ୍ତି କଲେ । ଏହାର ଦୁଇଟି ଉଦ୍ଦେଶ୍ୟ ଥିଲା- ଖୋଲା ବିଚାରରୁ କମ୍ୟୁନିଷ୍ଟମାନେ ଯେପରି ରାଜନୈତିକ ଫାଇଦା ଉଠାଇ ନପାରିବେ ଏବଂ ଓକିଲଙ୍କ ସାହାଯ୍ୟରୁ ଯେପରି କାର୍ଯ୍ୟତଃ ବଂଚିତ ହେବେ । କାର୍ଯ୍ୟବ୍ୟସ୍ତ ଓକିଲମାନଙ୍କ ପକ୍ଷରେ କଚେରୀ ହତା ଛାଡ଼ି ଜେଲ ଭିତରକୁ ଯାଇ ମୋକଦ୍ଦମା ଚଳାଇବା

ନିତାନ୍ତ ଅସୁବିଧା ଜନକ । ଏଣେ ସ୍ପେଶିଆଲ ମ୍ୟାଜିଷ୍ଟ୍ରେଟ୍ ଲାଲ୍ ଆଇ.ସି.ଏସ୍ ମିଜାଜ୍ ଓ ରୁକ୍ଷ ବ୍ୟବହାର ଦେଖାଇବାରେ ଧୁରନ୍ଧର । ବିଚାରକର କୌଣସି ଗୁଣ ତାଙ୍କର ନଥିଲା । ବରଂ ଖୋଲାଖୋଲି ସରକାର-ପ୍ରୀତି ଦେଖାଇବାକୁ ସେ କୁଣ୍ଠିତ ନ ଥିଲେ । ତାଙ୍କଠାରୁ ନିରପେକ୍ଷ ନ୍ୟାୟ ବିଚାର ଆଶା କରାଯାଉ ନଥିଲା । ଏଣୁ ସ୍ଥାନୀୟ ଓକିଲମାନଙ୍କ ପରାମର୍ଶ କ୍ରମେ ନିଷ୍ପତି ହେଲା, କଲିକତାର ଜଣେ ବାରିଷ୍ଟରଙ୍କୁ ମୋକଦ୍ଦମା ଚଳାଇବାର ଦାୟିତ୍ୱ ଦିଆଯିବ ଓ ଏଠାର ଆଇନଜୀବିମାନେ ତାଙ୍କୁ ସାହାଯ୍ୟ କରିବେ ।

କଲିକତାର କମ୍ୟୁନିଷ୍ଟ ବଂଧୁମାନଙ୍କ ସହାୟତାରେ ଏସ୍.କେ. ମୁଖାର୍ଜୀ ନାମକ ଜଣେ ବାରିଷ୍ଟର ବିନା ଫିସରେ କଟକ ଆସି ମୋକଦ୍ଦମା ଚଳାଇଲେ । ସେ ସରକାରୀ ଓକିଲ ଓ ମାଜିଷ୍ଟ୍ରେଟଙ୍କ ଠାରୁ ଉଚ୍ଚାରେ ତିନି ଇଂଚ ଅଧିକ । ସାହେବୀ ଠାଣିରେ ଇଂରାଜୀ କହନ୍ତି । ବିଦ୍ୟା ବୁଦ୍ଧିର ଗାରିମା ଜାହିର କରି ନିଜର ପ୍ରୌଢ଼ୀ ଦେଖାଇବାକୁ ସର୍ବଦା ତତ୍ପର । ମାଜିଷ୍ଟ୍ରେଟଙ୍କ ଅଶୋଭନୀୟ ବ୍ୟବହାର ଓ ଅହେତୁକ ଆଦେଶର ପ୍ରତିରୋଧ କରିବାରେ ସେ ଥିଲେ କୁଶଳୀ ଅଭିନେତା । ସାଧାରଣତଃ ଇଷ୍ଟ ହଷ୍ଟେଲ ସାମନା ଜିଲାବୋର୍ଡ଼ ଡାକବଂଗଳାରେ ସେ ରହନ୍ତି । ବର୍ତ୍ତମାନ ଏ ବଂଗଳା ଭଂଗାହୋଇ ସେଠାରେ ମାର୍କେଟ୍ କଂପ୍ଲେକ୍ସ ତିଆରି ହୋଇଛି । କେସ ସରିଲା ପରେ ଜେଲରୁ ଫେରି ବଂଧୁମାନଙ୍କ ମେଳରେ ଚା'ପାନ କରନ୍ତି । ରାମକୃଷ୍ଣ ପତି, ଚନ୍ଦ୍ରକାନ୍ତ ଘୋଷ, ରାମଚନ୍ଦ୍ର ମିଶ୍ର, ମୁଁ ଓ ଅନ୍ୟ କଲେଜ ସାଥୀମାନେ ଏଥିରେ ଯୋଗ ଦେଉ । କେଉଁଦିନ କିପରି ମାଜିଷ୍ଟ୍ରେଟ୍‌ଙ୍କୁ ଜବତ କଲେ ବା ସରକାରୀ ଓକିଲଙ୍କୁ ଅପଦସ୍ଥ କଲେ ଅବା କେଉଁ ସରକାରୀ ସାକ୍ଷୀଙ୍କୁ ଜେରାରେ ଭାଂଗିଦେଲେ, ଏହାହିଁ ଥାଏ ବିଷୟ ବସ୍ତୁ ।

ମୋକଦ୍ଦମାରେ ମୋଟ ୪୯ ସାକ୍ଷୀ ଜମାନବନ୍ଦୀ ଦେଇଥିଲେ । ସୁପ୍ରସିଦ୍ଧ ଦନ୍ତ ଚିକିତ୍ସକ ଡାକ୍ତର ଜର୍ଜ ପଟ୍ଟନାୟକଙ୍କ ନାମରେ, କଲେଜ ଛକର ଜଣେ ଅଟାକଳ ମାଲିକଙ୍କ ନାଁରେ, ସାଗର ସାବୁନ କାରଖାନା ଜରିଆରେ ବମ୍ବେରୁ କିପରି ଚୋରା କାଗଜପତ୍ର କଟକ ଆସୁଥିଲା ସେ ବିଷୟରେ ବିସ୍ତୃତ ସାକ୍ଷ୍ୟ ଦିଆହେଲା । ଭଗବତୀ, ବୈଦ୍ୟନାଥ ଓ ଗୁରୁଚରଣ ପ୍ରଭୃତି କେଉଁଠି ଗୁପ୍ତ ବୈଠକ କରୁଥିଲେ ତାହା ମଧ୍ୟ ପ୍ରମାଣକୁ ଅଣାଗଲା । ଅନେକ ସରକାରୀ କର୍ମଚାରୀ ଚାକିରୀ ଭୟରେ ମିଥ୍ୟା ସାକ୍ଷ୍ୟ ଦେଇଥିଲେ । ପ୍ରାୟ ଛ'ମାସ ଧରି ଜେଲରେ ନ୍ୟାୟ ବିଚାରର ପ୍ରହସନ ଚାଲିବା ପରେ ଡିସେମ୍ବର ମାସରେ ମାଜିଷ୍ଟ୍ରେଟ ରାୟ ଦେଲେ । ଭଗବତୀ ପାଣିଗ୍ରାହୀ, ବୈଦ୍ୟନାଥ ରଥ ଓ

ଗୁରୁଚରଣ ପଟ୍ଟନାୟକଙ୍କୁ ଦେଢ଼ବର୍ଷ, ଅନନ୍ତ ପଟ୍ଟନାୟକ ଓ ବନମାଳୀ ଦାସଙ୍କୁ ନ'ମାସ, ଶରତ ପଟ୍ଟନାୟକ ଓ ବିଜୟ ଚନ୍ଦ୍ର ଦାସଙ୍କୁ ତିନିମାସ ସଶ୍ରମ କାରାଦଣ୍ଡ ଆଦେଶ ହେଲା । ପ୍ରମାଣ ଅଭାବରୁ ଦୁର୍ଗାଚରଣ ମହାନ୍ତି ଖଲାସ ହେଲେ । କଟକ ଜେଲରୁ ଅନୁଗୁଳ ଜେଲକୁ ସ୍ଥାନାନ୍ତରିତ ହେବା ସମୟରେ ସରକାର ବିରୋଧୀ ସ୍ଲୋଗାନ ଦେଇଥିବା ଅଭିଯୋଗରେ ସ୍ୱତନ୍ତ୍ର ମୋକଦ୍ଦମାରେ ଶରତ୍ ପଟ୍ଟନାୟକ ଓ ବିଜୟ ଚନ୍ଦ୍ର ଦାସଙ୍କୁ ନଅ ମାସ ଜେଲ ଦଣ୍ଡ ହୋଇଥିଲା ।

କମ୍ୟୁନିଷ୍ଟ ବନ୍ଦୀମାନେ ଅନୁଗୁଳ ଯିବା ପରେ ଥରେ କେତେକ ସାଂଗଠନିକ ବ୍ୟାପାରରେ ଭଗବତୀ ବାବୁଙ୍କ ପରାମର୍ଶର ଆବଶ୍ୟକତା ପଡ଼ିଲା । ରାମକୃଷ୍ଣ ପତି, ରାମ ମିଶ୍ରେ ଓ ମୁଁ ସ୍ଥିର କଲୁ ଯେ ମୁଁ ଅନୁଗୁଳ ଯାଇ ଭଣଜା ହିସାବରେ ଭଗବତୀ ବାବୁଙ୍କୁ ସାକ୍ଷାତ କରିବି ଏବଂ ଯଦି ସଂଭବ ହୁଏ ତାହାହେଲେ ଉକ୍ତ ବିଷୟରେ ତାଙ୍କ ସହିତ ଆଲୋଚନା କରିବି । ମୁଁ କୌଣସି ପ୍ରକାରର କାଗଜ ବା ଚିଠି ପତ୍ର ସାଂଗରେ ନେବି ନାହିଁ, କାରଣ ଆମେ ସଂଦେହ କରୁଥିଲୁ ଯେ ହୁଏତ ବାଟରେ ବା ଜେଲ ଗେଟ୍‌ରେ ପୋଲିସ ମୋତେ ସର୍ଚ୍ଚ କରି ପାରନ୍ତି ।

୧୯୪୦ ମସିହା ଫେବ୍ରୁଆରୀ ମାସରେ ମୁଁ ସକାଳ ଡାକଟ୍ରେନ୍‌ରେ ମେରାମୁଣ୍ଡଳୀ ଚାଲିଲି ଏବଂ ସେଠାରୁ ବସ୍‌ରେ ଅନୁଗୁଳ ଯିବାକୁ ହେବ । କଟକ ଷ୍ଟେସନରେ ଗୋଟିଏ ଇଣ୍ଟରକ୍ଲାସ କଂପାଟମେଣ୍ଟରେ ଉଠି ଦେଖିଲି ସେ ଡବାରେ ଏକମାତ୍ର ସହଯାତ୍ରୀ ମୋର ଅତି ପରିଚିତ ଜଣେ ପୋଲିସ ଅଫିସର ବଟକୃଷ୍ଣ ମହାନ୍ତି । ଆମେ ତାଙ୍କୁ 'ବଟଭାଇ' ବୋଲି ଡାକୁ । ସେ ଆମ ଗାଁ ପାଖ ଲୋକ ଓ ମୋ ନନାଙ୍କ ଛାତ୍ର । ମୋର ଜେଲ ପରିଦର୍ଶନ ପ୍ରସ୍ତାବ ଶୁଣି ସେ କହିଲେ, ଅନୁଗୁଳରେ ରହିବା ଉପଯୋଗୀ କୌଣସି ହୋଟେଲ ନାହିଁ । ଡାକବଂଗଳାରେ ମୋର ରିଜର୍ଭେସନ ନାହିଁ, ମୁଁ ରହିବି କେଉଁଠି ? ତାପରେ ସେ ପ୍ରସ୍ତାବ କଲେ, ମୋର ଯଦି ଆପତ୍ତି ନାହିଁ, ତେବେ ମୁଁ ତାଙ୍କ ବସାରେ ରହିପାରେ । ମୋ ପାଖରେ କୌଣସି ଗୋପନୀୟ କାଗଜ ପତ୍ର ନଥିଲା । ମୁଁ ଉତ୍ତର ଦେଲି, ତୁମ ଚାକିରୀରେ ଯଦି ବାଧା ନ ଆସେ, ମୋର ଆପତ୍ତି ନାହିଁ । ଅନୁଗୁଳରେ ପହଂଚିଲା ବେଳକୁ ପ୍ରାୟ ବାରଟା ବାଜିଥିଲା । ଥାନା କଂପାଉଣ୍ଡରେ ଥିବା ବଟଭାଇ ଘରେ ମୁଁ ରହିଲି । ମୁଁ କିଏ, କ'ଣ କୁଆଡ଼େ ଆସିଛି, ସେ ବିଷୟରେ ସେ ଚୁପଚାପ ରହିଲେ । ଧାଉଡ଼ିଏ ଚାଳଘର, ସେଥିରେ ପ୍ରାୟ ତିନୋଟି କୋଠରୀ । ଗୋଟିଏ ଘରେ ସେ ନିଜେ, ଅନ୍ୟ ବଖରାଟିରେ ଜଣେ ମୁସଲମାନ ପୋଲିସ ଅଫିସର । ଉଭୟ ଏକଲା ଏକଲା ରହନ୍ତି । ଏକ ରୋଷେଇରେ ଖାଆନ୍ତି ।

ମୁଁ ଉପରବେଳା ଜେଲ ଅଫିସକୁ ଗଲି । ଅଧଘଣ୍ଟାଏ ଅପେକ୍ଷା କଲା ପରେ ମୋ ଦରଖାସ୍ତ ମଂଜୁର ହେଲା । ଜେଲ ଅଫିସରେ ମୁଁ ଭଗବତୀ ବାବୁଙ୍କୁ ସାକ୍ଷାତ କଲି । ଜେଲର ଅତି ଭଦ୍ରଲୋକ । ମୋ ନାଁ ସେ ଆଗରୁ ଶୁଣି ନଥିଲେ । ଆମେ ପାରିବାରିକ ବିଷୟରେ କଥାବାର୍ତ୍ତା ଆରମ୍ଭ କରିବା ମାତ୍ରକେ ସେ ମୁହଁ ବୁଲାଇ ଅଫିସ କାମରେ ବ୍ୟସ୍ତ ରହିଲେ । ମୁଁ ଯେଉଁ ବିଷୟରେ ପରାମର୍ଶ ପାଇଁ ଯାଇଥିଲି, ସେ ବିଷୟ ଆଲୋଚନା କରିବାରେ କୌଣସି ବାଧା ରହିଲା ନାହିଁ । କିଛି ସମୟ ପରେ ବୈଦ୍ୟନାଥ ରଥ ବାହାନା କରି ଜେଲ ଅଫିସରେ ପହଂଚିଲେ ଓ ତାଙ୍କ ଗାଁ କଳାରାହାଂଗରେ ତାଙ୍କ ସ୍ତ୍ରୀଙ୍କୁ ଦେବା ପାଇଁ ଖଣ୍ଡେ ଚିଠି ମୋଡ଼ି ମାଡ଼ି ମୋ ହାତରେ ଗୁଞ୍ଜି ଦେଲେ । ଅନ୍ୟ ସାଥୀମାନେ ଜେଲ ଅଫିସର ଝରକା ସେ ପଟେ ଠିଆ ହୋଇ ମୋ ସହିତ କଥାବାର୍ତ୍ତା ହେଲେ । ସେମାନଙ୍କ ଠାରୁ ଶୁଣିଲି, ଅନନ୍ତ ପଟ୍ଟନାୟକ କବିତା ଲେଖାରେ ବ୍ୟସ୍ତ, ବୈଦ୍ୟନାଥ ରଥ କବିତାର ପ୍ରତି ଧାଡ଼ିର ଶେଷ ଶବ୍ଦ ମିଳାଇବା ନିମନ୍ତେ ଗାର ପକାଇ କବିତା ଲେଖା ଶିଖୁଛନ୍ତି । ଭଗବତୀ ବାବୁ ''ବିଶ୍ୱ ଇତିହାସ''ର ପାଣ୍ଡୁଲିପି ଆରମ୍ଭ କରିଦେଇଛନ୍ତି ଓ ଦୁଇଟି ଖାତା ପୂରଣ କରି ସାରିଲେଣି । ଅବଶ୍ୟ ଏ ବହି ପ୍ରକାଶିତ ହୋଇ ପାରିଲା ନାହିଁ । ୧୯୪୩ ମସିହାରେ ତାଙ୍କ ମୃତ୍ୟୁପରେ ଛ'ଟି ପାଣ୍ଡୁଲିପିରୁ ଦୁଇଖଣ୍ଡ କିଏ ଚୋରାଇ ନେଲା ବା କେଉଁଠି ହଜିଗଲା । ଓଡ଼ିଆ ସାହିତ୍ୟ ଇତିହାସରେ ଗୋଟିଏ ସ୍ଥାନ ଶୂନ୍ୟ ରହିଗଲା । ଜେଲରେ ଦେଢ଼ ଘଣ୍ଟା ରହିବା ପରେ ମୁଁ ବାହାରକୁ ଆସିଲି । ବଂଦୀମାନଙ୍କଠାରୁ ଶୁଣିଲି, ଜେଲର ଶିକ୍ଷୀ ଗୋପାଳ କାନୁନଗୋଙ୍କର ସଂପର୍କୀୟ ଓ ନିୟମର ସୀମା ଭିତରେ ସେ ବଂଦୀମାନଙ୍କ ପ୍ରତି ଖୁବ୍ ଭଲ ବ୍ୟବହାର କରନ୍ତି ।

ରାତିରେ ବଟଭାଇ ଭଲ ଖାଇବା ବନ୍ଦୋବସ୍ତ କରିଥିଲେ । ଟେବୁଲରେ ଖାଇ ବସିଲୁ ଆମେ ତିନିଜଣ । ମୁଁ ବଟଭାଇ ଓ ତାଙ୍କର ପଡ଼ୋଶୀ ଅଫିସର । ନାମଟା ମନେ ନାହିଁ । ଖାଇବା ବେଳେ ଉକ୍ତ ଭଦ୍ରଲୋକ କହିଲେ, କଟକରୁ ଜଣେ କମ୍ୟୁନିଷ୍ଟ ଅନୁଗୁଳ ଆସିଛି ବୋଲି ଖବର ପାଇଲି । ଖୋଜି ଖୋଜି ନୟାନ୍ତ ହେଲିଣି, କୌଣସି ଟେର ପାଉନାହିଁ । ବଟଭାଇ ଉଚ୍ଚ ଗଳାରେ ହସି ହସି କହଲେ, ''ସେ ତ ତୁମ ସାମନାରେ ବସିଛି ।'' ଭଦ୍ରଲୋକ ସ୍ତମ୍ଭୀଭୂତ ହୋଇଗଲେ । ପରେ ଶୁଣିଲି ସେ ସ୍ପେଶାଲ ବ୍ରାଂଚରେ ଜଣେ ଏ.ଏସ୍.ଆଇ. । ତହିଁଆର ଦିନ ସକାଳେ ମୁଁ ଅନୁଗୁଳ ଛାଡ଼ିଲି ।



# ପାଟନା ସମ୍ମିଳନୀ

୧୯୪୧ ମସିହା ଆରମ୍ଭରେ କଲେଜ ୟୁନିଅନ୍ ନିର୍ବାଚନ ହେଲା । ବନମାଳୀ ପଟ୍ଟନାୟକଙ୍କ ପରେ ପ୍ରଫୁଲ୍ଲ କୁମାର ପତି ସଭାପତି ନିର୍ବାଚିତ ହେଲେ । ସେତେବେଳେ ସେ ତୃତୀୟ ବାର୍ଷିକ ଶ୍ରେଣୀ ଛାତ୍ର ଓ ପରେ ଇଂରାଜୀ ଅଧ୍ୟାପକ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଭାଇସ୍‌ଚାନସେଲର ହୋଇଥିଲେ । ଦ୍ୱିତୀୟ ବାର୍ଷିକ ଶ୍ରେଣୀର ପ୍ରଦୀପ୍ତ କିଶୋର ଦାସ ଓ ପ୍ରଥମ ବର୍ଷୀୟ ମୁଁ ୟୁନିଅନର ସଂପାଦକ ଓ ସହକାରୀ ସଂପାଦକ ପଦ ପାଇଁ ଛାତ୍ରସଂଘ ତରଫରୁ ପ୍ରତିଦ୍ୱନ୍ଦିତା କରିଥିଲୁ । ଦିବାଧ୍ୟାୟୀ ସଂଘ ସଭାପତି ଓ ସଂପାଦକ ପଦ ପାଇଁ ମଧ୍ୟ ଛାତ୍ରସଂଘ ପ୍ରାର୍ଥୀ **ଛିଡ଼ା** କରାଇଥିଲେ । ଆମେ ସମସ୍ତେ ଜୟଯୁକ୍ତ ହେଲୁ । ପୁରୁଣା ଛାତ୍ରନେତାମାନେ କଲେଜ ଛାଡ଼ିଥିଲେ । ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ ଓ ବିଜୟ ଚନ୍ଦ୍ର ଦାସ ଜେଲରେ । ନୀଳମଣି ରାଉତରାୟ, ମନମୋହନ ମିଶ୍ର ଓ ବିବୁଧେନ୍ଦ୍ର ମିଶ୍ର କଲେଜରୁ ବହିଷ୍କୃତ । ଯୁଦ୍ଧ ପରିସ୍ଥିତିରେ ଚାରିଆଡ଼େ ପୋଲିସର କୋକୁଆ ଭୟ । ଏଣେ ୧୯୪୦ ଡିସେମ୍ବର ମାସରେ ନାଗପୁରରେ ଅନୁଷ୍ଠିତ ନିଖିଳ ଭାରତ ଛାତ୍ର ସମ୍ମିଳନୀରେ ଗୋଟିଏ ଗୋଷ୍ଠି ଛାତ୍ରସଂଘରୁ କମ୍ୟୁନିଷ୍ଟ ପ୍ରଭାବ ଲୋପ କରିବା ପାଇଁ ସେଥିରୁ ଅଲଗା ହୋଇ ଯାଇଥିଲେ । ତା ସତ୍ତ୍ୱେ ଓଡ଼ିଶାରେ ଛାତ୍ର ଫେଡ଼େରେସନ ପ୍ରତି ସାଧାରଣ ଛାତ୍ରମାନଙ୍କର ଯେ ସମର୍ଥନ ରହିଛି, ଏ ନିର୍ବାଚନରୁ ତାହା ପ୍ରମାଣିତ ହେଲା ।

ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ପଦ ଛାଡ଼ିବା ପରେ, ତାଙ୍କର "ସ୍ମୃତି ଓ ଅନୁଭୂତି" ଶୀର୍ଷକ ଆତ୍ମଜୀବନୀରେ ରେଭେନ୍ସା କଲେଜର ତତ୍‌କାଳୀନ ପ୍ରିନ୍ସିପାଲ୍ ସ୍ୱାଧୀନତା ସଂଗ୍ରାମ ସହିତ ସଂପୃକ୍ତ ଛାତ୍ରମାନଙ୍କୁ କିପରି ହଇରାଣ ହରକତ୍ କରୁଥିଲେ, ତାର ବହୁ ଦୃଷ୍ଟାନ୍ତ ଦେଇଛନ୍ତି । ନିଜ ଅଭିଜ୍ଞତାରୁ ମୁଁ ଗୋଟିଏ ଘଟଣା ଉଲ୍ଲେଖ କରୁଛି । ସେ ବର୍ଷ ସ୍ୱାଧୀନତା ଦିବସର ପୂର୍ବଦିନ ପ୍ରଦୀପ୍ତ କିଶୋର ଦାସ ଓ ମୁଁ ଟେନିସ ପଡ଼ିଆରେ ସ୍ୱାଧୀନତା ଦିବସ ପାଳନ କରିବାକୁ ପ୍ରିନ୍ସିପାଲ ପରିଜାଙ୍କୁ ଗୋଟିଏ ଦରଖାସ୍ତ ଦେଲୁ । ସେ କ୍ଷୁଦ୍ର ଚାରିଧାଡ଼ିଆ ଦରଖାସ୍ତଟି ପଢ଼ି ବିରକ୍ତିରେ ଅଳିଆ ଟୋକେଇକୁ ଫୋପାଡ଼ି ଦେଲେ । ସାମାନ୍ୟ ମୁଣ୍ଡ ଟେକି ରୁକ୍ଷ ଭାବରେ ଆମକୁ ଦୁଇଟି ଶବ୍ଦ କହିଲେ "ଗେଟ୍ ଆଉଟ୍ ।" ଏ ଦୁର୍ବ୍ୟବହାର ବେତ୍ରାଘାତଠାରୁ ବଳି ଅଧିକ ଅପମାନଜନକ ଥିଲା । ଆମେ ଅଫିସରୁ ଫେରି ଆସିଲୁ । ପୂର୍ବ ବର୍ଷର ଘଟଣା ଗୁଡ଼ିକ ଆଖି ଆଗରେ

ନାଚିଗଲା । କଲେଜ ହତାରେ ସଭା ନ କରି କଲେଜ ହଲ ସାମନା ପୋଷ୍ଟ ଅଫିସ ପାଖ ପଡ଼ିଆରେ ପତାକା ଉତ୍ତୋଳନ କଲୁ ।

ସେ ବର୍ଷ ଏପ୍ରିଲ ମାସରେ କଟକରେ ପ୍ରାଦେଶିକ ଛାତ୍ର ସମ୍ମିଳନୀ ଅନୁଷ୍ଠିତ ହେଲା । ବହୁ ଦୂର ଦୂରାନ୍ତରୁ ହାଇସ୍କୁଲ ଛାତ୍ରମାନେ ପ୍ରତିନିଧି ଭାବରେ ଯୋଗ ଦେଇଥିଲେ । ରେଭେନ୍ସା କଲେଜ ଓ ବ୍ରହ୍ମପୁର ଖଲ୍ଲିକୋଟ କଲେଜରୁ ମଧ୍ୟ ବହୁ ସଂଖ୍ୟାରେ ଛାତ୍ର ଯୋଗ ଦେଇଥିଲେ । ସଭାପତି କଲିକତାର ଆନନ୍ଦ ବଜାର ପତ୍ରିକାର ସୁବିଖ୍ୟାତ ସଂପାଦକ ଶ୍ରୀ ସତ୍ୟେନ ମଜୁମଦାର ଓ ମୁଖ୍ୟବକ୍ତା ସମାଜର ତତ୍କାଳୀନ ପରିଚାଳକ ଶ୍ରୀ ରାଧାନାଥ ରଥ । ସମ୍ମିଳନୀ ସୁରୁଖୁରୁରେ ଶେଷ ହେଲା । ବୀରେନ୍ ମିତ୍ର (ଭବିଷ୍ୟତରେ ମୁଖ୍ୟ ମନ୍ତ୍ରୀ) ସାଧାରଣ ସଂପାଦକ ଓ ଆମେ କେତେଜଣ କାର୍ଯ୍ୟନିର୍ବାହୀ ସମିତିକୁ ନିର୍ବାଚିତ ହେଲୁ ।

ପୁରୀରେ ଜିଲା ଛାତ୍ର ସମ୍ମିଳନୀ ନରସିଂହ ତ୍ରିପାଠୀ ଓ ଉପେନ୍ଦ୍ର ମହାନ୍ତି ଆୟୋଜନ କରିଥିଲେ । କଲିକତା ଯୁଗାନ୍ତର ଗ୍ରୁପର ଶ୍ରୀ ଭୂପେନ ଦତ୍ତ ସଭାପତି ଓ ଶ୍ରୀ ଭୌମିକ ମୁଖ୍ୟ ବକ୍ତା । କଟକରୁ ସଂପାଦକ ବୀରେନ ମିତ୍ର, ବନମାଳୀ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର ଓ ମୁଁ ଅତିଥି ଭାବରେ ଯୋଗ ଦେଇଥିଲୁ । କୌଣସି ସାଧାରଣ ସ୍ଥାନରେ ସଭା କରିବାର ସୁବିଧା ମିଳିଲା ନାହିଁ । ପୁରୀ ବାଲିସାହିରେ କଂଗ୍ରେସ ନେତା ଭଗବାନ ପ୍ରତିହାରୀଙ୍କର ଗୋଟିଏ ଖୋଲା ପଡ଼ିଆ ଥାଏ । ତାଙ୍କର ସମ୍ମତି କ୍ରମେ ସେହିଠାରେ ସଭା ହେଲା । ସଭା ଆରମ୍ଭ ହେବାର କିଛି ସମୟ ଆଗରୁ ଖବର ମିଳିଲା, ଆମର ପ୍ରତିପକ୍ଷ ଗୋଷ୍ଠି ଯେଉଁମାନେ ୧୯୪୦ ମସିହାରେ ଛାତ୍ରସଂଘରୁ ଅଲଗା ହୋଇ ଯାଇଥିଲେ, ସେମାନେ ଗୁଣ୍ଡା ଲଗାଇ ସଭାରେ ଗୋଳମାଳ କରିବେ । ଖବରକୁ ଅବିଶ୍ୱାସ କରିବାର କାରଣ ନଥିଲା, କାରଣ ପୁରୀର ଜଣେ ପ୍ରସିଦ୍ଧ ଗୁଣ୍ଡା ଫକୀରା ଡଗରାକୁ ସମ୍ମିଳନୀ ସାମନା ରାସ୍ତାରେ ପଇଁତରା ମାରିବାର ଦେଖାଗଲା । ବନମାଳୀ ପଟ୍ଟନାୟକ ବୀରେନ ଦା ଓ ନରସିଂହ ପ୍ରଭୃତି ଗୋଟିଏ ଉପାୟ ଉଦ୍‌ଭାବନ କଲେ । ମୁଁ ଓ ରେଭେନ୍ସା କଲେଜର ଜଣେ ସ୍ୱାସ୍ଥ୍ୟବାନ ଛାତ୍ର ଧ୍ରୁବଚରଣ ମହାନ୍ତି ଓ ନିମାପଡ଼ାର ଜଣେ ଛାତ୍ର (ନାମ ମନେ ନାହିଁ) ଗେଟ୍‌ରେ ରହି ସଭାରେ ଶୃଙ୍ଖଳା ରକ୍ଷାର ଦାୟିତ୍ୱ ନେବୁ । ଆମକୁ ପୁରୀରେ କେହି ଚିହ୍ନି ନଥିଲେ, ଏଣୁ ଏ ଦାୟିତ୍ୱ ନେବା ପାଇଁ କୁଣ୍ଠା ନଥିଲା । ଆମେ ଗେଟ୍‌ରେ ବାହୁସ୍ଫୋଟ ମାରି ଏପରି ବ୍ୟବହାର କରିବୁ, ଯେପରି ଫକୀରା

ଫଗିରା ଓ ତାର ସାଥିମାନେ ଜାଣିବେ ଯେ ଆମେ ତାଙ୍କୁ ପ୍ରତିରୋଧ କରିବାକୁ ତିଆର ଅଛୁ । ପୁରୀର ଜଣେ କେହି ଛାତ୍ର ତିନିଟା ରୋଲ ବାଡ଼ି ଆଣି ଦେଲା । ଆମେ ମୁଣ୍ଡ ବାଳ ଅସଜ୍ଜିତ କରି, ସାର୍ଟ କହୁଣୀ ଉପରକୁ ମୋଡ଼ି, ହାତରେ ରୋଲର ଧରି ସଭା ସାମନା ରାସ୍ତାରେ ପଇଁତରା ମାରିଲୁ । ଭୂପେନ ଦତ୍ତ ଓ ଭୌମିକ୍ଙ୍କ ଭାଷଣ ପରେ ଦେଖାଗଲା ଫକୀରା ଓ ତାର ସାଥିମାନେ ପଳାୟନ କରିଛନ୍ତି । ଆମେ ଯେ ଗୁଣ୍ଡାମାନଙ୍କ ଭିତରେ ସଫଳତାର ସହ ଆତଙ୍କ ସୃଷ୍ଟି କରି ପାରିଥିଲୁ, ସେଥିପାଇଁ ଅନେକ ବଂଧୁ ଆମକୁ ବଧାଇ ଦେଲେ । ତହିଁଆର ଦିନ ସକାଳେ ମୁଁ ଭଦ୍ରଲୋକ ବେଶରେ ସଭା ମଣ୍ଡପରୁ ଭାଷଣ ଦେଲି । ଭଗବାନ ପ୍ରତିହାରୀଙ୍କର ମ୍ୟାନେଜର ଆମ ଗାଁର ସ୍ୱର୍ଗୀୟ ପୀତାମ୍ବର ଦାସ ମତେ ସାବଧାନ କରିଦେଲେ, ଫକୀରା ସହିତ ଟକରାର କରିବା ନିରାପଦ ନୁହେ । ସାଥୀ ଧ୍ରୁବ ଚରଣ ମହାନ୍ତି ଆଉ ନାହାନ୍ତି । ସେହି ବର୍ଷ ଜୁଲାଇ ମାସରେ ସାମାନ୍ୟ ଜ୍ୱର ରୋଗରେ ଆକ୍ରାନ୍ତ ହୋଇ ସବୁ ବଂଧୁମାନଙ୍କ ଠାରୁ ଚିର ବିଦାୟ ନେଇଛନ୍ତି ।

ପୁରୀ ସମ୍ମିଳନୀରୁ ଫେରିଲା ବେଳେ ବାଟରେ ଆଉ ଗୋଟାଏ କାଣ୍ଡ ଘଟିଲା । ବନମାଳୀ ପଟ୍ଟନାୟକ ପୁରୀରେ ରହିଗଲେ । ମୁଁ, ବୀରେନ ଦା, ରାମ ମିଶ୍ରେ ଓ ଅନ୍ୟ ଜଣେ ତାଳଚେର ଟ୍ରେନରେ କଟକ ଫେରିଲୁ । କାହାରି ପାଖରେ ପଇସା ନାହିଁ । ସାହସ କରି ଗୋଟିଏ ଉପର ଶ୍ରେଣୀ ଡବାରେ ଉଠିଲୁ । ଭାବିଥିଲୁ, କଟକ ଷ୍ଟେସନରେ ପହଂଚିଲେ ଆମକୁ ଅଟକାଇବ କିଏ ? କିନ୍ତୁ ଖୋର୍ଦ୍ଧା ରୋଡ଼ରେ ଟି.ଟି. ଆଇ ଆସି ଚେକ୍ କଲେ । ଆମେ ଦମ୍ଭର ସହିତ କହିଲୁ, କଟକ ଷ୍ଟେସନରେ ପଇସା ଦେବୁ । ବଡ଼ି ଭୋରରେ ଗାଡ଼ି କଟକରେ ପହଂଚିଲା । କିନ୍ତୁ ଚିହ୍ନା ଲୋକ କେହି ଦେଖା ହେଲେ ନାହିଁ । ବୀରେନ ଦା ଗେଟ୍ ବାହାରକୁ ଯାଇ ଖଇରାତି ମିଆଁ ଘୋଡ଼ାଗାଡ଼ୀ ବାଲାଠାରୁ ଟଂକା ଧାର ଆଣି ଟି.ଟି.ଆଇକୁ ଦେଲା । ସେହି ଘୋଡ଼ାଗାଡ଼ିରେ ଆମେ ଟାଉନକୁ ଫେରିଲୁ ।

ସେହି ବର୍ଷ ଅଗଷ୍ଟ ଶେଷ ଆଡ଼କୁ ବୀରେନଦା ଗୁରୁତର ଅସୁସ୍ଥ ହୋଇ ମେଡ଼ିକାଲ ସ୍କୁଲ ଡାକ୍ତରଖାନାରେ ଭର୍ତ୍ତି ହେଲେ । ତାଙ୍କର ଗୋଡ଼ ହାତ ଅଚଳ ହୋଇଗଲା, ଗୋଟାଏ ରକମର ପକ୍ଷାଘାତ । ଦୀର୍ଘ ନ'ମାସ କାଳ ସେ ଡାକ୍ତରଖାନାରେ ପଡ଼ି ରହିଲେ । ଘରର କେହି ତାଙ୍କର ଯତ୍ନ ନେଉ ନଥାନ୍ତି । ଏପରିକି ଦେଖିବାକୁ ମଧ୍ୟ ଯାଆନ୍ତି ନାହିଁ । ବଂଧୁ ନରସିଂହ ତ୍ରିପାଠୀ,

ରାମଚନ୍ଦ୍ର ରାମ ଓ ରାମଚନ୍ଦ୍ର ମିଶ୍ର ତାଙ୍କର ସେବା ଓ ଚିକିତ୍ସା ଦାୟିତ୍ୱରେ ରହିଲେ । ସାଧାରଣ ସଂପାଦକଙ୍କ ଅସୁସ୍ଥତା ହେତୁ ଛାତ୍ରସଂଘର କାର୍ଯ୍ୟରେ ବହୁ ବିଭ୍ରାଟ ସୃଷ୍ଟି ହେଲା । କିନ୍ତୁ ସବୁଠାରୁ ବଡ଼ ବିଘ୍ନାତ ଆରମ୍ଭ ହେଲା ଡିସେମ୍ବର ମାସରେ । ଛାତ୍ରସଂଘ ଏପରି ଏକ ନିଷ୍ପତ୍ତି ନେଲେ, ଯାହା ଫଳରେ ଛାତ୍ର ଆନ୍ଦୋଳନ ସିଧା ସଳଖ ଦୁଇ ଭାଗରେ ବିଭାଜିତ ହେଲା । ୧୯୪୧ ଡିସେମ୍ବର ଶେଷରେ ପାଟନାରେ ନିଖିଳ ଭାରତ ଛାତ୍ର ସମ୍ମିଳନୀ ଅନୁଷ୍ଠିତ ହୁଏ । ଭାରତର ବିଭିନ୍ନ ପ୍ରାନ୍ତରୁ ବହୁ ପ୍ରତିନିଧି ଯୋଗ ଦେଇଥାନ୍ତି । ଶ୍ରୀନଗରରୁ ଜି.ଏମ୍.ସାଦିକ୍ (ପରେ କାଶ୍ମୀରର ମୁଖ୍ୟମନ୍ତ୍ରୀ) ଦିଲ୍ଲୀରୁ ଫାରୁକି, କଲିକତାର ଅନ୍ଧ ବାଗ୍ମୀ ସାଧନ ଗୁପ୍ତ (ପରେ ଆଡ୍‌ଭୋକେଟ ଜେନେରାଲ) ଲକ୍ଷ୍ନୌରୁ ପ୍ରସିଦ୍ଧ କବି ସର୍ଦ୍ଦାର ଜାଫ୍ରି, ବନାରସରୁ ନୀଳମଣି ରାଉତରାୟ 'ଓ ଓଡ଼ିଶାରୁ ଦୁର୍ଗାଚରଣ ମହାନ୍ତି, ଜଗତକୃଷ୍ଣ ଦାସ, ବିପିନ ବିହାରୀ ଦାସ, ରାମଚନ୍ଦ୍ର ରାମ, ସତ୍ୟବାଦୀ ମିଶ୍ର, ଗଗନ ବିହାରୀ ଜେନା ଓ ମୁଁ ଯୋଗ ଦେଇଥାଉ । ପଂଜାବ କଂଗ୍ରେସ କମିଟିର ସଭାପତି ମିଆଁ ଇଫ୍‌ତିଖାଁରୁଦ୍ଦିନ୍ ଏହି ସମ୍ମିଳନୀର ସଭାପତି । ଓଡ଼ିଶା ପ୍ରତିନିଧି ଦଳ ସମ୍ମିଳନୀ ପୂର୍ବର ରାତି ପାହାନ୍ତିଆରେ ପାଟନାରେ ପହଂଚିଲେ । ଡିସେମ୍ବର ଶେଷରେ ପାଟନାରେ କେତେ ଶୀତ ହୁଏ, ସେ ବିଷୟରେ ଆମର ଧାରଣା ନଥିଲା । ସାଧାରଣ ଗରମ କୋଟ ମଧ୍ୟ ଆମର କାହାରି ନ ଥିଲା । ଟ୍ରେନରୁ ଓହ୍ଲାଇଲା ବେଳକୁ ଆମ ସମସ୍ତଙ୍କର ଓଠ ଫାଟି ଯାଇଥାଏ । ଷ୍ଟେସନରେ ଆମକୁ ଅଭ୍ୟର୍ଥନା କରିବା ପାଇଁ ପାଟନାର ବହୁ ଛାତ୍ର କର୍ମୀ ଉପସ୍ଥିତ ଥାଆନ୍ତି । ଆମେ ଗାଡ଼ିରୁ ଓହ୍ଲାଇ ସ୍ଲୋଗାନ ଦେବାକୁ ଆରମ୍ଭ କଲୁ "ଡାଉନ୍ ଡାଉନ୍ ଇଂମପେରିଆଲିଷ୍ଟ ଓ୍ୟାର" । ଅଭ୍ୟର୍ଥନାକାରୀମାନେ ଜବାବ ଦେଲେ "ଅପ୍ ଅପ୍ ପିପ୍‌ଲସ ଓ୍ୟାର" । ଆମେ ଚମକି ପଡ଼ିଲୁ । ପ୍ରଥମେ ଭାବିଲୁ, ସେମାନେ ଭୁଲରେ କ'ଣ କହୁଛନ୍ତି । ଷ୍ଟେସନରୁ ପାଟନା ସିଟି କ୍ୟାଂପ ପର୍ଯ୍ୟନ୍ତ ଶୋଭାଯାତ୍ରା ଚାଲିଲା । ଆମେ ଯେତେଥର ଡାକୁ "ଇଂମପେରିଆଲିଷ୍ଟ ଓ୍ୟାର- ଡାଉନ୍ ଡାଉନ୍," ସେମାନେ ପ୍ରତ୍ୟୁତ୍ତର ଦିଅନ୍ତି "ପିପୁଲ୍‌ସ ଓ୍ୟାର ଅପ୍ ଅପ୍" । ବିସ୍ମୟର ସୀମା ରହିଲା ନାହିଁ । ସିଟିରେ ପହଞ୍ଚିଲା ବେଳକୁ ସକାଳ ହୋଇ ଆସୁଥାଏ । ଜଣେ କିଏ କାନରେ ଚୁପ୍ ଚୁପ୍ କହିଲା, ପାର୍ଟିନୀତି ବଦଳି ଯାଇଛି । କମ୍ୟୁନିଷ୍ଟ ପାର୍ଟି ମତରେ ଏହା ବର୍ତ୍ତମାନ ସାମ୍ରାଜ୍ୟବାଦୀ ଯୁଦ୍ଧ ନୁହେ, ଏହା ଏକ ଜନଯୁଦ୍ଧ । ପରିବର୍ତ୍ତନର ଏ ଆଭାସରେ ମୁଣ୍ଡ ଘୁରେଇବାକୁ ଆରମ୍ଭ କଲା ।

✓ ପହଂଚିବା ମୁହୂର୍ତ୍ତରୁ ବିଭିନ୍ନ କ୍ୟାଂପରେ ଆରମ୍ଭ ହେଲା ଗମ୍ଭୀର ଆଲୋଚନା । ସାଇକ୍ଲୋଷ୍ଟାଇଲ କରା କେତେଖଣ୍ଡ କାଗଜ, ସବୁ କ୍ୟାଂପରେ ବଣ୍ଟା ଯାଉଥାଏ । ବମ୍ବେ ଓ ଦିଲ୍ଲୀରୁ ଆସିଥିବା ଦୁଇଜଣ ପ୍ରତିନିଧି ପେରିନ୍ ରମେଶଚନ୍ଦ୍ର ଓ ଓ୍ୟାଇ.ଡ଼ି. ଶର୍ମା (ବର୍ତ୍ତମାନ ଦିଲ୍ଲୀର ଜଣେ ଟ୍ରେଡ୍‌ୟୁନିଅନ୍ ନେତା) ଏହି ଆଲୋଚନାରେ ମୁଖ୍ୟ ପ୍ରବକ୍ତା ଥାଆନ୍ତି । ଏମାନେ ପାର୍ଟିକର୍ମୀ ବୋଲି ଶୁଣିଲୁ । ଏମାନଙ୍କର ବକ୍ତବ୍ୟ ଥିଲା ୧୯୪୧ ଜୁନ ୨୨ ତାରିଖରେ ହିଟଲର ସୋଭିୟେଟ୍ ରୁଷ ଆକ୍ରମଣ କଲା ପରେ, ବିଶ୍ୱଯୁଦ୍ଧର ଚରିତ୍ର ବଦଳି ଯାଇଛି । ମଣିଷ ସଭ୍ୟତାର ବଡ଼ ଶତ୍ରୁ ହିଟଲର ଓ ମୁସୋଲିନୀ ସାରା ୟୁରୋପକୁ ଦଖଲ କରି, ଅନ୍ୟ ଦେଶର ସ୍ୱାଧୀନତା ଅପହରଣ କରି, ଶ୍ରମିକ, କମ୍ୟୁନିଷ୍ଟ ଓ ୟୁହିଦୀମାନଙ୍କୁ ଲକ୍ଷ ସଂଖ୍ୟାରେ ହତ୍ୟା କରି ପୃଥିବୀରେ ଏକ ବର୍ବର ଫାସିଷ୍ଟ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ଚାହାନ୍ତି । ଏହି ଦୁର୍ଦ୍ଧର୍ଷ ଫାସିଷ୍ଟ ସାମ୍ରାଜ୍ୟରେ ଭାରତର ସ୍ୱାଧୀନତା ଦାବୀ ପ୍ରହେଳିକାରେ ପରିଣତ ହେବ । ବ୍ରିଟିଶ ସାମ୍ରାଜ୍ୟବାଦ ଅଧୀନରୁ ଯାଇ ଆମେ ଏକ ଆହୁରି ଶକ୍ତିଶାଳୀ ରାକ୍ଷସୀ ଶକ୍ତିର କବଳରେ ପଡ଼ିବୁ । ଏଣୁ ହିଟଲର ବିରୁଦ୍ଧରେ ରୁଷିଆ ଓ ଇଂଲଣ୍ଡର ସହଯୋଗରେ ଚାଲିଥିବା ଯୁଦ୍ଧ ଉଦ୍ୟମକୁ ବ୍ୟାହତ କରିବା ଉଚିତ ହେବ ନାହିଁ । ନହେଲେ ହିଟଲର୍ ଓ ମୁସୋଲିନୀ ସାରା ଦୁନିଆକୁ ଗ୍ରାସ କରିଯିବେ ।

ସେତେବେଳକୁ ହିଟଲର ଫ୍ରାନ୍ସ, ହଲାଣ୍ଡ, ବେଲଜିୟମ, ଅଷ୍ଟ୍ରିଆ, ଚେକୋସ୍ଲୋଭାକିଆ ପ୍ରଭୃତି ଦେଶ ଦଖଲ କରି ସୋଭିୟେଟ ରୁଷ ଉପରେ ଆକ୍ରମଣ୍ କରିଥାଏ । ନାଜୀ ବାହିନୀ ସାରା ୟୁରୋପକୁ ଅକ୍ତିଆର କରି ପୂର୍ବ ଦିଗକୁ ମାଡ଼ି ଚାଲି ଥାଆନ୍ତି । ହଜାର ହଜାର ୟୁହିଦୀଙ୍କୁ ଅନାହାର ଓ ବିଷ ଗ୍ୟାସ ଦେଇ ହତ୍ୟା କରାଯାଉଥାଏ । ଲଣ୍ଡନ ଉପରେ ପ୍ରତିଦିନ ବୋମା ବର୍ଷଣ ଚାଲିଥାଏ । ପରେ ପରେ ଜାପାନ ମଧ୍ୟ ଏହି ଫାସିଷ୍ଟ ଶକ୍ତିଙ୍କ ସହିତ ଯୋଗ ଦେଇ ଆମେରିକାର ପାର୍ଲ ହାର୍ବର ଉପରେ ଆକ୍ରମଣ କଲା । ଏ ପରିସ୍ଥିତରେ ଦୁନିଆର ପ୍ରଗତିଶୀଳ ବୁଦ୍ଧିଜୀବୀ ଓ ଚିନ୍ତାଶୀଳ ଲୋକେ ଫାସିଷ୍ଟ ଶକ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଏପରିକି ପଣ୍ଡିତ ଜହରଲାଲଙ୍କ ପରି ବହୁ କଂଗ୍ରେସ ନେତା ମଧ୍ୟ ଫାସିବାଦର ଘୋର ବିରୋଧୀ ଥିଲେ ଓ ହିଟଲରୀ ଆକ୍ରମଣର ନିନ୍ଦୁକ ଥିଲେ । ତଥାପି ଭାରତ ଥିଲା ପରାଧୀନ, ଭାରତୀୟ ଜନସାଧାରଣଙ୍କ ଗୋଡ଼ରେ ବେଡ଼ି । ଯୁଦ୍ଧର ପ୍ରଥମ ଅବସ୍ଥାରେ ସବୁ ପରାଜୟ ସତ୍ତ୍ୱେ, ବ୍ରିଟେନ ଭାରତର ସ୍ୱାଧୀନତା ଦାବୀ ଗ୍ରହଣ କରିବାକୁ

ନାରାଜ । ପରାଧୀନ ଭାରତ ଏ ଯୁଦ୍ଧରେ କ'ଣ ସାହାଯ୍ୟ ଦେଇ ପାରିବ? ଦାସତ୍ୱ ବ୍ୟତୀତ ତାର ଅଛି କ'ଣ? ଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମିଳୁ ନଥିଲା ।

ନୀଳମଣି ରାଉତରାୟ ବନାରସରୁ ପ୍ରତିନିଧି ଭାବରେ ଆସିଥାଆନ୍ତି । ସେ ଅବଶ୍ୟ ପ୍ରାରମ୍ଭରୁ ଦୃଢ଼ କଂଗ୍ରେସ ସମର୍ଥକ । ଓଡ଼ିଶା କ୍ୟାଂପକୁ ଆସି ସେ ଆମ୍ଭମାନଙ୍କ ସହିତ ଆଲୋଚନା କରୁଥାନ୍ତି । ମୋ ସହିତ ଏକାନ୍ତରେ ଦୁଇଥର ଦୀର୍ଘ ଆଲୋଚନା ହୋଇଥିଲା । ସେ ଜନଯୁଦ୍ଧ ନୀତିର ଘୋର ବିରୋଧ କରୁଥିଲେ । ତାଙ୍କ ମତରେ ଏ ନିଷ୍ପତ୍ତି ଗ୍ରହଣ କଲେ ଛାତ୍ର ଆନ୍ଦୋଳନ ବିଭାଜିତ ହେବ ଓ ଛାତ୍ର-ଏକତା ବିପର୍ଯ୍ୟସ୍ତ ହେବ, ମୁଁ ଏକ ପ୍ରକାର ଦ୍ୱନ୍ଦ ଭିତରେ ଗତି କରୁଥାଏ ।

ପ୍ରଥମ ଦିନର ସମ୍ମିଳନୀ ବିଶିଷ୍ଟ ଲେଖକ ସଜ୍ଜାଦ୍ ଜହୀର ଉଦ୍‌ଘାଟନ କରିଥିଲେ । ତାଙ୍କ ଭାଷଣରେ ଜନଯୁଦ୍ଧ ନୀତିର ସାମାନ୍ୟ ସୂଚନା ଥିଲା । ସଭାପତି ମିଆଁ ଇଫ୍‌ତିଖାଁରୁଦ୍ଦିନ୍‌ଙ୍କ ଭାଷଣରେ 'ଜନଯୁଦ୍ଧ'ର ନାମଗନ୍ଧ ନଥିଲା । ଜଣେ ଶୃଙ୍ଖଳିତ କଂଗ୍ରେସ ଲୋକ ଭାବରେ ସେ ଦ୍ୱିତୀୟ ଦିନର ଖୋଲା ଅଧିବେଶନରେ ଯୋଗ ଦେଇ ନଥିଲେ । ସେ ଦିନ 'ଜନଯୁଦ୍ଧ' ସଂକ୍ରାନ୍ତୀୟ ରାଜନୈତିକ ପ୍ରସ୍ତାବ ଆଲୋଚିତ ହେଲା । ବିଭିନ୍ନ ପ୍ରଦେଶର ଛାତ୍ରନେତାମାନେ ପ୍ରସ୍ତାବ ସପକ୍ଷରେ ଭାଷଣ ଦେଲେ । ବନାରସ ପ୍ରତିନିଧି ନୀଳମଣି ରାଉତରାୟ ଏ ପ୍ରସ୍ତାବର ବିରୋଧ କରି ଅଧିବେଶନରେ ଭାଷଣ ଦେଲେ । ସେ ଆଶା କରୁଥିଲେ, ଓଡ଼ିଶା ପ୍ରତିନିଧିମାନେ ପ୍ରସ୍ତାବର ବିରୋଧ କରିବେ । କିନ୍ତୁ ଭୋଟ ଗ୍ରହଣ ପୂର୍ବରୁ ଆମ୍ଭମାନଙ୍କୁ କୁହାଗଲା ଯେ ଆମକୁ ପାର୍ଟି ନିର୍ଦ୍ଦେଶ ମାନିନେବାକୁ ହେବ, ପ୍ରସ୍ତାବ ସପକ୍ଷରେ ଭୋଟ ଦେବାକୁ ହେବ । ସବୁ ଦ୍ୱନ୍ଦ ଓ ସଂଶୟ ସତ୍ତ୍ୱେ ଆମ୍ଭେମାନେ ପାର୍ଟି ନିଷ୍ପତ୍ତିକୁ ମାନିନେଲୁ । କମ୍ୟୁନିଷ୍ଟ କର୍ମୀମାନଙ୍କର ଶୃଙ୍ଖଳା-ବୋଧ ଯେ ଅତି ଶକ୍ତ, ତାହା ଅବଶ୍ୟ ପ୍ରମାଣିତ ହେଲା ।

ଏ ନିଷ୍ପତ୍ତି ଠିକ୍ ନା ଭୁଲ, ଏ ବିଷୟରେ ପରେ ବହୁ ବାଦାନୁବାଦ ହୋଇଛି । ଅନେକଙ୍କ ମତରେ, ସମସ୍ତ ପ୍ରକାର ନିଷ୍ପତ୍ତି କେବଳ ଭାରତର ଜାତୀୟ ସ୍ୱାର୍ଥର ଅନୁକୂଳ ହେବା ଉଚିତ । ସୋଭିଏତ ରୁଷିଆର ବିଜୟ ଓ ସାମ୍ୟବାଦର ସୁରକ୍ଷା ଆମର କାମ୍ୟ ହେଲେ ମଧ୍ୟ, ଜାତୀୟ ସ୍ୱାର୍ଥକୁ କୌଣସିମତେ ଅବହେଳା କରାଯାଇ ନ ପାରେ । ପରାଧୀନ ଦେଶ ସାମନାରେ ସ୍ୱାଧୀନତା ପ୍ରାପ୍ତି ସର୍ବପ୍ରଧାନ ସମସ୍ୟା ଏବଂ ସ୍ୱାଧୀନତା ଦାବୀକୁ ଗ୍ରହଣ

ନ କଲେ, ସାମ୍ରାଜ୍ୟବାଦୀ ବ୍ରିଟେନ ସହିତ କୌଣସି ପ୍ରକାର ସାଲିସ ଗ୍ରହଣୀୟ ନୁହେ । ଏ ମଧ୍ୟରେ ପଚାଶ ବର୍ଷ ଗତ ହେଲାଣି । ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲା । କିନ୍ତୁ ୧୯୪୧ ମସିହାର ନିଷ୍ପତ୍ତିର ଯଥାର୍ଥତା ସଂପର୍କରେ ମୋର ସଂଶୟ ଏ ପର୍ଯ୍ୟନ୍ତ ଦୂର ହୋଇ ନାହିଁ ।

ସୋଭିୟେତ୍ କମ୍ୟୁନିଷ୍ଟ ପାର୍ଟି ଓ ସୋଭିୟେତ୍ ରାଷ୍ଟ୍ର ଦ୍ୱିତୀୟ ମହାସମର ସମୟର କେତେକ ନିଷ୍ପତ୍ତିର ଘୋର ସମାଲୋଚନା କରିଛନ୍ତି । ୧୯୩୯-୪୦ ମସିହାରେ ପୋଲାଣ୍ଡ ଦଖଲ, ଲାଟେଭିଆ ଓ ଲିଥୁଆନିଆର ସୋଭିୟେଟ ୟୁନିଅନ ସହିତ ମିଶ୍ରଣର ମଧ୍ୟ ନିନ୍ଦା କରିଛନ୍ତି । କିନ୍ତୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ପୂର୍ବ ବର୍ଣ୍ଣିତ 'ଜନଯୁଦ୍ଧ' ନୀତି ସଂପର୍କରେ ପଦେ ମଧ୍ୟ କହି ନାହାନ୍ତି । ୧୯୪୮ରୁ ୫୦ ମଧ୍ୟରେ ଅନୁସୃତ କଂଗ୍ରେସ ସରକାର ସହିତ ଅବିରାମ ସଂଘର୍ଷ ନୀତି ଭ୍ରାନ୍ତିପୂର୍ଣ୍ଣ ବୋଲି ପରେ ଏହି ନୀତିର ପରିବର୍ତ୍ତନ କରାଯାଇଛି । କମ୍ୟୁନିଷ୍ଟ ପାର୍ଟି ରୁଷ୍ ମୁଖାପେକ୍ଷୀ, ଏହି ଅଭିଯୋଗରେ ପାର୍ଟି ୧୯୬୪ ମସିହାରେ ଦୁଇ ଭାଗରେ ବିଭକ୍ତ ହୋଇଯାଇଛି । କିନ୍ତୁ ୧୯୪୧ ମସିହାରେ ଜନଯୁଦ୍ଧ ନୀତି ସଂପର୍କରେ କମ୍ୟୁନିଷ୍ଟ ଦଳ ନୀରବ ।

ଆଜିକାଲି ଶାନ୍ତି ସମ୍ମିଳନୀ ଇତ୍ୟାଦିରେ ପେରିନ୍‌ଙ୍କ (ବର୍ତ୍ତମାନ ଶ୍ରୀମତୀ ପେରିନ୍ ରମେଶ ଚନ୍ଦ୍ର) ସହିତ ବେଳେ ବେଳେ ଦେଖାହେଲେ ୧୯୪୧ ମସିହାରେ ପାଟନା ସମ୍ମିଳନୀ କଥା ମନେ ପଡ଼େ । ପେରିନ୍ ଜଣେ ସୁବକ୍ତା । କିନ୍ତୁ ତାଙ୍କର ଭାଷା ଓ ପ୍ରକାଶ ଶୈଳୀକୁ ମର୍ଯ୍ୟାଦା ଦେଲେ ମଧ୍ୟ, ତାଙ୍କର ବକ୍ତୃତାକୁ ମୁଁ ସଂଦେହ ଚକ୍ଷୁରେ ଦେଖେ । ମନେହୁଏ, ସେ ଯେପରି ଅନ୍ୟର ଢୋଲ ପିଟିବାରେ ଧୁରନ୍ଧର ।

ଆମ୍ଭେମାନେ ପାଟନାରୁ ଫେରି କଟକରେ ଦେଖିଲୁ, ସାଧାରଣ ଛାତ୍ର ସମାଜ ଛାତ୍ରସଂଘର ନୂତନ ନୀତିର ଘୋର ବିରୋଧ କରୁଛନ୍ତି । ଆମେ ରେଭେନ୍ସା କଲେଜରେ କେତୋଟି ସଭା କଲୁ । ଟାଉନ ହଲରେ ମଧ୍ୟ ସଭା କରି ଏହି ନୀତି ସପକ୍ଷରେ ଜନମତ ସୃଷ୍ଟି କରିବାକୁ ଚେଷ୍ଟା କଲୁ । କିନ୍ତୁ ସାଧାରଣ ଛାତ୍ର ଜନଯୁଦ୍ଧ ନୀତିର ତାତ୍ପର୍ଯ୍ୟ ବୁଝି ନଥିଲେ କି ଏହାକୁ ସମର୍ଥନ କରି ନ ଥିଲେ । କଂଗ୍ରେସ ସମର୍ଥକ ଛାତ୍ରନେତାମାନେ ଛାତ୍ରସଂଘରୁ ଅଲଗା ହୋଇଗଲେ । ଛାତ୍ର ଆନ୍ଦୋଳନ ବିଭାଜିତ ହେଲା ।

୧୯୪୨ ଫେବ୍ରୁଆରୀ ମାସରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଆରମ୍ଭ ହେଲା । ଦୁଇ ବର୍ଷ ଧରି ରାଜନୈତିକ କାର୍ଯ୍ୟରେ ବ୍ୟସ୍ତ ରହି ମୁଁ ପାଠ ପଢ଼ାରେ ଅକ୍ଷମଣୀୟ ଅବହେଳା କରିଥିଲି, ଯାହାକି ମୋ ଜୀବନରେ ମୁଁ କେବେ କୌଣସି କ୍ଷେତ୍ରରେ କରିନାହିଁ । ଯେଉଁ କାମ ହାତକୁ ନିଏ, ତାକୁ ଯଥାରୀତି କରିବା ମୋର ଜନ୍ମଗତ ଅଭ୍ୟାସ । କେହି କେହି ବନ୍ଧୁ ସେଥର ପରୀକ୍ଷା ନ ଦେଇ, ପରେ ଭଲ ଭାବରେ ପ୍ରସ୍ତୁତ ହୋଇ ପରୀକ୍ଷା ଦେବାକୁ ପ୍ରସ୍ତାବ କରିଥିଲେ । କିନ୍ତୁ ସାହସ ବାନ୍ଧି ପରୀକ୍ଷାଟା ଦେଇଦେଲି । ପ୍ରଥମ ଡିଭିଜନରେ ପାସ କରିବା ପାଇଁ ମୋର ଅଙ୍କ ନମ୍ବର ନିଅଣ୍ଟ ହେଲା, ଦ୍ୱିତୀୟ ଶ୍ରେଣୀରେ ପାସ କଲି । ଏପରି ଅସାଫଲ୍ୟ ଜୀବନରେ ପ୍ରଥମ । ଏ ଧକ୍କା ମତେ ବିଶେଷ ବାଧିଲା ସତ, କିନ୍ତୁ ମୁଁ ଏ ଅପମାନ ବରଦାସ୍ତ କରିଗଲି । କାରଣ ସେତେବେଳକୁ ପାଠ ଛାଡ଼ି ପୂରା ଦମ୍‌ରେ ପାର୍ଟି କାର୍ଯ୍ୟ କରିବି ବୋଲି ନିଷ୍ପତ୍ତି ନେଇ ସାରିଥିଲି । ବସ୍ତୁତଃ, ପରୀକ୍ଷା ଫଳ ବାହାରିଲା ବେଳକୁ ମୁଁ ଅଣ୍ଡର ଗ୍ରାଉଣ୍ଡ ବା ଅଜ୍ଞାତବାସରେ ରହୁଥାଏ ।



# ଅଜ୍ଞାତ ବାସ

ଷଡ଼ଯନ୍ତ୍ର ମୋକଦ୍ଦମାରେ ଅନୁଗୁଳ ଜେଲରୁ ଖଲାସ ହୋଇ ଶରତ୍ ବାବୁ (ଶରତ୍ ଚନ୍ଦ୍ର ପଟ୍ଟନାୟକ) ଅଣ୍ଡରଗ୍ରାଉଣ୍ଡ ରହୁଥାନ୍ତି । କଟକରୁ ସାଲେପୁର ରାସ୍ତାରେ ପଦ୍ମପୁର ନିକଟସ୍ଥ ତାଙ୍କର ପରିଚିତ ଜଣେ ସ୍ଥାନୀୟ ଲୋକଙ୍କ ପାନ ବରଜରେ ରହି, ସେ ସେଠାରୁ ପାର୍ଟି କାର୍ଯ୍ୟ ପରିଚାଳନା କରୁଥାଆନ୍ତି । ସନ୍ତସନ୍ତିଆ ଜାଗା ଓ ମଶା ମେଳରେ ରହି ତାଙ୍କର ସ୍ୱାସ୍ଥ୍ୟ ଖରାପ ହେଲା । ୪୨' ଜାନୁଆରୀ ଆଡ଼କୁ ସେ ଗାଁ ଛାଡ଼ି କଟକ ମହମଦିଆ ବଜାରରେ ଗୋଟିଏ ଘରେ ଲୁଚି ରହିଲେ । କୌଣସି ପ୍ରକାର ରାଜନୈତିକ କାର୍ଯ୍ୟ ପାଇଁ ସେ ଘରଟା ଅତ୍ୟନ୍ତ ଅସୁବିଧାଜନକ ଥିଲା । ସେ ବେମାର ଥିବା ଅବସ୍ଥାରେ ଥରେ ତାଙ୍କୁ ଦେଖା କରିବାକୁ ଯାଇ ତାଙ୍କ ସହିତ ଗୋଟିଏ ଦିନ ରହିଲି । କଥା ପ୍ରସଙ୍ଗରେ ମୁଁ ତାଙ୍କୁ ଜବାବ୍ ଦେଲି ଯେ, ପରୀକ୍ଷା ସରିଲେ ମୁଁ ଆସି ଅଣ୍ଡରଗ୍ରାଉଣ୍ଡ ରହିବି । ମୋର ପରୀକ୍ଷା ସରିବା ପରେ ମୁଁ ଆସି ତାଙ୍କ ସହିତ ଯୋଗ ଦେଲି । ଚନ୍ଦକାର ଜଣେ ସାଥୀ ନିରଂଜନ ମଧ୍ୟ ଆମ ସାଂଗରେ ରହିଲା । ମହମଦିଆ ବଜାର ଛାଡ଼ି ଦେଓ୍ୟାନ ବଜାରରେ ଭିକ୍ଟୋରିଆ ସ୍କୁଲ ପଛପଟ ଗୋଟିଏ ଘରେ ଆମ୍ଭେମାନେ ରହିଲୁ । ବମ୍ବେ ପାର୍ଟି ହେଡ୍‌କ୍ୱାଟରରୁ ଆସୁଥିବା ସାରକ୍ୟୁଲାର ଓ ପ୍ରଚାରପତ୍ର ଇତ୍ୟାଦିକୁ ଓଡ଼ିଆରେ ତର୍ଜମା କରିବା ମୋର ଦାୟିତ୍ୱ । ନିରଂଜନଙ୍କ ଓଡ଼ିଆ ଅକ୍ଷର ଅତି ସୁନ୍ଦର । ଓଡ଼ିଆରେ ଷ୍ଟେନସିଲ କାଗଜରେ ଲେଖି ହାତଚାଳିତ ସାଇକ୍ଲୋଷ୍ଟାଇଲ ମେସିନରେ ତାକୁ ଛପାଇବା ନିରଂଜନଙ୍କ ଦାୟିତ୍ୱ । ପ୍ରତି ସପ୍ତାହରେ ଛଦ୍ମନାମଧାରୀ ଜଣେ ଦୁଇଜଣ ସାଥୀ ରାତିରେ ଆସନ୍ତି, ଏ କାଗଜପତ୍ର ନେଇ ଅନ୍ୟ ସ୍ଥାନରୁ ବଣ୍ଟନର ବ୍ୟବସ୍ଥା କରନ୍ତି । ବିଭିନ୍ନ ଜିଲା ଓ ସବ୍ ଡିଭିଜନ ହେଡ୍ କ୍ୱାଟରରେ ଥିବା ପାର୍ଟି ଶାଖା ଗୁଡ଼ିକୁ ଏ ସବୁ କାଗଜ ପଠାଯାଏ । କମ୍ୟୁନିଷ୍ଟ ପାର୍ଟି ସେତେବେଳେ ବେଆଇନ । ଟିକିଏ ଅଣହୁସିଆର ହେଲେ, ହୁଏତ ପୁଣି ଗୋଟାଏ ଷଡ଼ଯନ୍ତ୍ର ମୋକଦ୍ଦମା ହେବ, ଏ ଆଶଙ୍କା ମନରୁ ଯାଇ ନଥାଏ ।

ଗୋଲାମ ରସୁଲ ବୋଲି ଜଣେ ମୁସଲମାନ ଯୁବକ ବୟସ ସତର ଅଠର ହେବ । ବାହାର ଦୁନିଆ ସହିତ ସେ ଆମର ସଂଯୋଜକ । ଗୋଲାମ ରସୁଲ ସ୍ଥାନୀୟ ପିଲା, ପୋଲିସ ତାକୁ ସଂଦେହ କରିବାର ଅବକାଶ ନ ଥାଏ । ସେ ପ୍ରତିଦିନ ବଜାର କରିଦିଏ, ବାହାରୁ ଖବର କାଗଜ ଆଣି ଦିଏ । ଭଲ ମନ୍ଦରେ ସେ ଆଗକୁ ଠିଆ ହୁଏ । ସେ କମ୍ୟୁନିଷ୍ଟ ପାର୍ଟିର

ସଭ୍ୟ ନୁହେ କିମ୍ବା ରାଜନୀତି ବୁଝେ ନାହିଁ । ସେ ଅତି ବିଶ୍ୱସ୍ତ । ଏତିକି ବୁଝିଥାଏ ଯେ ଆମ୍ଭେମାନେ ଦେଶ କାମରେ ପୋଲିସ ଦୃଷ୍ଟି ଅନ୍ତରାଳରେ ଏଠି ରହିଛୁ ।

ଦେଓ୍ୟାନ ବଜାର ଘରେ ରହିବା ସମୟରେ ଆମକୁ କେବେ କିମିତି ବାହାରକୁ ଯିବାକୁ ହୁଏ । ସେ ସମୟରେ ସାଲେପୁର ଅଂଚଳରେ ଚାଷୀ ଆନ୍ଦୋଳନ ଗଢ଼ି ଉଠୁଥାଏ । ନୂଆ ନୂଆ କର୍ମୀ ଆନ୍ଦୋଳନରେ ଯୋଗ ଦେଉଥାନ୍ତି । ଏହି ସବୁ କାର୍ଯ୍ୟ ତଦାରଖ କରିବା ପାଇଁ ଶରତ୍ ବାବୁ ଓ ମୁଁ ଥରେ ପଦ୍ମପୁର ଅଂଚଳକୁ ଯିବା ପାଇଁ ସ୍ଥିର କଲୁ । ରାତି ଚାରିଟାରୁ ଉଠି ଆମେ ଦୁହେଁ ସାଇକେଲରେ ମହାନଦୀର ଖରାଦିନିଆ ରାସ୍ତା ପାର ହୋଇ ଚାଲିଛୁ, ଦୁହିଁଙ୍କ ମୁଣ୍ଡରେ ଦୁଇଟା ଫେଲ୍ଟ କ୍ୟାପ୍ ଓ ଆଖିରେ ଗଗ୍‌ଲସ୍ । ଜଗତ୍‌ପୁର ପାର ହୋଇ ଖଇରା ପୋଲ ଅତିକ୍ରମ କରୁଛୁ, ହଠାତ୍ ସାମନାରେ ପଡ଼ିଲେ ସାଲେପୁର ଆଡୁ ଆସୁଥିବା ଜଣେ ସ୍ପେଶାଲ ବ୍ରାଂଚର ହେଡ୍ କନ୍‌ଷ୍ଟେବଲ କର୍ମଚାରୀ । ସେ ଆମକୁ ବେଶ୍ ଚିହ୍ନି ପାରିଲା । ସେ ଓହ୍ଲାଇବାକୁ ଚେଷ୍ଟା କଲାବେଳେ ଆମେ ତୀର ବେଗରେ ଗଡ଼ାଣି ରାସ୍ତାରେ ସାଇକେଲ ଛୁଟାଇ ଦେଲୁ । ଆମେ ପଦ୍ମପୁରରେ ନରହି ତା ପାଖ ଗୋଟିଏ ଗାଁରେ ଆଶ୍ରୟ ନେଲୁ । ସଂଧ୍ୟାବେଳେ ଖବର ମିଳିଲା କେତେଜଣ ପୋଲିସ୍‌ବାଲା ଆସି ଆମକୁ ପଦ୍ମପୁରରେ ଖୋଜୁଛନ୍ତି । ସେହି ରାତିରେ ଆମେ ସେ ସ୍ଥାନ ଛାଡ଼ି ଅନ୍ୟ ଜଣେ ସମର୍ଥକଙ୍କ ଘରକୁ ପଳାୟନ କଲୁ । ଦୁଇ ତିନି ଦିନ ମଧ୍ୟରେ ଆମ କାମ ଶେଷ ହେଲା । କିନ୍ତୁ କଟକ ଫେରିବୁ କେଉଁବାଟେ ? ଆମର ଆଶଂକା ହେଲା ଯେ ଜଗତପୁର ବାଟେ ନାଲି ରାସ୍ତାରେ ଫେରିଲେ ନିଶ୍ଚୟ ଧରା ପଡ଼ିବୁ । ତୃତୀୟ ଦିନ ଶରତ ବାବୁଙ୍କର ଜଣେ ବଂଧୁ ପରାମର୍ଶ ଦେଲେ, ସାତବାଟିଆର ଜଣେ ଭଦ୍ରଲୋକ ଆମକୁ ସାହାଯ୍ୟ କରି ପାରିବେ । ସେ ନିଜେ ସାତବାଟିଆ ଆସି ଆମକୁ ତାଙ୍କ ଘରେ ପହଂଚାଇଦେଲେ । ଉକ୍ତ ଭଦ୍ରଲୋକ ବୟସ୍କ ଲୋକ ଏବଂ ଜଣେ ଅବସ୍ଥାପନ୍ନ ଚାଷୀ । ସେ କହିଲେ, ଦୁଇଜଣ ଲୋକ ସାଂଗରେ ଦେବେ, ଯେଉଁମାନେ ଆମକୁ ରାତିରେ ମହାନଦୀ ପାର କରାଇ ଦେବେ । ତାହାହିଁ ହେଲା । ରାତି ତିନିଟାରେ ଆମେ ସାତବାଟିଆ ଛାଡ଼ିଲୁ । ଯେଉଁ ଦୁଇଜଣ ମୂଲିଆ ଆମ ସାଂଗରେ ଆସିଥିଲେ, ସେମାନେ ମହାନଦୀର ଦୀର୍ଘ ଦୁଇ ମାଇଲ ବାଲି ଉପରେ ସାଇକଲ ଦୁଇଟା ଟେକି ଟେକି ନେଇ ଆସିଲେ । ଗପ କରୁ କରୁ ତାଙ୍କ ଭିତରୁ ଜଣେ ବାଟରେ କହିଲା, ଆମେ ଯାହାଙ୍କ ଘରେ ଆଶ୍ରୟ ନେଇଥିଲୁ,

ସେ ଥିଲେ ଯୁବାବସ୍ଥାରେ ଜଣେ ପ୍ରସିଦ୍ଧ ଡକାୟତ । ଚୋରୀ ଡକାୟତି କରି ଏ ସଂପତ୍ତି କରିଛନ୍ତି । ଆମେ ତ୍ରାହି ନିଃଶ୍ୱାସ ପକାଇଲୁ ଯେ ଆମେ ସେଠୁ ଚାଲି ଆସିଛୁ । ବଡ଼ି ଭୋରରେ କାଳିଆବୋଦା ପାଖରେ ପହଂଚିଲୁ । ସପ୍ତାହକ ପରେ କଟକରେ ଶୁଣିଲୁ, ସ୍ପେସାଲ ବ୍ରାଂଚ ପୋଲିସ ଅଫିସରଂ ଆମକୁ ଠିକ୍ ଚିହ୍ନି ପାରିଥିଲେ । ଆମ ପାଖରେ ରିଭଲବର ଥିବାର ସଂଦେହ କରି, ଖଇରା ପୋଲ ଉପରେ ଆମକୁ ଧରିବାକୁ ସାହସ କରି ନଥିଲେ ।

ଦେଓ୍ୟାନ ବଢ଼ାର ଘରେ ଆମର କୌଣସି ଅସୁବିଧା ନଥିଲା । କିନ୍ତୁ ବିପଦ ବେଳେ ବେଳେ ଶୂନ୍ୟରୁ ଆସେ । ଥରେ ଆମେ ରହୁଥିବା ଘରର ପଡ଼ିଶା ଘରକୁ ପୋଲିସ ଘେରାଉ କଲେ । ଆମର ହାଲୁକ ଶୁଖିଗଲା । ସେ ଘରୁ ବାହାରକୁ ତେଇଁ ପଳାଇବାର ମଧ୍ୟ ସୁବିଧା ନ ଥିଲା । ପୁଣି ଦିନ ଦ୍ୱିପହରରେ ତଲାସି । ଆମେ ଚୁପଚାପ ମାମୁଁ ଘର ଯିବା ପାଇଁ ତିଆର ହୋଇଗଲୁ । ଅଧ ଘଣ୍ଟାଏ ପରେ ପୋଲିସବାଲା ଚାଲିଗଲେ । ଗୋଲାମ ରସୁଲ ଆସି ଖବର ଦେଲା, ଆମ ପଡ଼ୋଶୀ ଜଣେ ଦାଗୀ, ଚୋରୀ କେସରେ ତା ଘର ତଲାସୀ ଚାଲିଥିଲା । ଏହା ପରେ ଦେଖାଗଲା, ପୋଲିସ ଆସି ଥରେ ଥରେ ରାତିରେ ତା ଘର ଆଗରେ ଡାକ ମାରନ୍ତି, ସେ ଘରେ ଅଛି କି ନାହିଁ ଜାଣିବା ପାଇଁ । ଆମେ ସ୍ଥିର କଲୁ, ଏଠି ଅଧିକ ଦିନ ରହିବା ନିରାପଦ ନୁହେ ।

ସେତେବେଳକୁ ଭଗବତୀ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ ଓ ବୈଦ୍ୟନାଥ ରଥ ଅନୁଗୁଳ ଜେଲରୁ ଖଲାସ ହୋଇ ଆସି ଥାଆନ୍ତି । ସମସ୍ତେ ବସି ସ୍ଥିର ହେଲା, ପାର୍ଟି କାର୍ଯ୍ୟର ନିୟନ୍ତ୍ରଣ ପୂର୍ବବତ୍ ଅଣ୍ଡରଗ୍ରାଉଣ୍ଡ ସେଲରୁ କରାଯିବ । ଓଡ଼ିଶାର ବିଭିନ୍ନ ପାର୍ଟି ୟୁନିଟ୍ ଓ ଗଣ ସଂଗଠନର କର୍ମକର୍ତ୍ତାମାନଙ୍କ ସହିତ ଏହି ସେଲ୍ (ଗୁପ୍ତ ଅନୁଷ୍ଠାନ) ଯୋଗସୂତ୍ର ରକ୍ଷା କରିବ । ହଠାତ୍ ଯଦି ବାହାରେ ଥିବା ପାର୍ଟି ନେତାମାନେ ଗିରଫ ହୁଅନ୍ତି, ତାହାହେଲେ ପାର୍ଟି କାର୍ଯ୍ୟ ଓ ଗଣ-ସଂଗଠନ ଗୁଡ଼ିକୁ ସଂଚାଳନ କରିବା ପାଇଁ ବର୍ତ୍ତମାନର ଅଣ୍ଡରଗ୍ରାଉଣ୍ଡ ସେଲକୁ ମଜବୁତ୍ କରାଯିବା ଆବଶ୍ୟକ ।

ଏ ନିଷ୍ପତ୍ତି ପରେ ମାନସିଂପାଟଣା ପୋଖରୀ କୂଳ ଗୋଟିଏ ଚାଳ ଘରକୁ ଆମେ ସ୍ଥାନାନ୍ତରିତ ହେଲୁ । ଚାନ୍ଦନିଚୌକର ସୁପ୍ରସିଦ୍ଧ ଶିକ୍ଷକ ସ୍ୱର୍ଗୀୟ ଜୟକୃଷ୍ଣ ଦାସଙ୍କ ସାନ ପୁଅ ପର୍ଶୁରାମ ଦାସ ଓ ତାଙ୍କର ଜଣେ ବଂଧୁ ପୃଷ୍ଟି ବାବୁ ଆମର ଦେଖାଶୁଣା କରନ୍ତି । ପର୍ଶୁଦା ଜରିଆରେ ବାହାର ଦୁନିଆ

ସହିତ ଆମର ସଂପର୍କ । ପ୍ରାୟ ପାଂଚବର୍ଷ ତଳେ ଦୁନିଆରୁ ସବୁ ସଂପର୍କ ଛିନ୍ନ କରି ପର୍ଶୁଦା ଦୂର ଦିଗ୍‌ବଳୟରେ ଲୀନ ହୋଇ ଯାଇଛି । କିଛିଦିନ ପରେ ମୋଠାରୁ ଦୁଇ ବର୍ଷ ତଳ ଶ୍ରେଣୀରେ ପଢୁଥିବା ଗଗନ ବିହାରୀ ଢେନା ମଧ୍ୟ ଆମ ସହିତ ଯୋଗ ଦେଲେ । ସେ ଆସିବା ପରେ ଆମ କାମ ଅନେକଟା ଲାଘବ ହେଲା । କମ୍ୟୁନିଷ୍ଟ ଆନ୍ଦୋଳନ ବା ଛାତ୍ର ଆନ୍ଦୋଳନ ସଂକ୍ରାନ୍ତରେ ପର୍ଶୁଦା ବାହାରେ ପରିଚିତ ନଥିଲେ । ଏଣୁ ଏ ଘରକୁ ତାଙ୍କର ନିୟମିତ ଯିବା ଆସିବା କୌଣସି ସଂଦେହ ସୃଷ୍ଟି କରୁ ନଥିଲା । କିନ୍ତୁ ସଂଦେହ ସୃଷ୍ଟି ହେଲା ଆମ ନିଜ ବୋକାମୀ ହେତୁ । ମାସକୁ ମାସ ବାଳ କାଟିବା ଗୋଟାଏ ସମସ୍ୟା ସୃଷ୍ଟି କରେ । ପ୍ରତି ମାସରେ ବାରିକ ଡକାଇ ବାଳ କାଟିବାକୁ ଆମେ ନିରାପଦ ମନେ କରୁ ନଥିଲୁ । ଶରତ ବାବୁଙ୍କ ମୁଣ୍ଡରୁ ବୋଧହୁଏ ଏ ନୂଆ ବୁଦ୍ଧି ବାହାରିଲା । ସେ ପ୍ରସ୍ତାବ କଲେ, ଜଣେ ବାରିକ ଡକାଇ ଆମେ ସମସ୍ତେ ନଣ୍ଡା ହୋଇ ପଡ଼ିବା, ତାହାହେଲେ ତିନି ଚାରି ମାସ ପାଇଁ ବାରିକର ଆବଶ୍ୟକତା ରହିବ ନାହିଁ । ତଦନୁଯାୟୀ ଜଣେ ଅପରିଚିତ ବାରିକ ଡକାଇ ଆମେ ଚାରିଜଣ ନଣ୍ଡା ହୋଇ ପଡ଼ିଲୁ ।

ପୋଖରୀକୂଳେ ଏକୁଟିଆ ଘରଟା । ତିନି ବଖରା ଚାଳଘର, ସାମନାରେ ଅଗଣା, ବାହାରକୁ ଯିବା ପାଇଁ ପାଚେରୀରେ ଦରଜା । ଏଣେ ଦାଣ୍ଡ ଦରଜା ସବୁବେଳେ ବଂଦ । ଖରାଦିନରେ ପବନ ପାଇବା ପାଇଁ ଉପରବେଳା ଅନେକ ସମୟରେ ଅଗଣାକୁ ଆସିବାକୁ ହୁଏ । ସେତେବେଳେ ଚାରିଜଣ ଲଣ୍ଡିତ ମସ୍ତକ ଯୁବକ ନଜରରେ ପଡ଼ନ୍ତି । ଏ ସବୁ ବୋଧହୁଏ ବସ୍ତିବାସୀଙ୍କ ମନରେ ସଂଦେହ ସୃଷ୍ଟି କଲା । ଥରେ ଆମେ ଦେଖିଲୁ, ରାସ୍ତା ସେ ପଟ କୋଠାଘର ଛାତ ପରେ ଠିଆ ହୋଇ କେତେ ଜଣ ଯୁବକ ଆମର ଗତିବିଧି ନିରୀକ୍ଷଣ କରୁଛନ୍ତି । ପରଦିନ ମଧ୍ୟ ଠିକ୍ ସେଇ ଦୃଶ୍ୟ । ଆମେ ଅନୁଭବ କଲୁ, ଏ ଲଣ୍ଡା ମୁଣ୍ଡ ସବୁ ବିପଦର କାରଣ ହୋଇଛି । ବସ୍ତିବାଲା ବୋଧହୁଏ ଆମକୁ ଚୋର ବା ଡକାୟତ ବୋଲି ସଂଦେହ କରୁଛନ୍ତି । ଆମର ନିରାପତ୍ତା ବିପନ୍ନ । ହଠାତ୍ ଦିନେ ରାତି ଅଧରେ ଆମେ ସେ ଘର ଛାଡ଼ି ପଳାୟନ କଲୁ । ଘର ମାଲିକକୁ କରଣୀ ଅକ୍ଷରରେ ବିନା ଦସ୍ତଖତରେ ଖଣ୍ଡେ ପୋଷ୍ଟକାର୍ଡ଼ରେ ଜଣାଇ ଦେଲୁ ଯେ ଆମେ ଘର ଛାଡ଼ି ଦେଇଛୁ । ପରେ ଶୁଣିଲୁ, ଏ ଘର ବନ୍ଦୋବସ୍ତ କରିଥିବା ପୃଷ୍ଟି ବାବୁ ଘର ମାଲିକ ନିକଟରେ ଅପଦସ୍ଥ ହୋଇଥିଲେ ଓ ଆମ ପାଇଁ ଗୋଟିଏ ମାସର ଭଡ଼ା ନିଜ ହାତରୁ ଦେଇଥିଲେ ।

ମାନସିଂପାଟଣାରୁ ଆମେ ଦେଉଳସାହୀକୁ ସ୍ଥାନ ପରିବର୍ତ୍ତନ କଲୁ । ଦେଉଳସାହୀ, ତୁଳସୀପୁର ଓ ବିଦ୍ୟାନାସୀ ତିନୋଟି ସାହୀ । ଟାଉନ୍‌ରୁ ଦେଉଳ ସାହୀ ଗୋଟିଏ କିଲୋମିଟର, ରାସ୍ତାକଡ଼ରେ ଗୋଟିଏ ବୋଲି ଘର ନଥିଲା । ରାତିରେ ଏକୁଟିଆ ଯିବାକୁ ଡର ଲାଗେ । ଦେଉଳ ସାହୀର ପ୍ରଧାନ ରାସ୍ତା ଉପରେ ଦୁଇଟି ପକ୍କା ଘର । ଗୋଟିଏ ଲକ୍ଷ୍ମୀ ନାରାୟଣ ସାହୁଙ୍କର ଓ ଅନ୍ୟଟିର ମାଲିକ ଲୋକନାଥ କର । ଦେଉଳସାହୀ ତୁଳସୀପୁର ଛକରୁ ବାଁ ହାତି ଧୋବାସାହୀ ଗଳିକୁ ଗଲେ ତୃତୀୟ କୋଠା ଘରଟି ଜଣେ ବଂଗାଳୀ ସରକାରୀ କର୍ମଚାରୀଙ୍କର । ଯୁଦ୍ଧ ହେତୁ ରାଜଧାନୀ ସମ୍ବଲପୁର ସ୍ଥାନାନ୍ତରିତ ହେବା କାରଣରୁ ସେ ସମ୍ବଲପୁରରେ ରହୁଥାନ୍ତି ଓ ବିଦ୍ୟାନାସୀର ଜଣେ ଦୁଧବାଲା ଏ ଘରର ତତ୍ତ୍ୱାବଧାରକ । ପୃଷ୍ଟିବାବୁ ଘର ବନ୍ଦୋବସ୍ତ କରି ଦେଇଥିଲେ । ପ୍ରଶସ୍ତ ଖୋଲା ଜାଗା ମଝିରେ ଏକ ମହଲା ଘର । ଚାରିପଟେ ପକ୍କା ପାଚେରୀ । ସ୍ଥାନୀୟ ଲୋକେ ଶଗଡ଼ିଆ, ମୂଲିଆ ଓ ମଜୁରିଆ ଶ୍ରେଣୀର । ସଂଦେହ କରିବାର ଅବକାଶ ନ ଥାଏ । ଏ ଘରଟି ବିଶେଷ ସୁବିଧାଜନକ ହେଲା ।

କିନ୍ତୁ ଏ ଘରର ବିଶେଷ ସଦ୍‌ବ୍ୟବହାର ହୋଇ ପାରିଲା ନାହିଁ । ଏହି ସମୟରେ କମ୍ୟୁନିଷ୍ଟ ପାର୍ଟି ଉପରେ ୧୯୩୪ ମସିହାରୁ ଲାଗୁ ରହିଥିବା କଟକଣା ଉଠିଗଲା । ମୁଁ, ଶରତ ବାବୁ ଓ ଗଗନ ଜୁଲାଇ ଶେଷ ବା ଅଗଷ୍ଟ ପହିଲା ଆଡ଼କୁ ବାହାରକୁ ଆସିଲୁ । ଦେଉଳସାହୀ ଘରଟା ଖୋଲାଖୋଲି ଭାବରେ ଆମର ବସାଘର ହେଲା । ଚାନ୍ଦନୀଚୌକ ଛକ ଉପରେ ପାର୍ଟି ଅଫିସ ପାଇଁ ଗୋଟିଏ ଛୋଟ ଦୋ ମହଲା ଘର ଭଡ଼ା ନିଆହେଲା । ଭଗବତୀ ବାବୁ ପାର୍ଟି ସେକ୍ରେଟାରୀ ହେଲେ ଓ ମୁଁ ରହିଲି ଅଫିସ ଦାୟିତ୍ୱରେ । ଆମେ ଅଣ୍ଡର ଗ୍ରାଉଣ୍ଡ ଥିବା ସମୟରେ କଲେଜରେ ନାମ ଲେଖା ଶେଷ ହୋଇଥିଲା । ଚବିଶ ଘଣ୍ଟିଆ ପାର୍ଟି କର୍ମୀ ଭାବରେ କାର୍ଯ୍ୟ କରିବା ପାଇଁ, ପୂର୍ବ ନିଷ୍ପତ୍ତି ଅନୁଯାୟୀ ମୁଁ ଓ ରାମଚନ୍ଦ୍ର ମିଶ୍ର କଲେଜରେ ଯୋଗ ଦେଲୁ ନାହିଁ । ଏହାର ସଦ୍ୟ ଫଳ ଏହି ହେଲା ଯେ, ଅଗଷ୍ଟ ନ' ଆନ୍ଦୋଳନରେ ଛାତ୍ରସଂଘର ନେତାମାନେ ଗିରଫ ହୋଇଗଲେ, ଆମେ ଦୁହେଁ କଲେଜରେ ନ ଥିବା ହେତୁ ବାହାରେ ରହିଗଲୁ ।

ଅଗଷ୍ଟ ଆଠ ତାରିଖରେ ବମ୍ବେରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ବସେ । ଗାନ୍ଧିଜୀ ପୂର୍ଣ୍ଣ ସ୍ୱାଧୀନତା ପାଇଁ "କର ବା ମର" ଆହ୍ୱାନ

ଦେଲେ । କଂଗ୍ରେସ "ଭାରତ ଛାଡ଼" ବା କ୍ୱିଟ୍ ଇଣ୍ଡିଆ ପ୍ରସ୍ତାବ ଗ୍ରହଣ କଲେ । ଏକମାତ୍ର ରାଜଗୋପାଳାଚାରୀ ଏହି ପ୍ରସ୍ତାବର ବିରୋଧ କରିଥିଲେ । କିନ୍ତୁ ଗାନ୍ଧିଜୀ ବକ୍ତୃତା ଦେଲେ, ରାଜାଜୀ ନୁହନ୍ତି, ନେହୁରୁ ତାଙ୍କର ଉତ୍ତରାଧିକାରୀ ଏବଂ ପଣ୍ଡିତ ନେହେରୁ ପ୍ରସ୍ତାବକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିଥିଲେ । ନଅ ତାରିଖ ସକାଳ ପୂର୍ବରୁ ମହାତ୍ମା ଗାନ୍ଧୀ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କୁ ଗିରଫ କରାଯାଇ ଅହମଦ୍ ନଗର ଫୋର୍ଟରେ ଅଟକ ରଖା ଯାଇଥିଲା । ଭାରତସାରା କଂଗ୍ରେସ ନେତାମାନଙ୍କୁ ଗିରଫ କରାହୋଇ ଜେଲକୁ ନିଆଗଲା । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ଦାସ ଓ ରାଧାକୃଷ୍ଣ ବିଶ୍ୱାସ ରାୟଙ୍କ ସମେତ ଉଣା ଅଧିକେ ସବୁ କଂଗ୍ରେସ ନେତା ଗିରଫ କରାଗଲା । ହରେକୃଷ୍ଣ ମହତାବ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନ୍ୟ ସଦସ୍ୟମାନଙ୍କ ସହ ଅହମଦ୍ ନଗର ଫୋର୍ଟରେ ବନ୍ଦୀ ହେଲେ । କମ୍ୟୁନିଷ୍ଟ ପାର୍ଟି ସହିତ ସଂପୃକ୍ତ ବିଧାନ ସଭା ସଦସ୍ୟ ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ରାମକୃଷ୍ଣ ପତି ଓ ବୈଦ୍ୟନାଥ ରଥଙ୍କୁ ମଧ୍ୟ ଅଟକ ରଖା ହେଲା ।

ପୂର୍ବରୁ ଅଗଷ୍ଟ ଦଶ ତାରିଖରେ କଟକରେ ପ୍ରାଦେଶିକ ଚାଷୀ ସମ୍ମିଳନୀ ହେବ ବୋଲି ଆୟୋଜନ କରାଯାଇଥାଏ । ବିହାରର କୃଷକ ନେତା ସ୍ୱାମୀ ସହଜାନନ୍ଦ ସରସ୍ୱତୀ ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ନ' ତାରିଖ ଦିନ କଟକରେ ପହଂଚିଲେ । ଅନିଶ୍ଚିତ ରାଜନୈତିକ ପରିସ୍ଥିତି ହେତୁ, ତାଙ୍କ ପରାମର୍ଶରେ ଏହି ସମ୍ମିଳନୀକୁ ସ୍ଥଗିତ ରଖାଗଲା । କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ନିର୍ଦ୍ଦେଶ ଦିଆଗଲା, ଛାତ୍ରନେତାମାନେ ରେଭେନ୍ସା କଲେଜ ସାମନାରେ ସଭା ଶୋଭାଯାତ୍ରା କରି କଂଗ୍ରେସ ନେତାମାନଙ୍କର ଗିରଫର ପ୍ରତିବାଦ କରିବେ । ତଦନୁଯାୟୀ କଲେଜ ଛକରେ ସଭା ହେଲା ଏବଂ ସେହିଠାରୁ ଛାତ୍ରସଂଘର ନେତାମାନଙ୍କୁ ଗିରଫ କରାଗଲା । ମନମୋହନ ମିଶ୍ର, ବିବୁଧେନ୍ଦ୍ର ମିଶ୍ର, ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ରାମ, ସତ୍ୟବାଦୀ ମିଶ୍ର, ନରସିଂହ ତ୍ରିପାଠୀ ଓ ଶୈଳେନ୍ ମହାପାତ୍ର ପ୍ରଭୃତି ଛାତ୍ରନେତାମାନେ ଅଟକ ବନ୍ଦୀ ହେଲେ । ପୂର୍ବରୁ ଛାତ୍ର ନେତା ଅଶୋକ ଦାସ ରାଜଦ୍ରୋହ ଅଭିଯୋଗରେ ଗିରଫ ହୋଇ କଟକ ଜେଲରେ ଥାଆନ୍ତି । ଅଗଷ୍ଟ ଅନ୍ଦୋଳନରେ ଗିରଫ ହୋଇଥିବା ବନ୍ଦୀମାନେ କିଛିଦିନ କଟକ ଜେଲରେ ରହିବା ପରେ ସେମାନଙ୍କୁ ବ୍ରହ୍ମପୁର କେନ୍ଦ୍ର ଜେଲକୁ ସ୍ଥାନାନ୍ତରିତ କରାହେଲା । ଭାରତ ବ୍ୟାପୀ ବିଦ୍ରୋହର ନିଆଁ ଜଳିଲା ।

# ବମ୍ବେ ରାଜନୈତିକ ସ୍କୁଲ

୧୯୪୨ ମସିହା ଅକ୍ଟୋବର ଶେଷ ସପ୍ତାହରେ ଆମେ କଟକରୁ ମାଡ୍ରାସ ମେଲ୍‌ରେ ଖଡ଼୍ଗପୁର ଉଠିଲୁ । ଖଡ଼୍ଗପୁରରୁ ହାଉଡ଼ା-ବମ୍ବେ ମେଲରେ ବମ୍ବେ ଯାତ୍ରା । ଯାତ୍ରୀ ମୁଁ ଓ ରାମଚନ୍ଦ୍ର ମିଶ୍ର । କଟକରେ ଥିବା ସମୟରେ ବମ୍ବେ କେନ୍ଦ୍ର ପାର୍ଟି ଅଫିସରୁ ଖଣ୍ଡେ ଚିଠି ଆସିଲା, ଟ୍ରେନିଂ ପାଇଁ ରାମଚନ୍ଦ୍ର ମିଶ୍ର ଓ ଆଉ ଜଣେ ନିର୍ଦ୍ଦିଷ୍ଟ ତାରିଖ ମଧ୍ୟରେ ବମ୍ବେରେ ପହଂଚିବେ । ଚିଠିର ମର୍ମ ଆମେ ଯାହା ବୁଝିଲୁ, ରାମଚନ୍ଦ୍ର ମିଶ୍ର ଓ ସ୍ଥାନୀୟ ପାର୍ଟି କର୍ମକର୍ତ୍ତାଙ୍କ ଦ୍ୱାରା ମନୋନୀତ ଅନ୍ୟ ଜଣକୁ ବମ୍ବେ ଯିବାକୁ ହେବ । ସେତେବେଳେ ଆମ ଦୁଇଜଣଙ୍କ ବ୍ୟତୀତ ବାହାରେ ଥିଲେ ଭଗବତୀ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ ଓ ଶରତ ପଟ୍ଟନାୟକ, ଅନ୍ୟ ସମସ୍ତେ ଜେଲରେ । ଚିଠି ଯେତେବେଳେ କଟକରେ ପହଂଚେ, ସେ ସମୟରେ ଭଗବତୀ ପାଣିଗ୍ରାହୀ, ଶରତ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ ପାର୍ଟି କାର୍ଯ୍ୟ ସଂକ୍ରାନ୍ତରେ ପି.ସି. ଯୋଶୀଙ୍କ ସହିତ ସାକ୍ଷାତ କରିବା ପାଇଁ କଲିକତା ଯାଇଥାନ୍ତି । ଆଜିକାଲି ପରି ଅଫିସରେ ଫୋନ୍ ସୁବିଧା ନଥାଏ କିମ୍ବା ତୁରନ୍ତ କଲିକତା ସହିତ ସଂପର୍କ ସ୍ଥାପନ କରିବା ସହଜସାଧ୍ୟ ନଥାଏ । କ'ଣ କରାଯିବ, ଏ ଗୋଟିଏ ସମସ୍ୟା ହେଲା । ମୁଁ ରାମ ମିଶ୍ରଙ୍କୁ କହିଲି, ଚିଠିରେ ତାଙ୍କ ନାମ ଉଲ୍ଲେଖ ଅଛି, ସେ ଯାଆନ୍ତୁ । ମିଶ୍ରେ ଜିଦ୍ ଧରି ବସିଲେ, ଦୁଇଜଣ ଯିବା ପାଇଁ ଚିଠିରେ ଲେଖା ଅଛି, ମୁଁ ନ ଗଲେ ସେ ଏକଲା ଯିବେ ନାହିଁ । ବହୁ ବିଚାର ବିମର୍ଶ ପରେ ନିରଂଜନ ଜିମାରେ ଅଫିସ ଛାଡ଼ି, ଆମେ ଦୁହେଁ ଯିବା ପାଇଁ ସ୍ଥିର ହେଲା ।

ଏଣେ ଯିବା ଖର୍ଚ୍ଚ ପାଖରେ ନାହିଁ । ବମ୍ବେକୁ ଗୋଟିଏ ପାଖ ତୃତୀୟ ଶ୍ରେଣୀ ଟ୍ରେନ୍ ଭଡ଼ା ପ୍ରାୟ ପନ୍ଦର ଟଙ୍କା । ଆମେ ଏଣେ ତେଣେ ବୁଲି କୌଣସି ମତେ ଚାଳିଶ ଟଂକା ଚାନ୍ଦା ସଂଗ୍ରହ କଲୁ । ଟିକଟ ଟଙ୍କା ବାଦ ଯାଇ ହାତରେ ଦଶ ଟଂକା ଧରି ଆମେ ଟ୍ରେନରେ ଉଠିଲୁ । ଯୁଦ୍ଧ ସମୟରେ ବହୁ ଯାତ୍ରିବାହୀ ଟ୍ରେନ୍ ବାତିଲ କରାଯାଇଥାଏ । ଟ୍ରେନ୍‌ରେ ଅସମ୍ଭବ ଭିଡ଼ ହୁଏ । ତୃତୀୟ ଶ୍ରେଣୀ ଯାତ୍ରା ଯମ ଯନ୍ତ୍ରଣା ସଂଗେ ସମାନ । କୌଣସିମତେ ଠିଆ ହୋଇ ଯିବା ମଧ୍ୟ ସହଜ ନୁହେ । ଯାହାହେଉ ତିନିଦିନ ଯାତ୍ରା ପରେ ସକାଳ ଏଗାରଟା ବେଳକୁ ଟ୍ରେନ୍ ଭିକ୍ଟୋରିଆ ଟର୍ମିନସରେ ପହଂଚିଲା । ବମ୍ବେ ଦେଖିବା ଏ ପ୍ରଥମ । ଟ୍ୟାକ୍ସିରେ ଯିବାକୁ ପଇସା ନାହିଁ । ଗୋଟିଏ ଟମ୍ ଟମ୍ ଭଡ଼ା କରି ଖେତଓ୍ୱାଡ଼ୀ ମେନ୍ ରୋଡ଼ରେ ଥିବା କମ୍ୟୁନିଷ୍ଟ ପାର୍ଟି ଅଫିସ୍‌ରେ ପହଂଚିଲୁ ।

ଆମ ଦୁର୍ଭାଗ୍ୟକୁ ପି.ସି. ଯୋଶୀ କଲିକତାରୁ ଫେରି ନଥାନ୍ତି । ଆମେ କେନ୍ଦ୍ର କମିଟି ଅଫିସ ଦାୟିତ୍ୱରେ ଥିବା ଏନ୍. କେ. କ୍ରିଷ୍ଣନ୍‌ଙ୍କୁ ସାକ୍ଷାତ କଲୁ । କ୍ରିଷ୍ଣନ୍ କେରଳର ଲୋକ । ଅଙ୍କ ଶାସ୍ତ୍ରରେ ଲଣ୍ଡନରୁ ଉଚ୍ଚ ଡିଗ୍ରୀ ଲାଭ କରି ସେ କେନ୍ଦ୍ର ଅଫିସର ମୁଖ୍ୟ କାର୍ଯ୍ୟନିର୍ବାହୀ । କ୍ରିଷ୍ଣନ୍‌ଙ୍କ ରାଜନୈତିକ ବିଚାର ଧାରା ଅଙ୍କ କଷିଲା ପରି । ସେ ଜିଦ୍ ଧରି ବସିଲେ, ଚିଠିରେ ମୋ ନାଁ ନାହିଁ, ମୁଁ କାହିଁକି ଆସିଲି ? ଆମେ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲୁ, ଚିଠିରେ ଦୁଇଜଣ ଆସିବାକୁ ଲେଖା ହୋଇଥିଲା । ଜଣଙ୍କର ନାମ ଉଲ୍ଲେଖ ଥିଲା । ବିଶେଷ ପରିସ୍ଥିତିରେ ବାକି ଜଣକୁ ଆମେ ମନୋନୀତ କରିଛୁ । ଏ ଯୁକ୍ତି ଶୁଣି ସେ ଅଧିକ ଖିଟ୍ ଖିଟ୍ ହେବାକୁ ଆରମ୍ଭ କଲେ । ଯାହାହେଉ ଖେତବାଡ଼ି ମେନ ରୋଡ୍ ନିକଟରେ ପାର୍ଟି ସଦସ୍ୟମାନେ ରହୁଥିବା ଗୋଟିଏ ଘରେ ଆମ ରହିବାର ବ୍ୟବସ୍ଥା ହେଲା । ଯୋଶୀ କଲିକତାରୁ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଆମେ ସ୍ଥିର କଲୁ । ତହିଁଆର ଦିନ ସକାଳ ଦଶଟା ବେଳେ ଉପରମହଲାରେ ଥିବା ପାର୍ଟି ଅଫିସକୁ ଆମେ ଶିଡ଼ୀରେ ଉଠୁଛୁ, ଦେଖିଲୁ ପି. ସି. ଯୋଶୀ ଆମ ଆଗେ ଆଗେ ଶିଡ଼ୀରେ ଚାଲିଛନ୍ତି । ଯୋଶୀଙ୍କ ସହିତ ପୂର୍ବରୁ ବ୍ୟକ୍ତିଗତ ପରିଚୟ ନଥିଲା । ସେ ଉତ୍ତର ପ୍ରଦେଶର ଘରଓ୍ୱାଲ ଅଂଚଳର ଲୋକ । ଟିକିଏ ଗେଡ଼ା, ମୁଣ୍ଡ ବାଳ ଛୋଟ କରି କଟାନ୍ତି । ଫଟୋରେ ତାଙ୍କୁ ବହୁବାର ଦେଖିଛୁ । ପଛରୁ ଚିହ୍ନିବାରେ କୌଣସି ଅସୁବିଧା ନ ଥିଲା । ଆମେ କାହା ଅନୁମତିକୁ ଅପେକ୍ଷା ନ ରଖି ଯୋଶୀଙ୍କ ପଛେ ପଛେ ତାଙ୍କ କୋଠରୀରେ ପ୍ରବେଶ କଲୁ । ପରିଚୟ ଦେଇ ସମସ୍ତ ବିଷୟ କହିବା ପରେ ଯୋଶୀ ମୋ ପିଠି ଥାପୁଡ଼େଇ ଦେଇ କହିଲେ, ହଉ ଆସିଛ, ଠିକ୍ କରିଛ । ତିନି ଦିନ ପରେ ବମ୍ବେରେ କେନ୍ଦ୍ରୀୟ ନେତାମାନଙ୍କ ପାଇଁ ଏକ ରାଜନୈତିକ ସ୍କୁଲ ପନ୍ଦର ଦିନ ପାଇଁ ଅନୁଷ୍ଠିତ ହେବ ଓ ତୁମେ ସେଥିରେ ଯୋଗ ଦେବ । ରାମ ଚନ୍ଦ୍ର ମିଶ୍ର ଏହି ସମୟରେ ପୁନାରେ ଅନୁଷ୍ଠିତ ପନ୍ଦର ଦିନିଆ ଫିଜିକାଲ ଟ୍ରେନିଂ କ୍ଲାସରେ ଯୋଗ ଦେବେ । କଥା ପ୍ରସଙ୍ଗରେ କହିଲେ, ଭଗବତୀ ପାଣିଗ୍ରାହୀଙ୍କଠାରୁ ସେ ମୋ ବିଷୟରେ ସବୁ ଶୁଣିଛନ୍ତି । ବ୍ୟାପାରଟା ଏଡ଼େ ସହଜରେ ସମାଧାନ ହେବ ବୋଲି ଆମେ ଆଶା କରି ନ ଥିଲୁ ।

ପି.ସି. ଯୋଶୀ, ପୁରା ନାମ ପୂରଣ୍ ଚନ୍ଦ୍ର ଯୋଶୀ, ଜଣେ ବିଚକ୍ଷଣ ବିପ୍ଳବୀ ଓ ଅସାଧାରଣ ବୁଦ୍ଧିଜୀବୀ । ଏସ.ଏ. ଡାଙ୍ଗେ, ବି.ଟି. ରଣଦିବେ ଓ ଅଜୟ ଘୋଷ ପ୍ରଭୃତି କମ୍ୟୁନିଷ୍ଟ ପାର୍ଟିର ଆଦି ନେତାମାନଙ୍କ ମଧ୍ୟରୁ ସେ ଜଣେ । ଡାଙ୍ଗେ ଓ ରଣଦିବେଙ୍କ ଠାରୁ ବୟସରେ ସାନ ହେଲେ

ମଧ୍ୟ ନିଜର ଅସାମାନ୍ୟ ପ୍ରତିଭା ଓ ସଂଗଠନ ଶକ୍ତି ବଳରେ ଅତି ଅଳ୍ପ ବୟସରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ ନିର୍ବାଚିତ ହୋଇଥିଲେ । ତାଙ୍କର କଲମ ଥିଲା ଅତି ଶକ୍ତିଶାଳୀ । ରାଜନୈତିକ ପରିସ୍ଥିତିର ବିଶ୍ଳେଷଣ କରି ପିପୁଲସ୍ ଓ୍ୟାର କାଗଜରେ ସେ ଯେଉଁ ଲେଖାଗୁଡ଼ିକ ଲେଖୁଥିଲେ, ବିଭିନ୍ନ ରାଜନୈତିକ ମହଲରେ ସେ ଗୁଡ଼ିକ ବିଶେଷ ଆଦୃତ ହେଉଥିଲା । ୧୯୪୩ ମସିହାରେ ବଂଗଳା ଦୁର୍ଭିକ୍ଷ ସମୟରେ ପି.ସି. ଯୋଶୀ ଦରିଦ୍ର, ବୁଭୁକ୍ଷୁ ଅନାହାର ପ୍ରପୀଡ଼ିତ ନରନାରୀଙ୍କର ବେଦନାର କରୁଣ ଅଥଚ ଭୟାବହ କାହାଣୀକୁ ତାଙ୍କ ଲେଖାରେ ଜୀବନ୍ତ ରୂପ ଦେଇ ବଂଗଳାର ଅବସ୍ଥା ପ୍ରତି ସାରା ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଥିଲେ । କେରଳର ମାଲାବାର ଅଂଚଳର କୟୁର ଗ୍ରାମର କେତେଜଣ କମ୍ୟୁନିଷ୍ଟ ସମର୍ଥକ ଚାଷୀ କର୍ମୀଙ୍କୁ ରାଜଦ୍ରୋହ ଓ ଅନ୍ୟ କେତେକ ଦଫାରେ ଅଦାଲତ ଫାଶୀ ହୁକୁମ ଦେଇଥିଲେ । ଯୋଶୀ ସେମାନଙ୍କ ସହିତ ଜେଲରେ ସାକ୍ଷାତ କରିବା ପରେ, ପିପୁଲସ୍ ଓ୍ୟାର ପତ୍ରିକାରେ ଯେଉଁ ନିବଂଧଟି ଲେଖିଥିଲେ, ରାଜନୈତିକ ବିଶ୍ଳେଷଣ, ଉଚ୍ଚାଙ୍ଗ ସାହିତ୍ୟ ଓ ମାନବିକତା ଦୃଷ୍ଟିରୁ ଭାରତରେ ତାହା ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା । ୧୯୪୫ ମସିହାରେ ଗାନ୍ଧିଜୀ ଓ ମୁସଲିମ୍ ଲିଗ୍ର ସଭାପତି ମହମଦ୍ ଅଲ୍ଲୀ ଜିନ୍ନା କଂଗ୍ରେସ ଓ ଲିଗ ମଧ୍ୟରେ ମିଳାମିଶାର ସୂତ୍ର ନିର୍ଦ୍ଧାରଣ କରିବା ପାଇଁ ବାରବାର ମିଳିତ ହୋଇଥିଲେ । ଏ ଉଦ୍ୟମ ଅବଶ୍ୟ ବିଫଳ ହେଲା । ଗାନ୍ଧି ଜିନ୍ନା ସାକ୍ଷାତ ପାଇଁ ଯୋଶୀ ଯେଉଁ କେତୋଟି ନିବଂଧ ଲେଖିଥିଲେ, ତାର ବିଶ୍ଳେଷଣ ବହୁ ଜାତୀୟବାଦୀ ମହଲରେ ମଧ୍ୟ ଆଦୃତ ହୋଇଥିଲା । ସଂଗଠନ କ୍ଷେତ୍ରରେ ସେ ଥିଲେ କୁଶଳୀ କର୍ମକର୍ତ୍ତା । ଯୁବକମାନଙ୍କୁ ଅଧିକରୁ ଅଧିକ ସଂଖ୍ୟାରେ ପାର୍ଟି ସଂଗଠନ ଦାୟିତ୍ୱ ଦେବାରେ ସେ ଥିଲେ ଅଗ୍ରଣୀ । ପି.ସି. ଯୋଶୀ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ମୋକଦ୍ଦମାର ସୁବିଖ୍ୟାତ ବିପ୍ଳବିନୀ କଳ୍ପନା ଦତ୍ତଙ୍କୁ ୧୯୪୩ ମସିହାରେ ବିବାହ କରିଥିଲେ ।

୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ଭାରତ ସ୍ୱାଧୀନ ହେବା ପରେ, ବ୍ରିଟେନ ଆମେରିକା ଓ ପାକିସ୍ଥାନୀ ଚକ୍ରାନ୍ତ ପରିପ୍ରେକ୍ଷୀରେ ନବଲବ୍ଧ ସ୍ୱାଧୀନତାର ସୁରକ୍ଷା ପାଇଁ ଯୋଶୀ ଆହ୍ୱାନ ଦେଇଥିଲେ । ଭାରତର ବିଭାଜନ ଓ ସ୍ୱତନ୍ତ୍ର ରାଜନୈତିକ ପରିସ୍ଥିତିରେ ନେହୁରୁ ସରକାର ସହିତ ଅନାବଶ୍ୟକ ସଂଘର୍ଷର ପନ୍ଥା ପରିତ୍ୟାଗ କରିବାକୁ ପରାମର୍ଶ ଦେଇଥିଲେ । ତାଙ୍କର ରାଜନୈତିକ ମତାମତ ରୁଷିଆ ଓ ଷ୍ଟାଲିନ୍ଙ୍କୁ ସୁହାଇଲା ନାହିଁ । ରୁଷ ସରକାର ଓ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ନେହୁରୁଙ୍କ ଆନ୍ତର୍ଜାତିକ ନୀତିର ମର୍ମ ବୁଝିବାକୁ ଅସମର୍ଥ

ଥିଲେ । ସେମାନେ ଭାବୁଥିଲେ ଭାରତବର୍ଷରେ ପୂର୍ବ ୟୁରୋପର ଅବସ୍ଥା ସୃଷ୍ଟି ହୋଇଛି । ଯୋଶୀଙ୍କୁ ନେହ୍ରୁ-ପନ୍ଥୀ ବୋଲି ସମାଲୋଚନା କରାଗଲା । ୧୯୪୮-୪୯ ମସିହାରେ ସୋଭିଯେତ୍ କମ୍ୟୁନିଷ୍ଟ ପାର୍ଟିର ତତ୍କାଳୀନ ସଂପାଦକ ଝାଡ଼ନଭ୍ ସବୁ କମ୍ୟୁନିଷ୍ଟ ନେତାଙ୍କର ନିଷ୍ଠା ଓ ଆନ୍ତରିକତା ସଂପର୍କରେ ଯେଉଁ ସଂଦେହର ବାତାବରଣ ସୃଷ୍ଟି କରିଥିଲେ, ପି.ସି. ଯୋଶୀ ତାର ଶିକାର ହେଲେ । ନିଜର ଭ୍ରାନ୍ତ ନୀତି ଓ କାର୍ଯ୍ୟକ୍ରମର ସଫଳତା ପାଇଁ, ଅନ୍ୟ ଦେଶର କମ୍ୟୁନିଷ୍ଟ ପାର୍ଟିଗୁଡ଼ିକୁ ବିଭ୍ରାନ୍ତ କରିବାରେ, କମ୍ୟୁନିଷ୍ଟ ଇଣ୍ଟରନାସନାଲ ଯେଉଁସବୁ ପଦକ୍ଷେପ ନେଉଥିଲେ, ଯୋଶୀଙ୍କ ଉପରେ ଆକ୍ରମଣ ତାର ଜ୍ୱଳନ୍ତ ଉଦାହରଣ । ପାର୍ଟି କଂଗ୍ରେସ ଯୋଶୀଙ୍କୁ ସାଧାରଣ ସଂପାଦକ ପଦରୁ ବିତାଡ଼ିତ କରିଥିଲେ ଓ ଅନ୍ୟ ସମସ୍ତ ପ୍ରକାର ଦାୟିତ୍ୱରୁ ଅବ୍ୟାହତି ଦେଇଥିଲେ । ନିର୍ବାସନ ଦଣ୍ଡଠାରୁ ଏ ନିଷ୍ପତ୍ତି ଥିଲା ଅଧିକ ଦାରୁଣ ଓ ମର୍ମାନ୍ତିକ । କିଛି ବର୍ଷ ନୀରବ ରହିବା ପରେ, ଜହରଲାଲ ନେହ୍ରୁ ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ଥିବା ସମୟରେ ଚାରି ବର୍ଷ ତଳେ ଏହି ଉଜ୍ଜ୍ୱଳ ରତ୍ନ ଇହଧାମରୁ ବିଦାୟ ନେଇଛନ୍ତି ।

ବମ୍ବେ ପାର୍ଟି ସ୍କୁଲ ତିନିଦିନ ପରେ ଆରମ୍ଭ ହେଲା । ରାମ ମିଶ୍ରେ ମଧ୍ୟ ତିନି ଦିନ ପରେ ପୁନା ଗଲେ । ଏ ତିନିଦିନ ଆମେ କେବଳ ଦର୍ଶନୀୟ ସ୍ଥାନ ବୁଲିବାରେ କଟାଇଦେଲୁ । ପଇସା ପାଖରେ ନଥିଲା । ଚାଲି ଚାଲି ପଚାରି ବୁଲିଯାଉ । ସକାଳ ଆଠଟାରେ ବାହାରିଲେ, ଦିନ ବାରଟାକୁ ଫେରୁ । ପୁଣି ଉପରବେଳା ତିନିଟାରେ ବାହାରି ବୁଲି ବୁଲି ଚଉପାଟୀ ଦେଇ ସଂଧ୍ୟା ସାତଟା ବେଳକୁ ଫେରି ଆସୁ । ଅର୍ଥାଭାବ ହେତୁ ହୋଟେଲରେ ଖାଇବା ଆମ ଆଗରେ ସମସ୍ୟା ସୃଷ୍ଟି କରିଥିଲା । ପ୍ରଥମ ଦିନ ଆମେ ରହୁଥିବା ଘର ନିକଟରେ ଥିବା ଗୋଟିଏ ମୁସଲିମ ରେଷ୍ଟୁରାଣ୍ଟକୁ ଗଲୁ । ବିରିୟାନୀ ପ୍ଲେଟ ବାରଅଣା, ଗୋଟିଏ ପ୍ଲେଟରେ ଦୁଇଜଣଙ୍କର କ୍ଷୁଧା ନିବାରଣ ହେଲା । ରାତିରେ ଗୋଟିଏ ଗୁଜୁରାଟି ରେଷ୍ଟୁରାଣ୍ଟକୁ ଗଲୁ । ନିରାମିଷ ଖାଦ୍ୟ, ଡାଲି ତରକାରୀ ସବୁଥିରେ ଅତ୍ୟଧିକ ମାତ୍ରାରେ ଚିନି । ଜଣେ ସହକର୍ମୀ ପରଦିନ ଗୋଟିଏ କେରଳୀ ହୋଟେଲ ବାଛି ଦେଲେ । କେରଳୀ ଖାଦ୍ୟ ଓଡ଼ିଆଙ୍କୁ ବେଶ ସୁହାଇଲା । ଭାତ ମାଛ ମିଳ ଓ ଖଟା । ତିନିଦିନ ପରେ ଟଂକା ଶେଷ । କିନ୍ତୁ ଅସୁବିଧା ହେଲା ନାହିଁ । ରାମ ଗଲେ ପୁନା, ମୁଁ ଗଲି ନିକଟସ୍ଥ ପାର୍ଟି ସ୍କୁଲକୁ । ସେହିଠାରେ ରହିବା, ଖାଇବା ଓ ପାଠପଢ଼ା । ସେ ଘରଟିର ନାମ ଥିଲା ''ରାଜ ଭବନ'' ।

ରାଜନୈତିକ ସ୍କୁଲରେ ଯୋଗ ଦେବା ପାଇଁ ବିଭିନ୍ନ ପ୍ରଦେଶରୁ ପ୍ରାୟ ଚାଳିଶ ଜଣ ନେତୃସ୍ଥାନୀୟ ସାଥୀ ଆସିଥିଲେ । ଯୁକ୍ତ ପ୍ରଦେଶ (ବର୍ତ୍ତମାନର ଉତ୍ତର ପ୍ରଦେଶ) ରୁ ଡକ୍ଟର ଜେଡ୍. ଏ. ଅହମଦ୍, ଆନ୍ଧ୍ରରୁ ପି. ସୁନ୍ଦରାୟା, ବମ୍ବେର ଦେଶପାଣ୍ଡେ, ନାଦକାରନୀ ଓ ସରଦେଶାଇ ଓ ବାରିଷ୍ଟର ସଜ୍ଜାଦ୍ ଜହୀର; କଲିକତାର ବି. ସେନ୍. ଓ ଏ. କେ. ଘୋଷ, ମାନ୍ଦ୍ରାଜର କଲ୍ୟାଣ ସୁନ୍ଦରମ୍, ପଂଜାବର ଫଜଲ ଇଲାହୀ କୁର୍ବାନ, ମିସେସ ଡାଙ୍ଗେ, ମିସେସ ନର୍ଗୀସ୍ ବଟ୍‌ଲିଓ୍ୱାଲା, ସରୋଜିନୀ ନାଇଡୁଙ୍କ ଭଉଣୀ ଓ ଭିଣୋଇ ମିସେସ ଓ ମିଷ୍ଟର ଜାମ୍ବେକାର ଏବଂ ଆଡ୍‌ଭୋକେଟ୍ ଏ.ଏସ.ଆର୍ ଚାରୀ ପ୍ରଭୃତି ପ୍ରତିଦିନ ସ୍କୁଲରେ ଯୋଗ ଦିଅନ୍ତି । ବମ୍ବେର ସ୍ଥାନୀୟ ସାଥିମାନଙ୍କୁ ବାଦ୍ ଦେଇ ବିଭିନ୍ନ ରାଜ୍ୟରୁ ଆସିଥିବା ପ୍ରତିନିଧିମାନଙ୍କ ରହିବା ପାଇଁ ରାଜଭବନରେ ବଖରାଏ ଲେଖାଁଏ ଘର ଦିଆଯାଇଥାଏ । ଓଡ଼ିଶାରୁ ମୁଁ ଜଣେ । ମୁଁ ରହୁଥାଏ ପଂଜାବରୁ ଆସିଥିବା କମ୍ୟୁନିଷ୍ଟ ନେତାମାନଙ୍କ ସହିତ । ପାର୍ଟି ସ୍କୁଲରେ ଅନେକଙ୍କର ଧାରଣା ଥିଲା, ମୁଁ ଜଣେ ପଂଜାବୀ । ଅବଶ୍ୟ ମୋର ଉଚ୍ଚତା କୌଣସି ପଂଜାବୀଠାରୁ କମ୍ ନୁହେ । ଆଲୋଚନାର ଚତୁର୍ଥ ବା ପଂଚମ ଦିନ ପି.ସି. ଯୋଶୀ ଓଡ଼ିଶା ଅବସ୍ଥା ବିଷୟରେ କହିବାକୁ ଯାଇ ପ୍ରସଂଗକ୍ରମେ ମୋ ନାମ ଧରି କେତେକ ତଥ୍ୟ ପଚାରିଥିଲେ । ସେହିଦିନଠାରୁ ସମସ୍ତେ ଜାଣିଲେ ଯେ ମୁଁ ଓଡ଼ିଶାର ଲୋକ । ପଂଜାବର କମ୍ରେଡ୍ ଫଜଲ ଇଲାହୀ କୁର୍ବାନ୍ ପଂଜାବ କିସାନ ସଭାର ସଂପାଦକ । ବୟସରେ ବଡ଼ ହେଲେ ମଧ୍ୟ, ତାଙ୍କ ସହିତ ବେଶ ସଦ୍‌ଭାବ ହୋଇଥାଏ । ତାଙ୍କୁ ଯେତେବେଳେ ପଚିଶ ବର୍ଷ ବୟସ, ସେ ଅନ୍ୟ ତିନି ଜଣ ସାଥିଙ୍କୁ ସାଂଗରେ ନେଇ ଛଦ୍ମ ବେଶରେ ଆଫଗାନୀସ୍ଥାନ ପଳାଇଥିଲେ ଓ ସେଠାରୁ ସେମାନେ ସୋଭିୟେତ ରୁଷ ଚାଲିଯାଇଥିଲେ । ଏ ପ୍ରାୟ ୧୯୨୫ ବା ୨୬ ମସିହାର ଘଟଣା । କୁର୍ବାନଙ୍କ ଭାଷାରେ ଲେନିନ୍‌ଙ୍କର ସମାଜବାଦୀ ରାଷ୍ଟ୍ର ପରିଦର୍ଶନ କରି, ସେମାନେ ଅନୁଭବ କରିଥିଲେ ଯେପରି ହଜ୍ ଯାତ୍ରା କରୁଛନ୍ତି । ଭାରତ ବିଭାଜନ ହେତୁ ଫଜଲ ଇଲାହୀ କୁର୍ବାନ୍ ପାକିସ୍ଥାନରେ ରହିଗଲେ । ବିଭାଜନର ଅଳ୍ପ ଦିନ ପରେ ଖବରକାଗଜରେ ତାଙ୍କ ଗିରଫ୍‌ର ସମ୍ବାଦ ପଢ଼ିଥିଲି । ଏବେ ସେ ଜୀବିତ କି ନାହିଁ ଜାଣେ ନା । ବର୍ତ୍ତମାନ ସୋଭିୟେତ୍ ରୁଷିଆର ନାମରୁ "ସମାଜବାଦୀ" ଶବ୍ଦ ଉଠାଇ ଦିଆଯାଇଛି । ଲେନିନ୍‌ଗ୍ରାଡ୍ ସହରର ନାମ ପରିବର୍ତ୍ତନ କରାଯାଇ ପ୍ରାକ୍-ବିପ୍ଳବ ନାମ ପେଟ୍ରୋଗ୍ରାଡ୍ ରଖାଯାଇଛି । ଫଜଲ ଇଲାହୀ କୁର୍ବାନ ଓ ତାଙ୍କର ସହଯାତ୍ରୀମାନେ ବଂଚିଥିଲେ କ'ଣ ଅନୁଭବ କରନ୍ତେ, ତାହା ସେହିମାନେ

କେବଳ କହିପାରିବେ । ଜୀବିତ ନ ଥିଲେ, କବର ଭିତରେ ନିଶ୍ଚୟ ଛଟପଟ୍ ହେଉଥିବେ ।

ପ୍ରତିଦିନ ସକାଳ ଦଶଟାରେ ଆଲୋଚନା ଆରମ୍ଭ ହୁଏ ପ୍ରାରମ୍ଭିକ ସଂଗୀତ ପରେ । ଦିନ ଭୋଜନ ପାଇଁ ଗୋଟାକରୁ ତିନିଟା ପର୍ଯ୍ୟନ୍ତ ବିଶ୍ରାନ୍ତି । ପୁଣି ଉପରବେଳା ତିନିଟାରୁ ପାଂଚଟା ପ୍ରବଚନ । ଆଲୋଚନା ଶେଷ ହୁଏ ସମବେତ ଗାନ ପରେ । ମୁଖ୍ୟତଃ ଜାମ୍ବେକାର ଦଂପତୀ ଗୀତ ଆରମ୍ଭ କରନ୍ତି ଓ ଅନ୍ୟମାନେ ତାଙ୍କ ସହିତ ସମସ୍ୱରରେ ଗାନ କରନ୍ତି । ଏହି ସ୍କୁଲରେ ବୋଲାଯାଉଥିବା ଗୀତ ମଧ୍ୟରୁ ଗୋଟିଏ ଗୀତର କେତୋଟି ପଂକ୍ତି ମନେ ପଡୁଛି :

ଆଜାଦ୍ କରେଙ୍ଗେ, ହିନ୍ଦ୍ ତୁଝେ ଆଜାଦ
ତଗଦୀରକେ ବଂଧନ୍ ତୋଡ଼େଙ୍ଗେ
ତହବିର୍ ସେ ମୁନା ମୋଡ଼େଙ୍ଗେ
ଫରିୟାଦ୍ କି ଆଦତ୍ ଛୋଡ଼େଙ୍ଗେ
ଫରିୟାଦ୍, ଫରିୟାଦ୍
ଆଜାଦ୍ କରେଙ୍ଗେ, ହିନ୍ଦ୍ ତୁଝେ ଆଜାଦ୍ ।।

ଆମର ଶିକ୍ଷକ ଥିଲେ ପି.ସି. ଯୋଶୀ, ଶ୍ରମିକ ନେତା ବି.ଟି. ରଣଦିବେ ଓ ବିଖ୍ୟାତ ତତ୍ତ୍ୱବିତ୍ ଡକ୍ଟର ଗଂଗାଧର ଅଧିକାରୀ । ଏ ତିନିଜଣ କମ୍ୟୁନିଷ୍ଟ ପାର୍ଟିର ପଲିଟବ୍ୟୁରୋ ମେମ୍ବର । ଏସ.ଏ. ଡାଂଗେ ସେତେବେଳେ ଜେଲରେ ବନ୍ଦୀ । ମାର୍କ୍ସବାଦୀ ଦର୍ଶନ ଅର୍ଥନୀତି ଏବଂ ବିଭିନ୍ନ ଗଣ ଆନ୍ଦୋଳନର ସ୍ୱରୂପ ପଦ୍ଧତି ଓ ପ୍ରକ୍ରିୟା ସଂପର୍କରେ ପ୍ରତିଦିନ ଦୁଇ ଓଳି ପ୍ରବଚନ ଓ ପ୍ରଶ୍ନୋତ୍ତର ହୁଏ । ଦୀର୍ଘ ପନ୍ଦର ଦିନର ତାଲିମ୍ ପରେ ପାଠପଢ଼ା ଶେଷ ହେଲା । ମନେ ହେଲା ଯେପରି କଲେଜର ଗୋଟିଏ ଦୁଇ ବର୍ଷିଆ କୋର୍ସ ସମାପ୍ତ କଲି । ମାର୍କ୍ସବାଦୀ ତତ୍ତ୍ୱ ଓ ତାର ପ୍ରୟୋଗ ସଂପର୍କରେ ଜ୍ଞାନର ପରିସୀମା କେତେଦୂର ବଢ଼ିଲା, ତା କହି ପାରିବି ନାହିଁ । କିନ୍ତୁ ମୋର ଆତ୍ମ ବିଶ୍ୱାସ ଯଥେଷ୍ଟ ବଢ଼ିଗଲା ।

ବମ୍ବେ ସ୍କୁଲରେ ଥିବା ସମୟରେ ଆଡ୍‌ଭୋକେଟ ଏ.ଏସ୍. ଆର.ଚାରୀ ଓ ବାରିଷ୍ଟର ରଜନୀ ପଟେଲଙ୍କ ସହିତ ଆଜୀବନ ବଂଧୁତା ଆରମ୍ଭ ହୋଇଥିଲା । ଉଭୟ ମୋ ଠାରୁ ସାତ ଆଠ ବର୍ଷ ବଡ଼ । ଏ.ଏସ୍. ଆର ଚାରୀ ଆନ୍ଧ୍ର ପ୍ରଦେଶର ଲୋକ । ବମ୍ବେରେ ରହି ନୂଆ କରି ଓକିଲାତି ଆରମ୍ଭ କରିଥାନ୍ତି ଏବଂ ନିୟମିତ ରୂପେ ପାର୍ଟି କାର୍ଯ୍ୟ ମଧ୍ୟ କରୁଥାନ୍ତି । ୧୯୫୬ ମସିହାରେ

ବମ୍ବେର ମୋରାର୍ଜୀ ଦେଶାଇଙ୍କ ସରକାର ତାଙ୍କୁ ନିରାପତ୍ତା ଆଇନ ବଳରେ ଅଟକବନ୍ଦୀ କଲେ । ଏହି ଅଟକ ଆଦେଶ ବିରୁଦ୍ଧରେ ନିଜ କେସ ସେ ନିଜେ ସୁପ୍ରିମକୋର୍ଟରେ ବାଦାନୁବାଦ କରି ଖଲାସ ହୋଇଥିଲେ । ତାଙ୍କର ଉଚ୍ଚକୋଟୀର ସୁଆଲ ଜବାବ୍‌ରେ ପ୍ରୀତ ହୋଇ ଜଷ୍ଟିସ୍ ସିନ୍‌ହା ଓ ଜଷ୍ଟିସ୍ ଗଜେନ୍ଦ୍ର ଗଡ୍‌କର୍ (ପରକାଳରେ ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତି) ତାଙ୍କୁ ସୁପ୍ରିମ କୋର୍ଟରେ ପ୍ରାକ୍ଟିସ୍ କରିବା ପାଇଁ ପରାମର୍ଶ ଦେଇଥିଲେ । ସେହିଦିନ ଠାରୁ ସେ ସୁପ୍ରିମକୋର୍ଟରେ ଓକିଲାତି ଆରମ୍ଭ କଲେ । ଓଡ଼ିଶାର ଗୋଟିଏ ମୋକଦ୍ଦମାରେ ୧୯୬୭ ମସିହାରେ ମୁଁ ତାଙ୍କୁ ସୁପ୍ରିମକୋର୍ଟରେ ସାହାଯ୍ୟ କରିଥିଲି । ତାପରେ ଆଡ୍‌ଭୋକେଟ୍ ଜେନେରାଲ ଭାବରେ ତାଙ୍କ ବିରୁଦ୍ଧରେ ମଧ୍ୟ ଦୁଇ ତିନୋଟି ମୋକଦ୍ଦମାରେ ବାଦାନୁବାଦ କରିଥିଲି । ଚାରୀଙ୍କର ବଳିଷ୍ଠ ଭାଷା ଓ ସାବଲୀଳ ପ୍ରକାଶଭଙ୍ଗୀ ଅବିସ୍ମରଣୀୟ ।

ଚାରୀଙ୍କ ପରି ଅତିଥି ସତ୍କାରକ ବିରଳ । ମୁଁ ଚାରି ପାଂଚ ଥର ତାଙ୍କ ଦିଲ୍ଲୀ ଡ଼ିଫେନ୍ସ କଲୋନୀ ଘରକୁ ରାତ୍ରି ଭୋଜନ ପାଇଁ ନିମନ୍ତ୍ରିତ ହୋଇଥିବି । ବଂଧୁ ମେଳରେ ଭୋଜନ ତାଙ୍କର ଅଭ୍ୟାସ । ଭୋଜନ ସହିତ ପ୍ରଚୁର ପାନୀୟ ତା ସହିତ ସଂଗୀତ । ଶେଷ ଜୀବନରେ ସେ ହୃଦ୍ ରୋଗରେ ଆକ୍ରାନ୍ତ ହେଲେ ଓ ମଦ୍ୟପାନରୁ ସଂପୂର୍ଣ୍ଣ ବିରତ ହେଲେ । କିନ୍ତୁ ବଂଧୁ ମିଳନ ଓ ଗାନ ଅଭ୍ୟାସ ଶେଷ ପର୍ଯ୍ୟନ୍ତ ଛାଡ଼ି ନଥିଲେ । ୧୯୭୪ ମସିହାରେ ହାଇଦ୍ରାବାଦ ହାଇକୋଟରେ ସୁଆଲ ଜବାବ୍ କରୁଥିବା ସମୟରେ ତାଙ୍କର ହୃଦ୍ ଯନ୍ତ୍ର କ୍ରିୟା ବଂଦ ହେବାରୁ ସେ ଟଳି ପଡ଼ିଲେ ।

ରଜନୀ ପଟେଲ ଲଣ୍ଡନରେ ଥିବା ସମୟରେ ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟିର ଜଣେ ଭାରତୀୟ ବଂଶୋଦ୍‌ଭବ ନେତା ସ୍ୱନାମଧନ୍ୟ ରଜନୀ ପାମିଦତ୍ତଙ୍କ ସଂସ୍ପର୍ଶରେ ଆସି ମାର୍କ୍ସବାଦ ପ୍ରତି ଆକୃଷ୍ଟ ହୋଇଥିଲେ । ସେ କମ୍ୟୁନିଷ୍ଟ ପାର୍ଟିର ବିଧିବଦ୍ଧ ସଦସ୍ୟ ନ ଥିଲେ ମଧ୍ୟ କେତେଥର "ରାଜ ଭବନ" ସ୍କୁଲରେ ଯୋଗ ଦେଇଥିଲେ । ଫୌଜଦାରୀ ଓ ରିଟ୍ ମୋକଦ୍ଦମା ଦକ୍ଷତାର ସହିତ ପରିଚାଳନା କରି ସେ ବମ୍ବେ ହାଇକୋର୍ଟରେ ବେଶ ସୁନାମ ଅର୍ଜନ କରିଥିଲେ । ୧୯୬୯ ମସିହାରେ କଂଗ୍ରେସ ବିଭାଜନ ସମୟରେ ସେ ଆନୁଷ୍ଠାନିକ ଭାବରେ କଂଗ୍ରେସରେ ଯୋଗ ଦେଲେ ଓ ବମ୍ବେ କଂଗ୍ରେସ କମିଟିର ସଭାପତି ମନୋନୀତ ହୋଇଥଲେ । ସେ ଥିଲେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କର ବିଶ୍ୱସ୍ତ ସହକର୍ମୀ । କିନ୍ତୁ ୧୯୭୬ ଶେଷ ଆଡ଼କୁ ସଂଜୟ ଗାନ୍ଧୀଙ୍କ ବିଷ ଦୃଷ୍ଟିରେ ପଡ଼ି ତାଙ୍କୁ ସଭାପତି ପଦ ତ୍ୟାଗ କରିବାକୁ ହୋଇଥିଲା ।

ପଟେଲଙ୍କ ସଂପର୍କରେ ଗୋଟିଏ ବ୍ୟକ୍ତିଗତ ଘଟଣା ଉଲ୍ଲେଖ କରୁଚି । ୧୯୭୯ ମସିହାରେ ମୋର ଜଣେ ମହକିଲ ବ୍ରହ୍ମପୁରର ବିଶିଷ୍ଟ କଂଟ୍ରାକ୍ଟର ସ୍ୱର୍ଗୀୟ ଗୋବିନ୍ଦ ଚୌଧୁରୀଙ୍କର ଜଣେ ଆତ୍ମୀୟ କ୍ୟାନସର ରୋଗରେ ଆକ୍ରାନ୍ତ ବୋଲି ସଂଦେହ କରାଗଲା । କଟକ ଓ ବ୍ରହ୍ମପୁର ମେଡ଼ିକାଲ କଲେଜର ବିଶେଷଜ୍ଞମାନେ ରୋଗୀକୁ ବମ୍ବେ ଟାଟା କ୍ୟାନସର ଇନ୍‌ଷ୍ଟିଚିଉଟ୍‌ରେ ଚିକିତ୍ସା କରାଇବା ପାଇଁ ପରାମର୍ଶ ଦେଲେ । ଟାଟା କ୍ୟାନସର ଇନଷ୍ଟିଚିଉଟରେ ରୋଗୀର ଆଡ଼ମିସନ କରିବାରେ ସାହାଯ୍ୟ କରିବା ପାଇଁ ଖଣ୍ଡେ ପରଚିୟ ପତ୍ର ରଜନୀ ପଟେଲଙ୍କୁ ଲେଖିଦେବାକୁ ଚୌଧୁରୀ ମତେ ଅନୁରୋଧ କଲେ । ଏପରି ପତ୍ର ଲେଖିବାକୁ ମୁଁ ପ୍ରଥମେ ଅନିଚ୍ଛୁକ ଥିଲି । ପଟେଲଙ୍କ ସହିତ ବଂଧୁତ୍ୱ ଥିଲେ ମଧ୍ୟ, ଏପରି ଚିଠିକୁ ତାଙ୍କ ପରି କର୍ମରତ ବ୍ୟକ୍ତି କେତେଦୂର ଗୁରୁତ୍ୱ ଦେବେ, ସେ ବିଷୟରେ ମୋର ସଂଦେହ ଥିଲା । ଚୌଧୁରୀ ଫେରି ଯାଉଥିଲେ । ହଠାତ୍ ମୋ ମନରେ ଆଶଙ୍କା ହେଲା, ଏକେ ତ କ୍ୟାନ୍‌ସର ରୋଗ, ଭବିଷ୍ୟତରେ କ'ଣ ନାହିଁ କ'ଣ ହୋଇପାରେ । ଚିଠି ନ ଲେଖିବାଟା ଅମାନୁଷିକତା ହେବ । ମୁଁ ଚୌଧୁରୀଙ୍କୁ ପଛରୁ ଡାକି ପଠାଇ ଚିଠି ଖଣ୍ଡେ ଦେଲି । ଛ' ସପ୍ତାହ ପରେ ଗୋବିନ୍ଦ ଚୌଧୁରୀଙ୍କ ସାନପୁଅ କାଶୀନାଥ କଟକ ଆସି କହିଲେ, ତାଙ୍କର ଆତ୍ମୀୟ ସଂପୂର୍ଣ୍ଣ ସୁସ୍ଥ ହୋଇ ଫେରି ଆସିଛି । ରଜନୀ ପଟେଲ କୁଆଡ଼େ ମୋ ଚିଠି ପାଇ ତୁରନ୍ତ ଟାଟା କ୍ୟାନସର ଇନଷ୍ଟିଚିଉଟ୍‌କୁ ଫୋନ୍ କଲେ ଓ ନିଜର ଜଣେ ସହକାରୀଙ୍କୁ ସାଂଗରେ ଦେଇ ଚୌଧୁରୀଙ୍କ ଆତ୍ମୀୟଙ୍କୁ କ୍ୟାନସର ହସପିଟାଲରେ ଆଡ଼ମିସନ୍ କରିବାର ସମସ୍ତ ବ୍ୟବସ୍ଥା କରିଦେଲେ । କିନ୍ତୁ ଭାଗ୍ୟର କି ବିଡ଼ମ୍ବନା - ଚୌଧୁରୀଙ୍କ ଆତ୍ମୀୟ ଏବେ ମଧ୍ୟ ସୁସ୍ଥ ଅଛନ୍ତି (ସେ ଦୀର୍ଘଜୀବୀ ହୁଅନ୍ତୁ), କିନ୍ତୁ ଏ ଘଟଣାର ପ୍ରାୟ ଦୁଇ ବର୍ଷ ପରେ ରଜନୀ ପଟେଲ କ୍ୟାନସର୍ ରୋଗରେ ପ୍ରାଣତ୍ୟାଗ କଲେ ।



# ଅଶୁଭ ତେୟାଳିଶ

୧୯୪୩ ମସିହା ଓଡ଼ିଶା ଇତିହାସରେ ଏକ ଅଶୁଭ ବର୍ଷ । ଏକେତ ରାଜନୈତିକ କ୍ଷେତ୍ରରେ ଚରମ ଶୂନ୍ୟତା, ତେଣେ ଖାଦ୍ୟାଭାବ ଓ ଯୁଦ୍ଧ ପରିସ୍ଥିତି ହେତୁ ଦେଶବ୍ୟାପୀ ଅର୍ଥନୈତିକ ସଂକଟ । ଓଡ଼ିଶାରେ ସେହି ସମୟରେ ପାରଳାଖେମୁଣ୍ଡୀ ମହାରଜାଙ୍କ ନେତୃତ୍ୱରେ ଏକ ବ୍ରିଟିଶ ସପକ୍ଷବାଦୀ ମନ୍ତ୍ରୀ ମଣ୍ଡଳ ଗଠିତ ହୋଇଥାଏ । ପ୍ରଧାନମନ୍ତ୍ରୀ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେଓ, ଶିକ୍ଷା ଅର୍ଥ ଓ ଯୋଗାଣ ମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ତୃତୀୟ ମନ୍ତ୍ରୀ ମୌଲବୀ ଅବଦୁସ୍ ଶୋଭାନ ଖାଁ । ଏମାନଙ୍କ ସହିତ ଯୋଗ ଦେଇଥାନ୍ତି ଯଦୁମଣି ମଂଗରାଜ ଓ ଅନ୍ୟ କେତେ ଜଣ । କଂଗ୍ରେସ ଦଳରୁ ନିର୍ବାଚିତ ବିଧାନ ସଭା ସଦସ୍ୟମାନେ ବନ୍ଦୀଶାଳାରେ । ଏଣୁ ଏହି ସଂଖ୍ୟାଲଘୁ ଗୋଷ୍ଠି ପକ୍ଷରେ ସରକାର ଚଳାଇବାରେ କୌଣସି ଅସୁବିଧା ନ ଥାଏ । ଛ' ମାସ ମଧ୍ୟରେ ୪୨ ଆନ୍ଦୋଳନର ଝଂଜା ନୀରବ ଓ ନିଃଶବ୍ଦ ହୋଇ ଆସିଲା । ମୁଷ୍ଟିମେୟ କଂଗ୍ରେସ ସମାଜବାଦୀ ନେତାଙ୍କ ଉଦ୍ୟମରେ ଭାରତର କେତେକ ଅଂଚଳରେ ଯେଉଁ ସୀମିତ ପ୍ରତିବାଦର ଝଲକ ଦେଖା ଦେଉଥିଲା, ସାମ୍ୟବାଦୀ ନେତାମାନଙ୍କ ଗିରଫଦାରୀ ପରେ ତାହା ମଧ୍ୟ ନିସ୍ତବ୍ଧ ହୋଇ ଆସିଲା । କିନ୍ତୁ ସ୍ୱାଧୀନତାର ଦୁର୍ଦ୍ଦମନୀୟ ଲାଳସାକୁ ସରାକରୀ ଦମନଲୀଳା ଲୋପ କରି ଦେଇ ପାରିଲା ନାହିଁ । ଅସନ୍ତୋଷ ଭିତରେ ଭିତରେ କୁହୁଳିବାକୁ ଲାଗିଲା । ଏହି ସଂକଟମୟ ପରିସ୍ଥିତିରେ ସାଧାରଣ ଜନତାର ଦୁଃଖ ଦୈନ୍ୟ, ଅଭାବ ଅସୁବିଧା ଓ ଅନ୍ୟାନ୍ୟ ସମସ୍ୟା ପ୍ରତି ଧ୍ୟାନ ଦେବାକୁ ଦେଶରେ ଶକ୍ତିଶାଳୀ ରାଜନୈତିକ ସଂଗଠନର ଅଭାବ ଥିଲା ।

ସେହି ବର୍ଷ ଏକ କରାଳ ଦୁର୍ଭିକ୍ଷର ବିକଟ .. ଛାୟା ବଂଗଳାକୁ ଗ୍ରାସ କରିଥାଏ । ଭୋକ ଉପାସରେ ଲୋକେ ଗାଁ ଗଣ୍ଡା ଛାଡ଼ି କଲିକତା ସହରକୁ ପଳାଇ ଆସୁଥାନ୍ତି ସାହାଯ୍ୟ ଓ ଭିକ୍ଷା ଆଶାରେ । ହଜାର ହଜାର ଲୋକ ରାସ୍ତା କଡ଼ରେ ଅନାହାର ଓ ବ୍ୟାଧିରେ ଟଳି ପଡୁଥାନ୍ତି । କଲିକତା ସେତେବେଳେ ଜାପାନ ବିରୁଦ୍ଧରେ ଯୁଦ୍ଧ ଅଭିଯାନର ପ୍ରଧାନ ଛାଉଣୀ । ସରକାର ବିଲାତ ଓ ଆମେରିକାର ସୈନ୍ୟ ଏବଂ ଭାରତୀୟ ସୈନ୍ୟ ବାହିନୀକୁ ଖାଦ୍ୟ ଅନ୍ୟ ସରବରାହ ଓ ଅସ୍ତ୍ରଶସ୍ତ୍ର ଯୋଗାଇବାରେ ବ୍ୟସ୍ତ । ବୁଭୁକ୍ଷୁ ଜନତାର କାହାଣୀ ଶୁଣୁଛି କିଏ ? ଅବଶ୍ୟ ବିଲାତ ପୁଞ୍ଜିପତିଙ୍କ ମୁଖପତ୍ର ''ଷ୍ଟେଟ୍ସମ୍ୟାନ'' କାଗଜ ବଂଗଳାର ଦୁର୍ଭିକ୍ଷ ପରିସ୍ଥିତି ପ୍ରତି ପ୍ରାଧାନ୍ୟ ଦେଇଥିଲେ ଓ ଅନାହାର ମୃତ୍ୟୁର କାହାଣୀ ଓ ଚିତ୍ର ଛାପି ଦିଲ୍ଲୀ ସରକାର ଓ ବିଲାତ ସରକାରଙ୍କ ଦୃଷ୍ଟି

ଆକର୍ଷଣ କରିଥିଲେ । କିନ୍ତୁ ଅନାହାର ଓ ଅପମୃତ୍ୟୁ ସମସ୍ୟାର ସନ୍ତୋଷଜନକ ସମାଧାନ ହେଲା ନାହିଁ ।

ବଂଗଳାର ଖାଦ୍ୟାଭାବ ଓ ଅନାହାର ମୃତ୍ୟୁ ଓଡ଼ିଶା ଉପରେ ମଧ୍ୟ ପ୍ରତିକୂଳ ପ୍ରଭାବ ପକାଇଥିଲା । ଉତ୍ତର ବାଲେଶ୍ୱର ଓ ଗଞ୍ଜାମର କେତେକ ଅଂଚଳରେ ଭୀଷଣ ଡିରୋଟ ଅବସ୍ଥା 'ଦେଖା ଦେଇଥାଏ । ବଂଗଳାରେ ଧାନ ଚାଉଳର ଅତ୍ୟଧିକ ଦର ବୃଦ୍ଧି ହେତୁ, ମହଜୁଦ୍‌କାରୀ ଓ ଚୋରା ବେପାରୀମାନେ ଓଡ଼ିଶାରୁ କଲିକତାକୁ ଅପର୍ଯ୍ୟାପ୍ତ ଚାଉଳ ରପ୍ତାନୀ କରୁଥାନ୍ତି । ବଂଗଳା ପରିସ୍ଥିତିର ସୁଯୋଗ ନେଇ ଓଡ଼ିଶାରେ କୃତ୍ରିମ ଅଭାବ ଓ ଦରବୃଦ୍ଧି ଘଟୁଥାଏ । କଲିକତା ସହର ପୂର୍ବାଂଚଳର ଯୁଦ୍ଧଘାଟି । ଏଣୁ କଲିକତାକୁ ଚୋରା ଚାଉଳ ରପ୍ତାନୀ ରୋକିବାକୁ ଓଡ଼ିଶା ସରକାର ଅମଂଗ ଓ ଅକ୍ଷମ ଥିଲେ । ଚୋରା ବେପାରୀ ଓ ମହଜୁଦ୍‌କାରୀମାନଙ୍କୁ ଜବତ୍ କରିବା ପାଇଁ ଓଡ଼ିଶା ମନ୍ତ୍ରୀମାନଙ୍କର ନୈତିକ ସାହସ ବି ନଥାଏ ।

ପରିସ୍ଥିତିର ମୁକାବିଲା କରିବା ପାଇଁ ଆମ୍ଭେମାନେ ଓଡ଼ିଶାବ୍ୟାପୀ ଖାଦ୍ୟ ଆନ୍ଦୋଳନ ଆରମ୍ଭ କଲୁ । ଭଗବତୀ ପାଣିଗ୍ରାହୀ ଜନ-ଖାଦ୍ୟ କମିଟି ଗଠନ କରି ମହଜୁଦକାରୀମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବାକୁ ଆହ୍ୱାନ ଦେଲେ । ଚୋରାବେପାରୀଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ କରିବା ଓ ଦରବୃଦ୍ଧି ରୋକିବା ଏହି ଆନ୍ଦୋଳନର ମୁଖ୍ୟ କାର୍ଯ୍ୟକ୍ରମ ଥିଲା । କଟକ ସହରରେ ଯେଉଁ ଜନ ଖାଦ୍ୟ କମିଟି ଗଠିତ ହେଲା, ତାର ସଭାପତି ହେଲେ ପ୍ରଖ୍ୟାତ ଆଡ଼ଭୋକେଟ୍ ହରିହର ମହାପାତ୍ର, ସଂପାଦକ ମୁଁ ନିଜେ, ସଦସ୍ୟମାନେ ହେଲେ ଭାରତ ସେବକ ସମିତିର ସଭ୍ୟ ଲକ୍ଷ୍ମୀ ନାରାୟଣ ସାହୁ, ଭଗବତୀ ପାଣିଗ୍ରାହୀ, ଶରତ ପଟ୍ଟନାଏକ, ଶ୍ୟାମସୁନ୍ଦର ମିଶ୍ର ପ୍ରମୁଖ । ଏହି ଆନ୍ଦୋଳନ ସଂକ୍ରାନ୍ତରେ ଆମ୍ଭମାନଙ୍କୁ ତତ୍‌କାଳୀନ ଯୋଗାଣ ବିଭାଗ ସେକ୍ରେଟାରୀ ସି. ଏସ୍ ଝା ଓ ଜିଲା ମାଜିଷ୍ଟ୍ରେଟ ଏଲ.ପି. ସିଂଙ୍କ ସହିତ ଅନେକ ଥର ସାକ୍ଷାତ କରିବାକୁ ପଡୁଥାଏ । ଉଭୟ ଆଇ.ସି.ଏସ ଅଫିସର ପରକାଳରେ ବିଶେଷ ସୁଖ୍ୟାତି ଅର୍ଜନ କରିଥିଲେ । ଏଲ୍. ପି. ସିଂ ବିହାରର ଚିଫ ସେକ୍ରେଟାରୀ, କେନ୍ଦ୍ର ସରକାରଙ୍କ ଘରୋଇ ବିଭାଗର ସେକ୍ରେଟାରୀ ଓ କ୍ୟାବିନେଟ ସେକ୍ରେଟାରୀ ଏବଂ ପରିଶେଷରେ ପାଂଚ ବର୍ଷରୁ ଅଧିକ କାଳ ଆସାମ ଓ ନବଗଠିତ ପୂର୍ବାଂଚଳ ପ୍ରଦେଶ ଗୁଡ଼ିକର ରାଜ୍ୟପାଳ ହୋଇଥିଲେ ।

ଏଲ. ପି. ସିଂ ଥିଲେ ଅତି ଦକ୍ଷ, ସଚ୍ଚୋଟ ଓ ଖାଣ୍ଟି ଦେଶପ୍ରେମୀ । ୪୨ ଆନ୍ଦୋଳନର ପ୍ରାରମ୍ଭ ଅବସ୍ଥାରେ କଲେଜ ଛକରୁ ଗୋଟିଏ ଛାତ୍ର

ଶୋଭାଯାତ୍ରା ବାହାରି ଗୌରୀ ଶଙ୍କର ପାର୍କ ପର୍ଯ୍ୟନ୍ତ ଆସିଥିଲା । ପୋଲିସ ଲାଠି ପ୍ରୟୋଗ କରି ଶୋଭାଯାତ୍ରାକୁ ଛିନ୍ନଛତ୍ର କରି ଦେବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ଜିଲା ମାଜିଷ୍ଟ୍ରେଟ ପୋଲିସ ସହିତ ଶୋଭାଯାତ୍ରାର ଅନୁଗମନ କଲେ । ମାଜିଷ୍ଟ୍ରେଟଙ୍କ ଆଦେଶ ବିନା ପୋଲିସ୍‌କୁ ଲାଠି ପ୍ରହାର କରିବାକୁ ସୁଯୋଗ ମିଳି ନଥିଲା । ଅଗଷ୍ଟ ଆନ୍ଦୋଳନ ସମୟରେ ବିହାରର ସୋସାଲିଷ୍ଟ ନେତା ରାମନନ୍ଦନ ମିଶ୍ର ଅଣ୍ଡର ଗ୍ରାଉଣ୍ଡ ଥିବା ସମୟରେ କଟକ ଆସି ଏଲ.ପି. ସିଂଙ୍କ ଘରେ କିଛି ଦିନ ଆଶ୍ରୟ ନେଇ ଥିଲେ । ଉଚ୍ଚତାରେ ଏଲ.ପି. ସିଂ ଛ' ଫୁଟରୁ ଅଧିକ, ଏବଂ ମଣିଷ ହିସାବରେ ମଧ୍ୟ ଅତି ଉଚ୍ଚ ଦରର ଲୋକ, ଅତି ଅମାୟିକ । ବ୍ରିଟିଶ୍ ଯୁଗର କଲେକ୍ଟର ମାନଙ୍କର ପ୍ରଭୂତ କ୍ଷମତା ଓ ପ୍ରତିପତ୍ତି ସତ୍ତ୍ୱେ, ଯେ କୌଣସି ସାଧାରଣ ଲୋକ ସହିତ ମିଶିବାକୁ ସେ କୁଣ୍ଠାବୋଧ କରୁ ନ ଥଲେ । ଥରେ ଜିଲା ମାଜିଷ୍ଟ୍ରେଟଙ୍କ ଠାରୁ 'ମୁକ୍ତିଯୁଦ୍ଧ' ସାପ୍ତାହିକ ପତ୍ରିକା ପାଇଁ ଡିକ୍ଲେଆରେସନ୍ ଆଣିବାକୁ ଯାଇଥିଲି । ଏଥିପାଇଁ କିଛି କରିବାକୁ ପଡ଼େ ନାହିଁ । କେବଳ ଜିଲା ମାଜିଷ୍ଟ୍ରେଟଙ୍କ ସାମନାରେ ଗୋଟିଏ ଦସ୍ତଖତ୍ କରିବାକୁ ପଡ଼େ । ଏଇ ମୋର ପ୍ରଥମ ପରିଚୟ । ଅଥଚ ତାଙ୍କର ଫୋର୍ଡ଼ ଗାଡ଼ିଟିକୁ ନିଜେ ଡ୍ରାଇଭ କରି କଲେକ୍ଟରେଟରୁ କ୍ୟାଣ୍ଟନମେଣ୍ଟ ଗଲା ବେଳେ, କେବେ କେମିତି ଚାନ୍ଦନିଚୌକ ଛକରେ ଦେଖିଲେ, ନିଜ ତରଫରୁ ଗାଡ଼ିରୁ ହାତ ହଲାଇ ସଂଭାଷଣ ଜଣାନ୍ତି । ସମାଜସେବୀମାନଙ୍କ ପ୍ରତି ତାଙ୍କର ଆନ୍ତରିକ ଶ୍ରଦ୍ଧା ଥିଲା । ଥରେ ଖାଦ୍ୟ ଆନ୍ଦୋଳନ ସଂକ୍ରାନ୍ତରେ ଦୁଇ ହଜାର ଲୋକଙ୍କର ଏକ ଶୋଭାଯାତ୍ରା ନେଇ ମୁଁ ଓ ରାମଚନ୍ଦ୍ର ମିଶ୍ର ଜିଲା ମାଜିଷ୍ଟ୍ରେଟଙ୍କୁ ଏକ ଦାବୀ ପତ୍ର ଦେବା ଲାଗି ତାଙ୍କ କୋଠିରେ ପହଂଚିଲୁ । ମୋର ମନେ ଅଛି, ବିରକ୍ତ ହେବା ପରିବର୍ତ୍ତେ, ସେ ଆମ୍ଭମାନଙ୍କୁ ବୈଠକଖାନାରେ ବସାଇ ଯେପରି ବ୍ୟବହାର କଲେ ତାହା ଭୁଲିବାର ନୁହେ ।

ଏହି ଶୋଭାଯାତ୍ରାର ପ୍ରାୟ ସପ୍ତାହକ ପରେ ଏଲ.ପି. ସିଂଙ୍କ ଆଦେଶରେ କଟକ ମାଲଗୋଦାମର ସୁପ୍ରସିଦ୍ଧ ଚାଉଳ ବ୍ୟବସାୟୀ ଇସ୍ପାହାନୀଙ୍କୁ କଳାବଜାର ଅଭିଯୋଗରେ ଗିରଫ କରାଗଲା । ଇସ୍ପାହାନୀ ବଂଗଳାର ମୁଖ୍ୟମନ୍ତ୍ରୀ ସୁରାବର୍ଦ୍ଦି ସାହେବଙ୍କର ବଂଧୁ ଓ ବିଭିନ୍ନ ସ୍ତରରେ ତାଙ୍କର ରାଜନୈତିକ ସଂପର୍କ ଅତି ଗଭୀର । ତାପରେ ଦେଖାଗଲା, ଜନଖାଦ୍ୟ କମିଟିର ସଭାପତି ଆଡ୍‌ଭୋକେଟ୍ ହରିହର ମହାପାତ୍ର ଇସ୍ପାହାନୀଙ୍କ ତରଫରୁ ମୋକଦ୍ଦମା ଲଢୁଛନ୍ତି । କେହି କେହି ପଚାରିବାରୁ ଆଡ୍‌ଭୋକେଟ୍ ମହାପାତ୍ର କହିଲେ, ମୁଦାଲାକୁ ପ୍ରତିରକ୍ଷଣ କରିବା ତାଙ୍କର ବୃତ୍ତିଗତ କର୍ତ୍ତବ୍ୟ ।

୪୩’ ଜୁନ ଜୁଲାଇ ବେଳକୁ କଟକରେ ଚାଉଳ ଦର ହୁ ହୁ ହୋଇ ବଢ଼ିଲା । ତିନି ବର୍ଷ ଆଗେ ଓଡ଼ିଶାରେ ଚାଉଳ ଟଂକାରେ ଆଠ ସେର ଭାଉରେ ମିଳୁଥିଲା । ବର୍ତ୍ତମାନ ଟଂକାଟିଏ ଦେଲେ ତିନି ସେର ଚାଉଳ ପାଇବା କଷ୍ଟକର ହେଲା । ଖୋଲା ବଜାର ପରିବର୍ତ୍ତେ କଳା ବଜାର ପ୍ରାଧାନ୍ୟ ଲାଭ କଲା । ନୂଆ ନୂଆ କଂଟ୍ରୋଲ ଦୋକାନ ସବୁ ଆରମ୍ଭ ହେଉଥାଏ । ଯେ କୌଣସି ଜିନିଷ କିଣିବା ପାଇଁ ‘କିଳାପୋତେଇ’ ଦେବାକୁ ପଡ଼େ । ‘‘କିଳାପୋତେଇ’’ ଶବ୍ଦଟାର ପ୍ରୟୋଗ ଦ୍ୱିତୀୟ ମହାଯୁଦ୍ଧ କାଳରେ ବିଶେଷତ୍ୱ ଲାଭ କଲା । କଥିତ ଅଛି, ପୂର୍ବ କାଳରେ ନାଉରୀମାନେ ଯଦି ଧାନ ଚାଉଳ ବା ଜିନିଷ ପତ୍ର ଭରା ନାହା ନେଇ ଅପରିଚିତ ଜାଗାରେ ରଖି ରାତ୍ରି ଯାପନ କରନ୍ତି, ତାହାହେଲେ ସାଧାରଣତଃ କୂଳରେ ଗୋଟିଏ କିଳାପୋତି ତହିଁରେ ନାହା ଦଉଡ଼ି ବାଂଧି ଦିଅନ୍ତି, ଯେପରି ଡଂଗା ଭାସି ନ ଯିବ । ଅପର ଗାଁ ନଈ ବା ନାଳ କୂଳରେ ଏପରି କିଳା ପୋତିଲେ, ସେଥିପାଇଁ ଗାଁ ବାଲାଙ୍କୁ ସାମାନ୍ୟ ମାସୁଲ ଦେବାକୁ ପଡ଼େ । ଅବଶ୍ୟ ଏପରି ଦେୟ ପାଇଁ କୌଣସି ଆଇନ କାନୁନ୍‌ରେ ବ୍ୟବସ୍ଥା ନଥାଏ, କିନ୍ତୁ ପାରଂପାରିକ ରୀତିରେ ଏପରି ଦିଆଯାଏ । ଏହି ଦେୟର ନାମ ‘କିଳାପୋତେଇ’ । ଯୁଦ୍ଧ କାଳରେ ଯେ କୌଣସି ପ୍ରକାର ସରକାରୀ ସୁବିଧା ସୁଯୋଗ ପାଇଁ କିଳାପୋତେଇ ଅର୍ଥାତ୍ ଉତ୍କୋଚ ଦେବାକୁ ପଡୁଥିଲା । ଚାଉଳ ଚିନି କିରାସିନି ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ପାଇଁ କିଳାପୋତେଇ ଦେଇ ପରମିଟ୍ ଆଣିବାକୁ ପଡ଼େ । ଯେଉଁ ଦୋକାନୀ ଏପରି ଉତ୍କୋଚ ଦେଇ ଜିନିଷ କିଣେ, ସେ ସ୍ୱଭାବତଃ ଖରିଦ୍‌ଦାର ଠାରୁ ଅଧିକ ଦାମ ନେଇ ଜିନିଷ ବିକେ । ସୁବିଖ୍ୟାତ ଔପନ୍ୟାସିକ ଫକୀର ମୋହନ ସେନାପତି ,ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ଉତ୍କୋଚ ସବୁଦିନେ ଥିଲା ଓ ରହିବ । କିନ୍ତୁ ଯୁଦ୍ଧ ସମୟରେ ଏ ବିଭତ୍ସ ପ୍ରଥା ଅତି ମାତ୍ରାରେ ବଢ଼ିଗଲା । କିଳାପୋତେଇ ବିନା ଯେ କୌଣସି ପ୍ରକାରର ନ୍ୟାୟ ସଂଗତ ସୁବିଧା ସୁଯୋଗ ମିଳିବ ନାହିଁ, ଏହା ଏକ ଅଲିଖିତ ନିୟମରେ ପରିଣତ ହେଲା । ଏହି ଅଶୁଭ ବ୍ୟାଧି ଏବେ ବିଧିବଦ୍ଧ ପରଂପରାରେ ପରିଣତ ହେଲାଣି ।

କଟକରେ ଆମ୍ଭେମାନେ ବାରବାର ସଭା ଶୋଭାଯାତ୍ରା କରି ଦରିଦ୍ର ଓ ଖଟିଖିଆ ଲୋକଙ୍କୁ ସୁବିଧାରେ ଚାଉଳ ଯୋଗାଇ ଦେବା ପାଇଁ ଆନ୍ଦୋଳନ ଆରମ୍ଭ କରିଥିଲୁ । ଚାଉଳ ଯୋଗାଣ ବ୍ୟବସ୍ଥାର ସୁନିୟଂତ୍ରଣ ପାଇଁ ଦାବୀ କରୁଥିଲୁ । ଟଂକାରେ ଚାଉଳ ଚାରିସେର ହେଉ, ଏ ଥିଲା ଆନ୍ଦୋଳନକାରୀ

ମାନଙ୍କର ମୁଖ୍ୟ ଧ୍ୱନି । କଟକର ଉପକଂଠ ଅଂଚଳରୁ ଏହି ସବୁ ଶୋଭାଯାତ୍ରା ଆରମ୍ଭ କରାଯାଏ । ଦେଉଳସାହୀ ଓ ତୁଳସୀପୁର ଅଂଚଳର ଲୋକମାନଙ୍କୁ ମୁଁ, ଶରତ ପଟ୍ଟନାୟକ ଓ ଯଦୁନନ୍ଦନ ବିଶ୍ୱାଳ ସଂଗଠିତ କରୁ । ଛତ୍ର ବଜାର ଓ ଶଙ୍କରପୁର ଅଂଚଳର ବାସିନ୍ଦାମାନଙ୍କୁ ରାମଚନ୍ଦ୍ର ମିଶ୍ର ଓ ଶମ୍ଭୁ ବିଶ୍ୱାଳ ସଂଗଠିତ କରନ୍ତି । ଭାରତ ସେବକ ସମିତିର ସଦସ୍ୟ ଶ୍ରୀଯୁକ୍ତ ଲକ୍ଷ୍ମୀ ନାରାୟଣ ସାହୁ ଏ ଆନ୍ଦୋଳନରେ ବିଶେଷ ଭାଗ ନେଉଥିଲେ । ଏହି ସଂକ୍ରାନ୍ତରେ ମତେ କେତେଥର ଭଦ୍ରଖ, ଦୋଳସାହୀ ଓ ବାଲେଶ୍ୱର ମଧ୍ୟ ଯିବାକୁ ପଡ଼ିଥିଲା । ଖାଦ୍ୟ ଆନ୍ଦୋଳନରୁ ବହୁ କର୍ମୀ ବାହାରି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ।

ସେହି ବର୍ଷ ଗଂଜାମରେ ମଧ୍ୟ ବିକଟ ମରୁଡ଼ି ଓ ଖାଦ୍ୟାଭାବ ଦେଖା ଦେଇଥାଏ । ମୁକ୍ତିଯୁଦ୍ଧ ପତ୍ରିକାରେ ତାର ବିବ୍‌ରଣୀ କେତେକାଂଶରେ ପ୍ରକାଶିତ ହେଉଥାଏ । ମୁଁ ସେତେବେଳେ ବମ୍ବେରୁ ପ୍ରକାଶିତ "ପିପ୍‌ଲସ ଓ୍ୱାର" ପତ୍ରିକାର ଓଡ଼ିଶା ସମ୍ବାଦଦାତା ଥିଲି । ଓଡ଼ିଶା ଅବସ୍ଥାର ବିଶେଷ ବିବରଣୀ ଫଟୋଚିତ୍ର ସହ ପିପଲ୍‌ସ ଓ୍ୱାର ପତ୍ରିକାରେ ମଧ୍ୟ ପ୍ରକାଶିତ ହେଉଥାଏ । ଅକ୍ଟୋବର ମାସରେ ଭଗବତୀ ବାବୁ କୃଷକ ସଂଘର ସଂପାଦକ ସ୍ୱର୍ଗୀୟ ସାଧୁଚରଣ ମହାନ୍ତିଙ୍କ ସହିତ ଗଂଜାମର ମରୁଡ଼ି ଅଂଚଳକୁ ଗଲେ । ସାତ ଦିନ ଗଂଜାମର ବିଭିନ୍ନ ଗାଁ ପରିଭ୍ରମଣ କଲା ପରେ ତାଙ୍କୁ ହଠାତ୍ କଟକ ଫେରିବାକୁ ହେଲା, ଏବଂ ସେ ଫେରିଲେ ଅସୁସ୍ଥ ଅବସ୍ଥାରେ । ବାରମ୍ବାର ପାଇଖାନା ଯିବା ହେତୁ, କଲେରାରେ ଆକ୍ରାନ୍ତ ବୋଲି ସଂଦେହ କରାଯାଇ ତାଙ୍କୁ କଟକ ବଡ଼ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ଆମ୍ଭେମାନେ ଅହର୍ନିଶି ଜଗି ରହି ତାଙ୍କ ଚିକିତ୍ସାର ବ୍ୟବସ୍ଥା କଲୁ । ଚାରିଦିନ ପରେ ଝାଡ଼ାର ପ୍ରକୋପ ବଂଦ ହୋଇଗଲା । କିନ୍ତୁ କଲେରାର ଲକ୍ଷଣ ଅସ୍ପଷ୍ଟ ହେଲେ ମଧ୍ୟ, ସେ ସୁସ୍ଥ ହେଲେ ନାହିଁ । ଆହୁରି ଦୁଇ ତିନି ଦିନ ହସପିଟାଲରେ ରହିଲେ । କଲେରା ଓ୍ୱାର୍ଡ଼ରେ ରଖିବାର ଆଉ ଆବଶ୍ୟକତା ନାହିଁ ବୋଲି ଡାକ୍ତରମାନେ ପରାମର୍ଶ ଦେଲେ । ଆମ୍ଭେ ତାଙ୍କୁ ଡଗରପଡ଼ା ବସାଘରକୁ ନେଇ ଆସିଲୁ । କିନ୍ତୁ ଘରକୁ ଫେରିଲେ ମଧ୍ୟ ବିଶେଷ ପରିବର୍ତ୍ତନ ହେଲା ନାହିଁ ।

ବାଇଶି ତାରିଖ ଅକ୍ଟୋବର ରାତି ଥିଲା ଏକ କାଳ ରାତ୍ରି । ସଂଧ୍ୟା ପରେ ତାଙ୍କର ଅବସ୍ଥା ଖରାପ ଆଡ଼କୁ ଗତି କଲା । ଘରେ କେବଳ ପତ୍ନୀ ସରସ୍ୱତୀ ପାଣିଗ୍ରାହୀ ଓ ତିନୋଟି ଛୋଟ ଝିଅ । ଖୁସି (ସୁଷମା ପାଣିଗ୍ରାହୀ)ର ବୟସ ସାତ ଆଠ ବର୍ଷ, ହାସି (ଚନ୍ଦ୍ରିକା ମହାପାତ୍ର)ର ବୟସ ପ୍ରାୟ ପାଂଚ ବର୍ଷ ଏବଂ ତୃତୀୟଟି ମାତ୍ର କେତେ ମାସର । ଆମ୍ଭେମାନେ ତାଙ୍କ ଚିକିତ୍ସାରେ ପୁଣି ଲାଗି ପଡ଼ିଲୁ । ଡି ହାଇଡ୍ରେସନ ବଂଦ କରିବା ପାଇଁ ସାଲାଇନ ଦେବାକୁ

ଡାକ୍ତର ପରାମର୍ଶ ଦେଲେ । କିନ୍ତୁ କଟକରେ ସେ କାଳରେ ଘରୋଇ ଚିକିତ୍ସକମାନଙ୍କ ପାଖରେ ସାଲାଇନ ଆଟାଚ୍‌ମେଣ୍ଟଟିଏ ମଧ୍ୟ ନଥାଏ । ଭଗବତୀ ବାବୁଙ୍କ ବ୍ୟକ୍ତିଗତ ବଂଧୁ ଦୀନବଂଧୁ ସାହୁ ଆଡ୍‌ଭୋକେଟ ଓ ମୁଁ ଗୋଟିଏ ଘୋଡ଼ା ଗାଡ଼ିରେ ବସି ରାତି ବାରଟାରୁ ଦୁଇଟା ମଧ୍ୟରେ ସାଲାଇନ ଆଟାଚମେଣ୍ଟ ସଂଧାନରେ ବହୁ ଘରୋଇ ଚିକିତ୍ସକଙ୍କ ଘର ବୁଲି ଆସିଲୁ । ନିରାଶ ହୋଇ ଫେରିବା ପରେ ଖବର ମିଳିଲା, ଟାଉନ ହଲ ରୋଡ଼ରେ ରହୁଥିବା ଡାକ୍ତର ସନାତନ ମୁଖାର୍ଜିଙ୍କ ପାଖରେ ଏହି ଆଟାଚମେଣ୍ଟ ଅଛି । ଡାକ୍ତର ମୁଖାର୍ଜି ଭଗବତୀ ବାବୁଙ୍କର ଅଗ୍ରଜ କାଳିନ୍ଦୀ ବାବୁଙ୍କର ଅନ୍ତରଂଗ ବଂଧୁ ଶରତ ଚନ୍ଦ୍ର ମୁଖାର୍ଜିଙ୍କର ଭାଇ । ଖବର ପାଇବା ମାତ୍ରେ ଡାକ୍ତର ମୁଖାର୍ଜି ସାଂଗେ ସାଂଗେ ଦୌଡ଼ି ଆସିଲେ । ରାତି ପାହାନ୍ତିଆରେ ଅଧ୍ୟାପକ ଡାକ୍ତର ବନ ବିହାରୀ ପଟ୍ଟନାଏକ ଝାଡ଼ା ସାମ୍ପଲ୍ ନେଇ ତତ୍କାଳୀନ ମେଡ଼ିକାଲ ସ୍କୁଲ ଲାବୋରେଟାରୀକୁ ପରୀକ୍ଷା ପାଇଁ ନେଇଗଲେ । ସାଲାଇନ ଦେବା ପରେ ରୋଗୀ ଟିକିଏ ସଚେତ ହୋଇ ଉଠିଲେ । ଆଖି ମଧ୍ୟ ଖୋଲିଲେ । ଡାକିଲେ ହଁ ନାହିଁ ଜବାବ ମଧ୍ୟ ଦେଲେ । ଆମେ ଭାବିଲୁ ତାଙ୍କ ଅବସ୍ଥାରେ ନିଶ୍ଚୟ ଉନ୍ନତି ଘଟୁଛି । କିନ୍ତୁ ଏ ସବୁ ଥିଲା ବିଧିର ପ୍ରତାରଣା । ମୃତ୍ୟୁ ସହିତ ଜୀବନର ଚରମ ସଂଘର୍ଷର ସଂକେତ । ଦୀପ ନିର୍ବାଣ ପୂର୍ବରୁ ଯେପରି ଜୋରରେ ଜଳି ଉଠେ । ସକାଳ ପାଂଚଟାରେ ସବୁ ଶେଷ । ଏକ ମହାନ୍ ଜୀବନ ଦୀପ ନିଷ୍ପ୍ରଭ ହୋଇଗଲା । ସେ ଚିରଦିନ ପାଇଁ ଆଖି ବୁଜିଲେ ।

ବଡ଼ି ସକାଳୁ ଉଦଗରପଡ଼ା ବ୍ରାହ୍ମଣ ସାହିର ସେଇ ଚାଳଘର ପାଖ ଛୋଟ ପଡ଼ିଆଟି ଲୋକାରଣ୍ୟ ହୋଇ ଉଠିଥିଲା । ନୀରବ କ୍ରନ୍ଦନରତ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଆଡ୍‌ଭୋକେଟ ହରିହର ମହାପାତ୍ର, ଆଡ୍‌ଭୋକେଟ ଦୀନବଂଧୁ ସାହୁ, ଭାରତ ସେବକ ସମିତିର ସଭ୍ୟ ଶ୍ୟାମ ସୁନ୍ଦର ମିଶ୍ର, ଶରତ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରାମ ଓ ଆଉ ଅନେକ ଶୋକାଭିଭୂତ ହୋଇ ଠିଆ ହୋଇଥାନ୍ତି । ହଠାତ୍ ସକାଳ ଛ'ଟାରେ ଡାକ୍ତର ବନବିହାରୀ ପଟ୍ଟନାୟକଙ୍କ କାର ଘର ଦୁଆର ମୁହଁରେ ଲାଗିଲା । ବନୁ ବାବୁ ଓ ଡାକ୍ତର ଷଡ଼ଙ୍ଗୀ ଗାଡ଼ି ଭିତରୁ ଚିତ୍କାର କଲେ, "ଏ କଲେରା ନୁହେ, ଏକ ପ୍ରକାର ଡିସେଣ୍ଟ୍ରି, ଡିସେଣ୍ଟ୍ରି ଚିକିତ୍ସା କରିବା ଦରକାର ।" ବନୁ ବାବୁ ଜାଣି ନଥିଲେ ଯେ, ସେତେବେଳେକୁ ସବୁ ସରି ଯାଇଛି । ଛ' ସାତ ଦିନ ଡାକ୍ତରଖାନାରେ ରହି ମଧ୍ୟ ଯଥା ସମୟରେ ରୋଗ ନିର୍ଣ୍ଣୟ ହୋଇ ପାରିଲା ନାହିଁ । ଏକ ଅମ୍ଳାନ ପ୍ରତିଭାର ଅକାଳ ବିଲୟ ଘଟିଲା ।

ଶବ ଶୋଭାଯାତ୍ରା ଆରମ୍ଭ ହେଲା ଦିନ ଦଶଟାରେ । ଶବ ବାହକ ଥିଲୁ ମୁଁ ଓ ବଂଧୁ ରାମଚନ୍ଦ୍ର ରାମ ଏବଂ ରସାନନ୍ଦ ନାୟକ ଓ ଜଗବଂଧୁ ସାହୁ । ପଛରେ ଥିଲେ ହରିହର ମହାପାତ୍ର, ଦୀନବଂଧୁ ସାହୁ, ଶ୍ୟାମ ସୁନ୍ଦର ମିଶ୍ର, ଅନନ୍ତ ପଟ୍ଟନାୟକ, ଶରତ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ପର୍ଶୁରାମ ଦାସ, ଗଗନ ବିହାରୀ ଜେନା ଓ ସମାଜବାଦୀ ଆନ୍ଦୋଳନ ସହ ସଂପୃକ୍ତ ଶହ ଶହ ଲୋକ । ଅନ୍ତରର ବେଦନା ଓ ଆଖିର ଲୁହ ଲୁଚାଇବାକୁ ଯାଇ ଆମ୍ଭେମାନେ "ଭଗବତୀ ପାଣିଗ୍ରାହୀ ଜିନ୍ଦାବାଦ" ଧ୍ୱନି ଦେଇ ସତୀ ଚଉରା ଚାଲିଲୁ, ଯେଉଁଠି ଓଡ଼ିଶାର କେତେ ବରପୁତ୍ରଙ୍କର ଶେଷ ଚିତା ଜଳି ଯାଇଛି । ଭଗବତୀ ବାବୁଙ୍କର ପୁଅ ନଥିଲେ । ଛତିଶ ବର୍ଷ ବୟସରେ ଦେହାବସାନ । କିଏ ମୁଖାଗ୍ନି ଦେବ ? ସମସ୍ତେ କହିଲେ ପରଂପରା ରକ୍ଷା କରିବା ପାଇଁ ନିକଟତମ ସଂପର୍କୀୟ ଭାବରେ ମୁଁ ମୁଖାଗ୍ନି ଦେବା ଉଚିତ । କାଳିନ୍ଦୀ ମାମୁଁ ଦୁଃଖରେ ମ୍ରିୟମାଣ ହୋଇ ସତୀ ଚଉରା ଆସି ନ ଥିଲେ । ଶେଷରେ ତାହାହିଁ ହେଲା । ମୁଁ ମୁଖାଗ୍ନି ଦେଲି ।

ଭଗବତୀ ବାବୁଙ୍କର ଅକାଳ ବିୟୋଗ ମୋତେ ଦାରୁଣ ଆଘାତ ଦେଇଥିଲା । ମତେ ସେତେବେଳେ ବାଇଶି ବର୍ଷ ବୟସ । ଏଥି ପୂର୍ବରୁ ମୋର ଏ ପ୍ରକାରର ଅଭିଜ୍ଞତା ନ ଥିଲା । ଚିତା ଜଳିବାର ଶେଷ ଦୃଶ୍ୟ, ସରସ୍ୱତୀ ଦେବୀଙ୍କର ଲୋତକ ଧାର, ହାସି ଖୁସିଙ୍କର କ୍ରନ୍ଦନରୋଳ - ଏ ସବୁ ସହ୍ୟ କରିବାକୁ ମୋର ଶକ୍ତି ନଥିଲା । ବର୍ଷ ବର୍ଷ ଧରି ସେ ବେଦନାର ଉପଶମ ହେଲା ନାହିଁ । ମୃତ୍ୟୁ ପରେ ପ୍ରାୟ ଦଶ ବାର ବର୍ଷ ପର୍ଯ୍ୟନ୍ତ ମୁଁ ତାଙ୍କୁ ମଝିରେ ମଝିରେ ସ୍ୱପ୍ନରେ ଦେଖେ । ସେ ଖଦଡ଼ ପଂଜାବୀ ପିନ୍ଧି, ଅଳ୍ପ ଦାଢ଼ି ରଖି ସ୍ୱପ୍ନରେ କେଉଁଠୁ ଆବିର୍ଭୂତ ହୁଅନ୍ତି । ମୁଁ ପଚାରେ, "ମାମୁଁ ତୁମେ କେଉଁଠୁ ଆସିଲ ?" ସେ ଉତ୍ତର ଦିଅନ୍ତି- "ମୁଁ ତ ଅଣ୍ଡର ଗ୍ରାଉଣ୍ଡ ଥିଲି, ବର୍ତ୍ତମାନ ବାହାରକୁ ଆସିଛି ।" ମୁଁ କହେ, "ନା ନା, ମୁଁ ତ ତୁମର ମୁଖାଗ୍ନି ଦେଇଥିଲି, ତୁମେ ଅଣ୍ଡର ଗ୍ରାଉଣ୍ଡ ଗଲ କେତେବେଳେ ?" ତାପରେ ସ୍ୱପ୍ନ ଭାଂଗି ଯାଏ । ଏହି ଏକ ପ୍ରକାରର ସ୍ୱପ୍ନ ପ୍ରଥମେ ମୁଁ ବାରବାର ଦେଖୁଥିଲି । ସମୟ କ୍ରମେ ସ୍ୱପ୍ନର ପୁନରାବୃତ୍ତି କମି ଆସିଲା ।

୨୩ ତାରିଖ ଅକ୍ଟୋବର ଦିନ ଶବଦାହ ପରେ ଶ୍ମଶାନରୁ ଫେରି ମୁଁ ଥଣ୍ଡା ପାଣିରେ ଗାଧୋଇ ପଡ଼ିଲି । ଖାଇବାକୁ ତ ସ୍ପୃହା ନ ଥିଲା । ଶୋଇ ପଡ଼ିବାକୁ ଚେଷ୍ଟା କଲି । ପୂର୍ବ ରାତି ପୂରା ଅନିଦ୍ରା ଥିବା ସତ୍ତ୍ୱେ ନିଦ

ଆସିଲା ନାହିଁ । ଉପରବେଳା ପାଂଚଟା ବେଳକୁ ନିଦ୍ରାଦେବୀ ଦୟା ପରବଶ ହେଲେ । ରାତିରେ ମୁଁ ଉଠି ନାହିଁ । ନିଦ ଭାଂଗିଲା ସକାଳ ସାତଟା ବେଳେ । ୨୪ ତାରିଖ ସଂଧ୍ୟା ସାତଟାରେ ଟାଉନ ହଲରେ ଶୋକ ସଭା । ଶରତ ବାବୁ (ଶରତ ପଟ୍ଟନାୟକ) ବରାଦ୍ କଲେ, ସଭା ପାଇଁ ଗୋଟିଏ ଗୀତ ଲେଖିବାକୁ । କ'ଣ ଲେଖିବି ? ମୋର ଅଂଗ ପ୍ରତ୍ୟଙ୍ଗ ଅବସନ୍ନ, ମସ୍ତିଷ ଭାରାକ୍ରାନ୍ତ । ଭଗବତୀ ପାଣିଗ୍ରାହୀ ଥିଲେ ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରାଣ ପ୍ରତିଷ୍ଠାତା । ଭଗୀରଥ ହିମାଳୟରୁ ଗଂଗାକୁ ବହି ଆଣିଲା ପରି, ସେ ଓଡ଼ିଶାକୁ ମାର୍କ୍ସବାଦୀ ଚିନ୍ତାଧାରା ବହି ଆଣିଥିଲେ । ଓଡ଼ିଶାର ସାହିତ୍ୟ ସଂସ୍କୃତି ଓ ମୁକ୍ତି ଆନ୍ଦୋଳନର ସବୁ କ୍ଷେତ୍ରରେ ତାଙ୍କର ପ୍ରତିଭା ଜାଜ୍ୱଲ୍ୟମାନ ଥିଲା । ତାଙ୍କର ଅବଦାନ ବିଷୟରେ ମୁଁ ପୁଣି କି ଗୀତ ଲେଖିବି ? ବିଛଣାରେ ପଡ଼ି ରହି ଖଣ୍ଡେ ଛିଣ୍ଡା ଖାତାରେ ଲେଖିବାକୁ ଆରମ୍ଭ କଲି- କବିତା ନୁହେ ଗୀତ । ''ନବଯୁଗ ନାୟକ ଶହୀଦ ହେ ସାଥୀ'' ଗୀତଟି ସେ ଦିନ ସଂଧ୍ୟାରେ ଟାଉନହଲ ସଭାରେ ବୋଲା ଯାଇଥିଲା ଏବଂ ବହୁ ବର୍ଷ ଧରି ଭଗବତୀଙ୍କ ଶ୍ରାଦ୍ଧ ସଭାରେ ଏ ଗୀତଟି ନିଶ୍ଚିତ ଭାବରେ ବୋଲାଯାଏ । ରଚନାଟି ଏଠାରେ ଉଦ୍ଧାର କରୁଛି ।

ନବଯୁଗ ନାୟକ ଶହୀଦ ହେ ସାଥୀ
ତୁମରି ବନ୍ଦନା ରଚେ
ଅନଶନ ଆହତ ଦଳିତ ଏ ଜାତି
ତୁମରି ସଂଧାନେ ନାଚେ ।

ଶୁଭ ଦେଲା ସେ ଯେ ବିପ୍ଳବୀ ମେଳେ
ଗଢ଼ିଲା ମୁକ୍ତି ରଣ ସେନା ଦଳେ
କେ ଦେଲା ବିରତି ସୁପ୍ତ ସେନାପତି
ଅଚିମ ନିଃଶ୍ୱାସ ଡାଳେ
ମରଣର ତୁଚ୍ଛ ପାଷାଣ କବଳେ
ଆଜି ତା ଶେଷ ଚିତା ଜଳେ ।
ଲିଭିଲା ମହାଦୀପ୍ତି, ଅନନ୍ତ ମହାଜ୍ୟୋତି
କାହିଁରେ ଭଗବତୀ, କାହିଁ ସେ ସେନାପତି
ତା ମୂରତି ମନେ ନାଚେ । (୧)

ଅତ୍ୟାଚାର ଯେବେ ଅଭିନବ ରୋଷେ
ଥରାଇଲା ବିଶ୍ୱ ପ୍ରଳୟ ପରଶେ
ଶୋଷଣର ବୁକୁ ଚିରି, ପ୍ରତିରୋଧ ଶିଖା ତୋଳି
ଚାଲିଲ ମହାରଥ, ନ ମାନି ପ୍ରତିଘାତ
କାହିଁରେ ଭଗବତୀ, ଅକାଳେ ଝରିଚି
କାହିଁରେ ମହାରଥୀ, କାହିଁ ସେ ସେନାପତି
ତା ମୂରତି ମନେ ନାଚେ ।(୨)

ମରଣ ସାଥେ ଯେ କଳିଲା ବଳ
ହସି କଷଣେ ଖେଳିଲା ଖେଳ
ସେ ସିନା ଯାଇଛି, ରହିଛି ତା ନୀତି
ତା ରୀତି ପାଳଇ ଦୁନିଆ ସକଳ
ମୁକ୍ତି ପ୍ରୟାସେ ଯୁଝିବ ହରଷେ
ଜନତା ହେଲାଣି ଅଥୟ ଆକୁଳ
କାହିଁ ସେ ଦଧୀଚି, ମରଣ ବରିଚି
କାହିଁରେ ଭଗବତୀ, କାହିଁ ସେ ସେନାପତି
ତା ମୂରତି ମନେ ନାଚେ ।(୩)

ଭଗବତୀଙ୍କ ସ୍ମୃତିରେ 'ମୁକ୍ତିଯୁଦ୍ଧ' ପତ୍ରିକାର ଗୋଟିଏ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶିତ ହେଲା । ବହୁ ବିଶିଷ୍ଟ ବ୍ୟକ୍ତି ଏ ସଂଖ୍ୟାରେ ଲେଖିଥିଲେ । କାଳିନ୍ଦୀ ବାବୁଙ୍କ କବିତା "ହସେ ପାହାନ୍ତି ତାରା" ସଚ୍ଚିରାଉତରାୟଙ୍କ କବିତା "ହେ ବଂଧୁ ବିଦାୟ" ଅନନ୍ତ ପଟ୍ଟନାୟକଙ୍କ କବିତା ମୁକ୍ତିଯୁଦ୍ଧର ପୃଷ୍ଠା ମଣ୍ଡନ କରିଥିଲା । ଶୋକସଭା ଉପଲକ୍ଷେ ରଚିତ "କାହିଁରେ ଭଗବତୀ ?" ଗୀତଟି ମଧ୍ୟ ଏ ସଂଖ୍ୟାରେ ସ୍ଥାନ ପାଇଥିଲା । ୧୯୪୫ ଅକ୍ଟୋବର ମାସରେ କଟକ ଟାଉନ ହଲରେ ଅନୁଷ୍ଠିତ ଶ୍ରାଦ୍ଧ ସଭାରେ ସୁବିଖ୍ୟାତ କଳାକାର ସ୍ୱର୍ଗୀୟ ଉଦୟନାଥ ସାହୁ ଏ ଗୀତଟିକୁ ସଂଗୀତ ରୂପ ଦେଇଥିଲେ । ମୋ ସମେତ ସଭାରେ ଉପସ୍ଥିତ ଭଗବତୀଙ୍କ ବହୁ ସାଥି ସହୋଦରଙ୍କ ଆଖିରୁ ଝରିଲା ଉଷ୍ମ ଲୁହ ଧାର । ବରିଷ୍ଠ ସାଥି ବିଜୟ ଚନ୍ଦ୍ର ଦାସ ମୋ ହାତକୁ ଜାବୋଡ଼ି ଧରି କହିଲେ, ତୁମ କଲମ ସାର୍ଥକ ହୋଇଛି ।



# ଛାତ୍ର ଆନ୍ଦୋଳନର ଅଭ୍ୟୁତ୍‌ଥାନ

ବର୍ଷେ ଜେଲ ଭୋଗିଲା ପରେ ବହୁ ଛାତ୍ରସାଥୀ ବ୍ରହ୍ମପୁର ଜେଲରୁ ଖଲାସ ହୋଇ ଆସିଲେ । ସତ୍ୟବାଦୀ ମିଶ୍ର, ରାମଚନ୍ଦ୍ର ରାମ, ଅମିତାଭ ମହାପାତ୍ର ପ୍ରମୁଖ ଅନେକ ବଂଧୁ ସେପ୍ଟେମ୍ବର ମାସରେ ଖଲାସ ହୋଇ ପୁଣି ରେଭେନ୍ସା କଲେଜରେ ନାମ ଲେଖାଇଲେ । ମୁଁ କଲେଜ ଛାଡ଼ିଥିଲେ ମଧ୍ୟ ଛାତ୍ର ସଂଗଠନର ପୁନରୁତ୍‌ଥାନ ଦାୟିତ୍ୱ ଗ୍ରହଣ କଲି । ଯେଉଁ ଛାତ୍ର ନେତାମାନେ ଜେଲ ବାହାରକୁ ଆସିଲେ, ସେମାନଙ୍କୁ ନେଇ ପୁଣି ଥରେ କିପରି ଛାତ୍ର ଆନ୍ଦୋଳନ ଗଢ଼ି ଉଠିବ, ସେଥିପାଇଁ ପ୍ରବଳ ଚେଷ୍ଟା ଆରମ୍ଭ ହେଲା । ୧୯୪୩ ନଭେମ୍ବର ପ୍ରଥମ ସପ୍ତାହରେ ଛାତ୍ର କର୍ମୀମାନଙ୍କର ଏକ ପରିବର୍ଦ୍ଧିତ ବୈଠକ ବସିଲା । କଟକ ପୁରୀ ଖୋର୍ଦ୍ଧା ସମେତ ଭଦ୍ରଖ ଓ ବାଲେଶ୍ୱରରୁ ମଧ୍ୟ କେତେକ କର୍ମୀ ଯୋଗ ଦେଲେ । ସତ୍ୟବାଦୀ ମିଶ୍ରଙ୍କୁ (ପରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ଅଧ୍ୟକ୍ଷ) ସାଧାରଣ ସଂପାଦକ ନିଯୁକ୍ତ କରାଗଲା । ସେ ମଧ୍ୟ କମ୍ୟୁନିଷ୍ଟ ଦଳ ପ୍ରତି ସମ୍ପୂର୍ଣ୍ଣ ସହାନୁଭୂତିଶୀଳ ଥିଲେ । ସେ ଆନନ୍ଦରେ ଏ ଦାୟିତ୍ୱ ଗ୍ରହଣ କଲେ ।

ସେହି ସମୟରେ ଓଡ଼ିଶାର ଚାରିଆଡ଼େ ଅଭାବ, ଅନଟନ ଓ ଅନାହାର ମୃତ୍ୟୁର ନୀରବ ଶୋଭାଯାତ୍ରା ଚାଲିଥାଏ । ଏଣେ ରାଜନୀତି କ୍ଷେତ୍ରରେ ସବୁ ଶୂନ୍‌ଶାନ୍ । କଂଗ୍ରେସ, ସାମ୍ୟବାଦୀ ଓ କମ୍ୟୁନିଷ୍ଟ ନେତାମାନେ କାରାରୁଦ୍ଧ । କେଉଁ କାର୍ଯ୍ୟକ୍ରମ ଗ୍ରହଣ କଲେ, ଶିକ୍ଷାନୁଷ୍ଠାନମାନଙ୍କରୁ ଶ୍ମଶାନର ନୀରବତା ଭାଂଗି ପୁଣି ଥରେ ଉଷ୍ମ ରାଜନୈତିକ ବାତାବରଣ ସୃଷ୍ଟି କରାଯାଇ ପାରିବ, ଏହା ଚିନ୍ତାର ବିଷୟ ହେଲା । ଆମେମାନେ ରାଜନୈତିକ ସ୍ତରରେ କାରାରୁଦ୍ଧ ଜାତୀୟ ନେତାମାନଙ୍କର ମୁକ୍ତି ପାଇଁ ଆନ୍ଦୋଳନ କରିବାକୁ ସ୍ଥିର କଲୁ । ପ୍ରାକୃତିକ ଦୁର୍ବିପାକ ରୋକିବା ପାଇଁ ରିଲିଫ ଆନ୍ଦୋଳନର ସହାୟକ ଭାବରେ କାର୍ଯ୍ୟ କରିବାକୁ ନିଷ୍ପତ୍ତି ନେଲୁ । ସାଂସ୍କୃତିକ କାର୍ଯ୍ୟକ୍ରମ ଜରିଆରେ ଅର୍ଥ ସଂଗ୍ରହ କରି ରିଲିଫ୍ କାର୍ଯ୍ୟରେ ନିୟୋଜିତ କରିବା ପାଇଁ ଡାକରା ଦେଲୁ ।

କଟକରେ ପ୍ରଥମେ ଏହି କାର୍ଯ୍ୟକ୍ରମର ଶୁଭାରମ୍ଭ ହେଲା । ଅନ୍ନପୂର୍ଣ୍ଣା ରଂଗମଂଚରେ ଗୋଟିଏ ନୃତ୍ୟ ବିଚିତ୍ରା ଅନୁଷ୍ଠାନର ଆୟୋଜନ କରାଗଲା । ଲକ୍ଷ୍ମୀନାରାୟଣ ସାହୁଙ୍କ ସଂପର୍କୀୟ ଭାରତ ସେବକ ସମିତିର କର୍ମୀ ରାଧାକୃଷ୍ଣ ସାହୁଙ୍କ କନ୍ୟା କୁମାରୀ ମନୋରମା ସାହୁ ଏ ଅନୁଷ୍ଠାନରେ ନୃତ୍ୟ ପରିବେଷଣ

କରିଥିଲେ । ବିଶିଷ୍ଟ ନୃତ୍ୟ ଶିଳ୍ପୀ ରେଭେନ୍ସା କଲେଜର ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ସୁରେନ୍ଦ୍ର ମହାନ୍ତି ଆମ୍ଭମାନଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ଆଇ.ଏ. ପଢ଼ିଲା ବେଳେ ପଶ୍ଚିମ ଛାତ୍ରାବାସରେ ରହୁଥିବା ସମୟରେ ସୁରେନ୍ଦ୍ର ପୂର୍ବ ଛାତ୍ରାବାସର ଅନ୍ତେବାସୀ ଓ ସେହି ସମୟରୁ ତାଙ୍କ ସହିତ ବନ୍ଧୁତା । ପରେ ସେ କଟକ ଆକାଶବାଣୀର ନାଟକ ବିଭାଗରେ ପ୍ରୋଗ୍ରାମ ଡାଇରେକ୍ଟର ରହି ବିଶେଷ ସୁନାମ ଅର୍ଜନ କରିଥିଲେ । ସପ୍ତଦଶକରେ ତାଙ୍କର ଅକାଳ ମୃତ୍ୟୁ ହେଲା । ଓଡ଼ିଶାରେ କଳା ଜଗତରୁ ଗୋଟିଏ ଉଜ୍ଜ୍ୱଳ ତାରକା ବିଲୀନ ହୋଇଗଲା ।

ନୃତ୍ୟ ବିଚିତ୍ରା ଅନୁଷ୍ଠାନର ବର୍ତ୍ତମାନ ଯୁଗରେ କୌଣସି ନୂତନତ୍ୱ ନାହିଁ । ଏବେ ପ୍ରତି ସାହି ବସ୍ତିରେ ସଂଗୀତ ଓ କଳା ସଂଗଠନମାନ ଗଢ଼ି ଉଠିଛି । କଳାର ବିକାଶ ପାଇଁ ସରକାରୀ ସୂତ୍ରରୁ ମଧ୍ୟ ନାନା ଭାବରେ ପ୍ରୋତ୍ସାହିତ କରାଯାଉଛି । କିନ୍ତୁ ଚାଳିଶ ଦଶକରେ ସଂଗୀତ ଓ ନୃତ୍ୟକଳାର ଆଦର ଥିଲା ଅତି ସୀମିତ । ମୁଷ୍ଟିମେୟ କେତେକଙ୍କୁ ବାଦ୍ ଦେଲେ, ସାଧାରଣ ଭଦ୍ର ପରବାରର ଝିଅମାନେ ମଂଚ ଉପରେ ନୃତ୍ୟ ପରିବେଷଣ କରିବାକୁ ରୁଚିସଂଗତ ମନେ କରାଯାଉନଥିଲା । କେତେକ ବଂଗୀୟ ପରିବାରର ଝିଅମାନଙ୍କ ବ୍ୟତୀତ ଓଡ଼ିଶା ଝିଅମାନଙ୍କୁ ସାଧାରଣ ଅନୁଷ୍ଠାନରେ ଗୀତ ଗାଇବାକୁ ପରିବାରର କର୍ତ୍ତାମାନେ ସୁଯୋଗ ଦେଉ ନଥିଲେ । ଯାହାହେଉ ଦୁଃସ୍ଥ ସାହାଯ୍ୟ ପାଇଁ ଅନ୍ନପୂର୍ଣ୍ଣା ରଂଗ ମଂଚରେ ଆୟୋଜିତ ଉତ୍ସବ ବେଶ ସଫଳ ହେଲା। ତତ୍‌କାଳୀନ ଆଡ୍‌ଭୋକେଟ୍ ଜେନେରାଲ ବୀରକିଶୋର ରାୟ (ପରେ ଓଡ଼ିଶା ହାଇକୋର୍ଟର ଚିଫ୍ ଜଷ୍ଟିସ୍) ତାଙ୍କ ପତ୍ନୀ ଶ୍ରୀମତୀ ଲତିକା ରାୟ, ଗଭର୍ଣ୍ଣମେଣ୍ଟ ପ୍ଲିଡ଼ର ବାଂଛାନିଧି ମହାପାତ୍ର, ଆଡ଼ଭୋକେଟ୍ ହରିହର ମହାପାତ୍ର, ରାଜକିଶୋର ଦାସ ଓ ଦୀନବଂଧୁ ସାହୁ, ସ୍ୱନାମଧନ୍ୟ ନାରୀ ନେତ୍ରୀ ସରଳା ଦେବୀ, ଔପନ୍ୟାସିକ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଭାରତ ସେବକ ସମିତିର ସଦସ୍ୟ ଲକ୍ଷ୍ମୀନାରାୟଣ ସାହୁ, ସମାଜର ଅସ୍ଥାୟୀ ସଂପାଦକ ରାମଚନ୍ଦ୍ର ଦାସ ଓ ଦୈନିକ ଆଶାର ସଂପାଦକ ମହେନ୍ଦ୍ର ପଟ୍ଟନାୟକ ଓ ଅନ୍ୟ ବହୁ ବିଶିଷ୍ଟ ଅତିଥିଙ୍କର ଉପସ୍ଥିତି ଆମ ପକ୍ଷରେ ବେଶ୍ ଉତ୍ସାହଜନକ ଥିଲା । ଏହି ଉତ୍ସବ ଉପଲକ୍ଷେ ସଂଗୃହୀତ ଅର୍ଥ ଭାରତ ସେବକ ସମିତିର ତତ୍‌କାଳୀନ ମୁଖ୍ୟ ପଣ୍ଡିତ ହୃଦୟନାଥ କୁଞ୍ଜୁରୁଙ୍କୁ ଅର୍ପଣ କରାହେଲା । ଟାଉନ ହଲରେ ଅନୁଷ୍ଠିତ ସଭାରେ ଗୋଟିଏ କ୍ଷୁଦ୍ର ପ୍ରାରମ୍ଭିକ ଭାଷଣ ଦେଇ ଛାତ୍ରସଂଘ ତରଫରୁ ଏହି ଅର୍ଥ ମୁଁ ପଣ୍ଡିତ କୁଞ୍ଜୁରୁଙ୍କୁ ପ୍ରଦାନ କଲି । ଓଡ଼ିଶା ରିଲିଫ କମିଟିର ସଭାପତି ସ୍ୱାମୀ ବିଚିତ୍ରାନନ୍ଦ ଦାସ

ଓ ସଂପାଦକ ଲକ୍ଷ୍ମୀନାରାୟଣ ସାହୁ ସଭାରେ ଉପସ୍ଥିତ ଥିଲେ । ଆମ୍ଭମାନଙ୍କୁ ସାଧୁବାଦ ଦେଇ ପଣ୍ଡିତ କୁଞ୍ଜରୁ ଏହି ଅର୍ଥ ଓଡ଼ିଶା ରିଲିଫ କମିଟି ଜରିଆରେ ଖର୍ଚ୍ଚ ହେବ ବୋଲି ସଭାରେ ଘୋଷଣା କଲେ ।

ଏହି ଅର୍ଥ ପ୍ରଦାନ ସଂପର୍କରେ ଗୋଟିଏ ଛୋଟ ଘଟଣା ମନେ ପଡୁଛି । ନୃତ୍ୟ ବିଚିତ୍ରା ଉପଲକ୍ଷେ ଟିକଟ ବିକ୍ରି ପାଇଁ ବହୁ ଛାତ୍ର କର୍ମୀ ଓ କେତେକ ବାହାର ଲୋକଙ୍କୁ ମଧ୍ୟ ଟିକଟ ବହି ଦିଆଯାଇଥିଲା । ''ସତକଥା''ର ସଂପାଦକ ରଘୁ ରାଉତ ମଧ୍ୟ ଗୋଟିଏ ଟିକଟ ବହି ନେଇଥିଲେ । ରଘୁ ରାଉତ ଯେ କଟକର ଜଣେ ସୁପ୍ରସିଦ୍ଧ ବ୍ଲାକ୍‌ମେଲର, ତାହା ମୁଁ ଜାଣିଥିଲି । ବିଶିଷ୍ଟ ଭଦ୍ରଲୋକ ଓ ଭଦ୍ର ମହିଳାମାନଙ୍କ ନାମରେ କୁତ୍ସାମୂଳକ ଲେଖା ପ୍ରକାଶ କରି ଅର୍ଥ ସଂଗ୍ରହ କରିବା ତାଙ୍କର ଏକ ପ୍ରକାର ବ୍ୟବସାୟ ଥିଲା । ପ୍ରତିଷ୍ଠିତ ଲୋକ ଓ ବିଶିଷ୍ଟ ସରକାରୀ କର୍ମଚାରୀଙ୍କ ବ୍ୟକ୍ତିଗତ ଆଚରଣ ସଂପର୍କରେ 'ସତକଥା'ରେ ଲେଖିବାର ଧମକ ଦେଇ, ସେ ଟଂକା ଆଦାୟ କରୁଥିଲେ । ଏ ସବୁ ଜାଣି ମଧ୍ୟ, ଏକ ଜନ-ମଂଗଳ କାର୍ଯ୍ୟରେ ସେ ସାହାଯ୍ୟ କରିବାକୁ କୁଣ୍ଠିତ ହେବେ ନାହିଁ, ଏହି ଭରସାରେ ତାଙ୍କୁ ଗୋଟିଏ ଟିକଟ ବହି ଦେଇଥିଲି । ଅନୁଷ୍ଠାନ ଦିନ ଅନ୍ନପୂର୍ଣ୍ଣା ରଂଗମଂଚରେ ସେ ମୋତେ କହିଲେ ଯେ ସେ ପାଂଚ ଶହ ଟଂକାର ଟିକଟ ବିକ୍ରି କରିଛନ୍ତି ଓ ଟଂକା ପରେ ଦେଇଦେବେ । ତାଙ୍କ କଥାରେ ମୁଁ ସହଜରେ ବିଶ୍ୱାସ କଲି ଓ ଅତି ସଚ୍ଚୋଟପଣିଆ ଦେଖାଇ, ଉକ୍ତ ପାଂଚ ଶହ ଟଂକା ପାଇବା ପୂର୍ବରୁ, ତାକୁ ମିଶାଇ ମୋଟ ଆଦାୟ ଓ ଖର୍ଚ୍ଚ ଟଙ୍କାର ଏକ ହିସାବ ଖବର କାଗଜରେ ପ୍ରକାଶ କରିଦେଲି । କିନ୍ତୁ ଶତ ଚେଷ୍ଟା ସତ୍ତ୍ୱେ ରଘୁ ରାଉତଙ୍କଠାରୁ ଟଂକା ଆଣିବା ସଂଭବ ହେଲା ନାହିଁ । ଏଣେ ପଣ୍ଡିତ ହୃଦୟନାଥଙ୍କ ହାତରେ ବଳକା ଟଂକା ପ୍ରଦାନ କରିବା ନିର୍ଦ୍ଧାରିତ ଦିନ ନିକଟେଇ ଆସିଲା । ମୁଁ ଅନ୍ୟ ଉପାୟ ନ ଦେଖି, ସେ କାଳର ଜଣେ ବିଶିଷ୍ଟ ସମାଜ ସେବୀ ଓ ରିଲିଫ କମିଟି ସହିତ ସଂପୃକ୍ତ ବଳାଇ ପାଲିତ୍‌ଙ୍କ ଠାରୁ ପାଂଚ ଶହ ଟଂକା ଧାର କରି, ଟାଉନ ହଲ ସଭାରେ ପଣ୍ଡିତ କୁଞ୍ଜରୁଙ୍କ ହାତରେ ସମସ୍ତ ଟଂକା ଅର୍ପଣ କଲି । ଏହି ଅକଲ ସଲାମୀ ପାଇଁ ମତେ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ଶରତ ପଟ୍ଟନାୟକଙ୍କ ସାହାଯ୍ୟରେ କେତେକ ବଂଧୁଙ୍କ ଠାରୁ କିଛି କିଛି ସାହାଯ୍ୟ ସଂଗ୍ରହ କରି, ତିନି ଚାରିମାସ ପରେ ଋଣ ମୁକ୍ତ ହେଲି ।

ଛାତ୍ରସଂଘର ପୁନର୍ଗଠନ ପରେ ୧୯୪୪ ଆରମ୍ଭରେ ମୁଁ ଓ ସତ୍ୟବାଦୀ ମିଶ୍ର ପୁରୀ ଗଲୁ । ସେତେବେଳେ ପୁରୀରେ ସଂସ୍କୃତ କଲେଜ ବ୍ୟତୀତ ଅନ୍ୟ କଲେଜ ନଥିଲା । ପୁରୀରେ ପହଂଚିବା ମାତ୍ରେ, ଷ୍ଟେସନରୁ ଆମ ପଛେ ପଛେ ଗୋଇନ୍ଦା ପୋଲିସ୍ ଅନୁସରଣ କଲେ । ସାଧାରଣ ଛାତ୍ରଙ୍କ ସହିତ ବସି ଆଲୋଚନା କରିବାକୁ ସୁଯୋଗ ମିଳିଲା ନାହିଁ । ପୂର୍ବ ପରିଚିତ କେତେକ ଛାତ୍ର ମଧ୍ୟ ଆମ ସହିତ ମିଶିବାକୁ ଭୟ କଲେ । ଆମେ ନିରାଶ ହୋଇ ଫେରି ଆସିଲୁ ।

କିଛି ଦିନ ପରେ ମୁଁ ସପ୍ତାହକ ପାଇଁ ଭଦ୍ରଖ ଗଲି । ତିହିଡ଼ି ପାଖ ଗୋଟିଏ ଗାଁରେ ସ୍ୱର୍ଗୀୟ ସାଥୀ ଗିରିଧାରୀ ସାହୁଙ୍କ ଘର । ତାଙ୍କୁ ସାଂଗରେ ଧରି ତିହିଡ଼ି, ଦୋଳସାହି ସ୍କୁଲମାନ ବୁଲିଲି । ଭଦ୍ରଖରେ ମଧ୍ୟ ଗୋଟିଏ ସାଧାରଣ ସଭା ହେଲା । ଭଦ୍ରଖରୁ ବାଲେଶ୍ୱର ଯାଇ କେତେକ ଛାତ୍ରବଂଧୁଙ୍କୁ ସାକ୍ଷାତ କଲି । ଏକ ବିଧିବଦ୍ଧ ପ୍ରତିନିଧିମୂଳକ ଛାତ୍ର ସମ୍ମିଳନୀ ଡକାଇବା ପାଇଁ ଆଲୋଚନା ହେଲା ।

ଏହାପରେ ମୋତେ ସମ୍ବଲପୁର ଯିବାକୁ ହେଲା । ସେତେବେଳକୁ ଦୟାନନ୍ଦ ଶତପଥୀ ଜେଲରୁ ଖଲାସ ହୋଇଥିଲେ । ମୁଁ ତାଙ୍କ ଘରେ ଅତିଥି ହେଲି । ଦୟାନନ୍ଦ ବାବୁ ବୟସରେ ମୋ ଠାରୁ ପ୍ରାୟ ପନ୍ଦର ବର୍ଷ ବଡ଼ । ସେ ବାମଣ୍ଡା ପ୍ରଜାମଣ୍ଡଳର ନେତା ଥିଲେ । ରାଜ ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ସମ୍ବଲପୁରକୁ ସ୍ଥାୟୀ ଭାବରେ ଚାଲି ଆସିଲେ । କିଛି ବର୍ଷ ପାଇଁ ସେ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟିର ସଭାପତି ଥିଲେ.। ବ୍ରହ୍ମପୁର ଜେଲରେ ଥିବାବେଳେ ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକଙ୍କ ପ୍ରଭାବରେ ମାର୍କ୍ସବାଦ ପ୍ରତି ଆକୃଷ୍ଟ ହେଲେ ଏବଂ କମ୍ୟୁନିଷ୍ଟପାର୍ଟିରେ ଯୋଗ ଦେଲେ । ଦୟାନନ୍ଦ ବାବୁଙ୍କ ପରି ସାଧୁ, ନିରାଡ଼ମ୍ବର ଓ ସ୍ନେହୀ ମଣିଷ ବିରଳ । ନିଜ ବିଶ୍ୱାସ ଓ କର୍ମଧାରାରେ ତାଙ୍କର ଅଟଳ ନିଷ୍ଠା ଥିଲା ଓ ସମ୍ବଲପୁରବାସୀ ମଧ୍ୟ ତାଙ୍କ ପ୍ରତି ଅତୁଟ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ସମ୍ବଲପୁରରେ ଦୟାନନ୍ଦ ବାବୁ ମୋତେ ଦୁର୍ଗାପ୍ରସାଦ ନାୟକଙ୍କ ସହ ପରିଚିତ କରାଇଦେଲେ । ଦୁର୍ଗାପ୍ରସାଦ ସମାଜବାଦ ଓ ଛାତ୍ର ଆନ୍ଦୋଳନ ପ୍ରତି ବିଶେଷ ଆଗ୍ରହୀ ଥିଲେ । ସେ ମେଧାବୀ ଛାତ୍ର । ସ୍ୱାଧୀନତା ପ୍ରାପ୍ତି ପରେ ସେ ସମ୍ବଲପୁର ମେହେର କଲେଜରେ ଅଧ୍ୟାପକ ନିଯୁକ୍ତ ହୋଇଥିଲେ । ତାଙ୍କ ସହଯୋଗରେ ଲକ୍ଷ୍ମୀ ପ୍ରସାଦ ମିଶ୍ର ଓ ଅନ୍ୟ ଅନେକ ଛାତ୍ରଙ୍କ ସହିତ ଆଲୋଚନା କରିବାର ସୁଯୋଗ ମିଳିଲା । ଗୋଟିଏ କ୍ଷୁଦ୍ର ସଂଗଠନ ସ୍ଥାପିତ ହେଲା ।

ସମ୍ବଲପୁରରୁ ଦୟାନନ୍ଦ ଶତପଥୀଙ୍କ ସହ ମୁଁ ବରଗଡ଼ ଗଲି । ବରଗଡ଼ ସହର ଡକି ଗୋଟିଏ ଗାଁରେ ତତ୍କାଳୀନ ଏମ୍.ଏଲ୍.ଏ. ଫକୀର ପ୍ରଧାନଙ୍କ ଘର । ଆମେ ଦୁହେଁ ତାଙ୍କ ଘରେ ରହିଲୁ । ଦୟାନନ୍ଦ ବାବୁ କେତେକ ଛାତ୍ରକର୍ମୀଙ୍କ ସହ ମତେ ପରିଚୟ କରାଇ ଦେଇ ଦୁଇ ଦିନ ପରେ ସମ୍ବଲପୁର ଫେରିଗଲେ । ଫକୀର ପ୍ରଧାନ ଉଚ୍ଚ ଶିକ୍ଷିତ ନ ହେଲେ ମଧ୍ୟ ବରଗଡ଼ ଅଂଚଳର ଜଣେ ବଡ଼ ଚାଷୀ । ରହିବା ଘର ଖଞ୍ଜା ସାମନାରେ ଦାଣ୍ଡ ଅତିକ୍ରମ କଲେ ଧାଉଡ଼ିଏ ଚାଳଘର । ସେଥିରୁ କେତୋଟି ବଖରାରେ ଚାଷ ଉପକରଣ ପ୍ରଭୃତି ରହେ । ଗୋଟିଏ ବଡ଼ ହଲରେ ପାଂଚ ଛ'ଟା ଦୌଡ଼ିଆ ଖଟ ପଡ଼ିଥାଏ । ଅତିଥି ଅଭ୍ୟାଗତ ଆସିଲେ ଏହି ଘରେ ରହନ୍ତି । ପ୍ରତିଦିନ ବିଭିନ୍ନ ଅଂଚଳରୁ ପ୍ରାୟ ତିନି ଚାରି ଜଣ ଅତିଥି ଆସନ୍ତି । ସେ ସମସ୍ତଙ୍କର ଖାଇବା ପିଇବା ପ୍ରଧାନଙ୍କ ଘରେ ହୁଏ । ବଡ଼ ଚାଷୀ କିପରି ତାର ସଂସାର ଚଳାଏ, ତାହା ପ୍ରଧାନଙ୍କ ଘରେ ଦେଖିବାର କଥା । ସକାଳୁ ହଳିଆମାନେ ଆସନ୍ତି । ବଳଦ ଓ ଚାଷ ଉପକରଣ ନେଇ ବିଲକୁ ଯାଆନ୍ତି । ଦିନ ଦଶଟା ବେଳକୁ ଗାଈ ଜଗୁଆଳୀ ଟୋକା ଦୁଇ ତିନି ଜଣ ଆସନ୍ତି, ଗାଈ ଗୋରୁ ଚରାଇବାକୁ ନେଇ ଯାଆନ୍ତି । ଏହା ଛଡ଼ା ଦୁଇଜଣ ଘରୋଇ ଚାକର ଘର ଦ୍ୱାର ସଫା କରିବା, ଦାଣ୍ଡ ଓଳାଇବା ଓ ଗୁହାଳ ସଫା କରିବାରେ ବ୍ୟସ୍ତ । ବୁଢ଼ା ପ୍ରଧାନ ଦାଣ୍ଡପିଣ୍ଡାରେ ବସି ସବୁ ବରାଦ ଓ ତଦାରଖ କରନ୍ତି ।

ଫକୀର ପ୍ରଧାନଙ୍କ ଗାଁରୁ ବରଗଡ଼ ସହର ପ୍ରାୟ ଏକ ମାଇଲ ବାଟ । ମୁଁ ପ୍ରତିଦିନ ବରଗଡ଼ ଯାଇ ଛାତ୍ରକର୍ମୀ ମାନଙ୍କ ସହ ଆଲୋଚନା କରେ । ବିଭୂତି ଭୂଷଣ ଶତପଥୀ (ପରେ ଏଲ.ଆଇ.ସି.ର ଅଫିସର), ସ୍ୱନାମଧନ୍ୟ ଓକିଲ ଦୟାନିଧି ମିଶ୍ରଙ୍କ ପୁଅ ଗୋପାଳ ଚନ୍ଦ୍ର ମିଶ୍ର (ବର୍ତ୍ତମାନ ବରଗଡ଼ର ବରିଷ୍ଠ ଆଡ୍‌ଭୋକେଟ) ପ୍ରଭୃତି ଏହି କାର୍ଯ୍ୟରେ ବିଶେଷ ସହାୟକ ଥିଲେ । ବରଗଡ଼ରେ ଥିବା ସମୟରେ କୃପାସିନ୍ଧୁ ଖୁଣ୍ଟିଆଙ୍କୁ ଭାରତ ରକ୍ଷା ଆଇନରେ ଗିରଫ କରାଯାଇ ତାଙ୍କ ବିରୁଦ୍ଧରେ ଆଗତ ମୋକଦ୍ଦମାର ବିଚାର ଏସ.ଡ଼ି.ଓ. ମୁସାଏବ ଖାଁଙ୍କ କୋର୍ଟରେ ଚାଲିଥାଏ । ସାଥୀ କୃପାସିନ୍ଧୁ ଖୁଣ୍ଟିଆ କଲିକତାରେ ଶ୍ରମିକ ଆନ୍ଦୋଳନର ନେତା ଥିଲେ । କମ୍ୟୁନିଷ୍ଟ ପାର୍ଟିର ନେତା ଶରତ୍ ପଟ୍ଟନାୟକଙ୍କ ଅନୁରୋଧରେ ସେ କଲିକତା ଛାଡ଼ି ଓଡ଼ିଶା ଆସିଲେ ଓ ସମ୍ବଲପୁରରେ ମୁଖ୍ୟତଃ ଶ୍ରମିକ ଆନ୍ଦୋଳନ ଦାୟିତ୍ୱରେ ଅବସ୍ଥାପିତ ହେଲେ । ବରଗଡ଼ରେ ଏକ ଚାଷୀ ସଭାରେ ସରକାରଙ୍କର ସମାଲୋଚନା କରିଥିବା ହେତୁ ତାଙ୍କ ବିରୁଦ୍ଧରେ ଏହି

ମୋକଦ୍ଦମା ରୁଜୁ କରାଯାଇଥିଲା । ବରଗଡ଼ ଜେଲ ସୁପରିଟେଣ୍ଡେଣ୍ଟ ଡାକ୍ତର ସୁବଳ ଚରଣ ଦାସଙ୍କ ଅନୁମତିକ୍ରମେ ମୁଁ ଖୁଣ୍ଟିଆଙ୍କୁ ଜେଲରେ ସାକ୍ଷାତ କଲି । ତାଙ୍କ ତରଫରୁ ସ୍ଥାନୀୟ ବିଶିଷ୍ଟ ଆଇନଜୀବି ଦୟାନିଧି ମିଶ୍ରଙ୍କୁ ଓକିଲ ନିଯୁକ୍ତ କରାହେଲା । କିନ୍ତୁ ମୁସାଏବ ଖାଁ ଥିଲେ ବ୍ରିଟିଶ ସରକାରଙ୍କ ଅତି ବିଶ୍ୱସ୍ତ ଭୃତ୍ୟ । ମାଲିକଙ୍କୁ ସବୁ କ୍ଷେତ୍ରରେ ଯଥାସଂଭବ ମଦତ୍ ଦେବା ତାଙ୍କ ଚାକିରୀ ଜୀବନର ଚରମ ଅଭିଳାଷ ଥିଲା । ଦୟାନିଧି ବାବୁଙ୍କ ବଳିଷ୍ଠ ଯୁକ୍ତିରେ ସରକାରୀ ପକ୍ଷର ସମସ୍ତ ଅଭିଯୋଗ ଭାଂଗି ପଡ଼ିଲା ସତ୍ୟ, କିନ୍ତୁ ମାଜିଷ୍ଟ୍ରେଟ୍ ଖୁଣ୍ଟିଆଙ୍କୁ ଛ'ମାସ ସଶ୍ରମ କାରାଦଣ୍ଡ ଦେଲେ । ମୁଁ ଯେଉଁ ଦିନ ବସ୍ ଯୋଗେ ସମ୍ବଲପୁର ଫେରିଲି, ସେହି ବସ୍‌ରେ ଦୁଇଜଣ କନ୍‌ଷ୍ଟେବଲ୍ ଖୁଣ୍ଟିଆଙ୍କୁ ସମ୍ବଲପୁର ଜେଲକୁ ଆଣିଲେ । ବାଟରେ ଆମ୍ଭେମାନେ ଜେଲ ସୁପରିଟେଣ୍ଡେଣ୍ଟ ଡାକ୍ତର ସୁବଳ ଦାସଙ୍କ ସହାନୁଭୂତିଶୀଳ ସୁମଧୁର ବ୍ୟବହାର ଓ ସବ୍-ଡ଼ିଭିଜନାଲ ଅଫିସର ଖାଁ ସାହେବଙ୍କର ରୁକ୍ଷ ଓ କଠୋର ଶାସନ ସଂପର୍କରେ ନାନା ଆଲୋଚନା କଲୁ । କଟକ ଫେରି କୃପାସିଂଧୁ ଖୁଣ୍ଟିଆଙ୍କ ବିଚାର ସଂପର୍କରେ, ସାପ୍ତାହିକ ମୁକ୍ତିଯୁଦ୍ଧ କାଗଜରେ ଏକ ସମୀକ୍ଷା ଲେଖିଥିଲି । ଖାଁ ସାହେବଙ୍କ ଚାମଚାଗିରୀ ସଂପର୍କରେ ଏଥିରେ କେତେକ କଟୁ ମନ୍ତବ୍ୟ ସ୍ଥାନ ପାଇଥିଲା । କିଛିଦିନ ପରେ ମୁସାଏବ ଖାଁ ଅତିରିକ୍ତ ଜିଲା ମାଜିଷ୍ଟ୍ରେଟ୍ ଭାବରେ କଟକରେ ଅବସ୍ଥାପିତ ହେଲେ । ଅନେକେ ବଂଧୁ ଡରାଇଲେ, ତାଙ୍କ ବିଷ ଦୃଷ୍ଟି ଏଣିକି ମୋ ଉପରେ ପଡ଼ିବ । କିନ୍ତୁ ରାଜନୈତିକ ପରିସ୍ଥିତି କ୍ଷିପ୍ର ଗତିରେ ବଦଳି ଚାଲିଥିଲା । ମୋର ସୌଭାଗ୍ୟ, ତାଙ୍କର ଦୃଷ୍ଟିରୁ ମୁଁ ବାଦ୍ ଗଲି ।

ଏହି ସମୟରେ ରେଭେନ୍ସା କଲେଜ ଓ ବ୍ରହ୍ମପୁରର ଇଣ୍ଟର ମିଡ଼ିଏଟ କଲେଜ ବ୍ୟତୀତ ଓଡ଼ିଶାରେ ଅନ୍ୟ କୌଣସି କଲେଜ ନଥିଲା । କଟକ ଓ ବ୍ରହ୍ମପୁର ବ୍ୟତୀତ ଅନ୍ୟ ସବୁଆଡ଼େ ଛାତ୍ର ଆନ୍ଦୋଳନ ହାଇସ୍କୁଲ ଛାତ୍ରଙ୍କ ମଧ୍ୟରେ ଆବଦ୍ଧ ଥିଲା । ୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ପରେ ନୂଆ ନୂଆ କଲେଜ ପ୍ରତିଷ୍ଠାର ଶୁଭାରମ୍ଭ ହେଲା । କଟକରେ ମହିଳା ଛାତ୍ରୀମାନଙ୍କୁ ଆନ୍ଦୋଳନକୁ ଟାଣି ଆଣିବା ପାଇଁ ଆମ୍ଭେମାନେ ଉଦ୍ୟମ ଆରମ୍ଭ କଲୁ । ମନେ ଅଛି ୧୯୪୪ ମସିହା ଅଗଷ୍ଟ ପଚିଶ ତାରିଖରେ ରେଭେନ୍ସା କଲେଜ ଛାତ୍ରୀ ନିରୁପମା ଦାସଙ୍କୁ (ଡାକ୍ତର ଶ୍ରୀମତୀ ନିରୁପମା ରଥ) ଛାତ୍ର ଆନ୍ଦୋଳନରେ ସହଯୋଗ କରିବା ପାଇଁ ମୁଁ ପ୍ରଥମେ ଖଣ୍ଡିଏ ଚିଠି ଲେଖିଲି । ଚିଠିର ଭାଷା ଅବଶ୍ୟ ଭାବପ୍ରବଣ ଥିଲା । ଚିଠିଟି ସେ

କି ଭାବରେ ଗ୍ରହଣ କରିବେ, ସେ ବିଷୟରେ ସଂଦୀହାନ ଥିଲି । ତାଙ୍କ ସହିତ ପୂର୍ବରୁ ବ୍ୟକ୍ତିଗତ ପରିଚୟ ନଥିଲା । ସେ ଅନନ୍ତ ପଟ୍ଟନାୟକ ପରିବାରର, ଏଣୁ ବାମପନ୍ଥୀ ରାଜନୀତି ପ୍ରତି ଆଗ୍ରହୀ ଥିବେ, ଏହି ଭରସାରେ ମୁଁ ପତ୍ରାଳାପ ଆରମ୍ଭ କଲି । କିନ୍ତୁ ତିନି ଦିନ ପରେ ଯେଉଁ ପ୍ରତ୍ୟୁତ୍ତର ମିଳିଲା, ତାହା ଥିଲା ଅତି ଆବେଗମୟ ଓ ଉତ୍ସାହଜନକ । ରାଜନୀତି ଓ ସମାଜସେବା ମାଧ୍ୟମରେ ଆମ ବ୍ୟକ୍ତିଗତ ସଂପର୍କ ମଧ୍ୟ ଏହି ସମୟରେ ଅଙ୍କୁରିତ ହେଲା । ନିରୁପମାଙ୍କ ସହିତ କଲେଜ ଛାତ୍ରୀ ମୋର ବଂଧୁ ଶୈଳେନର ଭଉଣୀ ମନୋରମା ମହାପାତ୍ର (ପରେ ଅଧ୍ୟାପକ ମନୋରମା ଦାସ) ସରୋଜିନୀ ଦାସ (ପରେ ଡାକ୍ତର ସରୋଜିନୀ ପ୍ରଧାନ) ଏବଂ ରମାରାଣୀ ରାୟ (ପରେ ଓଡ଼ିଶାର ନର୍ସିଂ ସୁପରିନ୍‌ଟେଣ୍ଡେଣ୍ଟ) ପ୍ରମୁଖ ବହୁ ଛାତ୍ରୀ ଆନ୍ଦୋଳନରେ ସହଯୋଗ କରିବାକୁ ଆରମ୍ଭ କଲେ ।

ଏ ସବୁ ପ୍ରାଥମିକ ପ୍ରସ୍ତୁତି ପରେ, ୧୯୪୪ ଶେଷ ଭାଗରେ କଟକରେ ଏକ ପ୍ରାଦେଶିକ ଛାତ୍ର ସମ୍ମିଳନୀ କରିବା ପାଇଁ ଆମ୍ଭେମାନେ ନିଷ୍ପତ୍ତି ନେଲୁ । ବଂଧୁ ରାମଚନ୍ଦ୍ର ରାମ ବି.ଏ. ପାସ କରି ସେ ବର୍ଷ ଆଇନ୍ କଲେଜରେ ନାମ ଲେଖାଇଥାନ୍ତି । ଆଇନ କଲେଜ ସେତେବେଳେ ରେଭେନ୍ସା କଲେଜର ଅନ୍ତର୍ଭୁକ୍ତ ଥିଲା । ରାମଚନ୍ଦ୍ର ଅଭ୍ୟର୍ଥନା ସମିତିର ସଭାପତି ହେଲେ । କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ନିହାର ରଂଜନ ରାୟ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ବ୍ରହ୍ମପୁର, ପୁରୀ, ଖୋର୍ଦ୍ଧା, ଭଦ୍ରଖ, ବାଲେଶ୍ୱର ଓ ସମ୍ବଲପୁରରୁ ବହୁ ପ୍ରତିନିଧି ଯୋଗ ଦେଇଥିଲେ । ସମ୍ମିଳନୀ ଶେଷରେ ରାମଚନ୍ଦ୍ର ରାମ ଛାତ୍ରସଂଘର ସଂପାଦକ ନିର୍ବାଚିତ ହେଲେ । ସେତେବେଳେ କଟକରୁ ଦୁଇଟି ଓଡ଼ିଆ ଦୈନିକ, 'ସମାଜ' ଓ 'ଦୈନିକ ଆଶା' ପ୍ରକାଶିତ ହେଉଥାଏ । ଉଭୟ ସମ୍ବାଦ ପତ୍ର ଛାତ୍ରସଂଘର ଏହି ସମ୍ମିଳନୀକୁ ବିଶେଷ ପ୍ରାଧାନ୍ୟ ଦେଇଥିଲେ ।

ବ୍ରହ୍ମପୁରର ଶଶିଭୂଷଣ ରଥ 'ଦୈନିକ ଆଶା' ଓ 'ନିଉ ଓଡ଼ିଶା'ର ପ୍ରତିଷ୍ଠାତା । ସ୍ୱର୍ଗୀୟ ରଥ ବହୁ ଦିନ ଏକା ଏକା ଦୁଇଟି ଦୈନିକ କାଗଜ ଚଳାଇବା ପରେ ଖୋର୍ଦ୍ଧାର ବ୍ୟବସାୟୀ ମଦନଲାଲ ଝାଜୋଡ଼ିଆ କାଗଜ ଦୁଇଟିକୁ କିଣି ନେଇ, କଟକରୁ ପ୍ରକାଶ କରିବାର ବ୍ୟବସ୍ଥା କଲେ । ବାଖରାବାଦରେ ସେଥିପାଇଁ ପ୍ରେସ ଓ ଅଫିସ ପ୍ରତିଷ୍ଠିତ ହେଲା । ଦୈନିକ ଆଶାର ସଂପାଦକ ଥିଲେ ବ୍ରହ୍ମପୁରର ପ୍ରତିଷ୍ଠିତ ସାମ୍ବାଦିକ ମହେନ୍ଦ୍ର ପଟ୍ଟନାୟକ ଏବଂ 'ନିଉ

ଓଡ଼ିଶା'ର ସଂପାଦକ କେ. ଏନ. ଚାରୀ । ସମ୍ମିଳନୀ ପୂର୍ବରୁ ଦିନେ ଏକ ସମ୍ବାଦ ଦେବା ପାଇଁ ଦୈନିକ ଆଶା ଅଫିସକୁ ଯାଇଥିଲି । ଆଲୋଚନା ଛଳରେ ମହେନ୍ଦ୍ର ବାବୁ ପ୍ରସ୍ତାବ ଦେଲେ, ସେ ଦୈନିକ ଆଶାର ଗୋଟିଏ ସଂସ୍କରଣ ଛାତ୍ର ସମ୍ମିଳନୀ ପାଇଁ ପୂରାପୂରୀ ଛାଡ଼ି ଦେବେ । ଆମେ ସେ ସଂସ୍କରଣଟିର ସଂପାଦନା କରିପାରିବୁ । କାଗଜର ପ୍ରସାର ପାଇଁ ହୁଏତ ଏହା ଏକ ଅଭିନବ ଉଦ୍ୟମ ଥିଲା । ମହେନ୍ଦ୍ର ପଟ୍ଟନାୟକଙ୍କର ରୋମାଂଚକର ପ୍ରସ୍ତାବରେ ଆପତ୍ତି କରିବାର ନ ଥିଲା । ମୁଁ ସମ୍ମିଳନୀ ଦିନ ସଂସ୍କରଣର ସଂପାଦନା ଦାୟିତ୍ୱ ଗ୍ରହଣ କଲି । ମନେ ଅଛି, ଦୈନିକ ଆଶାର ପ୍ରଥମ ପୃଷ୍ଠାରେ "ନବ ପ୍ରଭାତର ଅଗ୍ରଦୂତ" ଶୀର୍ଷକ ମୋର ଏକ ଲେଖା ପ୍ରକାଶିତ ହୋଇଥିଲା । ଦ୍ୱିତୀୟ ପୃଷ୍ଠାରେ ଅଭ୍ୟର୍ଥନା ସମିତିର ଚେଆରମ୍ୟାନ ରାମଚନ୍ଦ୍ର ରାମଙ୍କ ଅଭିଭାଷଣ ସ୍ଥାନ ପାଇଥିଲା । ତୃତୀୟ ଓ ଚତୁର୍ଥ ପୃଷ୍ଠାରେ ସମ୍ମିଳନୀର ଅନ୍ୟାନ୍ୟ ବିବରଣ, କାରାରୁଦ୍ଧ କଂଗ୍ରେସ ଓ ଅନ୍ୟ ନେତାମାନଙ୍କର ମୁକ୍ତି ଦାବୀ ସଂକ୍ରାନ୍ତୀୟ ପ୍ରସ୍ତାବ ଓ ଅନ୍ୟ କେତେକ ଲେଖା ଓ କବିତା ପ୍ରକାଶିତ ହୋଇଥିଲା । ଆମ୍ଭେମାନେ ସଂପାଦକ ମହେନ୍ଦ୍ର ପଟ୍ଟନାୟକଙ୍କ ନିକଟରେ ଚିରଦିନ ପାଇଁ ଋଣୀ ରହିଲୁ ।



# ଜନସେବା ଓ ମୁର୍ଗୀ ମାଂସ

ଚଉରାଳିଶ ମସିହା ଏପ୍ରିଲ ମାସରେ ପୁରୀରେ ଏକ ସାହିତ୍ୟ ସମ୍ମିଳନୀର ଆୟୋଜନ କରାଯାଇଥାଏ । ଏକ ନୂତନ ସଂଗଠନ ''ଓଡ଼ିଆ ସାହିତ୍ୟ ପରିଷଦ'' ଗଠନ କରିବା ପାଇଁ ଏ ସମ୍ମିଳନୀ ଥିଲା ସାହିତ୍ୟିକମାନଙ୍କର ଏକ ଅଭିନବ ପ୍ରଚେଷ୍ଟା । ଉଦ୍ୟୋକ୍ତା ଥିଲେ 'ସହକାର' ସଂପାଦକ (ପରକାଳରେ ଦୈନିକ ମାତୃଭୂମିର ପ୍ରତିଷ୍ଠାତା) ବାଳକୃଷ୍ଣ କର, କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ପ୍ରମୁଖ । ମେଦିନୀପୁରର ପ୍ରଖ୍ୟାତ ଓଡ଼ିଆ ନେତା ଭାଗବତ ପ୍ରସାଦ ଦାସ ସମ୍ମିଳନୀ ଉଦ୍‌ଘାଟନ କରିଥିଲେ ବା ତହିଁରେ ସଭପତିତ୍ୱ କରିଥିଲେ, ଠିକ୍ ମନେ ପଡୁ ନାହିଁ । ସବୁଜ ଯୁଗର ପ୍ରଖ୍ୟାତ ଲେଖକ ହରିଶ୍ଚନ୍ଦ୍ର ବଡ଼ାଲ ଓ ହରିହର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ମିଶ୍ର, ସରଳା ଦେବୀ, ରାଜ କିଶୋର ରାୟ, ଅନନ୍ତ ପଟ୍ଟନାୟକ, ରଘୁନାଥ ଦାସଙ୍କ ସହ ମୁଁ ମଧ୍ୟ କଟକରୁ ଏ ସମାବେଶରେ ଯୋଗ ଦେଇଥିଲି ।

ଏ ସମ୍ମିଳନୀ ଥିଲା ଉତ୍କଳ ସାହିତ୍ୟ ସମାଜର ସାଂପ୍ରତିକ ନୀତି ଓ କାର୍ଯ୍ୟକ୍ରମ ବିରୁଦ୍ଧରେ ସାହିତ୍ୟିକ ମାନଙ୍କର ଏକ ମାର୍ମିକ ପ୍ରତିବାଦ । ବହୁଦିନୁ ସାହିତ୍ୟ ସମାଜର ଆଚରଣ ଓ ପରିଚାଳନାରେ ବ୍ରିଟିଶ ସରକାର ଓ ରାଜା ରାଜୁଡ଼ାଙ୍କର ତୋଷାମୋଦକାରୀମାନଙ୍କର ପ୍ରାଧାନ୍ୟ ଓ ଚିନ୍ତାଧାରା ପ୍ରକଟିତ ହେଉଥିଲା । ବହୁଦିନ ଧରି ସାହିତ୍ୟ ସମାଜର ସଭାପତି ଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା । ପରିଜା ସାହେବ ଥିଲେ ଜଣେ ଖ୍ୟାତି ସଂପନ୍ନ ବୈଜ୍ଞାନିକ ଓ ଅଧ୍ୟାପକ, କିନ୍ତୁ ସାହିତ୍ୟ ଚର୍ଚ୍ଚାରେ ତାଙ୍କର କୌଣସି ଅବଦାନ ନଥିଲା । ଉତ୍କଳ ସାହିତ୍ୟ ସମାଜର ଆଉ କେତେ ଜଣ ସଭାପତିଙ୍କ ସଂପର୍କରେ ଅନୁରୂପ ମନ୍ତବ୍ୟ ଦିଆଯାଇ ପାରେ । କବିବର ରାଧାନାଥ ରାୟଙ୍କ ପୁତ୍ର ଶଶିଭୂଷଣ ରାୟ ବହୁବର୍ଷ ସାହିତ୍ୟ ସମାଜର ସଂପାଦକ ପଦକୁ ଇସ୍ତମରାରୀ ପଟା କରି ନେଇଥିଲେ । ସୌମ୍ୟ କାନ୍ତି ଓ ସୁମଧୁର ବ୍ୟବହାର ପାଇଁ ଶଶିବାବୁ ସମସ୍ତଙ୍କ ଅତି ପ୍ରିୟ । 'ଉତ୍କଳ-ସାହିତ୍ୟ' ପତ୍ରିକାରେ ସାମୟିକ ପ୍ରବଂଧ ଲେଖିବାରେ ସେ ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ସାହିତ୍ୟ-କୃତି ପାଇଁ ଏତିକି ଯଥେଷ୍ଟ ନଥିଲା । ରାୟ ବାହାଦୁର ଗୋପାଳ ଚନ୍ଦ୍ର ପ୍ରହରାଜ ସାହିତ୍ୟ ସେବା ପାଇଁ ରାଜା ଜମିଦାରଙ୍କ ଠାରୁ ଅନୁଦାନ ସଂଗ୍ରହ କରିବାରେ ଧୂରୀଣ ଥିଲେ ଏବଂ ସାହିତ୍ୟ ସମାଜର ପୀଠକୁ ଏଥିପାଇଁ ବ୍ୟବହାର କରିବାକୁ କୁଣ୍ଠିତ ନଥିଲେ । ଅନୁଦାନ ଆଶାରେ ଗଡ଼ଜାତର ରାଜା ରାଜୁଡ଼ା ମାନଙ୍କୁ ସାହିତ୍ୟ ସମାଜରେ

ସମ୍ମାନିତ କରିବା ଏକ ମୁଖ୍ୟ କାର୍ଯ୍ୟକ୍ରମ ଥିଲା । ବହୁ ଆଧୁନିକ ସାହିତ୍ୟିକ ଏଥିପାଇଁ ଉତ୍କଳ ସାହିତ୍ୟ ସମାଜ ପ୍ରତି ବିମୁଖ ଥିଲେ । ପୁରୀ ସମ୍ମିଳନୀରେ ସାହିତ୍ୟ ଓ ସାହିତ୍ୟିକମାନଙ୍କର ସମସ୍ୟା ଉପରେ ବିଭିନ୍ନ ଦିଗରୁ ବିଚାର ବିମର୍ଶ ହେଲା । ଦ୍ୱିତୀୟ ଦିନର ଅଧିବେଶନ ପରେ ''ଓଡ଼ିଆ ସାହିତ୍ୟ ପରିଷଦ'' ଗଠିତ ହେଲା । ଶ୍ରୀ ବାଳକୃଷ୍ଣ କର ଓ ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ପରିଷଦର ସଂପାଦକ ନିର୍ବାଚିତ ହେଲେ । କିନ୍ତୁ ସାହିତ୍ୟିକମାନଙ୍କୁ ସଂଗଠିତ କରିବା ଦିଗରେ ବା ନବଯୁଗର ସାହିତ୍ୟ ପାଇଁ ଏକ ନୂତନ ଆଭିମୁଖ୍ୟ ସୃଷ୍ଟି କରିବାରେ 'ପରିଷଦ' କୌଣସି ଦିଗ୍‌ଦର୍ଶନ ଦେଇ ପାରିଲେ ନାହିଁ । ସାଧାରଣ ଅଧିବେଶନରେ ଅନନ୍ତ ପଟ୍ଟନାୟକ, ରଘୁନାଥ ଦାସ ଓ ମୁଁ ଏହି ନୂତନ ଆଭିମୁଖ୍ୟ ସଂପର୍କରେ ସୂଚନା ଦେଇଥିଲୁ । କିନ୍ତୁ ଆମ ବକ୍ତବ୍ୟର କୌଣସି ପ୍ରଭାବ ପଡ଼ିଲା ପରି ମନେ ହେଲା ନାହିଁ । ମୋର ମନେ ପଡ଼ିଲା ''ନବଯୁଗ ସାହିତ୍ୟ ସଂସଦ''ର ପ୍ରତିଷ୍ଠା ଉପଲକ୍ଷେ ୧୯୩୫ ମସିହା ଡିସେମ୍ବର ପ୍ରଥମ ସପ୍ତାହରେ ଅନୁଷ୍ଠିତ ସମ୍ମିଳନୀର ସ୍ମୃତି । ମୁଁ ଅବଶ୍ୟ ସେତେବେଳେ ଗାଁ ସ୍କୁଲର ଛାତ୍ର । ସମ୍ମିଳନୀରେ ଯୋଗ ଦେବାର ସୁଯୋଗ ନ ଥିଲା । କିନ୍ତୁ ପଣ୍ଡିତ ନୀଳକଂଠ ଦାସ ତାଙ୍କ ସଂପାଦିତ ''ନବଭାରତ'' ପତ୍ରିକାର ଗୋଟିଏ ସଂଖ୍ୟା ନବଯୁଗ ସାହିତ୍ୟ ସଂସଦରେ ପ୍ରଦତ୍ତ ଭାଷଣ ଓ ପଠିତ ପ୍ରବଂଧ ଗୁଡ଼ିକୁ ପ୍ରକାଶ କରିବା ପାଇଁ ଉତ୍ସର୍ଗ କରିଥିଲେ । କାଳିନ୍ଦୀ ବାବୁଙ୍କ ଉଦ୍‌ଘାଟନ ଅଭିଭାଷଣ, ଫକୀର ମୋହନଙ୍କ ସୁଯୋଗ୍ୟ ପୁତ୍ର ଅଧ୍ୟାପକ ମୋହିନୀ ମୋହନ ସେନାପତିଙ୍କ ଧର୍ମ ସମ୍ବନ୍ଧୀୟ ପ୍ରବଂଧ ଏବଂ କବି ବୈକୁଣ୍ଠ ନାଥ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, ଅଧ୍ୟାପକ ସଦାଶିବ ମିଶ୍ର, ଅନନ୍ତ ପଟ୍ଟନାୟକ ଓ ସଚ୍ଚିରାଉତରାୟଙ୍କ ପଠିତ ନିବଂଧ ଗୁଡ଼ିକ 'ନବ ଭାରତ'ରେ ପ୍ରକାଶିତ ହୋଇଥିଲା । ୧୯୩୬ ମସିହାରେ କଟକ ଆସି ମୁଁ ଏ ସଂଖ୍ୟାଟି ତନ୍ନ ତନ୍ନ କରି ପାଠ କରିଥିଲି । ଦର୍ଶନ ଅଧ୍ୟାପକ ମୋହିନୀ ମୋହନ ସେନାପତିଙ୍କ ପ୍ରବଂଧର କିୟଦଂଶ ଉଦ୍ଧାର କରିବାର ଲୋଭ ସଂବରଣ କରି ପାରୁନାହିଁ । ମୋହିନୀ ବାବୁ ଲେଖିଥିଲେ :

''କେତେକ ଧାର୍ମିକ ଅଛନ୍ତି, ଯେଉଁମାନେ କହନ୍ତି ଯେ ସେମାନେ ଭଗବାନଙ୍କୁ ଦେଖି ଅଛନ୍ତି । ଯାହାଙ୍କର ଅସ୍ତିତ୍ୱ ନାହିଁ, ଲୋକେ ତାଙ୍କୁ ଦେଖନ୍ତି କିପରି ? ପ୍ରାଚୀନ କାଳରେ ଆର୍ଯ୍ୟ ଋଷିମାନେ ଭଗବାନଙ୍କୁ ଦେଖିବା ପାଇଁ ସୋମରସ ପାନ କରୁଥିଲେ । ଆଜିକାଲି ମଧ୍ୟ ଅନେକ ସନ୍ୟାସୀ ସେହି ଉଦ୍ଦେଶ୍ୟରେ

ଗଞ୍ଜା ସେବନ କରିଥାନ୍ତି । ଯେ ପର୍ଯ୍ୟନ୍ତ ମସ୍ତିଷ୍କ ପ୍ରକୃତିସ୍ଥ ଥାଏ, ସେ ପର୍ଯ୍ୟନ୍ତ ଅଳୀକ ବସ୍ତୁ ଦର୍ଶନ କରିହୁଏ ନାହିଁ । ଏଥିପାଇଁ ଧାର୍ମିକମାନେ ପ୍ରକୃତିସ୍ଥ ନ ହୋଇ ଅପ୍ରକୃତିସ୍ଥ ହେବା ଅଧିକ ବାଂଛନୀୟ ମନେ କରନ୍ତି । ଧାର୍ମିକ ଓ ପାଗଳ ଏକ ଶ୍ରେଣୀଭୁକ୍ତ । ସଭ୍ୟ ଯୁଗର ଧାର୍ମିକମାନେ ଗଞ୍ଜା ଓ ସୋମରସ ପରିତ୍ୟାଗ କରି ଅଛନ୍ତି ସତ୍ୟ, ସେମାନେ ବାତୁଳତାର ଅନ୍ୟ ଗୋଟିଏ ପନ୍ଥା ଅବଲମ୍ବନ କରନ୍ତି । ଯୋଗ ଦ୍ୱାରା ଆମ୍ଭେମାନେ କୌଣସି ଗୋଟିଏ ବିଷୟରେ ଅଧିକ କାଳ ମନୋନିବେଶ କଲେ, ତାହା ପ୍ରତ୍ୟକ୍ଷ ଜ୍ଞାନ ବୋଲି ପ୍ରତୀତ ହୁଏ । ଏହି ଚିତ୍ତ ଭ୍ରାନ୍ତି (ହାଲୁସିନେସନ୍) ଯୋଗର ଅବଶ୍ୟମ୍ଭାବୀ ଫଳ । ଏହାଦ୍ୱାରା ଭଗବାନ, ମୃତ ଲୋକ ଓ ନାନା ରୂପ ଅଳୀକ ବସ୍ତୁ ପ୍ରତ୍ୟକ୍ଷୀଭୂତ ହୋଇଥାଏ । ଆଜିକାଲି ଭଗବାନଙ୍କୁ ଦର୍ଶନ କରିବାର ଏହା ଗୋଟିଏ ପ୍ରଶସ୍ତ ପନ୍ଥା .....''

ବହୁଲୋକ ଅବଶ୍ୟ ଅଧ୍ୟାପକ ସେନାପତିଙ୍କ ମତାମତ ସହିତ ସହମତ ନଥିଲେ । କିନ୍ତୁ ସାହିତ୍ୟ ଓ ସଂସ୍କୃତି ସଂକ୍ରାନ୍ତୀୟ ବିଭିନ୍ନ ବିଷୟରେ ସାହିତ୍ୟ, ସଂସଦରେ ଯେଉଁ ସବୁ ନିବଂଧ ପଠିତ ହୋଇଥିଲା, ଚିନ୍ତାଶୀଳ ଲୋକଙ୍କ ମଧ୍ୟରେ ତାହା ବିରାଟ ଆଲୋଡ଼ନ ସୃଷ୍ଟି କରିଥିଲା । ଅନେକ ପୁରାତନ ପନ୍ଥୀ ଏହାର ବିରୋଧ କଲେ ମଧ୍ୟ ଅନେକେ ଏ ଗୁଡ଼ିକୁ ନବଯୁଗର ଆବାହନ ସଂଗୀତ ରୂପେ ବିବେଚନା କରିଥିଲେ । ବାସ୍ତବବାଦୀ ସାହିତ୍ୟ, ସୃଷ୍ଟି ଏବଂ ସମାଜବାଦୀ ଦୃଷ୍ଟିକୋଣରୁ ସାହିତ୍ୟ ସମୀକ୍ଷା ପାଇଁ ସଂସଦ ଏକ ନୂତନ ଆଲୋକର ସଂଧାନ ଦେଇଥିଲା । କିନ୍ତୁ ପୁରୀ ସମ୍ମିଳନୀ ଏପରି କୌଣସି ଆଲୋଡ଼ନ ସୃଷ୍ଟି କରିନଥିଲା । କାର୍ଯ୍ୟତଃ ପୁରୀ ସମ୍ମିଳନୀ ଥିଲା ସାହିତ୍ୟ ପରିଷଦର ପ୍ରଥମ ଓ ଶେଷ ସମ୍ମିଳନୀ ।

ସେହି ବର୍ଷ ଅଗଷ୍ଟ ପ୍ରଥମ ସପ୍ତାହରେ ମୋର ପ୍ରଥମ ବହି ''ଗାନ୍ଧିଜୀଙ୍କ ଆହ୍ୱାନ'' ବଡ଼ ବିଚିତ୍ର ପରିସ୍ଥିତିରେ ପ୍ରକାଶିତ ହେଲା । ୪୪ ମଧ୍ୟଭାଗରେ ଗାନ୍ଧିଜୀଙ୍କୁ ପୁନାର ଆଗାଖାଁ ପାଲେସରୁ ମୁକ୍ତ କରିଦିଆଯାଏ । ଗାନ୍ଧିଜୀଙ୍କୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ଅନ୍ୟ ସଦସ୍ୟମାନଙ୍କଠାରୁ ଅଲଗା ରଖାଯାଇଥିଲା । ଏହି ଦୁଇ ବର୍ଷର ଅଟକ-କାଳ ମଧ୍ୟରେ ପତ୍ନୀ କସ୍ତୁରବା ଗାନ୍ଧୀ ଓ ସେକ୍ରେଟାରୀ ମହାଦେବ ଦେଶାଇଙ୍କର ମହାପ୍ରୟାଣ ଘଟିଥାଏ । ଖଲାସ ହୋଇ ଗାନ୍ଧିଜୀ ତାଙ୍କର ଅନୁଗାମୀ ବମ୍ବେର ଜଣେ ଶିଳ୍ପପତିଙ୍କ ଘର ''ପର୍ଣ୍ଣକୁଟୀ''ରେ କିଛି ଦିନ ରହିଥିଲେ । ଦେଶ ବିଦେଶରୁ ଅସଂଖ୍ୟ ସାମ୍ବାଦିକ ଗାନ୍ଧିଜୀଙ୍କୁ 'ପର୍ଣ୍ଣକୁଟୀ'ରେ

ସାକ୍ଷାତ କରୁଥାନ୍ତି । ସାମ୍ବାଦିକମାନଙ୍କ ପ୍ରଶ୍ନର ଉତ୍ତର ଦେଇ, ଭାରତ-ଛାଡ଼ ଆନ୍ଦୋଳନ ସମୟରେ କେତେକ ସ୍ଥାନରେ ଅନୁସୃତ ହିଂସାକାଣ୍ଡ ପ୍ରତି ସେ ନିଜର ଅସନ୍ତୋଷ ପ୍ରକାଶ କରିଥିଲେ । ଅହିଂସା ପଥରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଉପରେ ଗୁରୁତ୍ୱ ଦେଇ ଗାନ୍ଧିଜୀ ଦୃଢ଼ ଭାବରେ କହିଥିଲେ ଯେ ୪୨ ମସିହା ଅଗଷ୍ଟ ଆଠ ତାରିଖରେ ବମ୍ବେ କଂଗ୍ରେସ କମିଟି ବୈଠକରେ ତାଙ୍କର "କର ବା ମର" ଆହ୍ୱାନ, ଦେଶବାସୀଙ୍କୁ ସ୍ୱାଧୀନତା ପାଇଁ ଆତ୍ମବଳି ଦେବାର ଆହ୍ୱାନ। ସ୍ୱାଧୀନତା ହାସଲ କରିବାକୁ ଯାଇ ହିଂସାର ପଥ ଅବଲମ୍ବନ କରାଯାଇ ନପାରେ । ଏସବୁ ମନ୍ତବ୍ୟ କେତେକ କଂଗ୍ରେସ ସାମ୍ୟବାଦୀ ଦଳର ନେତାମାନଙ୍କ ପ୍ରତି ଉଦ୍ଦିଷ୍ଟ ଥିଲା । ଗାନ୍ଧିଜୀଙ୍କର ମତାମତ କେବଳ ଭାରତ କାହିଁକି, ସାରା ବିଶ୍ୱରେ ବିରାଟ ଆଲୋଡ଼ନ ସୃଷ୍ଟି କରିଥିଲା ।

ମୁଁ ଏହି ସମୟରେ 'ମୁକ୍ତିଯୁଦ୍ଧ' ସାପ୍ତାହିକର ସହକାରୀ ସଂପାଦକ ଥାଏ । ଗାନ୍ଧିଜୀଙ୍କ ଉପରୋକ୍ତ ମନ୍ତବ୍ୟ ଉପରେ 'ମୁକ୍ତିଯୁଦ୍ଧ' ପାଇଁ ଏକ ସମୀକ୍ଷା ଲେଖିବାକୁ ଆରମ୍ଭ କଲି । ଲେଖୁ ଲେଖୁ ଏ 'ସମୀକ୍ଷା'ଟି ଏତେ ବଡ଼ ହୋଇଗଲା ଯେ, ତାର ଏକ ସଂକ୍ଷିପ୍ତସାର କେବଳ ମୁକ୍ତିଯୁଦ୍ଧରେ ପ୍ରକାଶ ପାଇଲା । ଶରତ୍ ବାବୁ (ସ୍ୱର୍ଗୀୟ ସାଥୀ ଶରତ ପଟ୍ଟନାୟକ) ପରାମର୍ଶ ଦେଲେ, ଗାନ୍ଧିଜୀଙ୍କ ମନ୍ତବ୍ୟ ଗୁଡ଼ିକୁ ହିଂସା-ଅହିଂସା ବିବାଦର ପରିସରରେ ଆବଦ୍ଧ ନ ରଖି, ବିଷୟଟି ରାଜନୈତିକ ଦୃଷ୍ଟିକୋଣରୁ ଆଲୋଚନା କରିବା ଉଚିତ । ଆଠ ଦଶ ଦିନ ମଧ୍ୟରେ 'ସମୀକ୍ଷା'ର ପୁନର୍ଲିଖନ ଶେଷ ହେଲା । ଶରତ ବାବୁଙ୍କ ପ୍ରସ୍ତାବ କ୍ରମେ ଲେଖାଟି ପୁସ୍ତକାକାରରେ ପ୍ରକାଶିତ ହେଲା । ଯୁଦ୍ଧ ସମୟରେ ଛପା କାଗଜ ମିଳୁ ନଥାଏ । ତେଣୁ ଭଗବତୀ ପ୍ରେସ ପରିସରରେ ପ୍ରସ୍ତୁତ ହେଉଥିବା ହାତ ତିଆରି କାଗଜରେ ଏ ବହିଟି ଛପା ହେଲା । ଏଇଟି ମୋର ପ୍ରଥମ ପ୍ରକାଶିତ ବହି, ଅଥଚ ମୋର ଏପରି ଦୁର୍ଭାଗ୍ୟ ଯେ "ଗାନ୍ଧିଜୀଙ୍କ ଆହ୍ୱାନ" ବହିର ଖଣ୍ଡିଏ କପି ମଧ୍ୟ ମୋ ପାଖରେ ନାହିଁ ।

ସେ ବର୍ଷ ପୁରୀ ଜିଲ୍ଲାରେ ଭୟଙ୍କର ବଢ଼ି ହୋଇଥାଏ । ବନ୍ଧବାଡ଼ ଭାଙ୍ଗି ବହୁ ଅଂଚଳ କ୍ଷତିଗ୍ରସ୍ତ ହୋଇଥାଏ । ଓଡ଼ିଶା ରିଲିଫ କମିଟି ଅଫିସକୁ ଖବର ଆସିଲା, କୁଶଭଦ୍ରା ନଈରେ ଅଠାନ୍ତର ଆର ପାଖରେ ବଂଧ ଭାଂଗି ବିସ୍ତୀର୍ଣ୍ଣ ଅଂଚଳ ବନ୍ୟା ଜଳରେ ବୁଡ଼ି ରହିଛି ଏବଂ ତୁରନ୍ତ ସାହାଯ୍ୟ ଦରକାର । ବିଧାନ ସଭା ସଦସ୍ୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଥିଲେ ଓଡ଼ିଶା ରିଲିଫ

କମିଟିର ସଭାପତି ଓ ଭାରତ ସେବକ ସମିତିର ସଦସ୍ୟ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ତାର ସଂପାଦକ । ସ୍ୱାମୀଜୀ ଓ ସାହୁଜୀ ମୋତେ ଡଗରପଡ଼ାରେ ଥିବା ରିଲିଫ କମିଟି ଅଫିସକୁ ଡକାଇ ପଠାଇଲେ । ସେମାନେ ଚରାଦ କଲେ, ତୁରନ୍ତ ଅଠାନ୍ତର ଯାଇ ବଢ଼ି ଅଂଚଳରେ ଚୂଡ଼ା ଚାଉଳ ବାଣ୍ଟିବାକୁ ହେବ । ଭୁବନେଶ୍ୱର ରାମକୃଷ୍ଣ ମିଶନ ମଠର କେହି ଜଣେ ମୋ ସାଂଗରେ ଯିବେ । ଲକ୍ଷ୍ମୀ ନାରାୟଣ ବାବୁଙ୍କ ସହ ମୋର ସଂପର୍କ ଏତେ ଘନିଷ୍ଠ ଯେ, ତାଙ୍କ କଥା ଭାଂଗିବା ମୋ ପକ୍ଷରେ ଅସଂଭବ । ଅଧିକନ୍ତୁ ଏ ପ୍ରକାରର ସାଧାରଣ କାର୍ଯ୍ୟ କରିବା ପାଇଁ ମୁଁ ସବୁବେଳେ ଆଗଭର ଥିଲି ।

ପରଦିନ ଚୂଡ଼ା ଚାଉଳ କିଣିବା ପାଇଁ କିଛି ଟଙ୍କା ଧରି ଭୁବନେଶ୍ୱରର ରାମକୃଷ୍ଣ ମିଶନ ମଠରେ ପହଂଚିଲି । ରାମକୃଷ୍ଣ ମିଶନ ସହିତ ମୋର ପୂର୍ବରୁ ବେଶ ଯୋଗାଯୋଗ ଥିଲା । କଟକ ରାମକୃଷ୍ଣ କଟେଜର ଛାତ୍ର ଭାବରେ ମୁଁ କେତେଥର ମଠରେ ରହିଥିବି । ମଠର ମୁଖ୍ୟ ସ୍ୱାମୀ ନିଗମାନନ୍ଦ ମିଶନ ହସପିଟାଲ ସହ ସଂପୃକ୍ତ ଜଣେ କଂପାଉଣ୍ଡରଙ୍କୁ ମୋ ସହିତ ପଠାଇଲେ । ତାଙ୍କର ନାମଟା ମନେ ନାହିଁ । କଂପାଉଣ୍ଡର ଜଣେ ଉତ୍ସାହୀ ଯୁବକ ଓ ମୋର ସମବୟସୀ । ଆମେ ଦୁହେଁ ଡଂଗାରେ ନଦୀ ପାର ହୋଇ ବାଳକାଟିରେ ପହଂଚିଲୁ । ସ୍ଥାନୀୟ ବଜାରରୁ ତିନିବସ୍ତା ଚୂଡ଼ା ଓ ତିନବସ୍ତା ଚାଉଳ କିଣି ଶଗଡ଼ରେ ଲଦି ଅଠାନ୍ତରରେ ପହଂଚିଲା ବେଳକୁ ମୁହଁ ସଂଧ୍ୟା । ଅଠାନ୍ତର ଗୋଟିଏ ବଡ଼ ଗାଁ । ଏହିଠାରୁ ରାସ୍ତା ଡାହାଣକୁ ଭାଂଗି ନିମାପଡ଼ା ଯାଇଛି । ସିଧା ଗଲେ ବନମାଳୀପୁର ହାଟ । ବଜାରରେ ଆଠ ଦଶଟି ଛୋଟ ବଡ଼ ଦୋକାନ । ଜଣେ ଦୋକାନୀର ବଖରାଏ ଚାଳଘର ଭଡ଼ାରେ ନେଇ ଆମେ ରହିଲୁ ।

ଏ ଅଂଚଳ ମୋର ସଂପୂର୍ଣ୍ଣ ଅପରିଚିତ । ବହୁ ବର୍ଷ ଆଗେ ପିଲାଦିନେ ମାମୁଁ ଘର ଗାଁ ବିଶ୍ୱନାଥପୁରକୁ ଥରେ ଆସିଥିଲି । ଅଠାନ୍ତର ସେଠାରୁ ଛ' ସାତ ମାଇଲ ଦୂର । କିନ୍ତୁ ବାଲି ପାଟଣା ତଳକୁ କେବେ ଯାଇ ନାହିଁ । ଅଠାନ୍ତର ଗାଁର ଏକମାତ୍ର ପରିଚିତ ବଂଧୁ ରମେଶ ଚନ୍ଦ୍ର ଦାସ (ବର୍ତ୍ତମାନ ଭୁବନେଶ୍ୱରର ବିଶିଷ୍ଟ ଆଡ଼ଭୋକେଟ) ସେ ସମୟରେ ବାହାରେ ସରକାରୀ ଚାକିରୀ କରୁଥିଲେ । ଆମକୁ ସାହାଯ୍ୟ କରିବା ପାଇଁ ପରିଚିତ ଲୋକଙ୍କ କଥା ଭାବୁ ଭାବୁ ସାଥୀ ନରସିଂହ ଦାସଙ୍କ କଥା ମନେ ପଡ଼ିଲା । ସେ ଜଣେ କଂଗ୍ରେସ କର୍ମୀ, ୪୨ ଆନ୍ଦୋଳନରେ ଗିରଫ ହୋଇ ବ୍ରହ୍ମପୁର ଜେଲରେ

ଥିବା ସମୟରେ କମ୍ୟୁନିଷ୍ଟ ଦଳରେ ଯୋଗ ଦେଇଥିଲେ । ୪୪ ମସିହାରେ ଜେଲରୁ ଖଲାସ ହେବା ପରେ କଟକରେ ତାଙ୍କ ସହିତ ପ୍ରଥମ ପରିଚୟ । ମୁଁ ସକାଳେ ତାଙ୍କ ଗାଁକୁ ଜଣେ ଲୋକ ପଠାଇ ତାଙ୍କୁ ଡକାଇ ଆଣିଲି । ସେ ଆସିଲା ପରେ ଅନେକଟା ସୁବିଧା ହେଲା । ଦିନ ବାରଟା ବେଳକୁ ଗୋଟିଏ ଛୋଟ ଡଙ୍ଗା ଭଡ଼ା କରି ପ୍ରାୟ ଦୁଇ ବସ୍ତା ଚାଉଳ ଓ ବସ୍ତାଏ ଚୂଡ଼ା ଡଙ୍ଗାରେ ଲଦି ଆମେ ବଢ଼ି ଅଂଚଳକୁ ବାହାରିଲୁ । ମହୁଖଣ୍ଡା ଓ ତାର ଆଖ ପାଖ ଦଶ ବାରଟି ଗାଁ ବିଶେଷ କ୍ଷତିଗ୍ରସ୍ତ ହୋଇଥାଏ । ପ୍ରଥମ ଦିନ ତିନୋଟି ଗାଁରେ ସାହାଯ୍ୟ ବାଣ୍ଟିବାରେ ସମର୍ଥ ହେଲୁ । ପ୍ରଖର ସୁଅରେ ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବା ବହୁ କଷ୍ଟକର ଥିଲା । ଲୋକେ ଦୂରରୁ ରିଲିଫ ଡଙ୍ଗାକୁ ଯେପରି ବ୍ୟାକୁଳ ଭାବରେ ଅନାଇ ରହିଥିଲେ, ସେ ଦୃଶ୍ୟ ଭୁଲିବାର ନୁହେ । ସେର ଦୁଇ ସେର ଚୂଡ଼ା ଚାଉଳ ପାଇ ଦରିଦ୍ର ବୁଭୁକ୍ଷୁ ଲୋକେ କୃତକୃତ୍ୟ ମନେ କରୁଥିଲେ ଏବଂ ଆମ ଉପରେ ଆଶୀର୍ବାଦ ଅଜାଡ଼ି ଦେଉଥିଲେ ।

ପ୍ରଥମ ଦିନ ଅଠାନ୍ତର ଗାଁର ଜଣେ ଶଗଡ଼ିଆ ଚୂଡ଼ା ଚାଉଳ ବସ୍ତା ଶଗଡ଼ରେ ଲଦି କୁଶଭଦ୍ରା ଘାଟକୁ ନେଇ ଯାଇଥିଲା । ସେଠାରେ ଆମେ ତିନିଜଣ ଶଗଡ଼ରୁ ବସ୍ତା ଗୁଡ଼ିକୁ ବୋହି ନେଇ ଡଙ୍ଗାରେ ଲଦି ଥିଲୁ । ଦ୍ୱିତୀୟ ଦିନ ଏକ ନୂଆ ଅନୁଭୂତି ହେଲା । ନଈକୂଳ ଯାଏ ଶଗଡ଼ ନେବାକୁ କେହି ରାଜି ହେଲେ ନାହିଁ । ବଳଦ ହୀନ ଶଗଡ଼ରେ ଚୂଡ଼ା ଚାଉଳ ଲଦି ଆମେ ତିନିଜଣ ଶଗଡ଼କୁ ଟାଣି ଟାଣି ନଈକୂଳକୁ ନେଲୁ । ଡଙ୍ଗାରେ ବସ୍ତା ଲଦିବା ପରେ ପୁଣି ଶଗଡ଼ଟିକୁ ଆଣି ଗାଁରେ ଯଥାସ୍ଥାନରେ ରଖିବାକୁ ହେଲା । ତୃତୀୟ ଦିନର ଅଭିଜ୍ଞତା ଆହୁରି ବିଚିତ୍ର । ସେ ଦିନ ସକାଳେ ଅଠାଚର ବଜାରରୁ ଆଉ କିଛି ଚୂଡ଼ା ଚାଉଳ କିଣି ନଈ କୂଳ ଯାଏ ପୁଣି ଶଗଡ଼ ଟାଣିବାକୁ ହେଲା । ସେ ଦିନ ନଈରେ ପାଣି ବଢ଼ିଥାଏ । ଘାଟ ପାଖରେ ଦେଖୁ, ଦୁଇଜଣ ପରିବର୍ତ୍ତେ ଜଣେ ମାତ୍ର ନାଉରୀ ଉପସ୍ଥିତ ଏବଂ ସେ ଏକଲା ବଢ଼ି ଅଂଚଳକୁ ଡଙ୍ଗା ନେବାକୁ ଅରାଜି । ତାର କଥାବାର୍ତ୍ତା ଶୁଣି ମନରେ ସଂଦେହ ହେଲା । ମୁଁ ଆଗଭୁଣା କହିଲି, ଆମ ଘର ନଈ କୂଳରେ, ମତେ ମଧ୍ୟ ନୌକା ବାହି ଆସେ । ଭୟର କାରଣ ନାହିଁ, ମୁଁ ସାହାଯ୍ୟ କରିବି । ବିଚରା ନାଉରୀ ଅନିଚ୍ଛା ସତ୍ତ୍ୱେ ଆମକୁ ନେଇ ଆରପାରିକୁ ଚାଲିଲା । ଏପରି ଅସହଯୋଗର କାରଣ କ'ଣ ତା ବୁଝିବାରେ ଅସୁବିଧା ନଥିଲା ।

ପ୍ରଥମ ଦିନ ସଂଧ୍ୟାରେ ସେ ଗାଁର କେତେଜଣ ଲୋକେ ଆମକୁ ଚାଉଳ ସାହାଯ୍ୟ ମାଗିଲେ । ଚେହେରାରୁ ମନେ ହେଉଥିଲା, ସେମାନେ ଅତି ଦୁଃସ୍ଥ । କିନ୍ତୁ ଆମ ପାଖରେ ଥିବା ସାମାନ୍ୟ ଚାଉଳ ପୁଞ୍ଜି ବନ୍ୟା ଅଂଚଳ ପାଇଁ ଉଦ୍ଦିଷ୍ଟ, ଆମେ ତାକୁ ଏଠି ବାଣ୍ଟି ଦିଅନ୍ତୁ କିପରି ? ଏହି ଘଟଣାରେ ବୋଧହୁଏ ସ୍ଥାନୀୟ ବଜାରବାସୀ ଆମ ଉପରେ ଅସନ୍ତୁଷ୍ଟ ଥିଲେ ।

ଯାହାହେଉ, ନଈଧାର ଅତିକ୍ରମ କରି ଆମର କ୍ଷୁଦ୍ର ନୌକାଟି ଗହୀର ମଝିରେ ଦୂର ଗାଁକୁ ଚାଲିଥାଏ । ନଈରେ ପାଣି ବଢ଼ିଥିବା ହେତୁ ସ୍ରୋତ ଥିଲା ପ୍ରଖର । ମଝିରେ ମଝିରେ ଝିପି ଝିପି ବର୍ଷା ମଧ୍ୟ ହେଉଥାଏ । ଜଣେ ନାଉରୀ କାତ ମାରି ମାରି ନୟାନ୍ତ । ମୁଁ ଅବଶ୍ୟ ତାକୁ ମଝିରେ ମଝିରେ ସାହାଯ୍ୟ କରୁଥାଏ । ଗୋଟିଏ ଜାଗାରେ ହଠାତ୍ ମନେ ହେଲା ଯେପରି ଆମର ନୌକାଟି ଗଛରେ ପିଟି ହୋଇ ଓଲଟ ପାଲଟ ହୋଇଯିବ । କିନ୍ତୁ ନାଉରୀର ଦକ୍ଷତା ହେତୁ କୌଣସିମତେ ଗଛଟାକୁ କଟେଇ ଆମ୍ଭେମାନେ ଆଗେଇ ଗଲୁ । ମୋର ମନେ ପଡ଼ିଲା, 'ଅମର ଚିତା' ଉପନ୍ୟାସରେ କାଳିନ୍ଦୀ ବାବୁଙ୍କ (କାଳିନ୍ଦୀ ଚରଣ ପାଣିଗ୍ରାହୀ) ରଚିତ ଗୋଟିଏ ଗୀତି କବିତା । 'ଅମର ଚିତା' ଉପନ୍ୟାସର ମୁଖ୍ୟ ଚରିତ୍ର ଶୋଭାକାନ୍ତ ଓ ତାଙ୍କର ବଂଧୁ ସନାତନ ଗୋଟିଏ ଛୋଟ ନୌକାରେ ବସି ବନ୍ୟା ଜଳର ବିପ୍ଳାତରୁ ଲୋକଙ୍କୁ ଉଦ୍ଧାର କରିବାରେ ବ୍ୟସ୍ତ । ସେତିକିବେଳେ ସେମାନେ ଶୁଣି ପାରିଲେ ଗୋଟିଏ ଭାସମାନ ବୃକ୍ଷ ଉପରୁ ଅମରଚିତା'ର ଅନ୍ୟତମ ଚରିତ୍ର ଅଭିରାମ କଂଠରୁ ଏହି ଗୀତଟି :

ଦରିଆ ପାରିରେ ଦରିଆ ପାରି
ଚଳ ଚଳ ଚଳ ଡାକିଲା ବାରି
ଡାକିଲା ବାରିରେ ଡାକିଲା ବାଆ
ଭାସିଲା ପାହାଡ଼ ବୁଡ଼ିଲା ନାଆ
ଛାଡ଼ ଛାଡ଼ କାତ, ଟୋଳି ଦିଅ ହାତ
ଦୂରୁ ଡାକେ ନୀଳ ଶଇଳ ଠାରି ।
ଦରିଆ ପାରିରେ ଦରିଆ ପାରି ।।

ମୁଁ ଅବଶ୍ୟ ଭାଗ୍ୟବାଦୀ ନୁହେ । ମୁଁ କର୍ମ ଫଳରେ ବିଶ୍ୱାସ କରେ । କିନ୍ତୁ ଅଷ୍ଟମ ଶ୍ରେଣୀରେ ପଢ଼ିଲା ଦିନୁ ଏ ଗୀତଟି ମୋର ମୁଖସ୍ଥ ଥିଲା । ସାଥୀ ନରସିଂହଙ୍କୁ କହିଲି, ମୋ ସହିତ ସମସ୍ୱରରେ ଏ ଗୀତଟି ଗାଇବା ପାଇଁ ।

ଚାରିଦିନ ଏପରି ଖରା ତରା ବର୍ଷାରେ ବଢ଼ି ଅଂଚଳରେ ବୁଲିବାରେ ଆନନ୍ଦ ଥିଲା - ସେବା କରିବାର ଆନନ୍ଦ, ସାହାଯ୍ୟ କରିବାର ଆନନ୍ଦ । ସକାଳୁ ଆମେ ତିନି ଜଣ ଚୁଡ଼ା ଚିନି ଖାଇ କାମକୁ ବାହାରି ପଡୁ । ଦିନ ଯାକ କେଉଁଠି ଚା' କପେ ମଧ୍ୟ ମିଳେ ନାହିଁ । ସେ କାଳରେ ଗାଁ ଗହଳରେ ଚା' ର ଚଳତି ମଧ୍ୟ ନଥିଲା । ସଂଧ୍ୟାବେଳେ ଫେରି ହାତରେ ରୋଷାଇ କରିବାକୁ ପଡ଼େ । ଉଷୁନା ଚାଉଳ ଭାତ ସାଂଗକୁ ଭୋଇ ସାହିରୁ କିଣା ହୋଇଥିବା ଗୋଟିଏ ମୁର୍ଗୀ ମାଂସର ଝୋଳ ଆମ ତିନି ଜଣଙ୍କର ଖାଦ୍ୟ । ମଫସଲରେ କୁକୁଡ଼ା ଗୋଟିକ ଦାମ ଥିଲା ଚାରିଅଣା, ଅର୍ଥାତ ୨୫ ପଇସା । ବର୍ଷା ଦିନେ କିଛି ପନି ପରିବା ମିଳୁ ନଥାଏ, ବଜାର କରିବାକୁ ଆମର ସମୟ ବା କାହିଁ? ଏକ ବଖତିଆ ଭୋଜନରେ ମଧ୍ୟ ଆନନ୍ଦ ଥିଲା । ଚାରିଦିନ ପରେ ଚାଉଳ ବସ୍ତା ଶେଷ ହେଲା । ପଇସା ମଧ୍ୟ ସରି ଯାଇଥିଲା । ନରସିଂହ ଦାସ ତାଙ୍କ ଗାଁକୁ ଗଲେ । କଂପାଉଣ୍ଡର ବାବୁ ଓ ମୁଁ ଭୁବନେଶ୍ୱର ଫେରିଲୁ ।

ପ୍ରାୟ ପଂଦର ଦିନ ପରେ ଭୁବନେଶ୍ୱର ମଠର ଜଣେ ସନ୍ୟାସୀଙ୍କ ସହ କଟକରେ ସାକ୍ଷାତ୍ ହେଲା । ତାଙ୍କ ସହିତ ବହୁ ଦିନରୁ ପରିଚୟ । ମହାରାଜ ବଙ୍ଗଳାରେ କହିଲେ "କ'ଣ, ଅଠାନ୍ତରରେ ମୁର୍ଗୀ ବଂଶ ନିପାତ କରିଦେଲେ ?" ମୁଁ ଯେ ମାଂସ ପ୍ରିୟ, ଏ ଅପବାଦ ମୋର ବହୁଦିନରୁ ଅଛି । କିନ୍ତୁ କେଜାଣି କାହିଁକି, ମହାରାଜଙ୍କ ପ୍ରଶ୍ନ ଶୁଣି ମୋ ଦେହରେ ନିଆଁ ଜଳିଗଲା । ମୁଁ ଉତ୍ତର ଦେଲି, "ସେଠି ତ ଅରୁଆ ଅନ୍ନ ଓ ଘିଅ ମିଳେ ନାହିଁ, ସେଥିପାଇଁ ମୁର୍ଗୀ ଉପରେ ଭରସା ।" ମୁଁ ପୁଣି କହିଲି "ଆମେ ଚାରିଦିନ ଧରି ଖରା ତରାରେ ଅଖିଆ ଅପିଆ ହାଡ଼ ଭଂଗା ପରିଶ୍ରମ କଲୁ, ବସ୍ତେ ଖାଇ ଶଗଡ଼ ଟାଣିଲୁ, ବସ୍ତା ବୋହିଲୁ, ନୌକା ବାହିଲୁ, ଏ ସବୁ ଆପଣଙ୍କ ନଜରରେ ପଡ଼ିଲା ନାହିଁ, ଆମେ କ'ଣ ଖାଇଲୁ, ସେଇଟା ବଡ଼ ହେଲା ?" ମହାରାଜ ହଠାତ୍ ନରମି ଗଲେ । ମୋତେ ଆଲିଙ୍ଗନ କରି କହିଲେ "କ୍ଷମା କରିବେ, ଯାହା ଶୁଣିଥିଲି ପରିହାସରେ କହିଲି । ଆପଣମାନେ ଫେରିବା ପରେ ମୁଁ ସେ ଅଂଚଳକୁ ଯାଇଥିଲି । ଆପଣମାନେ ଯେ ଆପ୍ରାଣ ଉଦ୍ୟମ କରି ବୁଭୁକ୍ଷୁମାନଙ୍କ ପାଖରେ ସାହାଯ୍ୟ ପହଂଚାଇ ପାରିଛନ୍ତି ସେଥିପାଇଁ ବଢ଼ି ଅଂଚଳ ଲୋକେ ଆପଣମାନଙ୍କ ପ୍ରତି ଅତି କୃତଜ୍ଞ । ମୁଁ ନୀରବ ରହିଲି ।



# ଦୁଇ ନା'ଆରେ ଗୋଡ଼

୧୯୪୪ ମସିହାରେ ଛାତ୍ର ସମ୍ମିଳନୀ ଶେଷ ହେବା ପରେ ମୁଁ ଗୁରୁତର ଅନ୍ତର୍ଦ୍ୱନ୍ଦର ସମ୍ମୁଖୀନ ହେଲି । ମୋର ସାଥୀ ସହପାଠୀମାନେ ଜେଲରୁ ଖଲାସ ହୋଇ କଲେଜରେ ନାମ ଲେଖାଇଲେ । ମୁଁ ଦରପାଠୁଆ ହୋଇ ରହିଗଲି । କ୍ଲାସରେ ମୁଁ ଥିଲି ସମସ୍ତଙ୍କ ଉପରେ, ଅଥଚ ଡିଗ୍ରୀ ହାସଲ କରିବାରେ ସମସ୍ତେ ମୋ ଆଗରେ । ସାଂଗ ସାଥୀ ଓ ସହଯୋଗୀମାନଙ୍କ ଠାରୁ ପଛୁଆ ରହିବାଟା ମୁଁ ବରଦାସ୍ତ କରି ପାରିଲି ନାହିଁ । ଏ ଥିଲା ମୋର ଚରିତ୍ର ଦୋଷ । ଯେଉଁ ପରିସ୍ଥିତିରେ ୪୨ ମସିହାରେ କଲେଜ ଛାଡ଼ି ସକ୍ରିୟ ରାଜନୀତିରେ ଯୋଗ ଦେଇଥିଲି, ସେ ପରିସ୍ଥିତି ବଦଳି ଯାଇଥିଲା । ପୁଣି ଥରେ କିପରି କଲେଜରେ ଯୋଗ ଦେବି, ସେଥିପାଇଁ ମନର ବ୍ୟାକୁଳତା ବୃଦ୍ଧି ପାଇବାକୁ ଲାଗିଲା । ଏହି ତିନି ବର୍ଷ ମଧ୍ୟରେ ମୁଁ ଅନେକ ପ୍ରକାରର ରାଜନୈତିକ ଦାୟିତ୍ୱ ଗ୍ରହଣ କରିଥିଲି । ଏସବୁ ଜଂଜାଳରୁ ନିଜକୁ ମୁକ୍ତ କରିବା ସହଜ ନଥିଲା । ବିଶେଷତଃ ପାର୍ଟିର ବରିଷ୍ଠ କର୍ମକର୍ତ୍ତାମାନେ ମୋତେ କୌଣସି ଦାୟିତ୍ୱରୁ ଅବ୍ୟାହତି ଦେବାକୁ ରାଜି ନଥିଲେ । ମୁଁ ବୈଦ୍ୟନାଥ ବାବୁଙ୍କ (ବୈଦ୍ୟନାଥ ରଥ, ଭବିଷ୍ୟତରେ ପାର୍ଲିଆମେଣ୍ଟ ସଦସ୍ୟ) ସହ ପରାମର୍ଶ କଲି । ସେ ନିକଟରେ ଜେଲରୁ ଖଲାସ ହୋଇଥାନ୍ତି । ସେ ମୋର ମାନସିକ ଦ୍ୱନ୍ଦ ବୁଝି ପାରିଲେ ଏବଂ ବି.ଏ. କ୍ଲାସରେ ନାମ ଲେଖାଇବାକୁ ପରାମର୍ଶ ଦେଲେ ।

୧୯୪୫ ମସିହା ମଇ ମାସରେ ଆସିକା ସହରରେ ପ୍ରାଦେଶିକ କୃଷକ ସମ୍ମିଳନୀ ଅନୁଷ୍ଠିତ ହେଲା । ପୂର୍ବରୁ ଗଞ୍ଜାମ ଜିଲାର ଗାଁ ଗହଳ ବିଷୟରେ ମୋର ବେଶ ଅଭିଜ୍ଞତା ଥଲା । ୪୪ ମସିହାରେ ଭଞ୍ଜ ନଗର ନିର୍ବାଚନ ମଣ୍ଡଳୀରୁ ଗୋବିନ୍ଦ ପ୍ରଧାନଙ୍କ ଜଣେ ସଂପର୍କୀୟ କଂଗ୍ରେସ ପ୍ରାର୍ଥୀ ଭାବରେ ବିଧାନ ସଭା ନିର୍ବାଚନରେ ପ୍ରାର୍ଥୀ ହୋଇଥିଲେ । କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ନଥିଲେ, ଆମେ କଂଗ୍ରେସ ପ୍ରାର୍ଥୀଙ୍କୁ ସମର୍ଥନ କରିବୁ ବୋଲି ନିଷ୍ପତି ନେଇଥିଲୁ । ଏଣୁ ତାଙ୍କ ନିର୍ବାଚନରେ ସାହାଯ୍ୟ କରବା ପାଇଁ ମୁଁ ଓ ରାମଚନ୍ଦ୍ର ମିଶ୍ର ଭଂଜନଗର ଗଲୁ । ମୁଁ ଜଗନ୍ନାଥ ପ୍ରସାଦ ଅଂଚଳ ଦାୟିତ୍ୱରେ ଥିଲି । ଗଂଜାମ ଜିଲା ସହିତ ପୂର୍ବ ପରିଚୟ ହେତୁ ମୋତେ ଆସିକା ମଧ୍ୟ ପଠାହେଲା । ଆମ୍ଭେମାନେ ଗ୍ରୀଷ୍ମ ଛୁଟି ସମୟରେ ହାଇସ୍କୁଲ ଘରେ କ୍ୟାଂପ ପକାଇଥାଉ '

ସମ୍ମିଳନୀ ଉପଲକ୍ଷେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜନ କରିବାର ଦାୟିତ୍ୱ ମୋ ଉପରେ ଥାଏ । ନୀଳଗିରିର ସୁବିଖ୍ୟାତ ଛଉ ନୃତ୍ୟ ଶିଳ୍ପୀ ରାମଚନ୍ଦ୍ର ମହାପାତ୍ର (ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ ଭାଇସଚାନ୍‌ସେଲାର ଡକ୍ଟର ଲକ୍ଷ୍ମଣ ମହାପାତ୍ରଙ୍କ ଭାଇ) ମତେ ସାହାଯ୍ୟ କରୁଥାନ୍ତି । ପରବର୍ତ୍ତୀ କାଳରେ ବହୁବାର ଆସିକା ନିର୍ବାଚନ ମଣ୍ଡଳୀରୁ ବିଧାନ ସଭାକୁ ସଦସ୍ୟ ନିର୍ବାଚିତ ହୋଇଥିବା ହରିହର ଦାସଙ୍କ ସହ ଏଠାରେ ପରିଚୟ ହୁଏ ।କଂଗ୍ରେସ ନେତା ହରିହର ଦାସ ବ୍ରହ୍ମପୁର ଜେଲରେ କମ୍ୟୁନିଷ୍ଟ ଦଳ ସହ ସଂଶ୍ଳିଷ୍ଟ ହେଲେ । ଜେଲରୁ ଖଲାସ ହୋଇ ଚାଷୀ ଆନ୍ଦୋଳନରେ ନିଜକୁ ନିୟୋଜିତ କଲେ । ସେ ଓ ତାକରତାର ସୁପ୍ରସିଦ୍ଧ ରଇତ ନେତା ଗୋବିନ୍ଦ ପ୍ରଧାନ ଓ ବିଜୟ ଚନ୍ଦ୍ର ଦାସଙ୍କ ପରି ଲୋକପ୍ରିୟ ନେତାମାନଙ୍କ ଉଦ୍ୟମ ହେତୁ ଗଞ୍ଜାମରେ ଚାଷୀ ଆନ୍ଦୋଳନ ଏକ ଶକ୍ତିଶାଳୀ ସଂଗଠନ ଭାବରେ ଗଢ଼ି ଉଠିଥିଲା । ସମ୍ମଳନୀର ଦିନକ ଆଗରୁ ବ୍ରହ୍ମପୁରରୁ ବିନାୟକ ଆଚାର୍ଯ୍ୟ ଓ ବିଜୟ ଚନ୍ଦ୍ର ଦାସ ଆସିକାରେ ପହଂଚିଲେ । ଆଚାର୍ଯ୍ୟ ସେହି ସମୟରେ ବ୍ରହ୍ମପୁର ମ୍ୟୁନିସିପାଲ ଓଡ଼ିଆ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ବେଶ ସୁଖ୍ୟାତି ଅର୍ଜନ କରିଥାନ୍ତି । ତାଙ୍କ ସହିତ ଏଇଠି ପ୍ରଥମ ପରିଚୟ । ବିଜୟ ବାବୁ ମୋ ଠାରୁ ବୟସରେ ପ୍ରାୟ ଆଠ ବର୍ଷ ବଡ଼ । କିନ୍ତୁ ଆମର ସଂପର୍କ ଥିଲା ଅତି ଘନିଷ୍ଠ, ଅତି ସୌହାର୍ଦ୍ଦ୍ୟପୂର୍ଣ୍ଣ । ୧୯୩୯ ମସିହାରେ ପ୍ରଥମ ପରିଚୟ, ଅଥଚ ଅତି ଅଳ୍ପଦିନ ମଧ୍ୟରେ ଆମେ ପରସ୍ପରର ନିକଟତର ହୋଇ ପାରିଥିଲୁ । ତାଙ୍କ ପରିବାର ଅବସ୍ଥା ସ୍ୱଚ୍ଛଳ ଥିଲା । ପିତା ଦୟାନିଧି ଦାସ ଚାକିରୀରୁ ଅବସର ନେଇ ସେ ସମୟରେ ବ୍ରହ୍ମପୁରରେ ଓକିଲାତି କରୁଥିଲେ । ବଡ଼ ଭାଇ କବି ବୈକୁଣ୍ଠ ନାଥ ଦାସ ଥିଲେ ସବ୍‌ରେଜିଷ୍ଟ୍ରାର, ଦ୍ୱିତୀୟ ଭାଇ କିଶୋର ଚନ୍ଦ୍ର ଦାସ ଜଣେ ଡେପୁଟୀ କଲେକ୍ଟର । କିନ୍ତୁ ସମସ୍ତ ପାରିବାରିକ ବଂଧନ ଛିନ୍ନ କରି ସେ ସମାଜ ସେବାରେ ନିଜକୁ ଅର୍ପଣ କରିଥିଲେ । ସବୁ ଦୁଃଖ କଷ୍ଟ ଭିତରେ ତାଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ଯୁବ ସମାଜକୁ ଉଦ୍‌ବୁଦ୍ଧ କରୁଥିଲା । ଯାହାହେଉ ବିଜୟ ବାବୁ ଆସିକାରେ ପହଂଚିବା ପରେ ମୁଁ ତାଙ୍କ ସହିତ କଲେଜରେ ଯୋଗ ଦେବା ବିଷୟରେ ଆଲୋଚନା କଲି । ସେ ମୋ ସହିତ ଏକମତ ହେଲେ । ତାଙ୍କ ବିଚାରରେ ବର୍ତ୍ତମାନ ଅବହେଳା କଲେ, ପର ଜୀବନରେ ହୁଏତ ଅନୁତାପ କରିବାକୁ ହେବ । ବୈଦ୍ୟନାଥ ରଥ ଓ ବିଜୟ ଚନ୍ଦ୍ର ଦାସଙ୍କ ପରାମର୍ଶ କ୍ରମେ ମୁଁ ପୁଣିଥରେ ପଢ଼ାପଢ଼ି ଆରମ୍ଭ କରିବାକୁ ନିଷ୍ପତ୍ତି ନେଲି ।

ଏଣେ ଆସିକା ଚାଷୀ ସମ୍ମିଳନୀ ବିଶେଷ ସଫଳତାର ସହ ସଂପନ୍ନ ହେଲା । ବଂଗଳାର କୃଷକ ଆନ୍ଦୋଳନର ନେତା ଅବଦୁଲ ହଲିମ୍ ଏଥିରେ ସଭାପତିତ୍ୱ କରିଥିଲେ । ପ୍ରାୟ କୋଡ଼ିଏ ହଜାରରୁ ଅଧିକ ଲୋକ ସାଧାରଣ ସଭାରେ ଯୋଗଦାନ କରିଥିଲେ । ଅବଦୁଲ ହଲିମଙ୍କର ବଂଗଳା ଅଭିଭାଷଣକୁ ବିଜୟ ବାବୁ ଓଡ଼ିଆରେ ଅନୁବାଦ କରିଥିଲେ । କୃଷକ ସଭା ସଂପାଦକ ସ୍ୱର୍ଗୀୟ ସାଧୁଚରଣ ମହାନ୍ତି, ଗୋବିନ୍ଦ ଚନ୍ଦ୍ର ପ୍ରଧାନ, ଶରତ ପଟ୍ଟନାୟକ ହରିହର ଦାସଙ୍କ ସହିତ ମୁଁ ମଧ୍ୟ ସଭାରେ ଭାଷଣ ଦେଇଥିଲି । ସମ୍ମିଳନୀ ଉପଲକ୍ଷେ ମୁଁ ଲେଖିଥିବା ଗୋଟିଏ ଗୀତ ସଭା ମଂଚରେ ବୋଲାଯାଇଥିଲା । ଗୀତଟିର ପ୍ରଥମ କେତୋଟି ପଂକ୍ତି ମନେ ପଡୁଛି ।

''ତୋଳ ଜୟ ନିଶାଣ ତୋଳ ଜୟ ନିଶାଣ
ଆଜି ଆନନ୍ଦ ଦିନରେ
ଏ ଦୁଃଖ ରାତି, ପାହିଲା ସାଥୀ
ଉଇଁଲା ରକତ ରବି
ପରଜା ଗରବ ଛବି
ଲିଭେ ହିନୀମାନ ଦିନ
ଲୁଚେ ଅମା ଘନ ରେ ।''

ଏହାର କିଛି ଦିନ ପରେ, ଜୁଲାଇ ମାସରେ ରାଭେନ୍ସା କଲେଜର ତୃତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲି । ଅନର୍ସ ନେଲି 'ଅର୍ଥନୀତି' । ଅଧ୍ୟାପକ ଥିଲେ ଶ୍ରୀ ଭୈରବ ନାଥ ରୋହାତ୍‌ଗୀ ଓ ଡକ୍ଟର ସଦାଶିବ ମିଶ୍ର । ଏହି ତିନିବର୍ଷ ମଧ୍ୟରେ ଶ୍ରୀ ରାମଚନ୍ଦ୍ର ଦାସ ପାଟନାରୁ ଏମ୍.ଏ. ପାସ କରି, କିଛି ଦିନ ଯୋଗାଣ ବିଭାଗରେ କାମ କରିବା ପରେ ରେଭେନ୍ସା କଲେଜରେ ଅର୍ଥନୀତି ବିଭାଗରେ ଅଧ୍ୟାପକ ନିଯୁକ୍ତ ହେଲେ । କ୍ଲାସରେ ମୋତେ ପ୍ରଥମେ ପ୍ରଥମେ ଖୁବ୍ ଅଡୁଆ ଲାଗିଲା । ପୁରୁଣା ସହପାଠୀ ଶୈଳେନ୍ ମହାପାତ୍ର ବ୍ୟତୀତ ଅନ୍ୟ ସମସ୍ତେ ମୋ ଠାରୁ ତିନି ଚାରିବର୍ଷ ସାନ । ବର୍ତ୍ତମାନ ଭୁବନେଶ୍ୱରର ବିଶିଷ୍ଟ ଆଡ଼ଭୋକେଟ୍ ମୁଜିବର ରହେମାନ, ଅବସରପ୍ରାପ୍ତ ଜିଲା ଜଜ କୃପାସିଂଧୁ ମିଶ୍ର ଓ ଅବସରପ୍ରାପ୍ତ ଡେପୁଟୀ କଲେକଟର ମଦନ ମହାନ୍ତି, ଅବସରପ୍ରାପ୍ତ ଅଧ୍ୟାପକ ଦୁର୍ଗାଚରଣ କୁଁଅର ପ୍ରମୁଖ ମୋର ନୂଆ ସହପାଠୀ ହେଲେ । କଲେଜ ଦିନ ଗୁଡ଼ିକ ପୁଣିଥରେ କର୍ମମୁଖର ହୋଇ ଉଠିଲା । ସେପ୍ଟେମ୍ବର ମାସରେ ମୁଁ ଦିବଧ୍ୟାୟୀ ସଂଘର ସଂପାଦକ ଓ ଶୈଳେନ୍ ଯୁଗ୍ମ ସଂପାଦକ

ନିର୍ବାଚିତ ହେଲୁ । କଲେଜ୍ ସାମନା ବ୍ଲକ୍‌ରେ ଅଫିସ କରିବା ପାଇଁ ଆମକୁ ଗୋଟିଏ ଛୋଟ କୋଠରୀ ଦିଆ ହୋଇଥିଲା । ଏହି କୋଠରୀଟିରେ ଛାତ୍ର ଆନ୍ଦୋଳନ ସଂକ୍ରାନ୍ତୀୟ ସମସ୍ତ ବିଚାର ବିମର୍ଶ କରାଯାଏ ଓ ନିଷ୍ପତ୍ତି ନିଆଯାଏ ।

ସେ ବର୍ଷ ଦିବଧ୍ୟାୟୀ ସଂଘ ପକ୍ଷରୁ ପ୍ରଥମ ଥର ପାଇଁ ଏକ ପତ୍ରିକା ପ୍ରକାଶ କରିବା ନିମନ୍ତେ ନିଷ୍ପତ୍ତି ନିଆହେଲା । ପତ୍ରିକାଟିର ନାମକରଣ ହେଲା ‘‘ସଂକଳନ’’ । ମୁଁ, ଗୋପାଳ ଚନ୍ଦ୍ର ମିଶ୍ର (ପରେ ସୁପ୍ରସିଦ୍ଧ ଓଡ଼ିଆ ଅଧ୍ୟାପକ) ଓ ମାୟା ମହାନ୍ତି ସଂପାଦକ ନିର୍ବାଚିତ ହେଲୁ । ମନେ ଅଛି ‘ସଂକଳନରେ’ ଛଦ୍ମ ନାମରେ ମୋର ଗୋଟିଏ କବିତା ଓ ସ୍ୱନାମରେ ଗୋଟିଏ ନିବନ୍ଧ ପ୍ରକାଶିତ ହୋଇଥିଲା । ‘‘କ’ଣ ପଢ଼ିବି ? ଶୀର୍ଷକ ନିବନ୍ଧରେ ପ୍ରଚଳିତ ଶିକ୍ଷାନୀତି, ପାଠ୍ୟ-ପୁସ୍ତକ ଓ ଶିକ୍ଷାଦାନ ପ୍ରଣାଳୀ ସଂପର୍କରେ ଦୀର୍ଘ ବ୍ୟଂଗ ମୂଳକ ସମାଲୋଚନା ପ୍ରକାଶିତ ହୋଇଥିଲା । ସାଧାରଣ ଛାତ୍ର ଓ ଯୁବ ଅଧାପକମାନଙ୍କ ମଧ୍ୟରେ ଲେଖାଟି ଉଚ୍ଚ ପ୍ରଶଂସିତ ହେଲେ ମଧ୍ୟ ବରିଷ୍ଠ ଅଧ୍ୟାପକମାନଙ୍କ ପାଖରେ ଏ ସମାଲୋଚନା ଆଦୌ ଗ୍ରହଣୀୟ ହେଲା ନାହିଁ ।

ଅଧ୍ୟାପକ ବି.ଏନ୍. ରୋହାତ୍‌ଗୀ ଓ ସଦାଶିବ ମିଶ୍ରଙ୍କ ପ୍ରୋତ୍ସାହନ ହେତୁ ଅର୍ଥନୀତି ବିଭାଗ ତରଫରୁ ନିୟମିତ ସେମିନାର କରାଯାଏ । ୧୯୪୫ ମସିହା । ସେପ୍ଟେମ୍ବର ମାସରେ ଏକ ଆଲୋଚନା ଚକ୍ରରେ ମୁଖ୍ୟ ବକ୍ତା ହେବାର ସୁଯୋଗ ମିଳିଲା । ବିଷୟ ବସ୍ତୁ - ‘‘ଭାରତର ଶିଳ୍ପୋନ୍ନତି ଓ ବ୍ରିଟିଶ ସାମ୍ରାଜ୍ୟବାଦ’’ । ସାଧାରଣତଃ ସେମିନାରରେ ପ୍ରଥମ ବକ୍ତା ଲିଖିତ ପ୍ରବଂଧ ପାଠ କରନ୍ତି ଓ ତା ଉପରେ ଆଲୋଚନା କରାଯାଏ । ସେ ସମୟରେ କଲେଜରେ ଯେ କୌଣସି ପ୍ରକାର ସଭା ସମିତି, ଓ ଆଲୋଚନା କେବଳ ଇଂରାଜୀ ଭାଷାରେ କରାଯାଉଥିଲା । ମୋର ଧାରଣା ଯେ ଲିଖିତ ଭାଷଣର ଶ୍ରୋତାମାନଙ୍କ ଉପରେ ଉପଯୁକ୍ତ ପ୍ରଭାବ ପଡ଼େ ନାହିଁ । ଏଣୁ ଲିଖିତ ପ୍ରବଂଧ ପଢ଼ିବା ପରିବର୍ତ୍ତେ, ମୁଁ ଗୋଟିଏ ଘଣ୍ଟାର ମୌଖିକ ଭାଷଣ ଦେଲି । କେମିଷ୍ଟ୍ରି ଲେକଚର ଥିଏଟର ଛାତ୍ର ସମାବେଶରେ ଭରପୂର ଥିଲା । ସଭାପତି ଥିଲେ ଅଧ୍ୟାପକ ରୋହାତ୍‌ଗୀ । ପ୍ରଶ୍ନୋତ୍ତର ପରେ ସଭାପତି ମୋ ଭାଷଣ ଉପରେ କେତେକ ପ୍ରଶଂସାସୂଚକ ମନ୍ତବ୍ୟ ଦେବା ପରେ ସଭା ଶେଷ ହେଲା । କିନ୍ତୁ ହଲ୍‌ରୁ ବାହାର ବାରଣ୍ଡାକୁ ଆସିବା ପରେ ରୋହାତ୍‌ଗୀ ସାହେବ ଯାହା କହିଲେ, ଭୁଲିବାର ନୁହେ । ଉପସ୍ଥିତ ସହପାଠୀମାନଙ୍କ ସନ୍ମୁଖରେ ସସ୍ନେହ ଆଲିଙ୍ଗନ କରି ସେ ଇଂରାଜୀରେ କହିଲେ ‘‘ଗଂଗାଧର, ମୋର ଧାରଣ ନଥିଲା ଯେ ଗୋଟିଏ ଜଟିଳ ଅର୍ଥନୈତିକ

ସମସ୍ୟା ଉପରେ ତୁମେ ଘଣ୍ଟାଏ କାଳ ଏପରି ତଥ୍ୟମୂଳକ ଆଲୋଚନା ସାବଲୀଳ ଭାଷାରେ ପ୍ରକାଶ କରିପାରିବ । ତୁମକୁ ସାଧୁବାଦ ଜଣାଉଛି ।'' ଅଧ୍ୟାପକ ରୋହାତ୍‌ଗୀ ୧୯୫୧ ମସିହା ଏମରଜେନ୍ସି ରିକ୍ରୁଟମେଣ୍ଟରେ ଆଇ.ଏ.ଏସ.କୁ ମନୋନୀତ ହୋଇ ଓଡ଼ିଶା ଛାଡ଼ି ବିହାର ଶାସନ ବିଭାଗରେ ଅବସ୍ଥାପିତ ହେଲେ । କେତେବର୍ଷ ତଳେ ସେ ମରଜଗତରୁ ବିଦାୟ ନେଇଛନ୍ତି । କିନ୍ତୁ ତାଙ୍କର ସଶ୍ରଦ୍ଧ ଆଲିଙ୍ଗନ ଓ ଆଶୀର୍ବାଦ ମୁଁ ଭୁଲି ନାହିଁ କି ଭୁଲି ପାରିବି ନାହିଁ ।

ଆଲୋଚନା ଚକ୍ରରେ ସଫଳତାର କାରଣ ତିନି ମାସର କ୍ଲାସ ପଢ଼ା ନୁହେ । ପୂର୍ବ ତିନି ବର୍ଷ ମଧ୍ୟରେ, ସମାଜସେବା ସହିତ ଅବସର ସମୟରେ ସାହିତ୍ୟ, ରାଜନୀତି ଓ ଅର୍ଥନୀତି ସଂକ୍ରାନ୍ତୀୟ ବିଭିନ୍ନ କିସମର ପୁସ୍ତକ ପଢ଼ିବାରେ ସମୟ କଟାଇଥିଲି । ସେ ଦିନର ସେମିନାର ପରେ ସହପାଠୀମାନେ ମୋତେ ପରିହାସ କରିବାକୁ ଆରମ୍ଭ କଲେ, ମୁଁ ନିଶ୍ଚୟ ପ୍ରଥମ ଶ୍ରେଣୀରେ ଅନର୍ସ ପାଉଚି । କିନ୍ତୁ ସେମାନେ ଜାଣି ନଥିଲେ ଯେ ରାଜନୀତିର ଡୋର ମତେ ଓଲଟା ଦିଗରେ ଟାଣୁଛି । ମୁଁ ଭାଗ୍ୟବାଦୀ ନୁହେ । କିନ୍ତୁ ପୁରୁଣା ଦିନର ସ୍ମୃତି ପଖାଳି ବସିଲେ ମନେ ହୁଏ, କଲେଜ ଜୀବନରେ ରାଜନୀତି ଓ ପାଠପଢ଼ା ଯେପରି ମୋର ଦୁଇ ସଉତୁଣୀ ଥିଲେ । କାହାକୁ ରଖିବି, କାହାକୁ ଛାଡ଼ିବି, କିଛି ସ୍ଥିର କରି ପାରୁ ନଥିଲି । ଦୁଇ ନାଆରେ ଗୋଡ଼ ଦେଇ ମଝିରେ ଉବେଜ ଟୁବେଜ ହେଉଥିଲି ।

୧୯୪୫ ମସିହାରେ ଦ୍ୱିତୀୟ ମହାଯୁଦ୍ଧ ଶେଷ ହେଲା । କାରାରୁଦ୍ଧ ଜାତୀୟ ନେତାମାନେ କାରାଗାରରୁ ମୁକ୍ତ ହେଲେ । ଛାତ୍ର ଆନ୍ଦୋଳନ ପୁଣି ଥରେ ଭାରତବ୍ୟାପୀ ସବୁ ପ୍ରଦେଶରେ ମୁଣ୍ଡ ଟେକିଲା । ନୂତନ ପରିସ୍ଥିତିରେ ପୂର୍ବରେ ଐକ୍ୟବଦ୍ଧ ଅନ୍ଦୋଳନର ଆଉ ସ୍ଥାନ ନଥିଲା । ଛାତ୍ରସଂଘ ଓ ଛାତ୍ର କଂଗ୍ରେସ ଦୁଇ ପରସ୍ପର ବିରୋଧୀ ସମାନ୍ତରାଳ ଅନୁଷ୍ଠାନ ଭାବରେ ଗଢ଼ି ଉଠିଲେ । ଛାତ୍ରସଂଘ ତରଫରୁ ଆମ୍ଭେମାନେ ସାଧାରଣ ସମସ୍ୟା ଉପରେ ଛାତ୍ରକଂଗ୍ରେସର ସହଯୋଗ ଲାଭ କରିବା ପାଇଁ ଉଦ୍ୟମ କଲୁ । ସାମ୍ରାଜ୍ୟବାଦୀ ସରକାର ବିରୁଦ୍ଧରେ ମିଳିତ ସଂଗ୍ରାମ ପାଇଁ ଆହ୍ୱାନ ଦେଲୁ । କ୍ଷେତ୍ର ବିଶେଷରେ ଏତାଦୃଶ ସହଯୋଗ ଅବଶ୍ୟ ମିଳୁଥିଲା, କିନ୍ତୁ ଛାତ୍ର କଂଗ୍ରେସର ନେତାମାନେ ମୋଟାମୋଟି ଏଥିପାଇଁ ପ୍ରସ୍ତୁତ ନ ଥିଲେ । ଏହାର ମୂଳ କାରଣ ହେଲା କମ୍ୟୁନିଷ୍ଟ ଦଳ ପ୍ରତି ସେମାନଙ୍କର ତୀବ୍ର ବିରୋଧ ଏବଂ ଛାତ୍ରସଂଘକୁ ସେମାନେ କମ୍ୟୁନିଷ୍ଟ ଦଳର ଏକ ସାମୁଖ୍ୟ ବୋଲି ବିବେଚନା କରୁଥିଲେ । ସେମାନଙ୍କର ଅଭିଯୋଗ ଯେ ଭ୍ରାନ୍ତ ବା ଅବାସ୍ତବ, ଏକଥା କୁହାଯାଇ ପାରିବ ନାହିଁ ।

କଂଗ୍ରେସ କାର୍ଯକାରୀ କମିଟିର ଅନ୍ୟ ସଦସ୍ୟମାନଙ୍କ ସହିତ ଦୀର୍ଘ ଦୁଇ ବର୍ଷ ଆଠ ମାସ ଅହମଦ ନଗର ଫୋର୍ଟରେ ଅଟକ ବନ୍ଦୀ ରହିବା ପରେ ହରେକୃଷ୍ଣ ମହତାବ ମୁକ୍ତ ହେଲେ । କଟକରେ ସେ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ବାଖରାବାଦ ଘରେ ରହୁଥାନ୍ତି । ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ରାମ, ମୁଁ ଓ ଅନ୍ୟ କେତେଜଣ ତାଙ୍କୁ ସାକ୍ଷାତ କରି ବ୍ରହ୍ମପୁରରେ ପ୍ରସ୍ତାବିତ ଛାତ୍ର ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ନିମନ୍ତ୍ରଣ କଲୁ ଏବଂ ସେ ଆନନ୍ଦରେ ସମ୍ମତି ଦେଲେ । ପୂର୍ବତନ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ ମଧ୍ୟ ସମ୍ମିଳନୀ ଉଦ୍‌ଘାଟନ କରିବାକୁ ସମ୍ମତି ଦେଲେ । ମୋର ମନେ ଅଛି, ଆମେ ଯେଉଁଦିନ ମହତାବ ବାବୁଙ୍କୁ ସାକ୍ଷାତ କଲୁ, ସେ ଦିନ ସେଇଠି ବିଜୟାନନ୍ଦ ପଟ୍ଟନାୟକଙ୍କର ମହତାବ ବାବୁଙ୍କ ସହ ପ୍ରଥମ ସାକ୍ଷାତ । ବିଜୁ ପଟ୍ଟନାୟକ ଲାହୋର ଜେଲରୁ ଖଲାସ ହୋଇ କଟକ ଘରେ ରହୁଥାନ୍ତି । ଧୋତି ଉପରେ ଖାକି ସାର୍ଟ ପିନ୍ଧି ପଟ୍ଟନାୟକ ସାଇକଲ୍‌ରେ ବାଖରାବାଦ ଆସି କାନୁନ୍‌ଗୋଙ୍କ ବୈଠକଖାନାରେ ଉପସ୍ଥିତ ହେଲେ । ମହତାବ ବାବୁ ତାଙ୍କୁ ଆମମାନଙ୍କ ସହିତ ପରିଚୟ କରାଇ ଦେଲେ । ବିଜୁ ପଟ୍ଟନାୟକଙ୍କ ରାଜନୈତିକ ଜୀବନର ପ୍ରାରମ୍ଭ ଅବସ୍ଥାରେ ମହତାବ ବାବୁଙ୍କ ସହିତ ସହୃଦୟତା ପରେ କିପରି ଶତ୍ରୁତାରେ ପରିଣତ ହେଲା, ସେ କଥା ଓଡ଼ିଶାରେ ସମସ୍ତେ ଅଳ୍ପ ବହୁତେ ଜାଣନ୍ତି । ଏଠି ତାର ପୁନରାବୃତ୍ତି କରିବା ପ୍ରାସଙ୍ଗିକ ହେବ ନାହିଁ ।

ଯାହାହେଉ, ବ୍ରହ୍ମପୁରରେ ଛାତ୍ରସଂଘ ଦ୍ୱାରା ଆୟୋଜିତ ସମ୍ମିଳନୀରେ ମହତାବ ବାବୁଙ୍କ ଯୋଗଦାନ ଅନେକ କଂଗ୍ରେସ ଲୋକଙ୍କୁ ସୁଖ ଲାଗିଲା ନାହିଁ । କିନ୍ତୁ ମହତାବ ବାବୁଙ୍କ ମନୋବୃତ୍ତି ଥିଲା ଉଦାର ଓ ସେ ସମସ୍ତଙ୍କ ସହିତ ମିଳିମିଶି କାମ କରିବାକୁ ଆଗ୍ରହୀ ଥିଲେ । ସ୍ଥାନୀୟ କଂଗ୍ରେସ ନେତା ଉମାଚରଣ ପଟ୍ଟନାୟକ ଅବଶ୍ୟ କମ୍ୟୁନିଷ୍ଟ ବିରୋଧୀ ବିଷ ଉଦ୍‌ଗାରଣ କରିବାକୁ ପଶ୍ଚାତ୍‌ପଦ ହେଲେ ନାହିଁ । କିନ୍ତୁ ବ୍ରହ୍ମପୁରର ଛାତ୍ରନେତା, ବିଶେଷତଃ ସଦାନନ୍ଦ ମହାନ୍ତି, ଦ୍ୱିତୀକୃଷ୍ଣ ପଣ୍ଡା, ନରସିଂହ ପଣ୍ଡା, ଶଶିଭୂଷଣ ପଟ୍ଟନାୟକ, ପ୍ରବୋଧ କୁମାର ନନ୍ଦ, କିଶୋର ଚନ୍ଦ୍ର ରଥ ଓ ସୁଲୋଚନା ରଥ ପ୍ରମୁଖଙ୍କର ପ୍ରଗାଢ଼ ଉଦ୍ୟମ ଫଳରେ ସମ୍ମିଳନୀ ବେଶ୍ ସଫଳ ହେଲା ।

ବ୍ରହ୍ମପୁର ସମ୍ମିଳନୀରୁ ଫେରିବାର କିଛିଦିନ ପରେ ଜିଲାବୋର୍ଡ଼ ଗୁଡ଼ିକୁ ନିର୍ବାଚନ ହେଲା । ପୁରୀ ଜିଲାର କେତୋଟି ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟମାନେ ପ୍ରାର୍ଥୀ ଥିଲେ । ଖୋର୍ଦ୍ଧାରୁ ପ୍ରାଣନାଥ ପଟ୍ଟନାୟକ,

ବେଗୁନିଆରୁ ଗଂଗାଧର ପାଇକରାୟ ଓ ବୋଲଗଡ଼ରୁ ଗଂଗାଧର ମିଶ୍ର ପ୍ରଭୃତି । ବେଗୁନିଆ ଓ ବୋଲଗଡ଼ରେ ପାର୍ଟି ପକ୍ଷରୁ ନିର୍ବାଚନ ପ୍ରଚାର କରିବା ପାଇଁ ମୋତେ ପଠାହେଲା । ଦୀର୍ଘଦିନ ଧରି କ୍ଲାସରୁ ଅନୁପସ୍ଥିତ ରହିବାକୁ ବାଧ୍ୟ ହେଲି । ବେଗୁନିଆରେ ମୁଁ ତିନି ଚାରି ଦିନ କଟାଇଲି । ବେଗୁନିଆ ହାଟରେ ଗୋଟିଏ ଛୋଟ ଘର ଭଡ଼ା ନେଇ ଆମ୍ଭେମାନେ ରହୁ ଏବଂ ସେହିଠାରୁ ପ୍ରତିଦିନ ମୁଁ ଓ ପାଇକରାୟ ଗାଁକୁ ଗାଁ ନିର୍ବାଚନ ପ୍ରଚାରରେ ଯାଉ । ଏହି ସମୟରେ ମୁଁ ପ୍ରତିଦିନ ସକାଳେ ନିୟମିତ ଶୀର୍ଷାସନ କରୁଥିଲି । ଦିନକର ଘଟଣା ମନେ ପଡ଼ୁଛି । ବେଗୁନିଆରେ ପହଂଚିବାର ପରଦିନ ସକାଳେ ଘର ବାରଣ୍ଡାରେ ପାଇକଛା ମାରି ମୁଣ୍ଡ ପରେ ଭାର ଦେଇ ଗୋଡ଼ ଉପରକୁ ଟେକି ମୁଁ ଶୀର୍ଷାସନ ଆରମ୍ଭ କଲି । ପ୍ରାୟ କୋଡ଼ିଏ ମିନିଟ୍ ପରେ ଯେତେବେଳେ ଆସନ ଭାଂଗି ଗୋଡ଼ ତଳକୁ କରେ, ଦେଖିଲି, ବଜାର ଓ ବସ୍ ଷ୍ଟାଣ୍ଡର ପ୍ରାୟ ତିରିଶ ଚାଳିଶ ଲୋକ ଚାରିକଡ଼େ ଠିଆ ହୋଇ ଏ ଦୃଶ୍ୟ ଉପଭୋଗ କରୁଛନ୍ତି । ମୁଁ ଅତ୍ୟନ୍ତ ବିବ୍ରତ ହୋଇ ସଂତର୍ପଣରେ ବ୍ୟାୟାମର ସମାପ୍ତି କଲି । ପାଇକରାୟ ଥଟ୍ଟା କଲେ, "ଭଲ ହେଲା, ସଭାରେ ଲୋକ ନ ହେଲେ ଆମେ ଶୀର୍ଷାସନ ଆରମ୍ଭ କରିବା । ଷଣ୍ଢ ଲଢ଼େଇ ଦୃଶ୍ୟ ଦେଖିବା ପାଇଁ ପୁରୀ ସିଂହଦ୍ୱାରରେ ଲୋକ ଜମିଲେ ସଭା ଆରମ୍ଭ କରାଯାଏ । ଆମେ ଷଣ୍ଢ ଲଢ଼େଇ ବଦଳରେ ଶୀର୍ଷାସନ ଆରମ୍ଭ କରିବା, ନିଶ୍ଚୟ ଲୋକ ଜମିବେ ।"

ନିର୍ବାଚନ ପ୍ରଚାରରେ ମତେ ପ୍ରାୟ ଦଶ ଦିନ ବୋଲଗଡ଼ରେ ରହିବାକୁ ହେଲା । କଂଗ୍ରେସ ପ୍ରାର୍ଥୀ ହରିବଂଧୁ ପରିଡ଼ାଙ୍କ ବିରୁଦ୍ଧରେ କମ୍ୟୁନିଷ୍ଟ ପ୍ରାର୍ଥୀ ଗଂଗାଧର ମିଶ୍ର ପ୍ରତିଦ୍ୱନ୍ଦିତା କରୁଥାନ୍ତି । ମିଶ୍ରଙ୍କ ସହ ମୁଁ ପ୍ରାୟ ବୋଲଗଡ଼ ଥାନାର ସବୁ ଗାଁ ବୁଲିଛି । ବର୍ଷା ଶେଷ ସମୟ । ଅନେକ ସମୟରେ ବର୍ଷା ମଧ୍ୟ ହୁଏ । ଏଣୁ ବଡ଼ ସଭାର ଆୟୋଜନ କରିବା ସଂଭବପର ହୁଏ ନାହିଁ । ଯେଉଁ ଗାଁକୁ ଯାଉ, ସେଠାରେ ଗୋଟିଏ ଛୋଟ ସଭା କରି ଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରୁ । ବୋଲଗଡ଼ରେ ଥିବା ସମୟରେ ଏକ ନୂଆ ଦୁର୍ଯୋଗ ପହଂଚିଲା । କମ୍ୟୁନିଷ୍ଟ ଦଳର ଜଣେ ଟାଣୁଆ କର୍ମୀ, ମୋର ପ୍ରିୟ ସାଥୀ ଅଧିକାରୀ ମହାନ୍ତି ଆମ୍ଭମାନଙ୍କଠାରୁ ଚିର ବିଦାୟ ନେଲେ । ଅଧିକାରୀ ମୋର ସମବୟସୀ । ମାଇନର ପାସ୍ କରି କିଛି ଦିନ କଟକ ସ୍ୱରାଜ ଆଶ୍ରମରେ ରହିବା ପରେ କଂଗ୍ରେସ ନେତାମାନଙ୍କ ପ୍ରତି ବୀତସ୍ପୃହ ହୋଇ ସମାଜବାଦ ପ୍ରତି ଆକୃଷ୍ଟ ହେଲେ । ମଧୁସୂଦନ ଗ୍ରାମୋଦ୍ୟୋଗ କେନ୍ଦ୍ରରେ ତାଲିମ୍ ପାଇ

ସେ ସେହିଠାରେ ଶିକ୍ଷକତା କରୁଥାନ୍ତି । . କଟକ ଚଣ୍ଡୀ ମନ୍ଦିର ସାମନାରେ ଆହେଦ୍ ସାହେବଙ୍କ ଘରେ (ବର୍ତ୍ତମାନ ଶୈଳବାଳା ମହିଳା କଲେଜ ହତାର ଅନ୍ତର୍ଭୁକ୍ତ) ଅକ୍ଷୟ କୁମାର ଚକ୍ରବର୍ତ୍ତୀଙ୍କ ତତ୍ତ୍ୱାବଧାନରେ ଗ୍ରାମୋଦ୍ୟୋଗ କେନ୍ଦ୍ର ପରିଚାଳିତ ହେଉଥାଏ । ଅନୁଷ୍ଠାନର ବହୁ ଛାତ୍ରଙ୍କୁ ଅଧିକାରୀ ମାର୍କ୍ସବାଦ ପ୍ରତି ସହାନୁଭୂତିଶୀଳ କରାଇ ପାରିଥିଲେ । ଯୁବକର୍ମୀ ମାନଙ୍କ ମଧ୍ୟରେ ଯେଉଁ କେତେଜଣଙ୍କ ସହିତ ମୋର ଅତି ଆନ୍ତରିକ ସଦ୍‌ଭାବ ଥିଲା, ସେ ସେମାନଙ୍କ ମଧ୍ୟରେ ଜଣେ । ଅଧିକାରୀଙ୍କ ଘର 'ମାଣିକାଗୋଡ଼ା' ଗାଁରେ । ବୋଲଗଡ଼ ଠାରୁ ତିନି ଚାରି କିଲୋମିଟର ଦୂର । ଦଶହରା ଦୁଇ ତିନି ଦିନ ଥାଇ ମୁଁ ନିର୍ବାଚନ ପ୍ରଚାରରେ ମାଣିକାଗୋଡ଼ାରେ ପହଂଚିଲି ଓ ସାଥୀ ପର୍ଶୁରାମ ପଦାତିକ ରାୟଙ୍କ ଘରେ ଅତିଥି ହେଲି । ମୋର ଉପସ୍ଥିତି ମାଣିକାଗୋଡ଼ାରେ ଯାହାକୁ ସବୁଠାରୁ ବେଶି ଆନନ୍ଦ ଦେଇଥାନ୍ତା, ସେ ଥିଲା ଶଯ୍ୟାଶାୟୀ, ହଇଜାରେ ଆକ୍ରାନ୍ତ । ରାତିରେ ତାଙ୍କ ଘରକୁ ଯାଇ ଖବର ନେଲି, ତାକୁ ହୋମିଓପାଥିକ ଔଷଧ ଦିଆଯାଉଛି । ମୋତେ ଦେଖି ତା ଓଠରେ ହସ ଫୁଟିଲା । କ୍ଷୀଣ କଂଠରେ କହିଲା, କାଲିକି ସେ ଭଲ ହୋଇଯିବ । ଏହି ପଦକ ଥିଲା ତାର ଶେଷ କଥା । ପରଦିନ ସକାଳେ ତା ଅବସ୍ଥା ଆହୁରି ଖରାପ । ମଫସଲ ଗାଁରେ ଡାକ୍ତରୀ ସାହାଯ୍ୟର ସଂଭାବନା ନଥାଏ । ଉପାୟ ନ ଦେଖି, ଗୋଟିଏ ବଡ଼ ବେତାରେ ବସାଇ ଭାର କରି ଆମେ ତାକୁ ବୋଲଗଡ଼ ଡାକ୍ତରଖାନାକୁ ନେଇ ଆସିଲୁ । ଡାକ୍ତରଖାନାରେ ମଧ୍ୟ ଚିକିତ୍ସାରେ କୌଣସି ବ୍ୟବସ୍ଥା ନଥିଲା । ପରଦିନ ସକାଳ ଆଠଟାରେ ସବୁ ଶେଷ । ମାଣିକାଗୋଡ଼ାର 'ମାଣିକ' ଚିରଦିନ ପାଇଁ ଆଖି ବୁଜିଲା ।

କିଛି ଦିନ ପରେ ଜିଲାବୋର୍ଡ଼ ନିର୍ବାଚନ ଶେଷ ହେଲା । ଏହି ନିର୍ବାଚନର ଅଭିଜ୍ଞତା ଆମମାନଙ୍କର ଅହଂଭାବ ଅନେକାଂଶରେ ଭାଙ୍ଗିଦେଲା । ଖୋର୍ଦ୍ଧା ବେଗୁନିଆ ଓ ବୋଲଗଡ଼ର କମ୍ୟୁନିଷ୍ଟ ପ୍ରାର୍ଥୀମାନଙ୍କର ନିଷ୍ଠାପର ଜନସେବକ ଭାବରେ ବିଶେଷ ସୁଖ୍ୟାତି ଥିଲା । ବ୍ୟକ୍ତିଗତ ଭାବରେ ଲୋକେ ଏହି ପ୍ରାର୍ଥୀମାନଙ୍କୁ ପସନ୍ଦ କରୁଥିଲେ । କିନ୍ତୁ କଂଗ୍ରେସ ଅନୁଷ୍ଠାନ ପ୍ରତି ଜନସାଧାରଣଙ୍କର ଆସ୍ଥା ଭାଙ୍ଗିବା ପାଇଁ ଏହି ବ୍ୟକ୍ତିଗତ ପ୍ରତିଷ୍ଠା ଯଥେଷ୍ଟ ନଥିଲା । ଫଳାଫଳ ତାହାହିଁ ପ୍ରମାଣ କଲା । କଂଗ୍ରେସ ପ୍ରାର୍ଥୀମାନେ ବହୁମତରେ ବିଜୟୀ ହେଲେ ।

ସେ ବର୍ଷ ଡିସେମ୍ବର ଶେଷ ବଡ଼ଦିନ ଛୁଟିରେ ଭାରତୀୟ ଛାତ୍ର ଫେଡ଼େରେସନର ବାର୍ଷିକ ସମ୍ମିଳନୀ ଆନ୍ଧ୍ରର ଗୁଣ୍ଟୁରଠାରେ ଅନୁଷ୍ଠିତ ହେଲା । ଓଡ଼ିଶାରୁ ନିଖିଳ

ଭାରତ ଛାତ୍ରସଂଘର କାର୍ଯ୍ୟକାରୀ କମିଟିର ସଦସ୍ୟ ଦୁର୍ଗାଚରଣ ମହାନ୍ତି, ମୁଁ, ଗଗନ ବିହାରୀ ଜେନା, ଲୋକନାଥ ଚୌଧୁରୀ, ପୂର୍ଣ୍ଣାନନ୍ଦ ଓ, ନିରୁପମା ଦାସ (ଡାକ୍ତର ଶ୍ରୀମତୀ ରଥ) ବାସନ୍ତୀ ପଟ୍ଟନାୟକ (ପରେ ଅଧ୍ୟାପିକା ଡାକ୍ତର ପଟ୍ଟନାୟକ) ଶର୍ମିଷ୍ଠା ଦାସ, ଜୟନ୍ତୀ ମହାନ୍ତି ପ୍ରମୁଖ ପ୍ରାୟ ପଚିଶ ଜଣ ପ୍ରତିନିଧି ଯୋଗ ଦେଇଥିଲୁ । ପ୍ରଥମ ଦିନ ସଂଧ୍ୟାରେ ଉଦ୍‌ଘାଟନ ଉତ୍ସବ । ଅଭ୍ୟର୍ଥନା ସମିତିର ସଭାପତି ଆନ୍ଧ୍ରର ଜଣେ ଛାତ୍ର ନେତା ଏବଂ ଛାତ୍ରସଂଘର ସାଧାରଣ ସଂପାଦକ ପ୍ରଶାନ୍ତ ସାନ୍ୟାଲ ଭାଷଣ ଦେଲେ । କଲିକତା ବିଶ୍ୱବିଦ୍ୟାଳୟ ନୃତତ୍ତ୍ୱ ବିଭାଗର ଅଧ୍ୟାପକ ଚଟ୍ଟୋପାଧ୍ୟାୟ ସଭାପତି ଅଭିଭାଷଣ ଦେଲେ । ଦ୍ୱିତୀୟ ଦିନ ସକାଳ ନ'ଟାରୁ ପ୍ରାୟ ଦଶ ହଜାର ଛାତ୍ର ପ୍ରତିନିଧିଙ୍କର ଏକ ବିରାଟ ଶୋଭାଯାତ୍ରା ସହର ପରିକ୍ରମା କଲା । ଦିନ ତିନିଟାରେ ଡେଲିଗେଟ୍ ସେସନ୍ ବା ପ୍ରତିନିଧି ସଭା ଆରମ୍ଭ ହେଲା । ବିଭିନ୍ନ ବିଷୟରେ ପୂର୍ବରୁ କାର୍ଯ୍ୟକାରୀ ସମିତିରେ ନିର୍ଦ୍ଧାରିତ ପ୍ରସ୍ତାବମାନ ପ୍ରତିନିଧି ସଭାରେ ଆଲୋଚିତ ହେଲା ।

ଏହି ସମୟରେ ଦେଶୀୟ ରାଜ୍ୟ ଗୁଡ଼ିକରେ ପ୍ରଜା ଆନ୍ଦୋଳନ ଅତି ଉଗ୍ର ତାଣ୍ଡବ ରୂପ ଧାରଣ କରିଥାଏ । ବ୍ରିଟିଶ ଶାସିତ ଅଂଚଳରେ ସ୍ୱାଧୀନତା ସଂଗ୍ରାମର ଅଗ୍ରଗତି ଗଡ଼ଜାତ ପ୍ରଜାମାନଙ୍କୁ ମଧ୍ୟ ପ୍ରଭାବିତ କରୁଥାଏ । ଓଡ଼ିଶାରେ ଚବିଶଟି ଗଡ଼ଜାତ, ଏଣୁ ଓଡ଼ିଶାର ପ୍ରତିନିଧିମାନେ ଏହି ସମସ୍ୟା ବିଷୟରେ ପୂର୍ଣ୍ଣ ଅବଗତ । ଗଡ଼ଜାତ ବିଷୟକ ଏକ ପ୍ରସ୍ତାବ ସଭା ମଂଚରେ ଆଗତ କରିବା ପାଇଁ କାର୍ଯ୍ୟକାରୀ ସମିତି ମୋ ଉପରେ ଦାୟିତ୍ୱ ଦେଇଥାନ୍ତି । ଦିନ ତିନିଟାରେ ଡେଲିଗେଟ୍ ସେସନ ଆରମ୍ଭ ହେଲା । ସଂଧ୍ୟାବେଳେ ସଭାପତି ଚଟ୍ଟୋପାଧ୍ୟାୟ ପ୍ରଶାନ୍ତ ସାନ୍ୟାଲଙ୍କୁ ସଭା ପରିଚାଳନାର ଦାୟିତ୍ୱ ଦେଇ ସଭାସ୍ଥଳରୁ ବିଦାୟ ନେଲେ । ସାନ୍ୟାଲ ଅନ୍ୟ ଅନେକ ରାଜନୈତିକ ସମସ୍ୟା ଉପରେ କଲିକତା ବମ୍ବେ ଓ ଦିଲ୍ଲୀର ପ୍ରତିନିଧିମାନଙ୍କୁ ଦୀର୍ଘ ଭାଷଣ ଦେବାକୁ ସୁଯୋଗ ଦେବା ହେତୁ, ଦେଶୀୟ ରାଜ୍ୟ ବିଷୟକ ପ୍ରସ୍ତାବର ପାଳି ପଡ଼ିଲା ବହୁ ବିଳମ୍ବରେ । ଦେଶୀୟ ରାଜ୍ୟ ସମସ୍ୟା ପ୍ରତି ଏପରି ଅବହେଳା ସୂଚକ ମନୋଭାବ ଦେଖି, କେବଳ ଓଡ଼ିଶା ନୁହେଁ, ରାଜସ୍ଥାନ ଓ ମଧ୍ୟ ପ୍ରଦେଶର ବହୁ ପ୍ରତିନିଧି ସ୍ତମ୍ଭୀଭୂତ ହେଉଥାନ୍ତି । ରାତି ଦଶଟାରେ ଯେତେବେଳେ ଡାକରା ଆସିଲା, ସେତେବେଳକୁ ପ୍ରତିନିଧିମାନେ କ୍ଳାନ୍ତ ଓ ଅବସନ୍ନ । ପ୍ରତିନିଧିମାନଙ୍କୁ ସଜାଗ କରାଇବା ପାଇଁ, ମୁଁ ଧୀରେ ଆସ୍ତେ ନ କହି, ଓଜସ୍ୱିନୀ ଭାଷଣ ଦେବାକୁ

ଆରମ୍ଭ କଲି । ତିନି ମିନିଟ୍ ପରେ ସଭାପତି ସତର୍କ ଘଣ୍ଟି ଦେଇ ଦୁଇ ମିନିଟ୍ ମଧ୍ୟରେ ଭାଷଣ ଶେଷ କରିବାକୁ ଅନୁରୋଧ କଲେ । ମୋର ସ୍ୱାଭିମାନ ଉପରେ ଆଘାତ ଲାଗିଲା । ସବୁ ସର୍ବଭାରତୀୟ କ୍ଷେତ୍ରରେ ଓଡ଼ିଶାକୁ ଯେପରି ଅବହେଳା କରାଯାଏ, ଏଠି ତାର ପୁନରାବୃତ୍ତି ଘଟୁଚି ବୋଲି ମନେ ହେଲା । ମୁଁ ବକ୍ତବ୍ୟ ଶେଷ କରିବାକୁ ଚେଷ୍ଟା ନ କରି ଅଧିକ ଆବେଗ ପୂର୍ଣ୍ଣ କଂଠରେ କହି ଚାଲିଲି । ପାଂଚ ମିନିଟ୍ ପରେ ସାନ୍ୟାଲ ପୁଣି ଘଣ୍ଟି ବଜାଇଲେ । ତାଙ୍କୁ ଠିକଣା ଜବାବ ଦେବା ପାଇଁ କ୍ଷଣକରେ ନିଷ୍ପତ୍ତି ନେଲି । ମୋ ସାମନାରେ ମଧ୍ୟ ମାଇକ୍ ଥିଲା ସଭାପତିଙ୍କୁ ସମ୍ବୋଧନ କରି କହିଲି "ଦେଶୀୟ ରାଜ୍ୟ ସମସ୍ୟା ବିଷୟରେ ଆପଣ ସଂପୂର୍ଣ୍ଣ ଅଜ୍ଞ । ଯଦି କିଛି ଜାଣିବାକୁ ଇଚ୍ଛା, ଧୈର୍ଯ୍ୟର ସହିତ ମୋ କଥା ଶୁଣନ୍ତୁ ।" ଏ ମନ୍ତବ୍ୟରେ ସଭାସ୍ଥଳର ବିଭିନ୍ନ କୋଣରୁ କରତାଳି ବାଜିଲା । ସାନ୍ୟାଲ ଚୁପ୍ ହୋଇ ବସିଲେ । ପନ୍ଦର ମିନିଟ୍ ପରେ ମୁଁ ବକ୍ତୃତା ଶେଷ କଲି । ସଭା ମଞ୍ଚରୁ ଓହ୍ଲାଇ ଆସିବା ପରେ ମଧ୍ୟ ପ୍ରଦେଶ, ରାଜସ୍ଥାନ ଓ କେରଳର ବହୁ ପ୍ରତିନିଧି ମୋତେ ସାଧୁବାଦ ଜଣାଇ କହିଲେ "ଆପଣ ଠିକ୍ କହିଛନ୍ତି, ଏ କଲିକତାବାସୀ ଦେଶୀୟ ରାଜ୍ୟ ବିଷୟରେ ଜାଣନ୍ତି କ'ଣ ?"

ପରଦିନ ସକାଳେ ମୁଁ ନିଖିଳ ଭାରତ ଛାତ୍ର ଫେଡ଼େରେସନ୍‌ର କେନ୍ଦ୍ର କାର୍ଯ୍ୟକାରୀ ସମିତିକୁ ସଦସ୍ୟ ନିର୍ବାଚିତ ହେଲି । ପଂଜାବର ସତ୍ୟପାଳ ଡାଂଗ୍ ସାଧାରଣ ସଂପାଦକ ନିର୍ବାଚିତ ହେଲେ ।



# ବିଜୟ ରଥର ସାରଥି

ଦ୍ୱିତୀୟ ମହାଯୁଦ୍ଧ ପରେ ବ୍ରିଟେନରେ ୧୯୪୫ ମସିହାରେ ଯେଉଁ ସାଧାରଣ ନିର୍ବାଚନ ହେଲା, ଯୁଦ୍ଧକାଳୀନ ନେତା ସାର୍ ଉଇନଷ୍ଟନ୍ ଚର୍ଚ୍ଚିଲ୍ ସେ ନିର୍ବାଚନରେ ସଂପୂର୍ଣ୍ଣ ପରାଜିତ ହେଲେ ଏବଂ ଅଟ୍‌ଲିଙ୍କ ନେତୃତ୍ୱରେ ଶ୍ରମିକ ଦଳ ସରକାର ଗଠନ କଲେ । ଚର୍ଚ୍ଚିଲ୍ ଥିଲେ ଘୋର ଭାରତ-ବିରୋଧୀ ଓ ଭାରତୀୟ ସ୍ୱାଧୀନତା ଦାବୀର ଚରମ ଶତ୍ରୁ । କିନ୍ତୁ ଦ୍ୱିତୀୟ ମହାଯୁଦ୍ଧରେ ବ୍ରିଟେନ୍‌ର ଅଣ୍ଟା ଭାଂଗି ପଡ଼ିଥିଲା । ଉପନିବେଶ ଗୁଡ଼ିକର ସ୍ୱାଧୀନତା ଆନ୍ଦୋଳନକୁ ଦମନ କରିବା ପାଇଁ ବ୍ରିଟେନ ଶକ୍ତିହୀନ ହୋଇ ପଡ଼ିଥିଲା । ୪୫ ମସିହା ଶେଷ ଭାଗରେ ଭାରତୀୟ ନୌବାହିନୀରେ ଯେଉଁ ବିଦ୍ରୋହ ଦେଖା ଦେଇଥିଲା, ବ୍ରିଟିଶ ସରକାର ତହିଁରୁ ଯଥେଷ୍ଟ ସଂକେତ ପାଇଥିଲେ । ଏଣୁ ଶ୍ରମିକ ଦଳର ସରକାର ଭାରତୀୟ ନେତାମାନଙ୍କ ସହିତ ମିଳାମିଶା କରିବା ପାଇଁ ଉଦ୍ୟମ ଆରମ୍ଭ କଲେ । ଏହି ପରିବର୍ତ୍ତିତ ନୀତିର ପରିଣତି ସ୍ୱରୂପ ୧୯୪୬ ଜାନୁଆରୀ ମାସରେ ବ୍ରିଟିଶ ପାର୍ଲିଆମେଣ୍ଟର ଏକ ପ୍ରତିନିଧି ଦଳ ଭାରତ ପରିଦର୍ଶନରେ ଆସିଲେ । ପରେ ପରେ ଭାରତ ବିଭାଗ ସେକ୍ରେଟାରୀ ଲର୍ଡ଼ ପେଥିକ୍ ଲରେନ୍ସଙ୍କ ନେତୃତ୍ୱରେ ତିନି ଜଣ କ୍ୟାବିନେଟ୍ ମନ୍ତ୍ରୀ ଭାରତକୁ ଆସି ସାଂବିଧାନିକ ପରିବର୍ତ୍ତନ ସଂପର୍କରେ ଭାରତୀୟ ନେତାମାନଙ୍କ ସହିତ ବିଚାର ଆଲୋଚନା ଆରମ୍ଭ କଲେ । ସାବାଳକ ଭୋଟ ପ୍ରଥା ଜରିଆରେ ଗଣ ପରିଷଦ ବା ସଂବିଧାନ ପ୍ରଣୟନକାରୀ ସଂସ୍ଥାକୁ ସଭ୍ୟ ନିର୍ବାଚନ କରିବା ସମୟ ସାପେକ୍ଷ ହେବ, ଏଣୁ କ୍ୟାବିନେଟ୍ ମିଶନ୍ ପ୍ରସ୍ତାବ କଲେ ଯେ ପ୍ରଚଳିତ ନିୟମ ଅନୁଯାୟୀ ପ୍ରାଦେଶିକ ବିଧାନସଭାକୁ ନିର୍ବାଚନ କରାଇଲେ ନବ ନିର୍ବାଚିତ ବିଧାନସଭା ସଭ୍ୟମାନେ ଗଣ ପରିଷଦ ବା କନଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିକୁ ସଦସ୍ୟ ନିର୍ବାଚନ କରିବେ ଓ ଏହି ପ୍ରକ୍ରିୟାରେ ଗଣ ପରିଷଦ ତୁରନ୍ତ ଗଠିତ ହୋଇ ପାରିବ। ଭାରତୀୟ ନେତାମାନେ ଏ ପ୍ରସ୍ତାବ ଗ୍ରହଣ କରିନେଲେ ଓ ତଦନୁଯାୟୀ ୧୯୪୬ ଏପ୍ରିଲ ଆରମ୍ଭରେ ପୁରୁଣା ସୀମିତ ଭୋଟ ପ୍ରଥା ଅନୁସାରେ ପ୍ରାଦେଶିକ ବିଧାନ ସଭାପାଇଁ ନିର୍ବାଚନ ହେଲା । ଏହି ନିର୍ବାଚନରେ ସଂରକ୍ଷିତ ସ୍ଥାନ ବ୍ୟତୀତ ଅନ୍ୟ ମଣ୍ଡଳୀ ଗୁଡ଼ିକରେ କଂଗ୍ରେସ ପ୍ରାର୍ଥୀମାନେ ବିନା ପ୍ରତିଦ୍ୱନ୍ଦିତାରେ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । କେବଳ ଓଡ଼ିଶା ବିଧାନ ସଭାର ଏକମାତ୍ର ଲେବର ସିଟ୍ ପାଇଁ କଂଗ୍ରେସ ଓ କମ୍ୟୁନିଷ୍ଟ ଦଳ ମଧ୍ୟରେ ପ୍ରତିଦ୍ୱନ୍ଦିତା ହୋଇଥିଲା । ଓଡ଼ିଶାରେ ସେତେବେଳେ ବ୍ରଜରାଜ ନଗର ଓରିଏଣ୍ଟ କାଗଜ କଳ, କେତେକ

କୋଇଲା ଖଣି ଓ ଇଲେକ୍ଟ୍ରିକ୍ ସପ୍ଲାଇ କଂପାନୀ ବ୍ୟତୀତ ଅନ୍ୟ କଳ କାରଖାନା ନଥିଲା କହିଲେ ଚଳେ । ଏହି କେତୋଟି କାରଖାନା ଓ କଟକ ବ୍ରହ୍ମପୁରରେ ଥିବା ପ୍ରେସ୍ ଓ କ୍ଷୁଦ୍ର ଶିଳ୍ପ ସଂସ୍ଥାର ଶ୍ରମିକ ମାନଙ୍କୁ ନେଇ ଏହି ନିର୍ବାଚନ ମଣ୍ଡଳୀ ଗଠିତ ହୋଇଥିଲା । କଂଗ୍ରେସ ପକ୍ଷରୁ ଭଦ୍ରଖର ମୌଲବୀ ମହମ୍ମଦ୍ ହନିଫ ଓ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ସାଥୀ ବୈଦ୍ୟନାଥ ରଥ ଏହି ନିର୍ବାଚନରେ ପ୍ରାର୍ଥୀ ଥିଲେ ।

ଆଜିକାଲି ଅବଶ୍ୟ ନିର୍ଦ୍ଦିଷ୍ଟ ଶ୍ରେଣୀର ପ୍ରାର୍ଥୀଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ନାହିଁ । ଆଦିବାସୀ ବା ହରିଜନଙ୍କ ପାଇଁ ସଂରକ୍ଷିତ ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ ସେ ମଣ୍ଡଳୀର ସବୁ ସାବାଳକ ଭୋଟରଙ୍କ ଦ୍ୱାରା ନିର୍ବାଚିତ ହେଉଛନ୍ତି । କିନ୍ତୁ ୩୫ ମସିହା ଭାରତ ଶାସନ ଆଇନ ଅନୁଯାୟୀ ଶ୍ରମିକଙ୍କ ପାଇଁ ସଂରକ୍ଷିତ ଆସନ ନିମନ୍ତେ କେବଳ ତାଲିକାଭୁକ୍ତ ଶ୍ରମିକ ଭୋଟ ଦେଉଥିଲେ । ସମ୍ବଲପୁର ଜିଲାର ବ୍ରଜରାଜ ନଗରରେ ପ୍ରତିଷ୍ଠିତ ଓରିଏଣ୍ଟ ପେପର ମିଲ୍‌ରେ ଥିଲେ ସବୁଠାରୁ ଅଧିକ ସଂଖ୍ୟକ ଶ୍ରମିକ ଭୋଟର । ନିର୍ବାଚନ ପ୍ରାର୍ଥୀପତ୍ର ଦାଖଲ ହେବା ପରେ ମୋତେ ବ୍ରଜରାଜ ନଗର ଯିବାକୁ ନିର୍ଦ୍ଦେଶ ଆସିଲା । ଯେ କୌଣସି ପ୍ରକାର ନିର୍ବାଚନ ସହିତ ମୋର ଏହି ଅଙ୍ଗାଙ୍ଗୀ ସଂପର୍କର କାରଣ ମୁଁ ଏ ପର୍ଯ୍ୟନ୍ତ ବୁଝି ନାହିଁ । ମୁଁ ଅବଶ୍ୟ ସାଧାରଣ ସଭାରେ ବକ୍ତୃତା ଦେଇ ପାରୁଥିଲି, ସଭା ଶୋଭାଯାତ୍ରାରେ ସମବେତ ସଂଗୀତ ଗାନରେ ପୁରୋଧା ଥିଲି । ଏଥିପାଇଁ କ'ଣ ପାରିଶ୍ରମିକ ହେଲା କଲେଜରୁ ପୁଣି ଗୋଟାଏ ମାସର ଅନୁପସ୍ଥିତି ?

ଅବଶ୍ୟ ମୋତେ ବ୍ରଜରାଜ ନଗର ପଠାଇବାର ଅନ୍ୟ ଏକ କାରଣ ଥାଇପାରେ । ୧୯୪୪ ମସିହାରେ ଥରେ ମୁଁ ଶରତ୍ ପଟ୍ଟନାୟକଙ୍କ ସହିତ କଲିକତାରେ ଥିବା ସମୟରେ, ବ୍ରଜରାଜ ନଗରରୁ ତିନି ଚାରି ଜଣ ଶ୍ରମିକ କଲିକତା ଯାଇ ବେଙ୍ଗଲ ଟ୍ରେଡ୍ ୟୁନିଅନ କଂଗ୍ରେସ୍ ଅଫିସରେ ବିଶିଷ୍ଟ ଶ୍ରମିକ ନେତା ଅବଦୁଲ୍ ମୋମିନ୍‌ଙ୍କ ସହ ସାକ୍ଷାତ୍ କଲେ । ୟୁନିଅନ୍ ଗଢ଼ିବା ହେତୁ ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କୁ ଚାକିରୀରୁ ବରଖାସ୍ତ କରାଯାଇଥିଲା । କିନ୍ତୁ ୟୁନିଅନ୍‌କୁ ମଜବୁତ୍ କରିବା ଉଦ୍ଦେଶ୍ୟରେ ସେମାନେ ଅବଦୁଲ୍ ମୋମିନ୍‌ଙ୍କୁ ସଭାପତି ହେବା ପାଇଁ ନିମନ୍ତ୍ରଣ କରିବାକୁ ଆସିଥିଲେ । ମୋମିନ୍ ସାହେବ କିନ୍ତୁ ଏକା ଏକା ବ୍ରଜରାଜ ନଗର ଯିବାକୁ ନାରାଜ । ଏଣୁ ଶରତ୍ ବାବୁଙ୍କ ପରାମର୍ଶ କ୍ରମେ ମୁଁ ଓ ମୋମିନ୍ ସାହେବ୍ କଲିକତାରୁ ଝାରସୁଗୁଡ଼ା ଦେଇ ବ୍ରଜରାଜ ନଗର ଗଲୁ । ଆମେ ପହଂଚିବା ଦିନ ସଂଧ୍ୟାରେ ସାଧାରଣ

ସଭା ହେଲା । ମୋମିନ୍ ସାହେବ ଓ ମୁଁ ଭାଷଣ ଦେଲୁ । ବ୍ରଜରାଜ ନଗର ନିକଟସ୍ଥ ତେଲେନ୍‌ପାଲି ଗାଁର ବଂଶୀଧର ଦାଶ ଓ ଅନ୍ୟ କେତେକ ସ୍ଥାନୀୟ ନେତା ଶ୍ରମିକମାନଙ୍କର ଦାବୀକୁ ସମର୍ଥନ ଜଣାଇ ଭାଷଣ ଦେଲେ । ଅବଦୁଲ ମୋମିନ୍ ଯଥାରୀତି ସଭାପତି ନିର୍ବାଚିତ ହେଲେ । ପରଦିନ ଆମ୍ଭେମାନେ ମଜଦୁର୍ ବସ୍ତିରେ ବୁଲି ବିଭିନ୍ନ ଶ୍ରମିକ ଗୋଷ୍ଠୀ ସହିତ ସାକ୍ଷାତ ଆଲୋଚନା କଲୁ । ୟୁନିଅନ ପ୍ରତି ଆଗ୍ରହ ଦେଖି ଆମ୍ଭେମାନେ କେତେକାଂଶରେ ବିସ୍ମିତ ହେଲୁ । ତୃତୀୟ ଦିନ ସକାଳେ ଆମ ଉପରେ ହଠାତ୍ ୧୪୪ ଧାରା ଜାରି କରା ହେଲା ଓ କେତେ ଘଣ୍ଟା ମଧ୍ୟରେ ବ୍ରଜରାଜନଗର ଛାଡ଼ି ଚାଲିଯିବାକୁ ଆଦେଶ ହେଲା । କୌଣସି ପ୍ରକାରର ଅଶାନ୍ତ ପରିସ୍ଥିତି ସୃଷ୍ଟି ନ ହୋଇଥିଲେ ମଧ୍ୟ, ମିଲ ମାଲିକଙ୍କର ସ୍ୱାର୍ଥ ରକ୍ଷା ପାଇଁ ସରକାରୀ କଳ କିପରି କାର୍ଯ୍ୟ କରୁଥିଲା, ଏ ଘଟଣା ତାର ଜ୍ୱଳନ୍ତ ନିଦର୍ଶନ । ଯାହାହେଉ ମୁଁ ଓ ମୋମିନ୍ ସାହେବ କଲିକତା ଫେରି ଆସିଲୁ । ସ୍ୱାଧୀନତା ପ୍ରାପ୍ତି ପରେ ଅବଦୁଲ ମୋମିନ୍ ବାରିପଦାରେ ଆସି ବସବାସ କଲେ ଏବଂ ଅଳ୍ପ କେତେ ବର୍ଷ ଆଗେ ବାରିପଦାରେ ତାଙ୍କର ଦେହାନ୍ତ ହୋଇଛି ।

ନିର୍ବାଚନ କାର୍ଯ୍ୟରେ ଶରତ୍ ବାବୁ, ମୋହନ ବାବୁ ଓ ମୁଁ ବ୍ରଜରାଜ ନଗରରେ ପହଂଚିଲୁ । ପ୍ରଥମେ ତେଲେନ୍‌ପାଲି ଗାଁରେ ଗୋଟିଏ ମେଲା ଘରେ ଆମର ଅବସ୍ଥାନ । ଓଡ଼ିଶାର ଶ୍ରମିକ ଆନ୍ଦୋଳନ ଇତିହାସରେ ତେଲେନ ପାଲି ଗାଁର ନାମ ସ୍ୱର୍ଣ୍ଣାକ୍ଷରରେ ଲେଖା ରହିବ । କାଗଜ କଳ ଠାରୁ ଅନତି ଦୂରରେ ନଈକୂଳରେ ତେଲେନ ପାଲି । ଏହି ଗାଁରେ ଶ୍ରମିକ ଆନ୍ଦୋଳନର ପ୍ରଥମ ପାହାଚ ଗଢ଼ି ଉଠେ । ବଂଶୀଧର ଦାଶ, ଗଂଗାଧର ଦାଶ ଓ ଗାଁର ଅନ୍ୟ ସମସ୍ତେ ଶ୍ରମିକ ଆନ୍ଦୋଳନର ଦୃଢ଼ ସମର୍ଥକ । ବଂଶୀ ବାବୁ କିଛି ବର୍ଷ ପାଇଁ ଶ୍ରମିକ ୟୁନିଅନର ଉପ-ସଭାପତି ଥିଲେ । ବିରଳା କଂପାନୀର ସ୍ଥାନୀୟ ପରିଚାଳକ ମାନଙ୍କର ସବୁ ପ୍ରକାର ଅପଚେଷ୍ଟା ତେଲେନ୍‌ପାଲିବାସୀଙ୍କୁ ପ୍ରତାରିତ କରି ପାରି ନଥିଲା ।

ଆମେ ପହଂଚିବା ପରେ ପ୍ରତିଦିନ ଗାଁ ମୁଣ୍ଡରେ ସଭା ହୁଏ । ମୋହନ ବାବୁ ଓଡ଼ିଆ ଭାଷାରେ ଜଣେ ବିଚକ୍ଷଣ ବକ୍ତା । ଅତି ସରଳ ଗାଉଁଲୀ ଭାଷାରେ ଜଟିଳ ରାଜନୈତିକ ତତ୍ତ୍ୱକୁ ସର୍ବସାଧାରଣଙ୍କ ଆଗରେ ସେ ଯେପରି ଉପସ୍ଥାପିତ କରି ପାରନ୍ତି, ତାର ତୁଳନା ନାହିଁ । ଶରତ୍ ବାବୁ ମଧ୍ୟ ଉଭୟ ଓଡ଼ିଆ ଓ ହିନ୍ଦୀରେ ଭଲ କହି ପାରନ୍ତି । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପ୍ରତିଷ୍ଠିତ

କାଶୀ ବିଦ୍ୟାପୀଠରେ କିଛି ଦିନ ଅଧ୍ୟୟନ କରିବା ପରେ ବିହାରର ଗିରିଡ଼ିହ ଅଂଚଳରେ ସେ ଅନେକ ବର୍ଷ ଧରି ଶ୍ରମିକ ସଂଗଠନ କାର୍ଯ୍ୟ କରୁଥିଲେ । ହିନ୍ଦୀ ଭାଷା ଉପରେ ତାଙ୍କର ବେଶ୍ ଦଖଲ ଥିଲା । ଓରିଏଣ୍ଟ ପେପର ମିଲ୍‌ରେ ବିହାର ଓ ଯୁକ୍ତ ପ୍ରଦେଶର (ବର୍ତ୍ତମାନର ଉତ୍ତର ପ୍ରଦେଶ) ବହୁ ଶ୍ରମିକ କାର୍ଯ୍ୟ କରୁଥିଲେ । ନିକଟସ୍ଥ କୋଲିଏରୀରେ ମଧ୍ୟ ଛୋଟ ନାଗପୁରର ବହୁ ଶ୍ରମିକ କାର୍ଯ୍ୟ କରନ୍ତି । ଏଣୁ ଶରତ ବାବୁଙ୍କ ହିନ୍ଦୀ ଭାଷଣ ସେମାନଙ୍କ ପାଇଁ ଖୁବ୍ ଉପଯୋଗୀ ହୁଏ । ଏହି ସମୟରେ ଦୋଳ ଉତ୍ସବ ଚାଲିଥାଏ । ହୋଲି ଦିନ ଆମ୍ଭେମାନେ ବିଭିନ୍ନ ଶ୍ରମିକ ବସ୍ତିରେ ହୋଲି ଖେଳିବାକୁ ବାହାରିଲୁ । ଆମ ହାତରେ ଦା ହାତୁଡ଼ି ଚିହ୍ନିତ ଲାଲ ପତାକା, କଂଠରେ ଥିଲା ସମବେତ ଗାନ ଓ ସ୍ଲୋଗାନ୍ । ମୋ ଲିଖିତ ଗୋଟିଏ ଗୀତ ଗାଇ ଆମେ କେତେଜଣ ବସ୍ତିରୁ ବସ୍ତି ଘୁରି ବୁଲିଲୁ । 'ଲାଲ ପତାକାକୁ' ବିଦାୟ ନମସ୍କାର ଜଣାଇବାର ଚାଳିଶ ବର୍ଷରୁ ଅଧିକ ହେଲାଣି । କିନ୍ତୁ ଗୀତଟି ଥିଲା ଲାଲ୍ ପତାକା ନାମରେ ଶ୍ରମିକ ଶ୍ରେଣୀକୁ ଏକ ପ୍ରକାରର ଉଦ୍‌ବୋଧନ । ଗୀତରେ କେତୋଟି ପଂକ୍ତି ଉଦ୍ଧାର କରୁଚି ।

''ମଜଦୁର୍ ମଜଦୁର !
ଦୁନିଆର ବିପ୍ଳବୀ ବୀର ମଜଦୁର୍
ଉଠା ଝଣ୍ଡା ତୋ ଲାଲ୍
ତୋଳ ତୋର ହତିୟାର
ତୁଟାରେ ବଂଧନ୍, ଦୁନିଆର କଷଣ
ଆରେ ବାହାଦୁର, ବାହାଦୁର, ବାହାଦୁର୍ ।।

ଶୋଷଣ କଷଣ ମୁନାଫା ନିଶା
ଜାତିରେ ଆଣିଛି ଏ ଅମାନିଶା
ଯେ ଜାତି ଜୀବନେ ମରଣ ନାଇଁ
ସେ ଜାତି କି ତାରେ କ୍ଷମିବ ଭାଇ
ସେ ଜାତି ସନ୍ତାନ, ଅମର ସଇନ
ଶୋଷଣ କଷଣେ କର ଚୂର
ଦୁନିଆର ବିପ୍ଳବୀ ବୀର ମଜଦୁର୍ ।।

ବୁକେ ବୁକେ କାଟେ ଅନାହାର ଭାର
ନୟନୁ ଛୁଟେ ରକତର ଧାର

କୋଟି କଂକାଳ ଟଳି ପଡ଼େ ଖରେ
ଅଗଣିତ କୋଳେ ମରଣ ଖେଳେ
ଗାଅରେ ଗାଅରେ ମରଣ ବିଜୟୀ
ବଂଚିବାର ନୂଆ ସୁର
ଦୁନିଆର ବିପ୍ଳବୀ ବୀର ବାହାଦୁର ।।

କାଲି ପରି ମନେ ହେଉଛି, ଏ ଗୀତଟି ମିଳିତ କଂଠରେ ବୋଲି ବସ୍ତି ବସ୍ତିରେ ଘୁରି ବୁଲିଲା ବେଳେ, ବ୍ରଜରାଜନଗରର ମଜଦୁରମାନେ ମୋ ଉପରେ ଯେଉଁ ସ୍ନେହ ଆଦର ଢ଼ାଳି ଦେଇଥିଲେ, ତାହା ଶେଷ ନିଃଶ୍ୱାସ ଚାଲିଥିବା ଯାଏ ମନେ ରହିବ । କେଉଁଠି ଦୁଇ ତିନି ଲୋକ ମତେ ଟେକି ଧରିଲେ, କିଏ ଆଦରରେ ଆଲିଂଗନ କଲେ, କିଏ ଅବିର ଖେଳିଲା, କିଏ ବାଲଟି ବାଲ୍‌ଟି ରଂଗ ପାଣି ପିଚକାରୀ ମାରିଲା । ମୁଁ ବୋଧହୁଏ ସବୁରି ମନ କଥା ଗୀତରେ ପ୍ରକାଶ କରି ପାରିଥିଲି, ସେଥିପାଇଁ ଏ ପ୍ରତିଦାନ । ମୁଁ ତ ପୁରାପୁରୀ ସ୍ତମ୍ଭୀଭୂତ ହୋଇ ଯାଇଥିଲି । ମୋହନ ବାବୁଙ୍କ ପରି ଅଭିଜ୍ଞ ଓ ବୋଧାଲୋକ ମଧ୍ୟ ଏ ସବୁ ଦେଖି ବିସ୍ମିତ ହୋଇ ପଡ଼ିଥିଲେ । ସେ ଦିନ ଆମେ ଆଶ୍ୱସ୍ତ ହେଲୁ ଯେ ଆମେ ନିଶ୍ଚୟ ନିର୍ବାଚନ ଜିତୁଛୁ ।

କିଛି ଦିନ ପରେ ଆମ୍ଭେମାନେ ତେଲେନ୍‌ପାଲି ଛାଡ଼ି ଷ୍ଟେସନ ସେ ପଟେ ଗୋଟିଏ ଘରକୁ ସ୍ଥାନ ପରିବର୍ତ୍ତନ କଲୁ । ଘର ସାମନାରେ ବିରାଟ ଖୋଲା ଜାଗା । ପ୍ରତିଦିନ ସଂଧ୍ୟାରେ ଏଇଠି ସଭା ହୁଏ, ଶୋଭାଯାତ୍ରା ଆସିଲେ ଏଇଠି ମୁଣ୍ଡି ମରେ । କ୍ରମେ ଅବସ୍ଥା ଏପରି ହେଲା ଯେ, ସଂଧ୍ୟା ହେଲେ ଲୋକେ ମନକୁ ମନ ଆସି ସଭା ସ୍ଥଳରେ ଜମାଟ ବାଂଧନ୍ତି । କାହାକୁ ଡାକିବାକୁ ଦରକାର ପଡ଼େ ନାହିଁ । ଆମର ଏ ଜନପ୍ରିୟତା ଦେଖି କଂଗ୍ରେସ ଦଳ ଆଶଂକା ଗଣିଲେ । ନିର୍ବାଚନ ପାଂଚ ଛଅ ଦିନ ଆଗରୁ ନବ ବାବୁ (ନବକୃଷ୍ଣ ଚୌଧୁରୀ), ପ୍ରାର୍ଥୀ ହନିଫ୍ ବାବୁ, ସମ୍ବଲପୁରର ଶ୍ରମିକ ନେତା ଦୁର୍ଗା ପ୍ରସାଦ ଗୁରୁ ଓ ଅନ୍ୟ ଅନେକ କଂଗ୍ରେସ ଓ ସୋସାଲିଷ୍ଟ ନେତା ବ୍ରଜରାଜ ନଗରରେ ପହଂଚିଲେ । ମୁଁ ଭାବିଲି ଏଥର ଘମାଘୋଟ ଲଢ଼େଇ ହେବ । କିନ୍ତୁ ପରଦିନ ସଂଧ୍ୟାବେଳକୁ ଦେଖାଗଲା ଯେ ଆମ ସଭାରେ ତିନି ଚାରି ହଜାର ଲୋକଙ୍କ ଉପସ୍ଥିତି, ଅଥଚ କଂଗ୍ରେସ ଦଳର ସଭାରେ ତିନି ଶହରୁ ଅଧିକ ଲୋକ ନାହାନ୍ତି ଏବଂ ସେଥି ମଧ୍ୟରୁ ଅଧିକାଂଶ ମିଲ୍‌ର ଦରଓ୍ୱାନ ।

ଗୋଟିଏ ଛୋଟ ଘଟଣା ଏବେ ମଧ୍ୟ ସ୍ମୃତି ପଟରେ ଉଂକି ମାରୁଛି । ଭୋଟ ହେବାର ତିନି ଚାରିଦିନ ଆଗରୁ ଖବର ମିଳିଲା ଯେ କଲିକତାରେ ଛପା ହୋଇଥିବା ହିନ୍ଦୀ ଓ ଓଡ଼ିଆ ଭାଷାରେ ଲିଖିତ ଏକ ପ୍ରଚାର ପତ୍ର ପରଦିନ ଶ୍ରମିକମାନଙ୍କ ମଧ୍ୟରେ ବଣ୍ଟା ହେବ । ସେ ପ୍ରଚାର ପତ୍ରରେ ଏକ ମୃତ ଲୋକର ଛବି ଛପା ଯାଇଛି ଓ କମ୍ୟୁନିଷ୍ଟମାନେ ଏ ହତ୍ୟାକାଣ୍ଡ ପାଇଁ ଦାୟୀ ବୋଲି ଲେଖା ଯାଇଛି । ଏପରି ମିଥ୍ୟା ପ୍ରଚାରର କ'ଣ ପ୍ରତି ଜବାବ୍ ଦେବାକୁ ହେବ, ସେଥିପାଇଁ ସମସ୍ତେ ଚିନ୍ତିତ ହୋଇ ପଡ଼ିଲେ । ମୁଁ କହିଲି ବ୍ୟସ୍ତ ହେବାର ପ୍ରୟୋଜନ ନାହିଁ, ପରିସ୍ଥିତି ସଂଭାଳିବାର ଦାୟିତ୍ୱ ମୋ ଉପରେ ଛାଡ଼ି ଦିଆଯାଉ । ଯେଉଁଦିନ ପ୍ରଚାର ପତ୍ରଟି ବଣ୍ଟା ହେବ ବୋଲି ଖବର ପାଇଥିଲୁ, ସେ ଦିନ ଚାରିଟା ସମୟରେ ଆଠ ଦଶ ଜଣ ଯୁବକ ଶ୍ରମିକଙ୍କ ସହ ମୁଁ ମିଲ୍ ଗେଟରେ ଉପସ୍ଥିତ ହେଲି । ଉପରବେଳା ଚାରିଟାରେ ସକାଳ ସିଫ୍‌ଟର ଶ୍ରମିକମାନେ କାମ ସାରି ବାହାରକୁ ଆସନ୍ତି ଓ ସଂଧ୍ୟା ସିଫ୍‌ଟର ମଜଦୁର ମିଲ୍ ଭିତରକୁ ଯାଆନ୍ତି । ଏଣୁ ଚାରିଟା ବେଳେ ମିଲ୍ ଗେଟ୍‌ରେ ଖୁବ୍ ଭିଡ଼ ହୁଏ । ଆମେ ଦେଖିଲୁ ତିନି ଚାରିଜଣ କଂଗ୍ରେସ କର୍ମୀ ସତକୁ ସତ ଏପରି ଏକ ପ୍ରଚାର ପତ୍ର ବାଣ୍ଟିବାର ବ୍ୟସ୍ତ। ଦୁଇ ତିନି ଖଣ୍ଡ ପ୍ରଚାର ପତ୍ର ଆମେ ସଂଗ୍ରହ କଲୁ । ତିନିଜଣ ଯୁବକ ମତେ କାନ୍ଧରେ ଟେକି ଧରିଲେ । ମୁଁ ହିନ୍ଦୀରେ କ୍ଷୁଦ୍ର ଭାଷଣ ଦେଇ କହିଲି, ଏ ପ୍ରଚାର ପତ୍ରରେ ଲିଖିତ ବିଷୟବସ୍ତୁ ସଂପୂର୍ଣ୍ଣ ମିଥ୍ୟା । ଶ୍ରମିକ ଭାଇମାନେ ପ୍ରତିବାଦ ସ୍ୱରୂପ ଏ କାଗଜକୁ ତୁରନ୍ତ ଚିକି ଚିକି କରି ଚିରି ଦିଅନ୍ତୁ । ଏତିକି କହି ମୁଁ ନିଜେ ସମସ୍ତଙ୍କ ସମ୍ମୁଖରେ ଖଣ୍ଡେ ପ୍ରଚାର ପତ୍ର ଚିରି ଫୋପାଡ଼ି ଦେଲି । ତାପରେ ଶହ ଶହ ଶ୍ରମିକ ତାଙ୍କୁ ଦିଆଯାଇଥିବା ଲିଫ୍‌ଲେଟ ଚିରି ଫିଙ୍ଗି ଦେଲେ । ମିଲ୍ ଗେଟ୍‌ରେ କେବଳ ଛିଣ୍ଡା କାଗଜର ଟୁକୁରା ଉଡ଼ିଲା । ପବନ କେଉଁଆଡ଼େ ବୋହୁଛି, ତାହା ବୁଝିବାକୁ ବାକି ରହିଲା ନାହିଁ । ସଂଧ୍ୟା ସଭାରେ ମୋହନ ବାବୁ ଓ ଶରତ ବାବୁ ଏ ଘଟଣାଟି ଉଲ୍ଲେଖ କରି ମୋ ଉପରେ ଅଜସ୍ର ସାଧୁବାଦ ଅଜାଡ଼ି ଦେଲେ ।

ଭୋଟଦାନର ତିନି ଦିନ ପୂର୍ବରୁ କେନ୍ଦ୍ର କ୍ମ୍ୟୁନିଷ୍ଟ କମିଟିର ସଦସ୍ୟ କଲିକତାର ସାଥୀ ବିଶ୍ୱନାଥ ମୁଖାର୍ଜି ବ୍ରଜରାଜ ନଗରରେ ପହଂଚିଲେ । ତାଙ୍କର ଉପସ୍ଥିତି କର୍ମୀ, ପ୍ରଚାରକ ଓ ୟୁନିଅନର ସଦସ୍ୟମାନଙ୍କ ମଧ୍ୟରେ ଅସାମାନ୍ୟ ଚାଂଚଲ୍ୟ ସୃଷ୍ଟି କଲା । ବିଶ୍ୱନାଥ ମୁଖାର୍ଜି ଓଡ଼ିଶା ସହିତ ୧୯୩୮ ମସିହାରୁ ସଂପୃକ୍ତ । ସେହି ବର୍ଷ ଜାନୁଆରୀ ପ୍ରଥମ ସପ୍ତାହରେ ମାନ୍ଦ୍ରାଜରେ ଅନୁଷ୍ଠିତ ନିଖିଳ ଭାରତ ଛାତ୍ର ସମ୍ମିଳନୀରୁ ଫେରିବା ବାଟରେ ଅନନ୍ତ ପଟ୍ଟନାୟକଙ୍କ

ସହିତ କଟକରେ ଓଲ୍ଡାଇ ଟାଉନ୍ ହଲ ଛାତ୍ର ସଭାରେ ଭାଷଣ ଦେଇଥିବାର ମନେ ଅଛି । ୧୯୩୯ ମସିହାରେ ମେଡ଼ିକାଲ ସ୍କୁଲ ଛାତ୍ର ଧର୍ମଘଟ ସମୟରେ ସେ କଟକ ଆସି ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ସହିତ ଦୀର୍ଘ ଆଲୋଚନା ପରେ ଧର୍ମଘଟର ସମାଧାନ କରାଇ ପାରିଥିଲେ । ୧୯୪୩ ମସିହାରେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କମିଟିର ସଭ୍ୟ ଭାବରେ ସେ ଓଡ଼ିଶା ଓ ଆସାମ ପାଇଁ ପର୍ଯ୍ୟବେକ୍ଷକ ମନୋନୀତ ହୋଇଥିଲେ । ସେହି ସମୟରୁ ଓଡ଼ିଶା ସହିତ ତାଙ୍କର ସଂପର୍କ ଆହୁରି ଘନିଷ୍ଠତର ହେଲା । ସବୁ ପ୍ରକାର ଜନ ଆନ୍ଦୋଳନ ଓ ନିର୍ବାଚନ ପ୍ରଚାର କାର୍ଯ୍ୟରେ ସେ ବହୁବାର ଓଡ଼ିଶା ଆସି ଏଠାର ଜନ-ଜୀବନ ସହିତ ନିବିଡ଼ ଭାବରେ ଜଡ଼ିତ ଥିଲେ । ସେ ଓ ତାଙ୍କର ପତ୍ନୀ ପାର୍ଲିଆମେଣ୍ଟ ସଦସ୍ୟା ଗୀତା ମୁଖାର୍ଜି ବଂଗଳା କମ୍ୟୁନିଷ୍ଟ ପାର୍ଟିର ଦୁଇଟି ଉଜ୍ଜ୍ୱଳ ରତ୍ନ ଓ ଆମ ପରିବାରର ଘନିଷ୍ଠ ବଂଧୁ । ବିଶ୍ୱନାଥ ମୁଖାର୍ଜି ଜଣେ ଅସାଧାରଣ ବାଗ୍ମୀ । ବଂଧୁମାନେ ପରିହାସରେ ତାଙ୍କୁ 'ଆଗ୍ନେୟଗିରି' ବୋଲି ସମ୍ବୋଧନ କରିଥାନ୍ତି । ଥରେ ଉଦ୍‌ଗୀରଣ ଆରମ୍ଭ ହେଲେ ଅନ୍ୟୁନ ଦୁଇ ଘଣ୍ଟା ଅନର୍ଗଳ ଭାଷଣ ଚାଲେ ।

ବ୍ରଜରାଜ ନଗରରେ ଭୋଟ ପୂର୍ବ ଦୁଇ ଦିନ ସଂଧ୍ୟାରେ ଆଗ୍ନେୟଗିରୀରୁ ଅବାରିତ ଉଦ୍‌ଗୀରଣ ହେଲା । ବିଶ୍ୱନାଥ ମୁଖାର୍ଜିଙ୍କର ଜ୍ୱାଳାମୟୀ ଭାଷଣ ଓ ମୋହନ ଦାସଙ୍କ ଉଦ୍‌ବୋଧନରେ କ୍ଷୁଦ୍ର ବ୍ରଜରାଜନଗରର ଶ୍ରମିକ ବସ୍ତି ପ୍ରକଂପିତ ହେଲା । କାଗଜ କଳ ଓ ନିକଟସ୍ଥ କୋଲିଏରୀ ଶ୍ରମିକମାନଙ୍କର ନବେ ଭାଗ ଭୋଟ ବୈଦ୍ୟନାଥ ରଥ ପାଇଲେ । ପରଦିନ ସଂଧ୍ୟା ନ'ଟାରେ କଲିକତା ଯିବାର ଟ୍ରେନ । ବିଶ୍ୱନାଥ ବାବୁ ଜିଦ୍ ଧରି ବସିଲେ, ସବୁଦିନ ପରି ସେ ଦିନ ସଂଧ୍ୟାରେ ମଧ୍ୟ ସଭା ହେବ । ୟୁନିଅନ୍‌ର ଭବିଷ୍ୟତ କର୍ମପନ୍ଥା ବିଷୟରେ ଆଲୋଚନା ହେବ । ସଭାରେ ପୂର୍ବବତ୍ ସମବେତ ଗାନ ଗାଇବାକୁ ହେବ, ଭାଷଣ ଦେବାକୁ ହେବ । ପୂର୍ବଦିନର ନିରବଚ୍ଛିନ୍ନ ଧ୍ୱନି ଓ ଚିତ୍କାରରେ ଆମ ସମସ୍ତଙ୍କର ସ୍ୱର ଭଂଗ ହୋଇଥିଲା । ସମସ୍ତେ ଶ୍ରାନ୍ତ ଓ କ୍ଳାନ୍ତ । କିନ୍ତୁ ବିଶ୍ୱନାଥ ଦା'ର ନିର୍ଦ୍ଦେଶ ଅମାନ୍ୟ କରିବାର ନୁହେ । ଦର୍ଦ୍ଦୁର କଂଠରେ ଆମେ କେତେଜଣ "ଉଠା ଝଣ୍ଡା ତୋ ଲାଲ୍" ଗୀତଟି ସମବେତ କଂଠରେ ଗାନ କଲୁ । ସଭାରେ ପନ୍ଦର ମିନିଟ୍ ଭାଷଣ ଦେବାକୁ ହେଲା । ପରଦିନ ସକାଳେ ମୁଁ ଓ ମୋହନ ବାବୁ ଖଡ଼୍‌ଗପୁର ବାଟେ କଟକ ଫେରିଲୁ ।

ବୈଦ୍ୟନାଥ ରଥ ବିଧାନ ସଭା ନିର୍ବାଚନରେ ବହୁ ଭୋଟରେ ବିଜୟୀ ହେଲେ ।

# ଜୀବନର ସଂଧିକ୍ଷଣରେ

ଏ ବହିଟି ଲେଖିବାକୁ ଆରମ୍ଭ କଲାବେଳେ, ନିଜ ପାଇଁ ଦୁଇଟି ନିଷେଧ ଗାର ଟାଣି ଦେଇଥିଲି । ପ୍ରଥମତଃ "ମୁଁ" "ମୋତେ" ଓ "ମୋର" ଶବ୍ଦ ଗୁଡ଼ିକର ଯଥାସମ୍ଭବ କମ୍ ପ୍ରୟୋଗ କରିବି । ଏ ଶବ୍ଦ ଗୁଡ଼ିକରେ ମାତ୍ରାଧିକ ବ୍ୟବହାର ପାଠକମାନଙ୍କ ମନରେ କିପରି ବିତୃଷ୍ଣା ସୃଷ୍ଟି କରେ, ସେ ବିଷୟରେ ମୁଁ ସଚେତନ ଥିଲି । ଏ ବହି ଆତ୍ମଜୀବନୀ ନୁହେ ବା ଇତିହାସ ନୁହେ, ଏଣୁ ନିଜକୁ ଯଥାସମ୍ଭବ ପ୍ରଚ୍ଛଦ ପଟରେ ରଖିଲେ ଲେଖା ପାଠକ ସମାଜରେ ଗ୍ରହଣୀୟ ହେବ । ଏବେ ଚବିଶ ବର୍ଷର ବିଭିନ୍ନ ବୃତ୍ତାନ୍ତ ଲେଖି ସାରିବା ପରେ ଦେଖୁଛି, ସମସାମୟିକ ଘଟଣା ପ୍ରବାହ ସହିତ ସ୍ୱୀୟ ସଂପର୍କ ଉପରେ ଆଲୋକପାତ କରିବାକୁ ହେଲେ, 'ମୁଁ' କୁ ବାଦ୍ ଦେଇ ଲେଖା ଆଗେଇ ପାରୁନାହିଁ । ଦ୍ୱିତୀୟ ନିଷେଧ ଥିଲା, ସମସାମୟିକ ଘଟଣାବଳୀ ଉପରେ ଆଲୋଚନା ଆବଦ୍ଧ ରହିବ । ନିଜର ଭାଇ, ଭଉଣୀ, ପୁଅ, ପୁତୁରା ଓ ପରିବାର ସଂପର୍କୀୟ ଆଲୋଚନାରୁ ନିବୃତ୍ତ ରହିବି । କେହି ଯେପରି ବହିଟିକୁ ଏକ ବ୍ୟକ୍ତିଗତ ପରିପ୍ରଚାର ବୋଲି ମନେ ନ କରନ୍ତି । କିନ୍ତୁ ପ୍ରତ୍ୟେକ ମଣିଷ ଜୀବନରେ ଏପରି କେତେକ ଘଟଣା ଘଟେ, ଯାହାକି ଜୀବନ ପ୍ରବାହ ସହିତ ଅଂଗାଂଗୀ ଭାବରେ ଜଡ଼ିତ, ଯାହାକୁ ବାଦ୍ ଦେଇ ସମାଜରେ ବ୍ୟକ୍ତିର ଅବଚ୍ଛାୟାର ଚିତ୍ର ଅଂକା ଯାଇ ପାରିବ ନାହିଁ । ପଶ୍ଚିମ ସମାଜ କଥା କହୁନାହିଁ, କିନ୍ତୁ ଭାରତୀୟ ସମାଜରେ "ବିବାହ" ମଣିଷ ଜୀବନର ଏପରି ଏକ ଅବିଚ୍ଛେଦ୍ୟ ଅଂଗ, ଯାହା ତାର ବ୍ୟକ୍ତିତ୍ୱ, ସାମାଜିକ ଚରିତ୍ର ଓ ବୌଦ୍ଧିକ ଅବଦାନକୁ ବିଶେଷ ଭାବରେ ପ୍ରଭାବିତ କରେ । ଏଣୁ ବିବାହ ପ୍ରସଂଗଟିକୁ ଏ କାହାଣୀରୁ ବାଦ୍ ଦେଇ ପାରୁ ନାହିଁ । ପାଠକେ କ୍ଷମା ଦେବେ ।

୧୯୪୪ ମସିହା ଅଗଷ୍ଟ ମାସରେ ନିରୁପମାଙ୍କ ସହ ପ୍ରଥମ ପରିଚୟ, ତାହା ମଧ୍ୟ ପତ୍ରାଳାପ ଜରିଆରେ । ବୟାଳିଶ ମସିହାରେ ସବୁ ଛାତ୍ର ନେତା ଗିରଫ ହେବା ପରେ ଛାତ୍ର ଆନ୍ଦୋଳନ ଭାଂଗି ପଡ଼ିଲା । ତେୟାଳିଶ ଚଉରାଳିଶ ମସିହାରେ ମୁଁ ଛାତ୍ର ସଂଗଠନର ପୁନରୁତ୍‌ଥାନ ଦାୟିତ୍ୱରେ ଥିଲି । ସେହି ପର୍ଯ୍ୟାୟରେ ଏ ପତ୍ର ବିନିମୟର ଅୟମାରମ୍ଭ । କିନ୍ତୁ ପ୍ରତ୍ୟୁତ୍ତର ଥିଲା ଅତି ଉତ୍ସାହଜନକ । ରାଜନୈତିକ କାର୍ଯ୍ୟକଳାପ ପ୍ରତି ତାଙ୍କର ଆଗ୍ରହ ଦେଖି ମୁଁ କେତେକାଂଶରେ ଅଭିଭୂତ ହୋଇ ପଡ଼ିଥିଲି । ଏହିପରି ଗୋଟିଏ ବର୍ଷ ବିତିଲା ପରେ ୧୯୪୫ ଜୁଲାଇ ମାସରେ ନିରୁପମା ନବ ପ୍ରତିଷ୍ଠିତ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ନାମ ଲେଖାଇଲେ । ମେଡ଼ିକାଲ କଲେଜ ହଷ୍ଟେଲରେ

ଥିବା ସମୟରେ ତାଙ୍କ ଉଦ୍ୟମରେ କଟକରେ "ଗାର୍ଲସ ଷ୍ଟୁଡ଼େଣ୍ଟସ୍ ଆସୋସିଏସନ୍" ପ୍ରତିଷ୍ଠିତ ହେଲା । ମୋର ପତ୍ରାଳାପର ସଫଳତା ଏପରି ରୂପ ନେବ ବୋଲି ମୁଁ ପ୍ରଥମେ ଭାବି ନଥିଲି । ରାଜନୈତିକ ତତ୍ପରତାରୁ ବ୍ୟକ୍ତିଗତ ଆନ୍ତରିକତା ବଢ଼ିବାକୁ ଲାଗିଲା ।

ଆନ୍ଧ୍ରର ଗୁଣ୍ଟୁର ସହରରେ ଅନୁଷ୍ଠିତ ନିଖିଳଭାରତ ଛାତ୍ର ସମ୍ମିଳନୀକୁ ଓଡ଼ିଶାରୁ ପ୍ରାୟ ପଚିଶ ଜଣ ପ୍ରତିନିଧି ଯାଇଥିଲେ । ମେଡ଼ିକାଲ କଲେଜରୁ ନିରୁପମା, ବାସନ୍ତୀ ପଟ୍ଟନାୟକ, ରାଭେନ୍ସା କଲେଜରୁ ଜୟନ୍ତୀ ମହାନ୍ତି ଓ ଶର୍ମିଷ୍ଠା ଦାସ ପ୍ରମୁଖ ମହିଳା ଛାତ୍ରୀମାନେ ମଧ୍ୟ ସମ୍ମିଳନୀରେ ଯୋଗ ଦେଇଥିଲେ । ସମ୍ମିଳନୀ ଶେଷରେ ପ୍ରାୟ ଦୁଇ ଦିନ ଟ୍ରେନ୍ ଯାତ୍ରାକଲା ପରେ କଟକରେ ପହଂଚିଲୁ । ତୃତୀୟ ଶ୍ରେଣୀ ଡବାରେ ଏକତ୍ର ଆସିବା ସମୟରେ ନିଜ ବିଷୟରେ ଆଲୋଚନା କରିବାକୁ ଅବସର ମିଳିଲା । କଟକରେ ପହଂଚି ଏକ ନୂଆ ଯୌଥ ଜୀବନର ଶୁଭ ଦେବା ପାଇଁ ଆମେ ଦୁହେଁ ନିଷ୍ପତ୍ତି ନେଲୁ ।

ଏପରି ନିଷ୍ପତ୍ତି ନେବାର ଏକ ବିଶେଷ କାରଣ ଥିଲା । ମାସେ ଦୁଇ ମାସ ପୂର୍ବରୁ ଆମର ସାଥୀ ଓ ସଂପର୍କୀୟମାନେ ଆମର ଆତ୍ମୀୟତା ବିଷୟରେ ଜାଣିବାର ଅବକାଶ ପାଇଥିଲେ । ଆମେ ପରୋକ୍ଷରେ ସେମାନଙ୍କୁ ଜଣାଇ ଦେଇଥିଲୁ । ଆମେ ଚାହୁଁଥିଲୁ ଯେ ଗୁଜବ ଶୁଣିବା ପରିବର୍ତ୍ତେ, ବଂଧୁ ଓ ପରିବାରର ଲୋକେ ଏ ବିଷୟଟି ଜାଣନ୍ତୁ ଓ ସେମାନଙ୍କର ମତାମତ ଦିଅନ୍ତୁ । କିନ୍ତୁ ଫଳ ହେଲା ଠିକ୍ ଓଲଟା । ଜନରବ ବିଜୁଳି ବେଗରେ ପ୍ରଚାରିତ ହେଲା । ସେ କାଳରେ ଅନ୍ତଃବର୍ଣ୍ଣ ବିବାହ, ସମାଜରେ ପ୍ରଚଳିତ ନଥିଲା । ନାନା ପ୍ରକାର ଅନ୍ଧ ବିଶ୍ବାସ ସାମାଜିକ ଚିନ୍ତାଧାରାକୁ ପ୍ରଭାବିତ କରୁଥିଲା । ମୁଁ ଜାତିରେ ବ୍ରାହ୍ମଣ, ନିରୁପମାଙ୍କ ଜନ୍ମ କରଣ ଘରେ । ତାଙ୍କର ଜନ୍ମ ସ୍ଥାନ କେନ୍ଦ୍ରାପଡ଼ା ଚାନ୍ଦୋଳ ଗ୍ରାମରେ । ବାଲେଶ୍ବର ଜିଲା ସ୍କୁଲର ପୂର୍ବତନ ହେଡ୍‌ମାଷ୍ଟର ସ୍ବର୍ଗୀୟ ଚତୁର୍ଭୁଜ ମହାନ୍ତିଙ୍କର ସେ ଦ୍ୱିତୀୟା କନ୍ୟା । ମଉସା ସତ୍ୟବାଦୀ ଦାସ ତାଙ୍କୁ ଝିଅ କରି ଆଣିଥିଲେ । ଜଣେ ଦୁଇଜଣଙ୍କୁ ବାଦ୍ ଦେଲେ ସାଥୀ ଓ ସହଯୋଗୀମାନେ ଏ ପ୍ରସ୍ତାବକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଥିଲେ । ବିରୋଧ କରୁଥିଲେ କେବଳ କେତେକ ସମାଜପତି ଓ ଡଗରପଡ଼ାର କେତେ ଜଣ କରଣ ସାମନ୍ତ, ଯେଉଁମାନେ ପୁରୁଣା ଯୁଗର ସାଆନ୍ତିଆ ଚଳନୀ ଓ ସାମାଜିକ ବେଷ୍ଟନୀ ଅତିକ୍ରମ କରିବାକୁ ପ୍ରସ୍ତୁତ ନଥିଲେ । ନିରୁପମାଙ୍କ ଦାଦା ଆଡ଼ଭୋକେଟ୍ ରାଜ କିଶୋର ଦାସ (ପରେ ଜଷ୍ଟିସ ଦାସ) ଓ ତାଙ୍କ ପତ୍ନୀ ଏ ବିବାହ ପ୍ରସ୍ତାବକୁ ହାର୍ଦ୍ଦିକ ସମର୍ଥନ ଦେଇଥିଲେ । ନିରୁପମାଙ୍କ ବୋଉ

ସ୍ୱର୍ଗୀୟା କୁମୁଦିନୀ ଦେବୀ ଝିଅର ମନୋନୟନ ପଛରେ ଦୃଢ଼ ହୋଇ ଠିଆ ହୋଇଥିଲେ । ମୋର ପରମ ହିତାକାଂକ୍ଷୀ ବରିଷ୍ଠ ସାଥୀ କଲିକତାର ବିଶ୍ୱନାଥ ମୁଖାର୍ଜି, ବୈଦ୍ୟନାଥ ରଥ ଓ ବିଜୟ ଚନ୍ଦ୍ର ଦାସଙ୍କ ସହ ପରାମର୍ଶ କଲି । ସେମାନେ ଆମକୁ ଉତ୍ସାହିତ କରିବାରେ ପଶ୍ଚାତ୍‌ପଦ ହେଲେ ନାହିଁ । ସବୁ ପ୍ରକାର ବାଦ ବିସମ୍ବାଦରେ ପୂର୍ଣ୍ଣଛେଦ ଟାଣିବା ପାଇଁ ଆମେ ତୁରନ୍ତ ବିବାହ କରିବାର ନିଷ୍ପତ୍ତି ନେଲୁ ।

ସମାଜ ବିଜ୍ଞାନୀମାନେ ମଣିଷକୁ ଏକ 'ସାମାଜିକ ଜୀବ' ବୋଲି ବର୍ଣ୍ଣନା କରିଥାନ୍ତି । କାରଣ ଯେଉଁ ସମାଜରେ ତାର ଜନ୍ମ, ସେ ସମାଜର ସଂସ୍କାର, ସଂସ୍କୃତି, ରୀତି ନୀତି ତାର ଚରିତ୍ର ଓ ଚିନ୍ତାଧାରାକୁ ପ୍ରଭାବିତ କରେ । କୁସଂସ୍କାରାଚ୍ଛନ୍ନ ସମାଜରେ ନିଜର ଜାତି ଗୋଷ୍ଠୀ ବା ଜ୍ଞାତି ବାହାରେ ବିବାହ କରିବା କୁଳାଚାର ନଥିଲା । ଏପରିକି ପୁରୀ ଷୋଳ ଶାସନର ଖୋଦ୍ ବ୍ରାହ୍ମଣ ମାନଙ୍କ ମଧ୍ୟରେ ନାନା ଭେଦ ଭାବ ଓ ଉଚ୍ଚ ନୀଚ ବିଚାର ଭେଦ ଥିଲା । 'ରଥ' 'ମିଶ୍ର' ଉପାଧିଧାରୀ ବ୍ରାହ୍ମଣମାନେ ତଥାକଥିତ ନିମ୍ନ ଶ୍ରେଣୀର ବ୍ରାହ୍ମଣମାନଙ୍କ ଘରେ ବଂଧୁ ବାଂଧୁ ନଥିଲେ, ଏପରିକି ଏକତ୍ର ପଂକ୍ତି ଭୋଜନ ମଧ୍ୟ କରୁ ନଥିଲେ । ପଣ୍ଡିତ ନୀଳକଂଠଙ୍କ 'ଆତ୍ମଜୀବନୀ' ଓ ଜଷ୍ଟିସ ହରିହର ମହାପାତ୍ରଙ୍କ ''ଜୀବନୀ ଓ ଜୀବିକା'' ବହିରେ ଏହାର ବହୁ ଦୃଷ୍ଟାନ୍ତ ମିଳେ । କିନ୍ତୁ ସବୁ କାଳରେ ସମାଜରେ ଜଣେ ଜଣେ କାଳଜୟୀ ଜନ୍ମ ନେଇଥାନ୍ତି, ଯେଉଁମାନେ ନିଜର ପ୍ରଜ୍ଞା ଓ ପ୍ରତିଭା ବଳରେ କୁସଂସ୍କାର ବିରୁଦ୍ଧରେ ଅଭିଯାନ ଚଳାଇବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ଉନବିଂଶ ଶତାବ୍ଦୀରେ ବଂଗ ଦେଶରେ କୁଳୀନ ବ୍ରାହ୍ମଣ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ବିଧବା ବିବାହ ସପକ୍ଷରେ ସ୍ୱର ଉତ୍ତୋଳନ କରିଥିଲେ । ସେଥିପାଇଁ ତଥାକଥିତ ପଣ୍ଡିତ ସମାଜର ବିଷଦୃଷ୍ଟିରେ ପଡ଼ିଲେ ମଧ୍ୟ, ନିଜ କର୍ତ୍ତବ୍ୟ ପଥରୁ ବିଚଳିତ ହୋଇ ନଥିଲେ । ଉତ୍କଳମଣି ପଂଡ଼ିତ ଗୋପବଂଧୁଙ୍କର ଗୁରୁ ପୁରୀ ବ୍ରାହ୍ମଣ ସମିତିର ଅନ୍ୟତମ ପ୍ରତିଷ୍ଠାତା ସ୍ୱର୍ଗୀୟ ମୁକ୍ତାର ରାମଚନ୍ଦ୍ର ଦାଶ ନାନା ସାମାଜିକ କୁସଂସ୍କାର ବିରୁଦ୍ଧରେ ସଂକଳ୍ପବଦ୍ଧ ଆନ୍ଦୋଳନ କରୁଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପଣ୍ଡିତ ନୀଳକଂଠ ଦାସ ୧୯୧୦ ମସିହାରେ କଲିକତାରେ ଏମ.ଏ. ପଢୁଥିବା ସମୟରେ ଦାଢ଼ି କାଟି ନିଶ ରଖିଥିଲେ । ପର ବର୍ଷ ସତ୍ୟବାଦୀ ସ୍କୁଲର ପ୍ରତିଷ୍ଠାତା ହେଡ୍ ମାଷ୍ଟର ଥିବା ସମୟରେ ଛାତ୍ରାବାସରେ ଜାତିଭେଦ ଓ ଭୋଜନ ସମୟରେ ପଂକ୍ତିଛେଦ ଉଠାଇ ଦେଇଥିଲେ ।

ଏହି ପ୍ରକାରର ଲୋକାଚାର ବିରୋଧୀ ଆଚରଣ ହେତୁ ନୀଳକଂଠଙ୍କୁ ପୁରୀ ବ୍ରାହ୍ମଣ ପଣ୍ଡିତ ମାନଙ୍କର କଠୋର ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଲା । ତାଙ୍କର ଦାଢ଼ୀହୀନ ନିଶକୁ ହିନ୍ଦୁ ଧର୍ମର ଅବମାନନା ବୋଲି ଚିତ୍ର କରା ହେଲା । ଏପରିକି ମୁକ୍ତି ମଣ୍ଡପ ସଭାରେ ମଧ୍ୟ ଏହାର ବିଚାର ପାଇଁ ଉଦ୍ୟମ ହେଲା । ପୁରୀର ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ରଙ୍କ ପରି ବିଦ୍ୱାନ୍‌ମାନେ ଏ ନିଶ ବିରୋଧୀ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । କିନ୍ତୁ ନୀଳକଂଠ ତାଙ୍କର ବିଚାର ସଂଭୂତ ନିଷ୍ପତ୍ତିରୁ ଅପସରି ଯାଇନଥିଲେ ।

ବଡ଼ ଲୋକଙ୍କ ନଜିର ଦେଇ ମୁଁ ନିଜକୁ ଜଣେ ସଂସ୍କାରକ ପ୍ରତିପାଦିତ କରିବାକୁ ଚାହେଁ ନାହିଁ । ମୁଁ ଯେ ସମାଜ ସଂସ୍କାର କରିବା ଉଦ୍ଦେଶ୍ୟରେ ଏ ବିବାହ କରିବାକୁ ନିଷ୍ପତ୍ତି ନେଇଥିଲି ତାହା ନୁହେ । ବିବାହର ଭିତ୍ତି ଥିଲା ପରସ୍ପର ସ୍ନେହ ପ୍ରୀତି ଓ ସୌହାର୍ଦ୍ଧ୍ୟ । କିନ୍ତୁ ସମାଜପତି ଓ ସାମନ୍ତ ମାନଙ୍କର ଅବିଚାରିତ ବିରୋଧ ଆଗରେ ମୁଣ୍ଡ ନୁଆଇଁବାକୁ ମୁଁ କାପୁରୁଷତା ମନେ କରିଥିଲି ।

୧୯୪୬ ମସିହା ମଇ ମାସ ଚାରି ତାରିଖରେ ଆମର ବିବାହ ଅନୁଷ୍ଠିତ ହେଲା । କଟକ ଚାନ୍ଦନୀଚୌକ ହରହରି ଘାଟରେ ରଙ୍ଗଲାଲ ମୋଦୀଙ୍କର ଗୋଟିଏ ପୁରୁଣା କୋଠା ଭଡ଼ା ନେଇ କେତେକ ବଂଧୁ ରହୁଥାନ୍ତି । ଘରଟି ନଈକୂଳେ ଗୋଟିଏ ବଗିଚା ମଧ୍ୟରେ ଅବସ୍ଥିତ । ଘରଟିରେ ଗୋଟିଏ ବଡ଼ ହଲ୍, ଦୁଇଟି ସାଧାରଣ କୋଠରୀ ଓ ଦୁଇ ପଟରେ ପ୍ରଶସ୍ତ ବାରଣ୍ଡା । ହଲ୍‌ରେ ଉତ୍ସବର ଆୟୋଜନ କରାଯାଇ ଥିଲା । ସେ ଦିନ ଚାରିଟା ବେଳକୁ ଘଡ଼ଘଡ଼ି ସହ ଘୋର ଅଦିନିଆ ବର୍ଷା ହେଲା । ମନେ ହେଲା, ଯେପରି କିଛି ଲୋକଙ୍କର ବିରୋଧ ଓ ମାନସିକ ସଂଘର୍ଷ ଏ ମେଘ ଗର୍ଜନରେ ପ୍ରତିଫଳିତ ହେଉଛି । ପ୍ରାୟ ପାଂଚଟା ବେଳକୁ ମେଘ ବନ୍ଦ ହେଲା ଓ ଆକାଶ ନିର୍ମଳ ହୋଇଗଲା । ସଂଧ୍ୟାବେଳକୁ ଯେଉଁମାନଙ୍କର ଉପସ୍ଥିତି ଏ ଅନୁଷ୍ଠାନକୁ ସୁମଣ୍ଡିତ କରିଥିଲା, ସେମାନଙ୍କ ମଧ୍ୟରେ ଥିଲେ ପ୍ରଖ୍ୟାତ ଆଡ଼ଭୋକେଟ୍ ହରିହର ମହାପାତ୍ର (ପରେ ଜଷ୍ଟିସ ମହାପାତ୍ର) ଆଡ୍‌ଭୋକେଟ୍ ରାଜକିଶୋର ଦାସ (ପରେ ଜଷ୍ଟିସ୍ ଦାସ) ଆଡ୍‌ଭୋକେଟ୍ ଦୀନବଂଧୁ ସାହୁ (ପରେ ଆଡ୍‌ଭୋକେଟ୍ ଜେନେରାଲ ସାହୁ), ବିଶିଷ୍ଟ ଔପନ୍ୟାସିକ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଶିଳ୍ପୀ ଗୋପାଳ କାନୁନ୍‌ଗୋ, କବି ବୈକୁଣ୍ଠ ନାଥ ପଟ୍ଟନାୟକ, ଶ୍ରୀମତୀ ସରଳା ଦେବୀ, ବାଗ୍ମୀ ଯଦୁମଣି ମଙ୍ଗରାଜ, ରେଭେନ୍ସା କଲେଜର ବରିଷ୍ଠ ଅଧ୍ୟାପକ ଡକ୍ଟର ବଳଭଦ୍ର ପ୍ରସାଦ ଓ ଡକ୍ଟର ସଦାଶିବ ମିଶ୍ର, ବରିଷ୍ଠ ସାଥୀ ବିଶ୍ୱନାଥ ମୁଖାର୍ଜି, ବୈଦ୍ୟନାଥ ରଥ, ବିଜୟ ଚନ୍ଦ୍ର ଦାସ ଓ ରାମକୃଷ୍ଣ ପତି ଏବଂ

ବଂଧୁ ଦୁର୍ଗାଚରଣ ମହାନ୍ତି, ଜଗତ୍ କୃଷ୍ଣ ଦାସ, ବନମାଳୀ ଦାସ, ଶୈଳେନ୍ ମହାପାତ୍ର, ରାମଚନ୍ଦ୍ର ରାମ, ନରସିଂହ ତ୍ରିପାଠୀ ଓ ଦୂର ଦୂରାନ୍ତର ବହୁ ସାଥୀ ଓ ସହଯୋଗୀଗଣ । ମହତାବ ବାବୁ ବ୍ୟକ୍ତିଗତ ଭାବେ ଯୋଗ ଦେଇ ନପାରି ଶୁଭେଚ୍ଛା ବାର୍ତ୍ତା ପଠାଇଥିଲେ । କବିତାଟିଏ ଲେଖି ପଠାଇଥିଲେ ଜାତୀୟ କବି ବୀର କିଶୋର ଦାସ। ଆମର ପରମ ଶୁଭାକାଂକ୍ଷୀ ସ୍ୱର୍ଗୀୟ ଲକ୍ଷ୍ମୀ ନାରାୟଣ ସାହୁ, ସେହି ସମୟରେ ଓଡ଼ିଶାରେ ନଥିଲେ । କିନ୍ତୁ ନିମନ୍ତ୍ରଣ ପାଇ ଦୁଇଟି ଇଂରେଜୀ କବିତା, ଗୋଟିଏ ମୋ ନାମରେ ଓ ଅନ୍ୟଟି ନିରୂପମାଙ୍କ ନାମରେ ଛପାଇ ପଠାଇ ଦେଇଥିଲେ । ସେ ଦୁଇଟି କବିତା ଏବେ ମଧ୍ୟ ନିରୂପମାଙ୍କ ପାଖରେ ସଂଚିତ ହୋଇ ରହିଛି । କାଳିନ୍ଦୀ ବାବୁ ମର ଜଗତରୁ ବିଦାୟ ନେଲେଣି । କିନ୍ତୁ ବର୍ଷା ସତ୍ତ୍ୱେ ନନ୍ଦିନୀଙ୍କୁ (ନନ୍ଦିନୀ ଶତପଥୀ) ସାଂଗରେ ଧରି ସେ ଯେପରି ହରହରି ଘାଟରେ ପହଂଚିଲେ, ସେ ଛବି ଏବେ ମଧ୍ୟ ମନରେ ଜୀବନ୍ତ ରହିଛି । ସେ ଉପହାର ଦେଇଥିବା ରୂପାର କଲମଟି ମୋର ଏକ ଅମୂଲ୍ୟ ସଂପଦ ।

ଆଇନ ଅନୁଯାୟୀ ବିବାହ ରେଜିଷ୍ଟ୍ରି କରାହେଲା । ସବ୍ ରେଜିଷ୍ଟ୍ରାରଙ୍କ ବହିରେ ଆମକୁ ଦସ୍ତଖତ କରିବାକୁ ହେଲା । ବରକନ୍ୟାଙ୍କ ଦସ୍ତଖତର ସତ୍ୟତା ସାବ୍ୟସ୍ତ କରି ହରିହର ବାବୁ, କାଳିନ୍ଦୀ ବାବୁ, ସରଳା ଦେବୀ ଓ ଯଦୁମଣି ବାବୁ ସାକ୍ଷ୍ୟ ସନ୍ତକ ଦେଇଥିଲେ । ସବୁ ପ୍ରକାର ବିବାହ ପଦ୍ଧତିରେ ବର କନ୍ୟାଙ୍କୁ ପ୍ରାୟ ଏକ ପ୍ରକାରର ଶପଥ ନେବାକୁ ହୁଏ । ହିନ୍ଦୁ ପୁରୋହିତଙ୍କ କଂଠରେ ସଂସ୍କୃତ ଭାଷାରେ ହେଉ ବା ଖ୍ରୀଷ୍ଟିଆନ୍ ପାଦ୍ରୀଙ୍କ କଂଠରେ ବିଖଣ୍ଡିତ ଓଡ଼ିଆରେ ହେଉ ବା ସ୍ପେଶାଲ ମ୍ୟାରେଜ ଆକ୍ଟରେ ପ୍ରଦତ୍ତ ଘୋଷଣା ପତ୍ର ହେଉ, ସବୁ ବିବାହରେ ବର କନ୍ୟା ଆଜୀବନ ପରସ୍ପର ପ୍ରତି ସ୍ନେହ ବଂଧନରେ ଆବଦ୍ଧ ରହିବେ ବୋଲି ଶପଥ ନିଅନ୍ତି । ମୋର ମନେ ଅଛି, ଏହି ଶପଥ ପାଠ କଲାବେଳେ, ମୋ ଆଖିରେ ଲୁହ ଆସିଥିଲା । ନିରୂପମାଙ୍କ ଆଖି ମଧ୍ୟ ଛଳ ଛଳ ହୋଇ ଉଠିଥିଲା ।

ବିବାହ ପରେ ଆଶୀର୍ବାଦ ସଭା ଥିଲା ସଂପୂର୍ଣ୍ଣ ଭିନ୍ନ ରୀତିର । ପଣ୍ଡିତମାନେ ସଂସ୍କୃତ ଶ୍ଳୋକ ଆବୃତ୍ତି କରିବାର ଅବକାଶ ନ ଥିଲା । ହରିହର ବାବୁ, କାଳିନ୍ଦୀ ବାବୁ ଓ ଯଦୁମଣି ବାବୁଙ୍କ ଆଶୀର୍ବାଦ ସୂଚକ ପ୍ରବଚନ ପରେ, ପୂଜ୍ୟା ଅଧ୍ୟାପକ ଡକ୍ଟର ବଳଭଦ୍ର ପ୍ରସାଦ, ମେଡ଼ିକାଲ କଲେଜର ଅଧ୍ୟାପକ ଡକ୍ଟର ବାନାର୍ଜି ଓ ସାଥୀ ବିଶ୍ୱନାଥ ମୁଖାର୍ଜି ସଂକ୍ଷିପ୍ତ ଭାଷଣ ଦେଇଥିଲେ । ଏ ପରେ ଆରମ୍ଭ ହେଲା ସାଥୀମାନଙ୍କର ସମବେତ ଗାନ । ମିଳିତ ଧ୍ୱନି ଛନ୍ଦରେ ବଂଧୁ ରାମଚନ୍ଦ୍ର ରାମଙ୍କ ଶୁଭ କାମନା ଏବେ ମଧ୍ୟ କାନରେ ବାଜୁଛି ।

# ମର୍ତ୍ତ୍ୟରେ ସ୍ୱର୍ଗ

ବିବାହ ପରେ ଆମେ ମଙ୍ଗଳାବାଗ ନାୟକ ସାହିରେ ଗୋଟିଏ ଘର ଭଡ଼ା ନେଇ ରହିଲୁ । ବିବାହର ଦିନକ ପରେ, ମଇ ଛ' ତାରିଖ ସକାଳେ ଜଣେ ବଂଧୁ ଆସି ଖବର ଦେଲେ, ମାନହାନି ମୋକଦ୍ଦମାରେ ମୋ ନାମରେ ଗିରଫ ପରଓ୍ୱାନା ଜାରୀ କରିବା ପାଇଁ ମାଜିଷ୍ଟ୍ରେଟ୍ ଉଦ୍ୟତ । ତୁରନ୍ତ ମତେ କଲେକ୍ଟରେଟ୍ ଯିବାକୁ ହେବ । ସେହି ସମୟରେ 'ମୁକ୍ତିଯୁଦ୍ଧ' ସାପ୍ତାହିକର ସଂପାଦକ ଥିଲେ ଗୁରୁଚରଣ ପଟ୍ଟନାୟକ ଓ ମୁଁ ଥିଲି ତାର ପ୍ରକାଶକ । ଯାଜପୁରରେ ରିଲିଫ ଚାଉଳ ବଣ୍ଟନର ଅବ୍ୟବସ୍ଥା ସଂପର୍କରେ ଏକ ବିବରଣୀ ମୁକ୍ତିଯୁଦ୍ଧରେ ପ୍ରକାଶିତ ହୋଇଥିଲା । ସ୍ଥାନୀୟ ସବ୍‌ଡେ଼ପୁଟୀ କଲେକ୍ଟର କାହ୍ନୁଚରଣ ମିଶ୍ରଙ୍କ ଅବହେଳାପୂର୍ଣ୍ଣ କାର୍ଯ୍ୟକଳାପ ଉପରେ କେତେକ କଟୁ ମନ୍ତବ୍ୟ ବିବରଣୀରେ ସ୍ଥାନ ପାଇଥିଲା । ସେଥିପାଇଁ କାହ୍ନୁଚରଣ ମିଶ୍ରେ ଆମ ନାମରେ ଫୌଜଦାରୀ ଦଣ୍ଡବିଧି ଆଇନର ପାଂଚଶହ ଦଫା ଅନୁଯାୟୀ ଏକ ମାନହାନି ମୋକଦ୍ଦମା କଟକରେ ଦାଏର କରିଥିଲେ । ମୋକଦ୍ଦମା ଯେ ଛ' ତାରିଖକୁ ମୁଲତବୀ ଥିଲା, ତାହା ମୁଁ ଭୁଲି ଯାଇଥିଲି । ମାଜିଷ୍ଟ୍ରେଟ ଦୋଳ ଗୋବିନ୍ଦ ମହାନ୍ତିଙ୍କ ଇଜ୍‌ଲାସରେ ସେ ଦିନ ମୋକଦ୍ଦମା ମୁଲତବୀ ରହିଲା । ପରେ ଦୋଳ ଗୋବିନ୍ଦ ବାବୁ ଅନ୍ୟତ୍ର ବଦଳି ହୋଇଗଲେ । ଏହାର ପାଂଚ ଛ' ବର୍ଷ ପରେ ଅନୁଗୁଳରେ ମାଜିଷ୍ଟ୍ରେଟ ଥିବା ସମୟରେ ଏକ ବିବାଦୀୟ ପାଣି ନାଳର ସରଜମିନ୍ ତଦନ୍ତ ସମୟରେ ସ୍ଥାନୀୟ ଲୋକେ ତାଙ୍କୁ ନିର୍ମମ ଭାବରେ ହତ୍ୟା କରିଥିଲେ । ଯାହାହେଉ ଆମ ମାନହାନୀ ମୋକଦ୍ଦମା ମାଜିଷ୍ଟ୍ରେଟ ଏ. ଏଲ. ଜଗନ୍ନାଥ ରାଓଙ୍କ କୋର୍ଟରେ ବିଚାର ହେଲା । ଆମର ଓକିଲ ଥିଲେ ପ୍ରଖ୍ୟାତ ଆଡ୍‌ଭୋକେଟ୍ ଶ୍ରୀ ରାଜ କିଶୋର ଦାସ । ପ୍ରକାଶିତ ବିବରଣୀର ସତ୍ୟତା ପ୍ରମାଣ କରିବାକୁ ଯାଇ ମୁଦାଲା ପକ୍ଷରୁ କେତେକ ସାକ୍ଷୀ ଜମାନବଂଦୀ ଦିଆହେଲା । ରାଜୁବାବୁ ଏକ ଆଇନଗତ ପ୍ରଶ୍ନ ଉତ୍ଥାପନ କଲେ ଯେ ସରକାରୀ କର୍ମଚାରୀଙ୍କ କାର୍ଯ୍ୟକଳାପ ଉପରେ ଏ ପ୍ରକାର ସାଧାରଣ ସମାଲୋଚନା ସାଂବାଦିକଙ୍କ କର୍ତ୍ତବ୍ୟ ବହିର୍ଭୂତ ନୁହେ ଏବଂ ଏହା ପାଂଚଶହ ଦଫାରେ ବର୍ଣ୍ଣିତ ବ୍ୟତିକ୍ରମର ଅନ୍ତର୍ଭୁକ୍ତ । ବିଚାର ଶେଷରେ ଆମ୍ଭେମାନେ ଖଲାସ ହେଲୁ ।

ଏ. ଏଲ. ଜଗନ୍ନାଥ ରାଓ ଥିଲେ ଜଣେ ବିଚକ୍ଷଣ ଆଇନଜ୍ଞ । ବିଚାରକ ଭାବରେ ତାଙ୍କର ସାଧୁତା ଉପରେ ଅନେକଙ୍କର ସଂଦେହ ଥିଲା । କିନ୍ତୁ

ଆଇନ ବିଦ୍ୟାରେ ସେ ଥିଲେ ପାରଂଗମ । ୧୯୪୮ ମସିହାରେ କଟକରେ ସ୍ୱତନ୍ତ୍ର ହାଇକୋର୍ଟ ପ୍ରତିଷ୍ଠିତ ହେବା ପରେ ରାଓ୍ ଚାକିରୀରୁ ଇସ୍ତଫା ଦେଇ ହାଇକୋର୍ଟରେ ଓକିଲାତି ଆରମ୍ଭ କଲେ । ତାଙ୍କର ଦୋଷ ଥିଲା ଅତ୍ୟଧିକ ମଦ୍ୟପାନ । ସେଥିପାଇଁ ଅଳ୍ପ ବୟସରେ ତାଙ୍କର ସ୍ୱାସ୍ଥ୍ୟଭଂଗ ହେଲା ଓ ସେ ରୋଗଗ୍ରସ୍ତ ହେଲେ । କିନ୍ତୁ ଅଭ୍ୟାସ ଛାଡ଼ି ପାରିଲେ ନାହିଁ । ୧୯୬୦ ମସିହାରେ ପ୍ରାୟ ପଂଚାବନ ବର୍ଷ ବୟସରେ ତାଙ୍କର ଅକାଳ ମୃତ୍ୟୁ ହେଲା ।

ବୁଲା ଗୋରୁଙ୍କୁ ଗୁହାଳରେ ଛନ୍ଦି ରଖିବା ସହଜ ନୁହେ । ମୋ ଅବସ୍ଥା ଥିଲା ତାଠାରୁ ଦୟନୀୟ । ୧୯୪୬ ଶେଷ ଆଡ଼କୁ ବ୍ରହ୍ମପୁରରେ ପ୍ରାଦେଶିକ ଛାତ୍ର ସମ୍ମିଳନୀ ଅନୁଷ୍ଠିତ ହେଲା । ବନ୍ଧୁ ସଦାନନ୍ଦ ମହାନ୍ତି, ଦ୍ୱିତୀକୃଷ୍ଣ ପଣ୍ଡା, କିଶୋର ଚନ୍ଦ୍ର ରଥ, ନରସିଂହ ପଣ୍ଡା, ସୁଲୋଚନା ରଥ ଓ ସ୍ୱର୍ଗତଃ ଶଶିଭୂଷଣ ପଟ୍ଟନାୟକ ପ୍ରମୁଖ ଏ ସମ୍ମିଳନୀର ପ୍ରଧାନ ଆୟୋଜକ ଥିଲେ । ମୁଁ ଓ ନିରୁପମା ସମ୍ମିଳନୀ ପୂର୍ବ ରାତି ମେଲ୍‌ରେ ବ୍ରହ୍ମପୁରରେ ପହଂଚିଲୁ । କଟକରୁ ୫୦ରୁ ଅଧିକ ପ୍ରତିନିଧି ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ବରିଷ୍ଠ ସାଥୀ ମନମୋହନ ମିଶ୍ର । ସମ୍ମିଳନୀ ପଛରେ ଥିଲା ବିଜୟ ଚନ୍ଦ୍ର ଦାସଙ୍କର ବଳିଷ୍ଠ ପ୍ରେରଣା ଓ ସମର୍ଥନ । ପ୍ରଥମ ଦିନର ସକାଳ ଉତ୍ସବରେ ମୁଁ ପତାକା ଉତ୍ତୋଳନ କଲି । ଚାରିଟା ବେଳେ ଏକ ବିରାଟ ଛାତ୍ର ଶୋଭାଯାତ୍ରା ସହର ପରିକ୍ରମା କଲା । ସଂଧ୍ୟାବେଳେ ଉତ୍କଳ ଆଶ୍ରମ ପଡ଼ିଆରେ ଖୋଲା ଅଧିବେଶନ । ପରଦିନ ପ୍ରତିନିଧି ସଭା ଓ ବିଭିନ୍ନ ପ୍ରସ୍ତାବ ଉପରେ ବିଚାର ବିମର୍ଶ ।

୧୯୪୬ ଅଗଷ୍ଟ ମାସରେ ବ୍ରିଟିଶ କ୍ୟାବିନେଟ୍ ମିଶନଙ୍କ ପ୍ରସ୍ତାବ ଅନୁଯାୟୀ କେନ୍ଦ୍ର ଏକ୍ସିକ୍ୟୁଟିଭ କାଉନସିଲ ପୁନର୍ଗଠିତ ହେଲା । ସେତେବେଳେକୁ ସଂବିଧାନ ପ୍ରଣୟନକାରୀ ସଭା ବା ଗଣପରିଷଦକୁ ନିର୍ବାଚନ ଶେଷ ହୋଇଥାଏ । ପଣ୍ଡିତ ଜହରଲାଲ ନେହରୁ କାଉନସିଲର ଉପସଭାପତି ଓ ସର୍ଦ୍ଦାର ପଟେଲ ପ୍ରମୁଖ କଂଗ୍ରେସ ନେତାମାନେ ସଭ୍ୟପଦ ଗ୍ରହଣ କରିଥାନ୍ତି । ଏହି ଏକ୍ସିକ୍ୟୁଟିଭ କାଉନସିଲର ନିଷ୍ପତ୍ତି ଓ କାର୍ଯ୍ୟକଳାପରେ ବଡ଼ଲାଟ ହସ୍ତକ୍ଷେପ କରିବେ ନାହିଁ ବୋଲି ଲର୍ଡ଼ ଓ୍ୟାଭେଲ ଏକରକମର ପ୍ରତିଶ୍ରୁତି ଦେଇଥାନ୍ତି । ପ୍ରଥମେ ମୁସଲିମ ଲିଗ୍ ଏହି କାଉନସିଲରେ ଯୋଗଦାନ କରି ନଥିଲେ, ପରେ ଲିଗ୍ ପ୍ରତିନିଧିମାନେ ଯୋଗ ଦେଲେ । ସଂବିଧାନ ପ୍ରଣୟନ ପୂର୍ବରୁ ୩୫ ମସିହା ଭାରତ ଶାସନ ଆଇନ

ଅନୁଯାୟୀ ଏକ ଅସ୍ଥାୟୀ ବ୍ୟବସ୍ଥା ରୂପେ ଏହି କାଉନ୍‌ସିଲ ପରିଗଠିତ ହୋଇଥିଲା । କେନ୍ଦ୍ରରେ ଯେଉଁ ଅସ୍ଥାୟୀ ସରକାର ପ୍ରତିଷ୍ଠିତ ହେଲା, ତାହାକୁ ନୂତନ ରାଜନୈତିକ ପରିପ୍ରେକ୍ଷୀରେ ପ୍ରଥମ ଜାତୀୟ ସରକାର ବୋଲି ମନେ କରାଯାଉଥିଲା ଏବଂ ପଣ୍ଡିତ ଜହରଲାଲ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ରୂପେ ବିବେଚିତ ହେଉଥିଲେ । ଯେଉଁ କମ୍ୟୁନିଷ୍ଟ ପାର୍ଟି ଏହା ପୂର୍ବରୁ ଦୀର୍ଘ ଚାରିବର୍ଷ ଧରି କଂଗ୍ରେସ ଓ ଲିଗ୍ ମଧ୍ୟରେ ମିଳାମିଶା ପାଇଁ ଆନ୍ଦୋଳନ କରି ଆସୁଥିଲେ, ସେମାନେ ଏହି ନବଗଠିତ ଅସ୍ଥାୟୀ ସରକାରର କଟୁ ସମାଲୋଚନା କରିବାକୁ ଆରମ୍ଭ କଲେ । ଅଥଚ ପରିସ୍ଥିତିର ମୁକାବିଲା କରିବା ପାଇଁ ପାର୍ଟିର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନଥିଲା ।

ବ୍ରହ୍ମପୁର ଛାତ୍ର ସମ୍ମିଳନୀରେ ଏହି ଅସ୍ଥାୟୀ ଜାତୀୟ ସରକାରକୁ ସ୍ୱାଗତ ଜଣାଇ ଏକ ପ୍ରସ୍ତାବ ଆଗତ ହେଲା । ସମ୍ମିଳନୀରେ ଯୋଗଦେଇଥିବା ପ୍ରତିନିଧିମାନେ କମ୍ୟୁନିଷ୍ଟ ବିରୋଧୀ ନଥିଲେ । କିନ୍ତୁ ନେହରୁଙ୍କ ନେତୃତ୍ୱରେ ଗଠିତ ସରକାରକୁ ସ୍ୱାଗତ କରିବା ପକ୍ଷରେ ବିପୁଳ ସମର୍ଥନ ପ୍ରକାଶ ପାଇଥିଲା । ମୁଁ ସେହି ସମୟରେ ଭାରତୀୟ ଛାତ୍ର ଫେଡ଼େରେସନର କେନ୍ଦ୍ର କାର୍ଯ୍ୟକାରୀ ସମିତିର ସଦସ୍ୟ ଥାଏ । କଲିକତାରୁ ଆସିଥିବା କମ୍ୟୁନିଷ୍ଟ ଦଳଭୁକ୍ତ ଦୁଇଜଣ ବିଶିଷ୍ଟ ଛାତ୍ରନେତା ଏ ପ୍ରସ୍ତାବଟି ଗ୍ରହଣ ନ କରିବା ପାଇଁ ବହୁତ ଚାପ ପକାଇଲେ । ୧୯୪୧ ମସିହା ପାଟନା ଛାତ୍ର ସମ୍ମିଳନୀ କଥା ମନେ ପଡ଼ିଲା । ଯେଉଁ ଭାବରେ 'ଜନଯୁଦ୍ଧ' ପ୍ରସ୍ତାବ ଗ୍ରହଣ କରି ଛାତ୍ର ଆନ୍ଦୋଳନକୁ ଦୁଇ ଫାଳ କରି ଦିଆହୋଇଥିଲା, ତାହା ଆଖି ଆଗରେ ନାଚିଗଲା । ମୁଁ ଏ ଚାପର ବଶବର୍ତ୍ତୀ ନ ହେବା ପାଇଁ ବଦ୍ଧ ପରିକର ହେଲି । ମୁଁ ଉପରୋକ୍ତ ବଂଧୁମାନଙ୍କୁ ସ୍ପଷ୍ଟ ଜଣାଇଦେଲି ଯେ ମୁଁ ବ୍ୟକ୍ତିଗତ ଭାବରେ ଏ ପ୍ରସ୍ତାବର ବିରୋଧୀ ନୁହେ ଏବଂ ଅଧିକାଂଶ ପ୍ରତିନିଧି ଯେଉଁ ପ୍ରସ୍ତାବକୁ ସମର୍ଥନ କରୁଚନ୍ତି, ତାହାକୁ କଳେ କୌଶଳେ ଗ୍ରହଣ କରାଇ ନ ଦେବା ଅଗଣତାନ୍ତ୍ରିକ ହେବ । ପରେ ଶୁଣିଲି, ସେମାନେ ମୋ ବିରୁଦ୍ଧରେ କେନ୍ଦ୍ର କମିଟିକୁ ଏକ ରିପୋର୍ଟ ପଠାଇଛନ୍ତି । ଏ ବିବାଦର ଏହିଠାରେ ପରିସମାପ୍ତି ଘଟିଲା ସତ, କିନ୍ତୁ ଏ ଘଟଣାଟି ଥିଲା କମ୍ୟୁନିଷ୍ଟ ପାର୍ଟି ସହିତ ମୋର ମତଭେଦର ଉପକ୍ରମଣିକା ।

ରାଜନୈତିକ କାର୍ଯ୍ୟରେ ବ୍ୟସ୍ତ ରହି ମୁଁ କଲେଜରେ ବାରବାର ଅନୁପସ୍ଥିତ ରହୁଥିଲି । ପୂଜାଛୁଟି ପରେ ମୁଁ ପଢ଼ାପଢ଼ିରେ ଅଧିକ ଧ୍ୟାନ ଦେବାକୁ ଆରମ୍ଭ

କଲି । ବିଶ୍ୱବିଦ୍ୟାଳୟ ପରୀକ୍ଷା ନିକଟେଇ ଆସୁଥାଏ । ମୁଁ ଚାରିମାସ ମନୋଯୋଗ ଦେଲେ କୃତିତ୍ୱର ସହିତ ପାସ କରିବି ବୋଲି ଭରସା ବାଂଧି ଥାଏ । ମୋର ସାଧାରଣ ଜୀବନ ର ଅଭିଜ୍ଞତା, କ୍ଲାସ ପଢ଼ା ବାହାରେ ବିଭିନ୍ନ ବିଷୟରେ ଅଧ୍ୟୟନ ଅଭ୍ୟାସ ମୋର ସହାୟକ ହେବ ବୋଲି ମନରେ ଦମ୍ଭ ଥିଲା । କିନ୍ତୁ ବିପଦ କି ପ୍ରତିବଂଧକ କେବେ ଏକଲା ଆସେ ନାହିଁ, ଥରେ ଆସିଲେ ତୁହାକୁ ତୁହା ଆସେ, ଅଗଣିତ ସଂଖ୍ୟାରେ । ଇଂରେଜିରେ ଯାହାକୁ କହନ୍ତି 'ମିସ୍ ଫରଚ୍ୟୁନ୍ କମ୍‌ସ ଇନ୍ ବାଟାଲିଆନ୍‌ସ । ବ୍ରହ୍ମପୁର ଛାତ୍ର ସମ୍ମିଳନୀରୁ ଫେରିବାର ଦୁଇ ଚାରି ଦିନ ପରେ, ବାଣପୁରରୁ ନନାଙ୍କ ନିକଟରୁ ଚିଠି ପାଇଲି, ମୋର ସାନ ଭାଇ ରଂଗାଧର (ମୃତ୍ତିକା ସଂରକ୍ଷଣ ବିଭାଗର ଅବସର-ପ୍ରାପ୍ତ ନିର୍ଦ୍ଦେଶକ ଶ୍ରୀ ରଂଗାଧର ଶତପଥୀ) ଆଗ୍ରା ରାଜପୁତ୍ କଲେଜରେ ଟାଇଫଏଡ୍ ରୋଗରେ ଆକ୍ରାନ୍ତ, ତୁରନ୍ତ ଆଗ୍ରା ଯିବାକୁ ହେବ । ସେହି ଦିନ ଡାକରେ ମୋର ପରୀକ୍ଷା ନିକଟେଇ ଆସୁଥିବା କଥା ନନାଙ୍କୁ ଜଣାଇଲି । ଉତ୍ତର ଆସିଲା; ମୋ ଜୀବନରେ ମୁଁ ବହୁ ବର୍ଷ ବିନା କାରଣରେ ନଷ୍ଟ କରିଛି, ସାନ ଭାଇ ପାଇଁ ଗୋଟିଏ ବର୍ଷ ନଷ୍ଟ ହେଲେ କ୍ଷୁବ୍ଧ ହେବା ଉଚିତ ନୁହେ । ଏ ଚିଠିର ଜବାବ୍ ନଥିଲା କିମ୍ବା ରଂଗୁର ଚିକିତ୍ସାରେ ଅବହେଳା ପାଇଁ ମୁଁ ପ୍ରସ୍ତୁତ ନଥିଲି । ତୁରନ୍ତ ମୁଁ ଆଗ୍ରା ବାହାରିଲି । ଖଡ଼ଗପୁର ବାଟେ ଆସାନସୋଲ ଟ୍ରେନରେ ଆଗ୍ରା ଯିବାକୁ ହୁଏ, ଆସାନସୋଲ ଜଂକସନରେ ଗାଡ଼ି ପରିବର୍ତ୍ତନ କରି ଆଗ୍ରା ଟ୍ରେନ୍ ଧରିବାକୁ ହୁଏ । ମୁଁ ଅର୍ଥନୀତି ଅନର୍ସ କୋର୍ସର ବହି ଓ କିଛି ଲୁଗାପଟା ବାକ୍ସରେ ବଂଦ କରି ଯାତ୍ରା ଆରମ୍ଭ କଲି । କିନ୍ତୁ ଦୁର୍ଯୋଗର ସୀମା ନଥିଲା । ବହି ଓ ଲୁଗାପଟା ଥିବା ବାକ୍ସଟି ଖଡ଼ଗପୁର ଷ୍ଟେସନରେ ଚୋରି ହୋଇଗଲା । ଆଗ୍ରାରୁ ଫେରି ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାର ଯାହା ସଂଭାବନା ଥିଲା, ସେ ସବୁ ପୋଡ଼ି ପାଉଁଶ ହୋଇଗଲା । ନୂଆ ବହି କିଣି ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ମୋ ପାଖରେ ଟଂକା ମଧ୍ୟ ନଥିଲା । ମୁଁ ରିକ୍ତ ହସ୍ତରେ ପଶ୍ଚିମା ଯାତ୍ରୀଙ୍କ ପରି ବାଟରୁ କିଣିଥିବା କମ୍ବଳ ଖଣ୍ଡି କାଂଧରେ ପକାଇ ରାଜପୁତ୍ କଲେଜ ହଷ୍ଟେଲରେ ପହଂଚିଲି ।

ରଂଗାଧରଙ୍କୁ କିଂଗ ଜର୍ଜ ମେଡ଼ିକାଲ ହସପିଟାଲରେ ଆଡ଼ମିସନ୍ କରି ଦିଆଯାଇଥିଲା । ରଂଗୁର ବାଲ୍ୟବଂଧୁ ଓ ସହପାଠୀ ବିକ୍ରମ (ପରେ ଡାଇରେକ୍ଟର

ଅଫ୍ ଆଗ୍ରିକଲ୍‌ଚର ଶ୍ରୀ ବିକ୍ରମ ମଲ୍ଲିକ) ଓ ଅନ୍ୟ ବନ୍ଧୁମାନେ ତାର ସମସ୍ତ ପ୍ରକାର ଯତ୍ନ ନେଉଥିଲେ । ସେ କାଳରେ ଟାଇଫଏଡ଼୍‌ର ଚିକିତ୍ସା ପାଇଁ କୌଣସି ନିର୍ଦ୍ଦିଷ୍ଟ ଔଷଧ ନଥିଲା । ନିୟମିତ ସେବା ଶୁଶ୍ରୂଷାହିଁ ରୋଗର ଏକମାତ୍ର ଚିକିତ୍ସା । କ୍ଲୋରୋମାଇସେଟିନ୍ ଆଦି ଔଷଧର ନାମ ସେ କାଳେ ଶୁଣା ନଥିଲା । ଏ ସବୁ ଔଷଧ ପଚାଶ ମସିହା ପର ଯୁଗର ଆବିଷ୍କାର । ଯାହାହେଉ, ଜାନୁଆରୀ ଶେଷ ଆଡ଼କୁ ତାର ଅବସ୍ଥାରେ ବିଶେଷ ଉନ୍ନତି ଦେଖାଗଲା । ତଥାପି ଡାକ୍ତରମାନେ କହିଲେ, ଅନ୍ତତଃ ଆହୁରି ଦଶଦିନ ରୋଗୀକୁ ବିଛଣାରେ ପଡ଼ି ରହିବାକୁ ହେବ । ଫେବୃଆରୀ ଦଶ ତାରିଖ ଆଡ଼କୁ ସେ ସଂପୂର୍ଣ୍ଣ ସୁସ୍ଥ ହେଲା । ଏହି ଶେଷ ଦଶ ଦିନ ମୁଁ ଏଣେତେଣେ ବୁଲାବୁଲି କରିବା ପାଇଁ ଅବସର ପାଇଲି ।

ଦିନେ ଆଗ୍ରାର ଓଡ଼ିଆ ଛାତ୍ରମାନଙ୍କ ସହ ତାଜମହଲ ଦେଖିବାକୁ ଗଲୁ । ଦୂରରୁ ତାଜମହଲ ଦୃଷ୍ଟିରେ ପଡ଼ିବା ମାତ୍ରେ କବିବର ରାଧାନାଥ ରାୟଙ୍କର ଗୋଟିଏ ଧାଡ଼ି ମନେ ପଡ଼ିଲା "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ ।" ତାଜମହଲର ସୌନ୍ଦର୍ଯ୍ୟ କିନ୍ତୁ ଭିନ୍ନ ପ୍ରକାରର । ଚିଲିକା ପରି ଆଗ୍ରାର ଉପକଂଠ ପ୍ରକୃତିର ବିଳାସ ଭୂମି ନୁହେ । ସୁନ୍ଦର ପ୍ରାକୃତିକ ପରିବେଶ ମଧ୍ୟରେ ମଣିଷକୃତ ଛାୟାଛବି ଏହି ତାଜମହଲ । ବିସ୍ତୀର୍ଣ୍ଣ ସବୁଜିମା ଉପରେ ଶୁଭ୍ର ଶଙ୍ଖ ମଳମଳ ପଥରର ଯେଉଁ ରମ୍ୟ ଚାରୁକଳାର ସୌଧ ମୁଣ୍ଡ ଟେକିଛି, ତାର ସୌନ୍ଦର୍ଯ୍ୟ ବର୍ଣ୍ଣନାତୀତ । ତାଜମହଲର ଚାରି କଣରେ ଥିବା ଗମ୍ବୁଜ ଗୁଡ଼ିକର ପାହାଚରେ ଉଠି ସର୍ବୋଚ୍ଚ ମଂଚରେ ପହଂଚିଲେ, ଯେଉଁ ଅଭିନବ ଦୃଶ୍ୟ ପରିଦୃଷ୍ଟ ହୁଏ, ତାହା କେବଳ କବି କାଳିଦାସ ବା ରବୀନ୍ଦ୍ର ନାଥଙ୍କ କଲମରେ ଭାବନ୍ୟାସ ପାଇପାରେ । ଆଜିକାଲି ଅବଶ୍ୟ ଗମ୍ବୁଜ ଉପରକୁ ଉଠିବାକୁ ଅନୁମତି ଦିଆଯାଉ ନାହିଁ । ଆମ୍ଭେମାନେ ଗମ୍ବୁଜ ଉପରୁ ତଳକୁ ଓହ୍ଲାଇ ଆସିଲା ପରେ ଦେଖିଲୁ, ଦଳେ ବଂଗଭାଷୀ ଯୁବକ ଯୁବତୀ ସବୁଜ ଘାସ ଉପରେ ବସି ତନ୍ମୟ ହୋଇ ରବୀନ୍ଦ୍ରନାଥଙ୍କ ରଚନା "ତାଜମହଲେର ମର୍ମେର୍ ବ୍ୟଥା" ଗାନ କରୁଅଛନ୍ତି ।

ସ୍ନେହ, ପ୍ରେମ ଓ ଅନୁରାଗର ଏହି ମୂର୍ତ୍ତିମନ୍ତ ଛବି ଦେଖି ସାରି ସହର ଭିତରେ ପ୍ରବେଶ କରି ଦେଖିଲୁ, ଦୋକାନ ବଜାର ସବୁ ବନ୍ଦ ହୋଇଯାଉଛି । ବୁଦ୍ଧିମାନ୍ ଟୋଙ୍ଗାବାଲାମାନେ କହିଲେ ସେମାନେ ଆଉ ଆଗକୁ ଯିବେ ନାହିଁ । ନିକଟସ୍ଥ ପୋଲିସ୍ ଚୌକିରେ ଖବର ନେଲୁ, ସଂଧ୍ୟାରେ ଆଗ୍ରାରେ ସାଂପ୍ରଦାୟିକ

ଦଂଗା ଆରମ୍ଭ ହୋଇ ଯାଇଛି । ତୁରନ୍ତ ଘରକୁ ଫେରିଯିବା ପାଇଁ ପୋଲିସ୍‌ର ନିର୍ଦ୍ଦେଶ । ଆମେ ଚାଲି ଚାଲି ବୁଲାଣି ରାସ୍ତା ଦେଇ ଫେରିଲୁ । ମୁଁ ହସ୍‌ପିଟାଲରେ ରହିଗଲି, ଅନ୍ୟମାନେ ରାଜପୁତ କଲେଜ ହଷ୍ଟେଲକୁ ଫେରିଗଲେ । ଯେଉଁଠି ପ୍ରେମର ପ୍ରତୀକ ତାଜମହଲ ପରି ସୃଷ୍ଟିର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ ବିରାଜମାନ, ସେଠି ପୁଣି ଭାଇ ବିରାଦରଙ୍କ ମଧ୍ୟରେ ରକ୍ତର ପ୍ଲାବନ । ଏ ବିଚିତ୍ର ଚିଡ଼ିଆଖାନାରେ ସବୁ କିଛି ସଂଭବ । ତାଜମହଲର ପ୍ରାଣ ପ୍ରତିଷ୍ଠାତା ବାଦଶାହ ସାଜାହାନ୍‌ଙ୍କୁ ତ ପୁତ୍ର ଆଉରଂଗଜେବ୍‌ଙ୍କ ନିର୍ଦ୍ଦେଶରେ ବନ୍ଦୀ ହୋଇ ରହିବାକୁ ପଡ଼ିଥିଲା !

ଦିନକ ପରେ ଦଂଗା ମନ୍ଥର ହୋଇଗଲା । ଆମେ ସେହି ଓଡ଼ିଆ ଛାତ୍ର ଦଳଟି ପୁଣି ଥରେ ବୁଲି ବାହାରିଲୁ । ସକାଳ ଓଳି ଯମୁନା କୂଳରେ ଅବସ୍ଥିତ ଆଗ୍ରା ଫୋର୍ଟକୁ ଗଲୁ । ଯେଉଁ କୋଠରୀ କାନ୍ଥରେ ଲଗା ହୋଇଥିବା ଛୋଟ କାଚ ଦେଇ ବନ୍ଦୀ ସମ୍ରାଟ ସାଜାହାନଙ୍କୁ ଦୂରରୁ ତାଜମହଲ ଦେଖିବାକୁ ସୁଯୋଗ ମିଳୁଥିଲା, ସେ କୋଠରୀ ମଧ୍ୟ ବୁଲି ଦେଖିଲୁ । ସ୍ୱପ୍ନ ବିଳାସୀ ସାଜାହାନଙ୍କ ଅନ୍ତିମ ଜୀବନର ଏ ଦୁର୍ଦ୍ଦଶା ସ୍ମରଣ କରି, କାହାରି କାହାରି ଆଖି ଛଳ ଛଳ ହୋଇ ଆସିଲା । ଉପର ବେଳା ବସ୍ ଯୋଗେ ଫତେପୁର ସିକ୍ରି ଯାତ୍ରା । ଫତେପୁର ସିକ୍ରିରେ ଆକବର୍ ବାଦଶାହଙ୍କ ନିର୍ମିତ ଦୁର୍ଗ । ହିନ୍ଦୁ ରାଣୀ ଯୋଧାବାଈଙ୍କ ରହିବା ଘର ଓ ପୂଜାଗୃହ, ଚଟାଣ ଉପରେ ବାଦ୍‌ଶାହା ଖେଳୁଥିବା ପଶାପାଲିର ଛବି, ବାଦଶାହଙ୍କ ରାଜ୍ୟ ଜୟର ସନ୍ତକ ବିଭିନ୍ନ ଦରଓ୍ୟାଜା, ଦରବାର ହଲ୍, ପ୍ରତିଟି ଘର, ପ୍ରତିଟି ଦୃଶ୍ୟ ଆଖି ଆଗରେ ଇତିହାସର ଗୋଟିଏ ଗୋଟିଏ ପୃଷ୍ଠା ଲେଉଟାଇ ଦିଏ । ଆଖି ଆଗରେ ନାଚି ଉଠେ ମୋଗଲ ବାଦଶାହମାନଙ୍କର କୁଳତିଳକ ଆକବରଙ୍କ ମୈତ୍ରୀ ଶାସନର ପ୍ରତିଛବି ।

ଏହି ସମୟରେ ମୋର ସଂପର୍କୀୟ ସ୍ୱର୍ଗତଃ ଦିବ୍ୟସିଂହ ପାଣିଗ୍ରାହୀଙ୍କ ପୁତ୍ର ଶ୍ରୀମାନ୍ ନୀହାର ରଂଜନ (ବର୍ତ୍ତମାନ ଅବସର ପ୍ରାପ୍ତ କୃଷି ବିଭାଗର ନିର୍ଦ୍ଦେଶକ ଡକ୍ଟର ନିହାର ରଂଜନ ପାଣିଗ୍ରାହୀ) ଦିଲ୍ଲୀ ପୁସା ଇନଷ୍ଟିଚ୍ୟୁଟ୍‌ରେ ଅଧ୍ୟୟନ କରୁଥିଲେ । ମୁଁ ତାଙ୍କୁ ଚିଠି ଲେଖିଲି, ଦୁଇ ଦିନ ପାଇଁ ଦିଲ୍ଲୀ ଯିବି । ନିର୍ଦ୍ଧାରିତ ତାରିଖରେ ମୁଁ ଏକ୍ସପ୍ରେସ ଗାଡ଼ିରେ ଦିଲ୍ଲୀରେ ପହଂଚିଲି । ନୀହାର ମତେ ଖୋଜିବା ପାଇଁ ଷ୍ଟେସନକୁ ଆସିଥିଲେ । ପୁସା ଇନଷ୍ଟିଚିଉଟ୍ ହଷ୍ଟେଲରେ ମୁଁ ତାଙ୍କର ଅତିଥି ହେଲି । ନୀହାର ମତେ ଦିଲ୍ଲୀ ସହର ବୁଲାଇ

ନେଲେ । ଗୋଟିଏ ଟୋଂଗା ଭଡ଼ା କରି ଆମ୍ଭେମାନେ ପ୍ରଥମ ଦିନ ଇଣ୍ଡିଆ ଗେଟ୍, ରାଷ୍ଟ୍ରପତି ଭବନ, ନର୍ଥ ଓ ସାଉଥ୍ ବ୍ଲକ୍ ଏବଂ ବିରଲା ମନ୍ଦିର ଓ କନଟ୍ ପ୍ରେସ ଆଦି ବୁଲି ଦେଖିଲୁ । ବିରଲା ଲକ୍ଷ୍ମୀ ନାରାୟଣ ମନ୍ଦିର ମଧ୍ୟରେ ଫ୍ରୁଟ୍ ଚାର୍ଟ ଖାଇବା କଥା ଏବେ ମଧ୍ୟ ମନେ ଅଛି । ଚାର୍ଟ ତିଆର କଲାବେଳେ କଡ଼ା ମସଲା ଦେବା ପାଇଁ ନୀହାର ବରାଦ କଲେ । ଅଭିଜ୍ଞତା ଅଭାବ ହେତୁ ହେଉ ବା ଉର୍ଦ୍ଦୁ ଭାଷା ଉପରେ ଦଖଲ ନ ଥିବା କାରଣରୁ ହେଉ, ନୀହାରଙ୍କୁ ଜଣା ନଥିଲା ଯେ କଡ଼ା ମସଲା ଅର୍ଥ ଅଧିକ ମିର୍ଚି ବା ଲଙ୍କା ଗୁଣ୍ଡ । ଆମେ ଚାର୍ଟ ପ୍ଲେଟରୁ ଖଣ୍ଡେ ଦୁଇଖଣ୍ଡ ଫଳ ଖାଇଛୁ କି ନାହିଁ, ପାଟି ଜଳିବାକୁ ଆରମ୍ଭ କଲା । ପ୍ରଥମେ ପାଣି ଗିଲାସେ ଲେଖାଁଏ ପିଇଲୁ, କିଛି ଲାଭ ହେଲା ନାହିଁ । ଦୋକାନରେ ପାଚିଲା କଦଳୀ ବିକ୍ରି ହେଉଥିଲା । ସେଥିରୁ ଦୁଇ ଦୁଇଟା ଆଣି ଗିଳି ପକାଇଲୁ । ରାଗ କି ସେଥିରେ ଯାଏ ? ତାପରେ ଧୈର୍ଯ୍ୟର ସହ ଲୁଣ ମଡ଼ାଇ କଂଚା କାକୁଡ଼ି ଚୋବାଇବାକୁ ଲାଗିଲୁ । କିଛି ସମୟ ପରେ ମରିଚ ରାଗର କୋପ କମିବାକୁ ଆରମ୍ଭ କଲା । ଏ ଘଟଣା ପରେ ମୁଁ ଅନ୍ତତଃ ଦୁଇ ଶହରୁ ଅଧିକ ଥର ଦିଲ୍ଲୀ ଯାଇଥିବି । କିନ୍ତୁ ଫ୍ରୁଟ ଚାର୍ଟକୁ ସବୁବେଳେ ଦୂରରୁ ଜୁହାର ।

ନୂଆ ଦିଲ୍ଲୀଠାରୁ ପୁରୁଣା ଦିଲ୍ଲୀ ସଂପୂର୍ଣ୍ଣ ଭିନ୍ନ । ନୂଆଦିଲ୍ଲୀର ଆଧୁନିକ କୋଠାବାଡ଼ି, ଚଉଡ଼ାରାସ୍ତାର ଦୁଇକଡ଼େ ଛାୟାପ୍ରଦ ଗଛର ଲାଇନ, ପ୍ରତି ଦୋଛକି ବା ଚାରିଛକରେ ଗୋଲେଇ ଓ ଫୁଆରା, ଘର ସାମନାର ଲନ୍ ଇତ୍ୟାଦି ପୁରଣା ଦିଲ୍ଲୀରେ ବିରଳ । ସ୍ୱାଧୀନତା ପୂର୍ବରୁ ନୂଆ ଦିଲ୍ଲୀରେ ଏତେ ଗୁଡ଼ିଏ ନଗର ଉପନଗର ବା କଲୋନୀ ନଥିଲା । ଦକ୍ଷିଣ ଓ ପଶ୍ଚିମ ଦିଲ୍ଲୀର ବିସ୍ତୀର୍ଣ୍ଣ ଅଂଚଳ ଖାଲି ପଡ଼ିଥିଲା । ଜାଁ ଭାଁ ଗୋଟିଏ ଅଧେ କ୍ଷୁଦ୍ର ଜନବସତି । ପଶ୍ଚିମରେ କରୋଲ ବାଗ୍, ଦକ୍ଷିଣରେ ଡ଼ିଫେନ୍ସ କଲୋନୀ, ସାଉଥ ଏକ୍ସଟେନସନ୍, ଗ୍ରେଟର କୈଳାଶ, ଗ୍ରୀନ ପାର୍କ, ଗୋଲ୍ଫ ମୋହର ପାର୍କ ଓ ନୀତିବାଗ ଆଦି ଉପନଗର ଗୁଡ଼ିକ ସ୍ୱାଧୀନତା ପରେ ନିକଟ ଅତୀତରେ ଗଢ଼ି ଉଠିଛି ଏବଂ ଦିଲ୍ଲୀ ସହର ଦ୍ରୁତ ଗତିରେ ବଢ଼ି ଚାଲିଛି । ପାଚେରୀ ଘେରା ପୁରୁଣା ଦିଲ୍ଲୀର ରାସ୍ତା ଅବଶ୍ୟ ସଂକୀର୍ଣ୍ଣ ଓ ଅଣ ଓସାରିଆ । ଚାନ୍ଦନୀଚୌକ, ଚୌଡ଼ି ବଜାର, ଜାମା ମସଜିଦ ଅଂଚଳରେ ଘରକୁ ଘର ଲାଗିଛି । ପବନ ଓ ଆଲୁଅ ପଶିବାକୁ ମଧ୍ୟ ଫାଙ୍କା ନାହିଁ । ପୁରୁଣା ଦିଲ୍ଲୀର ଏହି ଘନ ଜନବସତି

ମଧ୍ୟରେ ସବୁ ଦର୍ଶନୀୟ ଓ ଐତିହାସିକ ସ୍ଥାନ । ସ୍ୱନାମଧନ୍ୟ ଜାମା ମସ୍‌ଜିଦ୍‌, ଚାନ୍ଦିନୀଚୌକର ଶିଖ ଗୁରୁଦ୍ୱାରା, ଯମୁନା ନଦୀ କୂଳର ସମ୍ରାଟ ସାହାଜାନଙ୍କ ନିର୍ମିତ ଲାଲକିଲ୍ଲା ଆଦି କୀର୍ତ୍ତିମାଳାରେ ପୁରାତନ ଦିଲ୍ଲୀ ବିଭାସିତ । ସ୍ୱାଧୀନତା ପୂର୍ବରୁ ପୁରୁଣା ଦିଲ୍ଲୀର ଚାନ୍ଦନୀଚୌକ ରାସ୍ତାରେ ଟ୍ରାମ ଗାଡ଼ି ଚାଲୁଥାଏ । ମନ୍ଥର ଗତିରେ ଚାଲୁଥିବା ଏହି ସବୁ ଯାନ ବାହନ ଦିଲ୍ଲୀ ସହରରୁ ଉଠିଗଲାଣି । ସାଇକେଲ ରିକ୍ସା ଓ ଗୋଟିଏ ଘୋଡ଼ା ଟାଣୁଥିବା ଟୋଙ୍ଗା ଗାଡ଼ି ପୁରୁଣା ଦିଲ୍ଲୀର ସାଧାରଣ ଲୋକଙ୍କ ମୁଖ୍ୟ ବାହନ ।

ଦ୍ୱିତୀୟ ଦିନ ସକାଳ ଓଲି ଜାମା ମସଜିଦ୍‌ ଦେଖିସାରି ଆମେ ଚାନ୍ଦନୀଚୌକ ସାମନା ଲାହୋରୀ ଗେଟ୍‌ ଦେଇ ଲାଲକିଲ୍ଲାରେ ପ୍ରବେଶ କଲୁ । ସାଂଗରେ ଚାଲିଲେ ଜଣେ ବହୁ ଭାଷାଭାଷୀ ଗାଇଡ୍‌ । ଦେଓ୍ୟାନୀ ଖାସ୍‌, ଦରବାର ହଲ, ଉତ୍ତର-ପୂର୍ବ କୋଣରେ ଥିବା ମସଜିଦ୍‌, ରହିବା ମହଲ ଓ ବିଭିନ୍ନ କାରୁକାର୍ଯ୍ୟରେ ବିମଣ୍ଡିତ କୋଠରୀ ଗୁଡ଼ିକ ଦେଖିଲା ବେଳେ ମନେ ହେଉଥିଲା ଯେପରି ମୋଗଲ ଇତିହାସର ଗୋଟିଏ ଗୋଟିଏ ପୃଷ୍ଠା ଓଲଟାଇ ଚାଲିଛୁ । ଏହିଠାରେ ସାହାଜାନଙ୍କର ରାଜୁତି, ଆଉରଂଗଜେବଙ୍କର ଖାମଖିଆଲୀ ବାଦଶାହୀ ଶାସନ, ଏହିଠାରେ ଶେଷ ମୋଗଲ ସମ୍ରାଟ ବାହାଦୁର ଶାହା ଜାଫରଙ୍କର ଇଂରେଜ ମାନଙ୍କ ନିକଟରେ ଆତ୍ମ ସମର୍ପଣ । କିଲ୍ଲାର ସାମନା ଭାଗରେ (୧୯୪୭ ମସିହାରେ) ଇଂରେଜ ସୈନ୍ୟଙ୍କ ଛାଉଣୀ, ପ୍ରଧାନ ପ୍ରବେଶ ଦ୍ୱାର ଉପରେ ଇଂରେଜଙ୍କ କର୍ତ୍ତୃତ୍ୱର ନିଶାଣ ୟୁନିଅନ ଜ୍ୟାକ୍‌ । ଭାରତବର୍ଷରେ ବୋଧହୁଏ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ଇତିହାସର ଏପରି ମର୍ମାନ୍ତିକ ପଟ ପରିବର୍ତ୍ତନ ଘଟିଛି । ଦିଲ୍ଲୀ ଛାଡ଼ିବାର ପ୍ରାୟ ଛ' ମାସ ପରେ, ୧୯୪୭ ଅଗଷ୍ଟ ପନ୍ଦର ତାରିଖ ସକାଳେ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ଜହରଲାଲ ନେହରୁ ଲାଲକିଲ୍ଲାର ମଂଚ ଉପରୁ ଜାତୀୟ ପତାକା ଉତ୍ତୋଳନ କରିଥିଲେ । ସେହିଦିନଠାରୁ ପ୍ରତିବର୍ଷ ଅଗଷ୍ଟ ପନ୍ଦର ତାରିଖରେ ଭାରତର ପ୍ରଧାନମନ୍ତ୍ରୀ ସ୍ୱାଧୀନତାର ନିଶାଣ ଏହି ଲାଲ କିଲ୍ଲା ଉପରୁ ପତାକା ଉତ୍ତୋଳନ କରି ଆସୁଛନ୍ତି ।

ଆମର ଗାଇଡ୍‌ ଥିଲେ ଜଣେ ଦକ୍ଷ ଗାଳ୍ପିକ। ମୋଗଲ ଇତିହାସର କେତେକ ଅଧ୍ୟାୟ ତାଙ୍କର ମୁଖସ୍ଥ ଥିଲା ପରି ମନେ ହେଉଥିଲା । ବର୍ଣ୍ଣନାର ସତ୍ୟତା ପରଖ କରିବା ପାଇଁ ଆମର ସମୟ ବି ନଥିଲା । କିଲ୍ଲାର ବିଭିନ୍ନ

ଖୁଣ୍ଟ ଓ କାନ୍ଥରେ ପର୍ସିଆନ ଭାଷାରେ ସ୍ୱର୍ଣ୍ଣାକ୍ଷରରେ ଲିଖିତ ପଦ୍ୟାବଳୀରୁ ଇଂରେଜମାନେ କିପରି ଛାଉଣି ହୋଇଥିବା ସୁନାତକ ତାଡ଼ି ନେଇଛନ୍ତି, ଗାଇଡ୍ ତାର ନିଦର୍ଶନ ଦେଖାଇ ଦେଉଥାଏ । କୋଠରୀ ଗୁଡ଼ିକର ମଧ୍ୟ ଭାଗରେ ନିର୍ମିତ ନଳାରେ ବେଗମ୍‌ମାନଙ୍କ ବ୍ୟବହାର ପାଇଁ କିପରି ସୁବାସିତ ଗୋଲାପ ଜଳ ପ୍ରବାହିତ ହେଉଥିଲା, ଗାଇଡ୍ ତାହା ବୁଝାଇ ଦେଉଥାଏ । ବାଦଶାହ କେଉଁଠି ବସି ଦରବାର କରନ୍ତି, ପାରିଷଦମାନଙ୍କ ସହ ବିଚାର ବିମର୍ଷ କରନ୍ତି, କେଉଁଠି ବେଗମ୍‌ମାନଙ୍କ ସହ ମଉଜ ମଜଲିସ୍ କରନ୍ତି, କେଉଁଠି ସ୍ନାନ କରନ୍ତି, କେଉଁଠି ଶୟନ କରନ୍ତି, ଗାଇଡ୍ ଅନର୍ଗଳ କହି ଚାଲିଥାଏ । ଅନ୍ଦର ମହଲର ମୁଖ୍ୟ ପ୍ରବେଶ ଦ୍ୱାର ଉପରେ ପର୍ସିଆନ ଭାଷାରେ ଏକ ଖଣ୍ଡ କବିତା ଲେଖାଥିଲା । ଗାଇଡ୍ ତାକୁ ଇଂରାଜୀରେ ଅନୁବାଦ କଲେ "ଇଫ୍ ଦେଆର୍ ଇଜ୍ ଏ ହେଭନ୍ ଅନ୍ ଆର୍ଥ, ହିଅର ଇଟ୍ ଇଜ, ହିଅର ଇଟ୍ ଇଜ ଆଣ୍ଡ ହିଅର ଇଟ୍ ଇଜ ।" ଅର୍ଥାତ୍ "ଯଦି ମର୍ତ୍ତ୍ୟରେ କେଉଁଠି ସ୍ୱର୍ଗ ବିରାଜମାନ, ତାହା କେବଳ ଏହିଠାରେ, ଏହିଠାରେ ଏବଂ ଏହିଠାରେ ।" ଦିନକ ପରେ ମୁଁ ମୋଗଲ ବାଦଶାହମାନଙ୍କ ସ୍ୱର୍ଗପୁରୀ ଦିଲ୍ଲୀରୁ ଆଗ୍ରା ପ୍ରତ୍ୟାବର୍ତ୍ତନ କଲି ।

ଆଗ୍ରା ହସପିଟାଲ୍‌ରେ ପହଂଚି ଦେଖେ, କଟକରୁ ଆସିଥିବା ମୋର ତାଡ଼ାଏ ଚିଠି ରଂଗୁ ପାଖରେ ଜମା ହୋଇଛି । ତିନି ଦିନ ମଧ୍ୟରେ ହଠାତ୍ ଏତେ ଗୁଡ଼ାଏ ଚିଠି ଏକାଠି ଆସିବାର ଦେଖି ଆଶ୍ଚର୍ଯ୍ୟ ଲାଗିଲା । ଚିଠି ସବୁ ଲେଖିଥିଲେ ନିରୂପମା । ଖୋଲି ଦେଖିଲି ଚିଠି ଭିତରେ ଥିବା ତାରିଖ ଓ ଲଫାପା ଉପରେ ଆଗ୍ରା ପୋଷ୍ଟ ଅଫିସର ତାରିଖ ମଧ୍ୟରେ ଦଶ ପନ୍ଦର ଦିନର ପାର୍ଥକ୍ୟ । ଚିଠିର ବିଷୟବସ୍ତୁ ପଢ଼ି, କିଏ ଏହି କୁକର୍ମର କର୍ତ୍ତା ତାହା ବୁଝିବାରେ ଅସୁବିଧା ହେଲା ନାହିଁ । ସେ କାଳରେ ପୋଲିସ ସ୍ପେଶିଆଲ ବ୍ରାଂଚ ଅଫିସରମାନେ ପୋଷ୍ଟ ଅଫିସରେ ବସି ସଂଦେହପୂର୍ଣ୍ଣ ଚିଠି ଗୁଡ଼ିକ ଖୋଲନ୍ତି ଏବଂ ଚିଠି ପଠାଯିବ କି ନାହିଁ, ଯଦି ଯାଏ ତାହାହେଲେ କେବେ ପଠାଯିବ, ତାହା ନିର୍ଣ୍ଣୟ କରନ୍ତି । ମୁଁ ଆଗ୍ରାରେ ଥିବା ସମୟରେ କଟକରେ ଏକ ବିରାଟ ଛାତ୍ର ଆନ୍ଦୋଳନ ଚାଲୁଥିବାର ସମ୍ବାଦ ଖବରକାଗଜରୁ ପଢ଼ିଥିଲି । ୧୯୪୭ ଜାନୁଆରୀରେ ଅନୁଷ୍ଠିତ ସ୍ପୋର୍ଟସ୍ ଦିନ ରେଭେନ୍ସା କଲେଜ କର୍ତ୍ତୃପକ୍ଷ ପଡ଼ିଆରେ ପୂର୍ବଭଳି ୟୁନିଅନ ଜ୍ୟାକ୍ ପତାକା ଉଡ଼ାଇ ଥିଲେ । ଛାତ୍ରମାନେ ଏହାର ପ୍ରତିବାଦ କଲେ । ସେ ସମୟରେ ପ୍ରିନ୍ସପାଲ ଥିଲେ ସଚ୍ଚି ରାୟ ।

ସେ ଅତ୍ୟନ୍ତ ଭଲ ଲୋକ । କିନ୍ତୁ ଥରେ ୟୁନିଅନ ଜ୍ୟାକ୍ ଉଡ଼ିବା ପରେ ତାକୁ କାଢ଼ି ନେବାକୁ ସେ ଅସାମର୍ଥ୍ୟ ପ୍ରକାଶ କଲେ । ଛାତ୍ରସଂଘର ପୁରୁଖା ନେତା ମନମୋହନ ମିଶ୍ର ଅନ୍ୟମାନଙ୍କ ସହାୟତାରେ ପତାକା ସ୍ତମ୍ଭକୁ ଉପାଡ଼ି ଫୋପାଡ଼ି ଦେଇଥିଲେ ଓ ଉପସ୍ଥିତ ଛାତ୍ରନେତା ବସନ୍ତ କୁମାର ମିଶ୍ର, ପୂର୍ଣ୍ଣାନନ୍ଦ ଦାସ ଓ ଅନ୍ୟମାନେ ୟୁନିଅନ ଜ୍ୟାକ୍ ଉପରେ ନାଚି କୁଦି ତାକୁ ବିକଳାଂଗ କରିଦେଇଥିଲେ । କେତେକ ଛାତ୍ର ସେହି ସ୍ତମ୍ଭରେ ଗୋଟିଏ ତ୍ରିରଂଗା ପତାକା ବାଂଧି ଉଡ଼ାଇଦେଲେ । ଛାତ୍ରନେତାମାନଙ୍କୁ ଏଥିପାଇଁ ଫାଇନ୍ କରାହେଲା ଓ କ୍ଷମା ପ୍ରାର୍ଥନା ମାଗିବାକୁ ଆଦେଶ ଦିଆହେଲା । ଏହି ଆଦେଶ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ ହେଲା । ନେତୃତ୍ୱ ନେଇଥିଲେ ମନ ମୋହନ ମିଶ୍ର, ନରସିଂହ ତ୍ରିପାଠୀ, ଗଗନ ବିହାରୀ ଜେନା, ନିରୁପମା ରଥ, ନନ୍ଦିନୀ ପାଣିଗ୍ରାହୀ ଓ ରମାରାଣୀ ରାୟ ପ୍ରମୁଖ । ନିରୁପମା ଓ ନନ୍ଦିନୀଙ୍କ ଉଦ୍ୟମରେ ମେଡ଼ିକାଲ କଲେଜ ଓ ରାଭେନ୍ସା କଲେଜର ବହୁ ମହିଳା ଛାତ୍ରୀ ଆନ୍ଦୋଳନରେ ଝାସ ଦେଇଥିଲେ । ମୋ ପାଖକୁ ପ୍ରେରିତ ଚିଠି ଗୁଡ଼ିକରେ ଆନ୍ଦୋଳନର ଦୈନନ୍ଦିନ ବିବରଣୀ ଲିପିବଦ୍ଧ ଥିଲା । ଆନ୍ଦୋଳନ ଶାନ୍ତ ହେବା ପରେ ପୋଲିସବାଲାଙ୍କ ଦୟାରୁ ଚିଠି ଗୁଡ଼ିକ ଏକ ସଂଗରେ ଆସି ପହଂଚିଲା ।

ଫେବ୍ରୁଆରୀ ଦଶ ତାରିଖ ଆଡ଼କୁ ରଂଗୁନ୍‌କୁ ସାଂଗରେ ଧରି ମୁଁ କଟକ ଫେରିଲି । ସେତେବେଳକୁ ବିଶ୍ୱବିଦ୍ୟାଳୟ ପରୀକ୍ଷା ଆଉ ପାଂଚ ଛ' ଦିନ ଥାଏ । ସେ ବର୍ଷ ମୁଁ ପରୀକ୍ଷା ଦେଇ ପାରିଲି ନାହିଁ । ପର ବର୍ଷ ଘରୋଇ ଭାବରେ ପରୀକ୍ଷା ଦେଇ ବି.ଏ. ପାସ୍ କଲି ।



# ଗୋଲାମୀର ଅବସାନ

୧୯୪୭ ଅଗଷ୍ଟ ପନ୍ଦର । ସେହି ଦିନ ବ୍ରିଟିଶ ଶକ୍ତି ଭାରତରୁ ବିଦାୟ ନେବେ ବୋଲି ଘୋଷଣା କରାଯାଇଥାଏ । ଲେବର ପାର୍ଟିର ନେତା ଅଟ୍‌ଲି ଯୁଦ୍ଧପର ବ୍ରିଟେନର ପ୍ରଧାନ ମନ୍ତ୍ରୀ । ତାଙ୍କର ନେତୃତ୍ୱରେ ଭାରତର ସ୍ୱାଧୀନତା ଦାବୀକୁ ଗ୍ରହଣ କରିନେବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । ମୁସଲିମ୍ ଲିଗର ନେତା ମହମ୍ମଦ୍ ଅଲି ଜିନ୍ନାଙ୍କ ଜିଦ୍ ଓ ଚକ୍ରାନ୍ତ ଫଳରେ ସମ୍ମିଳିତ ସ୍ୱାଧୀନଭାରତର କଳ୍ପନା ଧୂଳିସାତ୍ ହେଲା । ଭାରତ ଓ ପାକିସ୍ଥାନ ଦୁଇଟି ସ୍ୱତନ୍ତ୍ର ରାଷ୍ଟ୍ର ହେଲେ । ଦେଶ ବିଭାଜନ ସତ୍ତ୍ୱେ, ଦୁଇଶହ ବର୍ଷର ଗୋଲାମୀ ଲୋପ ହେବ, ଭାରତ ସ୍ୱାଧୀନ ହେବ, ଅଗଣିତ ଶହୀଦ୍ ଓ ସଂଗ୍ରାମୀଙ୍କର ସ୍ୱପ୍ନ ସାର୍ଥକ ହେବ ଏହି କଳ୍ପନାରେ ଆମ୍ଭେମାନେ ବିଭୋର ଥିଲୁ । ସରକାରଙ୍କୁ ସମାଲୋଚନା କଲେ ଜେଲ ଯିବାକୁ ହେବ ନାହିଁ, ସରକାରୀ କଳର ଲାଂଛନା ଭୋଗିବାକୁ ହେବ ନାହିଁ- ଏ ପ୍ରକାରର ସ୍ୱପ୍ନ ବିଳାସରେ ମନ ଆନ୍ଦୋଳିତ ହେଉଥାଏ । ସ୍ୱାଧୀନ' ଭାରତର ରୂପ ରେଖା କ'ଣ ହେବ, ଅର୍ଥନୈତିକ ଓ ସାମାଜିକ କାର୍ଯ୍ୟକ୍ରମ କ'ଣ ହେବ, ଶ୍ରେଣୀ ସଂଗଠନର ଭୂମିକା କ'ଣ ହେବ- ଏସବୁ ବିକ୍ଷିପ୍ତ ଚିନ୍ତାରେ ମନର ଆବେଗ ବଢ଼ି ଚାଲିଥାଏ ।

ଚଉଦ ଅଗଷ୍ଟ ଦିନ ବର୍ଷା ନଥିଲା । ମେଘାଡ଼ମ୍ବର ସତ୍ତ୍ୱେ ପାଗ ଥିଲା ଶୁଖିଲା । ପ୍ରାୟ ରାତି ଏଗାରଟା ବେଳକୁ ଚାନ୍ଦନିଚୌକ କମ୍ୟୁନିଷ୍ଟ ପାର୍ଟି କୋଠା ଉପରେ ଆମ୍ଭେମାନେ ଏକତ୍ର ହେଲୁ ରାତି ବାରଟାର ସ୍ୱାଧୀନତା ଘୋଷଣା ଶୁଣିବା ଅପେକ୍ଷାରେ । ସେହି ସମୟରେ ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ବିଭାଗ ଓ ଜଣେ ଦୁଇଜଣ ବିଜୁଳି ସାମଗ୍ରୀ ବିକ୍ରେତାଙ୍କ ବ୍ୟତୀତ କଟକରେ କାହାରି ଡାକବାଜି ଯନ୍ତ୍ର ନ ଥାଏ । କମ୍ୟୁନିଷ୍ଟ ପାର୍ଟି ବର୍ଷକ ଆଗରୁ ଗୋଟିଏ ଶକ୍ତିଶାଳୀ ମାଇକ୍ ଖରିଦ୍ କରିଥାନ୍ତି । ମଧ୍ୟରାତ୍ରିର ସ୍ୱାଧୀନତା ଘୋଷଣା ଶୁଣାଇବା ପାଇଁ, ସେହି ମାଇକ୍‌ଟି ଅଫିସ କୋଠା ଉପରେ ଫିଟ୍ କରାଯାଇଥାଏ । ସ୍ଥାନୀୟ ଜନ ସାଧାରଣଙ୍କ ଉଦ୍ଦେଶ୍ୟରେ ଘଣ୍ଟାଏ କାଳ ଆମ୍ଭେମାନେ ବୈପ୍ଳବିକ ସଂଗୀତ ପରିବେଷଣ କଲୁ । ବନ୍ଧୁ ମନମୋହନ ମିଶ୍ର, ମୁଁ ନିଜେ ଓ ଅନ୍ୟ କେତେକ ଏଥିରେ ମୁଖ୍ୟ ଭାଗ ନେଇଥିଲୁ । ସାଥୀ ଶୈଳେନ୍ ମହାପାତ୍ର କେଉଁଠୁ ଗୋଟିଏ ପୁରୁଣା ରେଡ଼ିଓ ସଂଗ୍ରହ କରିଥାନ୍ତି । ଠିକ୍ ରାତି ବାରଟା ସମୟରେ ପ୍ରଚାରିତ ହେଲା, ପାର୍ଲିଆମେଣ୍ଟ ପୀଢ଼ି ଉପରୁ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜହରଲାଲ ନେହୁରୁଙ୍କର ''ଟ୍ରିଷ୍ଟ ଉଇଥ୍

ଡ୍ରେଷ୍ଟିନୀ'' ଭାଷଣ । ନବଲବ୍‌ଧ ସ୍ୱାଧୀନତାକୁ ଅଭିନନ୍ଦନ ଜଣାଇ ନେହ୍ରୁ ଭାଷଣ ଦେଲେ ''ବହୁ ବର୍ଷ ତଳେ ଭାଗ୍ୟ ସହିତ ଆମ୍ଭେମାନେ ଚୁକ୍ତିବଦ୍ଧ ହୋଇଥିଲୁ । ସେହି ଅଙ୍ଗୀକାର କାର୍ଯ୍ୟକାରୀ କରିବାର ବର୍ତ୍ତମାନ ସମୟ ଆସିଛି... ମଧ୍ୟ ରାତ୍ରିର ଆବିର୍ଭାବରେ ସମଗ୍ର ପୃଥିବୀ ଯେତେବେଳେ ସୁପ୍ତ, ଭାରତ ନୂତନ ଜୀବନ ଓ ସ୍ୱାଧୀନତା ପଥରେ ଜାଗ୍ରତ..'' ଇତ୍ୟାଦି ।

ଆକାଶବାଣୀର କାର୍ଯ୍ୟକ୍ରମ ପ୍ରାୟ ପଇଁଚାଳିଶ ମିନିଟ୍ ମଧ୍ୟରେ ଶେଷ ହେଲା । ମନେ ହେଲା, ଯେପରି ପାଦରୁ ଶୃଙ୍ଖଳ ଛିଡ଼ି ପଡ଼ିଛି, ଦାସତ୍ୱର ବୋଝ ଖସି ଯାଇଛି, ଆମ୍ଭେମାନେ ଆମ୍ବହରା ହୋଇ ସହର ତମାମ୍ ଘୁରି ବୁଲିଲୁ । ଅଧ୍ୟାପକ କୃଷ୍ଣ ପ୍ରସାଦ ପଟ୍ଟନାୟକ, ନରସିଂହ ତ୍ରିପାଠୀ, ଶୈଳେନ ମହାପାତ୍ର ଓ ହରିପଦ ମିତ୍ର (ଅବସର ପ୍ରାପ୍ତ ଡେପୁଟୀ କଲେକ୍ଟର) ଓ ଅନ୍ୟ କେତେଜଣ ବଂଧୁ ଆନନ୍ଦରେ ସାଇକେଲ୍‌ରେ ସହର ପରିଭ୍ରମଣ ଆରମ୍ଭ କଲୁ । କଟକ ଚଣ୍ଡୀ, ବକ୍ସି ବଜାର, ମଂଗଳାବାଗ ଓ କଲେଜ ଛକ ଆଦି ସବୁ ସ୍ଥାନରେ ଦଳ ଦଳ ହୋଇ ଲୋକ ଜମାହୋଇଥାନ୍ତି । ନେହ୍ରୁଙ୍କ ଭାଷଣ ଉପରେ ଚର୍ଚ୍ଚା ଚାଲିଥାଏ । କଟକ ଚଣ୍ଡୀ ଓ କଲେଜ ଛକରେ ଆତସବାଜୀ । ଘରକୁ ଫେରିଲା ବେଳକୁ ରାତି ତିନିଟା ।

ଅଗଷ୍ଟ ପନ୍ଦର ଦିନ କଟକ ସହର ଥିଲା ଉତ୍ସବ ମୁଖର । ବିଭିନ୍ନ ସାହୀ ବସ୍ତିରେ ନାନା ଉତ୍ସବ ଅନୁଷ୍ଠିତ ହେଉଥିଲା । ସେତେବେଳେ ମହତାବ ବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସରକାରୀ ସ୍ତରରେ ମଧ୍ୟ ତତ୍‌କାଳୀନ ରାଜଧାନୀ କଟକ ସହରରେ ବିଭିନ୍ନ ଅନୁଷ୍ଠାନର ଆୟୋଜନ କରାଯାଇଥିଲା । ସକାଳ ଆଠଟାରେ ମଙ୍ଗଳାବାଗ ନାୟକ ସାହୀ ଛକରେ ସ୍ଥାନୀୟ ଯୁବକମାନେ ସ୍ୱାଧୀନତା ଉତ୍ସବର ଆୟୋଜନ କରିଥାନ୍ତି । ଜାତୀୟ ପତାକା ଉତ୍ତୋଳନ କରିବା ପାଇଁ ମୁଁ ସ୍ୱତନ୍ତ୍ର ଅତିଥି ରୂପେ ନିମନ୍ତ୍ରିତ ହୋଇଥାଏ । ଯଥା ସମୟରେ ମୁଁ ଓ ନିରୁପମା ସଭା ମଣ୍ଡପରେ ପହଂଚିଲୁ । ସଭା ସ୍ଥଳରେ ବିରାଟ ଜନ ସମାଗମ ଦେଖି ଆଶ୍ଚର୍ଯ୍ୟ ଲାଗିଲା । ସେ କାଳରେ କଟକ ବସ୍ତିବାସୀଙ୍କର ସାଧାରଣ ରାଜନୈତିକ ଜୀବନ ଧାରା ଅତି ମନ୍ଥର, ଅଚଂଚଳ । ରାଜନୈତିକ ପରିବର୍ତ୍ତନ ପ୍ରତି ଲୋକେ ଉଦାସ । ଅଥଚ ଅଗଷ୍ଟ ପନ୍ଦର ସ୍ୱାଧୀନତା ଦିବସରେ ସ୍ଥାନୀୟ ସାହୀ ସଭାରେ ଜନ-ସମାଗମ ଦେଖି, ରାଜନୈତିକ ପରିବର୍ତ୍ତନର ଝଂଜା କିପରି ସାଧାରଣ ଜନତାକୁ ପ୍ରଭାବିତ କରୁଛି, ତାର ସ୍ପଷ୍ଟ ସୂଚନା ମିଳିଲା ।

୧୬ ତାରିଖ ଉପରବେଳା ଚାନ୍ଦନିଚୌକ କମ୍ୟୁନିଷ୍ଟ ପାର୍ଟି ଅଫିସରେ ଶୁଣିଲି, ସ୍ୱାଧୀନତା ଦିବସରେ ଏ ପତାକା ଉତ୍ତୋଳନ ଘଟଣାଟିକୁ ପାର୍ଟିର

କର୍ତ୍ତାମାନେ ସୁଖ ମନରେ ଗ୍ରହଣ କରି ନାହାନ୍ତି । ବିଶେଷ ଆଶ୍ଚର୍ଯ୍ୟ ହେଲି ନାହିଁ । କାରଣ କମ୍ୟୁନିଷ୍ଟ ବଂଧୁମାନେ 'ଅଗଷ୍ଟ ପନ୍ଦର' ଦିନର ତାତ୍ପର୍ଯ୍ୟ ବୁଝି ପାରି ନଥିଲେ । ସେମାନଙ୍କ ମତରେ ନବଲବ୍ଧ ସ୍ୱାଧୀନତା ସାମ୍ରାଜ୍ୟବାଦୀ ବ୍ରିଟେନ ସହିତ ପୁଞ୍ଜିବାଦୀ କଂଗ୍ରେସ ନେତୃତ୍ୱର ଏକ ପ୍ରକାରର ସାଲିସ୍ ଏବଂ ଏ ସାଲିସ୍‌କୁ ସେମାନେ ସଂଦେହ ପୂର୍ଣ୍ଣ ଦୃଷ୍ଟିରେ ବିଚାର କରୁଥିଲେ । ଅସ୍ଥାୟୀ ବ୍ୟବସ୍ଥା ରୂପେ ମାଉଣ୍ଟବ୍ୟାଟେନ୍ ଯେ ଭାରତରେ ଆଉ ଗୋଟିଏ ବର୍ଷ ବଡ଼ଲାଟ ହୋଇ ରହିବେ ସେମାନେ ତାର ଘୋର ସମାଲୋଚକ ଥିଲେ । ମୁଁ ଯେ ଅସ୍ଥାୟୀ ବ୍ୟବସ୍ଥାକୁ ପସନ୍ଦ କରୁଥିଲି, ତା ନୁହେ । କିନ୍ତୁ ସବୁ ଯୁଦ୍ଧ ବିଗ୍ରହ ଓ ସଂଘର୍ଷର ସମାପ୍ତି ଘଟେ ଏକ ସମାଧାନରେ । ଅଗଷ୍ଟ ପନ୍ଦରର ନିଷ୍ପତ୍ତି ଥିଲା ଏ ପ୍ରକାରର ଏକ 'ରାଜନୈତିକ ସମାଧାନ' । ଦୀର୍ଘ ଦିନର ସ୍ୱାଧୀନତା ଆନ୍ଦୋଳନ ସତ୍ତ୍ୱେ, ହିନ୍ଦୁ ମୁସଲମାନ ବିଭେଦ ଓ କଂଗ୍ରେସ ଲିଗ୍ ମତଭେଦର ମର୍ମନ୍ତୁଦ ପରିଣତି ସ୍ୱରୂପ ଭାରତବର୍ଷ ଯେପରି ବିଭାଜିତ ହେଲା, ସେ ପରିସ୍ଥିତିରେ ଗୋଟିଏ ବର୍ଷ ପାଇଁ ଜଣେ ବ୍ରିଟିଶ ପ୍ରତିନିଧିଙ୍କର ଭାରତରେ ଅବସ୍ଥାନ ହେତୁ ହତାଶ ବା ବିଚଳିତ ହେବାର କାରଣ ନଥିଲା । ଯେଉଁ ସ୍ୱାଧୀନତା ସଂଗ୍ରାମର ଧକ୍କା ଦୁର୍ଦ୍ଧର୍ଷ ଇଂରେଜ ଶାସନକୁ ପଂଗୁ କରି ଦେଇଥିଲା, ସେହି ସଂଗ୍ରାମର ପରବର୍ତ୍ତୀ ପ୍ରତିକ୍ରିୟା ସ୍ୱରୂପ ଗୋଲାମୀର ସ୍ମରଣିକା ଗୁଡ଼ିକ ଯେ ଅଚିରେ ଭାଂଗି ପଡ଼ିବ, ଏ କଥା ବୁଝିବାକୁ କମ୍ୟୁନିଷ୍ଟ ବଂଧୁମାନଙ୍କର ଦୂରଦୃଷ୍ଟି ନଥିଲା ।



# ସଂକେତ

୧୯୪୮ ମସିହା ପ୍ରାରମ୍ଭରେ ପି.ଏମ. ଆକାଦେମୀ ପଛପଟେ ତିନିକୋଣିଆ ବଗିଚାର ଗୋଟିଏ ଭଡ଼ା ଘରେ ଆମେ ରହୁଥାଉ । ଘରର ମାଲିକ ଆକାଦେମୀର ଜଣେ ପୂର୍ବତନ ଶିକ୍ଷକ । ପାରିବାରିକ କଳହ ହେତୁ ସେ ଅସୁରେଶ୍ୱରରେ ରହୁଥାନ୍ତି । ଘରଟି ବେଶ ବଡ଼, ଅଗଣା ଅତି ପ୍ରଶସ୍ତ । ଏପ୍ରିଲ ମାସରେ, ଦିନେ ଉପରବେଳା ଚାରିଟା ସମୟରେ ଆମ ଅଗଣାରେ ଏକତ୍ର ହେଲୁ, ଅଧ୍ୟାପକ ବଂଧୁ କୃଷ୍ଣ ପ୍ରସାଦ ପଟ୍ଟନାୟକ, ଆଡ୍‌ଭୋକେଟ୍ ରଘୁନାଥ ଦାସ ଆଇନ ଛାତ୍ର ଅଖିଳ ମୋହନ ପଟ୍ଟନାୟକ ଓ ବିପିନ ବିହାରୀ ମହାନ୍ତି, ନବଯୁଗ ଗ୍ରନ୍ଥାଳୟର ତତ୍‌କାଳୀନ ପରିଚାଳକ ଗଗନ ବିହାରୀ ଜେନା ଓ ଅନ୍ୟ କେତେଜଣ ଯୁବ ଲେଖକ । ଭଗବତୀ ପାଣିଗ୍ରାହୀଙ୍କ ସଂପାଦନାରେ ପ୍ରକାଶିତ 'ଆଧୁନିକ' ବହୁ ଦିନରୁ ବନ୍ଦ ହୋଇଯାଇଥାଏ । ଏହି ବଂଧୁମିଳନର ଉଦ୍ଦେଶ୍ୟ ଥିଲା, ଏକ ନୂଆ ପ୍ରଗତିଶୀଳ ମାସିକ ପତ୍ରିକା ପ୍ରକାଶର ସଂଭାବନା ସଂପର୍କରେ ଆଲୋଚନା କରିବା ।

ଓଡ଼ିଶାରେ ଲେଖକଙ୍କର ଅଭାବ ନାହିଁ ବା ଓଡ଼ିଆ ଲେଖନୀ ଅନ୍ୟ କାହାଠାରୁ ହୀନ ନୁହେଁ । କିନ୍ତୁ ସବୁ ପତ୍ର ପତ୍ରିକାର ଆୟୁଷ ଥିଲା ସୀମିତ । ବିଭିନ୍ନ ସମୟରେ ବହୁ ପତ୍ର ପତ୍ରିକା ପ୍ରକାଶ ପାଇଛି, କିନ୍ତୁ ସବୁରି ସମଦଶା । ଉଚ୍ଚକୋଟୀର ସାହିତ୍ୟ-ପ୍ରତିଭାର ଅଭାବ ଏହାର କାରଣ ନୁହେ । ଅନେକେ ମନେ କରୁଥିଲେ, ବହି ଓ ପ୍ରତ୍ରପତ୍ରିକା ପଢ଼ିବା ପାଇଁ ଓଡ଼ିଶାରେ ପରଂପରା ନାହିଁ, ସେହି କାରଣରୁ ସେ ସବୁ ବିକ୍ରି ହୋଇ ପାରୁନାହିଁ । ଏ ବିଶ୍ଳେଷଣ ବୋଧହୁଏ ଠିକ୍ ନୁହେ । ଗାଁ ଗାଁରେ ରାମାୟଣ, ମହାଭାରତ ଓ ଭାଗବତ ପୋଥୀ ପଢ଼ିବା ଓଡ଼ିଶାର ଐତିହ୍ୟ । ସଂଧ୍ୟାହେଲେ ଗାଁ ଭାଗବତ ଟୁଙ୍ଗୀରେ ଦୀପ ଜାଳି ପୁରାଣ ପଢ଼ିବା ଓ ଶୁଣାଇବା ଏକ ଜାତୀୟ ପରଂପରା । ଅସଲ କଥା, ଯୁଦ୍ଧ ପୂର୍ବରୁ ଓଡ଼ିଶାରେ ଶିକ୍ଷାନୁଷ୍ଠାନ ଓ ଶିକ୍ଷିତ ଲୋକଙ୍କ ସଂଖ୍ୟା ଥିଲା ନଗଣ୍ୟ । ପୁସ୍ତକ ପ୍ରକାଶକ ଓ ବିକ୍ରେତାମାନଙ୍କର ସାଧାରଣ ସାହିତ୍ୟ ପ୍ରଚାର ପ୍ରତି ବିଶେଷ ଧ୍ୟାନ ନଥିଲା । ସାମାନ୍ୟ ପୁଞ୍ଜି ବିନିଯୋଗ କରି ପାଠ୍ୟ ପୁସ୍ତକ ବିକ୍ରୟ କରି ଅଧିକ ଲାଭ ଅର୍ଜନ ପ୍ରତି ପ୍ରକାଶକମାନେ ଧ୍ୟାନ ଦେଉଥିଲେ । ପତ୍ର ପତ୍ରିକା ପ୍ରକାଶ କରୁଥିଲେ କେବଳ କେତେକ ସାହିତ୍ୟ ସାଧକ କିମ୍ବା ସୌଖିନ ସାହିତ୍ୟିକ ଗୋଷ୍ଠି । ଖ୍ୟାତନାମା ସଂପାଦକ

ବିଶ୍ୱନାଥ କରଙ୍କ ମୃତ୍ୟୁ ପରେ 'ଉତ୍କଳ ସାହିତ୍ୟ'ର ଅବସାନ ଘଟିଲା । ପଣ୍ଡିତ ନୀଳକଂଠ ରାଜନୈତିକ ଜଗତରୁ ବିଚ୍ଛିନ୍ନ ହୋଇଯିବା ପରେ 'ନବ ଭାରତ' ବନ୍ଦ ହୋଇଗଲା । ବାମଣ୍ଡା ରାଜବଂଶର ଅନୁଦାନରେ ପ୍ରକାଶିତ ମାସିକ 'ଶଙ୍ଖ'ର ଅନୁଦାନ ଅଭାବରେ ମୃତ୍ୟୁ ଘଟିଲା । ଏଭଳି ବହୁ ଦୃଷ୍ଟାନ୍ତ ଦିଆଯାଇ ପାରେ । ଏଣୁ ବ୍ୟାବସାୟିକ ଭିତ୍ତିରେ କାଗଜ ପ୍ରକାଶ କରା ନ ହେଲେ, ତାର ସ୍ଥାୟିତ୍ୱ ବିଷୟରେ ଆମ୍ଭେମାନେ ସଂଦୀହାନ ଥିଲୁ । ଅବଶ୍ୟ ଆମ୍ଭମାନଙ୍କ ମଧ୍ୟରୁ କାହାରି ବ୍ୟାବସାୟିକ ଅଭିଜ୍ଞତା ବା ବ୍ୟାବସାୟିକ ସଂଗଠନ ସହିତ ସଂପର୍କ ନଥିଲା । ତଥାପି ଦେଶର ନୂତନ ପରିସ୍ଥିତିରେ ଏକ ଅଗ୍ରଗାମୀ ପତ୍ରିକାର ଆବଶ୍ୟକତା ସମସ୍ତେ ବିଶେଷ ଭାବେ ଅନୁଭବ କରୁଥିଲୁ । ବାଧା ବିଘ୍ନ ଭାଂଗି ଆଗେଇ ଯିବା ପାଇଁ ଆମ ଭିତରେ ଥିଲା ଅସୀମ ଉତ୍ସାହ ।

ବହୁ ଆଲୋଚନା ପରେ ସ୍ଥିର ହେଲା, ଗୋଟିଏ ମାସିକ ପତ୍ରିକା ପ୍ରକାଶିତ ହେବ ଓ ମୁଁ ତାର ପ୍ରକାଶନ ଓ ସଂପାଦନା ଦାୟିତ୍ୱରେ ରହିବି । ଅନ୍ୟମାନେ କାଗଜ ପାଇଁ ଲେଖାଲେଖିରେ ସହଯୋଗ କରିବେ । ଗଗନ ପରିଚାଳନାରେ ସାହାଯ୍ୟ କରିବେ । ପତ୍ରିକାରେ ନାମକରଣ କ'ଣ ହେବ, ସେ ବିଷୟରେ ମଧ୍ୟ ବଂଧୁମାନେ ବିଭିନ୍ନ ସୂଚନା ଦେଲେ । ଶେଷରେ ଅଧ୍ୟାପକ କୃଷ୍ଣ ପ୍ରସାଦ ପଟ୍ଟନାୟକଙ୍କ ପ୍ରସ୍ତାବ କ୍ରମେ ପତ୍ରିକାର ନାମ ରଖାହେଲା ''ସଂକେତ'' । ପାଠକମାନଙ୍କୁ ଆମେ କି ସଂକେତ ଦେବୁ ସେଥିପାଇଁ ବନ୍ଧୁମାନେ ଅପେକ୍ଷାରତ । ଏ ମଧ୍ୟରେ ହଠାତ୍ ଅଟକ ଆଇନ ବଳରେ ଗିରଫ ହେଲେ ଅଧ୍ୟାପକ କୃଷ୍ଣ ପ୍ରସାଦ । କିଛିଦିନ ପରେ ଅଖିଳ ମୋହନ ମଧ୍ୟ ଆଇନ କଲେଜ ହଷ୍ଟେଲରୁ ଗିରଫ ହେଲେ । କେନ୍ଦ୍ର ଗୃହମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ଅନୁସୃତ କମ୍ୟୁନିଷ୍ଟ ଦମନ ନୀତିର ସେମାନେ ଥିଲେ ସବୁଜ ଶିକାର । ଏଣୁ 'ସଂକେତ'ର ସଂପାଦନା ଓ ପରିଚାଳନାର ସମସ୍ତ ଦାୟିତ୍ୱ ପଡ଼ିଲା ମୋ ଉପରେ ।

ସେ ସମୟରେ ମନୋରମ ମୁଦ୍ରଣ ପରିପାଟୀ ପାଇଁ ଜଗନ୍ନାଥ ବଲ୍ଲଭ ଲକ୍ଷ୍ମୀନାରାୟଣ ପ୍ରେସର ବେଶ ସୁଖ୍ୟାତି ଥିଲା । ପ୍ରେସ ମାଲିକ ହାଦି ମିଆଁ ଉତ୍କଳ ସାହିତ୍ୟ ପ୍ରେସର ଜଣେ ପୂର୍ବତନ ମେସିନ୍‌ମ୍ୟାନ୍ । ଡବଲ ଡ଼ିମାଇ ମେସିନ୍ ପୁରୁଣା ହେଲେ ମଧ୍ୟ, ହାଦି ମିଆଁଙ୍କର ବ୍ୟକ୍ତିଗତ ତତ୍ତ୍ୱାବଧାନ ହେତୁ, ଲକ୍ଷ୍ମୀନାରାୟଣ ପ୍ରେସର ଛାପା ଥିଲା ସୁନ୍ଦର । ଏହି 'ସଂକେତ' ଛପାଇବା ପାଇଁ ମୁଁ ଜିଲା ମାଜିଷ୍ଟ୍ରେଟଙ୍କ ଆଗରେ ଡିକ୍ଲେଆରେସନ୍ ନେଲି ।

ପ୍ରେସ ଆଇନ ଅନୁଯାୟୀ ଏପରି ଡିକ୍ଲେଆରେସନ୍ ନ ନେଇ କୌଣସି ପତ୍ରିକା ପ୍ରକାଶ କରାଯାଇ ପାରିବ ନାହିଁ। ପ୍ରେସ ମାଲିକଙ୍କର ବିଶେଷ ଶିକ୍ଷାଦୀକ୍ଷା ନ ଥିଲା। ବହୁକ୍ଷେତ୍ରରେ ସେ ମ୍ୟାନେଜରଙ୍କ ଦ୍ୱାରା ପରିଚାଳିତ ହେଉଥିଲେ। ଗୋଟିଏ ଫର୍ମା ଛପା ହେବା ପରେ ମ୍ୟାନେଜର ଆତଙ୍କ ଗଣିଲେ। ହାଦି ମିଆଁ କହିଲେ, ସରକାର ବିରୋଧୀ ଲେଖା ଛାପିବା ପାଇଁ ନିଜ ପ୍ରେସର ନାମ ବ୍ୟବହାର କରିବାକୁ ସେ ଅକ୍ଷମ। ଯଦି ଅନ୍ୟ କୌଣସି ପ୍ରେସ୍ ନାମରେ ଡିକ୍ଲେଆରେସନ ନିଆଯାଏ, ତାହାହେଲେ କାଗଜ ଛାପିଦେବା ପାଇଁ ତାଙ୍କର ଆପତ୍ତି ନାହିଁ। ପ୍ରେସ ମାଲିକଙ୍କର ଭୟ ଏଡ଼ାଇବା ପାଇଁ ମୁଁ ସମର୍ଥ ନଥିଲି। ଏଣୁ ଆଉଥରେ ଡିକ୍ଲେଆରେସନ୍ କମ୍ୟୁନିଷ୍ଟ ପାର୍ଟିର 'ଭଗବତୀ ପ୍ରେସ୍' ନାମରେ ନିଆହେଲା। ଜୁନ ମାସରେ 'ସଂକେତ'ର ପ୍ରଥମ ସଂଖ୍ୟା ପ୍ରକାଶିତ ହେଲା।

ପତ୍ରିକାର ମଲାଟ ଉପରେ କ'ଣ ଛବି ଦିଆହେବ, ତାହା ଥିଲା ଚିନ୍ତାର ବିଷୟ। ମୋର ଶିକ୍ଷକ ଓ ଶୁଭାକାଂକ୍ଷୀ ଶିଳ୍ପୀ ଗୋପାଳ କାନୁନ୍‌ଗୋଙ୍କ ସହିତ ପରାମର୍ଶ କଲି। ଗୋପାଳ ବାବୁ ବି.ଏ. ପାସ କରି କଲିକତା ଆର୍ଟ ସ୍କୁଲରେ ଅଧ୍ୟୟନ କରିଥିଲେ। ଆର୍ଟ ସ୍କୁଲରୁ ପାସ କରିବା ପରେ ସେ ସରକାରୀ ଶିକ୍ଷକ ହେଲେ। ସେ ସମୟରେ କୌଣସି ଶିଳ୍ପୀ ପକ୍ଷରେ ପୂରା ସମୟ ଦେଇ ନିଜକୁ ଶିଳ୍ପକଳାରେ ନିଯୋଗ କରିବା ସଂଭବପର ନଥିଲା। ଶିଳ୍ପୀମାନଙ୍କୁ ଜୀବିକା ଚଳାଇବା ପାଇଁ ଚାକିରୀ ଗ୍ରହଣ କରିବାକୁ ହେଉଥିଲା। ଗୋପାଳ ବାବୁ ଔପନ୍ୟାସିକ କାଳିନ୍ଦୀ ବାବୁ ଓ କବି ବୈକୁଣ୍ଠ ନାଥ ପଟ୍ଟନାୟକଙ୍କର ସମସାମୟିକ ଓ ବଂଧୁ, ଏଣେ କଲେଜିଏଟ୍ ସ୍କୁଲରେ ଶିକ୍ଷକ। ସେହି ସୂତ୍ରରେ ୧୯୩୮ ମସିହାରୁ ତାଙ୍କ ସହିତ ଆତ୍ମୀୟତା। ଅଣଚାଳିଶ ମସିହାରେ ଛାତ୍ର ଆନ୍ଦୋଳନ ପ୍ରତି ସହାନୁଭୂତି ପ୍ରକାଶ କରିବା ଅଭିଯୋଗରେ ତାଙ୍କୁ ସମ୍ବଲପୁର ଜିଲ୍ଲା ସ୍କୁଲକୁ ବଦଳି କରା ହୋଇଥିଲା। ଅଠଚାଳିଶ ବେଳକୁ ସେ ବ୍ରହ୍ମପୁର ଟ୍ରେନିଂ ସ୍କୁଲର ଆର୍ଟ ଶିକ୍ଷକ। ଗୋପାଳ ବାବୁ ସଂକେତର କଭର ପେଜ ପାଇଁ ଏକ ଛବି ଆଂକିଲେ। ଜଣେ ଯୁବକ ହସ୍ତପଦର ଶୃଙ୍ଖଳ ଛିନ୍ନ କରି ଦୃଢ଼ ହସ୍ତରେ ଶପଥ ଗ୍ରହଣ କରୁଛି, ଯୁବକର ରକ୍ତଚକ୍ଷୁ ଓ ମୁଖରେ ପ୍ରସ୍ଫୁଟିତ ବିକ୍ଷୋଭର ବହ୍ନି ଯେପରି ଦୁନିଆର ସମସ୍ତ ଅନ୍ୟାୟ ଅନାଚାର ବିରୁଦ୍ଧରେ ଉଦ୍ଦିଷ୍ଟ। 'ସଂକେତ'ର ଅନ୍ତର୍ନିହିତ ବାର୍ତ୍ତାକୁ ଚିତ୍ରଶିଳ୍ପୀ କାନୁନ୍‌ଗୋ ଯେପରି ରୂପ ଦେଇଥିଲେ, ତାହା ଅଦ୍ୱିତୀୟ।

'ସଂକେତ'ର ପ୍ରଥମ ସଂଖ୍ୟାରେ ଲେଖିଥିଲେ କବି ସଚ୍ଚିଦାନନ୍ଦ ରାଉତରାୟ ଗାଳ୍ପିକ ସୁରେନ୍ଦ୍ର ମହାନ୍ତି, ଆଡ୍‌ଭୋକେଟ୍ ରଘୁନାଥ ଦାସ ଓ ନଳିନୀ ପାଣିଗ୍ରାହୀ (ବର୍ତ୍ତମାନ ଶତପଥୀ) ପ୍ରମୁଖ। ଚୀନ ବିପ୍ଳବର ଆଗୁଆ ବାହିନୀ ରେଡ୍ ଆର୍ମିକୁ ସଂବର୍ଦ୍ଧନା ଜଣାଇ ସଚ୍ଚିବାବୁଙ୍କ କବିତା 'ପଦଧ୍ୱନି' ସଂକେତର ପୃଷ୍ଠା ମଣ୍ଡନ କରିଥିଲା।

"କିଏ ଆସିବେ ଜଣା ନାହିଁ
ଜଣା ନା ଅଜଣା ?
ମନେ ହୁଏ ପରିଚିତ ତାଙ୍କର ଠିକଣା
ପାଇଛି ମୁଁ ଖୋଜି ଏତେ ଦିନେ
ଲକ୍ଷ ଲକ୍ଷ ଭୋକିଲା ମୁହଁର ମାଂସପେଶୀରେ।
ସେମାନଙ୍କ କରାଘାତ ଶୁଣେ
ବହୁଦୂରେ ସାଂଘାଇ ପ୍ରାଚୀରେ.."

ପରେ ଏହି କିବତାଟି ପୁନର୍ଲିଖିତ ହୋଇ ସଚ୍ଚି ରାଉତରାୟ ଗ୍ରଂଥାବଳୀରେ ପ୍ରକାଶିତ ହୋଇଛି। ରଘୁନାଥ ଦାସଙ୍କ ଦୀର୍ଘ କବିତା "ଅଗଷ୍ଟ ପନ୍ଦର" ଚିନ୍ତାଶୀଳ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା। ଗଳ୍ପ ବିଭାଗରେ ସୁରେନ୍ଦ୍ର ମହାନ୍ତିଙ୍କର "ସତର ନମ୍ବର ଓ୍ୱାର୍ଡ଼" ନନ୍ଦିନୀ ଦେବୀଙ୍କର ଏକ ଋଷିଆନ୍ ଗଳ୍ପର ଅନୁବାଦ "ବେତଲତା" ଓ ମୋ ଲିଖିତ "ବାଖରାବାଦର ଗୁଣ୍ଡା" ପ୍ରକାଶିତ ହୋଇଥିଲା। "ବାଖରାବାଦର ଗୁଣ୍ଡା" ତତ୍କାଳୀନ କଂଗ୍ରେସ ନେତୃତ୍ୱର ଚାଲବାଜି ଉପରେ ଥିଲା ଏକ ଶାଣିତ ଉପହାସ। ଅବଶ୍ୟ ଗଳ୍ପଟି ଛଦ୍ମ ନାମରେ ପ୍ରକାଶ ପାଇଥିଲା। ସଂପାଦକଙ୍କ ନିଜ ନାମରେ ଏତେ ଗୁଡ଼ିଏ ଲେଖା ପ୍ରକାଶ କରିବା ଶାଳୀନତା ବିରୋଧୀ ମନେ କରିଥିଲି। ପରେ ଏହି ଗଳ୍ପଟି 'ନ'ଟି ଗପ' ଶୀର୍ଷକ ବହିରେ ସ୍ଥାନ ପାଇଛି। ଏହି ସମୟରେ ଗୋପୀନାଥ ମହାନ୍ତିଙ୍କର ସୁବିଖ୍ୟାତ ଉପନ୍ୟାସ 'ପରଜା' ପ୍ରକାଶିତ ହୋଇଥାଏ। ଏ ବହିର ଏକ ସମୀକ୍ଷାରେ ମୁଁ ଲେଖିଥିଲି 'ପରଜା' ଗୋପୀନାଥ ମହାନ୍ତିଙ୍କୁ ଓଡ଼ିଆ ଉପନ୍ୟାସ ଜଗତର ଶୀର୍ଷ ସ୍ଥାନରେ ପହଂଚାଇ ଦେଇଛି। 'ପରଜା'ର ମୁଖ୍ୟ ଚରିତ୍ର ଶୁକ୍ରୁଜାନି ଯେପରି ଅତ୍ୟାଚାର ସହି ନ ପାରି ବିଦ୍ରୋହ କରିଛି, ସେ ସଂପର୍କରେ ମୋର ତୁଳନାତ୍ମକ ବିଶ୍ଳେଷଣରେ କେହି ଆପତ୍ତି କରି ନଥିଲେ। ପରେ ଜାଣିଲି, ଲେଖକଙ୍କ ଉପରେ ଉପରୋକ୍ତ ମନ୍ତବ୍ୟରେ ବହୁ ବିଶିଷ୍ଟ ଔପନ୍ୟାସିକ ମର୍ମାହତ ହୋଇଛନ୍ତି। ମୋର ସଂପର୍କୀୟ ଜଣେ ବିଶିଷ୍ଟ ସାହିତ୍ୟିକ

(ନାମ ଲେଖିବା ଉଚିତ ହେବ ନାହିଁ) ଏ ମୂଲ୍ୟାୟନ ସଂପୂର୍ଣ୍ଣ ଭୁଲ ବୋଲି ମତେ ସ୍ପଷ୍ଟ ଭାବରେ କହିଥିଲେ । ଲେଖକମାନଙ୍କ ମଧ୍ୟରେ ଏପରି ପରଶ୍ରୀକାତରତା ଅଛି ବୋଲି ମତେ ଆଗରୁ ଜଣା ନଥିଲା ।

'ସଂକେତ'ର ପରବର୍ତ୍ତୀ ସଂଖ୍ୟାଗୁଡ଼ିକ ଥିଲା ଅନୁରୂପ ବିପ୍ଳବଧର୍ମୀ । ମାର୍କ୍ସବାଦୀ ଦୃଷ୍ଟିକୋଣରୁ ଲିଖିତ ସାହିତ୍ୟ ସମାଲୋଚନାକୁ ପ୍ରାଧାନ୍ୟ ଦିଆ ଯାଉଥିଲା । କଳ୍ପନା କୁଞ୍ଜର ସ୍ୱପ୍ନ ବିଳାସ ପରିବର୍ତ୍ତେ ବାସ୍ତବବାଦୀ ଗଳ୍ପ ଓ କବିତାକୁ ପ୍ରୋତ୍ସାହିତ କରାଯାଉଥିଲା । ପ୍ରତି ସଂଖ୍ୟାରେ ନବ ପ୍ରକାଶିତ ଓଡ଼ିଆ ବହି ଉପରେ ବିଚାର ଆଲୋଚନା, ଏପରିକି ଅନ୍ନପୂର୍ଣ୍ଣା, 'ବି' ଗ୍ରୁପ ଓ ଓଡ଼ିଶା ଥିଏଟରରେ ଅଭିନୀତ ନାଟକର ସମୀକ୍ଷା ମଧ୍ୟ ପ୍ରକାଶିତ ହେଉଥିଲା । 'ସଂକେତ' ଥିଲା ପ୍ରଗତିଶୀଳ ସାହିତ୍ୟର ମୁଖପତ୍ର । ଅବଶ୍ୟ ଏ ପ୍ରକାର ଲେଖା ସଂଗ୍ରହ କରିବା ଥିଲା ଦୁରୂହ ବ୍ୟାପାର । ପ୍ରଗତିଶୀଳ ଲେଖକଙ୍କର ସଂଖ୍ୟା ଥିଲା ସୀମିତ । ତଦୁପରି ୧୯୪୮-୪୯ ମସିହାରେ ସେମାନଙ୍କ ମଧ୍ୟରୁ ଅନେକେ ଥିଲେ ଅନ୍ତରୀଣ ବନ୍ଦୀ । ଓଡ଼ିଆରେ କହନ୍ତି "ବେଙ୍କରେ ପଡ଼ିଲେ ବଙ୍ଗେଇ ଶିଖନ୍ତି" । ମୋର ଅଭିଜ୍ଞତା ଅନୁରୂପ । 'ସଂକେତ' ପାଇଁ ସଂପାଦକୀୟ, ଟୀକା ଟିପ୍ପଣୀ ଓ ପୋଥି ବିଚାର ସମେତ, ପ୍ରତି ସଂଖ୍ୟା ପାଇଁ ଅନ୍ତତଃ ଗୋଟିଏ ଗଳ୍ପ ଓ କବିତା ଲେଖିବାକୁ ହେଉଥିଲା । ଅବଶ୍ୟ ସେ ସବୁ ଛଦ୍ମନାମରେ ପ୍ରକାଶିତ ହୁଏ । ଅଧ୍ୟାପକ କୃଷ୍ଣ ପ୍ରସାଦ ପଟ୍ଟନାୟକ ଜେଲରୁ ଖଣ୍ଡେ ପତ୍ର ଲେଖିଥିଲେ "ସଂକେତର ସଂପାଦନା ଉତ୍ସାହପ୍ରଦ ଓ ଗଳ୍ପ ଗୁଡ଼ିକ ଉଚ୍ଚକୋଟୀର ହେଉଛି । କିନ୍ତୁ ଛଦ୍ମନାମଧାରୀ ଲେଖକଙ୍କର ସ୍ପଷ୍ଟ ପରିଚୟ ନ ଦେଉଛ କାହିଁକି ?" କେତେ ମାସ ପରେ ସେ ଜେଲରୁ ଖଲାସ ହେବା ପରେ ଏ ବିଷୟରେ ଆଲୋଚନା ହେଲା । ମୁଁ କହିଲି, ଗୋଟିଏ ସଂଖ୍ୟାରେ ସଂପାଦକଙ୍କ ନାମରେ ଏକାଧିକ ଲେଖା ପ୍ରକାଶ କରିବା ରୁଚି ସଂଗତ ହୋଇନଥାନ୍ତା, ସେଥିପାଇଁ ଛଦ୍ମନାମର ପ୍ରୟୋଗ । ବିଚକ୍ଷଣ ପ୍ରତିଭାବାନ୍ ପୁରୁଷ କୃଷ୍ଣ ପ୍ରସାଦ ଆଜି ନାହାନ୍ତି । ହୃଦ୍ ରୋଗରେ ପୀଡ଼ିତ ହୋଇ ଗତ ପାଂଚ ବର୍ଷ ତଳେ ସେ ବିଦାୟ ନେଲେ । କିନ୍ତୁ ତାଙ୍କର ହସ ହସ ମୁହଁ ଓ ମଧୁର ବ୍ୟବହାର ମନରୁ ପାଶୋର ଯିବ ନାହିଁ ।

ଓଡ଼ିଶାରେ ବହୁ ପତ୍ରପତ୍ରିକାର ଅକାଳ ମୃତ୍ୟୁ ଘଟିଛି । ଅର୍ଥାଭାବ ଏହାର ମୁଖ୍ୟ କାରଣ । 'ସଂକେତ'ର ପ୍ରକାଶକ ଗୋଷ୍ଠୀଙ୍କର ଯେ ଅର୍ଥାଭାବ ନଥିଲା,

ତା ନୁହେ । କିନ୍ତୁ ନିଜ ଉଦ୍ୟମରେ ଆମ୍ଭେମାନେ କୌଣସି ମତେ ଗୁଜୁରାଣ ମେଣ୍ଟାଇ ନେଉଥିଲୁ । 'ସଂକେତ' ବନ୍ଦ ହେବାର ମୁଖ୍ୟ କାରଣ ଥିଲା ସଂପୂର୍ଣ୍ଣ ରାଜନୈତିକ । କମ୍ୟୁନିଷ୍ଟ ପାର୍ଟି ରଣଦିବେଙ୍କ ନେତୃତ୍ୱରେ ଏପରି କେତେକ ନୀତି ଓ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ, ଯାହା ସହିତ ମୁଁ ସହମତ ହୋଇ ପାରିନଥିଲି । ସ୍ୱାଧୀନ ଭାରତର ନବ ପ୍ରତିଷ୍ଠିତ ସରକାର ବିରୁଦ୍ଧରେ ୧୯୪୮ ମସିହାରେ କମ୍ୟୁନିଷ୍ଟ ଦଳ ସଶସ୍ତ୍ର ସଂଘର୍ଷ ନୀତି ଅନୁସରଣ କରିବାକୁ ନିଷ୍ପତ୍ତି ନେଇଥିଲେ । ହାଇଦରାବାଦର ତେଲେଙ୍ଗାନା ଚାଷୀମାନଙ୍କର ସଶସ୍ତ୍ର ଆନ୍ଦୋଳନ ଏହି କାର୍ଯ୍ୟକ୍ରମର ଅଂଶ ବିଶେଷ । ମୋ ମତରେ ଏ କାର୍ଯ୍ୟକ୍ରମ ଥିଲା ସଂପୂର୍ଣ୍ଣ ଅଗଣତାନ୍ତ୍ରିକ ଓ ଅବାସ୍ତବ ଏବଂ ଏହା ଦ୍ୱାରା କମ୍ୟୁନିଷ୍ଟ ପାର୍ଟି ଜନସାଧାରଣଙ୍କ ଠାରୁ ଆହୁରି ବିଚ୍ଛିନ୍ନ ହୋଇଯିବ । ଏ ନୀତିକୁ ସଫଳ କରିବା ପାଇଁ କମ୍ୟୁନିଷ୍ଟ ଦଳର ରାଜନୈତିକ ଓ ସାଂଗଠନିକ ଦକ୍ଷତା ନାହିଁ । ଏଣୁ ଏ କାର୍ଯ୍ୟକ୍ରମରେ ସହଯୋଗ କରିବା ପରିବର୍ତ୍ତେ ମୁଁ ନୀରବ ରହିଥିଲି ।

ଏହି ସମୟରେ ସୋଭିଯେଟ୍ କମ୍ୟୁନିଷ୍ଟ ପାର୍ଟିର ପ୍ରବକ୍ତା ଝାଡ୍ନଭ୍‌ଙ୍କ ନେତୃତ୍ୱରେ ଉଗ୍ର ଷ୍ଟାଲିନ୍‌ବାଦ ସୋଭିଯେଦ୍ ୟୁନିଅନ୍‌ରେ ମୁଣ୍ଡ ଟେକି ଥିଲା । ପାର୍ଟି ମଧ୍ୟରେ ଗଣତାନ୍ତ୍ରିକ ବିଚାର ଧାରା ସଂପୂର୍ଣ୍ଣ ଲୋପ ପାଇଥିଲା ଓ କୌଣସି ପ୍ରକାରର ଭିନ୍ନ ମତକୁ ପ୍ରଶ୍ରୟ ଦିଆଯାଉ ନଥିଲା । ଶୃଙ୍ଖଳା ନାମରେ ବ୍ୟକ୍ତିପୂଜା ଓ ରକ୍ଷଣଶୀଳ ସଂକୀର୍ଣ୍ଣତା ପାର୍ଟି ଜୀବନର ସବୁ ସ୍ତରରେ ପ୍ରବେଶ କରିଥିଲା । ଏହି ବ୍ୟକ୍ତିକେନ୍ଦ୍ରିକ ଓ ଅଗଣତାନ୍ତ୍ରିକ ନୀତିର ପ୍ରଭାବରେ ଭାରତୀୟ କମ୍ୟୁନିଷ୍ଟ ସଂଗଠନ ମଧ୍ୟରେ ଦେଖାଦେଲା ଉତ୍କଟ ବିଭେଦ । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସୁଦକ୍ଷ ସଂପାଦକ ପି.ସି. ଯୋଶୀ ଦଳର ସଂପାଦକ ପଦରୁ ବିତାଡ଼ିତ ହେଲେ । ଅଭିଯୋଗ ହେଲା, ନବ ପ୍ରତିଷ୍ଠିତ ସ୍ୱାଧୀନ ସରାକାରଙ୍କ ପ୍ରତି ସେ ସଂବେଦନଶୀଳ ଓ ସହଯୋଗମୂଳକ ନୀତି ଅବଲମ୍ବନ କରୁଛନ୍ତି ଓ ତାଙ୍କର କାର୍ଯ୍ୟକଳାପ ବିପ୍ଳବର ପରିପନ୍ଥୀ । ସୋଭିଯେଟ୍ କମ୍ୟୁନିଷ୍ଟ ପାର୍ଟି ମୁଖପତ୍ରରେ ଜହରଲାଲ ନେହୁରୁଙ୍କୁ ସାମ୍ରାଜ୍ୟବାଦର ଓ୍ୱାଚ୍ ଡଗ୍ ବା ରକ୍ଷା ପ୍ରହରୀ ଭାବରେ ଚିତ୍ରିତ କରା ହୋଇଥିଲା । ଯେଉଁମାନେ ପାର୍ଟିର ସଶସ୍ତ୍ର ସଂଗ୍ରାମ କାର୍ଯ୍ୟକ୍ରମ ସହିତ ସହମତ ନଥିଲେ ପାର୍ଟି ଦୃଷ୍ଟିରେ ସେମାନେ ଥିଲେ ସଂସ୍କାରବାଦୀ ବା ରିଫର୍ମିଷ୍ଟ । ସେମାନଙ୍କର ନିଷ୍ଠା ଓ ସାଧୁତାକୁ ମଧ୍ୟ ସଂଦେହ କରାଯାଉଥିଲା । 'ସଂକେତ' ଏହି ବିଷମୟ ପ୍ରତିକ୍ରିୟାର ଶିକାର ହେଲା ।

ଏହି ସମୟରେ ବହୁ ବିଶିଷ୍ଟ କମ୍ୟୁନିଷ୍ଟ ନେତା ହୁଏତ ଅନ୍ତରୀଣ ବନ୍ଦୀ ଥିଲେ କିମ୍ବା ଅଣ୍ଡରଗ୍ରାଉଣ୍ଡ ରହିଥିଲେ । ଆତ୍ମଗୋପନରେ ରହିଥିବା କମ୍ୟୁନିଷ୍ଟ ନେତୃତ୍ୱର ସଂପାଦକ ଥିଲେ ସାଥୀ ରାମକୃଷ୍ଣ ପତି । ସେ ମୋଠାରୁ ବୟସରେ ପ୍ରାୟ ସାତ ଆଠ ବର୍ଷ ବଡ଼ । କିନ୍ତୁ ଆମେ ଉଭୟେ ୧୯୪୦ ମସିହାରେ କମ୍ୟୁନିଷ୍ଟ ଦଳ ସହ ସଂଶ୍ଳିଷ୍ଟ ହେଲୁ । ଅବସ୍ଥା ଚକ୍ରରେ ୧୯୪୮ ମସିହାରେ ସେ ପାର୍ଟିର ସଂଚାଳକ ଥିଲେ ଏବଂ ଅଜ୍ଞାତବାସରେ ରହି ପାର୍ଟିର କାର୍ଯ୍ୟକଳାପ ନିୟନ୍ତ୍ରଣ କରୁଥିଲେ । କିନ୍ତୁ ତାଙ୍କର ଦକ୍ଷତା ଓ କର୍ମ କୁଶଳତା ଉପରେ ମୋର ବିଶେଷ ଅସ୍ଥା ନଥିଲା । କୌଣସି ପ୍ରକାର ଜନ ଆନ୍ଦୋଳନର ଅଭିଜ୍ଞତା ନଥାଇ ମଧ୍ୟ ସେ ନିଜକୁ ଜଣେ ବଡ଼ ସଂଗଠକ ମନେ କରୁଥିଲେ । ମାର୍କ୍ସବାଦୀ ଦର୍ଶନ ଓ ସାହିତ୍ୟରେ ବିଶେଷ ପ୍ରବେଶ ନଥାଇ ମଧ୍ୟ ସେ ନିଜକୁ ଜଣେ ଦକ୍ଷ ଥିଓରେଟିସିଆନ ବା ନୀତି ବାଗୀଶ ରୂପେ ବିବେଚନା କରୁଥିଲେ । 'ସଂକେତ'ର କେତୋଟି ସଂଖ୍ୟା ପ୍ରକାଶିତ ହେବା ପରେ କମ୍ୟୁନିଷ୍ଟ ପାର୍ଟିର ଅଣ୍ଡର ଗ୍ରାଉଣ୍ଡ ଅଫିସରୁ ଏକ ଅଶୁଭ ଇଂଗିତ ଆସିଲା । ମୋତେ ନିର୍ଦ୍ଦେଶ ଦିଆହେଲା, 'ସଂକେତ' ଏଣିକି ପାର୍ଟି ନେତୃତ୍ୱ ଦ୍ୱାରା ସଂପାଦିତ ହେବ, ଲେଖାଗୁଡ଼ିକ ଯଥାସଂଭବ ସେମାନେ ଲେଖିବେ କିମ୍ବା ତାଙ୍କ ଦ୍ୱାରା ମନୋନୀତ ହେବ ଏବଂ କାଗଜ କଲମରେ ମୁଁ ରହିବି ସଂପାଦକ । ଚିଠି ଖଣ୍ଡ ପଢ଼ି ମୁଁ ଅତ୍ୟନ୍ତ ବିସ୍ମିତ ହେଲି । ଲେଖା ଓ ସଂପାଦନା ଉପରେ ମୋର କର୍ତ୍ତୃତ୍ୱ ରହିବ ନାହିଁ, ଅଥଚ ମୁଁ ରହିବି ପ୍ରକାଶକ ଓ ସଂପାଦକ? ଯେଉଁ ନୀତି ଓ କାର୍ଯ୍ୟକ୍ରମ ସହିତ ମୁଁ ଏକମତ ନୁହେ, ସେ ସବୁ ମୋ ନାମରେ ପ୍ରକାଶ ପାଇବ କିପରି? ଏପରି ଅବାସ୍ତବ ଓ ଅସମ୍ମାନ ଜନକ ପ୍ରସ୍ତାବ ମୋ ପକ୍ଷରେ ଗ୍ରହଣୀୟ ହେଲା ନାହିଁ । ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏ ପ୍ରକାର ନିୟନ୍ତ୍ରଣର ବିରୋଧ କରିବାକୁ ମନସ୍ଥ କଲି । ମୁଁ ଉତ୍ତର ଦେଲି, ଯଦି କମ୍ୟୁନିଷ୍ଟ ପାର୍ଟି 'ସଂକେତ' ପ୍ରକାଶ କରିବାର ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛନ୍ତି, ତାହେଲେ କାଗଜ ସଂପାଦନାର ସମସ୍ତ ଦାୟିତ୍ୱରୁ ମୁଁ ଅପସରି ଯିବାକୁ ପ୍ରସ୍ତୁତ ଅଛି । ଶୁଣିଲି ପ୍ରତ୍ୟୁତ୍ତର ପାଇ ପାର୍ଟିର ସଂଚାଳକ ଖଡ୍ଗହସ୍ତ ହେଲେ । ତଥାପି, ମୁଁ ଭାବିଲି ସେ ତାଙ୍କର ଅପରିପକ୍ୱ ନିଷ୍ପତ୍ତିରେ ଆଗେଇବେ ନାହିଁ ଏବଂ ଏ ଅଧ୍ୟାୟର ବୋଧ ହୁଏ ଏଇଠି ପରିସମାପ୍ତି ଘଟିବ । କିନ୍ତୁ ପ୍ରତି ଆକ୍ରମଣ ଆସିଲା ଭିନ୍ନ ରୂପରେ

ଆଗରୁ କହିଛି, ଗୋଟିଏ ଅଗ୍ରଗାମୀ ପତ୍ରିକା ଛାପିବା ପାଇଁ ସାଧାରଣ ପ୍ରେସ ମାଲିକମାନେ ଆଗ୍ରହୀ ନଥିଲେ। ସରକାରଙ୍କ ଲାଲଚକ୍ଷୁ ଭୟରେ ମୁଦ୍ରାକରମାନେ ଆତଙ୍କ ଗଣୁଥିଲେ। ସେଥିପାଇଁ 'ସଂକେତ' ଲକ୍ଷ୍ମୀନାରାୟଣ ପ୍ରେସରେ ଛପାହେଲେ ମଧ୍ୟ, ମୁଦ୍ରାକରଙ୍କ ନାମ ଥିଲା 'ଭଗବତୀ ପ୍ରେସ'। ଅଳ୍ପଦିନ ପରେ ପାର୍ଟିକର୍ତ୍ତାଙ୍କ ନିର୍ଦ୍ଦେଶରେ ଭଗବତୀ ପ୍ରେସର ମ୍ୟାନେଜରଙ୍କ ଠାରୁ ଖଣ୍ଡେ ଚିଠି ଆସିଲା, ଭଗବତୀ ପ୍ରେସର ନାମ ବ୍ୟବହାର କରିବାକୁ ହେଲେ ସେଥିପାଇଁ ମାସକୁ ମାସ ଟଂକା ଦେବାକୁ ହେବ। ଭଗବତୀ ପ୍ରେସ ନାମରେ ମୁଦ୍ରାକର ଡିକ୍ଲେଆରେସନ୍ ନେବା ସମୟରେ ଏପରି କୌଣସି ସର୍ତ୍ତ ନଥିଲା। ଦୁଇଟି ପ୍ରେସରେ ମୁଦ୍ରଣ ଖର୍ଚ୍ଚ ଦେବା ପାଇଁ ଆମର ସମ୍ବଳ ମଧ୍ୟ ନଥିଲା। ଏକ ପ୍ରଗତିଶୀଳ ପତ୍ରିକା ପ୍ରକାଶରେ ସହଯୋଗ କରିବା ପରିବର୍ତ୍ତେ, କମ୍ୟୁନିଷ୍ଟ ନେତୃତ୍ୱ ବେଆଇନ ପାଉଣା ଦାବୀ କରିବାକୁ କୁଣ୍ଠିତ ନୁହନ୍ତି, ମୁଁ ଏଥିରେ ସଂପୂର୍ଣ୍ଣ ବିଚଳିତ ହୋଇ ପଡ଼ିଲି। 'ସଂକେତ' ବନ୍ଦ କରିବା ପାଇଁ ରାମକୃଷ୍ଣ ପତି ଯେ ବଦ୍ଧ ପରିକର, ଏଥିରେ ଆଉ ସଂଦେହ ରହିଲା ନାହିଁ।

ଅନ୍ତିମ ଆଘାତ ଆଉ ଡେରି ନଥିଲା।ପ୍ରାୟ ଏକ ମାସ ପରେ ଭଗବତୀ ପ୍ରେସର ନାମ ବ୍ୟବହାର ନ କରିବାକୁ ନିର୍ଦ୍ଦେଶ ଆସିଲା। ଏ ନିର୍ଦ୍ଦେଶ ଥିଲା ଫାଶୀର ପରଓ୍ୱାନା। ଅନ୍ୟ ପ୍ରେସରେ ମୁଦ୍ରଣ ବ୍ୟବସ୍ଥା କରିବାକୁ ଉଦ୍ୟମ କଲି। କିନ୍ତୁ ସମସ୍ତେ ଭୟ କଲେ। 'ସଂକେତ' ସବୁଦିନ ପାଇଁ ନିର୍ବେଦ ହୋଇଗଲା।



# ସ୍ୱପ୍ନ କୁହେଳୀ

ଯେଉଁ ବିଷାଦପୂର୍ଣ୍ଣ ପରିସ୍ଥିତିରେ 'ସଂକେତ' ପତ୍ରିକା ବନ୍ଦ ହୋଇଗଲା, ବନ୍ଧୁ ମହଲରେ ତାହା ବେଶ ଆଲୋଡ଼ନ ସୃଷ୍ଟି କରିଥିଲା । ପ୍ରକୃତ କାରଣ ଜାଣିବା ପାଇଁ ଅନେକ ଶୁଭାକାଂକ୍ଷୀ ଓ ବନ୍ଧୁ ମତେ ଗୁଡ଼େଇ ତୁଡ଼େଇ ପ୍ରଶ୍ନ କରିଥିଲେ । କିନ୍ତୁ ସବୁ କଥା ଖୋଲାଖୋଲି କହିବା ମୋ ପକ୍ଷରେ ସଂଭବ ନଥିଲା । କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକ୍ରମ ସହିତ ଗୁରୁତର ମତଭେଦ ଓ କେତେଜଣ ସ୍ଥାନୀୟ ନେତାମାନଙ୍କ ସହିତ ମନୋମାଳିନ୍ୟ ସତ୍ତ୍ୱେ, ପାର୍ଟିର କ୍ଷତି ହେଲା ଭଳି କୌଣସି କାର୍ଯ୍ୟ କରିବାକୁ ମୁଁ ପ୍ରସ୍ତୁତ ନଥିଲି । 'ସଂକେତ'ରେ କେତେକ ବିଶିଷ୍ଟ ଲେଖକଙ୍କର ଯେଉଁ ଲେଖା ପ୍ରକାଶିତ ହୋଇଥିଲା କମ୍ୟୁନିଷ୍ଟ ପତ୍ରିକାରେ ସେ ଗୁଡ଼ିକୁ ସଂସ୍କାରବାଦୀ ବା ରିଫର୍ମିଷ୍ଟ ଲେଖା ବୋଲି ସମାଲୋଚନା କରାଯାଇଥିଲା । ଚାଇନିଜ ରେଡ୍ ଆର୍ମିର ସ୍ୱାଗତିକା କବି ସଚ୍ଚି ରାଉତରାୟଙ୍କ ଲିଖିତ ''କିଏ ଆସିବେ ଜାଣେ ନାଇଁ, ଜଣା ନା ଅଜଣା; ଶୁଣେ ତାଙ୍କ ପଦଧ୍ୱନି ସାଂଘାଇ ପ୍ରାଚୀରେ'' କବିତାର ସମୀକ୍ଷା ହେଲା ଯେ କବି ତାଙ୍କ ସଂସ୍କାରବାଦୀ ଚିନ୍ତାରେ ଏତେ ମଗ୍ନ ଯେ, ସେ ଲାଲ ବାହିନୀର ସ୍ୱରୂପ ଦେଖି ପାରୁନାହାନ୍ତି । ଗାର ପକାଇ କବିତା ଲେଖାଯାଏ ନାହିଁ । କିଏ କେଉଁ ରୀତିରେ, କେଉଁ ଭାଷାରେ ଅନ୍ତରର ଭାବନାକୁ ରୂପ ଦିଏ ତାହା କବିଙ୍କର ସଂପୂର୍ଣ୍ଣ ନିଜସ୍ୱ । 'ପଦଧ୍ୱନି' କବିତାରେ ଯେ ଚୀନ୍ ବିପ୍ଳବୀମାନଙ୍କର ସାଂଘାଇ ପ୍ରବେଶକୁ ସ୍ୱାଗତ କରାଯାଉଥିଲା, ଏଥିରେ ସନ୍ଦେହର ଅବକାଶ ନଥିଲା । ଅଥଚ ବି.ଟି. ରଣଦିବେଙ୍କ କଳା ଚଷମା ପିନ୍ଧି କେତେକ ମାର୍କ୍ସବାଦୀ ବନ୍ଧୁ ରକ୍ତପାତ ଓ ସଂହାର ବ୍ୟତୀତ ଅନ୍ୟ ସର୍ବତ୍ର କେବଳ ଅନ୍ଧାର ଦେଖୁଥିଲେ ।

ପ୍ରଖ୍ୟାତ ଗାଳ୍ପିକ ସ୍ୱର୍ଗୀୟ ସୁରେନ୍ଦ୍ର ମହାନ୍ତିଙ୍କ 'ସତର ନମ୍ବର ଓ୍ୱାର୍ଡ଼' ଗଳ୍ପର ସମାଲୋଚନା ହେଲା ଯେ ସତର ନମ୍ବର ଓ୍ୱାର୍ଡ଼ର ବନ୍ଦୀର ଭାବନା ବିପ୍ଳବୀର ଚିନ୍ତାଧାରା ନୁହେ । ସୁରେନ୍ଦ୍ର ମହାନ୍ତି କେବେ କମ୍ୟୁନିଷ୍ଟ ନଥିଲେ ବା ତାଙ୍କର ରାଜନୀତି ସହିତ ମୋର କୌଣସି ସଂପର୍କ ନଥିଲା । କିନ୍ତୁ ସେ ମୋର ସମସାମୟିକ ଓ ବ୍ୟକ୍ତିଗତ ବନ୍ଧୁ । ଜୀବନର ପ୍ରାରମ୍ଭ କାଳରେ ସୁବିଖ୍ୟାତ ବିପ୍ଳବୀ ମାନବେନ୍ଦ୍ର ନାଥ ରାୟଙ୍କ ପ୍ରତିଷ୍ଠିତ ରାଡ଼ିକାଲ ଡିମୋକ୍ରେଟିକ ଦଳ ସହିତ ସେ ସଂଶ୍ଳିଷ୍ଟ ଥିଲେ । ସାହିତ୍ୟିକ ମୂଲ୍ୟାୟନ ଦୃଷ୍ଟିରୁ ତାଙ୍କର ଗଳ୍ପ ଗୁଡ଼ିକ ଥିଲା ଉଚ୍ଚକୋଟୀର । ଏଣୁ ମାର୍କ୍ସବାଦୀ ଦୃଷ୍ଟିକୋଣରୁ ତାଙ୍କର

ଗଳ୍ପର ସମୀକ୍ଷା ଏକ ନିରର୍ଥକ ପ୍ରୟାସ । ସବୁ ଲେଖକ ବା ଗାଳ୍ପିକମାନେ କମ୍ୟୁନିଷ୍ଟ ବିପ୍ଳବୀ ହେବେ, ଏପରି ଆଶା କରିବା ଏକ ପ୍ରକାର ପ୍ରବଂଚନା । ସୁରେନ୍ଦ୍ର ବାବୁ ଖବର କାଗଜ ଜରିଆରେ ଏ ସମାଲୋଚନାର ଜବାବ ଦେଇଥିଲେ । ସଚ୍ଚିବାବୁ ସେତେବେଳେ କଲିକତାରେ ରହୁଥାନ୍ତି । 'ସମାଜ' କାଗଜରେ ସେ ମଧ୍ୟ ସମାଲୋଚନାର ପ୍ରତି ଜବାବ୍ ଦେଇଥିଲେ । ସାଂବାଦିକ ବଂଧୁମାନେ ଯେତେବେଳେ ମୋ ଠାରୁ ପ୍ରତ୍ୟୁତ୍ତର ଦାବୀ କଲେ, ମୁଁ ନୀରବ ରହିଲି । କମ୍ୟୁନିଷ୍ଟ ଦଳ ପ୍ରତି ମୋର ମୋହ ଭାଂଗି ନଥିଲା । ଏହି ମୋହ ମୋ ଭିତରେ ଏକ ପ୍ରକାର କ୍ଳୀବତ୍ୱ ସୃଷ୍ଟି କରିଥିଲା ।

ଏହି ସମୟରେ ସୋଭିୟେଟ୍ ୟୁନିଅନର ଅର୍ଥନୈତିକ ଓ ସାମାଜିକ ବିପ୍ଳବର ସଫଳତା ଉପରେ ମୁଁ ଖଣ୍ଡିଏ ବହି ଲେଖିବା ଆରମ୍ଭ କରିଥାଏ । 'ସଂକେତ' ଦାୟିତ୍ୱରୁ ମୁକ୍ତ ହେବା ପରେ ଏହି ବହି ଲେଖା ତ୍ୱରାନ୍ୱିତ ହେଲା । ଅକ୍ଟୋବର ବିପ୍ଳବ ପରେ ତିରିଶ ବର୍ଷ ଅତିବାହିତ ହୋଇଥିଲେ ମଧ୍ୟ, ଓଡ଼ିଆ ଭାଷାରେ ସୋଭିଏଟ୍ ୟୁନିଅନ ସଂପର୍କରେ କୌଣସି ପୁସ୍ତକ ପ୍ରକାଶିତ ହୋଇ ନଥିଲା । ଏ ଅଭାବ ପୂରଣ କରିବା ପାଇଁ ମୁଁ ଲାଗି ପଡ଼ିଲି । ନେହୁରୁ ଓ ରବୀନ୍ଦ୍ରନାଥଙ୍କ ରୁଷିଆ ଭ୍ରମଣ କାହାଣୀ, ବିଖ୍ୟାତ ଫେବିଆନ୍ ଲେଖକ ସିଡ୍ନି ଓ ବିଏଟ୍ରିସ ଓ୍ୱେବଂକ ଲିଖିତ 'ନିଉ ସିଭିଲାଇଜେସନ୍', ଲଣ୍ଡନ କ୍ୟାଣ୍ଟରବେରୀ ଗୀର୍ଜାର ପ୍ରଧାନ ପୁରୋହିତ ଡକ୍ଟର ହେଓେଲେଟ୍ ଜନସନଙ୍କ ପୁସ୍ତକ, ଖୋଦ୍ ମସ୍କୋରୁ ପ୍ରକାଶିତ ''ୟୁ.ଏସ.ଏସ.ଆର ସ୍ପିକ୍ସ ଫର ଇଟ୍ସେଲ୍ଫ'' ଶୀର୍ଷକ ଏକ ତଥ୍ୟସମ୍ବଳିତ ପୁସ୍ତକ ଓ ଅନ୍ୟ ଅନେକ ବହି ତନ୍ନ ତନ୍ନ କରି ଅଧ୍ୟୟନ କଲି । ଷ୍ଟାଲିନ୍ କ୍ଷମତାକୁ ଆସିବା ପରେ ଦେଶଦ୍ରୋହ ଓ ଷଡ଼ଯନ୍ତ୍ର ଅଭିଯୋଗରେ କେତେ ବିଶିଷ୍ଟ ବିପ୍ଳବୀମାନଙ୍କର ଯେଉଁ ବିଚାର ପ୍ରହସନ ହୋଇଥିଲା ଓ ତାର ପରିଣତି ସ୍ୱରୂପ କାହାକୁ ମୃତ୍ୟୁଦଣ୍ଡ ବା କାହାକୁ ସାଇବେରିଆରେ ନିର୍ବାସନ ଦଣ୍ଡ ଦିଆଯାଇଥିଲା, ସେ ସଂପର୍କରେ ମଧ୍ୟ କେତେକ ବହି ପଢ଼ିଥିଲି । କିନ୍ତୁ ସେ ସମୟରେ ଷ୍ଟାଲିନଙ୍କ ବିରୁଦ୍ଧରେ ଏ ସବୁ ଅଭିଯୋଗକୁ ଆମେ ବିଶ୍ୱାସ କରୁ ନଥିଲୁ । ଆମେ ଭାବୁଥିଲୁ, ନବ ପ୍ରତିଷ୍ଠିତ ସମାଜବାଦୀ ରାଷ୍ଟ୍ର ବିରୁଦ୍ଧରେ ଆମେରିକା ଓ ବ୍ରିଟେନ୍‌ର ପୁଞ୍ଜିପତି ସାମ୍ରାଜ୍ୟବାଦୀ ସରକାରର ଏ ସବୁ କୁତ୍ସା ପ୍ରଚାର । କୁତ୍ସା ପ୍ରଚାର ଯେ ଚାଲି ନଥିଲା ତାହା ନୁହେଁ । କିନ୍ତୁ ୧୯୫୩ ମସିହାରେ ଷ୍ଟାଲିନ୍‌ଙ୍କ ମୃତ୍ୟୁ ପରେ କ୍ରୁଶ୍ଚେଭ୍ କ୍ଷମତାକୁ ଆସିଲେ ଏବଂ ସେ ସୋଭିଏଟ୍ ପାର୍ଟି କଂଗ୍ରେସ ଅଧିବେଶନରେ ଷ୍ଟାଲିନ୍ ଯୁଗର ନିପୀଡ଼ନ

ଓ ଅତ୍ୟାଚାର ସଂପର୍କରେ ଯେଉଁ ସବୁ ତଥ୍ୟ ପ୍ରକାଶ କରିଥିଲେ, ତା ପରେ ମୋ ପରି ବହୁ ଲୋକଙ୍କର ମୋହ ଭାଂଗିଗଲା ।

ଯାହାହେଉ ୧୯୪୯ ଆରମ୍ଭରେ ବହି ଲେଖା ଶେଷ ହେଲା । କିନ୍ତୁ ଛପାହେବ କେଉଁଠି ? ପ୍ରକାଶ କରିବ କିଏ ? ସେହି ପୁରାତନ ସମସ୍ୟା । କମ୍ୟୁନିଷ୍ଟ କୋକୁଆ ଭୟରୁ ପ୍ରେସବାଲା ଓ ପ୍ରକାଶକମାନେ ମୁକ୍ତ ନଥିଲେ । ପାଣ୍ଡୁଲିପି ଦୀର୍ଘଦିନ ଧରି ପଡ଼ି ରହିଲା । କିନ୍ତୁ ଭାଗ୍ୟର ବଡ଼ିମନା ଏପରି ଘଟେ, ଚକ ବୁଲି ବୁଲି ବେଳେ ବେଳେ ଘାଟି ଜାଗାରେ ଲାଗିଯାଏ । କମ୍ୟୁନିଷ୍ଟ ପାର୍ଟିର ଜଣେ ବିଶ୍ୱସ୍ତ ସଦସ୍ୟ ପ୍ରହଲ୍ଲାଦ ପଣ୍ଡା ପ୍ରସ୍ତାବ ଦେଲେ ଯେ ଭଗବତୀ ପ୍ରେସ'' ବିକ୍ରି କରିଦେବା ପାଇଁ ପାର୍ଟି ନିଷ୍ପତ୍ତି ନେଇଛନ୍ତି । ପ୍ରେସର ଟ୍ରେଡ଼ଲ୍ ମେସିନ୍‌ଟି ଜଣେ ଖରିଦ୍ କରି ସାରିଲେଣି । ବାକି ହ୍ୟାଣ୍ଡ ପ୍ରେସ୍ ଓ କେତେକ ଅକ୍ଷର ସେଟ୍ ରହିଛି । ମୁଁ ଖରିଦ୍ କରିବାକୁ ଇଚ୍ଛାକଲେ ପ୍ରେସ୍‌ର ପରିଚାଳକ ଘନଶ୍ୟାମ ଖଣ୍ଡୁଆଳଙ୍କ ସହିତ କଥାବାର୍ତ୍ତା କରିପାରେ । ପ୍ରସ୍ତାବଟା କେଉଁ ସୂତ୍ରରୁ ଆସିଛି, ବୁଝିବାରେ ଅସୁବିଧା ହେଲା ନାହିଁ । କିନ୍ତୁ ପାର୍ଟି ନେତୃତ୍ୱ କାହିଁକି ଏପରି ଘର ବୁଡ଼ା ନୀତି ଅବଲମ୍ବନ କରୁଛନ୍ତି, ତା ବୁଝି ପାରିଲି ନାହିଁ । ଘନଶ୍ୟାମଙ୍କୁ ପଚାରିବାରେ ସେ ଅବିଳମ୍ବେ ରାଜି ହୋଇଗଲେ । ମୁଁ ତିନି ହଜାର ଟଂକା ଦେଇ ଭଗବତୀ ପ୍ରେସ ଖରିଦ୍ କଲି । ପ୍ରେସ ଯେଉଁ ଘରେ ଚାଲୁଥିଲା, ସେଇଠି ରହିଲା । ପ୍ରେସର ନୂଆ ନାମକରଣ ହେଲା ''ସଂକେତ ପ୍ରେସ୍'' ଓ ସେହି ନାମରେ ଡିକ୍ଲେଆରେସନ୍ ନିଆ ହେଲା ।

ଏହି ପ୍ରେସରେ ଗୋଟିଏ ପୁରୁଣା ଡବଲ କ୍ରାଉନ ସାଇଜର ହ୍ୟାଣ୍ଡ ପ୍ରେସ ଓ ତିନି ଚାରି ଫର୍ମା କଂପୋଜ ପାଇଁ ପାଇକା ଓ ଇଂଲିଶ ବଡ଼ି ଅକ୍ଷର ସେଟ୍ ଓ କେତେକ ହେଡ଼ିଂ ଉପଯୋଗୀ ଅକ୍ଷର ସେଟ ଥାଏ । ମୁଁ ଜଣେ ବଂଧୁଙ୍କ ଠାରୁ ଦୁଇ ହଜାର ଟଂକା ଧାର କରି ମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ବଡ଼ ପୁଅ ସଚ୍ଚିଦାନନ୍ଦ କାନୁନ୍‌ଗୋଙ୍କଠାରୁ ଗୋଟିଏ ଟ୍ରେଡ଼ଲ ମେସିନ୍ କିଣିଲି । ପ୍ରେସ କାର୍ଯ୍ୟକାରୀ ଅବସ୍ଥାକୁ ଆସିଲା । ଏହି ସମୟରେ ପ୍ରଥମ ଥର ପାଇଁ ସାବାଳକ ଭୋଟର ତାଲିକା ଛପା ଯାଉଥାଏ ଓ ପ୍ରେସମାନଙ୍କରେ କାମର ଅଭାବ ନଥାଏ । ଏ ତାଲିକା ଛପାଇବା ପାଇଁ ନିର୍ଦ୍ଦିଷ୍ଟ ହାରରେ ପେଇ୍‌ଓ୍ୟାରୀ ପ୍ରାପ୍ୟ ମିଳୁଥାଏ । ଭୋଟର ତାଲିକା ଛପାଇ ଚାରିମାସ ମଧ୍ୟରେ ମୁଁ ସମସ୍ତ ଋଣ ପରିଶୋଧ କରିପାରିଲି ଓ ଇଂରାଜୀ ଓ ଓଡ଼ିଆରେ କେତେକ ନୂଆ ଅକ୍ଷର ସେଟ୍ ମଧ୍ୟ ଖରିଦ୍ କଲି । ଏ ସମସ୍ତ ବ୍ୟବସ୍ଥା ପରେ ସଂକେତ ପ୍ରେସରେ ''ସୋଭିୟେଟ୍ ରୁଷ'' ବହି ଛପାଇବାର ଉଦ୍ୟମ ଆରମ୍ଭ ହେଲା ।

କଟକର ବିଶିଷ୍ଟ ପୁସ୍ତକ ପ୍ରକାଶକ, କଟକ ପବ୍ଲିଶିଂ ହାଉସର ସ୍ୱତ୍ୱାଧିକାରୀ ସ୍ୱର୍ଗୀୟ ଉମାଚରଣ ମହାନ୍ତିଙ୍କ ସହିତ ୧୯୩୬ ମସିହାରୁ ମୋର ଘନିଷ୍ଠ ପରିଚୟ । ମୁଁ କଲେଜିଏଟ୍ ସ୍କୁଲରେ ପଢ଼ିବା ସମୟରେ ରାମକୃଷ୍ଣ କଟେଜରେ ରହୁଥିଲି ଓ ପ୍ରଥମ ବର୍ଷ ଉମାଚରଣ ବାବୁ କଟେଜର ତତ୍ତ୍ୱାବଧାରକ ଥିଲେ ଓ ସେଇଠି ରହୁଥିଲେ । ଦୁଇ ବର୍ଷ ପରେ ସେ ନିଜ ତିଆରି ଘରେ ରହିଲେ । କିନ୍ତୁ କଟେଜ ସହିତ ତାଙ୍କର ନିବିଡ଼ ସଂପର୍କ ଥିଲା । ବ୍ୟକ୍ତିଗତ ଭାବରେ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସେ ମୋତେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ଉମାଚରଣ ବାବୁ ବରୀ ଅଂଚଳର ଲୋକ । ମ୍ୟାଟ୍ରିକ୍ୟୁଲେସନ ପାସ କଲା ପରେ ଗାନ୍ଧିଜୀଙ୍କ ଆହ୍ୱାନରେ ପାଠ ଛାଡ଼ି ଜେଲ ବରଣ କରିଥିଲେ । ଜେଲରୁ ଖଲାସ ହେବା ପରେ କିଛି ବର୍ଷ ସେ ପଣ୍ଡିତ ଆକୁଳ ମିଶ୍ରଙ୍କ କଟକ ଟ୍ରେଡିଂ କଂପାନୀରେ ଚାକିରୀ କରୁଥିଲେ । ୩୫ ମସିହାରେ ଚାକିରୀ ଛାଡ଼ି ସେ କଟକ ପବ୍ଲିଶିଂ ହାଉସ ପ୍ରତିଷ୍ଠା କଲେ । ଜଣେ ଦକ୍ଷ ଓ ସଚ୍ଚୋଟ ପାଠ୍ୟପୁସ୍ତକ ବ୍ୟବସାୟୀ ଭାବରେ ଅଶେଷ ସୁନାମ ଓ ଅର୍ଥ ମଧ୍ୟ ଉପାର୍ଜନ କରିଥିଲେ । ''ସୋଭିୟେଟ୍ ରୁଷ'' ବହିଟି ପ୍ରକାଶ କରିବା ପାଇଁ ମୁଁ ଯେତେବେଳେ ତାଙ୍କୁ ଅନୁରୋଧ କରେ, ସେ ବିନା ଦ୍ୱିଧାରେ ରାଜି ହୋଇଗଲେ । ମୁଦ୍ରଣ ପାଇଁ ତୁରନ୍ତ କାଗଜ ମଧ୍ୟ ଯୋଗାଇ ଦେଲେ । ଦୁଇ ମାସ ମଧ୍ୟରେ ଛାପା ଶେଷ ହେଲା । ସେ ପର୍ଯ୍ୟନ୍ତ ଉମାଚରଣ ବାବୁ ବହିର ବିଷୟ ବସ୍ତୁ ପଢ଼ି ନଥିଲେ । ପବ୍ଲିଶିଂ ହାଉସ୍ ସହିତ ସଂପୃକ୍ତ ଶିଳ୍ପୀ ଭଗବାନ ଦାସ ମୋର ବରାଦ ଅନୁଯାୟୀ କଭର ଡିଜାଇନ ପ୍ରସ୍ତୁତ କଲେ । ଏହି କଭର ଡିଜାଇନ୍ ବିପଦର କାରଣ ହେଲା । ମୁଣ୍ଡରେ ଧାନ ଗୋଛା ଓ ହାତରେ ଦାଆ ଧରି ଚାଲିଥିବା ଜଣେ ସ୍ତ୍ରୀ ଲୋକର ରୁଦ୍ର ପ୍ରତିଛବି ଦେଖି ଉମାଚରଣ ବାବୁ ଆତଙ୍କିତ ହେଲେ । ରୁଷ ଉପରେ ବହି ପ୍ରକାଶ କଲେ, କାଳେ ତାଙ୍କର ପାଠ୍ୟ ପୁସ୍ତକ ବ୍ୟବସାୟରେ ଆଂଚ ଆସିବ, ଏହି ଭୟ ତାଙ୍କୁ ଗ୍ରାସ କରିବା ପରି ମନେ ହେଲା । ସେ ମୋତେ ଡକାଇ ପଠାଇ କହିଲେ ''ବହିଟି ତୁମେ ସଂକେତ ପ୍ରେସ୍ ନାମରେ ପ୍ରକାଶ କର, ପବ୍ଲିଶିଂ ହାଉସ୍ ନାମ ବ୍ୟବହାର କର ନାହିଁ, ମୁଦ୍ରଣରେ ବ୍ୟବହୃତ କାଗଜର ଦାମ ବର୍ତ୍ତମାନ ପରିଶୋଧ କରିବା ଦରକାର ନାହିଁ, ବହି ବିକ୍ରି ହେଲେ କାଗଜ ଦାମ ସୁବିଧା ଅନୁସାରେ ଫେରାଇ ଦେବ ।'' ମୁଁ ତାଙ୍କର ମନୋଭାବ ବୁଝି ପାରିଲି । ତଦନୁଯାୟୀ ବହିଟି ସଂକେତ ପ୍ରେସ ଆନୁକୂଲ୍ୟରେ ପ୍ରକାଶିତ ହେଲା । ''ସୋଭିୟେଟ୍ ରୁଷ'' ଉତ୍ସର୍ଗୀକୃତ ହୋଇଥିଲା ସ୍ୱର୍ଗତଃ ଭଗବତୀ ପାଣିଗ୍ରାହୀଙ୍କ ସ୍ମୃତିରେ ।

ସେ କାଳରେ ଅତି ସ୍ୱନାମଧନ୍ୟ ଲେଖକଙ୍କ ରଚିତ ଓଡ଼ିଆ ବହିର ହଜାରେ ଛାପା ପ୍ରଥମ ସଂସ୍କରଣ ବିକ୍ରି ହେବାକୁ ଅନ୍ତତଃ ପାଂଚ ସାତ ବର୍ଷରୁ କମ୍ ଲାଗେ ନାହିଁ । ସେଥିପାଇଁ ଅଧିକାଂଶ ପ୍ରକାଶକ ପାଠ୍ୟପୁସ୍ତକ ପ୍ରକାଶନରେ ଲିପ୍ତ ରହନ୍ତି । ଏଣୁ ନବଜାତ କନ୍ୟାଟି ପାଠକ ମହଲରେ କିପରି ଆଦୃତ ହେବ, ସେ ବିଷୟରେ ଘୋର ସଂଦେହ ଥାଏ । କିନ୍ତୁ ସଂଦେହ ଦୂର ହେବାକୁ ବେଶି ଦିନ ଲାଗିଲା ନାହିଁ । ପ୍ରଥମ ତିନିମାସ ମଧ୍ୟରେ ତିନିଶହ ବହି ବିକ୍ରି ହୋଇଗଲା । ଏ ପ୍ରକାରର ବହି ପଢ଼ିବାକୁ ଓଡ଼ିଆ ପାଠକମାନଙ୍କ ମଧ୍ୟରେ ଯେ ଆଗ୍ରହ ଅଛି, ତାହା ବୁଝା ପଡ଼ିଲା । ଅବଶ୍ୟ ଏ ସଫଳତାର ଉଦ୍ୟୋକ୍ତା ଥିଲେ ବାଲୁବଜାର ଷ୍ଟାଣ୍ଡାର୍ଡ଼ ବୁକ୍ ମାର୍ଟର ପ୍ରତିଷ୍ଠାତା · ମୋର ଅଗ୍ରଜ-ପ୍ରତିମ ଶ୍ରୀ ନିଶାମଣି ତ୍ରିପାଠୀ । ଶ୍ରୀ ତ୍ରିପାଠୀ ବୈଦ୍ୟନାଥ ରଥଙ୍କର ସଂପର୍କୀୟ ଓ ପଟିଆ ବଂଧ ନିର୍ମାଣର ପ୍ରଧାନ ଉଦ୍ୟୋକ୍ତା । ପଟିଆ ଚାଷୀ ଆନ୍ଦୋଳନର ପୁରୋଧା ଭାବରେ ସେ ସରକାରଙ୍କର ବିଷ ଦୃଷ୍ଟି ଆକର୍ଷଣ କରିଥିଲେ । ଅଟକ ଆଇନ ବଳରେ ଗିରଫ କରି ତାଙ୍କୁ ବିନା ବିଚାରରେ ବଂଦୀ କରାହେଲା । ଦୋକାନ ଚଳାଇବାର ଦାୟିତ୍ୱ ଯେଉଁମାନଙ୍କ ଉପରେ ନ୍ୟସ୍ତ ଥିଲା, ସେମାନେ ଯଥାବିଧି ତତ୍ପରତା ଦେଖାଇ ପାରିଲେ ନାହିଁ । ମାଲିକଙ୍କର ତତ୍ତ୍ୱାବଧାନ ଅଭାବରେ ଯାହା ହୁଏ, ତାହାହିଁ ହେଲା । ଦୋକାନର ମୂଳଦୁଆ ଦୋହଲିଗଲା । "ସୋଭିଏଟ୍ ରୁଷ" ବହି ଷ୍ଟାଣ୍ଡାର୍ଡ଼ ବୁକ୍ ମାର୍ଟରେ ବିକ୍ରି ପାଇଁ ଜମା ଦିଆ ହୋଇଥିଲା । ନିଶାମଣି ବାବୁଙ୍କ ଗିରଫଦାରୀ ପରେ, ବହି କେତେ ବିକ୍ରି ହେଲା, କେତେ ଆଦାୟ ହେଲା, ତାର କୌଣସି ହିସାବ ମିଳିଲା ନାହିଁ ।

ଏ ସବୁ ଘାତ ପ୍ରତିଘାତରେ ମୁଁ ହତୋତ୍ସାହ ହେଲି ନାହିଁ । ଲେଖକ ହେବାର ସ୍ୱପ୍ନ କୁହେଳୀରେ ଯେ ଭାସମାନ, ସେ ସାମାନ୍ୟ ବାଧାରେ ବିବ୍ରତ ହେବ କାହିଁକି ? ଲେଖକ ହେବାର ଓ ଲେଖାଲେଖି କରି ଜୀବିକା ଚଳାଇବାର ସ୍ୱପ୍ନ ମୋତେ ବିଭୋର କରିଥିଲା । ଅଧ୍ୟାପକ କୃଷ୍ଣ ପଟ୍ଟନାୟକ ଦୁଇଜଣ ଋଷିଆନ ଲେଖକଙ୍କର ଏକ ଭ୍ରମଣ କାହାଣୀ ମତେ ପଢ଼ିବାକୁ ଦେଲେ । ବହିଟିର ନାମ "ଲିଟ୍‌ଲ ଗୋଲ୍‌ଡନ୍ ଆମେରିକା ।" ବହିଟି ଅତି ଚିତ୍ତାକର୍ଷକ, ଥରେ ଆରମ୍ଭ କଲେ ଶେଷ ନ କରି ରହି ହେବ ନାହିଁ । ପଟ୍ଟନାୟକ ପରାମର୍ଶ ଦେଲେ, ବହିଟିକୁ ଓଡ଼ିଆରେ ଅନୁବାଦ କରିବା ପାଇଁ । ହିସାବ କରି ଦେଖାଗଲା, ଓଡ଼ିଆରେ ଆମୂଳଚୂଳ ଅନୁବାଦ କଲେ ଅନ୍ତତଃ ଡିମାଇ

ସାଇଜର ଛ' ସାତ ଶହ ପୃଷ୍ଠାରୁ କମ୍ ହେବ ନାହିଁ । ଆକାର ଦୃଷ୍ଟିରୁ ପାଣ୍ଡୁଲିପି ହୁଏତ ପ୍ରେସ୍‌କୁ ଯାଇ ପାରିବ ନାହିଁ । ତେଣୁ ମାତ୍ର କେତୋଟି ଅଧ୍ୟାୟର ବିଷୟବସ୍ତୁକୁ ସଂକ୍ଷେପରେ ରୂପାନ୍ତରିତ କରିବାକୁ ସ୍ଥିର କଲି । ନାମ ଦିଆ ହେଲା 'ଆମେରିକା ଯାତ୍ରୀ' । ବହିଟିର ଭାଷା ଓ ବର୍ଣ୍ଣନାଭଂଗୀ ସଂପୂର୍ଣ୍ଣ ମୋର ନିଜସ୍ୱ, କିନ୍ତୁ କଥାବସ୍ତୁ ମୂଳ ବହିରୁ ସଂଗୃହୀତ । ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ପୃଥିବୀର ବହୁ ଭାଷାରେ ଅନୂଦିତ ହୋଇ ଯେଉଁ ଭ୍ରମଣ କାହାଣୀ ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରି ହୋଇଛି, ଓଡ଼ିଆ ଭଷାରେ ତାର ଏହି ସଂକ୍ଷିପ୍ତ ଛାୟାନୁବାଦ ହୁଏତ ପାଠକ ମହଲରେ ଆଦୃତ ହେବ, ଏହି ଭରସାରେ ମୁଁ ଆଗେଇ ଗଲି ।

ମହାପ୍ରସାଦ ବ୍ରଦର୍ସର ମାଲିକ ସୁଲେଖକ ଶ୍ରୀ ଘନଶ୍ୟାମ ମହାନ୍ତିଙ୍କୁ ପାଣ୍ଡୁଲିପିଟି ପଢ଼ିବାକୁ ଦେଲି । ସେ ଶତ ମୁଖରେ ପ୍ରଶଂସା କଲେ ସତ୍ୟ, କିନ୍ତୁ ବହି ପ୍ରକାଶ କରିବା ପାଇଁ ମହାପ୍ରସାଦ ବ୍ରଦର୍ସଙ୍କର ସମ୍ବଳ ନଥିଲା । ସେ ସ୍ୱେଚ୍ଛାରେ ଉମାଚରଣ ବାବୁଙ୍କୁ ଏ ବହିଟିର ପ୍ରକାଶ ଦାୟିତ୍ୱ ବହନ କରିବାକୁ ଅନୁରୋଧ କଲେ । ବହିର ନାମକରଣ ଦେଖି ଉମାଚରଣ ବାବୁଙ୍କର ଆପତ୍ତି ହେଲା ନାହିଁ । ରୁଷିଆ ବଦଳରେ ଆମେରିକା ଉପରେ ଲିଖିତ ବହି ପ୍ରକାଶ କଲେ କୌଣସି ବିପଦ ନାହିଁ ବୋଲି ତାଙ୍କର ବୋଧହୁଏ, ଧାରଣା ହେଲା । ଯାହାହେଉ ସଂକେତ ପ୍ରେସରେ ମୁଦ୍ରିତ 'ଆମେରିକା ଯାତ୍ରୀ' ବହିଟି କଟକ ପବ୍ଲିଶିଂ ହାଉସ ପ୍ରକାଶ କଲେ ଓ ତାଙ୍କର ଉଦ୍ୟମରେ ବହିଟି ତିନିବର୍ଷ ଇଣ୍ଟରମେଡ଼ିଏଟ କ୍ଲାସର ପାଠ୍ୟପୁସ୍ତକ ରୂପେ ମନୋନୀତ ହୋଇଥିଲା ।

ବହିର କଥାବସ୍ତୁ ନ ପଢ଼ି 'ସୋଭିଯେଟ ରୁଷ' ବହିଟି ପ୍ରକାଶ କରିବା ପାଇଁ ପ୍ରକାଶକଙ୍କର ଭୟ ଓ ଆଶଂକା, ଅଥଚ ଆମେରିକା ଯାତ୍ରୀ ପ୍ରକାଶ କରିବା ପାଇଁ ସେହି ପ୍ରକାଶକଙ୍କର ଆଗ୍ରହ ମୋ ମନରେ ଯେଉଁ କୌତୂହଳ ସୃଷ୍ଟି କରିଥିଲା, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ପ୍ରକାଶକ ଅବଶ୍ୟ ଜଣେ ଅତି ସୁପରିଚିତ ବିବେକୀ ଭଦ୍ରଲୋକ । କିନ୍ତୁ ବ୍ୟବସାୟର ସଫଳତା ତାଙ୍କର ସବୁ କାର୍ଯ୍ୟର ନିୟାମକ ଥିଲା । ତେଣୁ ଲେଖକ ସହିତ ଯେତେ ସୁସଂପର୍କ ଥିଲେ ମଧ୍ୟ, ପାଠ୍ୟପୁସ୍ତକ ବ୍ୟବସାୟ ଉପରେ ଆଂଚ ଆଣୁଥିବା କୌଣସି ବହିର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିବାକୁ ସେ ପ୍ରସ୍ତୁତ ନଥିଲେ । ୧୯୫୦ ମସିହା ପୂର୍ବରୁ ଭାରତରେ ପ୍ରକାଶନ କ୍ଷେତ୍ରରେ ଲେଖକ ଓ ପ୍ରକାଶକଙ୍କ

ସଂପର୍କ ଏବଂ ଆମେରିକାର ସିନେମା ନିର୍ମାଣ ଜଗତରେ ନିର୍ମାତା ଓ ନିର୍ଦ୍ଦେଶକଙ୍କ ସଂପର୍କ ମଧ୍ୟରେ ବହୁ ସାମଂଜସ୍ୟ ଅଛି । ଏ ସଂକ୍ରାନ୍ତରେ 'ଆମେରିକା ଯାତ୍ରୀ' ବହିରେ 'ହଲିଉଡ୍‌ର ନୌକର' ଶୀର୍ଷକ ଅଧ୍ୟାୟରେ ବର୍ଣ୍ଣିତ ଗୋଟିଏ କାହାଣୀ ଉଦ୍ଧାର କରୁଛି :

''ହଲିଉଡ୍‌ରେ କ୍ୱଚିତ୍ ନିର୍ଦ୍ଦେଶକ ଅଛନ୍ତି, ଯେ କି ସ୍ୱାଧୀନ ଭାବରେ କାର୍ଯ୍ୟ କରିପାରିବେ । ପଦେ ପଦେ ତାଙ୍କୁ ନିର୍ମାତାଙ୍କର ହସ୍ତକ୍ଷେପ ଓ ପ୍ରତିରୋଧର ସମ୍ମୁଖୀନ ହେବାକୁ ହେବ । ଏହା ସତ୍ତ୍ୱେ ବେଳେ ବେଳେ ଯେ ଗୋଟିଏ ଭଲ ଫିଲ୍ମ ଉତୁରେ, ତାର କାରଣ ଜଣେ ପୁରାତନ ନାମଜାଦା ଡିରେକ୍ଟରଙ୍କ ସହଯୋଗ ପାଇବା ପାଇଁ ମାଲିକମାନେ ଅନେକ ସମୟରେ ହସ୍ତକ୍ଷେପ ନ କରିବାକୁ ବାଧ୍ୟ ହୁଅନ୍ତି । ବେଳେ ବେଳେ ସେମାନଙ୍କ ଅଜ୍ଞାତରେ ମଧ୍ୟ ଉଚ୍ଚ ଦରର ଫିଲ୍ମ ବାହାରିଯାଏ ।

ପୃଥିବୀ ବିଖ୍ୟାତ ଡାଇରେକ୍ଟର ଲୁଇସ୍ ମାଇଲଷ୍ଟୋନ ଗୋଟାଏ ଛୋଟ ଚାଲାକି ଖେଳି, 'ଅଲ୍ କ୍ୱାଏଟ୍ ଅନ୍ ଦି ୱେଷ୍ଟର୍ଣ୍ଣ ଫ୍ରଣ୍ଟ' ଫିଲ୍ମ ତୋଳି ପାରିଥିଲେ । ନିର୍ମାତାଙ୍କର ଦୈନନ୍ଦିନ ହସ୍ତକ୍ଷେପ ପରିହାର କରିବା ପାଇଁ ସେ ମିଛରେ ଅଫିସକୁ ଖବର ପଠାଇଦେଲେ ଯେ ଷ୍ଟୁଡ଼ିଓରେ ସବୁବେଳେ ବିସ୍ଫୋରଣ ଆଶଙ୍କା ଅଛି ଏବଂ ତଦ୍ୱାରା ଜୀବନହାନି ମଧ୍ୟ ଘଟିପାରେ । ବିପଦ ଆଶଂକାରେ କଂପାନୀ ମାଲିକ ଆଉ ଷ୍ଟୁଡ଼ିଓକୁ ଆସନ୍ତି ନାହିଁ । ଯାହାହେଉ ଫିଲ୍ମ ଶେଷ ହେଲା ବେଳକୁ ନିର୍ମାତା ଦିନେ ତାଙ୍କୁ ଡାକି ପଚାରିଲେ-

''ଦେଖ ଲୁଇସ୍, ମୁଁ ଶୁଣୁଛି, ଏ ଛବିର କୁଆଡ଼େ ବିରହାନ୍ତ ଓ ଦୁଃଖପୂର୍ଣ୍ଣ ସମାପ୍ତି ହୋଇଛି ?''

''ହଁ ସତ କଥା''- ମାଇଲଷ୍ଟୋନ ଜବାବ ଦେଲେ ।

''କିନ୍ତୁ ତା ଯେ ଅସମ୍ଭବ''- ନିର୍ମାତା ଚିତ୍କାର କରି ଉଠିଲେ- ''ଆମେରିକାନ ଦର୍ଶକ ବିରହାନ୍ତ ଛବି ଦେଖିବାକୁ ଚାହାନ୍ତି ନାହିଁ । ଆପଣଙ୍କୁ ଏହାର ଶେଷାଂଶ ବଦଳାଇ ଦେବାକୁ ହେବ ।''

ମାଇଲଷ୍ଟୋନ୍ କହିଲେ- ''ବହିର ଲେଖକ ଯେ ସେହିପରି ସମାପ୍ତି କରିଛନ୍ତି ।''

''ବହି ମୁଁ ପଢ଼ି ନାହିଁ କି ପଢ଼ିବାକୁ ଚାହେଁ ନା । ଆମର ଟଙ୍କା ଖର୍ଚ୍ଚ ହୋଇଛି, ଟଙ୍କା ଫେରସ୍ତ ଆସିବା ଦରକାର'' ନିର୍ମାତା ଉତ୍ତର ଦେଲେ ।

ମାଇକେଲ୍‌ଷ୍ଟୋନ୍ କୌତୁକ କରି କହିଲେ- "ବେଶ ତାହାହିଁ ହେବ । ଲେଖକ ବହି ଶେଷରେ ଫରାସୀମାନଙ୍କର ବିଜୟ ଦେଖାଇଛନ୍ତି । ଯେହେତୁ ଆପଣ ଶେଷାଂଶ ବଦଳାଇବାକୁ ଚାହାନ୍ତି, ମୁଁ ଶେଷରେ ଜର୍ମାନମାନେ ଜିତିବାର ଦେଖାଇଦେବି ।"

ଏଇ ରକମର ପରିହାସ ପୂର୍ଣ୍ଣ ଜବାବ ଓ ରସିକତା ମଧ୍ୟରେ ନିର୍ଦ୍ଦେଶକ ମାଇକେଲଷ୍ଟୋନ ନିର୍ମାତାଙ୍କ ପ୍ରତିରୋଧ ଭେଦ କରି ପାରିଥିଲେ । ଛବିଟି ବେଶ୍ ସଫଳ ହୋଇଥିଲା ।"

୧୯୫୦ ମସିହାର ଗୋଟିଏ ପୁରୁଣା ବହିରୁ ଏ କାହାଣୀଟି ଉଦ୍ଧାର କରିବାର କାରଣ ହେଲା, ଉମାଚରଣ ବାବୁଙ୍କୁ ପ୍ରଭାବିତ କରିବା ପାଇଁ ମୋର ଦକ୍ଷତା ବା ବାକ୍‌ଚାତୁରୀ ନଥିଲା । ସେ ଥିଲେ ମୋର ନନାଙ୍କ ବୟସର ଲୋକ, ମୋର ଶୁଭାକାଂକ୍ଷୀ ଗୁରୁଜନ ।



# ରଥଙ୍କୁ ଜବାବ୍

ବୟାଳିଶ ବର୍ଷ ତଳର କଥା । ୧୯୫୦ ମସିହା ମାର୍ଚ୍ଚ ମାସରେ କମ୍ୟୁନିଷ୍ଟ ପାର୍ଟି ସହିତ ମୋର ସମସ୍ତ ସାଂଗଠନିକ ସଂପର୍କ ଛିନ୍ନ ହେଲା । ଯେଉଁମାନଙ୍କର ସଂସ୍ପର୍ଶରେ ଆସି ଜୀବନ ତରୁ ନୂତନ ରୂପରେ ଅଙ୍କୁରିତ ହୋଇଥିଲା, ଯେଉଁମାନଙ୍କର ତ୍ୟାଗପୂତ ଆଦର୍ଶରେ ଅନୁପ୍ରାଣିତ ହୋଇ ଜୀବନର ବିକାଶ ଧାରା ନିୟନ୍ତ୍ରିତ ହୋଇଥିଲା, ସେହି ବଂଧୁମାନଙ୍କଠାରୁ ବିଛିନ୍ନ ହୋଇ ସ୍ଥିତି ଭାରଶୂନ୍ୟ ମନେ ହେଲା । କ'ଣ କରିବି କିଛି ସ୍ଥିର କରି ପାରୁ ନଥାଏ । ଅନେକ ସହୃଦୟ ବଂଧୁ ଓ ଶୁଭାକାଂକ୍ଷୀ ନାନା ବିକଳ୍ପ ପନ୍ଥାର ପରାମର୍ଶ ଦେଲେ । ମୁଁ କଂଗ୍ରେସରେ ଯୋଗ ଦେଲେ, ମୋତେ ପୂର୍ଣ୍ଣପ୍ରାଣରେ ସାହାଯ୍ୟ ଦେବେ ବୋଲି ବୀରେନଦା (ଭବିଷ୍ୟତର ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ ମିତ୍ର) ପ୍ରତିଶ୍ରୁତି ଦେଲେ । ଆମ ଗାଁର ବିଶିଷ୍ଟ କଂଗ୍ରେସ ନେତା ଗୌରାଂଗ ବାବୁ (ଗୌରାଂଗ ଚରଣ ଦାସ) ଅନୁରୂପ ପରାମର୍ଶ ଦେଲେ । ମାର୍କ୍ସବାଦରେ ମୁଁ ବିଶ୍ୱାସ ହରାଇ ନଥିଲି । ଏଣୁ ଏସବୁ ଭଣ୍ଡାମୀ ମୋତେ କାଣିଚାଏ ମଧ୍ୟ ସ୍ପର୍ଶ କରି ନଥିଲା । କମ୍ୟୁନିଷ୍ଟ ଦଳର ତତ୍କାଳୀନ କାର୍ଯ୍ୟକ୍ରମ ସହିତ ମୋର ବିରୋଧ । ୧୯୪୮ ମସିହାରେ ଭାରତୀୟ ପାର୍ଟି ନେତୃତ୍ୱରୁ ପି.ସି. ଯୋଶୀଙ୍କର ବିତାଡ଼ନ ସମୟରୁ ଏହି ପ୍ରକ୍ରିୟା ଆରମ୍ଭ ହୋଇଥିଲା । ମୋର ହୃଦ୍‌ବୋଧ ହୋଇଥିଲା ଯେ ଭାରତୀୟ ଚିନ୍ତା ଓ ଚେତନା ଠାରୁ ଏମାନେ ବହୁ ଦୂରରେ । ସାମ୍ୟବାଦ ପ୍ରତିଷ୍ଠା ପାଇଁ କମ୍ୟୁନିଷ୍ଟ ବଂଧୁମାନେ ପୂର୍ଣ୍ଣପ୍ରାଣରେ ଅଙ୍ଗୀକାରବଦ୍ଧ ଏବଂ ସେଥିପାଇଁ ସବୁ ପ୍ରକାର ତ୍ୟାଗ ଓ ଆତ୍ମଦାନ ପାଇଁ ପ୍ରସ୍ତୁତ ଥିଲେ ମଧ୍ୟ, ରଣଦିବେଙ୍କ ପରି ନେତାମାନଙ୍କ ଦ୍ୱାରା ନିୟନ୍ତ୍ରିତ ନୀତି ଓ କାର୍ଯ୍ୟକ୍ରମ ସଂପୂର୍ଣ୍ଣ ଅବାସ୍ତବ ବୋଲି ଧାରଣା ହୋଇଥିଲା । ଯେଉଁ କାର୍ଯ୍ୟକ୍ରମରେ ମୋର ବିଶ୍ୱାସ ନାହିଁ, ଅଧିକ ଦିନ ତାର ପ୍ରଶସ୍ତି ଗାନ କରିବା ଅପେକ୍ଷା ବରଂ ଦଳରୁ ସଂପର୍କ ଛିନ୍ନ ହେବା ଶ୍ରେୟସ୍କର ମନେ କଲି ।

ଏବେ କରେ କ'ଣ ? ସମୟ କିପରି କଟିବ, ଜୀବିକା କିପରି ଚଳିବ ଏ ସବୁ ଦୁଶ୍ଚିନ୍ତା ମୋତେ ଗ୍ରାସ କରେ । ୪୯ ମସିହାରେ ଆଇନ କ୍ଲାସରେ ପ୍ରଥମ ଭାଗ ଲେକ୍‌ଚର ଶେଷ କରିଥାଏ, କିନ୍ତୁ ଦ୍ୱିତୀୟ ଭାଗ ଲେକ୍‌ଚର୍ ଅପୂର୍ଣ୍ଣ । ମୁଁ ଭାବିଲି, ପ୍ରେସ ଖଣ୍ଡେ ଅଛି । ଲେଖାଲେଖି କରି ସାମୟିକ ବହି ପ୍ରକାଶ କରି ଜୀବିକା ଚଳିଯିବ । ଅବଶ୍ୟ କିଏ ମୋତେ ଏ ଦୁଷ୍ଟଧାରଣା ଦେଲା, ମନେ ନାହିଁ । ସ୍ୱାଧୀନତା ପ୍ରାପ୍ତିର ୪୫ ବର୍ଷ ପରେ ମଧ୍ୟ ଓଡ଼ିଆ

ଲେଖକ କେବଳ ଲେଖନୀ ଚାଳନା କରି ଜୀବିକା ଚଳାଇ ପାରୁ ନାହାନ୍ତି । ଯାହାହେଉ ମୁଁ ଏ ଦିଗରେ ଉଦ୍ୟମ ଆରମ୍ଭ କଲି ।

କିଛିଦିନ ପରେ ମୋର ଆଉ ଖଣ୍ଡିଏ ବହି ''ସୋଭିଏଟ୍ ସମାଜ'' ପ୍ରକାଶିତ ହେଲା । ବହିଟି ପ୍ରକାଶ କରିବା ପାଇଁ କୌଣସି ପ୍ରକାଶକଙ୍କ ଦ୍ୱାରସ୍ଥ ନ ହୋଇ, ସଂକେତ ପ୍ରେସ ଆନୁକୂଲ୍ୟରେ ତାହା ପ୍ରକାଶିତ ହେଲା । 'ସଂକେତ' ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିବା ମୋର କେତେକ ଗଳ୍ପ ଓ ଅନ୍ୟ କେତେକ ଗାଳ୍ପିକ ବଂଧୁଙ୍କର କ୍ଷୁଦ୍ର ଗଳ୍ପର ସମାବେଶ ପୁସ୍ତକାକାରରେ ପ୍ରକାଶ କରିବାର ଯୋଜନା ହେଲା । ଅଖିଳ ମୋହନ ପଟ୍ଟନାୟକ, ରଘୁନାଥ ଦାସ, ଶ୍ରୀବତ୍ସ ନାୟକ ଓ ପ୍ରହ୍ଲାଦ ଚନ୍ଦ୍ର ମହାନ୍ତି ପ୍ରମୁଖ ବଂଧୁମାନେ ନିଜେ ଲେଖିଥିବା ଗଳ୍ପ ପ୍ରକାଶ କରିବାରେ ସହଯୋଗ କଲେ ।

ଅଖିଳ ବୟସରେ ମୋଠାରୁ ସାତ ଆଠ ବର୍ଷ ସାନ ହେଲେ ମଧ୍ୟ, ତାଙ୍କ ସହିତ ସଂପର୍କ ଥିଲା ଅତି ଘନିଷ୍ଠ । ତାଙ୍କ ବାପା ସ୍ୱର୍ଗୀୟ ବାଙ୍କନିଧି ପଟ୍ଟନାୟକ ଖୋର୍ଦ୍ଧା ହାଇସ୍କୁଲର ସ୍ୱନାମଧନ୍ୟ ପ୍ରଧାନ ଶିକ୍ଷକ । ମୁଁ ଥରେ ଅଖିଳ ସହିତ ଖୋର୍ଦ୍ଧା ଯାଇ ତାଙ୍କ ଘରେ ରହିଛି, ତାଙ୍କର ସ୍ନେହ ଆଦର ପାଇଛି । ଅଖିଳ ଗିରଫ ହେବା ପରେ ସେ ମଧ୍ୟ କଟକ ଆସି ଥରେ ଆମ ଘରେ ରହିଥିଲେ । ଜଣେ ସୁବିଖ୍ୟାତ ଗଳ୍ପ ଲେଖକ ଓ ଆଇନଜୀବୀ ଭାବରେ ଅଶେଷ ସୁଖ୍ୟାତି ଅର୍ଜନ କରି ୧୯୮୨ ମସିହାରେ ଅଖିଳ ସ୍ତ୍ରୀ ସନ୍ତାନ ବଂଧୁବାଂଧବ ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ ଇହ ଜଗତରୁ ବିଦାୟ ନେଇଛି । ସେ ଦିନର ସ୍ମୃତି ଭୁଲିବାର ନୁହେ । କ୍ୟାନସର ଅପରେସନ ପାଇଁ ଡାକ୍ତର ମହାନ୍ତିଙ୍କ ସହିତ ସମୟ ଠିକ୍‌ଠାକ୍ କରି ସେ ଦିନ ସକାଳ ନ'ଟାରେ ଅଖିଳ ଆମ ଘରେ ପହଂଚିଲା । ବହୁ ଖୁସି ଗପ ଓ ପୁରୁଣା ଦିନର ସ୍ମୃତି ଚାରଣ କରି ସେ ମୋ ଠାରୁ ବିଦାୟ ନେଲା । କିନ୍ତୁ ପଦେ କହିଗଲା ନାହିଁ ଯେ ଆମଘରୁ ସେ ସିଧା ଅପରେସନ୍ ଟେବୁଲକୁ ଯାଉଛି । ଦିନ ତିନିଟାରେ ହାଇକୋର୍ଟରେ ଇନ୍ଦ୍ରଜିତ୍‌ଙ୍କଠାରୁ (ବର୍ତ୍ତମାନ ବିଚାରପତି ଇନ୍ଦ୍ରଜିତ ରାୟ) ଶୁଣିଲି, ଅଖିଳ ଆଉ ନାହିଁ । ଅପରେସନ୍ ଟେବୁଲ ଉପରେ ତାର ଦେହାନ୍ତ ହୋଇ ଯାଇଛି । ଶୋକ ବିହ୍ୱଳତା ମଧ୍ୟରେ ପଚାରି ପାରିଲି ନାହିଁ ଯେ କେଉଁଠାରେ ତାର ଅପରେସନ ହେଲା ଏବଂ କେଉଁଠି ତାର ଅପମୃତ୍ୟୁ । ମୋତେ ଜଣା ନଥିଲା ଯେ ଡାକ୍ତର ମହାନ୍ତିଙ୍କ ଘରୋଇ ନର୍ସିଂହୋମରେ ତାର ଅପରେସନ କରାହୋଇଥିଲା । ଜଣେ ଦୁଇଜଣ ସାଥୀଙ୍କୁ ସାଂଗରେ ଧରି ମୁଁ ମେଡ଼ିକାଲ କଲେଜ ହସପିଟାଲରେ ଖୋଜି ବୁଲିଲି । ବ୍ୟର୍ଥ ହୋଇ

ଘରକୁ ଫେରି ଭୁବନେଶ୍ୱର ଫୋନ୍ କରିବାରେ ଶୁଣିଲି, ଭୁବନେଶ୍ୱରର 'ବାଲିଘର' ଭୁଷୁଡ଼ି ପଡ଼ିଛି । ଶବକୁ ଭୁବନେଶ୍ୱର ନିଆ ହୋଇଛି ଓ ପରଦିନ ସକାଳେ ଖୋର୍ଦ୍ଧା ନେଇ ସତ୍କାର କରାଯିବ । ପରଦିନ ସକାଳୁ ଭୁବନେଶ୍ୱର ଯାଇ ଦେଖେ, ସବୁ ଶୂନ୍‌ଶାନ୍ । ତାର ସଂପର୍କୀୟ ଗୋଟିଏ ଛୋଟ ଝିଅ କାନ୍ଦି କାନ୍ଦି କହିଲା, ଅଧଘଣ୍ଟାଏ ଆଗରୁ ସମସ୍ତେ ଖୋର୍ଦ୍ଧା ଚାଲି ଗଲେଣି । କେଜାଣି କାହିଁକି ଧାରଣା ହେଲା, ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଶେଷ ବିଦାୟ ନେଇଯାଇଛି । ଶବର ଅନୁଗମନ କଲେ ବି ତାକୁ ଆଉ ଦେଖି ପାରିବି ନାହିଁ । ନୀରବ କ୍ରନ୍ଦନ ମଧ୍ୟରେ ଆଖିର ଲୁହ ପୋଛି କଟକ ଫେରିଲି ।

ବଂଧୁ ରଘୁନାଥ ଦାସଙ୍କ ସହ କଲେଜ ଜୀବନରୁ ପରିଚୟ । ୧୯୪୦ ମସିହା ରାଭେନ୍ସା କଲେଜ ଛାତ୍ର ଧର୍ମଘଟରେ ଯୋଗଦେଇ ସେ ଗୋଟିଏ ବର୍ଷ ପରୀକ୍ଷା ଦେବାର ସୁଯୋଗରୁ ବଂଚିତ ହୋଇଥିଲେ । ପରେ ଆଇନ୍ ପାସ୍ କରି କଟକରେ ଓକିଲାତି ଆରମ୍ଭ କଲେ । ସଚ୍ଚି ରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ ପ୍ରେରଣାରେ ସେ ବହୁ ଅଗ୍ରଗାମୀ କବିତା ଲେଖିଥିଲେ ଏବଂ ମାର୍କ୍ସବାଦରେ ଅନୁପ୍ରାଣିତ ହୋଇଥିଲେ । ମୋର ଅନୁରୋଧ କ୍ରମେ 'ଶଙ୍ଖ' ପତ୍ରିକାରେ ପ୍ରକାଶିତ ତିନୋଟି ଗଳ୍ପ ପ୍ରକାଶ କରିବା ପାଇଁ ସେ ଅନୁମତି ଦେଇଥିଲେ । ଏହି ବଂଧୁମାନଙ୍କର ହାର୍ଦ୍ଦିକ ସହଯୋଗ ଫଳରେ 'ନ'ଟି ଗପ' ଆମ୍ ପ୍ରକାଶ କଲା ।

ରଘୁବାବୁ ଆଉ ନାହାନ୍ତି । ପ୍ରଗତିଶୀଳ ସାହିତ୍ୟ ଜଗତରେ ଚରମ ଶୂନ୍ୟତା ସୃଷ୍ଟି କରି ନ' ବର୍ଷ ତଳେ ସେ ଚିରଦିନ ପାଇଁ ବିଦାୟ ନେଇଛନ୍ତି । ତାଙ୍କ ସହିତ ବଂଧୁତ୍ୱର ଭିତ୍ତି ଥିଲା ବୌଦ୍ଧିକ ସମାଦର । ପ୍ରତିଦିନ ସଂଧ୍ୟାବେଳେ ଆମେ ଏକାଠି କାଠଯୋଡ଼ୀ କୂଳକୁ ବୁଲିଯାଉ, ସଭା ସମିତିକୁ ମଧ୍ୟ ଏକତ୍ର ଯାଉ, ସାହିତ୍ୟ ଓ ରାଜନୀତି ବିଷୟରେ ଆଲୋଚନା କରୁ । ଏତେ ସଦ୍‌ଭାବ ସତ୍ତ୍ୱେ, ୧୯୫୨ ମସିହାରେ ଗୋଟିଏ ଅତି ଛୋଟ ଘଟଣାରେ ମନୋମାଳିନ୍ୟ ଘଟିଲା । ଖଣ୍ଡିଏ ବହି ଛପାଇବା ପାଇଁ ସେ ସଂକେତ ପ୍ରେସରେ ବରାଦ ଦେଇଥିଲେ । ବହିଟି ସମୟ ଅନୁଯାୟୀ ଛାପା ହୋଇ ପାରିଲା ନାହିଁ । ଅଭାବ ଜନିତ ବିଳମ୍ବକୁ ସେ ଅବହେଳା ମନେ କଲେ । ମୁଦ୍ରଣ ଶେଷ ହେବା ପରେ, ଅଭିମାନ ଭାଂଗିବା ପାଇଁ ବହି ଗୁଡ଼ିକ ରିକ୍ସାରେ ଲଦି ତାଙ୍କ ଘରେ ପହଂଚିଲି । ମୋ ହାତକୁ ବିଲ୍ ବାବତ ଚେକ୍‌ଟିଏ ବଢ଼ାଇ ଦେଇ, ସେ ଏପରି ରୁକ୍ଷ ବ୍ୟବହାର କଲେ ଯେ, ସେହିଦିନଠାରୁ ତାଙ୍କ ସହିତ କଥାବାର୍ତ୍ତା ବନ୍ଦ । ଆମ ଭିତରେ ଯେ ମନ ଅମେଳ ଘଟିଛି, ସେ କଥା ବାହାର

ଲୋକେ ଜାଣି ନଥିଲେ ବା ଆମେ କାହାକୁ ଜାଣିବାକୁ ଦେଇନାହୁଁ । ଏହାପରେ ମୁଁ ହାଇକୋର୍ଟରେ ଆଡ୍‌ଭୋକେଟ୍ ଭାବରେ ଯୋଗ ଦେଇଛି, ଆମେ ପରସ୍ପର ବିରୁଦ୍ଧରେ ମୋକଦ୍ଦମା ଲଢ଼ିଛୁ, ବାର ଆସୋସିଏସନ୍ ହଲରେ ଅନ୍ୟ ବଂଧୁମାନଙ୍କ ସହ ଏକତ୍ର ବସି ଚା ପାନ କରିଛୁ, ସଭା ସମିତିରେ ଭାଷଣ ଦେଇଛୁ । ମୁଁ ଅନୁଭବ କରିଛି ଯେ ଆମ ଭିତରେ ବୌଦ୍ଧିକ ସଂଯୋଗର ଅଭାବ ଘଟିନାହିଁ, ପୂର୍ବର ଆତ୍ମୀୟତା ଅକ୍ଷୁଣ୍ଣ ରହିଛି । ଅଥଚ ବ୍ୟକ୍ତିଗତ ସ୍ତରରେ କିଏ ଆଗେ ବାଡ଼ ଭାଂଗି କଥା କହିବ, ଏଇ କଥା ଭାବି ଭାବି ଜୀବନ ବିତିଗଲା । ରଘୁବାବୁଙ୍କ ଦେହାନ୍ତ ପରେ ମନରେ ଅନୁତାପର ଝଡ଼ ଉଠେ, ପଦେ କଥାରେ ଯେଉଁ ମାନ ଅଭିମାନରେ ପୂର୍ଣ୍ଣଚ୍ଛେଦ ପଡ଼ି ପାରିଥାନ୍ତା, ଦୀର୍ଘ ତିରିଶ ପଇଁତ୍ରିଶ ବର୍ଷ ମଧ୍ୟରେ ତାର ଉପସଂହାର ହୋଇ ପାରିଲା ନାହିଁ ।

୧୯୫୦ ମସିହାରେ ସଂକେତ ପ୍ରେସ ଅଲିସା ବଜାରରୁ ବକ୍ସିବଜାର ପେନ୍‌ସନ୍ ଲେନକୁ ଉଠି ଆସିଲା । ପେନସନ୍ ଲେନ୍ ବକ୍ସିବଜାର ମାର୍କେଟ୍ ନିକଟ । ମୁଦ୍ରଣ ବ୍ୟବସାୟରେ ସାମାନ୍ୟ ଉନ୍ନତି ହେଲା । ପେନସନ୍ ଲେନ୍ ଘରଟି ବେଶ୍ ପ୍ରଶସ୍ତ । ଦୁଇ ପଟେ ଦୁଇଟି ପ୍ରବେଶ ଦ୍ୱାର । ଏଣୁ କିଛି ଦିନ ପରେ ଘରର ପଶ୍ଚିମ ପଟେ ପ୍ରେସ ଓ ପୂର୍ବ ଭାଗରେ ଆମେ ବସବାସ କଲୁ । ଏହି ସମୟରେ ଓଡ଼ିଶା ରାଜନୀତିରେ ଏକ ଅତି ଚାଂଚଲ୍ୟକର ଘଟଣା ଘଟିଲା । ତାରିଖଟା ମନେ ନାହିଁ । ଦିନେ ଖବର ଆସିଲା, ବରିଷ୍ଠ କମ୍ୟୁନିଷ୍ଟ ନେତା ତତ୍କାଳୀନ ଏମ୍.ଏଲ.ଏ ବୈଦ୍ୟନାଥ ରଥ ପୋଲିସ ବ୍ୟୂହ ଭେଦ କରି ସିଧାସଳଖ ବିଧାନ ସଭାରେ ଯୋଗ ଦେଇଛନ୍ତି । ଅଜ୍ଞାତବାସ ଛାଡ଼ି ହଠାତ୍ ବିଧାନ ସଭା ସଦନରେ ଆବିର୍ଭାବ ଘଟଣା ମନରେ କୌତୂହଳ ସୃଷ୍ଟି କଲା । କାରଣ ସଂପର୍କରେ ସେ ଅବଶ୍ୟ କୌଣସି ବିବୃତି ବା ବିବରଣୀ ଦେଇ ନଥିଲେ । କିନ୍ତୁ ମୋର ମନେ ହେଲା, ପାର୍ଟିର ଏକ ଅବାସ୍ତବ କାର୍ଯ୍ୟକ୍ରମର ବିଫଳତା ବିରୁଦ୍ଧରେ ଏହା ଥିଲା ଏକ ପ୍ରକାରର ନୀରବ ପ୍ରତିବାଦ ।

୪୮-୪୯ ମସିହାର ସରକାରୀ ଦମନଲୀଳା ବିରୁଦ୍ଧରେ ବହୁ କମ୍ୟୁନିଷ୍ଟ ନେତା ଅଣ୍ଡରଗ୍ରାଉଣ୍ଡ ରହି ସଂଗ୍ରାମ ଚଳାଇଥାନ୍ତି । ଅଶେଷ ଦୁଃଖ, ଦୁର୍ବିପାକ ଓ ଆତଙ୍କ ମଧ୍ୟରେ ସେମାନଙ୍କୁ ଜୀବନ କଟାଇବାକୁ ପଡୁଥାଏ । କମ୍ୟୁନିଷ୍ଟ ବଂଧୁମାନଙ୍କର ଅଣ୍ଡରଗ୍ରାଉଣ୍ଡ ଜୀବନର ଏକ ନିଖୁଣ ଚିତ୍ର ମିଳେ ଦୁର୍ଗାଚରଣ ମହାନ୍ତିଙ୍କ ଦ୍ୱାରା ଛଦ୍ମନାମରେ (ରାୟଗୁରୁ) ଲିଖିତ 'ଅଗ୍ନି ଶିଖା' ବହିରେ । କିନ୍ତୁ ପଚାଶ ମସିହା ଶେଷ ଆଡ଼କୁ ଅନେକ ବିପ୍ଳବୀ ଦଳର ନୀତି ଓ

କାର୍ଯ୍ୟକ୍ରମ ପ୍ରତି ସନ୍ଦୀହାନ ଓ ବୀତସ୍ପୃହ ହୋଇ ଉଠିଥିଲେ । ଯାହାହେଉ କିଛି ଦିନ ପରେ ଦଳର ନୀତି ଓ କାର୍ଯ୍ୟକ୍ରମରେ ପରିବର୍ତ୍ତନ ହେଲା । ସମ୍ବିଧାନରେ ପରିକଳ୍ପିତ ନିର୍ବାଚନରେ ଭାଗ ନେବା ପାଇଁ ଦଳ ନିଷ୍ପତ୍ତି ନେଲେ । ଅନେକ ନେତା ଜେଲରୁ ଖଲାସ ହେଲେ । କମ୍ୟୁନିଷ୍ଟ ଦଳର ମୁଖପତ୍ର 'ନୂଆ ଦୁନିଆ''ର ପୁନଃପ୍ରକାଶ ପାଇଁ ନିର୍ଦ୍ଧାରଣ ନିଆହେଲା । କିନ୍ତୁ ଭାଗ୍ୟର କି ବିଡ଼ମ୍ବନା! ''ନୂଆ ଦୁନିଆ'' ସଂକେତ ପ୍ରେସରୁ ପ୍ରକାଶ କରିବା ପାଇଁ ପ୍ରସ୍ତାବ ଆସିଲା । ସୁବିଖ୍ୟାତ କୃଷକ ନେତା ନିମାପଡ଼ାର ପୂର୍ବତନ ଏମ୍.ଏଲ.ଏ ଶ୍ରୀ ମୋହନ ଦାସ ସେତେବେଳେ କଟକରେ ରହି ଆନ୍ଦୋଳନ ତତ୍ତ୍ୱାବଧାନ କରୁଥାନ୍ତି । ଗୁରୁ ଚରଣ ପଟ୍ଟନାୟକ ''ନୂଆ ଦୁନିଆ''ର ସଂପାଦକ । ରାମକୃଷ୍ଣ ପତିଙ୍କ ସଂଚାଳନା ସମୟରେ ପାର୍ଟି ପ୍ରେସକୁ ଉଚ୍ଛାଡ଼ି ଦିଆଯାଇଥାଏ । ସଂକେତ ପ୍ରେସରେ ''ନୂଆ ଦୁନିଆ''ର ମୁଦ୍ରଣ ପାଇଁ ମୋହନ ବାବୁ ଓ ଗୁରୁଚରଣ ବାବୁ ପ୍ରସ୍ତାବ ଦେଲେ । ଯେଉଁ କେତେଜଣଙ୍କର ଅପଚେଷ୍ଟା ଫଳରେ ପ୍ରେସ ଅଭାବରୁ 'ସଂକେତ' ପତ୍ରିକା ବନ୍ଦ ହୋଇଯାଇଥିଲା, ତାର କଟାଦାଗ ମନରୁ ଲିଭି ନଥିଲା । କିନ୍ତୁ ପ୍ରେସ ଅଭାବରେ ''ନୂଆ ଦୁନିଆ'' ପ୍ରକାଶିତ ହୋଇ ପାରିବ ନାହିଁ, ଏପରି ନିଷ୍ପତ୍ତିରେ ଭାଗୀଦାର ହେବାକୁ ମୁଁ ସ୍ପୃହଣୀୟ ମନେ କଲି ନାହିଁ । ପୂର୍ବର ତିକ୍ତତା ଭୁଲି ମୋହନ ବାବୁ ଓ ଗୁରୁଚରଣ ବାବୁଙ୍କ ପ୍ରସ୍ତାବରେ ସମ୍ମତ ହେଲି ।

ସେତେବେଳେ ମୋର ବାଲ୍ୟ ବନ୍ଧୁ ଗୋବିନ୍ଦ ଚନ୍ଦ୍ର ମହାନ୍ତିଙ୍କୁ ନୂଆ ଦୁନିଆର ପରିଚାଳନା ଦାୟିତ୍ୱ ଦିଆଯାଇଥାଏ । ଗୋଟିଏ ଦୁଇଟି ସଂଖ୍ୟା ପ୍ରକାଶିତ ହେବା ପରେ ମୋହନ ବାବୁ ନୂଆ ଦୁନିଆରେ ନିୟମିତ ରୂପେ ଲେଖିବା ପାଇଁ ମୋତେ ଅନୁରୋଧ କଲେ । ତାଙ୍କ ଅନୁରୋଧ ଅମାନ୍ୟ କରିବା ସହଜ ନୁହେ । ଗୁରୁଚରଣ ପଟ୍ଟନାୟକ ସଂପାଦକୀୟ ଲେଖନ୍ତି । ଗୋବିନ୍ଦ ଓ ମୁଁ ବାକି ପୃଷ୍ଠା ପୂରଣ କରୁ । କାଗଜର ସଂପାଦନା ଉନ୍ନତ ଧରଣର ହେଉଛି ବୋଲି ବହୁ ବନ୍ଧୁ ମତ ଦେଉଥାନ୍ତି । ମୁଁ ପାର୍ଟିର ସଦସ୍ୟ ନଥିଲେ ମଧ୍ୟ, ଥରେ ଦାୟିତ୍ୱ ନେଲା ପରେ, ସେ ଦାୟିତ୍ୱ ଯେପରି ସୁଚାରୁରୂପେ ପୂରଣ କରାହେବ ସେ ପ୍ରତି ବିଶେଷ ଧ୍ୟାନ ଦେଉଥାଏ ।

୧୯୫୧ ଜୁଲାଇ ମାସରେ ଅଯାଚିତ ବେତନ ବୃଦ୍ଧି ବିରୁଦ୍ଧରେ ରେଭେନ୍ସା କଲେଜରେ ଏକ ଛାତ୍ର ଆନ୍ଦୋଳନ ଆରମ୍ଭ ହେଲା । ହରେକୃଷ୍ଣ ମହତାବ ସେତେବେଳେ ଓଡ଼ିଶା ଛାଡ଼ି କେନ୍ଦ୍ରରେ ଜଣେ କ୍ୟାବିନେଟ୍ ମନ୍ତ୍ରୀ, ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହୋଇ

ନଥାଏ ବା ବିଧାନ ସଭା ସୌଧ ନିର୍ମିତ ହୋଇ ନଥାଏ । ଆସେମ୍ବ୍ଲି ବୈଠକ ରେଭେନ୍ସା କଲେଜ ହଲ୍‌ରେ ଅନୁଷ୍ଠିତ ହୁଏ । ଛାତ୍ର ଆନ୍ଦୋଳନ ଫଳରେ ଆସେମ୍ବ୍ଲି କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି ହୁଏ । ପ୍ରବୀର ପାଲିତ, ଗୋବିନ୍ଦ ଦାସ, ରମାକାନ୍ତ ମହାପାତ୍ର ଓ ନନ୍ଦିନୀ ପାଣିଗ୍ରାହୀ (ବର୍ତ୍ତମାନ ଶତପଥୀ) ପ୍ରମୁଖ ଏହି ଆନ୍ଦୋଳନର ନେତା । ଛାତ୍ର ଆନ୍ଦୋଳନକୁ ଦମନ କରିବା ପାଇଁ ସରକାର ବଦ୍ଧପରିକର ହେଲେ । ତତ୍କାଳୀନ ଯୁବ କଂଗ୍ରେସ ନେତା ବିଜୁ ପଟ୍ଟନାୟକ ମଧ୍ୟସ୍ଥତା କରି ସମାଧାନ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ତାଙ୍କର ଦାମ୍ଭିକ ବ୍ୟବହାରରେ ପ୍ରିନ୍ସିପାଲ ବାନାର୍ଜି ଆହୁରି କ୍ଷୁବ୍ଧ ହେଲେ । ଆନ୍ଦୋଳନ ପ୍ରଶମିତ ହେବା ପରିବର୍ତ୍ତେ ଉଗ୍ରରୂପ ଧାରଣ କଲା । ଓଡ଼ିଶା ମିଲିଟାରୀ ପୋଲିସ ଛାତ୍ରମାନଙ୍କ ଉପରେ ଲାଠି ଚାଳନା କଲେ । କେତେକ ଆହତ ହେଲେ, କେତେ ଛାତ୍ର ଗିରଫ ହେଲେ । ନୂଆ ଦୁନିଆ ତରଫରୁ ଘଟଣାର ଚାକ୍ଷୁଷ ବିବରଣୀ ସଂଗ୍ରହ କରିବା ପାଇଁ ମୁଁ କଲେଜ ଛକ ଆଡ଼କୁ ଚାଲିଲି । ରାଣୀହାଟ ପୋଲ ଅତିକ୍ରମ କରି ଆଉ ଆଗକୁ ଯାଇ ହେଲା ନାହିଁ । ମିଲିଟାରୀ ପୋଲିସ ପୋଲ ପର୍ଯ୍ୟନ୍ତ ଗୋଡ଼ାଇ ଗୋଡ଼ାଇ ଛାତ୍ରମାନଙ୍କୁ ପିଟୁ ଥାଆନ୍ତି । ସଦ୍ୟ କଲେଜ ଛାଡ଼ିଥିବା ଜଣେ ଯୁବକ ସର୍ଭେଣ୍ଟ ଛାତ୍ର ଓ ସାଧାରଣ ଦେଖଣାହାରୀଙ୍କ ଉପରେ ଯେଉଁଳି ନିର୍ମମ ବ୍ୟାଟନ୍ ପ୍ରୟୋଗ କରୁଥାନ୍ତି, ତାହା ଦେଖି ରକ୍ତ ତାତି ଉଠୁଥାଏ । ମୁଁ ଯୋବ୍ରା ବାଟ ଦେଇ ବୁଲି ବୁଲି ଇଷ୍ଟ ହଷ୍ଟେଲ ସାମନା ପୋଷ୍ଟ ଅଫିସ ଛକରେ ପହଂଚିଲି । ରାସ୍ତା ଉପରେ ଭେଳା ଭେଳା ବଂଧୁକଧାରୀ ଓ ଲାଠିଧାରୀ ପୋଲିସ । ଯାତାୟାତ ସଂପୂର୍ଣ୍ଣ ବନ୍ଦ । ପାଂଚଟା ବେଳକୁ ଦୋକାନ ବଜାର ସବୁ ବନ୍ଦ । ଅଳ୍ପ ସଂଖ୍ୟକ ପୋଲିସଙ୍କୁ ଛାଡ଼ି ଅନ୍ୟମାନେ ଧୀରେ ଓ.ଏମ.ପି. ଛକ ବ୍ୟାରାକ୍‌କୁ ଫେରୁଥାନ୍ତି । ଏହି ସମୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ପୋଲିସ ଗହଣରେ ଆସେମ୍ବ୍ଲି ଛାଡ଼ି କୋଠିକୁ ଫେରିଲେ । ସାଂବାଦିକମାନେ ମଧ୍ୟ କଲେଜ ଛକରୁ ପ୍ରତ୍ୟାବର୍ତ୍ତନ କଲେ ।

'ନୂଆ ଦୁନିଆ'ର ପରବର୍ତ୍ତୀ ସଂଖ୍ୟାରେ କଲେଜ ଛକରେ ଛାତ୍ରମାନଙ୍କ ଉପରେ ଲାଠିମାଡ଼ର ଏକ ବିସ୍ତୃତ ଚାକ୍ଷୁଷ ବିବରଣୀ ପ୍ରକାଶିତ ହେଲା । ଶେଷ ପୃଷ୍ଠାରେ ''ପ୍ରିୟ ନବ ବାବୁ'' ଶୀର୍ଷକ ମୋ ଲିଖିତ ଏକ ଖୋଲା ଚିଠି ମଧ୍ୟ ପ୍ରକାଶ ପାଇଥିଲା । ଢେଙ୍କାନାଳ ଆନ୍ଦୋଳନ ସମୟରେ ବାଜିରାଉତର ଶୋକ ସଭାରେ ନବବାବୁଙ୍କ ଭାଷଣ ତାଙ୍କୁ ମନେ ପକାଇ ଦେଇ ମୁଁ ଲେଖିଥିଲି ଯେ ଢେଙ୍କାନାଳ ରାଜା ଶଙ୍କର ପ୍ରତାପ ସଶସ୍ତ୍ର ପୋଲିସ ଜଗୁଆଳରେ ଏକା ଟ୍ରେନ୍‌ରେ ଗଲାବେଳେ ବାଜିରାଉତର ଭୂତ ଦେଖି ଯେପରି ଚମକି ଉଠୁଥିଲେ,

ପୋଲିସି ଗହଣରେ ଗାଡ଼ିରେ ବସି ପ୍ରତ୍ୟାବର୍ତ୍ତନ କଲାବେଳେ ମୁଖ୍ୟମନ୍ତ୍ରୀ ଆହତ ଛାତ୍ରଙ୍କର ଭୂତ ଦେଖୁ ନାହାନ୍ତି ତ? ମୁଁ ତାଙ୍କୁ ସ୍ମରଣ କରାଇ ଦେଇଥିଲି ଯେ ସ୍ୱାଧୀନ ଭାରତରେ ବ୍ରିଟିଶ ଯୁଗର ପରଂପରା ପରିହାର ନ କଲେ ଛାତ୍ର ଜନତାର ଉଷ୍ଣ ରକ୍ତ ପ୍ରବାହରେ ତାଙ୍କର କ୍ଷମତାର ସୌଧ ମଧ୍ୟ ଭାସିଯିବ। ନବ ବାବୁଙ୍କୁ ମୁଁ ପିଲାଦିନୁ ଜାଣିଥିଲି। ଜଣେ ବିଖ୍ୟାତ ବୁଦ୍ଧିଜୀବୀ ଓ ବିପ୍ଳବୀ ଭାବରେ ତାଙ୍କ ପ୍ରତି ମୋର ଯଥେଷ୍ଟ ସମ୍ମାନ ଥିଲା। ଏଣୁ ଖୋଲା ଚିଠିରେ ତାଙ୍କୁ ଏପରି କଠୋର ଭାଷାରେ ସମାଲୋଚନା କରିବା ହେତୁ ମୁଁ ଅନୁତପ୍ତ ନ ହେଲେ ମଧ୍ୟ, ବିଶେଷ ସୁଖୀ ନ ଥିଲି। କିନ୍ତୁ ଏହି ଖୋଲା ଚିଠିଟି ପାଠକ ମହଲରେ ବିଶେଷ ଆଦୃତ ହୋଇଥିଲା ଓ ବିଭିନ୍ନ ଅଂଚଳରୁ ଏ ସଂପର୍କରେ ନୂଆ ଦୁନିଆ ଅଫିସକୁ ଅନେକ ଚିଠିପତ୍ର ଆସିଥିଲା। ଚିଠିଟି ଯେ ଯଥା ସ୍ଥାନରେ ବିଶେଷ ଆଘାତ କରିଛି, ତାର ପ୍ରମାଣ ମିଳିଲା ପ୍ରାୟ ସପ୍ତାହକ ପରେ।

ଦିନେ ସଂଧ୍ୟାବେଳେ ମୁଁ ନୟାସଡ଼କ ରାସ୍ତା ଦେଇ ଫେରୁଛି, ହଠାତ୍ ଦେଖିଲି ଜଣେ ଖବର କାଗଜ ବିକ୍ରେତା ଆଗେ ଆଗେ ଚିତ୍କାର କରି ଚାଲିଛି "ଗଂଗାଧର ରଥଙ୍କୁ ଜବାବ - ଗଂଗାଧର ରଥଙ୍କୁ ଜବାବ" ମୁଁ ଚମକି ପଡ଼ିଲି। ପ୍ରଥମେ ଭାବିଲି ବୋଧହୁଏ ଭୁଲ ଶୁଣୁଛି। କିନ୍ତୁ ହକର୍ ଜଣକ ଉଚ୍ଚ ଗଳାରେ ସେଇ ଏକ କଥା "ରଥଙ୍କୁ ଜବାବ୍" ଧ୍ୱନି ଦେଇ ଚାଲିଛି। କୌତୂହଳ ସମ୍ଭାଳି ହେଲା ନାହିଁ। ଖଣ୍ଡେ କାଗଜ କିଣିଲି। ଗୌରୀ ଶଙ୍କର ପାର୍କ ପାଖ ଲାଇଟ୍ ଖୁଣ୍ଟ ତଳେ ଠିଆ ହୋଇ କାଗଜ ପଢ଼ି ଦେଖିଲି, ଚାରି ପୃଷ୍ଠିଆ କାଗଜର ତିନି ଭାଗ ମୋତେ ଦିଆଯାଇଥିବା ଜବାବରେ ପରିପୂର୍ଣ୍ଣ - "ପ୍ରିୟ ନବ ବାବୁ" ଶୀର୍ଷକ ଖୋଲା ଚିଠିର ପ୍ରତ୍ୟୁତ୍ତର। ନୂତନ ସାପ୍ତାହିକଟି ସଂପାଦନା କରିଛନ୍ତି, ଜଣେ ସଦ୍ୟ କଲେଜ ଛାଡ଼ିଥିବା ଯୁବ କଂଗ୍ରେସ କର୍ମୀ। ପରେ ଶୁଣିଲି, ବୀରେନ୍‌ଦାଙ୍କ ଅର୍ଥରେ ସାପ୍ତାହିକଟି ପ୍ରକାଶିତ ହୋଇଛି, କେବଳ ମୁଖ୍ୟମନ୍ତ୍ରୀଙ୍କୁ ସନ୍ତୁଷ୍ଟ କରିବା ପାଇଁ।



# ପୂର୍ଣ୍ଣାହୂତି

ମୋର ସାଂବାଦିକ ଜୀବନ ଆରମ୍ଭ ହୋଇଥିଲା ୧୯୪୩ ମସିହାରେ 'ମୁକ୍ତିଯୁଦ୍ଧ' ସାପ୍ତାହିକର ସହକାରୀ ସଂପାଦକ ଭାବରେ । ୧୯୪୮ ମସିହାରେ ମୋ ଦ୍ୱାରା ସଂପାଦିତ 'ସଂକେତ' ପତ୍ରିକାର ବିଚିତ୍ର ରାଜନୈତିକ ପରିସ୍ଥିତିରେ ବିଲୟ ଘଟିଲା । ୫୨ ମସିହାର ପ୍ରଥମ ସାଧାରଣ ନିର୍ବାଚନର କିଛି ଦିନ ପୂର୍ବରୁ କମ୍ୟୁନିଷ୍ଟ ପାର୍ଟି ନିଜର ପ୍ରେସ ପୁନଃପ୍ରତିଷ୍ଠା କଲେ ଓ ''ନୂଆଦୁନିଆ'' ପାର୍ଟି ପ୍ରେସରେ ମୁଦ୍ରିତ ହେଲା । ''ନୂଆ ଦୁନିଆ''ର ସଂପାଦନାରେ ଭାଗୀଦାର ହେବା ପାଇଁ ମୋର ଆଉ ଅବକାଶ ରହିଲା ନାହିଁ । ମୋର ସାଂବାଦିକ ଜୀବନରେ ଏହିଠାରେ ପୂର୍ଣ୍ଣାହୂତି ପଡ଼ିଲା ।

ସାଂବାଦିକତାରୁ ଅବ୍ୟାହତି ମିଳିବା ପରେ ସଂକେତ ପ୍ରେସ ଆନୁକୂଲ୍ୟରେ ପ୍ରକାଶିତ ପୁସ୍ତକ ଗୁଡ଼ିକର ବିକ୍ରି ଓ ବିକ୍ରୟ ଲବ୍ଧ ଅର୍ଥ ସଂଗ୍ରହ ଦିଗରେ ଅଧିକ ତତ୍ପର ହେଲି । ବିଭିନ୍ନ ପୁସ୍ତକ ବିକ୍ରେତା ମାନଙ୍କ ପାଖରେ ଜମା ଦିଆଯାଇଥିବା ''ସୋଭିଯେଟ୍ ସମାଜ'' ଓ 'ନ'ଟି ଗପ' ବହିର ବିକ୍ରି ହିସାବରୁ ଦେଖାଗଲା, ଦୁଇ ବର୍ଷ ମଧ୍ୟରେ 'ନ'ଟି ଗପ' ମାତ୍ର ୪୦୦ ଖଣ୍ଡ ଓ 'ସୋଭିଯେଟ୍ ସମାଜ' ପ୍ରାୟ ୩୦୦ ଖଣ୍ଡ ବିକ୍ରି ହୋଇଛି । ଏହି ଭାବରେ ଯଦି ବିକ୍ରି ହୁଏ, ତେବେ ମୁଦ୍ରଣ ଖର୍ଚ୍ଚ ଓ କାଗଜ ଦାମ ଭରଣା କରିବା ପାଇଁ ଆଉ ଦୁଇ ବର୍ଷ ଅପେକ୍ଷା କରିବାକୁ ହେବ । କେବଳ 'ଆମେରିକା ଯାତ୍ରୀ' ବହିଟିର ବାଉନ୍ ମସିହାରେ ଦ୍ୱିତୀୟ ସଂସ୍କରଣ ହେଲା । ସେଥିରେ ଅବଶ୍ୟ ଆଶ୍ଚର୍ଯ୍ୟ ହେବାର କାରଣ ନଥିଲା । କାରଣ ବହିଟି ପ୍ରକାଶ କରିଥିଲେ ଖ୍ୟାତନାମା ପ୍ରକାଶକ 'କଟକ ପବ୍ଲିଶିଂ ହାଉସ'' ଓ କିଛି ବର୍ଷ ପାଇଁ ବହିଟି ଇଣ୍ଟର ମିଡ଼ିଏଟ୍ କ୍ଲାସ ପାଇଁ ପାଠ୍ୟ ପୁସ୍ତକ ରୂପେ ମନୋନୀତ ହୋଇଥିଲା । ଏ ସବୁ ହିସାବ ଦେଖି ମୁଁ ବିଶେଷ ଆତଙ୍କିତ ହେଲି । ଆଶଙ୍କା ହେଲା, ବୋଧହୁଏ ମୋର ଅଭିଜ୍ଞତା ଓ ପରିଚାଳନାଗତ ତ୍ରୁଟି ହେତୁ ବହି ବିକ୍ରି ହୋଇ ପାରୁ ନାହିଁ । କେତେଜଣ ହିତାକାଂକ୍ଷୀ ପୁସ୍ତକ ପ୍ରକାଶକଙ୍କ ସହିତ ପରାମର୍ଶ କଲି । ସମସ୍ତେ ଏକସ୍ୱରରେ ମତ ଦେଲେ, ପାଠ୍ୟପୁସ୍ତକ ବ୍ୟତୀତ ସାଧାରଣ ପୁସ୍ତକ ପ୍ରକାଶନ କ୍ଷେତ୍ରରେ ସମସ୍ତଙ୍କର ଏହି ଏକ ପ୍ରକାରର ଅଭିଜ୍ଞତା । ଓଡ଼ିଆ ପାଠକମାନେ କୁଆଡ଼େ ବହି କିଣନ୍ତି ନାହିଁ । ସ୍କୁଲ କଲେଜ ବା

ସାଧାରଣ ଲାଇବ୍ରେରୀ ସଂଖ୍ୟା ଅତି ନଗଣ୍ୟ । ଏଣୁ ସାଧାରଣ ବହି ବିକ୍ରୟର ପରିସର ମଧ୍ୟ ଅତି ସୀମିତ । କେବଳ ଏହି ପ୍ରକାରର ବହି ଉପରେ ନିର୍ଭର କରି କାହାରି ଗୁଜୁରାଣ ମେଣ୍ଟିବ ନାହିଁ । ମୁଁ ଯେ ସତକୁ ସତ ସ୍ୱପ୍ନ କୁହେଳୀରେ ଭାସୁଥିଲି ଏବଂ କଳ୍ପନା ଓ ବାସ୍ତବତା ମଧ୍ୟରେ ତାରତମ୍ୟ କେତେ ବିରାଟ, ତା ଏବେ ବୁଝି ପାରିଲି ।

ଏହି ସମୟରେ ମୋର ପଡ଼ୋଶୀ ପେନସନ୍ ଲେନ୍ ମୁଲ୍ଲା ପରିବାରର ସନ୍ତାନ ଅହମ୍ମଦ ମୁଲ୍ଲା ଷ୍ଟେୱାର୍ଟ୍ ସ୍କୁଲରୁ ପାସ କରି ବକ୍ସିବଜାର ପ୍ରଭାତ ସିନେମା ନିକଟରେ ଏକ ବହି ଦୋକାନ ଖୋଲିଥାନ୍ତି । ସେଠାରେ ମୁଖ୍ୟତଃ ବ୍ଲିଜ, କରେଣ୍ଟ ଆଦି ସାମୟିକ ପତ୍ର ପତ୍ରିକା, କେତେକ ଶସ୍ତା ବହି ଓ ସିନେମା ମ୍ୟାଗାଜିନ୍ ଆଦି ବିକ୍ରି ହୁଏ । ଆଜିକାଲି ଅବଶ୍ୟ ଏ ପ୍ରକାରର ବହି ଦୋକାନ କଟକରେ ବହୁ ସଂଖ୍ୟାରେ ଅଛି । କିନ୍ତୁ ସେ କାଳରେ ଷ୍ଟେସନରେ ଥିବା ହୁଇଲର କଂପାନୀର ଷ୍ଟଲ ବ୍ୟତୀତ ପତ୍ର ପତ୍ରିକା ପାଇଁ ମୁଲ୍ଲାଙ୍କ ବହି ଦୋକାନ ଥିଲା ଏକମାତ୍ର ବିକ୍ରୟ କେନ୍ଦ୍ର । ପେନସନ୍ ଲେନ୍‌ରୁ ଆସି ଅନେକ ଦିନ ସଂଧ୍ୟା ସମୟରେ ଏହି ଦୋକାନରେ ବସେ, ପତ୍ର ପତ୍ରିକା ପଢ଼େ । ସାଧାରଣ ପତ୍ର ପତ୍ରିକା ଠାରୁ ଫିଲ୍ମ ମ୍ୟାଗାଜିନ୍ ଅଧିକ ସଂଖ୍ୟାରେ ବିକ୍ରି ହେଉଛି ବୋଲି ମୁଁ ଅନୁଭବ କରେ । ଚଳଚିତ୍ର ଦେଖିବା ପାଇଁ ଲୋକଙ୍କର ଯେତିକି ଆଗ୍ରହ, ରଂଗ ବେରଂଗ ଛବିରେ ପରିପୂର୍ଣ୍ଣ ଚଳଚିତ୍ର ପତ୍ରିକା ପାଇଁ ସେତିକି ଆଗ୍ରହ । ବିସ୍ମୟ ଲାଗେ ଯେ ତରୁଣ ପାଠକମାନଙ୍କର ରୁଚି କେଉଁଆଡ଼େ ଯାଉଛି । ଅହମ୍ମଦ ମୁଲ୍ଲା ଦିନେ ପ୍ରସ୍ତାବ କଲେ, ବିଶିଷ୍ଟ ସିନେମା ଷ୍ଟାରମାନଙ୍କର ଏକ ଜୀବନୀ ଲେଖିବା ପାଇଁ । ମୋର ମନେ ହେଲା, ଏ ପ୍ରକାରର ବହି ଓଡ଼ିଆରେ ଲେଖିଲେ ବୋଧହୁଏ ବିକ୍ରି ହେବ ଓ ସେଥିରୁ କିଛି ଅର୍ଥ ଉପାର୍ଜନ କରାଯାଇ ପାରିବ । ବିଭିନ୍ନ ପତ୍ର ପତ୍ରିକାରୁ ବିବରଣୀ ସଂଗ୍ରହ କରି ସେ ଯୁଗର ଆଠ ଜଣ ବିଶିଷ୍ଟ ସିନେମା ଷ୍ଟାରଙ୍କ ଜୀବନ କାହାଣୀ ଲେଖିବାକୁ ଆରମ୍ଭ କଲି । ତିନିମାସ ମଧ୍ୟରେ ବହି ଲେଖା ସମାପ୍ତ ହେଲା । ନାମ ରଖା ହେଲା "ଚିତ୍ର ତାରକା" । ରାଜ କାପୁର, ଦିଲୀପ କୁମାର, ଅଶୋକ କୁମାର, ବଳରାଜ ସାହାନୀ, ନର୍ଗୀସ୍, ମଧୁବାଲା ପ୍ରମୁଖ ଆଠ ଜଣ ଫିଲ୍ମ ଷ୍ଟାରଙ୍କ ଜୀବନୀ ସମ୍ବଳିତ ବହିଟି ପ୍ରକାଶିତ ହେଲା ସଂକେତ ପ୍ରେସ ଆନୁକୂଲ୍ୟରେ ।

ବହିର ଲେଖକ କିଏ ହେବ? ସ୍ୱନାମରେ ସିନେମା ଷ୍ଟାରମାନଙ୍କର ଜୀବନୀ ପରିବେଷଣ କରିବା ଲଜ୍ଜାଜନକ ମନେ ହେଲା। ଏଣୁ ଏହି ବହିର ଲେଖିକା ରୂପେ ଆବିର୍ଭୂତ ହେଲେ ଏକ କାଳ୍ପନିକ ଚରିତ୍ର 'ପ୍ରମଦା ମହାପାତ୍ର'। ଏହି ଛଦ୍ମନାମରେ ସଂକେତ ପତ୍ରିକାରେ ମୋର ଅନେକ ଲେଖା ପ୍ରକାଶିତ ହୋଇଥିଲା। ଏଣୁ ସୁପରିଚିତା 'ପ୍ରମଦା ମହାପାତ୍ରଙ୍କ' ଅବଗୁଣ୍ଠନ ତଳେ ଆଶ୍ରୟ ନେବାକୁ ସଂକୋଚ ଲାଗିଲା ନାହିଁ।

ସେ ଯୁଗର ମୁଦ୍ରଣ ପରିପାଟୀର ମାନ ଦୃଷ୍ଟିରୁ 'ଚିତ୍ର ତାରକା' ବହିଟି ଥିଲା ସୁଦୃଶ୍ୟ। ଆର୍ଟ ପେପରରେ କଲିକତାରେ ଛପା ହୋଇଥିବା ବାଇକଲର ରଂଗୀନ୍ କଭର ବହିର ଶୋଭା ବର୍ଦ୍ଧନ କରୁଥିଲା। ପ୍ରତ୍ୟେକ ଅଧ୍ୟାୟର ଆରମ୍ଭରେ ଦିଆଯାଇଥିଲା ସଂପୃକ୍ତ ଷ୍ଟାରଙ୍କର ଏକ ରଂଗୀନ ଚିତ୍ର। ପ୍ରମଦା ମହାପାତ୍ରଙ୍କ ଲେଖନୀ ମଧ୍ୟ ଥିଲା ଉଚ୍ଚକୋଟୀର। ଶସ୍ତା ପ୍ରେମ କାହାଣୀ ପରିବର୍ତ୍ତେ, ସାବଲୀଳ ଭାଷାରେ ଚିତ୍ର ଜଗତରେ ଆତ୍ମ ପ୍ରତିଷ୍ଠା ପାଇଁ ଅଭିନେତା ଓ ଅଭିନେତ୍ରୀ ମାନଙ୍କର ସଂଗ୍ରାମର କାହାଣୀ, ସେମାନଙ୍କର ବ୍ୟକ୍ତିତ୍ୱ ଓ ଅଭିନୟ କଳାର ଏକ ରୁଚିସଂଗତ ଓ ରୋମାଂଚକର ବିଶ୍ଳେଷଣ ଥିଲା ପ୍ରମଦାଙ୍କର ଲେଖାର ବିଶେଷତ୍ୱ। ବହିଟି ପ୍ରଥମେ ଅନାୟାସରେ ଶହେ ଦୁଇଶହ ଖଣ୍ଡ ବିକ୍ରି ହୋଇଗଲା, ତା ପରେ ବିକ୍ରି ସଂପୂର୍ଣ୍ଣ ମନ୍ଥର। ପୂର୍ବ ଅନୁଭୂତିର ପୁନରାବୃତ୍ତି। ମନେ ହେଲା, ହୁଏତ ମୋର ଭାଷା ଜନପ୍ରିୟ ହୋଇ ପାରୁନାହିଁ। କିମ୍ୱା ବିଷୟବସ୍ତୁ ନିର୍ବାଚନ ବୋଧହୁଏ ତ୍ରୁଟିପୂର୍ଣ୍ଣ। ହୁଏତ ପୁସ୍ତକ ବ୍ୟବସାୟର ମୂଳସୂତ୍ର ମୋତେ ଜଣା ନାହିଁ କିମ୍ୱା ସାଧାରଣ ପୁସ୍ତକର ପ୍ରସାର ପାଇଁ ଓଡ଼ିଶାରେ ଅନୁକୂଳ ବାତାବରଣ ନାହିଁ। ବସ୍ତୁତଃ ପୁସ୍ତକ ପ୍ରକାଶକମାନେ ପୁରାଣ ବା ପାଠ୍ୟପୁସ୍ତକ ପ୍ରକାଶନ ପ୍ରତି ଅଧିକ ଧ୍ୟାନ ଦେଉଥିଲେ। ପ୍ରତ୍ୟେକ ପ୍ରକାଶକଙ୍କର ନିଜର ପ୍ରେସ୍ ଓ ବହି ଦୋକାନ ଥିଲା ଏବଂ ମୁଦ୍ରଣ ତଥା ପ୍ରକାଶନଠାରୁ ଆରମ୍ଭ କରି ବିକ୍ରୟ ବ୍ୟବସ୍ଥା ପର୍ଯ୍ୟନ୍ତ ସମସ୍ତ ଆନୁସଂଗିକ କାର୍ଯ୍ୟର ମଧ୍ୟ ସେମାନେ ତତ୍ତ୍ୱାବଧାନ କରୁଥିଲେ। ପୁରାଣ ବା ପାଠ୍ୟପୁସ୍ତକ ବ୍ୟବସାୟରେ ମୋର ଆଦୌ ଆଗ୍ରହ ନଥିଲା। ପାଠ୍ୟପୁସ୍ତକର ପ୍ରଚଳନ ପାଇଁ ସରକାରୀ ଅନୁମୋଦନ ଲାଭ କରିବା ନିମନ୍ତେ ପୁସ୍ତକ ବ୍ୟବସାୟୀଙ୍କୁ ଯେଉଁ ପ୍ରକାରର କାରସାଦୀ ଓ ଅର୍ଥଶ୍ରାଦ୍ଧ କରିବାକୁ ପଡ଼େ, ମୁଁ ସେ ବିଷୟରେ ଭଣା ଅଧିକେ ଅବଗତ ଥିଲି। ଏଣୁ ଏଥିରୁ ଦୂରରେ ରହିବାକୁ ମୁଁ ଶ୍ରେୟସ୍କର ମନେ କରୁଥିଲି।

ସ୍ୱ ରଚନାକୁ ପାଠକ ସମାଜରେ ଉପସ୍ଥାପିତ କରିବା ଥିଲା ମୋର ଏକମାତ୍ର ଅଭିଳାଷ । କ୍ରମେ ଅନୁଭବ କଲି, ଏ ପ୍ରୟାସରେ ଅଧିକ ଦୂର ଅଗ୍ରସର ହେବା ମୋ ପକ୍ଷରେ ଉଚିତ ହେବ ନାହିଁ ।

ଯେଉଁ ଅସ୍ୱାଭାବିକ ପରିସ୍ଥିତିରେ ମୁଁ ମୁଦ୍ରଣ ବ୍ୟବସାୟରେ ଜଡ଼ିତ ହୋଇ ପଡ଼ିଥିଲି, ତାହାକୁ ସଫଳତାର ଏକ ମାଇଲ ଖୁଣ୍ଟ ବୋଲି ମନେ କରୁଥିଲି । କିନ୍ତୁ ଚାରି ବର୍ଷର ଅନୁଭୂତି ପରେ, ଏ ଧନ୍ଦାରେ କେତେ ଦିନ ତିଷ୍ଠି ରହି ପାରିବି, ସେ ବିଷୟରେ ମନରେ ସଂଦେହର ଢେଉ ଉଠିଲା । ସେ କାଳରେ ମୁଦ୍ରଣ କଳା କୌଶଳ ଥିଲା ଅତି ପୁରାତନ ପ୍ରଣାଳୀର । ଏହି ଛାପା କାର୍ଯ୍ୟ କରିବା ପାଇଁ ମୁଖ୍ୟତଃ ଶ୍ରମିକ ସହଯୋଗ ଉପରେ ନିର୍ଭର କରିବାକୁ ହୁଏ । କଂପୋଜିଟର ପ୍ରେସମ୍ୟାନ ଠାରୁ ଆରମ୍ଭ କରି ଦପ୍ତରୀ ପର୍ଯ୍ୟନ୍ତ ଅଧିକାଂଶ ପ୍ରେସ୍ କର୍ମଚାରୀ ମୁଖ୍ୟତଃ କଟକ ସହରର ଲୋକ । ମଜୁରୀ ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ଆୟର ପନ୍ଥା ନାହିଁ । ଏଣୁ ମାସ ଶେଷରେ ଦରମା ଦେବାରେ ବିଳମ୍ବ ହେଲେ, ସେମାନଙ୍କର ପରିବାର ଅଚଳ ହୋଇପଡ଼େ । ମାସ ଶେଷରେ କିପରି ସମସ୍ତଙ୍କୁ ଦରମା ଦେବାକୁ ହେବ, ଛୋଟ ଛୋଟ ପ୍ରେସବାଲାଙ୍କ ପକ୍ଷରେ ଏହା ଏକ ସମସ୍ୟା । କୌଣସି ପୁସ୍ତକ ପ୍ରକାଶକଙ୍କର ବହି ଛପାଇଲେ, ବିଲ ଆଦାୟ କରିବା କାଠିକର ପାଠ । କେବଳ କଟକ ପବ୍ଲିଶିଂ ହାଉସ୍ ଓ ଅନ୍ୟ ଗୋଟିଏ ଦୁଇଟି ଥିଲେ ଏହାର ବ୍ୟତିକ୍ରମ । ବିଲ ଆଦାୟ ପାଇଁ ସଂଧ୍ୟାବେଳେ ଦୋକାନକୁ ଦୌଡ଼ିବାକୁ ହୁଏ । ଆଦାୟଟା ସେ ଦିନର ବିକ୍ରୟ ଉପରେ ନିର୍ଭର କରେ । ପ୍ରକାଶକମାନେ ପରଧନରେ ବେଉସା କରନ୍ତି । ଲେଖକକୁ ତାର ପାରିଶ୍ରମିକ ବା ମୁଦ୍ରାକରଙ୍କୁ ତାଙ୍କର ଦେୟ ସମୟାନୁଯାୟୀ ମିଳେ ନାହିଁ । ଥରେ ଥରେ ଏପରି ଅଭିଜ୍ଞତା ହୋଇଛି, ଯାହାଙ୍କଠାରୁ ହଜାରେ ଟଂକା ପ୍ରାପ୍ୟ, ଦୋକାନରେ ଦୁଇ ଘଣ୍ଟା ବସିଲା ପରେ ପଚିଶ ଟଂକା ମିଳେ । ମୁଁ ଅନୁଭବ କଲି, ନିଜର ନ୍ୟାଯ୍ୟ ପ୍ରାପ୍ୟ ଆଦାୟ କରିବା ପାଇଁ ଭିକ୍ଷାଥାଳୀ ଧରି ଏ ଅନୁନୟ ବିନୟ କରିବା ମୋ ଦ୍ୱାରା ହୋଇ ପାରିବ ନାହିଁ । ବାକି ସରକାରୀ ସୂତ୍ରରୁ ଅର୍ଡ଼ର ସଂଗ୍ରହ କରିବା ପାଇଁ ଯେଉଁ ମନୋବୃତ୍ତି ଲୋଡ଼ା, ତାହା ମୋ ଜାତକରେ ନଥିଲା । କର୍ତ୍ତାମାନେ ବା ସରକାର ବିରୋଧୀ ଲୋକଙ୍କୁ ଅନୁଗ୍ରହ ଦେଖାନ୍ତେ କାହିଁକି ?

ମୋର ଭବିଷ୍ୟତ ବିଷୟରେ ମୁଁ ବିଶେଷ ଚିନ୍ତିତ ହେଲି । ଶେଷ ନିଷ୍ପତ୍ତି ନେବାକୁ ଆହୁରି ବର୍ଷଟିଏ ବିତିଗଲା । ୧୯୫୨ ମସିହା ଜୁନ ମାସରେ ଥରେ ନନା କଟକ ଆସି ପେନସନ୍ ଲେନ୍ ଘରେ ତିନ ଚାରି ଦିନ ଧରି ରହିଲେ । ପ୍ରେସ୍ ବିଷୟରେ ସେ ଯେ ତନ୍ନ ତନ୍ନ କରି ଅନୁଧ୍ୟାନ କରୁଛନ୍ତି, ସେ କଥା ମତେ ଜଣା ନଥିଲା । ଦିନେ ସଂଧ୍ୟାରେ କଥା ପ୍ରସଙ୍ଗରେ ସେ କହିଲେ, ଆମ ଗାଁ ବିପିନ୍ ଦାସ ମୁକ୍ତାରୀ କରି ଦିନକୁ ଦଶ ପନ୍ଦର ରୋଜଗାର କରି ପାରୁଚି । ଓକିଲାତି ଏକ ସ୍ୱାଧୀନ ବ୍ୟବସାୟ । ତୁ ଓକିଲାତି ନ କରି କି ବେପାରରେ ଲାଗିଛୁ ? ବିପିନ ବାବୁ ନନାଙ୍କର ବଂଧୁ, ଆମେ ତାଙ୍କୁ ମଉସା ବୋଲି ସଂବୋଧନ କରୁ । ନନାଙ୍କର କଥା ମୋ ଭିତରେ ଗୋଟାଏ ଚମକ ସୃଷ୍ଟି କଲା । ଗୋଟାଏ ବିକଳ୍ପ ବେଉସାର ଛବି ମୋ ଆଖି ଆଗରେ ନାଚିଲା । ଏହି ସମୟରେ ଥରେ ରାଜୁଦାଦାଙ୍କ (ଆଡ୍‌ଭୋକେଟ୍ ରାଜ କିଶୋର ଦାସ) ଘରକୁ ମୁଁ ଓ ନିରୁପମା ରଜ ଭୋଜି ଖାଇବାକୁ ଯାଇଥିଲୁ । ବହୁ ଆଲୋଚନା ଭିତରେ ମୁଁ ନନାଙ୍କ ମତାମତ ଉତ୍‌ଥାପନ କଲି । ରାଜୁଦାଦା କହିଲେ, ଜଣେ ସ୍ୱାଧୀନଚେତା ବୁଦ୍ଧିଜୀବୀ ପକ୍ଷରେ ଓକିଲାତି ଏକ ଆଦର୍ଶ ବ୍ୟବସାୟ । ମଧୁବାବୁଙ୍କଠାରୁ ଆରମ୍ଭ କରି ସେ ଅନେକ ଉଦାହରଣ ଦେଲେ । ରାଜୁଦାଦାଙ୍କ ମତରେ ଜଣେ ଯଶସ୍ୱୀ ଆଡ୍‌ଭୋକେଟର ସର୍ବୋଚ୍ଚ ଆୟର ସୀମା ନାହିଁ । ପଦ ମର୍ଯ୍ୟାଦାର ଅଭାବ ନାହିଁ । ଜଣେ ଦକ୍ଷ ଆଡ୍‌ଭୋକେଟ ହାଇକୋର୍ଟ ଜଜ୍ ହୋଇପାରେ, ଆଡ୍‌ଭୋକେଟ୍ ଜେନେରାଲ ହୋଇପାରେ । ରାଜନୀତିରେ ସଫଳତା ପାଇଁ ଆଇନ ଜ୍ଞାନ ଏକ ମୌଳିକ ଆବଶ୍ୟକତା ଇତ୍ୟାଦି । ରାଜୁଦାଦାଙ୍କ କଥା ଶୁଣି ମୋ ଭିତରେ ଯେଉଁ ଶିହରଣ ସୃଷ୍ଟି ହୋଇଥିଲା, ତା ଭାଷାରେ ପ୍ରକାଶ କରିହେବ ନାହିଁ । ଏଥି ପୂର୍ବରୁ ଏଲ.ଏଲ.ବି. ପ୍ରଥମ ଭାଗର ଲେକଚର କଂପ୍ଲିଟ୍ କରିଥିଲି । ବାଉନ ମସିହା ଜୁଲାଇ ମାସରେ ଆଇନ କଲେଜର ସେକେଣ୍ଡ ଇୟରରେ ଆଡ୍‌ମିସନ୍ ନେଲି ।

ଆଇନ କଲେଜରେ ମୋ ଠାରୁ ବୟସରେ ସାତ ଆଠ ବର୍ଷ ସାନ ଛାତ୍ରମାନଙ୍କର ସହପାଠୀ ହୋଇ ପ୍ରଥମେ ପ୍ରଥମେ ଖୁବ୍ ଲାଜ ଲାଗିଲା । ଏଣେ ମୋ ଠାରୁ ବୟସରେ ତିନି ଚାରି ବର୍ଷ ବଡ଼ କେତେଜଣ ଆଡ୍‌ଭୋକେଟ କଲେଜର ଲେକ୍‌ଚରର । କିପରି ବର୍ଷଟାଏ କଟିଯିବ ଏଥିପାଇଁ ଦିନ ଗଣୁଥାଏ । କୌଣସି ମତେ ଲେକ୍‌ଚର କଂପ୍ଲିଟ କରି ଲ' ଡିଗ୍ରୀଟା ହାସଲ କରିବା ଥିଲା ମୋର ଏକମାତ୍ର ଉଦ୍ଦେଶ୍ୟ । ଏଣୁ ପାଠପଢ଼ା ପ୍ରତି ଅଧିକ ଧ୍ୟାନ

ଦେବାର ଆବଶ୍ୟକତା ନଥିଲା କିମ୍ୱା ପ୍ରବୃତ୍ତି ମଧ୍ୟ ନଥିଲା । ୫୩ ମସିହା ମଇ ଶେଷ ସପ୍ତାହରେ ଏଲ.ଏଲ.ବି. ପ୍ରଥମ ଭାଗ ପରୀକ୍ଷା ଦେଲି । କେତେ ନମ୍ୱର ରଖିବି ବା କେଉଁ ଶ୍ରେଣୀରେ ପାସ କରିବି ସେ ବିଷୟରେ ଉଦ୍‌ଗ୍ରୀବ ନଥିଲି । କିନ୍ତୁ ପରୀକ୍ଷାରେ ଯଦି କୌଣସି କାରଣରୁ ଫେଲ ହୋଇଯାଏ, ତେବେ କେଉଁଠି ମୁହଁ ଦେଖାଇ ପାରିବି ନାହି, ଏହାହିଁ ଥିଲା ଚିନ୍ତାର ବିଷୟ । ସ୍ୱର୍ଗୀୟ କଂଗ୍ରେସ ନେତା ମଦନ ମୋହନ ପଟ୍ଟନାୟକଙ୍କ ପୁତୁରା ଶ୍ରୀମାନ ଅଟଳ ବିହାରୀ ପଟ୍ଟନାୟକ ଆଇନ କ୍ଲାସରେ ମୋର ସହପାଠୀ ଥିଲେ । ସେ ପେନସନ ଲେନ୍ ପାଖ ପଟାପୋଲ ଘରେ ରହୁଥାଆନ୍ତି । ଆମେ ଏକାଠି କଲେଜ ଯାଉ । ସେତେବେଳେ ବିଶ୍ୱବିଦ୍ୟାଳୟ ଅଫିସ ବର୍ତ୍ତମାନ କୋଠିରେ ଥାଏ । ଯେଉଁଦିନ ପ୍ରଥମ ଭାଗ ଫଳ ବାହାରିଲା, ଅଟଳ ଓ ମୁଁ ଏକାଠି ବିଶ୍ୱବିଦ୍ୟାଳୟ ଅଫିସକୁ ଗଲୁ । ରେଭେନ୍ସା କଲେଜ ସାମନା ମାଡ୍ରାସୀ ହୋଟେଲ (ବର୍ତ୍ତମାନ ଯେଉଁଠି ସାଭୟ ଅଛି, ତାର ତଳ ମହଲା) ଛକରେ ପହଂଚିବା ପରେ ମୋର ପାଦ ଆଗକୁ ଚଳିଲା ନାହିଁ । କାଳେ ପରୀକ୍ଷାରେ ଖରାପ ହୋଇଥିବ, ଏ ପରିସ୍ଥିତିର ସାମନା କରିବାକୁ ମୋର ସାହସ ନଥିଲା । ଅଟଳ ପଟ୍ଟନାୟକ ଇହଧାମରୁ ବିଦାୟ ନେଲେଣି । କିନ୍ତୁ ସେ ଦିନର ଘଟଣା ଆଖି ଆଗରେ ନାଚୁଛି । ଅଟଳ ଏକା ବିଶ୍ୱବିଦ୍ୟାଳୟ ଅଫିସକୁ ଗଲେ, ମୁଁ ମାଡ୍ରାସୀ ହୋଟେଲ ଛକରେ ଠିଆ ହୋଇ ରହିଲି । ଅଟଳ ରେଜଲ୍‌ଟ ଲିଷ୍ଟ ଦେଖି ତେଣୁ ଚିତ୍କାର କରି କରି ଆସିଲେ , ମୁଁ ପ୍ରଥମ ଶ୍ରେଣୀରେ ପାସ୍ କରିଛି । ଚାହୁଁ ଚାହୁଁ ଅନ୍ୟ ଦୁଇ ଚାରିଜଣ ଛାତ୍ର ଜୁଟିଗଲେ । ଅବଶ୍ୟ ସମସ୍ତେ ମୋ ଠାରୁ ସାତ ଆଠ ବର୍ଷ ସାନ । ମାଡ୍ରାସ ହୋଟେଲରେ କଫିର ବ୍ୟବସ୍ଥା ହେଲା ।

ସେ ସମୟରେ କିଏ ପରୀକ୍ଷକ, ଖାତା କେଉଁଆଡ଼େ ଗଲା ଏସବୁ ଜାଣିବାର ଅବକାଶ ନଥାଏ । ଛାତ୍ରମାନେ ମଧ୍ୟ ଆଜିକାଲି ପରି ସେ ଦିଗରେ ଉଦ୍ୟମ କରନ୍ତି ନାହିଁ । ଅନେକ ଦିନ ପରେ ଶୁଣିଲି, କଲିକତା ବିଶ୍ୱବିଦ୍ୟାଳୟ ଆଇନ କଲେଜର କେହି ଜଣେ ଅଣ-ବଂଗାଳୀ ଅଧ୍ୟାପକ ଥିଲେ ଆମ 'ଏଭିଡେନ୍‌ସ' ପେପରର ପରୀକ୍ଷକ । ଏଭିଡ଼େନ୍ସ ପେପରରେ ମୁଁ ଶହେରୁ ପଂଚାନବେ ନମ୍ୱର ପାଇଥିଲି ।

'୫୩ ମସିହା ଜୁନ ଶେଷ ସପ୍ତାହରେ ଆଇନ ପରୀକ୍ଷାର ପ୍ରଥମ ଭାଗ ଫଳ ବାହାରିଲା ପରେ ମୋର ଆନନ୍ଦ ଓ ଉତ୍ସାହର ସୀମା ରହିଲା ନାହିଁ । ନନାଙ୍କ ପରାମର୍ଶ ଓ ରାଜୁଦାଦାଙ୍କ ସହିତ ଆଲୋଚନା ସବୁ ଆଖି ଆଗରେ ନାଚିଲା । ସେତେବେଳକୁ ନିରୁପମା ଏମ.ବି.ବି.ଏସ. ପାସ କରି ସାରିଥିଲେ ଏବଂ ତାଙ୍କର ମେଡ଼ିକାଲ ପଢ଼ା ଖର୍ଚ୍ଚ ବ୍ୟବସ୍ଥା କରିବାର ଆବଶ୍ୟକତା ନଥିଲା । ଅବଶ୍ୟ ମୁଁ ଦ୍ୱିତୀୟ ଭାଗ ଆଇନ ପରୀକ୍ଷା ଦେଇ ନଥାଏ । କିନ୍ତୁ ଆଡ଼ଭୋକେଟ୍ ହେବାର ନିଶା ମୋତେ ଗ୍ରାସ କଲା । ସ୍ଥିର କଲି, ପ୍ରେସ ବିକ୍ରୟ କରିଦେବି ଏବଂ ଆଇନ ଚର୍ଚ୍ଚା ପ୍ରତି ଅଧିକ ଧ୍ୟାନ ଦେବି । ମୋର ବନ୍ଧୁ ଶୈଳେନ୍ ମହାପାତ୍ରଙ୍କ ସହିତ ଏ ବିଷୟରେ ଆଲୋଚନା କଲି । ତାଙ୍କଠାରୁ ଶୁଣିଲି, ବାଲେଶ୍ୱରରୁ ପ୍ରକାଶିତ 'ଦିଗନ୍ତ'ର ସଂପାଦକ ଶ୍ରଦ୍ଧେୟ ମନୋଜ ଦାସ ଗୋଟିଏ ଛୋଟିଆ ପ୍ରେସ ଖରିଦ୍ କରିବା ପାଇଁ ଆଗ୍ରହୀ । ମନୋଜ ଦାସଙ୍କୁ ମୁଁ ବହୁ ଆଗରୁ ଜାଣିଥିଲି ଓ ତାଙ୍କର ସାହିତ୍ୟ ପ୍ରତିଭା ବିଷୟରେ ଅବଗତ ଥିଲି । ଅଧ୍ୟାପକ ଡକ୍ଟର ମନ୍ମଥ ନାଥ ଦାସଙ୍କର ସେ ସାନ ଭାଇ । ଏବେ ସେ ଜଣେ ଭାରତ ବିଖ୍ୟାତ ଲେଖକ, ଗାଳ୍ପିକ ଓ ସଂପାଦକ । ମୁଁ ଶୈଳେନକୁ କହିଲି, 'ତୁ ମନୋଜକୁ ପଚାର, ସେ ଯାହା ମୂଲ୍ୟ ଦେବେ ମୁଁ ସେଥିରେ ରାଜି ।'

ମନୋଜ ଦାସ ପ୍ରେସ ଖରିଦ୍ କଲେ । ଆମ ଭିତରେ ଦରଦାମ କଷାକଷି ହୋଇ ନଥିଲା । ସେ କିଣିବାକୁ ଆଗ୍ରହୀ, ମୁଁ ବିକିବାକୁ ବ୍ୟଗ୍ର । ଯଥାଶୀଘ୍ର ପ୍ରେସ ବାଲେଶ୍ୱର ପଠାଇବାର ବ୍ୟବସ୍ଥା ହେଲା । ମୋର ମନେ ଅଛି ବଜାରରେ ମୂଲଚାଲ କଲେ, ଯାହା ମୂଲ୍ୟ ମିଳନ୍ତା, ମୁଁ ତାର ଏକ ତୃତୀୟାଂଶ ଦାମରେ ବିକ୍ରି କରିଦେଇଥିଲି । କାରଣ ମୁଁ ଚାହୁଁଥିଲି, ତୁରନ୍ତ ଏ ଝଂଜାଳରୁ ମୁକ୍ତ ହେବା ପାଇଁ । ସେଥିପାଇଁ ଦୁଃଖ ନଥିଲା ବା ଅବଶୋଷ ନଥିଲା । 'ସଂକେତ'ର ଅକାଳ ବିଲୟ ପରେ ଲହୂ ଲୁହ ଢ଼ାଳି ମୁଁ ଏ ପ୍ରେସ ଆରମ୍ଭ କରିଥିଲି । 'ସଂକେତ'ର ପୁନର୍ଜନ୍ମର ସଂଭାବନା ନଥିଲା । ଯଦି 'ଦିଗନ୍ତ'ର ଦୀର୍ଘଜୀବନ ପ୍ରୟାସରେ ମୁଁ ସହାୟକ ହୁଏ, କ୍ଷତି କ'ଣ ?



# ନବ ପର୍ଯ୍ୟାୟ

୧୯୫୪ ମସିହା ଜୁଲାଇ ଆରମ୍ଭ, ତାରିଖଟା ମନେ ନାହିଁ, ଦିନ ବାରଟା ସମୟରେ ଜଣେ କିଏ ଆମ ପେନସନ୍ ଲେନ ଘର ଦରଜାରେ ଜୋର ଆବାଜ୍ ଦେଲା । ନିରୁପମା ସେତେବେଳେ ଘରେ ନଥିଲେ । ତିନିକୋଣିଆ ବଗିଚାରେ ଆରମ୍ଭ କରିଥିବା 'ଲେଡିଜ୍ କ୍ଲିନିକ୍'କୁ ସେ ଯାଇଥାନ୍ତି । ଘରେ ଥାଉ କେବଳ ମୁଁ, ମୋର ତିନୋଟି ସାନ ପୁଅ ସୁବ୍ରତ, ରଜତ ଓ ଜୟନ୍ତ, ବୁଢ଼ୀମା ଓ ସାନ ଶାଳୀ ବୀଣା (ସ୍ୱନାମଧନ୍ୟା ସାହିତ୍ୟିକା ବୀଣାପାଣି ମହାନ୍ତି) । ବୀଣା ସେତେବେଳେ ଆମ ଘରେ ରହି ଶୈଳବାଳା ମହିଳା କଲେଜରେ ପାଠ ପଢୁଥାନ୍ତି । ଆଶାକରେ, ଶାଳୀ ଶବ୍ଦ ପ୍ରୟୋଗରେ ସେ ବିବ୍ରତ ବା ବିରକ୍ତ ହେବେ ନାହିଁ । ଆଜିଯାଏ ମୁଁ 'ଶାଳୀ' ଶବ୍ଦର କୌଣସି ମଧୁର ବିକଳ୍ପର ସଂଧାନ ପାଇ ନାହିଁ । ପୁଣି ଥରେ ଦାଣ୍ଡ ଦରଜାରେ ଆବାଜ । ଦାଣ୍ଡ ଘରକୁ ଯାଇ ଦରଜା ଖୋଲି ଦେଖେ, ମୋର ପଡ଼ୋଶୀ ଅଟଳ ବିହାରୀ ପଟ୍ଟନାୟକ । ଅଟଳ ମତେ ଆଲିଙ୍ଗନ କରି ଚିତ୍କାର କଲେ ''ଭାଇନା ! ମିଠା ଆଣ, ଜଲ୍‌ଦି ଆଣ, ତୁମେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଲ' ପାସ କରିଛ । ମୁଁ ବିଶ୍ୱବିଦ୍ୟାଳୟ ଅଫିସରେ ଦେଖି ଆସିଲି ।'' ଅଟଳକୁ ଅବିଶ୍ୱାସ କରିବାର କାରଣ ନଥିଲା । ଆମ୍ଭର ଏହି ବାର୍ତ୍ତାଳାପ ମଧ୍ୟରେ ବୀଣା ଲୋକ ପଠାଇ ବକ୍ସିବଜାର ମାର୍କେଟରୁ କିଛି ରସଗୋଲା ମଗାଇ ଆଣିଥିଲେ । ଆମେ ସମସ୍ତେ ମିଷ୍ଟିମୁଖ ହେବା ପରେ ଅଟଳଙ୍କୁ ବିନମ୍ର ଧନ୍ୟବାଦଟିଏ ଦେଇ ବିଦାୟ ଦେଲି । ଲ' ଫାଇନାଲ ପାସ କଲା ବେଳକୁ ମୋତେ ୩୨ ବର୍ଷ ବୟସ । ରାଜନୀତି ସାମ୍ବାଦିକତା ଓ ଅନ୍ୟାନ୍ୟ ସାଧାରଣ ଜନ ଆନ୍ଦୋଳନରେ ବ୍ୟସ୍ତ ରହି ଏହା ମଧ୍ୟରେ ଆଠ ବର୍ଷ ବିତି ଯାଇଥିଲା । କିନ୍ତୁ ଅତୀତରେ ବିଭିନ୍ନ ପରୀକ୍ଷାରେ କୃତିତ୍ୱ ସହ ପାସ୍ କଲାବେଳେ ମନରେ ଯେପରି ଆନନ୍ଦ ଉଲ୍ଲାସର ଝଂକାର ଉଠେ, ମୁଁ ନିସଂକୋଚରେ ସ୍ୱୀକାର କରୁଛି, ଏ ବୟସରେ ମଧ୍ୟ ଠିକ୍ ସେହିପରି ଅନୁଭବ କରିଥିଲି ।

ମୁଁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଲ' ପାସ୍ କରିଥିବା ଖବରଟି ସମ୍ବାଦପତ୍ରରେ ପ୍ରକାଶିତ ହେଲା । ମୋର ବଂଧୁ ନରସିଂହ ତ୍ରିପାଠୀ ସେ ସମୟରେ 'ସମାଜ'ର ସହକାରୀ ସଂପାଦକ ରୂପେ କାର୍ଯ୍ୟ କରୁଥିଲେ । ସେ ବୋଧହୁଏ ଏହା ଛପାଇ ଦେଇ ସମ୍ବାଦଟିକୁ ଅଯାଚିତ ଗୁରୁତ୍ୱ ପ୍ରଦାନ କରିଥିଲେ । ଓଡ଼ିଶାର ବିଭିନ୍ନ ଅଂଚଳରୁ ସାଥୀ ଓ ଶୁଭାକାଂକ୍ଷୀମାନଙ୍କ ଠାରୁ



ପତ୍ନୀ ଡାକ୍ତର ନିରୂପମା ରଥଙ୍କ ସହ ଲେଖକ (୧୯୬୯)



'ବଡ଼ ପୁଅ ରଜତର ବିବାହ ବେଦୀରେ



ପୁଅ ଜୟନ୍ତ ଓ ସୁଶାନ୍ତ, ପତ୍ନୀ ନିରୂପମା ଓ ପୁତ୍ରବଧୂ ସୁସ୍ମିତା



ନାତୁଣୀ ପାମି ସହ ଲେଖକ



ବଡ଼ ବୋହୂ ଜୟନ୍ତୀ ସହ ନାତୁଣୀ ପାମି ଓ ଇନା




ନାତି ସଂଜୟ ସହ ଲେଖକ - ନାତି ସଂଜୟ ଓ ନାତୁଣୀ ଅଳକା




ଅଳକା ମହାବିଦ୍ୟାଳୟର 'ଲକ୍ଷ୍ମୀଧର ଶତପଥୀ ସ୍ମୃତି ଭବନ' ସମ୍ମୁଖରେ ଲେଖକ

ଅଭିନନ୍ଦନସୂଚକ ଚିଠିମାନ ଆସିଲା । ପାର୍ଲିଆମେଣ୍ଟ୍ ସଦସ୍ୟ ବିଜୟ ଚନ୍ଦ୍ର ଦାସ ବ୍ରହ୍ମପୁରରୁ ଟେଲିଗ୍ରାମ୍ କରିଥିଲେ । ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ପ୍ରାଣନାଥ ପଟ୍ଟନାୟକ ବାର୍ତ୍ତା ପଠାଇଥିଲେ । ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କ ପତ୍ର ମୋତେ ସବୁଠାରୁ ଅଭିଭୂତ କରିଥିଲା । ସେ ହେଲେ ଭାରତ ସେବକ ସମିତିର ସଦସ୍ୟ ପଦ୍ମଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ଓ ସମ୍ବଲପୁରର ବିଖ୍ୟାତ କୃଷକ ନେତା ଦୟାନନ୍ଦ ଶତପଥୀ । ଏମାନେ ସମସ୍ତେ ବହୁ ଦିନୁ ସଂସାରରୁ ବିଦାୟ ନେଲେଣି । କିନ୍ତୁ ସେମାନଙ୍କର ସ୍ନେହବୋଳା ଶୁଭେଚ୍ଛା ମନରେ ଜମାଟ ବାନ୍ଧି ରହିଛି ।

ଓକିଲାତିରେ ଯୋଗ ଦେବା ପାଇଁ ସମସ୍ତ କଣ୍ଟା ଦୂର ହୋଇଗଲା । ଗୋଟିଏ ଅଜ୍ଞାତ ଅପରିଚିତ ରାସ୍ତାରେ ମୁଁ ଅଣନିଶ୍ୱାସୀ ହୋଇ ଧାଇଁ ଚାଲିଲି । ବିନା ପ୍ରଚେଷ୍ଟାରେ ଆଇନ ପରୀକ୍ଷାରେ ବିଶେଷ ସଫଳତା ମୋ ମନରେ ଆତ୍ମବିଶ୍ୱାସର ମାଦକତା ସୃଷ୍ଟି କରିଥିଲା । ବେଳେ ବେଳେ ମନରେ ସଂଦେହ ଉଠୁଥିଲା, ଭାବପ୍ରବଣତା ବଶତଃ ମୁଁ କୌଣସି ଅପରିପକ୍ୱ ପଦକ୍ଷେପ ନେଉ ନାହିଁ ତ ? ବହୁ ତରୁଣ ଓକିଲ ବନ୍ଧୁଙ୍କଠାରୁ ଶୁଣିଥାଏ, ଓକିଲାତି ବୃତ୍ତିରେ ପ୍ରଥମରୁ ରୋଜଗାର ଆଶା କରିବା ନିରର୍ଥକ । ବୟସ୍କ ଓ ଅଭିଜ୍ଞ ଆଇନଜୀବିଙ୍କ ପରାମର୍ଶ ଓ ସାହାଯ୍ୟ ନ ନେଇ, ସଦ୍ୟ କଲେଜ ଫେରନ୍ତା ନବାଗତଙ୍କ ଉପରେ ମହକିଲ ନିର୍ଭର କରିବେ କାହିଁକି ? ଏଣୁ ପ୍ରାଥମିକ ଅବସ୍ଥାରେ ପରିବାର ଚଳାଇବାର ବ୍ୟବସ୍ଥା ନଥିଲେ, ଏ ବୃତ୍ତିରେ ଝାସ ଦେବା ଉଚିତ ନୁହେ । ଅନେକ ବିଜ୍ଞ ଓ ବୟସ୍କ ଆଇନଜୀବିଙ୍କ ପରାମର୍ଶ - ଓକିଲାତିରେ ସଫଳତା ପାଇଁ କେବଳ ବିଦ୍ୟା ବୁଦ୍ଧି ବାକ୍‌ପଟୁତା ଯଥେଷ୍ଟ ନୁହେ - ମହକିଲଙ୍କ ମନରେ ଆସ୍ଥା ସୃଷ୍ଟି କରିବା ପାଇଁ 'ଗାଡ଼ି ବାଡ଼ି' ସବୁ କିଛି ଦରକାର । ଏଇଥିପାଇଁ କୁଆଡ଼େ ବିଶ୍ୱବିଦ୍ୟାଳୟର କୃତି ଛାତ୍ରମାନେ ଆଇନ ବ୍ୟବସାୟ ପ୍ରତି ଆକୃଷ୍ଟ ହେଉ ନାହାନ୍ତି। ସରକାରୀ ଚାକିରି ପ୍ରତି ସମସ୍ତଙ୍କର ନଜର । ପାଠଶାଠରେ କୃତିତ୍ୱ ଥାଉ ବା ନଥାଉ, ସାଧାରଣତଃ ଜମିଦାର ଓ ଅବସ୍ଥାପନ୍ନ ପରିବାରର ପିଲାମାନେ ଏ ବୃତ୍ତିରେ ଯୋଗ ଦେଉଛନ୍ତି ।

ମୋର 'ଗାଡ଼ି' ନ ଥିଲା କି 'ବାଡ଼ି' ନ ଥିଲା । ପେନ୍‌ସନ୍ ଲେନ୍‌ର ଗୋଟିଏ ଭଡ଼ା ଘର ଥିଲା ଆମର ଅସ୍ଥାୟୀ ଆବାସ । ପ୍ରେସ୍ ବିକ୍ରି ଟଂକାରେ ୫୩ ମସିହା ଡିସେମ୍ବର ମାସରେ ଆମେ ଜେଲ ରୋଡ୍‌ରେ ପାଂଚ ଗୁଣ୍ଠ ଜମି ଖରିଦ୍ କରି ଦେଇଥିଲୁ । ଏହାହିଁ ଆମର ଏକମାତ୍ର ସମ୍ବଳ । ସେତେବେଳେ ପାଂଚ ଗୁଣ୍ଠ ଜମିର ଦାମ ଥିଲା ସାଢ଼େ ଦଶ ହଜାର ଟଂକା । ଜାଗାଟି

କଟକର କେନ୍ଦ୍ର ସ୍ଥଳରେ, ମୁଖ୍ୟ ରାସ୍ତା ପାର୍ଶ୍ୱରେ । ବର୍ତ୍ତମାନ ଦଶଲକ୍ଷ ଟଂକା ଦେଲେ ମଧ୍ୟ ଏପରି ଖଣ୍ଡେ ଜମି ମିଳିବ ନାହିଁ । ଅବଶ୍ୟ ଦୀର୍ଘ ଆଠ ବର୍ଷ ଧରି ପରିବାର ଚଳାଇବାର ଝଂଝାଟରୁ ମୁଁ କେତେକାଂଶରେ ମୁକ୍ତ ହୋଇଥିଲି । ମୋର ସ୍ତ୍ରୀ ମେଡ଼ିକାଲ କଲେଜରୁ ପାସ୍ କରି ଆସିଷ୍ଟାଣ୍ଟ ସର୍ଜନ ଭାବରେ ନିଯୁକ୍ତ ହୋଇଥିଲେ । ମାତ୍ର ଛ'ମାସ ପରେ ତାଙ୍କର ପୁରୀକୁ ବଦଳି ଆଦେଶ ଆସିଲା । ସ୍ୱାସ୍ଥ୍ୟ ବିଭାଗର କର୍ତ୍ତାମାନେ ପରିଚିତ ଥିଲେ ମଧ୍ୟ ଆମେ ସ୍ଥିର କଲୁ, ବଦଳି ଆଦେଶ ରଦ୍ଦ କରିବା ପାଇଁ କାହାକୁ ଖୋସାମଦ୍ କରିବୁ ନାହିଁ । ସରକାରୀ ଚାକିରୀ ଆମ ଜାତକରେ ନାହିଁ, ଇସ୍ତଫା ଦେବା ହିଁ ଶ୍ରେୟସ୍କର । ସେ ମଧ୍ୟ ତିନିକୋଣିଆ ବଗିଚାରେ ଘରୋଇ ଚିକିତ୍ସା ଆରମ୍ଭ କଲେ । ଏଣୁ ଆମର 'ଗାଡ଼ି ବାଡ଼ି' ବା ପାରିବାରିକ ସ୍ୱଚ୍ଛଳତା ନ ଥିଲେ ମଧ୍ୟ, ବିଜ୍ଞ ବର୍ଷୀୟାନ ବନ୍ଧୁମାନଙ୍କର ପରାମର୍ଶରେ ହତୋତ୍ସାହ ହୋଇ ନଥିଲି । ଆତ୍ମ ବିଶ୍ୱାସ ହିଁ ଥିଲା ମୋର ପ୍ରଧାନ ସଂବଳ ।

ଛାତ୍ରାବସ୍ଥାରୁ ଓକିଲାତି ପ୍ରତି ମୋ ମନରେ ଥିଲା ଗଭୀର ଆକର୍ଷଣ । ଏକ ସମୟରେ ନନାଙ୍କର ଇଚ୍ଛା ମୁଁ ଜଣେ ଅଧ୍ୟାପକ ହୁଏ । ସେତେବେଳେ କଲେଜ ଅଧ୍ୟାପକଙ୍କ ସଂଖ୍ୟା ଥିଲା ନଗଣ୍ୟ, କିନ୍ତୁ ଖ୍ୟାତି ଅସାମାନ୍ୟ । ସ୍କୁଲ ଦିନରୁ ଜାତୀୟ ଆନ୍ଦୋଳନ ଓ ବାମପନ୍ଥୀ ଆନ୍ଦୋଳନରେ ଜଡ଼ିତ ହୋଇ ସରକାରୀ କଲେଜରେ ଅଧ୍ୟାପକ ହେବାର ସ୍ୱପ୍ନ ବହୁଦିନୁ ଧୂଳିସାତ୍ ହୋଇଥିଲା । କଲେଜିଏଟ୍ ସ୍କୁଲରେ ପଢ଼ିବା ସମୟରେ ସ୍କୁଲ ପାଚେରୀର ଦକ୍ଷିଣ ପଟରେ କଲେକ୍ଟରେଟ୍ ଆଡ଼କୁ ଗୋଟିଏ ଗେଟ୍ ଥିଲା । ପ୍ରତିଦିନ ଖେଳ ଛୁଟି ସମୟରେ ଦୁଇ ଚାରିଜଣ ସହପାଠୀଙ୍କ ସହ କଚେରୀ ଆଡ଼କୁ ବୁଲି ଯାଉ । ଓକିଲମାନେ ମାଜିଷ୍ଟ୍ରେଟ କୋର୍ଟରେ ସାକ୍ଷୀମାନଙ୍କୁ କିପରି ଜେରା ଜମାନବନ୍ଦୀ କରୁଛନ୍ତି, ସେ ସବୁ ଦେଖିବାକୁ ମଜା ଲାଗେ । କ୍ରମେ ଖେଳଛୁଟିରେ କଚେରୀ ବୁଲିବା ଆମର ଅଭ୍ୟାସ ହୋଇଗଲା । ବର୍ତ୍ତମାନ ଯେଉଁଠି ହାଇକୋର୍ଟ ଅଛି, ସେ କାଳରେ ସେହା ଥିଲା ଜିଲ୍ଲା ଜଜ୍‌କୋର୍ଟ । ସେହି କୋଠାରେ ମଧ୍ୟ ସବ୍‌ଜଜ୍ ଓ ମୁନସଫ କୋର୍ଟ । ପରେ ପରେ ଜଜ୍‌କୋର୍ଟ ବୁଲିବାରେ ଖେଳଛୁଟି ସମୟ କଟେ । ସାଂଗରେ ଯାଆନ୍ତି ଯାମିନୀ, ନିରଂଜନ ଓ ଶୈଳେନ୍ ପ୍ରଭୃତି । ଏହି ଜଜ୍‌କୋର୍ଟ କୋଠାରେ ମୁଁ ଆଡ଼ଭୋକେଟ୍ ଜେନେରାଲ ବୀର କିଶୋର ରାୟ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଏମ୍. ସୁବା ରାଓ ପ୍ରଭୃତି ବିଶିଷ୍ଟ ଆଡ୍‌ଭୋକେଟ୍‌ମାନଙ୍କୁ ମକଦ୍ଦମା ଚଳାଇବାର ଦେଖିଛି । ଜଣେ କ୍ଷୁଦ୍ରକାୟ ସୁଦୃଶ୍ୟ ଆଡ୍‌ଭୋକେଟ୍‌ଙ୍କର ଅସାଧାରଣ ବାଗ୍ମିତା ଓ ଭାଷଣ ଶୈଳୀ ସବୁଠାରୁ ଭଲ ଲାଗୁଥିଲା । ସେ

ହେଲେ ତରୁଣ ଆଡ଼ଭୋକେଟ୍ ହରିହର ମହାପାତ୍ର । ପ୍ରତି ତିନି ଚାରି ମାସରେ ପାଟନା ହାଇକୋର୍ଟର ଦୁଇ ଜଣ ଜଜ୍ ମକଦ୍ଦମା ବିଚାର କରିବା ପାଇଁ ସର୍କିଟ୍‌ରେ କଟକ ଆସନ୍ତି । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଥିଲେ ମଧ୍ୟ, ବହୁଦିନ ପର୍ଯ୍ୟନ୍ତ ଓଡ଼ିଶାରେ ପାଟନା ବିଶ୍ୱବିଦ୍ୟାଳୟ ଓ ପାଟନା ହାଇକୋର୍ଟର କର୍ତ୍ତୃତ୍ୱ ଜାରୀ ରହିଥିଲା । ୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ୧୯୪୮ ମସିହାରେ କଟକରେ ସ୍ଥାୟୀ ଭାବରେ ହାଇକୋର୍ଟ ପ୍ରତିଷ୍ଠିତ ହେବା ପରେ କର୍ତ୍ତୃତ୍ୱ ଲୋପ ହେଲା । ହାଇକୋର୍ଟ ସର୍କିଟରେ ଆସିବା ସମୟରେ ଏହି ଜଜ୍‌କୋର୍ଟ କୋଠାରେ ସେମାନଙ୍କ ପାଇଁ ଆସନର ବ୍ୟବସ୍ଥା କରାଯାଏ । ଜଜ୍‌ମାନଙ୍କ ସହ ନାଲି ରଂଗର ଚୋଗା ଚପ୍‌କନ୍ ପିନ୍ଧି, ହାଉଦା ପକାଇ, ମୁଣ୍ଡରେ ପଗଡ଼ି ବାନ୍ଧି ଯେଉଁ ଜମାଦାର ଓ ଚପରାସିମାନେ ଆସନ୍ତି, ସେମାନଙ୍କୁ ଦେଖିବାକୁ ପିଲାଙ୍କ ମଧ୍ୟରେ ବେଶି ଗହଳି । ଅବଶ୍ୟ ହାଇକୋର୍ଟରେ ଆଡ୍‌ଭୋକେଟ୍‌ମାନଙ୍କର ସୁଆଲ ଜବାବ୍ ଶୁଣିବା ପାଇଁ ସବୁଦିନେ ସୁଯୋଗ ମିଳେ ନାହିଁ; କାରଣ ଆମର ଖେଳଛୁଟି ବେଳେ କୋର୍ଟର ରିସେସ୍ ଆୱ୍ୟାର । କିନ୍ତୁ · ଆଡ଼ଭୋକେଟ୍‌ମାନଙ୍କର ବେଶଭୂଷା, ଗାଉନ୍, କଥା କହିବାର ଶୈଳୀ ଓ ଜଜ୍‌ଙ୍କୁ ସମ୍ବୋଧନ କରିବାର ରୀତି ମୋ ମନରେ ଏକ ପ୍ରକାର ଚାଂଚଲ୍ୟ ସୃଷ୍ଟି କରେ । ଦୀର୍ଘ ଚଉଦ ପନ୍ଦର ବର୍ଷ ଗତ ହୋଇଥିଲେ ମଧ୍ୟ ସ୍କୁଲ ଜୀବନର ଏହି ଅନୁଭୂତି ସ୍ମୃତି ପଟଳରେ ଉଙ୍କି ମାରୁଥିଲା ।

ଲ' ପାସ୍ କରିବା ପରେ ହଠାତ୍ ଅନେକ ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ସମ୍ମୁଖୀନ ହେବାକୁ ହେଲା । ମୁଁ ପ୍ଲିଡ଼ର୍ ତାଲିକାଭୁକ୍ତ ହେବି, ନା ସିଧା ସଳଖ ଆଡ୍‌ଭୋକେଟ ହେବା ପାଇଁ ଉଦ୍ୟମ କରିବି, କେଉଁ ସିନିୟରଙ୍କ ଅଫିସ୍‌ରେ କାର୍ଯ୍ୟ ଶିଖିବି, ଏ ସବୁ ବିଷୟରେ ନିଷ୍ପତ୍ତି ନେବାର ଆବଶ୍ୟକତା ପଡ଼ିଲା । ଦୀର୍ଘ ଦିନ ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରି ବହୁ ବିଶିଷ୍ଟ ଆଇନଜୀବିଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ଥିଲା । ମୋର ବରିଷ୍ଠ ବଂଧୁ ବିଶ୍ୱନାଥ ପଣ୍ଡାୟତ କିଛି ଦିନ ରାଜନୀତିରୁ ଅଲଗା ରହି ସେତେବେଳକୁ ଦଶବର୍ଷ ଓକିଲାତି କରି ସାରିଥିଲେ । ସମବୟସୀ ରାମଚନ୍ଦ୍ର ରାମ, ରାଜେନ୍ଦ୍ର ନାରାୟଣ ମହାନ୍ତି ଓ ମୋ ଠାରୁ ବୟସରେ ସାନ ରଂଗନାଥ ମିଶ୍ର ଓ ବିପିନ ବିହାରୀ ମହାନ୍ତି ପ୍ରମୁଖ ବାର୍‌ର ସଦସ୍ୟ ଥିଲେ । ବଂଧୁମାନଙ୍କ ସହ ଆଲୋଚନା କରିବା ପାଇଁ ମୁଁ ଦିନେ ହାଇକୋର୍ଟ ବାର୍ ଆସୋସିଏସନ ଆଡ଼େ ବୁଲିବାକୁ ଗଲି । ହାଇକୋର୍ଟ ବାରଣ୍ଡାରେ ବୁଲୁବୁଲୁ ହାଇକୋର୍ଟର ଜଣେ କର୍ମଚାରୀ ଶୁକଦେବ ଦାସଙ୍କ ସହ ଦେଖା ହେଲା । ସେ ମୋ ସହିତ ଆଇନ ପରୀକ୍ଷା ଦେଇଥିଲେ ।

ସେହି ସୂତ୍ରରେ ତାଙ୍କ ସହିତ ପରିଚୟ । ପରେ ଶୁକଦେବ ବିଚାର ବିଭାଗରେ ଯୋଗ ଦେଇ ଜିଲ୍ଲା ଜଜ୍ ଭାବରେ ଅବସର ନେଇଛନ୍ତି । ଶୁକଦେବ ମୋତେ ପଚାରିଲେ, "ଆପଣଙ୍କର ରୋଲ୍ ନମ୍ବର ୯୯ ନଥିଲା କି?" ମୁଁ ଉତ୍ତର ଦେଲି "ହଁ, କିନ୍ତୁ ଏ ନମ୍ବରଟା ଆପଣଙ୍କର କିପରି ମନେ ରହିଲା?"

ସେ ଉତ୍ତର ଦେଲେ, "ମୋର ରୋଲ୍ ଥିଲା ଅଠାନବେ, ସେଇଥିପାଇଁ ମନେ ଅଛି ।"

ସେ ପୁଣି କହିଲେ, "ରୋଲ୍ ନମ୍ବର ଅନେଶୋତଙ୍କୁ ଲଳିତ ବାବୁ ଦେଖିବାକୁ ଚାହାନ୍ତି, ସମୟ ହେଲେ ତାଙ୍କ ସହିତ ଦେଖା କରିବେ ।"

କାରଣଟା କିଛି ବୁଝିହେଲା ନାହିଁ । ସେହିଦିନ ଲଂଚ୍ ଆଓ୍ୱାର୍‌ରେ ବାର ଆସୋସିଏସନ୍ ହଲ୍‌ରେ ହରିହର ବାବୁ ମୋତେ ଲଳିତ ବାବୁଙ୍କ ସହ ପରିଚୟ କରାଇ ଦେଲେ । ମୁଁ ପଚାରିଲି "ସାର୍ ଆପଣ ରୋଲ୍ ନମ୍ବର ୯୯କୁ ଖୋଜୁଥିଲେ, ମୁଁ ସେହି ରୋଲ୍ ଅନେଶୋତ" । ମୁଖ୍ୟ ଟେବୁଲ୍‌ରେ ବସୁଥିବା ସବୁ ସିନିୟର ଆଡ୍‌ଭୋକେଟ୍‌ମାନଙ୍କ ସାମନାରେ ଲଳିତ କୁମାର ଦାସଗୁପ୍ତ କହିଲେ, "ଟେନାନ୍‌ସି ପେପର୍‌ରେ ତୁମକୁ ୯୫ ନମ୍ବର ଦେଇଛି । କାଳେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଭୁଲ ବୁଝିବେ, ସେଥିପାଇଁ ପାଂଚ ନମ୍ବର କାଟି ଦେଇଛି । ତୁମେ ଯଦି ବାର୍‌ରେ ଯୋଗ ଦିଅ, ଅଶେଷ ସଫଳତା ଲାଭ କରିବ ।" ତାପରେ ସ୍ୱାମିଜୀ (ସ୍ୱାମୀ ବିଚିତ୍ରାନନ୍ଦ ଦାସ) ବାଂଛାନିଧି ବାବୁ ଓ ତାଙ୍କର ଅନ୍ୟ ବଂଧୁମାନଙ୍କୁ ଶୁଣାଇ କହିଲେ, "ରଥର ଉତ୍ତର ଖାତାରେ ମୁଁ ଗାରଟାଏ ମଧ୍ୟ ମାରି ପାରିଲି ନାହିଁ, ମୋ ଜୀବନରେ ଏ ଏକ ନୂଆ ଅନୁଭୂତି, ଇତ୍ୟାଦି ।" ଲଳିତ କୁମାର ଦାସଗୁପ୍ତ ପ୍ରବାସୀ ବଂଗୀୟ ସାହିତ୍ୟ ପରିଷଦର ସଭାପତି ଓ କିଛି ବର୍ଷ ହାଇକୋର୍ଟ ବାର୍ ଆସୋସିଏସନ୍‌ର ମଧ୍ୟ ସଭାପତି ଥିଲେ । ଓଡ଼ିଶା ହାଇକୋର୍ଟର ସେ ଥିଲେ ଜଣେ ବିଚକ୍ଷଣ ଆଇନଜ୍ଞ । ଦେଓ୍ୱାନୀ ଆଇନରେ ତାଙ୍କର ଅଶେଷ ପାରଦର୍ଶିତା ଥିଲା ଓ ତାଙ୍କର ସୁଆଲ ଜବାବ୍, ଯୁକ୍ତି ଓ ଉପସ୍ଥାପନା ଶୈଳୀ ଥିଲା ଉଚ୍ଚକୋଟୀର । ତାଙ୍କର କଥା ଶୁଣି ମୁଁ ସଂଭ୍ରମତାରେ ଝାଉଁଳି ପଡ଼ିଥିଲି । ଜଣେ ଅତି ବରିଷ୍ଠ ବୁଦ୍ଧିଜୀବିଙ୍କର ଏ କେବଳ ପ୍ରଶଂସା ପତ୍ର ନୁହେଁ, ଏ ଥିଲା ଅବିସ୍ମରଣୀୟ ଆଶୀର୍ବାଦ, ବାର୍‌ରେ ଯୋଗଦେବା ପାଇଁ ସଶ୍ରଦ୍ଧ ଆମନ୍ତ୍ରଣ ।

ତହିଁପର ଦିନ ସକାଳେ ମୁଁ ଦୀନବନ୍ଧୁ ସାହୁଙ୍କ ବଂଗାଳୀସାହି ଘରେ ପହଂଚିଲି । କୌଣସି ଆତ୍ମୀୟ ସ୍ୱଜନ ତାଙ୍କର ଜୁନିୟର ନଥିଲେ, ତାଙ୍କୁ ସିନିୟର ବାଛିବାର ଏହା ଥିଲା ମୁଖ୍ୟ କାରଣ । ଦୀନବଂଧୁ ବାବୁଙ୍କ ସହ ମୋର ବହୁଦିନୁ ପରିଚୟ । ସେ ଥିଲେ ଭଗବତୀ ପାଣିଗ୍ରାହୀଙ୍କର ସହପାଠୀ ଓ ଅନ୍ତରଂଗ ବଂଧୁ । ମୋର ବିବାହ ଉତ୍ସବରେ ସେ ଆମକୁ ରୂପାର ଗୋଟିଏ ସେଟ୍ ଦା ହାତୁଡ଼ି ଉପହାର ଦେଇଥିଲେ । ମୋ ପ୍ରତି ଅଶେଷ ଶ୍ରଦ୍ଧାର ଏ ଥିଲା ଏକ ବିଶେଷ ସଙ୍କେତ । ଦୀନବଂଧୁ ବାବୁ ସଦାଦିନେ କଂଗ୍ରେସ ସମର୍ଥକ । ବାଉନ ମସିହା ପ୍ରଥମ ସାଧାରଣ ନିର୍ବାଚନରେ କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ ଯଦୁମଣି ମଙ୍ଗରାଜଙ୍କୁ ପରାଜିତ କରି କଂଗ୍ରେସ ଟିକଟରେ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ ଏବଂ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରୀମଣ୍ଡଳରେ ଜଣେ କ୍ୟାବିନେଟ୍ ମନ୍ତ୍ରୀ ନିଯୁକ୍ତ ହୋଇଥିଲେ । କିନ୍ତୁ ନିର୍ବାଚନ ମକଦ୍ଦମାରେ ହାରି ଯାଇ ତାଙ୍କର ବିଧାନ ସଭା ସଦସ୍ୟ ପଦ କଟିଗଲା ଓ ୫୪ ମସିହା ଜୁଲାଇ ମାସରେ ସେ ପୁନର୍ବାର ଓକିଲାତି ବୃତ୍ତିକୁ ଫେରି ଆସିଲେ । ଠିକ୍ ଏହି ସମୟରେ ମୁଁ ତାଙ୍କ ଅଫିସ୍‌ରେ ହାଜର୍ । ଦୀନବଂଧୁ ବାବୁ ଆନନ୍ଦରେ ମତେ ତାଙ୍କର ଜୁନିୟର ଭାବରେ ଗ୍ରହଣ କଲେ ।

ବର୍ତ୍ତମାନ ସିଧା କଲେଜରୁ ପାସ୍ କରି ବାର୍ କାଉନସିଲ ସଭାପତିଙ୍କୁ ନେଇ ଗଠିତ ଏନ୍‌ରୋଲମେଣ୍ଟ କମିଟି ସମ୍ମୁଖରେ ଘୋଷଣା ପତ୍ରରେ ଦସ୍ତଖତ କରି ଜଣେ ଆଡ଼ଭୋକେଟ୍ ହୋଇପାରନ୍ତି । ପୂର୍ବଭଳି ବର୍ତ୍ତମାନ ପ୍ଲିଡର ଓ ଆଡ଼ଭୋକେଟ ମଧ୍ୟରେ ତାରତମ୍ୟ ନାହିଁ । ସେ ସମୟରେ ଆଡ଼୍‌ଭୋକେଟ୍ ତାଲିକାଭୁକ୍ତ ହେବାର ନିୟମ ଥିଲା ଭିନ୍ନ କିସମର । ଆଇନ୍ ପାସ୍ କରିବା ପରେ ଜଣେ ବରିଷ୍ଠ ଆଡ଼୍‌ଭୋକେଟଙ୍କ ଅଧୀନରେ ଗୋଟିଏ ବର୍ଷ ଆଟିକ୍ଲ ରହି ଆଡ଼୍‌ଭୋକେଟ ହୋଇପାରୁଥିଲେ । ପ୍ଲିଡ଼ରମାନଙ୍କ ପାଇଁ ଏହି ବର୍ଷିକିଆ ଟ୍ରେନିଂର ଆବଶ୍ୟକତା ନଥିଲା । କିନ୍ତୁ ତିନି ବର୍ଷ ପ୍ଲିଡ଼ର ରହିବା ପରେ ଜଣେ ଆଡ଼ଭୋକେଟ୍ ହେବାକୁ ଯୋଗ୍ୟ ବିବେଚିତ ହେଉଥିଲେ । ପ୍ରଥମରୁ ଗୋଟିଏ ବର୍ଷ ଆଟିକ୍ଲ ରହି ସିଧାସଳଖ ଆଡ଼ଭୋକେଟ୍ ହେବାକୁ ମୋର ଇଚ୍ଛା ଥିଲା । ପ୍ରଚଳିତ ନିୟମ ଅନୁସାରେ ପ୍ଲିଡରମାନେ ହାଇକୋର୍ଟରେ ଓକିଲାତି କରି ପାରୁ ନଥିଲେ । କିନ୍ତୁ ଆଡ଼୍‌ଭୋକେଟ୍‌ମାନେ ହାଇକୋର୍ଟ ସମେତ ଅନ୍ୟ ସବୁ କୋର୍ଟରେ ଓକିଲାତି କରିବାରେ ବାଧା ନଥିଲା । ନୂଆ ଆଡ଼୍‌ଭୋକେଟ୍ ଆଇନ ଅନୁଯାୟୀ ବର୍ତ୍ତମାନ ଏହିସବୁ ତାରତମ୍ୟ ଉଠାଇ ଦିଆଯାଇଛି, ବର୍ତ୍ତମାନ

ସମସ୍ତେ ପ୍ରଥମରୁ ଆଡ୍‌ଭୋକେଟ୍ ତାଲିକାଭୁକ୍ତ ହେଉଛନ୍ତି । ଦୀନବଂଧୁ ବାବୁ ପରାମର୍ଶ ଦେଲେ, ପ୍ରଥମ ତିନିବର୍ଷ ପ୍ଲିଡର ହେବା ପାଇଁ, ତାହାହେଲେ ତାଙ୍କ ମତରେ ଏହି ସମୟରେ କିଛି କିଛି ରୋଜଗାର ମଧ୍ୟ କରି ପାରିବି । ତଦନୁଯାୟୀ ଜିଲା ଜଜ୍ କୋର୍ଟରେ ପ୍ଲିଡରସିପ୍ ପାଇଁ ଦରଖାସ୍ତ ଦିଆହେଲା । ଏଥିପାଇଁ ଛ' ସପ୍ତାହର ନୋଟିସ ଆବଶ୍ୟକ । ନୋଟିସ୍ ମିଆଦ ଶେଷ ହେବାକୁ ଚାରି ପାଂଚ ଦିନ ଅଛି, ହଠାତ୍ ଦୀନବଂଧୁ ବାବୁ ଦୁଃଖ ପ୍ରକାଶ କରି କହିଲେ, ସେ ମୋତେ ଭୁଲ ପରାମର୍ଶ ଦେଇଛନ୍ତି । ମୁଁ ସିଧାସଳଖ ଆଡ୍‌ଭୋକେଟ୍ ହେବା ଉଚିତ । ମୁଁ ପ୍ଲିଡରସିପ୍ ଦରଖାସ୍ତ ଫେରାଇ ଆଣିଲି ଓ ଦୀନବଂଧୁ ସାହୁଙ୍କ ଅଧୀନରେ ଆର୍ଟିକ୍ଲ ରହିଲି । ଅଯଥା, ଦେଢ଼ମାସ ନଷ୍ଟ ହେଲା ।

ପ୍ଲିଡର ହେବା ପାଇଁ ମୁଁ କଳାକୋର୍ଟ ଇତ୍ୟାଦି ତିଆର କରାଇଥିଲି । ସେ ସବୁ ବାକ୍ସରେ ବନ୍ଦ କରି ରଖିବା ପରିବର୍ତ୍ତେ, ମୁଁ କଳା କୋର୍ଟ ଓ ଟାଇ ପିନ୍ଧି କଚେରୀ ଯିବାକୁ ଆରମ୍ଭ କଲି । ମହକିଲ ଓ ମୋହରୀରମାନେ ଭାବୁଥିଲେ ମୁଁ ଜଣେ ଓକିଲ । କିନ୍ତୁ କୌଣସି ଅର୍ଜିରେ ଦସ୍ତଖତ କରିବା ବା ଓକାଲାତ୍‌ନାମା ଗ୍ରହଣ କରିବାକୁ ମୋର ଲାଇସେନ୍ସ ନଥିଲା ବା କୋର୍ଟରେ ତୁଣ୍ଡ ଖୋଲିବାକୁ ମୋର ଆଇନଗତ ଅଧିକାର ନଥିଲା । ବର୍ଷଟାଏ କିପରି କଟିବ, ତାହା ଚିନ୍ତାର ବିଷୟ ହେଲା । ମୋର ସାଥୀ ସମବୟସୀମାନେ ସେତେବେଳକୁ ସାତ ଆଠ ବର୍ଷ ଓକିଲାତି କରି ସାରିଥାନ୍ତି । ଏମାନଙ୍କ ସାମନାରେ ଜଣେ ନବାଗତ ନାବାଳକ ଜୁନିୟର ଭାବରେ ପରିଚିତ ହେବାକୁ ମୋତେ ଲଜ୍ଜା ଲାଗୁଥାଏ । ଦୀନବଂଧୁ ସାହୁଙ୍କୁ ମୁଁ କୋର୍ଟରେ ଓ ତାଙ୍କ ଅଫିସ୍‌ରେ ମକଦ୍ଦମା ଚଳାଇବାରେ ସାହାଯ୍ୟ କରେ । ମନର ଗ୍ଲାନି ମେଣ୍ଟାଇବା ପାଇଁ ଫୁରସତ୍ ସମୟରେ ଆଇନ ପତ୍ରିକା ଗୁଡ଼ିକ ଗଭୀର ଧ୍ୟାନ ଦେଇ ପଢ଼େ । ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠା ହେବା ଦିନଠାରୁ ଯେତେ ରାୟ ବା ଡିସିସନ୍ 'କଟକ ଲ ଟାଇମ୍‌ସ୍' ଓ 'ଆଇ.ଏଲ.ଆର, କଟକ' ପ୍ରଭୃତି ଆଇନ ପତ୍ରିକାରେ ପ୍ରକାଶିତ ହୋଇଥାଏ, ସେ ସବୁ ନିୟମିତ ରୂପେ ପଢ଼େ । ଅଲ ଇଣ୍ଡିଆ ରିପୋର୍ଟରରେ ସୁପ୍ରିମ କୋର୍ଟର ଯେଉଁସବୁ ନିଷ୍ପତ୍ତି ପ୍ରକାଶିତ ହେଉଥାଏ ତାହା ମଧ୍ୟ ଅନୁଧ୍ୟାନ କରେ । ସବୁ ନିଷ୍ପତ୍ତିର ତାତ୍ପର୍ଯ୍ୟ ବୁଝିବା ମୋ ପକ୍ଷରେ ସଂଭବ ନଥିଲା ସତ୍ୟ, କିନ୍ତୁ ବୁଝେ ବା ନ ବୁଝେ, ମନ୍ତ୍ରବତ୍ ପଢ଼ିବା ଫଳରେ ବର୍ଷ ଶେଷରେ ମୁଁ ଅନୁଭବ କଲି ଯେ ଗତ ସାତ ଆଠ ବର୍ଷ ମଧ୍ୟରେ ଓଡ଼ିଶା ହାଇକୋର୍ଟ ଯେଉଁସବୁ ରାୟ ଦେଇଛନ୍ତି, ସେ ବିଷୟରେ

ମୋର ସମ୍ୟକ୍ ସାଧାରଣ ଜ୍ଞାନ ଅଛି । ମୁଁ ମନେ ମନେ ଭାବୁଥିଲି, କ୍ଲାସରେ ଯଦି ସହପାଠୀମାନଙ୍କ ଠାରୁ ଅଧିକ କୃତିତ୍ୱ ଦେଖାଇ ପାରୁଥିଲି, କୋର୍ଟ ହଲ୍‌ରେ କାହାଠାରୁ ପଛରେ ପଡ଼ିବି କାହିଁକି ? କଠିନ ଅଧ୍ୟବସାୟ ଓ ଉପରୋକ୍ତ ପ୍ରକାରର ଭାବନା ମୋର ଆତ୍ମଗ୍ଳାନି ଓ ହୀନମନ୍ୟତା ଦୂର କରିବାରେ ବିଶେଷ ସହାୟକ ହୋଇଥିଲା ।

ପରବର୍ଷ ଅଗଷ୍ଟ ମାସରେ ମୋର ବର୍ଷକିଆ ଟ୍ରେନିଂ ସମାପ୍ତ ହେଲା । ଏନ୍‌ରୋଲମେଣ୍ଟ୍ ଦରଖାସ୍ତ ଦେବାର ଅଳ୍ପ ଦିନ ପରେ ସେପ୍ଟେମ୍ବର ୫ ତାରିଖରେ ଓଡ଼ିଶାରେ ଅଚାନକ ବନ୍ୟା ହେଲା । ଦଳେଇବାଗ ଘାଇ ଭାଂଗିଲା । ଓଡ଼ିଶାକୁ ବିପର୍ଯ୍ୟୟ ପଡ଼ିଲା । କୋର୍ଟ କଚେରୀ ସବୁ ମାସକ ପାଇଁ ବନ୍ଦ ହୋଇଗଲା । ପୂଜା ଛୁଟି ବାଦ୍ ହାଇକୋର୍ଟ ଖୋଲିବା ପରେ ମୋ ଦରଖାସ୍ତ ବିଚାରକୁ ଆସିଲା । ନିୟମ ଅନୁଯାୟୀ ଦରଖାସ୍ତ ଯାଂଚ ହେବା ପରେ ରେଜିଷ୍ଟ୍ରାରଙ୍କ ନିକଟରେ ପେଶ ହୁଏ । ରେଜିଷ୍ଟ୍ରାର ପ୍ରାର୍ଥୀଙ୍କୁ ଚିଫ୍ ଜଷ୍ଟିସ୍‌ଙ୍କ ଚେମ୍ବରକୁ ନେଇ ତାଙ୍କ ସହିତ ପରିଚିତ କରାଇ ଦିଅନ୍ତି ଏବଂ ଚିଫ୍ ଜଷ୍ଟିସଙ୍କ ସାମନାରେ ଦସ୍ତଖତ୍ କରିବା ପରେ ଏନରୋଲମେଣ୍ଟ ସମାପ୍ତ ହୁଏ । ଏନରୋଲମେଣ୍ଟ ପାଇଁ ମୁଁ ଯେଉଁଦିନ ରେଜିଷ୍ଟ୍ରାରଙ୍କ ଅଫିସ୍‌ରେ ଉପସ୍ଥିତ ହେଲି ସେ ଦିନର ସ୍ମୃତି ଆଜି ମଧ୍ୟ ମନରେ ସଜୀବ ରହିଛି । ସେତେବେଳେ ବରିଷ୍ଠ ଜିଲ୍ଲାଜଜ୍ ରୁଦ୍ର ପ୍ରସନ୍ନ ମିଶ୍ର ହାଇକୋର୍ଟର ରେଜିଷ୍ଟ୍ରାର । ରୁଦ୍ର ବାବୁଙ୍କ ପରି ସାଧୁ ସଚ୍ଚୋଟ ମିଷ୍ଟଭାଷୀ ଭଦ୍ରଲୋକ ବିରଳ । ଶୁଣାଅଛି, ତାଙ୍କ ଅଜ୍ଞାତରେ ପିଅନ କୁଆଡ଼େ ଅଫିସରୁ କିଛି କାଗଜ ଓ ଆଲପିନ୍ ଇତ୍ୟାଦି ତାଙ୍କ ବ୍ୟବହାର ପାଇଁ ଘରକୁ ନେଇଯାଇଥିଲା । ରୁଦ୍ରବାବୁ ଅଫିସ୍ ଜିନିଷ ତାଙ୍କ ଘରକୁ ଯାଇଥିବା କଥା ଶୁଣି ଅତ୍ୟନ୍ତ ବ୍ୟଥିତ ଓ ବିରକ୍ତ ହେଲେ ଏବଂ ପିଅନ କାଗଜତକ ଫେରାଇ ନେଇ ଅଫିସ୍‌ରେ ଓ୍ୟାପସ୍ ନ କରିବା ପର୍ଯ୍ୟନ୍ତ ସେ ଜଳ ସ୍ପର୍ଶ କରି ନଥିଲେ । ଯାହାହେଉ ସଂପୃକ୍ତ କିରାନୀଙ୍କ ସହ ମୁଁ ରେଜିଷ୍ଟ୍ରାରଙ୍କ ଅଫିସରେ ପ୍ରବେଶ କରିବା ମାତ୍ରେ ସେ ଠିଆ ହୋଇ ପଡ଼ିଲେ । ବୟସରେ ମୋ ଠାରୁ ସେ ଅନ୍ତତଃ ବାଇଶି ତେଇଶି ବର୍ଷ ବଡ଼ । ଏଣୁ ସେ ନିଜ ଆସନରେ ନ ବସିବା ପର୍ଯ୍ୟନ୍ତ ମୁଁ ଠିଆ ହୋଇ ରହିବାଟା ଉଚିତ ମନେ କଲି । ରୁଦ୍ରବାବୁ ମତେ ବସିବା ପାଇଁ ଭଦ୍ରୋଚିତ ଇଂଗିତ ଦେଲେ ଓ ମୁଁ ଚୌକୀରେ ବସିବା ପରେ ସେ ଆପଣା ଆସନ ଗ୍ରହଣ କଲେ । ଏ ପ୍ରକାରର ମର୍ଯ୍ୟାଦା ଜ୍ଞାନ ଓ ଅମାୟିକ ବ୍ୟବହାର ଆଜିକାଲି ସ୍ୱପ୍ନ । ତାପରେ ସେ ହାଇକୋର୍ଟ ଉପର ମହଲାରେ ଚିଫ୍ ଜଷ୍ଟିସ୍‌ଙ୍କ ପ୍ରକୋଷ୍ଠକୁ ମତେ ନେଇଗଲେ ।

୧୯୪୮ ମସିହାରେ ଚାରିଜଣ ବିଚାରପତିଙ୍କୁ ନେଇ ଓଡ଼ିଶା ହାଇକୋର୍ଟ ଗଠିତ ହୋଇଥିଲା । ପାଟନା ହାଇକୋର୍ଟର ତତ୍‌କାଳୀନ ବିଚାରପତି ବୀର କିଶୋର ରାୟ ଚିଫ୍ ଜଷ୍ଟିସ ଓ ଅନ୍ୟ ତିନିଜଣ ବିଚାରପତି ହେଲେ ମାଡ୍ରାସର ଆଡ୍‌ଭୋକେଟ୍ ବାବୁ ଜଗନ୍ନାଥ ଦାସ, ତତ୍‌କାଳୀନ ଆଡ୍‌ଭୋକେଟ ଜେନେରାଲ ଲିଙ୍ଗରାଜ ପାଣିଗ୍ରାହୀ ଓ 'ଲ' ସେକ୍ରେଟାରୀ ଆର.ଏଲ. ନରସିଂହମ୍ । ବି.କେ.ରାୟ ୧୯୫୧ ମସିହାରେ ଚିଫ୍ ଜଷ୍ଟିସ୍ ପଦରୁ ଅବସର ଗ୍ରହଣ କଲେ । ଦ୍ୱିତୀୟ ଚିଫ୍ ଜଷ୍ଟିସ୍ ବାବୁ ଜଗନ୍ନାଥ ଦାସ ୧୯୫୩ ମସିହାରେ ସୁପ୍ରିମ କୋର୍ଟର ଜଜ୍ ନିଯୁକ୍ତ ହେଲେ । ଲିଙ୍ଗରାଜ ପାଣିଗ୍ରାହୀ '୫୩ ରୁ '୫୬ ମସିହା ପର୍ଯ୍ୟନ୍ତ ତିନି ବର୍ଷ ଚିଫ୍ ଜଷ୍ଟିସ୍ ରହିଥିଲେ । ଆଡ଼ଭୋକେଟ ଜେନେରାଲ ଭାବରେ ପାଣିଗ୍ରାହୀ ଥିଲେ ଉଚ୍ଚକୋଟୀର ପ୍ରବକ୍ତା । ସାଧାରଣ ସଭା ସମିତିରେ ଜଣେ ସୁବକ୍ତା ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ଜଣେ ଦକ୍ଷ ବିଚାରପତିର ବହୁ ସଦ୍‌ଗୁଣ ସହ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱର ଅବିଚ୍ଛିନ୍ନ ଅଂଗ ଥିଲା ତାଙ୍କର ମିଜାଜ । ବେଶଭୂଷା-ଚାଲିଚଳନ ଓ କଥାବାର୍ତ୍ତା ସବୁ କ୍ଷେତ୍ରରେ ଏହି ମିଜାଜୀ ଢଂଗ ପରିସ୍ଫୁଟ ହେଉଥିଲା ।

ରେଜିଷ୍ଟ୍ରାରଙ୍କ ସହ ଚିଫ୍ ଜଷ୍ଟିସ୍‌ଙ୍କ ପ୍ରକୋଷ୍ଠରେ ପ୍ରବେଶ କରି ଦେଖିଲି, ପାଣିଗ୍ରାହୀ ସାହେବ ଠିକ୍ ସେହିପରି ନବାବୀ ଠାଣିରେ ଚୌକିର ଗୋଟିଏ କଡ଼କୁ ଡେଙ୍ଗା ହୋଇ ବସିଛନ୍ତି । ମୁହଁରେ ଚୁରୁଟ୍, ମଝିରେ ମଝିରେ ସାମାନ୍ୟ ଧୂଆଁ ନିର୍ଗତ ହେଉଛି। ସୌଜନ୍ୟ ଯେପରି ତାଙ୍କର ସୀମା ସ୍ପର୍ଶ କରି ନାହିଁ । ସେ ଆମ୍ଭମାନଙ୍କୁ ବସିବାକୁ ଅନୁରୋଧ କଲେ ନାହିଁ । ଦଶ ପନ୍ଦର ସେକେଣ୍ଡ ପରେ ନୀରବତା ଭାଂଗି ମୁଁ ତାଙ୍କ ସାମନା ଚୌକିରେ ଆପଣାଛାଏଁ ବସି ପଡ଼ିଲି । ମୋର ମନେ ପଡ଼ିଲା "ପାର୍ବତୀ" କାବ୍ୟରୁ କବିବର ରାଧାନାଥ ରାୟଙ୍କର ଦୁଇଟି ଧାଡ଼ି :

"ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ<br>
ସମସ୍ତଙ୍କ ଭାଗ୍ୟ ଡୋରି<br>
ନିଜ ଭାଗ୍ୟଡୋରି କାଳ ହସ୍ତେ ଏହା<br>
ପକାନ୍ତି ହେଲେ ପାଶୋରି ।"

ବିଚରା ରୁଦ୍ର ବାବୁ ପୂର୍ବବତ୍ ଠିଆ ହୋଇ ରହି ମୋ' ଫାଇଲ ପେଶ୍ କଲେ । ଚିଫ୍ ଜଷ୍ଟିସ୍‌ଙ୍କ ସାମନାରେ ଦସ୍ତଖତ୍ କରିବା ପରେ ଏନ୍‌ରୋଲମେଣ୍ଟ ଅଧ୍ୟାୟ ସମାପ୍ତ ହେଲା । ପାଣିଗ୍ରାହୀ ସାହେବଙ୍କ କରମର୍ଦ୍ଦନ କରି ମୁଁ ଆଡ୍‌ଭୋକେଟ ଭାବରେ ବାର୍ ଆସୋସିଏସନ୍‌କୁ ଫେରି ଆସିଲି । ସେ ଦିନଟି ଅକ୍ଟୋବର ଅଠର ତାରିଖ ୧୯୫୫ ମସିହା, ମୋ ଜୀବନର ଏକ ଉଲ୍ଲେଖନୀୟ ଦିନ ।

# ପଂଚ ଦଶକର ବରିଷ୍ଠ ସମଧର୍ମୀ

ଇଂରାଜୀ ଭାଷାରେ 'ବାର୍' ଏକ ବହୁ ଅର୍ଥବୋଧକ ଶବ୍ଦ । 'ବାର' ଶବ୍ଦର ଅଭିଧାନ ଅର୍ଥ 'ପ୍ରତିବନ୍ଧକ' 'ଧାତୁ ନିର୍ମିତ କୀଳକ', 'ମଦ୍ୟ ବିକ୍ରୟ କେନ୍ଦ୍ର' ଇତ୍ୟାଦି । ଏହି ଶବ୍ଦର ଆଉ ଗୋଟିଏ ବିଶେଷ ଅର୍ଥ ଅଛି । ବିଚାରାଳୟମାନଙ୍କରେ ଆଇନଜୀବିମାନଙ୍କର ମିଳନ-ପୀଠକୁ ମଧ୍ୟ ବାର୍ କୁହାଯାଏ ।

ଆଡ଼ଭୋକେଟ୍ ହେବା ପରେ ମୁଁ ଯେତେବେଳେ ହାଇକୋର୍ଟ ବାର୍‌ର ସଦସ୍ୟ ହେଲି, ସେହି ସମୟରେ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଥିଲେ ହାଇକୋର୍ଟ ବାର୍ ଆସୋସିଏସନ୍‌ର ସଭାପତି ଓ ସଂପାଦକ ଥିଲେ ଶ୍ରୀ ହରିହର ମହାପାତ୍ର । ସ୍ୱାମିଜୀ ଥିଲେ ବୟସ୍କ, ଉଦାରପନ୍ଥୀ ଓ ପରଂପରା ପ୍ରିୟ ଏବଂ ହରିହର ମହାପାତ୍ର ଥିଲେ ଆଧୁନିକ ସଂସ୍କୃତି-ସଂପନ୍ନ ଓ ନବଯୁଗର ଅନ୍ୟତମ ଉଜ୍ଜ୍ୱଳ ପ୍ରତିନିଧି । ଓକିଲାତି ସହ ସମସ୍ତ ପ୍ରକାର ସାଧାରଣ କାର୍ଯ୍ୟରେ ସଂପୃକ୍ତ ହେବା ବା ସହଯୋଗ କରିବା ଥିଲା ପୁରାତନ ଯୁଗର ଆଇନଜୀବିମାନଙ୍କର ପରଂପରା । ମୋତିଲାଲ ନେହୁରୁ, ସି.ଆର. ଦାସ ଓ ପରଯୁଗର ବୁଲାଭାଇ ଦେଶାଇ, କେ.ଏମ୍. ମୁନ୍ସୀ ପ୍ରମୁଖ ବହୁ ବିଶିଷ୍ଟ ଆଇନଜୀବି ନିଜ ବୃତ୍ତି ସହ ଦେଶ ସେବାରେ ଓ ସମାଜ ସେବାରେ ସମୟ ନିୟୋଗ କରୁଥିଲେ । ହାଇକୋର୍ଟ ବାର୍ ଆସୋସିଏସନ୍‌ର ସଭାପତି ଓ ସଂପାଦକ-ଉଭୟ ଥିଲେ ଏହି ଶ୍ରେଣୀର ଆଇନଜୀବି ।

ସ୍ୱାମୀ ବିଚିତ୍ରାନନ୍ଦ ଦାସ ଆଇନବୃତ୍ତି ଆରମ୍ଭ କରିଥିଲେ ମିଷ୍ଟର ଦାସଙ୍କ ଜୁନିୟର ଭାବରେ । ମଧୁବାବୁଙ୍କ ପ୍ରେରଣାରେ ସେ ଉତ୍କଳ ସମ୍ମିଳନୀ ଓ ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନରେ ସକ୍ରିୟ ଭାଗ ନେଇଥିଲେ । ସେ ଓ ତାଙ୍କର ଯାଆଁଳା ଭାଇ ଭୁବନାନନ୍ଦ ଦାସ ଉଭୟ ଥିଲେ କଂଗ୍ରେସର ସମର୍ଥକ । ଭୁବନାନନ୍ଦ (ବି. ଦାସ) ବହୁ ବର୍ଷ ଧରି କେନ୍ଦ୍ର ଆସେମ୍ବ୍ଲିର ସଦସ୍ୟ ରହି, ଦିଲ୍ଲୀର ରାଜନୈତିକ ମହଲରେ ବିଶେଷ ପ୍ରତିଷ୍ଠା ଲାଭ କରିଥିଲେ । ବିଚିତ୍ରାନନ୍ଦ (ବି. ଏନ୍. ଦାସ) ଓଡ଼ିଶାକୁ ତାଙ୍କର କର୍ମଭୂମି ରୂପେ ବାଛି ନେଇଥିଲେ । ୧୯୩୫ ମସିହା ଭାରତ ଶାସନ ଆଇନ ଅନୁଯାୟୀ ଅନୁଷ୍ଠିତ ପ୍ରଥମ ସାଧାରଣ ନିର୍ବାଚନରେ ସ୍ୱାମିଜୀ ୧୯୩୭ ମସିହାରେ କଟକ ସହର ନିର୍ବାଚନ ମଣ୍ଡଳୀରୁ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ଭାରତ ଛାଡ଼ ଆନ୍ଦୋଳନ ସମୟରେ କଂଗ୍ରେସ ଦଳର ବହୁ କଂଗ୍ରେସ ସଦସ୍ୟ କାରାବରଣ

କରିବା ପରେ ସେ ବିଧାନ ସଭାରେ କଂଗ୍ରେସ ଦଳର ନେତା ଭାବରେ କାର୍ଯ୍ୟ କରିଥିଲେ । ଏହି ସମୟରେ ସେ ଓଡ଼ିଶା ରିଲିଫ କମିଟିର ସଭାପତି ମଧ୍ୟ ଥିଲେ ।

୧୯୪୮ ମସିହାରେ ଓଡ଼ିଶା ହାଇକୋର୍ଟ ଗଠିତ ହେଲା । ବୀର କିଶୋର ରାୟ ପାଟନା ହାଇକୋର୍ଟରୁ ଆସି ଓଡ଼ିଶା ହାଇକୋର୍ଟର ପ୍ରଥମ ଚିଫ୍ ଜଷ୍ଟିସ ଓ ନୂତନ ହାଇକୋର୍ଟର ପ୍ରଥମ ଆଡ଼ଭୋକେଟ୍ ଜେନେରାଲ ନିଯୁକ୍ତ ହେଲେ ସ୍ୱାମୀ ବି.ଏନ୍. ଦାସ । ବୀର ବାବୁ ଓ ବି. ଏନ୍. ଦାସ ପ୍ରାୟ ସମସାମୟିକ । ଶାଣିତ ବିଶ୍ଲେଷଣ, ପ୍ରଖର ଉପସ୍ଥିତ ବୁଦ୍ଧି ଓ ଉଚ୍ଚକୋଟୀର ଉପସ୍ଥାପନା ଶୈଳୀ ଥିଲା ବୀର ବାବୁଙ୍କର ବିଶେଷତ୍ୱ । କିନ୍ତୁ ଜଣେ ଶାନ୍ତ ଶିଷ୍ଟ ସଚ୍ଚୋଟ ନିର୍ଭରଯୋଗ୍ୟ ଅଧିବକ୍ତା ଭାବରେ ବି. ଏନ୍. ଦାସ ଅଶେଷ ପ୍ରତିଷ୍ଠା ଅର୍ଜନ କରିଥିଲେ । ଅଦାଲତରେ ଦରିଦ୍ର ନିର୍ଯ୍ୟାତୀତ ଲୋକଙ୍କର ପ୍ରତିରକ୍ଷକ ଭାବରେ ତାଙ୍କର ଖ୍ୟାତି ଥିଲା । କନିକା ଓ ଆଳିର ବିଖ୍ୟାତ ଜମିଦାରମାନଙ୍କ ବିରୁଦ୍ଧରେ ଦରିଦ୍ର ଚାଷୀର ପକ୍ଷ ସମର୍ଥନ କରିବା ପାଇଁ ସେ କୁଣ୍ଠିତ ନଥିଲେ । କେବଳ ଆଇନର ଶୁଷ୍କ ତର୍ଜମା ନୁହେ, ନ୍ୟାୟ ବିଚାର ପାଇବା ନିମନ୍ତେ ବିଚାରପତିମାନଙ୍କୁ ପ୍ରଭାବିତ କରିବା ପାଇଁ ଯେଉଁ ପ୍ରକାରର ଭାଷା, ବିନୟାନୁରୋଧ ଆବଶ୍ୟକ, ତାହା ପ୍ରୟୋଗ କରିବାରେ ସେ ଥିଲେ ଧୂରନ୍ଧର । ସେଥିପାଇଁ ସ୍ୱାମୀଜୀଙ୍କ ଦରଖାସ୍ତ, ଅନୁରୋଧ ବା ଯୁକ୍ତିକୁ ପ୍ରତ୍ୟାଖାନ କରିବା ପୂର୍ବରୁ ବିଚାରପତିମାନଙ୍କୁ ଚିନ୍ତାଗ୍ରସ୍ତ ହେବାକୁ ପଡୁଥିଲା । ମଣିଷ ହିସାବରେ ସେ ଥିଲେ ଅତି ସଦୟ, ସ୍ନେହୀ, ଅମାୟିକ ଓ ପରୋପକାରୀ । ମୁଁ ବାର୍‌ରେ ଯୋଗଦେବା ବେଳକୁ କେତେକ ପୁରୁଣା ସିଭିଲ ଅପିଲ୍ ବ୍ୟତୀତ ତାଙ୍କ ସିରସ୍ତାରେ ନଥି ସଂଖ୍ୟା ହ୍ରାସ ପାଇଥିଲା ଓ ବାର୍ଦ୍ଧକ୍ୟ ହେତୁ ସେ ନିୟମିତ ରୂପେ ହାଇକୋର୍ଟ ଆସି ପାରୁ ନଥିଲେ । ୧୯୭୫ ଅକ୍ଟୋବର ମାସରେ ତାଙ୍କର ମହାପ୍ରୟାଣ ଘଟିଲା ।

ବାର୍ ଆସୋସିଏସନ୍‌ର ସଂପାଦକ ହରିହର ମହାପାତ୍ରଙ୍କର ଖ୍ୟାତି କେବଳ କୋର୍ଟରୁମ୍‌ରେ ଆବଦ୍ଧ ନ ରହି ସମାଜ-ଜୀବନର ବିଭିନ୍ନ ସ୍ତରରେ ପରିବ୍ୟାପ୍ତ ଥିଲା । ଜଣେ ସୁବକ୍ତା ଓ ସୁଲେଖକ ଭାବରେ ତାଙ୍କର ପ୍ରସିଦ୍ଧି ଥିଲା ଅତୁଳନୀୟ । ଛାତ୍ରାବସ୍ଥାରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଅନୁଷ୍ଠିତ ନିଖିଳ ଭାରତୀୟ ବକ୍ତୃତା ପ୍ରତିଯୋଗିତାରେ ସେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । କାଳିନ୍ଦୀ ଚରଣ ପାଣିଗ୍ରାହୀ, ଶରତ ମୁଖାର୍ଜି, ଅନ୍ନଦା ଶଙ୍କର ରାୟ ଓ ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ ସହ ସବୁଜ ସାହିତ୍ୟ ସମିତି ଗଠନର ସେ ଥିଲେ ପୁରୋଧା । ଓଡ଼ିଶାର ଜନ-ଜୀବନ ଗଠନରେ ତାଙ୍କର ଅଶେଷ ଅବଦାନ ରହିଛି ।

ସେ ସମୟରେ ପଚିବାବୁଙ୍କ (ପି.ସି. ଚାଟାର୍ଜି) ସିରସ୍ତାରେ ମାଳମାଳ ସିଭିଲ ରିଭିଜନ ଓ ସେକେଣ୍ଡ ଅପିଲ୍, ଅଶୋକ ଦାସଙ୍କ ସିରସ୍ତାରେ ବହୁ ସଂଖ୍ୟକ ରିଟ୍ କେସ୍। କିନ୍ତୁ ହରିହର ବାବୁଙ୍କ ସିରସ୍ତାରେ ଥିଲା ଅଗଣିତ ସିଭିଲ କ୍ରିମିନାଲ, ରିଟ୍ ଓ ଟ୍ୟାକ୍ସ କେସ୍। ବିଭିନ୍ନ କିସମର ମକଦ୍ଦମା ଚଳାଇବାରେ ସେ ଥିଲେ ଧୂରୀଣ। ଏଥିରେ ତାଙ୍କୁ ସାହାଯ୍ୟ କରୁଥିଲେ ମୁଖ୍ୟ ସହଯୋଗୀ ବଡ଼ ଭାଇଁ ଶ୍ରୀ ରଂଗନାଥ ମିଶ୍ର (ଭବିଷ୍ୟତ୍‌ରେ ଭାରତର ପ୍ରଧାନ ବିଚାରପତି)। ସାବଲୀଳ ଭାଷାରେ ବିବାଦୀୟ ବିଷୟକୁ ହୃଦୟଗ୍ରାହୀ ଭାବରେ ଉପସ୍ଥାପନା କରିବାରେ ତାଙ୍କର ଦକ୍ଷତା ତାଙ୍କୁ ଓକିଲାତି ବୃତ୍ତିରେ ଅଶେଷ ସଫଳତା ଆଣି ଦେଇଥିଲା। ବ୍ୟକ୍ତିଗତ ଜୀବନରେ ସେ ଅତ୍ୟନ୍ତ ଧର୍ମ ବିଶ୍ୱାସୀ ଓ ଶ୍ରୀରାମ ଭକ୍ତ; କିନ୍ତୁ ତାଙ୍କର ଚଳଣୀ ଓ ପୋଷାକ ପତ୍ର ଆଦି ଥିଲା ପୂରା ସାହେବୀ ଢଂଗର।

ଜୁନିୟର ଆଡ଼୍‌ଭୋକେଟ୍‌ମାନଙ୍କୁ ସେ କିପରି ଉତ୍ସାହିତ କରନ୍ତି ସେ ସଂପର୍କରେ ନିଜ ଅନୁଭୂତିରୁ ଗୋଟିଏ ଘଟଣା ଉଲ୍ଲେଖ କରୁଛି। ମୁଁ ଓକିଲାତି ଆରମ୍ଭ କରିବାର ଅଳ୍ପ ଦିନ ପରେ ୧୯୫୭ ମସିହାରେ ଦୈନିକ ମାତୃଭୂମିର ସଂପାଦକଙ୍କ ତରଫରୁ ହାଇକୋର୍ଟରେ ଏକ ରିଟ୍ କେସ୍ ଦାୟର କରିଥିଲି। ବିଧାନସଭାର ଅଧିକାର କ୍ଷୁନ୍ନ କରିବା ଅଭିଯୋଗରେ ବାଚସ୍ପତିଙ୍କ ସମ୍ମୁଖରେ ହାଜର ହେବା ପାଇଁ ସମ୍ବାଦପତ୍ର ସଂପାଦକଙ୍କୁ ଜାରୀ ହୋଇଥିବା ନୋଟିସ୍‌ର ବୈଧତା ଏହି ଦରଖାସ୍ତର ବିଚାର୍ଯ୍ୟ ବିଷୟ ଥିଲା। ସେ କାଳରେ ହାଇକୋର୍ଟର ରିଟ୍ କ୍ଷମତାର ପରିସର ସଂପର୍କରେ ସୁପ୍ରିମକୋର୍ଟର ମତାମତ ଅସ୍ପଷ୍ଟ ଥିଲା। ୧୯୬୫ ମସିହା ପରେ ସୀମିତ କ୍ଷେତ୍ରରେ ବିଧାନ ସଭା ଓ କୋର୍ଟର କ୍ଷମତା ସଂପର୍କରେ ସୁସ୍ପଷ୍ଟ ନୀତି ଆଲ୍‌ହାବାଦ ହାଇକୋର୍ଟ ଓ ଉତ୍ତର ପ୍ରଦେଶ ବିଧାନ ସଭା ବିବାଦରେ ଘୋଷିତ ହୋଇଛି। ଏଣୁ ମାତୃଭୂମି କେସ୍‌ଟି ପାଇଁ ବହୁତ ଶ୍ରମ ଓ ଅଧ୍ୟୟନ କରିବାକୁ ପଡ଼ିଥିଲା। ମୋର ଯୁକ୍ତି ଥିଲା ଯେ ବିଧାନ ସଭାର ସ୍ୱାଧିକାର କ୍ଷମତା ଗୃହର ଆଭ୍ୟନ୍ତରୀଣ ବିଷୟରେ ଆବଦ୍ଧ, କିନ୍ତୁ ଗୃହ ବାହାରେ ବିଧାନ ସଭା ସଦସ୍ୟଙ୍କର ଆଚରଣ ଉପରେ ମନ୍ତବ୍ୟ ପ୍ରକାଶ କରିବାର ଅଧିକାର ସମ୍ବାଦପତ୍ର ସଂପାଦଙ୍କର ରହିଛି, ଅନ୍ୟଥା ସଂପାଦକଙ୍କର ମତ ପ୍ରକାଶ କରିବାର ମୌଳିକ ଅଧିକାର କ୍ଷୁନ୍ନ ହେବ। ଉପରୋକ୍ତ ଯୁକ୍ତି ସପକ୍ଷରେ ମୁଁ ମୋର ବନ୍ଧୁ ଓ ସହପାଠୀ ତତ୍‌କାଳୀନ ପାର୍ଲିଆମେଣ୍ଟ ସଦସ୍ୟ ଚିନ୍ତାମଣି ପାଣିଗ୍ରାହୀଙ୍କ ଜରିଆରେ ଦିଲ୍ଲୀ ପାର୍ଲିଆମେଣ୍ଟ ଲାଇବ୍ରେରୀରୁ ବ୍ରିଟିଶ ପାର୍ଲିଆମେଣ୍ଟ ବିବରଣୀ ସଂବଳିତ କେତେକ ପୁସ୍ତକ ମଗାଇ କୋର୍ଟରେ ନଜିର୍ ଦେଖାଇଥିଲି। ଅବଶ୍ୟ ବାଚସ୍ପତିଙ୍କ ଆଦେଶ ବିରୁଦ୍ଧରେ ରିଟ୍ କେସ୍‌ଟି ଗୃହୀତ ହୋଇ ନଥଲା।

ଏହି କେସ୍‌ର ବିଚାର ଚାଲୁଥିବା ବେଳେ ହରିହର ବାବୁ ଯେ କୋର୍ଟରେ ଉପସ୍ଥିତ ଥିଲେ, ସେ ବିଷୟରେ ମୁଁ ସଚେତ ନଥିଲି । ମୁଁ କୋର୍ଟ ବାହାରକୁ ଆସିବା ମାତ୍ରେ ହରିହର ବାବୁ ବାହାରକୁ ଆସି ମହକିଲ ଓ ଅନ୍ୟ ଆଡ଼ଭୋକେଟ୍‌ମାନଙ୍କ ସାମନାରେ ମୁଁ ଏ କେସ୍ ପାଇଁ ଯେପରି ପ୍ରସ୍ତୁତ ହୋଇଛି ଓ ବିବାଦୀୟ ଆଇନଗତ ପ୍ରଶ୍ନ ଉପରେ ଯେଉଁ ନୂତନ ଆଲୋକପାତ କରିଛି, ସେଥିପାଇଁ ମୋର ଭୂରିଭୂରି ପ୍ରଶଂସା କରିଥିଲେ । ଜଣେ ବରିଷ୍ଠ ସମଧର୍ମୀଙ୍କର ଏ ପ୍ରକାରର ସାଧୁବାଦ, ମୋକଦ୍ଦମାରେ ସଫଳତା ହାସଲ କରିବାଠାରୁ ଅଧିକ ଆନନ୍ଦ ଓ ଉତ୍ସାହ ଦେଇଥିଲା ।

୧୯୫୯ ମସିହା ଜୁନ ମାସ ଆରମ୍ଭରେ ହରିହର ମହାପାତ୍ର ଦାମୋଦର ମହାନ୍ତିଙ୍କ ସ୍ଥାନରେ ଆଡ଼ଭୋକେଟ ଜେନେରାଲ ନିଯୁକ୍ତ ହୋଇଥିଲେ । କିନ୍ତୁ ଏହି ପଦବୀରେ ଅଧିକ ଦିନ ରହିବାର ସୁଯୋଗ ତାଙ୍କୁ ମିଳିଲା ନାହିଁ । ମାତ୍ର ଦୁଇମାସ ପରେ ସେ ପାଟନା ହୋଇକୋର୍ଟର ବିଚାରପତି ମନୋନୀତ ହେଲେ । ମୁଁ ଜଣେ ଜୁନିୟର ଆଡ଼୍‌ଭୋକେଟ ହେଲେ ମଧ୍ୟ, ତାଙ୍କୁ ବିଦାୟ ସଂବର୍ଦ୍ଧନା ଦେବା ଲାଗି କଟକ ନାରୀସଂଘ ସଦନରେ ଏକ ଚା' ଭୋଜିର ଆୟୋଜନ କରିଥିଲି । ହାଇକୋର୍ଟର ସବୁ ବିଚାରପତି ଓ ଆଡ଼ଭୋକେଟ୍‌ମାନଙ୍କ ସମେତ ତତ୍‌କାଳୀନ ତିନିଜଣିଆ ମନ୍ତ୍ରୀମଣ୍ଡଳର ସଦସ୍ୟ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଏବଂ ଅନ୍ୟ ଦୁଇଜଣ ମନ୍ତ୍ରୀ ଡକ୍ଟର ରାଧାନାଥ ରଥ ଓ ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ମଧ୍ୟ ନିମନ୍ତ୍ରଣ କରିଥିଲି । ଚା' ଭୋଜିର ସମୟ ଥାଏ ଅପରାହ୍ନ ୫ଘଣ୍ଟା । ଦିନ ଦୁଇଟା ସମୟରେ ହଠାତ୍ ଚିଫ୍ ମିନିଷ୍ଟର୍‌ଙ୍କ ଅଫିସରରୁ ତାଙ୍କ ସେକ୍ରେଟାରୀ ରାଓ ଫୋନ କଲେ, "ଆପଣ ଚା' ଭୋଜିର ସମୟ ଘଣ୍ଟାଟିଏ ଘୁଂଚାଇ ଦିଅନ୍ତୁ, ତାହହେଲେ ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନେ ମଧ୍ୟ ଯୋଗ ଦେଇ ପାରିବେ ।" ତାଙ୍କୁ ବିନୟର ସହିତ କହିଲି, "ଅନ୍ୟ ଯେଉଁମାନଙ୍କୁ ନିମନ୍ତ୍ରଣ କରିଛି, ସେମାନେ ମଧ୍ୟ ଖୁବ୍ ସମ୍ମାନସ୍ପଦ ବ୍ୟକ୍ତି । ଶେଷ ମୁହୂର୍ତ୍ତରେ ଧାର୍ଯ୍ୟ ସମୟର ପରିବର୍ତ୍ତନ କଲେ ସେମାନେ ଅପମାନିତ ବୋଧ କରିବେ ।" ଅଧଘଣ୍ଟା ପରେ ପୁଣି ଥରେ ସେହି ଫୋନ୍ ଓ ମୋର ସେହି ଉତ୍ତର । ଅପରାହ୍ନ ତିନିଟା ସମୟରେ ଆଉ ଥରେ ଫୋନ୍ ବାଜିଲା । ରାଓ କହିଲେ, "ବର୍ତ୍ତମାନ ମନ୍ତ୍ରୀ ମଣ୍ଡଳ ବୈଠକ ଚାଲିଛି, ସେଥିପାଇଁ ଏ ଅନୁରୋଧ । ଆପଣ ଟିକେ ସମୟ ଘୁଂଚାଇ ଦେଲେ ଚିଫ୍ ମିନିଷ୍ଟର ନିଶ୍ଚୟ ଆସିବେ ।" ମୁଁ ସେହି ଏକ ଉତ୍ତର ଦେଲି, "ଚିଫ୍ ମିନିଷ୍ଟରଙ୍କୁ କହିବେ, ମୁଁ ତାଙ୍କ ଅନୁରୋଧ ରଖି ନ ପାରି କ୍ଷମା ଚାହୁଁଛି ।"

ପାଂଚଟା ବାଜିବାର ଦଶ ପନ୍ଦର ମିନିଟ ଆଗରୁ ନାରୀସଂଘ ସଦନ ଅତିଥିମାନଙ୍କର ସମାଗମରେ ଭରପୂର ହୋଇ ଉଠିଥିଲା । ବିଚାରପତି ସୌରୀ ପ୍ରସାଦ ମହାପାତ୍ର, ପି.ଭି. ବାଳକୃଷ୍ଣ ରାଓ, ଗୋପାଳ ଚନ୍ଦ୍ର ଦାସ ଓ ସତ୍ୟଭୂଷଣ ବର୍ମନ ଏବଂ ବାଂଛାନିଧି ବାବୁ, ପଟିବାବୁ, ଲଳିତ ବାବୁ ଓ ରାଜୁ ବାବୁ ପ୍ରମୁଖ ପ୍ରାୟ ଦେଢ଼ଶହ ଆଡ୍‌ଭୋକେଟ ଉପସ୍ଥିତ ଥିଲେ । ମୁଁ ସମସ୍ତଙ୍କୁ ଆଗତୁରା ସଫେଇ ଦେବାରେ ବ୍ୟସ୍ତ ଥାଏ, ମନ୍ତ୍ରୀମଣ୍ଡଳ ବୈଠକ ଚାଲିଥିବା ହେତୁ ମୁଖ୍ୟମନ୍ତ୍ରୀ ଆସି ପାରୁ ନାହାନ୍ତି । ଠିକ୍ ପାଂଚଟା ସମୟରେ ତିନୋଟି ସରକାରୀ କାର ଜାତୀୟ ପତାକା ଉଡ଼ାଇ, ଦୀର୍ଘ ହର୍ଣ୍ଣ ବଜାଇ ନାରୀସଂଘ ସଦନରେ ପ୍ରବେଶ କଲେ । କାର୍‌ରେ ଆସିଥିଲେ ମହତାବ ବାବୁ, ରାଧାନାଥ ବାବୁ ଓ ପାଟଣା ମହାରାଜା । ଏହି ଘଟଣାରୁ ହରିହର ମହାପାତ୍ରଙ୍କ ପ୍ରତି ସବୁ ଶ୍ରେଣୀ ଲୋକଙ୍କର ସମ୍ମାନର ପରିଚୟ ମିଳେ । ମୁଁ ଅନୁଷ୍ଠାନରେ ସ୍ୱାଗତ ଭାଷଣ ଦେଲି । ମହତାବ ବାବୁ ତାଙ୍କ ଅଭିଭାଷଣ ଉପରୋକ୍ତ ଘଟଣାର ଉଲ୍ଲେଖ କରିଥିଲେ । ହରିହର ବାବୁ ସଂବର୍ଦ୍ଧନା ପାଇଁ ସମସ୍ତଙ୍କୁ ଧନ୍ୟବାଦ ଦେଇଥିଲେ । ଛ'ଷଠି ମସିହାରେ ପାଟଣାରୁ ଅବସର ନେବା ପରେ ସେ ପୁଣି ଦୁଇ ବର୍ଷ ପାଇଁ ଆଡ୍‌ହକ୍ ଜଜ୍ ନିଯୁକ୍ତ ହୋଇଥିଲେ । ବର୍ତ୍ତମାନ ସେ କଟକରେ ଅବସ୍ଥାନ କରୁଅଛନ୍ତି । ୯୦ ବର୍ଷ ବୟସରେ ମଧ୍ୟ ସେ ବହୁ ସାଂସ୍କୃତିକ ଅନୁଷ୍ଠାନ ସହ ସଂପୃକ୍ତ ଓ ସାଧାରଣ କାର୍ଯ୍ୟ କ୍ଷେତ୍ରରେ କର୍ମତତ୍ପର ଅଛନ୍ତି ।

ମୁଁ ବାର୍‌ରେ ଯୋଗ ଦେବାର ଦୁଇ ବର୍ଷ ପରେ ୧୯୫୭ ମସିହାରେ ଆଡ୍‌ଭୋକେଟ୍ ରାୟ ବାହାଦୁର ଚିନ୍ତାମଣି ଆଚାର୍ଯ୍ୟଙ୍କର ମାତ୍ର ସତଷଠି ବର୍ଷ ବୟସରେ ଦେହାନ୍ତ ହେଲା । ସେସନ୍‌ସ କୋର୍ଟରେ ସେ ଥିଲେ ଜଣେ ନାମଜାଦା ଆଡ୍‌ଭୋକେଟ୍ । ତିରିଶ ଦଶକରେ ସେ ବହୁ ବର୍ଷ ଧରି କଟକର ଗଭର୍ଣ୍ଣମେଣ୍ଟ ପ୍ଲିଡ଼ର ରହି ଅଶେଷ ପ୍ରତିଷ୍ଠା ଅର୍ଜନ କରିଥିଲେ । ତାଙ୍କ ପୂର୍ବରୁ ଏହି ପଦଟି କ୍ରମାଗତ ଭାବରେ ବଙ୍ଗଭାଷୀ ଆଇନଜୀବିମାନଙ୍କର ଏକଚାଟିଆ ଅଧିକାର ଥିଲା । ସେ ବୋଧହୁଏ ପ୍ରଥମ ଓଡ଼ିଆ ଓକିଲ ଯେ କଟକର ଗଭର୍ଣ୍ଣମେଣ୍ଟ ପ୍ଲିଡର ହେଲେ । ଏକାଧାରରେ ସେ ଥିଲେ ସାହିତ୍ୟିକ ଓ ଶିକ୍ଷାନୁରାଗୀ । ସାହିତ୍ୟ ସମାଜ, ସାହିତ୍ୟ ପରିଷଦ ଆଦି ବହୁ ସାଂସ୍କୃତିକ ଅନୁଷ୍ଠାନ ସହ ସେ ସଂପୃକ୍ତ ଥିଲେ । ପରିଜା ସାହେବଙ୍କ ପରେ ସେ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ଦ୍ୱିତୀୟ ଭାଇସ୍‌ଚାନ୍‌ସେଲାର । ରାମକୃଷ୍ଣ କଲେଜର ସେ ଥିଲେ ଅନ୍ୟତମ ପୃଷ୍ଠପୋଷକ ଏବଂ ସେହି ସୂତ୍ରରେ ସ୍କୁଲରେ ପଢ଼ିବା ଦିନରୁ ତାଙ୍କ ସହ ପରିଚୟ । ୧୯୫୬ ମସିହାରେ ଓଡ଼ିଶା ହାଇକୋର୍ଟ ବାର ଆସୋସିଏସନ୍‌ର

ସାଧାରଣ ବୈଠକରେ ସ୍ୱାମୀ ବି.ଏନ୍. ଦାସ ଓ ହରିହର ମହାପାତ୍ର ଯଥାକ୍ରମେ ସଭାପତି ଓ ସଂପାଦକ ପଦରୁ ଇସ୍ତଫା ଦେଲେ ଏବଂ ବାରିଷ୍ଟର ମୁରଲୀଧର ମହାନ୍ତି ସଭାପତି ନିର୍ବାଚିତ ହେଲେ । ମୋର ମନେ ଅଛି, ଚିନ୍ତାମଣି ବାବୁଙ୍କ ପ୍ରସ୍ତାବକ୍ରମେ ମୁଁ ବାର୍ ଆସୋସିଏସନ୍‌ର ସହକାରୀ ସଂପାଦକ ଭାବେ ନିର୍ବାଚିତ ହେଲି । ଦୁଇ ବର୍ଷ ପରେ ହାଇକୋର୍ଟ ବାର୍ ଆସୋସିଏସନ୍‌ର ସଂପାଦକ ନିର୍ବାଚିତ ହୋଇ, ୧୯୬୩ ମସିହା ପର୍ଯ୍ୟନ୍ତ ଏହି ଦାୟିତ୍ୱରେ ରହିଥିଲି ।

୧୯୫୪ ମସିହାରେ ଓଡ଼ିଶାର ଆଡ଼୍‌ଭୋକେଟ ଜେନେରାଲ ଥିଲେ ଶ୍ରୀ ବାଞ୍ଛାନିଧି ମହାପାତ୍ର । ଚିନ୍ତାମଣି ଆଚାର୍ଯ୍ୟଙ୍କ ପରେ ବାଂଛାନିଧି ବାବୁ କଟକରେ ଗଭର୍ଣ୍ଣମେଣ୍ଟ ପ୍ଲିଡର ଓ ହାଇକୋର୍ଟ ପ୍ରତିଷ୍ଠିତ ହେବା ପରେ କିଛି ବର୍ଷ ପାଇଁ ବାଣିଜ୍ୟକର ବିଭାଗର ଷ୍ଟାଣ୍ଡିଂ କାଉନସେଲ ମଧ୍ୟ ଥିଲେ । ପୀତାମ୍ବର ମିଶ୍ର ଜଜ୍ ନିଯୁକ୍ତ ହେବା ପରେ ଶ୍ରୀ ମହାପାତ୍ର ଆଡ଼ଭୋକେଟ୍ ଜେନେରାଲ ନିଯୁକ୍ତ ହୋଇଥିଲେ । ତାଙ୍କ ପରି ଜଣେ ଅଭିଜ୍ଞ ଓ ପ୍ରବୀଣ ଆଇନଜୀବିଙ୍କର ଏହି ପଦରେ ନିଯୁକ୍ତିକୁ ସବୁ ମହଲରେ ସ୍ୱାଗତ କରାଯାଇଥିଲା ।

ଚିଫ୍ ଜଷ୍ଟିସ ପାଣିଗ୍ରାହୀ କାନକୁହା କଥାରେ ସହଜରେ ବିଶ୍ୱାସ କରୁଥିଲେ । ତାଙ୍କର ଧାରଣା ଯେ ବାଛାନିଧି ବାବୁ ତାଙ୍କର ବିରୋଧୀ । ୫୬ ମସିହାରେ ପାଣିଗ୍ରାହୀ ମୁଖ୍ୟ ବିଚାରପତି ପଦରୁ ଅବସର ଗ୍ରହଣ କରିବା ପରେ ଦ୍ୱିତୀୟ ସାଧାରଣ ନିର୍ବାଚନରେ କଂଗ୍ରେସ ଟିକଟରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଓ ମହତାବଙ୍କ ମନ୍ତ୍ରୀ ମଣ୍ଡଳରେ ଆଇନ୍ ଓ ଶିକ୍ଷାମନ୍ତ୍ରୀ ପଦ ଗ୍ରହଣ କରିଥିଲେ । ଲୋକେ କହନ୍ତି ପୂର୍ବ ଓରିମାନା ମେଣ୍ଟାଇବା ପାଇଁ ନୂତନ ଆଇନ ମନ୍ତ୍ରୀ ଆଡ଼୍‌ଭୋକେଟ ଜେନେରାଲ ନିଯୁକ୍ତି ନିୟମାବଳୀ ସଂଶୋଧନ କରି ଗୋଟିଏ ନୂତନ ସର୍ତ୍ତ ସଂଯୋଗ କଲେ ଯେ ସରକାର ପରିବର୍ତ୍ତିତ ହେଲେ ଆଡ୍‌ଭୋକେଟ ଜେନେରାଲ ପଦରେ ମଧ୍ୟ ପରିବର୍ତ୍ତନ କରାଯାଇ ପାରିବ । ତଦନୁଯାୟୀ ମହାପାତ୍ରଙ୍କୁ ଇସ୍ତଫା ଦେବାକୁ କୁହାଗଲା ଓ ପାଣିଗ୍ରାହୀଙ୍କ ପ୍ରିୟପାତ୍ର ଦାମୋଦର ମହାନ୍ତି ଏହି ପଦରେ ନିଯୁକ୍ତ ହେଲେ । କିନ୍ତୁ କାଳର ଗତି ବିଚିତ୍ର । ସାଧାରଣ ନିର୍ବାଚନର ମାତ୍ର ଦୁଇବର୍ଷ ପରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଭାଂଗି କଂଗ୍ରେସ ଓ ସ୍ୱତନ୍ତ୍ର ଦଳର ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଡକ୍ଟର ହରେକୃଷ୍ଣ ମହତାବ ଏହି ମିଳିତ ଦଳର ମୁଖ୍ୟମନ୍ତ୍ରୀ, କିନ୍ତୁ ପାଣିଗ୍ରାହୀ ଏଥିରୁ ବାଦ୍ ପଡ଼ିଥିଲେ । ଯେଉଁ ନିୟମ ବଳରେ ବାଂଛାନିଧି ବାବୁଙ୍କୁ ବିତାଡ଼ିତ କରାଯାଇଥିଲା, ସେହି ନିୟମର ପ୍ରୟୋଗ ଫଳରେ ସେ ଦ୍ୱିତୀୟ ଥର ପାଇଁ ଆଡ୍‌ଭୋକେଟ୍ ଜେନରାଲ ନିଯୁକ୍ତ ହେଲେ ଓ ଏହି ପଦବୀରେ ସେ ଦୁଇ ବର୍ଷ ରହିଥିଲେ ।

ଉପରୋକ୍ତ ବିଦ୍ଵଦମାନ ପରିସ୍ଥିତି ସତ୍ତ୍ୱେ ବାଂଛାନିଧି ମହାପାତ୍ରଙ୍କୁ ଅଜାତଶତ୍ରୁ କହିଲେ ସମୀଚିନ ହେବ । ଜଣେ ଧୀର ଶାନ୍ତ ପୋଖତ ଉପଦେଷ୍ଟା ଭାବରେ ସେ ସମସ୍ତଙ୍କର ସମ୍ମାନର ପାତ୍ର ଥିଲେ । ହାଇକୋର୍ଟ ବାର୍ ତାଂକୁ ଯଥୋଚିତ ସମ୍ମାନ ଦେଖାଇଥିଲେ । ଦୁଇଥର ସେ ବାର ଆସୋସିଏସନ୍‌ର ସଭାପତି ଓ ଦୁଇଥର ବାର୍ କାଉନ୍‌ସିଲର ମଧ୍ୟ ଚେୟାରମ୍ୟାନ ଥିଲେ । ପ୍ରାୟ ୭୫ ମସିହାରେ ସେ ଆଇନ ବୃତ୍ତିରୁ ବିଶ୍ରାନ୍ତି ନେଇ ପିଲାମାନଙ୍କ ସହ ସମୟ କଟାଉଥିଲେ । ୧୯୮୩ ମସିହାରେ ପରଣିତ ବୟସରେ ସେ ଚିର ବିଦାୟ ନେଲେ ।

ଲଳିତ କୁମାର ଦାସଗୁପ୍ତ ବାଂଛାନିଧି ମହାପାତ୍ରଙ୍କର ସମସାମୟିକ । ୧୯୧୮ ମସିହାରେ ସେ ଓକିଲାତି ଆରମ୍ଭ କରିଥିଲେ । ବହୁବର୍ଷ ଧରି ସତ୍ୟନାରାୟଣ ସେନ୍‌ଗୁପ୍ତଙ୍କ ସିରସ୍ତାରେ ସହଯୋଗୀ ଭାବରେ କାର୍ଯ୍ୟ କରିଥିଲେ ମଧ୍ୟ ସଫଳତା ହାସଲ କରିବାରେ ଶିଷ୍ୟ ଗୁରୁଙ୍କଠାରୁ ଦୁଇ ପାଦ ଆଗରେ ଥିଲେ । ଫୌଜଦାରୀ କୋର୍ଟରେ ଲଳିତ ବାବୁ ପାଦ ଦିଅନ୍ତି ନାହିଁ । କିନ୍ତୁ ଦେଓ୍ୟାନୀ ଆଇନରେ ସେ ଥିଲେ ଅଶେଷ ପାରଦର୍ଶୀ । ସେ ଯୁଗର ହାଇକୋର୍ଟ ଲିଷ୍ଟରୁ ଦେଖାଯିବ, ସବୁ ବଡ଼ ବଡ଼ ସିଭିଲ ଆପିଲ ଗୁଡ଼ିକରେ ଲଳିତ ବାବୁ ଅବଶ୍ୟ ଗୋଟିଏ ପକ୍ଷର ଅଧିବକ୍ତା । ଜଟିଳ ଆଇନଗତ ପ୍ରଶ୍ନର ସରଳ ବିଶ୍ଳେଷଣ ଓ ଉପସ୍ଥାପନା ଶୈଳୀ ଥିଲା ଉଚ୍ଚକୋଟୀର ଏବଂ ସହଜରେ ସେ ନିଜର ବଳିଷ୍ଠ ଯୁକ୍ତି ପ୍ରବାହରେ ବିଚାରପତିଙ୍କୁ ପ୍ରଭାବିତ କରି ପାରୁଥିଲେ ।

ଲଳିତ ବାବୁ ଥିଲେ ଏକାନ୍ନ ହିନ୍ଦୁ ପରିବାରର ଆଦର୍ଶ କର୍ତ୍ତା । ଚଳିତ ଶତାବ୍ଦୀର ପ୍ରାରମ୍ଭରେ ତାଙ୍କ ପରିବାର ପୂର୍ବ ବଂଗରୁ ଆସି କଟକରେ ବସବାସ କରୁଥିଲେ । ଭାଇମାନଙ୍କ ସହ ସେ ଏକତ୍ର ଗୋଟିଏ ଘରେ ରହୁଥିଲେ । ରୋଜଗାରିଆ ଭାଇ ଭାବରେ ସେ ଗଂଗା ମନ୍ଦିରରେ ଯେଉଁ ଘର ତିଆର କରିଥିଲେ, ସେଥିରେ ନିଜେ ଗୋଟିଏ ବଖରାରେ ଚଳାଚଳ କରି ପୁରା ଘରଟି ଭାଇ, ଭଉଣୀ ଓ ସେମାନଙ୍କର ପରିବାରର ବସବାସ ପାଇଁ ଛାଡ଼ି ଦେଇଥିଲେ । ଏପରି ନିସ୍ୱାର୍ଥପର ଭ୍ରାତୃଭାବ ଆଜିକାଲି ବିରଳ ।

ଷଷ୍ଠ ଦଶକର ଆରମ୍ଭରେ ସେ ଥିଲେ ହାଇକୋର୍ଟ ବାର୍ ଆସୋସିଏସନ୍‌ର ସଭାପତି ଓ ମୁଁ ଥିଲି ସାଧାରଣ ସଂପାଦକ । ତାଙ୍କରି ଅନୁପ୍ରେରଣାରେ ବାର୍ ଆସୋସିଏସନ୍ ରେଜିଷ୍ଟ୍ରିଭୁକ୍ତ ହୋଇଥିଲା ଓ ତାର ନିୟମାବଳୀ ପ୍ରସ୍ତୁତ ହୋଇଥିଲା । ସେ ନିୟମାବଳୀ ଏବେ ମଧ୍ୟ କାର୍ଯ୍ୟକାରୀ ହେଉଛି । କୋର୍ଟ ରୁମ୍‌ରେ ସେ ଥିଲେ ଜଣେ ଦୁର୍ଦ୍ଧର୍ଷ ଯୋଦ୍ଧା; କିନ୍ତୁ କୋର୍ଟ ବାହାରେ ଅତି ସ୍ନେହୀ ଶୁଭାକାଂକ୍ଷୀ

ଓ ବରିଷ୍ଠ ସହାୟକ । ଥରେ ୬୭-୬୮ ମସିହାରେ ଭଦ୍ରଖ କଲେଜ ପରିଚାଳନା ସଂକ୍ରାନ୍ତୀୟ ଗୋଟିଏ ବଡ଼ ଅପିଲ୍‌ର ବିଚାର ବାଲେଶ୍ୱରରୁ ସ୍ଥାନାନ୍ତରିତ ହୋଇ କଟକ ଜଜ୍‌କୋର୍ଟରେ ଚାଲିଥିଲା । ଲଳିତ ବାବୁ ଆପେଲାଣ୍ଟ ତରଫରୁ ପ୍ରଥମ ଦୁଇଦିନ ତାଙ୍କର ଯୁକ୍ତି ଉପସ୍ଥାପିତ କରିଥିଲେ । ଭଦ୍ରଖର ବିଶିଷ୍ଟ ଓକିଲ ଚିନ୍ତାମଣି ମହାନ୍ତି ମତେ ପ୍ରତିବାଦୀ ପକ୍ଷରୁ ସାହାଯ୍ୟ କରୁଥାଆନ୍ତି । ତୃତୀୟ ଦିନ ମୋର ବୟାନ ଆରମ୍ଭ ହେଲା । ଚାରିଟା ସମୟରେ କୋର୍ଟ ଉଠିଲା ପରେ ଆମେ ଯେତେବେଳେ କୋର୍ଟ ହଲ୍‌ରୁ ପଦାକୁ ବାହାରିଲୁ, ଲଳିତ ବାବୁ ଉଭୟ ପକ୍ଷର ମହକିଲ ଓ ଅନ୍ୟ ସମସ୍ତଙ୍କ ସାମନାରେ ଶ୍ରଦ୍ଧାରେ ମୋ କାନ୍ଧରେ ହାତ ପକାଇ କହିଲେ, "ଗଂଗାଧର ବାବୁ, ତୁମେ ମୋର ଯୁକ୍ତିଗୁଡ଼ିକ ଦକ୍ଷତାର ସହ କାଟି ଦେଇଛ । ତୁମର ବିଶ୍ଳେଷଣ ଓ ଉପସ୍ଥାପନା ଏତେ ଉଚ୍ଚକୋଟୀର ହୋଇଛି ଯେ, ତୁମେ ଏ ଆପିଲ ନିଶ୍ଚୟ ଜିତିବ ।" ପ୍ରତିପକ୍ଷ ଆଡ୍‌ଭୋକେଟଙ୍କ ପ୍ରତି ଏପରି ବ୍ୟବହାର କେବଳ ଜଣେ ଉଦାର ଓ ମହାନ୍ ପୁରୁଷଙ୍କ ପକ୍ଷରେ ସଂଭବ ?

୧୯୭୬ ମସିହା ଶେଷ ଭାଗରେ କଲିକତାରେ ରହୁଥିବା ସମୟରେ ତାଙ୍କର ମୃତ୍ୟୁ ହେଲା । ଓଡ଼ିଶା ହାଇକୋର୍ଟ ବାର୍ ଚିରଦିନ ପାଇଁ ଜଣେ ଯୋଗ୍ୟ ସମଧର୍ମୀଙ୍କର ସହଯୋଗ ହରାଇଲା ।

ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠିତ ହେବା ସମୟରେ ଯେଉଁ ଚାରିଜଣ ଆଡ୍‌ଭୋକେଟ ପାଟନାରୁ କଟକ ଫେରି ଆସିଥିଲେ, ସେମାନଙ୍କ ମଧ୍ୟରୁ ବାରିଷ୍ଟର ବି.ସି. ଦାସ ଜିଲାଜଜ ମନୋନୀତ ହୋଇ ବୃତ୍ତିରୁ ବିଦାୟ ନେଲେ । ୧୯୬୯ ମସିହାରେ ତତ୍‌କାଳୀନ ମୁଖ୍ୟ ବିଚାରପତି ଗତିକୃଷ୍ଣ ମିଶ୍ରଙ୍କ ଅନୁରୋଧକ୍ରମେ ସେ ଜିଲାଜଜ୍ ପଦରୁ ଅବସର ନେବା ପରେ ଦୁଇ ବର୍ଷ ପାଇଁ ହାଇକୋର୍ଟର ଅତିରିକ୍ତ ବିଚାରପତି ପଦ ଗ୍ରହଣ କରିଥିଲେ । ପୀତାମ୍ବର ମିଶ୍ର ଦୁଇ ବର୍ଷ ଆଡ୍‌ଭୋକେଟ୍ ଜେନେରାଲ ରହିବା ପରେ ବିଚାରପତି ନିଯୁକ୍ତ ହୋଇଥିଲେ, ମାତ୍ର ବର୍ଷକ ପରେ ତାଙ୍କର ଅକାଳ ମୃତ୍ୟୁ ହେଲା । ଗୋପାଳ ଚନ୍ଦ୍ର ଦାସ ୧୯୫୬ରୁ ୬୦ ମସିହା ଶେଷ ପର୍ଯ୍ୟନ୍ତ ବିଚାରପତି ରହିବା ପରେ ଅବସର ନେଲେ । ଚତୁର୍ଥ ବ୍ୟକ୍ତି ବାରିଷ୍ଟର ମୁରଲୀଧର ମହାନ୍ତି ନିଜର ମୌଳିକ ଚିନ୍ତାଧାରା ଓ ଅସାଧାରଣ ବାଗ୍ମିତା ହେତୁ, ଅଳ୍ପ ଦିନ ମଧ୍ୟରେ ଜଣେ ବିଶିଷ୍ଟ ଆଡ୍‌ଭୋକେଟ୍ ଭାବରେ ପ୍ରତିଷ୍ଠା ଲାଭ କରିଥିଲେ । ଅଳୀକ ପ୍ରବଂଚନା ଓ ଖୋସାମତିଆ କଥା କହି ବିଚାରପତିମାନଙ୍କୁ ପ୍ରଭାବିତ କରିବା ତାଙ୍କ ଧାତରେ ନଥିଲା ।

''ସତ୍ୟମ ବୃୟାତ୍, ପ୍ରିୟମ୍ ବୃୟାଦ୍
ମା ବୃୟାଦ୍ ସତ୍ୟମ୍ ଅପ୍ରିୟମ୍''

ନୀତି ବାକ୍ୟରେ ବୋଧହୁଏ ତାଙ୍କର ବିଶେଷ ଆସ୍ଥା ନଥିଲା । ଯେ ଯାହା ଭାବୁନା କାହିଁକି, ଆବଶ୍ୟକ ହେଲେ ଅପ୍ରିୟ ସତ୍ୟ କହିବାକୁ ସେ କୁଣ୍ଠିତ ନଥିଲେ । ତାଙ୍କ ପରି ନିର୍ଭୀକ ଓ ସ୍ପଷ୍ଟବାଦୀ ବିରଳ । ତାଙ୍କ ସହିତ କେତୋଟି ନିର୍ବାଚନ ଅପିଲ୍‌ରେ ଏକତ୍ର କାର୍ଯ୍ୟ କରିବାର୍ ସୁଯୋଗ ଘଟିଛି । ମୁଁ ଅନୁଭବ କରିଛି ଯେ ପରଂପରା ଓ ପୂର୍ବ ନିଷ୍ପତ୍ତି ଗୁଡ଼ିକ ଉପରେ ଅଧିକ ଗୁରୁତ୍ୱ ନ ଦେଇ ସ୍ୱୀୟ ବିଚାର-ସଂଭୂତ ମତାମତ ଉପରେ ସେ ବିଶେଷ ଗୁରୁତ୍ୱ ଦିଅନ୍ତି । ଏହି କାରଣରୁ ମୋକଦ୍ଦମାରେ ବିଜୟ ଲାଭ କରିବାର୍ ସଂଭାବନା କ୍ଷୀଣ ହୋଇ ଉଠେ । ଦୀର୍ଘଦିନ ଧରି ସେ ବାର୍ ଆସୋସିଏସନ୍‌ର ସଭାପତି ଥିଲେ । ୧୯୭୮ ମସିହାରେ ତାଙ୍କର ଦେହାନ୍ତ ହୋଇଅଛି ।

ପଂଚ ଦଶକରେ ଜଣେ ବିଚକ୍ଷଣ ବ୍ୟକ୍ତିଙ୍କର ହାଇକୋର୍ଟ ବାର୍‌ରେ ଯୋଗଦାନ ଆଇନଜୀବି ଓ ମହକିଲମାନଙ୍କ ମଧ୍ୟରେ ଏକ ପ୍ରକାର ଆଲୋଡ଼ନ ସୃଷ୍ଟି କରିଥିଲା । ସମ୍ବଲପୁରରେ ସବର୍ଡ଼ିନେଟ ଜଜ୍ ଥିବା ସମୟରେ ଗତିକୃଷ୍ଣ ମିଶ୍ର (ପରେ ଓଡ଼ିଶାର ମୁଖ୍ୟ ବିଚାରପତି) ଚାକିରୀରୁ ଇସ୍ତଫା ଦେଇ ପୁନର୍ବାର ଆଇନ ବୃତ୍ତିକୁ ଫେରି ଆସିଥିଲେ । ଜଣେ ମେଧାବୀ ଛାତ୍ର ଭାବରେ ତାଙ୍କର ଅଶେଷ ଖ୍ୟାତି ଥିଲା । ଏଣେ ବିଚାର ବିଭାଗରେ ଆଠ ଦଶ ବର୍ଷ ନିଷ୍ଠାର ସହ କାର୍ଯ୍ୟ କରି ଆଇନର ବିଭିନ୍ନ ବିଭାଗରେ ସେ ଯଥେଷ୍ଟ ଅଭିଜ୍ଞତା ଅର୍ଜନ କରିଥିଲେ । ତାଙ୍କର ତୀକ୍ଷ୍ଣ ବିଚାରବୁଦ୍ଧି ଓ ଶାଣିତ ବିଶ୍ଳେଷଣ ଶକ୍ତି ଅତୁଳନୀୟ । ଜଣେ ସୁଦକ୍ଷ ଓ ନିଷ୍ଠାବାନ ଆଡ୍‌ଭୋକେଟ୍ ଭାବରେ ସେ ସହଜରେ ମହକିଲ ଓ ବିଭିନ୍ନ ଜିଲ୍ଲାର ସ୍ଥାନୀୟ ଓକିଲମାନଙ୍କ ଆସ୍ଥାଭାଜନ ହୋଇ ପାରିଥିଲେ ଏବଂ ଏହି ସୁନାମ ତାଙ୍କୁ ଅଳ୍ପ ଦିନ ମଧ୍ୟରେ ଏ ବୃତ୍ତିର ଶୀର୍ଷ ସ୍ଥାନରେ ପହଂଚାଇ ଦେଇ ପାରିଥିଲା । ତାଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କ ଥିଲା ଅତି ହାର୍ଦ୍ଦିକ । ଯେ କୌଣସି ଜଟିଳ ବିଷୟରେ ମୁଁ ତାଙ୍କଠାରୁ ପରାମର୍ଶ ନେଇ ପାରୁଥିଲି । ସେ ସହୃଦୟତା ଏବେ ମଧ୍ୟ ବଜାୟ ରହିଛି । ତାଙ୍କର ବଡ଼ ଭାଇନା ଜୟକୃଷ୍ଣ ମିଶ୍ର ୧୯୫୯ରୁ ୧୯୬୧ ପର୍ଯ୍ୟନ୍ତ ଦୁଇବର୍ଷ ଅତିରିକ୍ତ ବିଚାରପତି ଭାବରେ କାର୍ଯ୍ୟ କରିଥିଲେ । ୧୯୬୨ ଜାନୁୟାରୀ ମାସରେ ଗତି ବାବୁ ହାଇକୋର୍ଟର ସ୍ଥାୟୀ ବିଚାରପତି ନିଯୁକ୍ତ ହେଲେ । ଦୀର୍ଘ ଚଉଦ ବର୍ଷର ବିଚାରପତି କାଳ ମଧ୍ୟରୁ ଶେଷ ଛ' ବର୍ଷ ମୁଖ୍ୟ ବିଚାରପତି ରହିବା ପରେ ୧୯୭୫ ମସିହାରେ ସେ ଅବସର ନେଇଛନ୍ତି ।

ଫୌଜଦାରୀ ଆଇନରେ ଧୁରନ୍ଧର, ସେସନ୍ସ ଓ କ୍ରିମିନାଲ କେସ୍ ଆଦି ଚଳାଇବାରେ ବିଶେଷ ଖ୍ୟତି ଅର୍ଜନ କରିଥିବା ଅନ୍ୟ ଜଣେ ମଧ୍ୟବୟସ୍କ ଆଡ୍‌ଭୋକେଟ୍ ଥିଲେ ରାଜ କିଶୋର ଦାସ (ପରେ ବିଚାରପତି ଦାସ)। ସେ ଓକିଲାତି ଆରମ୍ଭ କରିଥିଲେ ବୀର କିଶୋର ରାୟଙ୍କର ସହଯୋଗୀ ଭାବରେ। ଆଦ୍ୟାବସ୍ଥାରେ ବହୁ ସ୍ୱାଧୀନତା-ସଂଗ୍ରାମୀ, କମ୍ୟୁନିଷ୍ଟ ଓ ଅନ୍ୟ ବାମପନ୍ଥୀ ଆନ୍ଦୋଳନରେ ସଂପୃକ୍ତ କର୍ମୀମାନଙ୍କର ପକ୍ଷ ସମର୍ଥନ କରି ସେ ଜଣେ ନିର୍ଭୀକ ଅଧିବକ୍ତା ଭାବରେ ପ୍ରତିଷ୍ଠା ଲାଭ କରିଥିଲେ। ଭଗବତୀ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ ଓ ଗୁରୁଚରଣ ପଟ୍ଟନାୟକ ପ୍ରମୁଖଙ୍କ ବିରୁଦ୍ଧରେ ଆଗତ ସୁପ୍ରସିଦ୍ଧ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମୋକଦ୍ଦମାରେ ଦୀନବନ୍ଧୁ ସାହୁଙ୍କ ସହ ସେ ଥିଲେ ମୁଖ୍ୟ ଡିଫେନ୍ସ ଓକିଲ। ଦ୍ୱିତୀୟ ମହାଯୁଦ୍ଧ ଓ ଯୁଦ୍ଧ ପରବର୍ତ୍ତୀ କାଳରେ ବହୁ ବ୍ୟବସାୟୀଙ୍କ ବିରୁଦ୍ଧରେ ଭାରତ ରକ୍ଷା ନିୟମାବଳୀ ଅନୁଯାୟୀ କଳାବଜାର ଅଭିଯୋଗରେ ଫୌଜଦାରୀ ମକଦ୍ଦମା କରାଯାଉଥିଲା। ଏହିସବୁ ମୋକଦ୍ଦମାରେ ରାଜୁ ବାବୁ ସାଧାରଣତଃ ମୁଦାଲା ତରଫରୁ ନିଯୁକ୍ତ ହେଉଥିଲେ। ଏକ ସମୟରେ ନିମ୍ନକୋର୍ଟରେ ତାଙ୍କର ଏତେ ଅଧିକ ସଂଖ୍ୟକ କେସ୍ ଥିଲା ଯେ ପରିହାସରେ ବନ୍ଧୁମାନେ ତାଙ୍କୁ "କିଂଗ୍ ଅଫ୍ ଦି କ୍ରିମିନାଲ କୋର୍ଟ" ଆଖ୍ୟା ଦେଇଥିଲେ। ହାଇକୋର୍ଟ ପ୍ରତିଷ୍ଠିତ ହେବା ପରେ ସେ ମାଜିଷ୍ଟ୍ରେଟ୍ କୋର୍ଟ ଛାଡ଼ି ମୁଖ୍ୟତଃ ହାଇକୋର୍ଟରେ ତାଙ୍କର ବୃତ୍ତି ଆବଦ୍ଧ ରଖିଲେ। ୧୯୬୦ ମସିହାରେ ସେ ବିଚାରପତି ନିଯୁକ୍ତ ହୋଇଥଲେ। ୧୯୬୭ ମସିହାରେ ଜଜ୍ ପଦରୁ ଅବସର ନେଇ ସେ ତାଙ୍କର ତଗରପଡ଼ା ବାସଭବନରେ କାଳାତିପାତ କରୁଛନ୍ତି। ନିକଟରେ ତାଙ୍କର ଆତ୍ମଜୀବନୀ "ଅନେକ ଦିନର ଅନେକ କଥା" ପ୍ରକାଶ ପାଇଛି।

ରାଜକିଶୋର ଦାସଙ୍କଠାରୁ ବିମଳକୃଷ୍ଣ ପାଳ ବୟସରେ ତିନି ଚାରି ବର୍ଷ ସାନ। ବାଖରାବାଦର ଏକ ଓକିଲ ପରିବାର୍‌ରେ ବିମଳ ବାବୁଙ୍କର ଜନ୍ମ। ତାଙ୍କ ଅଜା ବୈକୁଣ୍ଠ ନାଥ ଦତ୍ତ ଥିଲେ ଜଣେ ପ୍ରଖ୍ୟାତ ଆଇନଜୀବି। ତେଣୁ ପିଲାଦିନୁ ବିମଳ କୃଷ୍ଣ ଓକିଲାତିକୁ ବେଉସା ରୂପେ ବାଛି ନେଇଥିଲେ, ଶାରୀରିକ ଅସୁସ୍ଥତା ତାଙ୍କର ଚିର ସହଚର। କିନ୍ତୁ ପ୍ରଗାଢ଼ ଅଧ୍ୟବସାୟ ବଳରେ ସେ ଏ ବୃତ୍ତିରେ ବହୁ ଉଚ୍ଚକୁ ଉଠି ପାରିଥିଲେ। ସେ କାଳରେ ବିଭିନ୍ନ ଆଇନ ଉପରେ ଏତେ ପ୍ରକାରର ଟୀକା, ଭାଷ୍ୟ କି ଡାଇଜେଷ୍ଟ ନଥିଲା। କିନ୍ତୁ ବିମଳ ବାବୁଙ୍କର ନୋଟ୍ ବହି ଥିଲା ତାଙ୍କର ସବୁଠାରୁ ଉପାଦେୟ ଡାଇଜେଷ୍ଟ୍। ଜମିଜମା ଆଇନ ଓ ପ୍ରଜାସ୍ୱତ୍ୱ ଆଇନ ଉପରେ ତାଙ୍କର ଗଭୀର

ଦଖଲ ଥିଲା । ଏଣୁ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରୀତ୍ୱ ସମୟରେ ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ ସଂକ୍ରାନ୍ତରେ ସରକାର ତାଙ୍କ ସହିତ ବହୁ ସମୟରେ ପରାମର୍ଶ କରୁଥିଲେ । ସେ ଥିଲେ ଏକାଧାରରେ ଆଇନଜ୍ଞ, ଐତିହାସିକ ଓ ବିଦ୍ୟାନୁରାଗୀ । ୧୯୮୩ ମସିହାରେ ବହୁଦିନ ରୋଗଗ୍ରସ୍ତ ରହିବା ପରେ ତାଙ୍କର ଅକାଳ ବିୟୋଗ ଘଟିଛି ।

ଉଚ୍ଚତାରେ କ୍ଷୁଦ୍ର, ଅଥଚ ଖ୍ୟାତିରେ ମହୀୟାନ, ଆଡ୍‌ଭୋକେଟ୍ ଦୀନବଂଧୁ ସାହୁ ସ୍ୱାଧୀନତାପରେ ରାଜନୀତିରେ ଯେଉଁ ଉଚ୍ଚ ପଦ ଲାଭ କରିଥିଲେ ତାହା ଏ ଯୁଗର ଖୁବ୍ କମ୍ ଆଇନଜୀବିଙ୍କ ଭାଗ୍ୟରେ ଘଟିଛି । ୧୯୧୦ ମସିହାରେ କେନ୍ଦ୍ରାପଡ଼ାରେ ଜନ୍ମ ଗ୍ରହଣ କରି ପାଟନାରୁ ଏମ.ଏ. ପାସ୍ କଲା ପରେ ୧୯୩୬ ମସିହାରେ ସେ କଟକରେ ବାର୍‌ରେ ଯୋଗଦାନ କରିଥିଲେ । ବୁଦ୍ଧିମାନ ଅଥଚ ମିଷ୍ଟଭାଷୀ ଓ ସୁବକ୍ତା ଭାବରେ ସେ ଅତି ଅଳ୍ପ ଦିନ ମଧ୍ୟରେ ଫୌଜଦାରୀ କୋର୍ଟ ବିଶେଷତଃ ସେସନ୍‌ସ କୋର୍ଟରେ ଜଣେ ସୁଯୋଗ୍ୟ ପ୍ରତିରକ୍ଷକ ଭାବରେ ଖ୍ୟାତି ଲାଭ କରିଥିଲେ । ରାଜୁବାବୁଙ୍କ ସହ ଦୀନବଂଧୁ ବାବୁ ସୁବିଖ୍ୟାତ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମୋକଦ୍ଦମାରେ ଡିଫେନ୍ସ ଓକିଲ ଥିଲେ । ଭାରତ ଛାଡ଼ ଆନ୍ଦୋଳନ ସମୟରେ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ ବିରୁଦ୍ଧରେ ଭାରତ ରକ୍ଷା ଆଇନରେ ଯେଉଁସବୁ ମୋକଦ୍ଦମା ହୋଇଥିଲା, ଦୀନବଂଧୁ ସାହୁ ବିନା ଫିସ୍‌ରେ ସେମାନଙ୍କ ତରଫରୁ ମୋକଦ୍ଦମା ଲଢୁଥିଲେ । ରଣପୁର ବେଜେଲଗେଟ୍ ହତ୍ୟା ମୋକଦ୍ଦମାରେ ଚିନ୍ତାମଣି ଆଚାର୍ଯ୍ୟ ଥିଲେ ସରକାରୀ ପ୍ରସେକ୍ୟୁଟର ଏବଂ ଦୀନବଂଧୁ ସାହୁ ଥିଲେ ମୁଦାଲାମାନଙ୍କର ପ୍ରତିରକ୍ଷକ । ୧୯୫୨ ମସିହାର ସାଧାରଣ ନିର୍ବାଚନରେ କେନ୍ଦ୍ରାପଡ଼ାରୁ କଂଗ୍ରେସ ଟିକଟ୍‌ରେ ନିର୍ବାଚିତ ହୋଇ ଜଣେ କ୍ୟାବିନେଟ୍ ମନ୍ତ୍ରୀ ହୋଇଥିଲେ । ନିର୍ବାଚନ ମୋକଦ୍ଦମାରେ ପରାସ୍ତ ହୋଇ ୫୪ ମସିହାରେ ପୁଣି ଓକିଲାତି ବୃତ୍ତିକୁ ଫେରି ଆସିଲେ ମଧ୍ୟ, ୧୯୫୭ ନିର୍ବାଚନରେ ସେ ପୁନର୍ବାର ସେହି କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ହରେକୃଷ୍ଣ ମହତାବଙ୍କ ମନ୍ତ୍ରୀ ପରିଷଦରେ ଜଣେ କ୍ୟାବିନେଟ୍ ମନ୍ତ୍ରୀ ହୋଇଥିଲେ । ୧୯୬୧ ମସିହାର ମଧ୍ୟବର୍ତ୍ତିକାଳୀନ ନିର୍ବାଚନରେ ବିଜୁ ପଟ୍ଟନାୟକ, ବୀରେନ ମିତ୍ର ଓ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ନୂତନ ମନ୍ତ୍ରୀ ପରିଷଦ ଗଠିତ ହେଲା । ବିଜୁ ପଟ୍ଟନାୟକ ମୁଖ୍ୟ ମନ୍ତ୍ରୀ ଓ ଦୀନବଂଧୁ ସାହୁ ହେଲେ ନୂତନ ସରକାରର ଆଡ୍‌ଭୋକେଟ୍ ଜେନେରାଲ । ୧୯୫୪ ମସିହାରେ ତାଙ୍କର ସହଯୋଗୀ ଭାବରେ ତାଙ୍କ ସିରସ୍ତାରେ ମୁଁ ଯୋଗ ଦେଇଥିଲି । ମୋ ପୂର୍ବରୁ ଅଶୋକ ଦାସ ତାଙ୍କର ସହଯୋଗୀ ଥିଲେ ।

ବିଧିର ବିଧାନ ଏପରି ବିଚିତ୍ର ଯେ ୧୯୬୧ ମସିହାରେ ଦୀନବନ୍ଧୁ ସାହୁ ଆଡ୍‌ଭୋକେଟ୍ ଜେନେରାଲ, ତା' ପରେ ୧୯୬୭ ମସିହାରେ ଅଶୋକ ଦାସ ଓ ୧୯୭୨ ମସିହାରେ ମୁଁ ନିଜେ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ ହୋଇଥିଲି ।

ଦୀନବନ୍ଧୁ ବାବୁ ଥିଲେ ଅତି ସରସ ପ୍ରକୃତିର ଲୋକ । ଆକ୍ଷେପ ନ କରି ରସିକତା କରିବା ତାଙ୍କ ସଦାଦିନିଆ ଅଭ୍ୟାସ । ମୋକଦ୍ଦମା ଚଳାଇବା ବେଳେ ପ୍ରତିପକ୍ଷକୁ ଆଘାତ ବା ଅପମାନିତ କରିବା, ଏପରିକି ବ୍ୟକ୍ତିଗତ ସ୍ତରରେ କାହାକୁ ଦୁଃଖ ଦେବା ତାଙ୍କର ସ୍ୱଭାବ ବିରୋଧୀ । ସେ ମୁଖ୍ୟତଃ ଡିଫେନ୍ସ ଆଡ୍‌ଭୋକେଟେ ଥିଲେ । ମୁଁ ତାଙ୍କ ସିରସ୍ତାରେ ଯୋଗଦେବା ପରେ ବହୁ ସେସନ୍ସ କେସ୍‌ରେ ଆମେ ପ୍ରାୟ ମୁଦାଲା ପକ୍ଷରୁ ଓ କଟକର ସରକାରୀ ଓକିଲ ଶ୍ରୀକାନ୍ତ ମହାନ୍ତି ବା ସରକାରଙ୍କ ପକ୍ଷରୁ ସ୍ୱତନ୍ତ୍ର ଭାବରେ ନିଯୁକ୍ତ ହୋଇ ଚିନ୍ତାମଣି ଆଚାର୍ଯ୍ୟ ମୁଦେଇ ପକ୍ଷରୁ ମୋକଦ୍ଦମା ଚଳାନ୍ତି । ସବୁ କେସ୍‌ରେ ମୁଦେଇ ଓ ମୁଦାଲା ପକ୍ଷ ମଧ୍ୟରେ ତୀବ୍ର ଲଢ଼େଇ ହୋଇଛି । ମୁଁ ଜାଣିବାରେ କେବଳ ଗୋଟିଏ ଥର ଚିନ୍ତାମଣି ବାବୁଙ୍କ ସହ ତାଙ୍କର ସାମାନ୍ୟ ବଚସା ହୋଇଥିଲା । ନଚେତ୍ ଅଦାଲତର ବାତାବରଣ କେବେ ତିକ୍ତ ବା ବିକ୍ଷୁବ୍ଧ ହୋଇ ନାହିଁ । ଆଉ ଥରେ ବିଚାରପତି ଗୋପାଳ ଦାସଙ୍କ କୋର୍ଟରେ ରେପ୍ କେସ୍‌ରେ ଅଭିଯୁକ୍ତ ଜଣେ ମୁଦାଲା ପକ୍ଷରୁ ସେ ଗୋଟିଏ କ୍ରିମିନାଲ ଅପିଲ୍‌ରେ ଯୁଥାଳ ଜବାବ କରୁଥିଲେ । କୌଣସି କାରଣରୁ ଗୋପାଳ ବାବୁ ତାଙ୍କ ପ୍ରତି ରୂକ୍ଷ ଭାଷା ପ୍ରୟୋଗ କଲେ । ଦୀନବନ୍ଧୁ ବାବୁ ଗମ୍ଭୀର ହୋଇ ଉତ୍ତର ଦେଲେ "ବିଚାରପତିଙ୍କର ଲାଲ ଚକ୍ଷୁ ଦେଖିବାରେ ମୁଁ ଅଭ୍ୟସ୍ତ ନୁହେଁ ।" ଏତିକିରେ ବିବାଦର ପରିସମାପ୍ତି ଘଟିଲା ।

ରସରସିଆ ବକ୍ରୋକ୍ତି ପାଇଁ ସେ ସୁପ୍ରସିଦ୍ଧ । ତାଙ୍କଠାରୁ ଶୁଣିଥିବା ଗୋଟିଏ ମଜା ଗପ ଏଠାରେ ଉଲ୍ଲେଖ କରୁଛି । ସେ ଓକିଲାତି କରିବାର ଆରମ୍ଭ ଅବସ୍ଥାରେ ଥରେ ଉତିକଣ ଇଷ୍ଟେଟର ମ୍ୟାନେଜର ଓ ତାଙ୍କର ପୂର୍ବ ପରିଚିତ ବଂଗାଳୀ ଭଦ୍ରଲୋକଙ୍କ ସହ କେନ୍ଦ୍ରପଡ଼ାରେ ଦେଖା ହେଲା । ମ୍ୟାନେଜର ବଂଗଳାରେ ପଚାରିଲେ "ଦୀନବନ୍ଧୁ ! ଆମ ଇଷ୍ଟେଟର ଗୋଟିଏ କ୍ରିମିନାଲ କେସ୍ କଟକରେ ଅଛି । ଜଣେ ଭଲ କ୍ରିମିନାଲ ଲୟରଙ୍କ ନାମ କହି ପାରିବ ?" ଦୀନବନ୍ଧୁ ବାବୁ ଉତ୍ତର ଦେଲେ "ଦୀନବନ୍ଧୁ ନାମର ଜଣେ ଯୁବକ ଓକିଲ କ୍ରିମିନାଲ କୋର୍ଟରେ ବେଶ ସୁନାମ କରିଛନ୍ତି- ଅନ୍ୟ କାହାକୁ ମୁଁ ଜାଣେ ନା ।" ବେଶ ହସଖୁସି ଓ ରସିକତା ମଧ୍ୟରେ ଓକିଲ ନିଯୁକ୍ତି ଶେଷ ହେଲା ।

ସାକ୍ଷୀମାନଙ୍କୁ ଜେରା କରିବାର୍ ଶୈଳୀ ତାଙ୍କର ସଂପୂର୍ଣ୍ଣ ନିଜସ୍ୱ । ଅନ୍ୟ ଓକିଲଙ୍କ ପରି ସେ ସାକ୍ଷୀମାନଙ୍କୁ ଅଯଥା ବିରକ୍ତ ବା ଅପମାନିତ କରନ୍ତି ନାହିଁ, ବରଂଚ କଥଁଳ କଥା କହି ସାକ୍ଷୀଠାରୁ ଅନୁକୂଳ ଉପଯୋଗୀ ଉତ୍ତର ଆଦାୟ କରିବାକୁ ଚେଷ୍ଟା କରନ୍ତି । ସାକ୍ଷୀକୁ ଏପରି ପ୍ରଶ୍ନ ପଚାରନ୍ତି ନାହିଁ, ଯାହାର ଉତ୍ତର ନିଜ ବିରୁଦ୍ଧରେ ଯାଇପାରେ । ବହୁଦିନରୁ ମୁଁ ତଳ କୋର୍ଟକୁ ଯିବା ବନ୍ଦ କରି ଦେଇଛି । କେବଳ ହାଇକୋର୍ଟ ଓ ସୁପ୍ରିମ କୋର୍ଟରେ ମୋର କାର୍ଯ୍ୟାବଳୀ ଆବଦ୍ଧ । ତଥାପି ହାଇକୋର୍ଟରେ ମଧ୍ୟ ନିର୍ବାଚନ ମୋକଦ୍ଦମାରେ ସାକ୍ଷୀଙ୍କୁ ଜେରା କରିବାର୍ ବେଳେ ବେଳେ ଅବକାଶ ମିଳେ । ମୁଁ ନିର୍ଭର ଭାବରେ କହିପାରେ ଯେ ଯଦି ଜେରା କରିବାର୍ ଶୈଳୀରେ ମୁଁ କୌଣସି ନିପୁଣତା ହାସଲ କରିଛି, ତାହା କେବଳ ଦୀନବଂଧୁ ସାହୁଙ୍କ ଆଶୀର୍ବାଦରୁ ।

୧୯୭୦ ମସିହା ଆଡ଼କୁ ସେ ବିଶେଷ ଭାବରେ ରକ୍ତଚାପ ରୋଗରେ ପୀଡ଼ିତ ହେଲେ । ରକ୍ତଚାପ ବେଳେ ବେଳେ ଏତେ ମାତ୍ରାରେ ବୃଦ୍ଧି ପାଇଲା ଯେ, ସେ କ୍ରମେ କଚେରୀ ଆସିବା ବନ୍ଦ କରିଦେଲେ । ୧୯୮୦ ଅକ୍ଟୋବର ମାସରେ ସେ ବାଂଗାଲୋରଠାରେ ନିଜ ଝିଅ କ୍ୱାର୍ଣ୍ଣଙ୍କ ଘରେ ଅଗଣିତ ବଂଧୁବାନ୍ଧବ, ସହଯାତ୍ରୀ ଓ ସହଯୋଗୀଙ୍କୁ ଶୋକ ସାଗରରେ ଭସାଇ ଦେଇ ଶେଷ ବିଦାୟ ନେଇଛନ୍ତି ।



# ପ୍ରଥମ ପ୍ରୟାସ

ବମ୍ବେ ହାଇକୋର୍ଟର ପ୍ରଥମ ଭାରତୀୟ ପ୍ରଧାନ ବିଚାରପତି ଓ ଭାରତର ଜଣେ ବିଶିଷ୍ଟ ଆଇନଜ୍ଞ ସ୍ୱର୍ଗୀୟ ଏମ୍. ସି. ଚଗ୍‌ଲା ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ ଅକ୍ସଫୋର୍ଡ଼ରୁ ଫେରି ବମ୍ବେ ବାର୍‌ରେ ଯୋଗ ଦେବାର ପ୍ରାୟ ଆ।୦ ବର୍ଷ ପର୍ଯ୍ୟନ୍ତ ସେ କୌଣସି ମୋକଦ୍ଦମା ଚଳାଇବାର ସୁଯୋଗ ପାଇ ନଥିଲେ । ତାଙ୍କର ସିନିଅର ମହମ୍ମଦ୍ ଅଲ୍ଲୀ ଜିନ୍ନା ସେ କାଳର ଜଣେ ଅତି ଖ୍ୟାତନାମା ଆଡ୍‌ଭୋକେଟ୍ । ଜିନ୍ନା ସେ ସମୟରେ ମୁସ୍‌ଲିମ୍ ଲିଗ୍ ସହିତ ସଂପୃକ୍ତ ନଥିଲେ ବା ମୁସଲିମ୍ ସାଂପ୍ରଦାୟିକତାର ବାର୍ତ୍ତାବହ ନଥିଲେ । ଜିନ୍ନାଙ୍କ ଅଫିସ୍‌ରେ ଚଗଲାଙ୍କୁ କାମ ଶିଖିବାର ସବୁ ସୁଯୋଗ ମିଳୁଥିଲେ ମଧ୍ୟ, କୌଣସି ମୋକଦ୍ଦମାରେ ନିଯୁକ୍ତି ପାଇଁ ସୁଯୋଗ ମିଳୁ ନଥିଲା । ଜିନ୍ନାଙ୍କ ମତରେ ଆଇନ ବୃତ୍ତିରେ ପ୍ରବେଶ କରୁଥିବା ପ୍ରତ୍ୟେକ ନବାଗତଙ୍କୁ ତାଙ୍କ ନିଜ ଗୋଡ଼ରେ ଠିଆ ହେବାକୁ ହେବ । ଅର୍ଥାଭାବରୁ ଚଗଲା ଅନେକ ଥର ସାମାନ୍ୟ ତିନଶହ ଚାରିଶହ ଟଂକା ଦରମାରେ ଚାକିରୀ ଅନ୍ୱେଷଣ କରି ସଫଳ ହୋଇ ନଥିଲେ, ଯଦିଓ ପର ଜୀବନରେ ଏହି ବିଫଳତା ପାଇଁ ନିଜକୁ ଭାଗ୍ୟବାନ ମନେ କରିଛନ୍ତି । ଭାରତର ପୂର୍ବତନ ଆଟର୍ଣ୍ଣି ଜେନେରାଲ ମୋତିଲାଲ ଶୀତଳବାଦଙ୍କର ମଧ୍ୟ ସେହି ପ୍ରକାରର ଅଭିଜ୍ଞତା । ଶୀତଳବାଦଙ୍କ ପିତା ସାର ଚିମନଲାଲ୍ ଶୀତଳବାଦ ବମ୍ବେର ଜଣେ ପ୍ରଖ୍ୟାତ ଆଇନଜୀବି, ଏଣୁ ଜୁନିୟର ଶୀତଳବାଦଙ୍କର ଅର୍ଥାଭାବ ସମସ୍ୟା ନଥିଲା । କିନ୍ତୁ ସଲିସିଟରମାନଙ୍କଠାରୁ ମୋକଦ୍ଦମାରେ ନିଯୁକ୍ତି ପାଇବା ବିଷୟରେ ସେଇ ଏକ ପ୍ରକାରର ଅନୁଭୂତି ।

ଓଡ଼ିଶାରେ ସଲିସିଟର ପ୍ରଥା ନଥିଲା ବା ନାହିଁ । ମହକିଲ ତାଙ୍କ ଇଚ୍ଛାନୁଯାୟୀ ସିନିୟର ବା ଜୁନିୟର ଯେ କୌଣସି ଓକିଲଙ୍କୁ ତାଙ୍କ କେସ୍‌ରେ ନିଯୁକ୍ତ କରି ପାରନ୍ତି । କିନ୍ତୁ ମହକିଲଙ୍କର ଅସ୍ଥାବାନ୍ ହେବା ପ୍ରାରମ୍ଭ ଅବସ୍ଥାରେ ସବୁ ନବାଗତଙ୍କ ପକ୍ଷରେ ସଂଭବ ନୁହେଁ । ମୁଁ ମଧ୍ୟ ଏହି ସାଧାରଣ ନିୟମରୁ ବହିର୍ଭୂତ ନଥିଲି । ପରନ୍ତୁ ଟାଉଟ୍ ବା ଯେଉଁମାନେ ଓକିଲ ଓ ମହକିଲଙ୍କ ଭିତରେ ମଧ୍ୟସ୍ଥି ବା ଦଲାଲି କରି ଅର୍ଥ ଉପାର୍ଜନ କରନ୍ତି, ଏହି ଶ୍ରେଣୀର ଲୋକଙ୍କୁ ମୁଁ ଆନ୍ତରିକ ଘୃଣା କରୁଥିଲି । ଏଣୁ ହଠାତ୍ ମତେ କେସ୍ ମିଳିବ କେଉଁଠୁ ? ଅବଶ୍ୟ ସମାଜର ବିଭିନ୍ନ ସ୍ତରର ଲୋକଙ୍କ ମଧ୍ୟରେ ମୋର

ସୁପରିଚୟ ଥିଲା । ସାଧାରଣ କ୍ଷେତ୍ରରେ ମୋର କାର୍ଯ୍ୟ ଓ ବିଭିନ୍ନ ଜନ ଆନ୍ଦୋଳନ ସହିତ ନିଗୂଢ଼ ସଂପର୍କ ମୋ ଭିତରେ ପ୍ରଗାଢ଼ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲା ଏବଂ ମୁଁ ମନେ କରୁଥିଲି, ଅଦାଲତରେ ବିଚାରପତିଙ୍କ ସାମନାରେ ମୋର ଯତ୍‌ସାମାନ୍ୟ ଦକ୍ଷତା ପ୍ରତିପାଦିତ କରିବା ପାଇଁ ମୋର ସାହସର ଅଭାବ ହେବ ନାହିଁ । କିନ୍ତୁ ଅସଲ ସମସ୍ୟା ଥିଲା, ନିଜର ଦକ୍ଷତା ପ୍ରମାଣ କରିବା ପାଇଁ ସୁଯୋଗ କାହିଁ ?

ଇଂରେଜୀରେ ଗୋଟିଏ ପ୍ରବାଦ ଅଛି "ଅପର୍ଚ୍ୟୁନିଟି କମ୍‌ସ ଓ୍ୱାନ୍ସ ଇନ୍ ଏ ବ୍ଲୁ ମୁନ" । ଅର୍ଥାତ 'ସୁଯୋଗ' ଜୀବନରେ କ୍ୱଚିତ୍ ଆସେ ଏବଂ ସୁଯୋଗର ସଦ୍‌ବ୍ୟବହାର କରି ନ ପାରିଲେ, ତା ଆଉ ଥରେ ଫେରି ଆସେ ନାହିଁ । ମୁଁ ଆଡ୍‌ଭୋକେଟ୍ ଶ୍ରେଣୀଭୁକ୍ତ ହେବାର ମାତ୍ର ମାସକ ପରେ ଏକ ଅପ୍ରତ୍ୟାଶିତ ଓ ଅବାଂଛିତ ପରିସ୍ଥିତିରେ ଏପରି ଏକ ସୁଯୋଗ ଆସିଲା । କଟକର ସହରତଳୀ ଅଂଚଳର ଜଣେ ହାଇସ୍କୁଲ ଶିକ୍ଷକଙ୍କ ବିରୁଦ୍ଧରେ ଜଣେ ଛାତ୍ରୀଙ୍କୁ ଅପହରଣ ଓ ଧର୍ଷଣ କରିବାର ଅଭିଯୋଗ ହୋଇଥିଲା । ଛାତ୍ରୀର ପିତାଙ୍କ ଅଭିଯୋଗ କ୍ରମେ ପୋଲିସ ଶିକ୍ଷକଙ୍କୁ ଗିରଫ କରି ଦଣ୍ଡବିଧି ଆଇନର ୩୭୬ ଦଫାରେ ମକୋଦ୍ଦମା ଦାଏର କରିଥିଲେ । ଏ ଘଟଣା ସେ ସମୟରେ ବେଶ ଚାଂଚଲ୍ୟ ସୃଷ୍ଟି କରିଥିଲା ଓ ସମ୍ବାଦପତ୍ରମାନେ ମଧ୍ୟ କେସ୍‌ଟିକୁ ଖୁବ୍ ଗୁରୁତ୍ୱ ଦେଉଥିଲେ । ମାଜିଷ୍ଟ୍ରେଟ କୋର୍ଟରେ ପ୍ରାଥମିକ ବିଚାର ପରେ କେସ୍‌ଟି ଦୌରା ବିଚାର ପାଇଁ ସେସନ୍ସ କୋର୍ଟକୁ ପଠାଯାଇଥାଏ । ସେସନ୍ସ କୋର୍ଟରେ ମୋକଦ୍ଦମା ବିଚାରାଧୀନ ଥିବା ଅବସ୍ଥାରେ ମୁଦାଲା ଶିକ୍ଷକଙ୍କ ତରଫରୁ ଦୀନବଂଧୁ ସାହୁ ଆଡ୍‌ଭୋକେଟ୍ ନିଯୁକ୍ତ ହେଲେ ଓ ମୁଁ ତାଙ୍କର ସହଯୋଗୀ ।

ଦିନେ ରବିବାର ସକାଳେ ଦୀନବଂଧୁ ବାବୁ ଓ ମୁଁ ଏ ମୋକଦ୍ଦମାର ସଂଭାବ୍ୟ ପରିଣତି ବିଷୟରେ ଗଭୀର ଆଲୋଚନା କଲୁ । ମୁଦାଲା ନିଜେ ଜଣେ ଗ୍ରାଜୁଏଟ୍ ଓ ତାଙ୍କ ବାପା ଓ ଦାଦା ଗାଁର ମୁଖିଆ ଲୋକ । ସେମାନେ ସିନିଅର ଓକିଲଙ୍କର ମତାମତ ଜାଣିବାକୁ ଚାହୁଁଥିଲେ । ସାକ୍ଷୀମାନଙ୍କର ପୋଲିସ ନିକଟରେ ଜମାନବଂଦୀ, ଝିଅର ବୟସ ସଂପର୍କୀୟ କାଗଜ ପତ୍ର ଓ ଝିଅର ଡାକ୍ତରୀ ପରୀକ୍ଷା ରିପୋର୍ଟ ପଢ଼ିବା ପରେ ଦୀନବଂଧୁ ବାବୁ ମତ ଦେଲେ ଯେ ଆସାମୀ ବିରୁଦ୍ଧରେ ଯଥେଷ୍ଟ ପ୍ରମାଣ ରହିଛି ଏବଂ କେବଳ ଧର୍ଷିତା ଝିଅର ସାକ୍ଷ୍ୟ ଉପରେ କୋର୍ଟ ଓ ଜୁରୀ ମୁଦାଲାଙ୍କୁ ଦୋଷୀ ସାବ୍ୟସ୍ତ କରି

ପାରନ୍ତି । ଏଣୁ କୋର୍ଟ ବାହାରେ ଆପୋଷ ସମାଧାନ କରିବା ପାଇଁ ଉଦ୍ୟମ ହେବା ଉଚିତ । ତାଙ୍କର ମତାମତ ଦୃଷ୍ଟିରୁ ମୋକଦ୍ଦମା ବିଚାର ପାଇଁ କିଛି ସମୟ ନିଆହେଲା ଏବଂ ମୁଦାଲା ଶିକ୍ଷକ ଓ ଅଭିଯୋଗକାରିଣୀ ଛାତ୍ରୀଙ୍କ ମଧ୍ୟରେ ଯେପରି ବିବାହ ହୋଇଯିବ, ସେ ଦିଗରେ ମୁଦାଲାଙ୍କ ପରିବାର ପକ୍ଷରୁ ମଧ୍ୟସ୍ଥିଙ୍କ ଜରିଆରେ ସବିଶେଷ ଉଦ୍ୟମ ହେଲା । ସମାଧାନ ହୋଇଯାଇଥିଲେ ମୋକଦ୍ଦମା ସହଜରେ ଖାରଜ ହୋଇଯାଇଥାନ୍ତା ଓ ତା' ଦ୍ୱାରା ଉଭୟ ପକ୍ଷର ମଂଗଳ ହୋଇଥାନ୍ତା । କିନ୍ତୁ ଝିଅ ପକ୍ଷ ଅଡ଼ି ବସିଲେ । ସମାଧାନ ଉଦ୍ୟମ ବିଫଳ ହେଲା ।

ସେ ସମୟର ପ୍ରଚଳିତ ଆଇନ ଅନୁଯାୟୀ ଏହି କିସମର ମୋକଦ୍ଦମା ଜୁରୀଙ୍କ ସାହଯ୍ୟରେ ବିଚାର କରାଯାଏ । ଯେଉଁ ମୋକଦ୍ଦମାଗୁଡ଼ିକ ସେସନ୍ସ ଜଜ୍ ଆସେସରମାନଙ୍କ ସାହାଯ୍ୟରେ ବିଚାର କରନ୍ତି, ସେଥିରେ ଆସେସରମାନଙ୍କ ସହ ପରାମର୍ଶ କରି ସେସନ୍ସ ଜଜ୍ ନିଜ ମତ ଅନୁଯାଯୀ ରାୟ ଦିଅନ୍ତି । କିନ୍ତୁ ଜୁରୀ ବିଚାରରେ, ପ୍ରମାଣର ଗ୍ରହଣୀୟତା ଓ ଘଟଣାର ସତ୍ୟତା ସଂପର୍କରେ ଜୁରୀଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ଓ ଜଜ୍ ତାହା ଗ୍ରହଣ କରିବାକୁ ବାଧ୍ୟ । କେବଳ କେତେକ ସୀମିତ କ୍ଷେତ୍ରରେ ଜଜ୍ ଆଇନଗତ କାରଣରୁ ଜୁରୀଙ୍କ ସହିତ ଭିନ୍ନ ମତ ପୋଷଣ କରି ପାରନ୍ତି । ଉଭୟ ଆସେସର ଓ ଜୁରରମାନଙ୍କୁ ବିଚାରରେ ସାହାଯ୍ୟ କରିବା ପାଇଁ ସ୍ଥାନୀୟ ଭଦ୍ରଲୋକଙ୍କୁ ମନୋନୀତ କରାଯାଏ । ୧୯୫୬ ମସିହାରୁ ଏ ପ୍ରକାରର ବିଚାର ପଦ୍ଧତିର ବିଲୋପ ଘଟିଛି । ଏହି ରେପ୍ କେସ୍‌ଟି ଥିଲା ଓଡ଼ିଶାର ଶେଷ ଜୁରୀ ବିଚାର ।

ଉପରୋକ୍ତ ମୋକଦ୍ଦମାର ବିଚାରକ ଥିଲେ ଅତିରିକ୍ତ ସେସନ୍ସ ଜଜ୍ (ପରେ ହାଇକୋର୍ଟ ବିଚାରପତି) ଅଭିମନ୍ୟୁ ମିଶ୍ର ଓ ପାଂଚ ଜଣ ଜୁରରଙ୍କ ମଧ୍ୟରୁ ଦୁଇ ଜଣ ଥିଲେ ଅଧ୍ୟାପକ, ଜଣେ କଲେଜିଏଟ୍ ସ୍କୁଲର ଶିକ୍ଷକ, ଜଣେ ଲେଖକ ଓ ଜଣେ ଟ୍ରାନ୍ସପୋର୍ଟ ବ୍ୟବସାୟୀ । କଟକର ସରକାରୀ ଓକିଲ ଥିଲେ ଶ୍ରୀକାନ୍ତ ମହାନ୍ତି । ଜଣେ ନିଷ୍ଠାପର ଓ ଦକ୍ଷ ପ୍ରସେକ୍ୟୁଟର ଭାବରେ ତାଙ୍କର ସୁଖ୍ୟାତି ଥିଲା । ସରାକାରଙ୍କ ପକ୍ଷରୁ ସେ ନିଜେ ଏହି ମୋକଦ୍ଦମା ଚଳାଉଥିଲେ । ପ୍ରଥମ ଦିନ କେସ୍ ସଂପର୍କରେ ଉଭୟ ପକ୍ଷର ପ୍ରାଥମିକ ଅବତାରଣା ପରେ, ଗୋଟିଏ ସାକ୍ଷୀର ଜମାନବନ୍ଦୀ ଗ୍ରହଣ କରାଗଲା । ଦୀନବନ୍ଧୁ ସାହୁ ତାକୁ ଜେରା କରିବା ପରେ ପରଦିନକୁ ବିଚାର ମୁଲତବୀ

ରହିଲା । ସେଦିନ ରାତିରେ ପ୍ରାୟ ରାତି ବାରଟା ପର୍ଯ୍ୟନ୍ତ ବସି ଆମେ କେସ୍ ପାଇଁ ପ୍ରସ୍ତୁତ ହେଲୁ । ପରଦିନ ଦଶଟା ବେଳକୁ ଖବର ଆସିଲା, ଦୀନବଂଧୁ ବାବୁ ଅସୁସ୍ଥ ବୋଧ କରୁଛନ୍ତି ଏବଂ କୋର୍ଟକୁ ଆସିବାକୁ ଅକ୍ଷମ, କୌଣସିମତେ ସେ ଦିନଟା କେସ୍ ଚଳାଇ ନେବାକୁ ହେବ । ହଠାତ୍ ଏପରି ଗୁରୁ ଦାୟିତ୍ୱ ମୋ ଉପରେ ପଡ଼ିବ ବୋଲି କଳ୍ପନାରେ ମଧ୍ୟ ନଥିଲା । କିନ୍ତୁ ଅନ୍ୟ କିଛି ବିକଳ୍ପ ବ୍ୟବସ୍ଥା ପାଇଁ ସମୟ ମଧ୍ୟ ନଥିଲା । ଦୀନବଂଧୁ ବାବୁ ଅସୁସ୍ଥ ଓ ମୁଁ ପ୍ରତିବାଦୀ ପକ୍ଷରୁ କେସ୍ ଚଳାଇବି, ଏ କଥା ଶୁଣି ମୁଦେଇ ପକ୍ଷଙ୍କ ମଧ୍ୟରେ ଯେଉଁ ଚାପା ହସ ସୃଷ୍ଟି ହେଲା, ତା ଏବେ ବି ମନେ ଅଛି । ସେ ଦିନ ଦୁଇଜଣ ସାକ୍ଷୀଙ୍କର ଜମାନବନ୍ଦୀ ଶେଷ ହେଲା ଓ ମୁଁ ମୋ ସ୍ୱଳ୍ପ ବୁଦ୍ଧିରେ ଯଥା ସଂଭବ ସେମାନଙ୍କୁ ଜେରା କଲି । ଚାରିଟା ପରେ କୋର୍ଟ ବାହାରକୁ ଆସିଲା ପରେ କେତେକ ଓକିଲ ବନ୍ଧୁ ମତ ଦେଲେ ଯେ ମୁଁ ଠିକ୍ ଭାବରେ ଜେରା କରି ପାରୁଛି, ବିଚଳିତ ହେବାର କାରଣ ନାହିଁ ।

ସଂଧ୍ୟାବେଳେ ଦୀନବଂଧୁ ସାହୁଙ୍କ ଅଫିସ୍‌କୁ ମୁଁ ଅତି ସଂତର୍ପଣରେ ଗଲି । ପୁରୁଣା ଓ ଅଭିଜ୍ଞ ମୋହରୀର ଭାଗୁ ଓ ଶଙ୍କର କହିଲେ ଯେ କେସ୍ ଠିକ୍ ଚାଲିଛି । ସେଠି ଶୁଣିଲି, ଦୀନବଂଧୁ ବାବୁ ରକ୍ତଚାପ ରୋଗରେ ପୀଡ଼ିତ ଓ ପୂର୍ଣ୍ଣ ବିଶ୍ରାମ ପାଇଁ ଡାକ୍ତର ପରାମର୍ଶ ଦେଇଛନ୍ତି । କିଛି ସମୟ ପରେ ଉପରୁ ମତେ ଡାକରା ଆସିଲା । ଦୀନବଂଧୁ ବାବୁ ପରାମର୍ଶ ଦେଲେ, ଏ ଏକ ସଂଗୀନ୍ ମୋକଦ୍ଦମା, ହୁଏତ ମୁଦାଲା ଦୋଷୀ ସାବ୍ୟସ୍ତ ହୋଇପାରେ । ମୁଁ ଏଇମାତ୍ର ବୃତ୍ତି ଆରମ୍ଭ କରୁଚି, ହଠାତ୍ ଏପରି ଗୁରୁ ଦାୟିତ୍ୱ ନେବା ଉଚିତ ନୁହେଁ । ଅନ୍ୟ ଓକିଲ ନିଯୁକ୍ତ କରିବା ପାଇଁ ମହକିଲଙ୍କୁ କହିବା ଠିକ୍ ହେବ । ମୁଁ ମନମାରି ତଳକୁ ଫେରି ଆସିଲି ଓ ମହକିଲଙ୍କୁ କହିଲି ଯେ ମୁଁ ଦୀନବଂଧୁ ବାବୁଙ୍କ ସହ କେସ୍ ବିଷୟରେ ପରାମର୍ଶ କରି ଆସିଛି । ସେମାନେ ଉପର ମହଲାକୁ ଯାଇ ତାଙ୍କର ଫିସ୍ ଦେଇ ଆସନ୍ତୁ । ଉପରେ କ'ଣ କଥାବାର୍ତ୍ତା ହେଲା କେଜାଣି, ମହକିଲ ଫେରି ଆସି କହିଲେ ଦୀନବଂଧୁ ବାବୁ ସୁସ୍ଥ ହେବା ପର୍ଯ୍ୟନ୍ତ ମୁଁ ପୂର୍ବବତ୍ କେସ୍ ଚଳାଇବି । ପରେ ଶୁଣିଲି, ମୋର କାର୍ଯ୍ୟ ନିର୍ବାହ ବିଷୟରେ ମହକିଲ ସନ୍ତୋଷ ପ୍ରକାଶ କରିବାରୁ ଏପରି ନିଷ୍ପତ୍ତି ନିଆହେଲା । ସାକ୍ଷୀ ଜମାନବନ୍ଦୀ ପ୍ରାୟ ଆଠଦିନ ଚାଲିଲା । ପ୍ରତିଦିନ

ସଂଧ୍ୟାରେ ମୁଁ ମହକିଲଙ୍କୁ ସାଂଗରେ ନେଇ ଦୀନବଂଧୁ ବାବୁଙ୍କର ଚୁକ୍ତି ମୁତାବକ ପ୍ରାପ୍ୟ ଦେଇ ଆସେ ଓ ପରଦିନ ଯେପରି ନିର୍ଦ୍ୱନ୍ଦରେ କେସ୍ ଚଳାଇ ପାରିବି ସେ ବିଷୟରେ ଆଶ୍ୱସ୍ତ ହୁଏ । ଅବଶ୍ୟ ମୋ ଫିସ୍ ବିଷୟରେ କେହି ମୁଣ୍ଡ ଖେଳାନ୍ତି ନାହିଁ । ମୁଁ ମଧ୍ୟ ନିଜ ଫିସ୍ ବିଷୟରେ ଗୋଟିଏ ଶବ୍ଦ ଉଚ୍ଚାରଣ କରି ନାହିଁ । କାରଣ ମୋର ଏକମାତ୍ର ଧେୟ ଥିଲା ସେସନ୍ସ କେସ୍‌ଟି ଚଳାଇବାର ସୁଯୋଗ ।

ଏହି କେସ୍‌ରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସାକ୍ଷୀ ଥିଲେ ଅଭିଯୋଗକାରିଣୀ ଛାତ୍ରୀ ଓ ତାଙ୍କୁ ପରୀକ୍ଷା କରିଥିବା ଲେଡି ଡାକ୍ତର ଏବଂ ଛାତ୍ରୀର ବୟସ ସଂପର୍କରେ ମତ ଦେଇଥିବା ଡାକ୍ତର । ରେଡ଼ିଓଲଜି ବିଭାଗର ସହକାରୀ ଅଧ୍ୟାପକ ଡାକ୍ତର ଗୋଲକ ବିହାରୀ ମହାନ୍ତି ମତ ଦେଇଥିଲେ ଯେ ଝିଅର ବୟସ ଷୋହଳ ବର୍ଷରୁ ଉଣା । ଦଣ୍ଡବିଧି ଆଇନରେ ବ୍ୟବସ୍ଥା ଅଛି ଯେ, ଝିଅର ବୟସ ଯଦି ଷୋହଳ ବର୍ଷରୁ କମ୍, ତେବେ ତାହା ସହିତ ସହବାସ ଦଣ୍ଡନୀୟ ଅପରାଧ । ମୁଁ ଶୁଣିଥିଲି ଯେ ଡାକ୍ତର ମହାନ୍ତିଙ୍କର ତାଙ୍କର ଉପରିସ୍ଥ ଅଧ୍ୟାପକ ଡାକ୍ତର ବୋଷଙ୍କ ସହ ମନ ଅମେଳ । ମୋ ନିଜର ଡାକ୍ତର ବୋଷଙ୍କ ସହିତ ପୂର୍ବରୁ ପରିଚୟ ଥାଏ । ଝିଅର ବୟସ ସଂପର୍କରେ ଡାକ୍ତର ମହାନ୍ତି ଯେଉଁ ମତ ଦେଇଛନ୍ତି, ତାକୁ ଜେରାରେ କିପରି ଖଣ୍ଡନ କରାଯାଇ ପାରିବ, ସେଥିପାଇଁ ଡାକ୍ତର ବୋଷଙ୍କ ସହିତ ପରାମର୍ଶ କଲି ଏବଂ ଝିଅର ଅଂଗ ପ୍ରତ୍ୟଙ୍ଗ ଗଠନ, ହାଡ଼ର ବୃଦ୍ଧି ଓ ପରିମାପ ଦୃଷ୍ଟିରୁ ତାର ବୟସ ଷୋହଳରୁ ଅଧିକ ହୋଇପାରେ, ତାର ବହୁ ସୂତ୍ର ସଂଗ୍ରହ କଲି । ଏହି ଯୁକ୍ତି ସପକ୍ଷରେ ଡାକ୍ତର ମୋଦିଙ୍କ ସୁପ୍ରସିଦ୍ଧ ମେଡିକାଲ ଜୁରିସ୍‌ପ୍ରୁଡେନ୍ସ' ବହିରୁ କେତେକ ତଥ୍ୟ ମଧ୍ୟ ସଂଗ୍ରହ କଲି । ଜେରାରେ ଉପରୋକ୍ତ ତଥ୍ୟ ସବୁ ଡାକ୍ତର ମହାନ୍ତିଙ୍କ ଆଗରେ ଉପସ୍ଥାପିତ କରିବାରେ ସେ ବାଧ୍ୟ ହୋଇ ସ୍ୱୀକାର କଲେ ଯେ ଝିଅର ବୟସ ଷୋହଳରୁ ଅଧିକ ହୋଇପାରେ । ମୁଦାଲାଙ୍କର ଭାଗ୍ୟ ଭଲ, ଜନ୍ମ ତାରିଖ ସମ୍ବଳିତ ସ୍କୁଲ ସାର୍ଟିଫିକେଟ୍‌ଟିକୁ ସହଜରେ ଅପ୍ରମାଣ କରିଦିଆଯାଇ ପାରିଲା । ବାପାଙ୍କ ପରିବର୍ତ୍ତେ ଯେଉଁ ଅଭିଭାବକ ଛାତ୍ରୀର ନାମ ଲେଖାଇବା ପାଇଁ ସ୍କୁଲକୁ ଯାଇଥିଲେ, ସେ ସାକ୍ଷ୍ୟ ଦେଇ ନଥିଲେ । ଏଣୁ ଆମର ଯୁକ୍ତି ହେଲା ଯେ ସାର୍ଟିଫିକେଟ୍‌ରେ ଲିଖିତ ଜନ୍ମ ତାରିଖ ଶୁଣା କଥା ବା ଇଂରେଜୀରେ ଯାହାକୁ କହନ୍ତି 'ହିଅର ସେ' ଉପରେ ପର୍ଯ୍ୟବେସିତ ।

ଜେରା ସମୟରେ ମୁଦାଲା ପକ୍ଷର ପ୍ରଶ୍ନବାଣରେ ଅଭିଯୋଗକାରିଣୀ ସ୍ୱୀକାର କରିଥିଲା ଯେ ଘରୁ ସ୍କୁଲକୁ ଆସିଲା ବେଳେ ଯୁବକ ଶିକ୍ଷକଙ୍କ ସାଇକେଲ ପଛରେ ବସି ସେ ସ୍କୁଲକୁ ନଯାଇ ଅନ୍ୟଆଡ଼େ ଚାଲି ଯାଇଥିଲା । ବାଟରେ ଜଣେ ଦି'ଜଣ ପରିଚିତ ଲୋକ ଦେଖା ହେଲେ ମଧ୍ୟ ସେ କୌଣସି ପ୍ରକାର ଚିତ୍କାର ବା ପ୍ରତିବାଦ କରି ନଥିଲା । ଗୋଟିଏ ନିକାଂଚନ ସ୍ଥାନ ଖୋଜିବାକୁ ଯାଇ ସେମାନେ ଦୁଇ ତିନୋଟି ସ୍ଥାନକୁ ଯାଇଥିଲେ ଏବଂ ଶେଷରେ ଏକ ନିଛାଟିଆ ଝଂକା ବରଗଛ ମୂଳରେ ମୁଦାଲା ତା' ପ୍ରତି ପାଶବିକ ଅତ୍ୟାଚାର କରିଥିଲା । ପାଶବିକ ଅତ୍ୟାଚାରର ସେ ଯେଉଁ ବିବରଣୀ ଦେଲା, ତାହା ଥିଲା ଅତ୍ୟନ୍ତ ଅସ୍ୱାଭାବିକ । ଏ ଘଟଣା ପରେ ସେମାନେ ସେହି ବରଗଛ ମୂଳରେ ଘଣ୍ଟାଏ ବସି ଗପସପ କଲା ପରେ ଉପରବେଳା ଘରକୁ ଫେରିଲେ, ଯେପରିକି ଘରେ ଜାଣିବେ ଯେ ଝିଅ ସ୍କୁଲରୁ ଘରକୁ ଫେରୁଛି ।

ସାକ୍ଷ୍ୟ ଗ୍ରହଣ ଶେଷ ହେବା ପରେ ମଝିରେ ଗୋଟିଏ ରବିବାରିଆ ଛୁଟି ମିଳିଲା । ଶନିବାର ସଂଧ୍ୟାରେ ଦୀନବଂଧୁ ବାବୁ ମୁଦାଲା ଶିକ୍ଷକ ଓ ତାର ଦାଦା ସହିତ ମତେ ଉପରକୁ ଡାକି ପଠାଇଲେ । ସେ ପର୍ଯ୍ୟନ୍ତ ତାଙ୍କର ରକ୍ତଚାପର ଉପଶମ ହୋଇ ନଥାଏ । ସେ ପୁଣି ପରାମର୍ଶ ଦେଲେ, ଏ ଗୋଟିଏ ଅତି ଗୁରୁତର ମୋକଦ୍ଦମା, ସୁଆଲ ଜବାବ ବା ବାଦାନୁବାଦ କରିବା ପାଇଁ ଜଣେ ପୋଖତ ଅଭିଜ୍ଞ ଆଡ୍‌ଭୋକେଟ୍‌ଙ୍କୁ ଦାୟିତ୍ୱ ଦେବା ଉଚିତ । ସେ ପ୍ରସ୍ତାବ କଲେ ଯେ ତାଙ୍କର ପୂର୍ବତନ ଜୁନିୟର ଓ ବଂଧୁ ହେମେନ୍ଦ୍ର ନାଥ କାନୁନ୍‌ଗୋଙ୍କୁ ନିଯୁକ୍ତ କରିବା ଉଚିତ ହେବ । ମୁଁ କୌଣସି ଉତ୍ତର ଦେବା ପୂର୍ବରୁ ମୁଦାଲା ନିଜେ ଆଗତୁରା କହିଲେ, ଗଂଗାଧର ବାବୁ କେସ୍ ସହିତ ମୂଳରୁ ସଂପୃକ୍ତ । କେସର ଭଲ ମନ୍ଦ ତାଙ୍କୁ ଭଲ ଭାବରେ ଜଣା । ସବୁ ସାକ୍ଷୀଙ୍କୁ ସେ ସନ୍ତୋଷଜନକ ଭାବେ ଜେରା କରିଅଛନ୍ତି । ଶେଷ ମୁହୂର୍ତ୍ତରେ ନୂଆ ଓକିଲ ନିଯୁକ୍ତ କଲେ ସେ ବୋଧହୁଏ ପ୍ରସ୍ତୁତ ହୋଇ ପାରିବେ ନାହିଁ । ମୁଦାଲାଙ୍କର ଉତ୍ତର ଶୁଣି ଦୀନବଂଧୁ ବାବୁ ନୀରବ ରହିଲେ । ମୁଁ ମନେ ମନେ ଖୁସି ହେଲେ ମଧ୍ୟ ଆଗତ ଦାୟିତ୍ୱର ଗୁରୁଭାର ସେହି ମୁହୂର୍ତ୍ତରୁ ଅନୁଭବ କରିବାକୁ ଆରମ୍ଭ କଲି ।

ଦୀନବଂଧୁ ସାହୁଙ୍କର ଏ ମନୋଭାବ ସଂପର୍କରେ ମୁଁ ପରେ ବହୁବାର ଚିନ୍ତା କରିଛି । ତାଙ୍କ ପରି ଜଣେ ଶୁଭାକାଂକ୍ଷୀ ବୃତ୍ତିର ପ୍ରାରମ୍ଭ କାଳରେ

ଗୋଟିଏ ବିରାଟ ସୁଯୋଗରୁ ମତେ ବଂଚିତ କରିବାକୁ ପରାମର୍ଶ ଦେଲେ କାହିଁକି ? ମୁଁ ପରେ ଅନୁଭବ କରିଛି ଓ ମୋର ବନ୍ଧୁ ଆଇନଜୀବି ବଂଧୁ ଏ ବିଷୟରେ ସହମତ ଯେ ମୋ ପରି ଜଣେ ଅନଭିଜ୍ଞ ନବାଗତ, ଓକିଲାତିରେ ଯାହାର ଅଭିଜ୍ଞତା ସେତେବେଳକୁ ମାସକରୁ ଅଧିକ ନୁହେଁ, ତାର ଦକ୍ଷତା ଉପରେ ଭରସା କରିବାକୁ ନିରାପଦ ମନେ ନ କରିବା ଅତ୍ୟନ୍ତ ସ୍ୱାଭାବିକ । ତାଙ୍କ ସ୍ଥାନରେ ଅନ୍ୟ ଯେ କେହି ବୋଧହୁଏ ଏହି ପ୍ରକାର ପରାମର୍ଶ ଦେଇ ଥାଆନ୍ତେ ।

ମୋର ସ୍ମରଣ ଅଛି, ସୋମବାର ଦିନ ଠିକ୍ ଏଗାରଟା ସମୟରେ ସୁଆଲ ଜବାବ ଆରମ୍ଭ ହେଲା । ପବ୍ଲିକ ପ୍ରସେକ୍ୟୁଟର ଶ୍ରୀକାନ୍ତ ମହାନ୍ତି ତାଙ୍କର ସ୍ୱାଭାବିକ ଭଂଗୀରେ, ଅଛିଣ୍ଡା ବାକ୍ୟରେ ନିଜର ଭାଷଣ ଆରମ୍ଭ କଲେ । ତାଙ୍କର ଉଦ୍‌ବୋଧନରେ ମୁଦାଲା ଶିକ୍ଷକଙ୍କର ଅସାଧୁ ଆଚରଣ ଉପରେ କଟୁ ମନ୍ତବ୍ୟ ପ୍ରକାଶ କରି ଚତୁରତାର ସହ ଶିକ୍ଷକ ଜୁରରମାନଙ୍କ ମଧ୍ୟରେ ମୁଦାଲା ପ୍ରତି ବିଦ୍ୱେଷ ସୃଷ୍ଟି କରିବାକୁ ଉଦ୍ୟମ କରିଥିଲେ । ସରକାରଙ୍କ ଦ୍ୱାରା ପ୍ରଦତ୍ତ ପ୍ରମାଣର ବିଶ୍ଳେଷଣ କରି ସେ ଜଣେ ଅପ୍ରାପ୍ତବୟସ୍କା ବାଳିକା ପ୍ରତି ପାଶବିକ ଅତ୍ୟାଚାରର ତୀବ୍ର ନିନ୍ଦା କରି ମୁଦାଲା ଦଣ୍ଡବିଧି ଆଇନର ୩୭୬ ଦଫାରେ ଦଣ୍ଡନୀୟ ବୋଲି ଦାବୀ କରିଥିଲେ । ମୋର ପାଳି ପଡ଼ିଲା ମଧ୍ୟାହ୍ନ ବିଶ୍ରାନ୍ତି ପରେ । ମୁଁ ଭାବିଲି, ସାକ୍ଷୀମାନଙ୍କର ବୟାନକୁ ପବ୍ଲିକ୍ ପ୍ରସେକ୍ୟୁଟର ବାରବାର ପଢ଼ିଛନ୍ତି, ଏଣୁ ତାର ଚର୍ବିତ ଚର୍ବଣ ନ କରି, ପ୍ରତିବାଦୀର ଦୃଷ୍ଟିକୋଣରୁ କେବଳ ତାର ବିଶ୍ଳେଷଣ କରିବି । ତଦ୍ୱାରା ଜୁରୀଙ୍କ ମନରେ ନିର୍ଦ୍ଦିଷ୍ଟ ରେଖାପାତ କରିବା ସଂଭବ ହେବ । ମୁଁ ଅନୁଭବ କରିଥିଲି ଯେ ପାଣ୍ଡିତ୍ୟପୂର୍ଣ୍ଣ ଆଇନ ଚର୍ଚ୍ଚା ଠାରୁ ଜୁରୀଙ୍କୁ ପ୍ରଭାବିତ କରିବା ପାଇଁ ଭିନ୍ନ ରୁଚିର ଆବେଗମୟ ଉଦ୍‌ବୋଧନର ଆବଶ୍ୟକତା ଅଛି । ମାନ୍ୟବର ବିଚାରପତି ଓ ଜୁରୀର ମାନ୍ୟବର ସଦସ୍ୟମାନଙ୍କୁ ସଂବୋଧନ କରି ମୁଁ ଅଭିଯୋଗକାରିଣୀଙ୍କର ବୟସ ସଂକ୍ରାନ୍ତୀୟ ପ୍ରମାଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କଲି । ଆଡ଼ମ୍ବରପୂର୍ଣ୍ଣ ଓ ସାବଲୀଳ ଭାଷାରେ ଅଭିଯୋଗକାରିଣୀର ସ୍ୱୀକାରୋକ୍ତି ଗୁଡ଼ିକର ବିନ୍ୟାସ କରି ମୁଁ ଯୁକ୍ତି ବାଢ଼ିଥିଲି ଯେ ଏହା ବଳାତ୍କାର ଅପହରଣ ବା ପାଶବିକ ଅତ୍ୟାଚାର ଘଟଣା ନୁହେଁ । ଏହା ଦୁଇଜଣ ଯୁବକ ଯୁବତୀଙ୍କର ପ୍ରେମଜନିତ ସ୍ୱେଚ୍ଛାକୃତ ଓ ସ୍ୱେଚ୍ଛା ପ୍ରଣୋଦିତ ସହବାସ । ସାମାଜିକ

ଦୃଷ୍ଟିକୋଣରୁ ମୁଦାଲାର ଆଚରଣ ଅସଂଯତ ଓ ଅଶୁଦ୍ଧ ହେଲେ ମଧ୍ୟ, ଆଇନର ପରିସର ମଧ୍ୟରେ ଏହାକୁ "ଅପରାଧ" କୁହାଯାଇ ପାରିବ ନାହିଁ କାରଣ ଝିଅର ବୟସ ଷୋହଳ ବର୍ଷରୁ କମ୍ ବୋଲି ପ୍ରମାଣ କରିବାକୁ ପବ୍ଲିକ୍ ପ୍ରସେକ୍ୟୁଟର ଅସମର୍ଥ ହୋଇଛନ୍ତି । ପ୍ରତିବାଦ ନାହିଁ, ପ୍ରତିରୋଧ ନାହିଁ, ସ୍ୱଇଚ୍ଛାରେ ଜଣେ ଶିକ୍ଷିତା ଯୁବତୀ ଲାଳସା ଚରିତାର୍ଥ କରିବା ପାଇଁ ଜଣେ ଅତି ପରିଚିତ ଯୁବକଙ୍କ ସହିତ ନିକାଂଚନ ସ୍ଥାନ ପାଇବା ପାଇଁ ବିଭିନ୍ନ ଜାଗା ଘୂରି ବୁଲିଛି, ଏଠି ପ୍ରତାରଣା ବା ବଳ ପ୍ରୟୋଗର ସୂଚନା କାହିଁ? ଘଟଣା ସଂପର୍କରେ ଅଭିଯୋଗକାରିଣୀର ସାକ୍ଷ୍ୟର ପର୍ଯ୍ୟାଲୋଚନା କରି ମୁଁ କହିଥିଲି, ଯେଉଁଭଳି ଭାବରେ ସେ ଅଦାଲତ୍‌ରେ ତଥାକଥିତ ପାଶବିକ ଅତ୍ୟାଚାରର ବିବରଣୀ ପେଶ୍ କରିଛନ୍ତି, ତାହା ସଂପୂର୍ଣ୍ଣ ଅସ୍ୱାଭାବିକ ଏବଂ ଏହାର ସତ୍ୟତା ଜୁରୀର ମାନ୍ୟବର ସଦସ୍ୟମାନେ ନିଜ ଅଭିଜ୍ଞତାରୁ ବିଚାର କରିବେ ... ଇତ୍ୟାଦି ।

ପରଦିନ. ବିଚାରପତି ମହୋଦୟ ପଦ୍ଧତି ଅନୁଯାୟୀ ପ୍ରମାଣ ଓ ଆନୁସଂଗିକ ପ୍ରଶ୍ନ ଉପରେ ନିଜର ଲିଖିତ ମନ୍ତବ୍ୟ ଜୁରୀଙ୍କ ସମକ୍ଷରେ ପାଠ କଲେ ଓ ଅଭିଯୋଗର ସତ୍ୟତା ଉପରେ ମତାମତ ଦେବାକୁ ଜୁରୀଙ୍କୁ ନର୍ଦ୍ଦେଶ ଦେଲେ । ଜୁରୀର ସଦସ୍ୟମାନଙ୍କୁ ବିଚାରପତିଙ୍କ ବିଶ୍ରାମ କକ୍ଷର ପାର୍ଶ୍ୱରେ ଥିବା ଅନ୍ୟ ଗୋଟିଏ କୋଠରୀରେ ବନ୍ଦ କରି ଦିଆଗଲା । ଇଂରେଜୀରେ ଏହାକୁ କହନ୍ତି 'ଲକ୍ ଅପ୍' ଅର୍ଥାତ ବାହ୍ୟ ପ୍ରଭାବରୁ ମୁକ୍ତ ରହି ରୁଦ୍ଧ ଦ୍ୱାର କୋଠରୀରେ ସେମାନେ ଦୋଷାଦୋଷ ବିଚାର କରିବେ । ଦୀର୍ଘ ଦୁଇ ଘଣ୍ଟା ପରେ ଦିନ ତିନିଟା ବେଳେ ଜୁରରମାନେ ମିଶଲ ଉପରକୁ ଆସି ମତବ୍ୟକ୍ତ କଲେ ଯେ ମୁଦାଲାଙ୍କର ଅପରାଧ ବିଷୟରେ ସେମାନେ ସହମତ ହୋଇ ପାରିନାହାନ୍ତି । କେତେଜଣଙ୍କ ମତରେ ସେ ଅପରାଧୀ ଓ ଅନ୍ୟ କେତେ ଜଣଙ୍କ ମତରେ ସେ ନିର୍ଦ୍ଦୋଷ । ଏପରି ପରିସ୍ଥିତିରେ ଜୁରୀର ସଦସ୍ୟମାନଙ୍କୁ ପ୍ରଚଳିତ ନିୟମାନୁଯାୟୀ ପୁନର୍ବିଚାର ନିମନ୍ତେ ଆଉଥରେ 'ଲକ୍ ଅପ୍' କରି ଦିଆହେଲା । ଜଜ୍ ସାହେବ ନିଜ ବିଶ୍ରାମ ପ୍ରକୋଷ୍ଠକୁ ପ୍ରତ୍ୟାବର୍ତ୍ତନ କଲେ । ଆମ୍ଭେମାନେ କୋର୍ଟ ରୁମ୍‌ରେ ବସି ରହିଥାଉ । ମୁଦାଲା ପୂର୍ବଭଳି କାଠଗଡ଼ା ମଧ୍ୟରେ ଠିଆ ହୋଇ ରହିଥାନ୍ତି । ଚାରିଟା ହେଲା, ପାଂଚଟା ହେଲା, ସାଢ଼େ ପାଂଚ ବାଜିଲା, ତଥାପି ଜୁରୀ ଫେରିଲେ ନାହିଁ । ଏ ମଧ୍ୟରେ ବିଚାରା ମୁଦାଲା କାଠଗଡ଼ାରେ ଠିଆ ହୋଇ ରହି, ଏପରି ଚିନ୍ତାଗ୍ରସ୍ତ ହୋଇ ପଡ଼ିଥାଏ

ଯେ, ଶୀତ ଦିନ ସଂଧ୍ୟାରେ ମଧ୍ୟ ତାଙ୍କ ମୁହଁରେ ବିନ୍ଦୁ ବିନ୍ଦୁ ଝାଳ । ଯାହାହେଉ ସଂଧ୍ୟା ଛ'ଟାରେ ବିଚାରକ ଓ ଜୁରୀ ସଦସ୍ୟମାନେ ମିଶଲ ଉପରକୁ ଆସିଲେ । ବିଚାରପତିଙ୍କ ପ୍ରଶ୍ନର ଉତ୍ତରରେ ଜୁରୀଙ୍କର ମୁଖପାତ୍ର ଉତ୍ତର ଦେଲେ, ସେମାନଙ୍କ ମତରେ ମୁଦାଲା ସଂପୂର୍ଣ୍ଣ ନର୍ଦ୍ଦୋଷ । ବିଚାରପତି ମହୋଦୟ ଜୁରୀଙ୍କ ସହ ସହମତ ହୋଇ ତୁରନ୍ତ ମୁଦାଲାକୁ ମୁକ୍ତି ଆଦେଶ ଦେଲେ ।

ସେତେବେଳକୁ ଅନ୍ୟତ୍ର କୋର୍ଟ ପ୍ରାଙ୍ଗଣ ସଂପୂର୍ଣ୍ଣ ଜନଶୂନ୍ୟ ଥିଲେ ମଧ୍ୟ, ଅତିରିକ୍ତ ଜିଲା ଜଜ୍‌ଙ୍କ କୋର୍ଟ ବାରଣ୍ଡାରେ ପ୍ରବଳ ଭିଡ଼ । ଅସଂଖ୍ୟ ଦେଖଣାହାରୀଙ୍କ ସମେତ ନୂଆ ବଜାର ଅଂଚଳର ବହୁ ଲୋକଙ୍କ ସମାଗମ । ଜଜ୍ ସାହେବ ଓ ଜୁରରମାନେ ଚାଲିଗଲେ । ଆବଶ୍ୟକ ହେଲେ ମୁଦାଲାକୁ ଜେଲ୍‌କୁ ନେବା ପାଇଁ ଅପେକ୍ଷାରତ ସିପାହୀମାନେ ମଧ୍ୟ ତଳକୁ ଗଲେ । ତା' ପରେ ଆରମ୍ଭ ହେଲା କୋଳାହଳ । ରାୟ ଶୁଣି ମୋ ମନ ଭିତରେ ଗୋଟାଏ ଝଡ଼ ବୋହିଗଲା । ବିଷାଦରେ ମନ ଭାରାକ୍ରାନ୍ତ ହେଲେ, ଲୋକେ ବସିବା ସ୍ଥାନରୁ ଉଠି ପାରନ୍ତି ନାହିଁ । ଆନନ୍ଦ ଉଲ୍ଲାସର ପ୍ରତିକ୍ରିୟା ମଧ୍ୟ ଅନୁରୂପ । ଆନନ୍ଦରେ ଭାବ ବିହ୍ୱଳ ହୋଇ ମୁଁ ନିଜ ଚୌକୀରୁ ପାଂଚ ମିନିଟ୍ ପର୍ଯ୍ୟନ୍ତ ଉଠି ପାରିଲି ନାହିଁ । ମୁଁ କେବଳ ଭାବୁଥିଲି, ମୋର ପ୍ରଥମ ପ୍ରୟାସ ସଫଳ ହୋଇଛି । ମନେ ପଡ଼ିଲା ଜଣେ ମହାପୁରଷଙ୍କର ପ୍ରବଚନ- ''ସଫଳତାର ବିକଳ୍ପ ନାହିଁ ।'' ମୁଦାଲା ଶିକ୍ଷକ କାଠଗଡ଼ାରୁ ଆସି ମୋ ପାଦ ଛୁଇଁଲା ବେଳେ ମୋର ହୋସ୍ ଆସିଲା ।



# ନୂତନ ରଣାଙ୍ଗନ

ନିର୍ବାଚନ ସମୟରେ ରଣ ଦୁନ୍ଦୁଭି ବାଜେ, ଯୁଦ୍ଧ ହୁଏ ନିର୍ବାଚନ ମଣ୍ଡଳୀରେ, ପରସ୍ପର ବିରୋଧୀ ପ୍ରାର୍ଥୀ ଓ ତାଙ୍କ ସମର୍ଥକମାନଙ୍କ ମଧ୍ୟରେ । ୧୯୫୦ ମସିହାରୁ ଏ ଯୁଦ୍ଧରୁ ମୁଁ ବିରତି ନେଇଥିଲି । ୧୯୫୭ ମସିହାରେ ନୂଆ ଲଢ଼େଇର ଦାୟିତ୍ୱ ଆସିଲା ଏବଂ ସେ ଲଢ଼େଇ ଅଦାଲତ ପ୍ରାଙ୍ଗଣରେ ।

ଦ୍ୱିତୀୟ ସାଧାରଣ ନିର୍ବାଚନରେ କଂଗ୍ରେସ ଦଳ ଓଡ଼ିଶାରେ ସଂଖ୍ୟା ଗରିଷ୍ଠତା ହାସଲ କରି ପାରିନଥିଲେ । ବିହାରର ଆଦିବାସୀ ନେତା ଜୟପାଳ ସିଂହଙ୍କ ଜରିଆରେ କେତେକ ଆଦିବାସୀ ସଭ୍ୟଙ୍କ ସମର୍ଥନ ଖରିଦ୍ କରି ମଧ୍ୟ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ସଂଭବ ହୋଇନଥିଲା । କଂଗ୍ରେସକୁ ଗାଦିଚ୍ୟୁତ କଲେ ସ୍ୱତନ୍ତ୍ର ଦଳ କ୍ଷମତାକୁ ଆସିବେ, ଏଣୁ ସ୍ୱତନ୍ତ୍ର ଦଳକୁ କ୍ଷମତାର ପରିସର ବାହାରେ ରଖିବା ପାଇଁ, କମ୍ୟୁନିଷ୍ଟ ପାର୍ଟି ଆସେମ୍ବ୍ଲି ସଦନରେ କଂଗ୍ରେସ ବିରୁଦ୍ଧରେ ଭୋଟ ନଦେବା ପାଇଁ ନିଷ୍ପତ୍ତି ନେଇଥିଲେ । ଏହି ଗୋଳମାଳିଆ ପରିସ୍ଥିତିରେ ଡକ୍ଟର ମହତାବଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା । କଂଗ୍ରେସ ଦଳର ନିର୍ବାଚିତ ବିଧାୟକମାନଙ୍କ ବିରୁଦ୍ଧରେ ବିରୋଧୀ ଦଳ ପକ୍ଷରୁ ଏବଂ ବିରୋଧୀ ଦଳର କେତେକ ନିର୍ବାଚିତ ନେତାଙ୍କ ବିରୁଦ୍ଧରେ କଂଗ୍ରେସ ପକ୍ଷରୁ ନିର୍ବାଚନ ମୋକଦ୍ଦମାମାନ ହୋଇଥିଲା । କୋରାପୁଟର ପୂର୍ବତନ କଂଗ୍ରେସ ମନ୍ତ୍ରୀ ବିଧାୟକ ରାଧାକୃଷ୍ଣ ବିଶ୍ୱାସରାୟ, ବ୍ରହ୍ମପୁରର ଲିଙ୍ଗରାଜ ପାଣିଗ୍ରାହୀ, ଦଶପଲ୍ଲା ରାଜା କିଶୋର ଚନ୍ଦ୍ର ଦେଓ ଭଞ୍ଜ, ବସ୍ତାର ବିଧାୟକ ଅକ୍ଷୟ ନାରାୟଣ ପ୍ରହରାଜ, ଭୋଗରାଇର ବିଧାୟକ ଦୁର୍ଗାଶଙ୍କର ଦାସ ପ୍ରଭୃତିଙ୍କ ବିରୁଦ୍ଧରେ ମୋକଦ୍ଦମା ବିରୋଧୀ ଦଳ ପକ୍ଷରୁ ଆଗତ ହୋଇଥିଲା । ସେହିପରି ଖୋର୍ଦ୍ଧାର ବିଧାୟକ ପ୍ରାଣନାଥ ପଟ୍ଟନାୟକ, ସାଲେପୁରର ବିଧାୟକ ପ୍ରଦୀପ୍ତ କିଶୋର ଦାସ, ଭଦ୍ରଖର ସ୍ୱାଧୀନ ବିଧାୟକ ନିତ୍ୟାନନ୍ଦ ମହାପାତ୍ରଙ୍କ ବିରୁଦ୍ଧରେ ନିର୍ବାଚନ ମୋକଦ୍ଦମାମାନ ଦାଏର ହୋଇଥିଲା । ବର୍ତ୍ତମାନ ନିର୍ବାଚନ ଆଇନ୍‌ର ସଂଶୋଧନ କରାଯାଇ ହାଇକୋର୍ଟର ଚିଫ୍ ଜଷ୍ଟିସ୍‌ଙ୍କ ଦ୍ୱାର ମନୋନୀତ ହାଇକୋର୍ଟ ଜଜ୍‌କୁ ନିର୍ବାଚନ ଟ୍ରାଇବ୍ୟୁନାଲ ନିଯୁକ୍ତ କରାଯାଉଛି ଓ ତାଙ୍କ ନିଷ୍ପତ୍ତି ବିରୁଦ୍ଧରେ ସୁପ୍ରିମ କୋର୍ଟରେ ଅପିଲ୍ ହେଉଛି । କିନ୍ତୁ ଏଥି ପୂର୍ବରୁ ସ୍ଥାନୀୟ ଜିଲ୍ଲା ଜଜ୍‌ମାନେ ନିର୍ବାଚନ ଟ୍ରାଇବ୍ୟୁନାଲ ଭାବରେ କାର୍ଯ୍ୟ କରୁଥିଲେ ଓ ସେମାନଙ୍କ ନିଷ୍ପତ୍ତି ବିରୁଦ୍ଧରେ ହାଇକୋର୍ଟରେ ଅପିଲ୍ କରାଯାଉଥିଲା ।

ବସ୍ତାର ବିଧାୟକ ଅକ୍ଷୟ ନାରାୟଣ ପ୍ରହରାଜ ଓ ଭୋଗରାଇର ବିଧାୟକ ଦୁର୍ଗାଶଙ୍କର ଦାସଙ୍କ ମୋକଦ୍ଦମା ବାଲେଶ୍ୱର ଜିଲ୍ଲା ଜଜ୍ କୋର୍ଟରେ ବିଚାର ହୋଇଥିଲା ଓ ଏ ଦୁଇଟି ମୋକଦ୍ଦମାରେ ମୁଁ କଂଗ୍ରେସ ଦଳ ପକ୍ଷରୁ ଆଡ୍‌ଭୋକେଟ୍ ନିଯୁକ୍ତ ହୋଇଥିଲି । ଖୋର୍ଦ୍ଧା ନିର୍ବାଚନ ମୋକଦ୍ଦମା ପୁରୀ ଜିଲ୍ଲା ଜଜ୍ ଟି. ଭି. ରାଓଙ୍କ କୋର୍ଟରେ ବିଚାର ପାଇଁ ଧାର୍ଯ୍ୟ ହୋଇଥିଲା ଓ ଏ ମୋକଦ୍ଦମାରେ ମୁଁ କମ୍ୟୁନିଷ୍ଟ ଦଳ ପକ୍ଷରୁ ଆଡ୍‌ଭୋକେଟ୍ ନିଯୁକ୍ତ ହୋଇଥିଲି । ଦୁର୍ଯୋଗକୁ ଏ ତିନୋଟିଯାକ କେସ୍‌ର ବିଚାର ତାରିଖ ୧୯୫୭ ମସିହା ସେପ୍ଟେମ୍ବର ଶେଷ ଆଡ଼କୁ ଏକ ସମୟରେ ଧାର୍ଯ୍ୟ ହେଲା । ଯେଉଁ ପରିସ୍ଥିତିରେ ପ୍ରାଣନାଥ ପଟ୍ଟନାୟକ ମତେ ଓକିଲ ନିଯୁକ୍ତ କରିଥିଲେ, ସେ କଥା ପରେ ଲେଖିବି । ତାଙ୍କ କେସ୍‌ରୁ ଓହରି ଯିବାର ପ୍ରଶ୍ନ ଉଠୁ ନଥିଲା । ବାଧ୍ୟ ହୋଇ ଅକ୍ଷୟ ନାରାୟଣ ପ୍ରହରାଜଙ୍କ କେସ୍‌ରେ ଅନ୍ୟ ଆଡ୍‌ଭୋକେଟ୍ ନିଯୁକ୍ତ କରିବା ପାଇଁ ମୁଁ ପରାମର୍ଶ ଦେଲି । ପ୍ରହରାଜଙ୍କ ଅନୁରୋଧକ୍ରମେ ପ୍ରଥମେ ଏ. ଏଲ୍. ଜଗନ୍ନାଥ ରାଓଙ୍କ ସହ ପରାମର୍ଶ କରିବା ପାଇଁ ଦିନେ ସଂଧ୍ୟା ଆଠଟା ସମୟରେ ତାଙ୍କର ଦେଓ୍ୱାନ ବଜାର ଘରେ ପହଂଚିଲୁ । ଜଗନ୍ନାଥ ରାଓ ମାଜିଷ୍ଟ୍ରେଟ୍ ଚାକିରୀରୁ ଇସ୍ତଫା ଦେଇ ହାଇକୋର୍ଟରେ ଓକିଲାତି କରୁଥାଆନ୍ତି । ପର କାଳରେ ଇନକମ୍ ଟ୍ୟାକ୍ସ ଟ୍ରାଇବ୍ୟୁନାଲର ଭାଇସ୍ ପ୍ରେସିଡେଣ୍ଟ ଥିବା ସ୍ୱର୍ଗୀୟ ବାଳକୃଷ୍ଣ ରାଓ ସେତେବେଳେ ଜଗନ୍ନାଥ ରାଓଙ୍କର ଜୁନିୟର । ବାଳକୃଷ୍ଣ ରାଓ ମତେ ଚୁପ୍ କରି କହିଲେ, ସଂଧ୍ୟା ଆଠଟା ପରେ କାହିଁକି ଆସିଲ, ତୁମେ କ'ଣ ମୋ ସିନିୟରଙ୍କ ଅଭ୍ୟାସ ଜାଣି ନାହଁ? ଜଗନ୍ନାଥ ରାଓ ଯେ ସୁରା ପାନରେ ଅଭ୍ୟସ୍ତ, ସେକଥା ମତେ ଅବଶ୍ୟ ଜଣାଥିଲା । କିନ୍ତୁ ସୁରା ପାନ କରୁକରୁ, ସୁରା ଯେ ତାଙ୍କୁ ଭୋଜନ କରିବାକୁ ଆରମ୍ଭ କଲାଣି, ସେ କଥା ମୁଁ ଜାଣି ନଥିଲି । ଆମେ ଦେଖିଲୁ ଜଗନ୍ନାଥ ରାଓଙ୍କର ଚକ୍ଷୁ ନିଷ୍ପ୍ରଭ, କଣ୍ଠସ୍ୱର କ୍ଷୀଣ । ପାଂଚ ଦଶ ମିନିଟ୍ କେସ୍ ବିଷୟରେ କଥାବାର୍ତ୍ତା ହେବା ପରେ ରାଓ ତାଙ୍କ ଟେବୁଲ ଡ୍ରୟରରୁ ଏକ ବୋତଲ ବାହାର କରି ଗୋଟାଏ ପେଗ୍ ପାନ କଲେ । ହଠାତ୍ ତାଙ୍କ ମୁହଁର ଜ୍ୟୋତି ଫେରି ଆସିଲା, ନିଦ୍ରାଳୁ ଭାବ ଦୂର ହୋଇଗଲା । କଥାବାର୍ତ୍ତା ଓ ସ୍ୱରରେ ଅପୂର୍ବ ପରିବର୍ତ୍ତନ ଆସିଲା । କେସ୍ ବିଷୟରେ ଆଲୋଚନା କରିବାକୁ ଯାଇ ସେ ଇଂରାଜୀରେ ସେକ୍ସପିଅରଙ୍କ କବିତା ଓ ସଂସ୍କୃତ ଶ୍ଳୋକ ଇତ୍ୟାଦି ଉଦ୍ଧାର କରି ନିଜର ପାଣ୍ଡିତ୍ୟ ପ୍ରତିପାଦନ କରିବାକୁ ଚେଷ୍ଟା କଲେ । ସବୁ ପ୍ରତିଭା ବିକୀରଣ ସତ୍ତ୍ୱେ ପ୍ରହରାଜ ମହାଶୟ ସନ୍ତୁଷ୍ଟ ହେଲା ପରି ମନେ ହେଲା ନାହିଁ । ଫେରିଲା

ବେଳେ ସେ କେବଳ ଏତିକି ମନ୍ତବ୍ୟ ଦେଲେ, "ମଦ୍ୟପଙ୍କ ଉପରେ ଭରସା କରାଯାଇ ପାରିବ ନାହିଁ।" ତହିଁ ଆର ଦିନ ବାରିଷ୍ଟର ମୁରଲୀଧର ମହାନ୍ତିଙ୍କୁ ପ୍ରହରାଜଙ୍କ ତରଫରୁ ନିଯୁକ୍ତ କରି ମୁଁ ନିଷ୍କୃତି ପାଇଲି ।

ପୁରୀ ଜିଲ୍ଲା ଜଜ୍‌ଙ୍କ ଇଜଲାସରେ ପ୍ରାଣନାଥ ପଟ୍ଟନାୟକଙ୍କ ମୋକଦ୍ଦମା ସାତଦିନ ଚାଲିଲା ପରେ କୌଣସି କାରଣରୁ ସପ୍ତାହକ ପାଇଁ ମୁଲତବୀ ରହିଲା । ଏହି ଅବସରରେ ମୁଁ ବାଲେଶ୍ୱର ଯାଇ ଦୁର୍ଗା ଶଙ୍କର ଦାସଙ୍କ ମୋକଦ୍ଦମା ପରିଚାଳନା କଲି । ତା' ପୂର୍ବଦିନ ପ୍ରହରାଜଙ୍କ ମୋକଦ୍ଦମାର ବିଚାର ଗାଦି ରାଂଗା ରାଓଙ୍କ କୋର୍ଟରେ ଶେଷ ହୋଇଥାଏ । କାର୍ଯ୍ୟତଃ ଗୋଟିଏ ରାତି ମୁଁ ଓ ବାରିଷ୍ଟର ମୁରଲୀଧର ମହାନ୍ତି ବାଲେଶ୍ୱର ଡାକ ବଙ୍ଗଳାରେ କଟାଇଥିଲୁ । ପରଦିନ ସକାଳୁ ସେ ନିତ୍ୟ କର୍ମ ଇତ୍ୟାଦି ଶେଷ କରି ଶ୍ୱଶୁର ଘର ବାରିପଦା ଯାତ୍ରା କଲେ ଓ ମୁଁ ଜିଲାଜଜ କୋର୍ଟକୁ ଗଲି । ଦୁର୍ଗାଶଙ୍କରଙ୍କ ମୋକଦ୍ଦମାର ଫଳାଫଳ ମୁଖ୍ୟତଃ ଆଇନଗତ ପ୍ରଶ୍ନ ଉପରେ ନିର୍ଭର କରୁଥିଲା ଓ ବିଚାର ତିନି ଦିନ ମଧ୍ୟରେ ଶେଷ ହେଲା । କିଛି ଦିନ ପରେ ମୁଁ ପୁରୀରେ ଥିବା ସମୟରେ ବାଲେଶ୍ୱରରୁ ଖବର ଆସିଲା, ବସ୍ତା ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ ଅକ୍ଷୟ ନାରାୟଣ ପ୍ରହରାଜ ମୋକଦ୍ଦମାରେ ହାରି ଯାଇଛନ୍ତି ଓ ତାଙ୍କର ନିର୍ବାଚନ ଅସିଦ୍ଧ ଘୋଷିତ ହୋଇଅଛି । ଭୋଗରାଇର ବିଧାୟକ ଦୁର୍ଗା ଶଙ୍କର ଦାସ ଜୟଲାଭ କରିଛନ୍ତି ।

ପ୍ରାଣନାଥ ପଟ୍ଟନାୟକ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ପ୍ରତିଷ୍ଠାତା । ୧୯୩୭ ମସିହା ସାଧାରଣ ନିର୍ବାଚନରେ ଯେଉଁ ତିନିଜଣ ଅଗ୍ରଗାମୀ କଂଗ୍ରେସ ଟିକଟରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ, ସେମାନେ ହେଲେ କଟକର ନବକୃଷ୍ଣ ଚୌଧୁରୀ, ନିମାପଡ଼ାର ମୋହନ ଦାସ ଓ ଖୋର୍ଦ୍ଧାର ପ୍ରାଣନାଥ ପଟ୍ଟନାୟକ । ଏ ତିନିଜଣ ଏମ୍. ଏଲ୍. ଏ ଏବଂ ଶ୍ରୀମତୀ ମାଳତୀ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ଗୌରାଙ୍ଗ ଚରଣ ଦାସ ଓ ସାଧୁଚରଣ ମହାନ୍ତି ପ୍ରମୁଖ ଓଡ଼ିଶାରେ କୃଷକ ଆନ୍ଦୋଳନର ଶୁଭ ଦେଇଥିଲେ । ପଣ୍ଡିତ ପଢ଼ିଆରୀଙ୍କ ବ୍ୟତୀତ ଅନ୍ୟ ସମସ୍ତେ ପ୍ରଥମେ କଂଗ୍ରେସ ସମାଜବାଦୀ ଦଳର ସଭ୍ୟ ଥିଲେ । ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ ଓ ପ୍ରାଣନାଥ ପଟ୍ଟନାୟକ ପ୍ରମୁଖ ବହୁ ଯୁବକର୍ମୀଙ୍କ ସହ ସେ କାଳର ବେଆଇନ ସଂଗଠନ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ହେଲେ । ପ୍ରାଣନାଥ

ପଟ୍ଟନାୟକ ବ୍ରହ୍ମପୁର ଜେଲରୁ ଖଲାସ ହେବା ପରେ ୧୯୫୨ ମସିହା ସାଧାରଣ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ମାଧବ ଚନ୍ଦ୍ର ରାଉତାୟଙ୍କ ଠାରୁ ହାରିଯାଇଥିଲେ । କିନ୍ତୁ ୧୯୫୭ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ବନମାଳୀ ପଟ୍ଟନାୟକଙ୍କୁ ପରାସ୍ତ କରି ସେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ବୟସରେ ସେ ମୋ ଠାରୁ ପ୍ରାୟ ପନ୍ଦର ବର୍ଷ ବଡ଼ । ୧୯୫୭ ମସିହା ଜୁନ ଶେଷ କିମ୍ବା ଜୁଲାଇ ଆରମ୍ଭରେ ଦିନେ ହଠାତ୍ ସକାଳେ ସେ ଆମ ଘରେ ପହଂଚିଲେ । ହାତରେ ଥିଲା ନିର୍ବାଚନ ଟ୍ରାଇବ୍ୟୁନାଲ ଅଫିସ୍‌ରୁ ମିଳିଥିବା ନୋଟିସ୍ ଓ ତାଙ୍କ ବିରୁଦ୍ଧରେ ଫାଇଲ ହୋଇଥିବା ଇଲେକସନ ପିଟିସନ୍‌ର ଏକ କିତା ନକଲ । ତାଙ୍କ କେସ୍‌ର ଦାୟିତ୍ୱ ନେବା ପାଇଁ ସେ ମୋତେ ଅନୁରୋଧ କଲେ ।

ନିର୍ବାଚନ ମୋକଦ୍ଦମାରେ ସେ କାଳରେ ମୁଖ୍ୟତଃ ବରିଷ୍ଠ ଆଡ୍‌ଭୋକେଟ୍‌ମାନେ ନିଯୁକ୍ତ ହେଉଥିଲେ । କାରଣ ଏପରି କେସ୍ ଚଳାଇବା ପାଇଁ ଲୋକ ପ୍ରତିନିଧି ନିର୍ବାଚନ ଆଇନରେ ଗଭୀର ପ୍ରବେଶ ଆବଶ୍ୟକ । ତାଛଡ଼ା ଦେଓ୍ୱାନୀ କାର୍ଯ୍ୟବିଧି ଆଇନ ଓ 'ପ୍ରମାଣ' ଆଇନରେ ମଧ୍ୟ ବିଶେଷ ବ୍ୟୁତ୍ପତ୍ତିର ପ୍ରୟୋଜନ । କାରଣ ନିବାର୍ଚନ ମୋକଦ୍ଦମାର ବିଚାର ପଦ୍ଧତି ଦେଓ୍ୱାନେ କାର୍ଯ୍ୟବିଧି ଆଇନ ଦ୍ୱାରା ନିୟନ୍ତ୍ରିତ ହୁଏ । ଏଣେ ଏ ପ୍ରକାର ମୋକଦ୍ଦମାରେ "ଅବୈଧ ଆଚରଣ" ସଂକ୍ରାନ୍ତୀୟ କେତେ ପ୍ରକାର ଅଭିଯୋଗ ଆସିପାରେ, ଯାହା କେବଳ ଫୌଜଦାରୀ ଅଭିଯୋଗ ପରି ପୂର୍ଣ୍ଣ ବିଶ୍ୱାସଯୋଗ୍ୟ ପ୍ରମାଣ ଉପରେ ଗ୍ରହଣୀୟ ହୁଏ । ସେତେବେଳକୁ ମୋର ଓକିଲାତିର ଆୟୁ ମାତ୍ର ଦୁଇ ବର୍ଷ । ମୁଁ ମଧ୍ୟ କମ୍ୟୁନିଷ୍ଟ ସଂଗଠନ ସହିତ ସଂପୃକ୍ତ ନଥାଏ । ଅଥଚ ଏ ପ୍ରକାର ସଂଗୀନ ମୋକଦ୍ଦମାରେ ମୋତେ ଆଡ୍‌ଭୋକେଟ ନିଯୁକ୍ତ କରିବାକୁ ପ୍ରାଣନାଥ ପଟ୍ଟନାୟକ ଯେ ଆଗେଇ ଆସିଲେ, ସେଥିରେ ମୁଁ ସ୍ତମ୍ଭୀଭୂତ ହୋଇ ପଡ଼ିଲି । ଏ ଅକିଂଚନ ଉପରେ ତାଙ୍କର ଆସ୍ଥା ଦେଖି ମୋ ଆଖିରେ ଲୁହ ଆସିଲା । ପ୍ରାଣନାଥ ବାବୁ ଅବଶ୍ୟ ତା' ଦେଖି ପାରି ନଥିଲେ କିମ୍ବା ମୋ ମନର ଆବେଗର ସୂଚନା ପାଇ ନଥିଲେ । କିଛି ସମୟ ନୀରବ ରହି ମୁଁ କେବଳ ଏତିକ କହିଲି, "ହଁ, ମୁଁ ଦାୟିତ୍ୱ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି, ଯଦି କେସ୍ ପରିଚାଳନାର ସମସ୍ତ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହୁଏ ।" ଏବେ ଭାବୁଛି, ଜଣେ ବୟସ୍କ ଲୋକଙ୍କ ଆଗରେ ଏପରି ଦାମ୍ଭିକତା ଦେଖାଇବା ବୋଧହୁଏ ଉଚିତ ନଥିଲା ।

ଏ ମୋକଦ୍ଦମାର ଆବେଦନକାରୀ ବନମାଳୀ ପଟ୍ଟନାୟକ ମୋର ବ୍ୟକ୍ତିଗତ ବନ୍ଧୁ । ରେଭେନ୍ସା କଲେଜରେ ପଢ଼ିବା ଦିନୁ ତାଙ୍କ ସହିତ ଘନିଷ୍ଠ ସଦ୍‌ଭାବ । ୧୯୪୧ ମସିହାରେ ସେ ଯେତେବେଳେ ନିଖିଳ ଉତ୍କଳ ଛାତ୍ରସଂଘର ସାଧାରଣ ସଂପାଦକ, ମୁଁ କାର୍ଯ୍ୟକାରୀ ସମିତିର ଜଣେ ସଭ୍ୟ । ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବା ସମୟରୁ ସେ କଲିକତାରୁ ବିତାଡ଼ିତ ଓ ପୁରୀରେ ଅନ୍ତରୀଣ ବନ୍ଦୀ ଥିବା 'ଦାଦା' ନାମରେ ଖ୍ୟାତ ଜଣେ ବିପ୍ଳବୀଙ୍କ ସଂସ୍ପର୍ଶରେ ଆସି ଜାତୀୟ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଥିଲେ ।'' ଭାରତ ଛାଡ଼ ଆନ୍ଦୋଳନରେ ଗିରଫ ହୋଇ ସେ ବ୍ରହ୍ମପୁର ଜେଲରେ ବନ୍ଦୀ ହେଲେ । ସେହି ସମୟରୁ ସେ କଂଗ୍ରେସର ଜଣେ ସକ୍ରିୟ କର୍ମୀ । ୧୯୫୭ ମସିହାରେ ସେ ଥିଲେ ମହତାବ ବାବୁଙ୍କର ନିକଟତମ ସହଯୋଗୀ ଓ ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦକ । ଦିନେ ଦୀନବନ୍ଧୁ ସାହୁଙ୍କ ଘରେ ହଠାତ୍ ତାଙ୍କ ସହିତ ଦେଖା ହେଲା । ସେ ସାହୁଙ୍କ ସହିତ ତାଙ୍କ କେସ୍ ବିଷୟରେ ପରାମର୍ଶ କରିବାକୁ ଆସିଥିଲେ । ସେ ଅଭିମାନଭରା କଣ୍ଠରେ ମୋତେ ପଚାରିଲେ, ''ତୁମେ ମୋ ବିରୁଦ୍ଧରେ କେସ୍‌ରେ ହାଜର ହେଲ କିପରି ?'' ପ୍ରଶ୍ନ ପଛରେ ବିଷାଦଭରା ବିସ୍ମୟ ମଧ୍ୟ ଥିଲା । ମୁଁ ହତବୁଦ୍ଧି ହୋଇ ଉତ୍ତର ଦେଲି ''ତୁମେ ଯଦି ମୋ ଉପରେ ଆସ୍ଥା ରଖି ନ ପାରି ଅନ୍ୟ ଓକିଲ ନିଯୁକ୍ତ କରିପାରିଲ, ତାହାହେଲେ ମୁଁ ଅପର ପକ୍ଷରେ ହାଜର ହେଲେ ତୁମର ଦୁଃଖ କରିବା ଉଚିତ ନୁହେଁ ।'' ଏ ଉତ୍ତରର ପ୍ରତି ଜବାବ ନଥିଲା । ଏତିକିରେ ଏ ଆଲୋଚନା ଶେଷ ହେଲା ।

୧୯୫୭ ଦ୍ୱିତୀୟ ସାଧାରଣ ନିର୍ବାଚନରେ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରେ ତିନିଜଣ ପ୍ରାର୍ଥୀ ଥିଲେ । କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ପ୍ରାଣନାଥ ପଟ୍ଟନାୟକ, କଂଗ୍ରେସ ପ୍ରାର୍ଥୀ ବନମାଳୀ ପଟ୍ଟନାୟକ ଓ ସ୍ୱାଧୀନ ପ୍ରାର୍ଥୀ ମାଧବ ଚନ୍ଦ୍ର ରାଉତରାୟ । ମାଧବ ଏଥି ପୂର୍ବରୁ କଂଗ୍ରେସ ଟିକଟରେ ଖୋର୍ଦ୍ଧାରୁ ନିର୍ବାଚିତ ହୋଇଥିଲେ । ଏଥର ଟିକଟ ନ ମିଳିବା ହେତୁ ସେ ସ୍ୱାଧୀନ ଭୂମିକାରେ ଅବତୀର୍ଣ୍ଣ । ଖୋର୍ଦ୍ଧା ଅଂଚଳରେ ବହୁ ସଂଖ୍ୟାରେ ବସବାସ କରୁଥିବା ଖଣ୍ଡାୟତ ସଂପ୍ରଦାୟର ସେ ପ୍ରତିନିଧି ବୋଲି ତାଙ୍କର ଦାବୀ । କମ୍ୟୁନିଷ୍ଟ ଦଳ ପକ୍ଷରୁ ପନ୍ଦର ମାର୍ଚ୍ଚରେ ଖୋର୍ଦ୍ଧା ବରୁଣେଇ ପ୍ରେସରେ ଛପା ଯାଇଥିବା ଏକ ପ୍ରଚାର ପତ୍ରରେ ଉଲ୍ଲେଖ କରାଯାଇଥିଲା ଯେ ସ୍ୱାଧୀନ ପ୍ରାର୍ଥୀ କଂଗ୍ରେସର ନକଲି ସଂସ୍କରଣ ଓ ନିର୍ବାଚିତ ହେଲେ କଂଗ୍ରେସ ତାଙ୍କୁ କିଣି ନେବେ, ଏଣୁ ସ୍ୱାଧୀନ

ପ୍ରାର୍ଥୀଙ୍କୁ ଭୋଟ ଦେବା ଉଚିତ ନୁହେଁ । ଷୋଳ ମାର୍ଚ୍ଚରେ ମାଧବ ରାଉତରାୟ ସତକୁ ସତ ନିର୍ବାଚନରୁ ଓହରିଗଲେ । ପରଦିନ ମାତୃଭୂମିରେ ଏକ ସଂବାଦ ପ୍ରକାଶ ପାଇଲା ଯେ କୋଡ଼ିଏ ହଜାର ଟଂକା ନେଇ ମାଧବ ରାଉତରାୟ ନିର୍ବାଚନ ଲଢ଼େଇରୁ ଓହରି ଯାଇଛନ୍ତି । ବନମାଳୀ ପଟ୍ଟନାୟକ ଇଲେକ୍‌ସନ ଟ୍ରାଇବ୍ୟୁନାଲରେ ଆବେଦନ କରିଥିଲେ ଯେ ୨୧ ତାରିଖ ମାର୍ଚ୍ଚରେ କମ୍ୟୁନିଷ୍ଟ ଦଳର ସ୍ଥାନୀୟ ସଂପାଦକ ଶିବାଜୀ ପଟ୍ଟନାୟକ (ବର୍ତ୍ତମାନ ଏମ୍.ପି.) ଭୁବନେଶ୍ୱର କେଦାରଗୌରୀ ପ୍ରେସ୍‌ରେ ଏକ ପ୍ରଚାରପତ୍ର ଛପାଇ ସେଥିରେ ଅଭିଯୋଗ କରିଛନ୍ତି ଯେ କଂଗ୍ରେସ ଦଳ ମାଧବ ରାଉତରାୟଙ୍କୁ ଉତ୍କୋଚ ଦେଇ ତାଙ୍କୁ ପ୍ରାର୍ଥୀ ପଦରୁ ହଟାଇ ଦେଇଛନ୍ତି । ପ୍ରାଣନାଥଙ୍କର ଜଣେ ଏଜେଣ୍ଟ ହଳଦିଆଗଡ଼ର ଚକ୍ରଧର ସିଂହସାମନ୍ତ ଭୁବନେଶ୍ୱର ଯାଇ କେଦାରଗୌରୀ ପ୍ରେସ୍‌ରେ ଏ ପ୍ରଚାରପତ୍ର ଛପାଇଛନ୍ତି ଓ ତାର ନିଦର୍ଶନ ସ୍ୱରୂପ ପ୍ରେସ୍‌ର ଅର୍ଡ଼ର ବହିରେ ଦସ୍ତଖତ କରିଛନ୍ତି ।

ମୁଁ ପ୍ରାଣନାଥ ବାବୁ ଓ ଶିବାଜୀ ପଟ୍ଟନାୟକଙ୍କ ସହିତ ଏ ବିଷୟରେ ଆଲୋଚନା କଲି । ସେମାନେ ଏକୋଇଶ ତାରଖରେ ଏପରି କୌଣସି ପ୍ରଚାର ପତ୍ର ଛପାଇଥିବା ବିଷୟ ଦୃଢ଼ ଭାବରେ ଅସ୍ୱୀକାର କରିଥିଲେ । ସେମାନେ ବରଂ ଅଭିଯୋଗ କରିଥିଲେ ଯେ ମାତୃଭୂମିରେ ପ୍ରକାଶିତ ସଂବାଦ ପରିପ୍ରେକ୍ଷୀରେ ଏ ପ୍ରଚାର ପତ୍ର ଇଲେକ୍‌ସନ୍ ପରେ ଛପା ଯାଇଛି ଓ ତାକୁ ଭିତ୍ତି କରି ନିର୍ବାଚନ ବୈତରଣୀ ପାର ହେବା ପାଇଁ ବନମାଳୀ ଉଦ୍ୟମ କରିଛନ୍ତି । ଉଭୟ ଶିବାଜୀ ଓ ଚକ୍ରଧର ପ୍ରାଣନାଥ ପଟ୍ଟନାୟକଙ୍କର ଏଜେଣ୍ଟ, ଏଣୁ ସେମାନଙ୍କର ନାମକୁ ଏପରି ଭାବରେ ବ୍ୟବହାର କରାଯାଇଛି । ଆଇନତଃ ଏଜେଣ୍ଟଙ୍କ କାର୍ଯ୍ୟର ଦାୟିତ୍ୱ ପ୍ରାର୍ଥୀଙ୍କ ମୁଣ୍ଡରେ, ସେଥିପାଇଁ ଏ କାରସାଦୀ । ଲୋକ ପ୍ରତିନିଧି ଆଇନର ୧୨୩ ଧାରାର ଚତୁର୍ଥ ଉପଧାରା ଅନୁଯାୟୀ ଜଣେ ପ୍ରାର୍ଥୀ ବା ତାଙ୍କର ଏଜେଣ୍ଟ ଯଦି ଅପର ପକ୍ଷ ପ୍ରାର୍ଥୀଙ୍କର ବ୍ୟକ୍ତିଗତ ଚରିତ୍ର ଓ ଆଚରଣ ଉପରେ ମିଥ୍ୟା ଆକ୍ଷେପ କରନ୍ତି, ତାହେଲେ ତାଙ୍କର ନିର୍ବାଚନ ଅସିଦ୍ଧ ହୁଏ । ବନମାଳୀ ତାଙ୍କ ଆବେଦନ ପତ୍ରରେ ପ୍ରାର୍ଥନା କରିଥିଲେ ଯେ ଚତୁର୍ଥ ଉପଧାରାର ନିଷେଧ ଲଂଘନ କରିଥିବା ହେତୁ ପ୍ରାଣନାଥଙ୍କ ନିର୍ବାଚନକୁ ଅସିଦ୍ଧ ଘୋଷଣା କରାଯାଉ ।

ସପ୍ତାହକ ପରେ ପ୍ରାଣନାଥ ବାବୁଙ୍କ ଅନ୍ତରଂଗ ସହଯାତ୍ରୀ ଲକ୍ଷ୍ମଣ ପଟ୍ଟନାୟକ ଚକ୍ରଧର ସିଂହ ସାମନ୍ତଙ୍କୁ ସାଂଗରେ ଧରି ଆମ ଘରେ ପହଂଚିଲେ । ଚକ୍ରଧରଙ୍କ

ସହିତ ମୋର ପୂର୍ବରୁ ପରିଚୟ ନଥିଲା । ସେ ମୋ ଆଗରେ ସ୍ୱୀକାର କଲେ, ନଗଦ ଦୁଇ ହଜାର ଟଂକା ଓ କିଛି ସରକାରୀ ଜମି ପଟ୍ଟା କରାଇଦେବାର ପ୍ରତିଶ୍ରୁତି ଦେଇ, ନିର୍ବାଚନ ଫଳାଫଳ ଘୋଷିତ ହେବା ପରେ କେଦାରଗୌରୀ ପ୍ରେସର ଅର୍ଡ଼ର ବହିରେ ତାଙ୍କର ଦସ୍ତଖତ୍ ନିଆଯାଇଛି । ତାଙ୍କ କଥାରୁ ମନେ ହେଲା ସେ ଯେପରି ଅତ୍ୟନ୍ତ ଅନୁତପ୍ତ ଏବଂ କୋର୍ଟରେ ସତ କଥା କହିବାକୁ ପ୍ରସ୍ତୁତ ଅଛନ୍ତି । ସବୁ ଘଟଣା ଜାଣିବା ପରେ ମୁଁ ଇଲେକ୍‌ସନ ପିଟିସନ୍‌ର ଜବାବ୍ ପ୍ରସ୍ତୁତ କଲି ଓ ପ୍ରାଣନାଥ ବାବୁଙ୍କୁ ଦେଲି । ଚାରି ପାଂଚ ଦିନ ପରେ ସେ ଫେରିଆସି କହିଲେ, କଲିକତାର ସୁବିଖ୍ୟାତ ବାରିଷ୍ଟର ସ୍ନେହାଂଶୁ ଆଚାର୍ଯ୍ୟଙ୍କୁ ସେ ଏ ଜବାବ ଦେଖାଇଛନ୍ତି ଓ ତାଙ୍କର ମତରେ ପ୍ରତିବାଦୀ ପକ୍ଷ ଜବାବ୍‌ର କୌଣସି ପରିବର୍ତ୍ତନର ଆବଶ୍ୟକତା ନାହିଁ । ଜବାବ୍‌ଟି ନେଇ ମୁଁ ଆଉଥରେ ଅନୁଧ୍ୟାନ କଲି । ବାରିଷ୍ଟର ଆଚାର୍ଯ୍ୟ କେବଳ କେତେକ କମା ପୂର୍ଣ୍ଣଛେଦ ପରିବର୍ତ୍ତନ କରିଛନ୍ତି ।

ସେପ୍ଟେମ୍ବର ମାସ ଶେଷ ଆଡ଼କୁ ପୁରୀର ଜିଲ୍ଲା ଜଜ୍ ଟି.ଭି. ରାଓଙ୍କ ଇଜ୍‌ଲାସରେ ବିଚାର ଆରମ୍ଭ ହେଲା । ମୁଖ୍ୟ ବିବାଦୀୟ ବିଷୟବସ୍ତୁ ଥିଲା ମାର୍ଚ୍ଚ ୨୧ ତାରିଖର ଉପରୋକ୍ତ ପ୍ରଚାରପତ୍ର କମ୍ୟୁନିଷ୍ଟ ପାର୍ଟି ପ୍ରକାଶ କରିଛନ୍ତି କି ନାହିଁ ଏବଂ ତାଦ୍ୱାରା ବନମାଳୀ ପଟ୍ଟନାୟକଙ୍କର ବ୍ୟକ୍ତିଗତ ଚରିତ୍ର ଓ ଆଚରଣ ଉପରେ ମିଥ୍ୟା ଆକ୍ଷେପ କରାଯାଇଛି କି ନାହିଁ । ପ୍ରତିବାଦୀଙ୍କର ବକ୍ତବ୍ୟ ଥିଲା, ଏପରି ପ୍ରଚାର ପତ୍ର ପ୍ରକାଶିତ ହୋଇନାହିଁ ଏବଂ ଯଦି ପ୍ରକାଶିତ ହୋଇଛି ବୋଲି ପ୍ରମାଣିତ ହୁଏ ତେବେ ତଦ୍ୱାରା ବନମାଳୀଙ୍କ ବ୍ୟକ୍ତିଗତ ଚରିତ୍ର ଓ ଆଚରଣର ମିଥ୍ୟା ସମାଲୋଚନା କରାଯାଇ ନାହିଁ । ଆବେଦନକାରୀଙ୍କ ପକ୍ଷରୁ ପ୍ରଥମ ସାକ୍ଷୀ କେଦାରଗୌରୀ ପ୍ରେସ ମ୍ୟାନେଜର ପି.ସି. ମିତ୍ର ଚକ୍ରଧର ସିଂହସାମନ୍ତ କିପରି ତାଙ୍କ ପ୍ରେସରେ ବିବାଦୀୟ ପ୍ରଚାରପତ୍ର ଛପାଇବା ପାଇଁ ଅର୍ଡ଼ର ଓ ଅଗ୍ରୀମ ଦେଇଥିଲେ ଓ ଅର୍ଡ଼ର ବହିରେ ଦସ୍ତଖତ କରିଥିଲେ ତାହା ପ୍ରମାଣ କରିଥିଲେ । ପ୍ରତିବାଦୀ ତରଫର ଜେରାରେ ସେ ସ୍ୱୀକାର କରିଥିଲେ ଯେ ଅର୍ଡ଼ର ବହିର ଯେଉଁ ପୃଷ୍ଠାରେ ଚକ୍ରଧରଙ୍କ ଦସ୍ତଖତ୍ ଅଛି, ତାହାର କାଳି ଅନ୍ୟ ପୃଷ୍ଠାମାନଙ୍କଠାରୁ ଭିନ୍ନ ଏବଂ ଲୁସ୍ ସିଲେଇ ହୋଇଥିବା ଏହି ଅର୍ଡ଼ର ବହିର ସେହି ପୃଷ୍ଠା ମଝିରେ ଥିବା ସୂତାରେ ଗୋଟିଏ ଗଣ୍ଠି ପଡ଼ିଛି । ସିଲେଇ ଛିଣ୍ଡା ହୋଇ ଏ ପୃଷ୍ଠାଟି ବହିରେ ପରେ ଭର୍ତ୍ତି କରାଯାଇ ଆଉଥରେ ସିଲେଇ କରାଯାଇଛି ବୋଲି ମୁଁ ଯେଉଁ ସୂଚନା ଦେଇଥିଲି,

ସେ ତାହା ଅସ୍ୱୀକାର କଲେ ମଧ୍ୟ , ସିଲେଇ ମଝିରେ ଥିବା ଗଣ୍ଠି ମୋର ସୂଚନାର ସତ୍ୟତା ସ୍ପଷ୍ଟ ପ୍ରତିପାଦନ କରୁଥିଲା । ଏହି ପ୍ରକାରର କାର୍ଯ୍ୟ ପାଇଁ ତାଙ୍କୁ ପରେ ପ୍ରେସରୁ ବିତାଡ଼ିତ କରାଯାଇଛି ବୋଲି ପ୍ରେସ୍ ମାଲିକଙ୍କର ଖଣ୍ଡେ ଚିଠି ତାଙ୍କ ଛରିଆରେ ପ୍ରମାଣ କରିଥିଲୁ । ମୁଁ ପରିହାସରେ ପଚାରିଲି, ସାକ୍ଷୀ ମିତ୍ର କ'ଣ ବନମାଳୀ ପଟ୍ଟନାୟକଙ୍କର ବଂଧୁ ନା କଂଗ୍ରେସ ନେତା ବୀରେନ୍ ମିତ୍ରଙ୍କର ସଂପର୍କୀୟ ? ଏ ପ୍ରଶ୍ନରେ କୋର୍ଟରେ ହାସ୍ୟରୋଳ ଉଠିଲା ।

ବନମାଳୀ ପଟ୍ଟନାୟକଙ୍କୁ କ'ଣ ଜେରା କରାଯିବ, ସେଥିପାଇଁ ମୁଁ ଓ ପ୍ରାଣନାଥ ବାବୁ ଆଶୋକ ଦାସ ଓ ଅନ୍ୟ ଜଣେ ଦୁଇଜଣ ବରିଷ୍ଠ ଆଡ୍‌ଭୋକେଟଙ୍କ ସହିତ ପରାମର୍ଶ କରିଥିଲୁ । ସମସ୍ତେ ପରାମର୍ଶ ଦେଲେ, ବିବାଦୀୟ ପ୍ରଚାର ପତ୍ରରେ ଉଲ୍ଲିଖିତ ବିଷୟର ସତ୍ୟତା ସଂପର୍କରେ ତାଙ୍କୁ ବିଭିନ୍ନ ଦିଗରୁ ପ୍ରଶ୍ନ କରାଯିବା ଉଚିତ । ବିବାଦୀୟ ପ୍ରଚାରପତ୍ରରେ ଉଲ୍ଲିଖିତ ଅଭିଯୋଗ ମିଥ୍ୟା ବୋଲି ବନମାଳୀଙ୍କ ଆବେଦନ ପତ୍ରରେ କେଉଁଠାରେ ଉଲ୍ଲେଖ ନଥିଲା । ମୋର ଅନୁମାନ ଥିଲା ଯେ ଆବେଦନ ପତ୍ରରେ ଯାହା ଲେଖା ଅଛି, ତାଙ୍କ ଜମାନବଂଦୀରେ ସେ ସେତିକି ମାତ୍ର କହିବେ । ମୁଁ ଯଦି ତାଙ୍କୁ ଏ ବିଷୟରେ ପ୍ରଶ୍ନ କରେ, ସେ ନିଶ୍ଚୟ କହିବେ ଯେ ପ୍ରଚାର ପତ୍ରରେ ଉଲ୍ଲିଖିତ ଅଭିଯୋଗ ମିଥ୍ୟା । ଏଣୁ ଜେରାରେ ପ୍ରଶ୍ନ କରି ତାଙ୍କୁ ତ୍ରୁଟି ସୁଧାରି ନେବା ପାଇଁ ସୁଯୋଗ ଦେବା ଉଚିତ ନୁହେଁ, ବରଂ ଅବହେଳାର ସୁବିଧା ନେବା ଉଚିତ । ଜଟିଳ ପରିସ୍ଥିତିରେ ବା ବିବଦମାନ ସମସ୍ୟା ଉପସ୍ଥିତ ହେଲେ, ଅନ୍ୟମାନଙ୍କ ସହିତ ପରାମର୍ଶ କରିବା ମୋର ଅଭ୍ୟାସ । କିନ୍ତୁ ମୁଁ କାର୍ଯ୍ୟକରେ ନିଜର ବିଚାର ସଂଭୂତ ନିଷ୍ପତ୍ତି ଉପରେ । ଯାହା ମୁଁ ଅନୁମାନ କରିଥିଲି, ତାହାହିଁ ସତ୍ୟ ହେଲା । ଆବେଦନ ପତ୍ରରେ ଉଲ୍ଲିଖିତ ବିଷୟ ବାହାରେ ସେ ତାଙ୍କ ଜମାନବଂଦୀରେ ଅନ୍ୟ କିଛି କହିଲେ ନାହିଁ । ମୁଁ ବନମାଳୀ ପଟ୍ଟନାୟକଙ୍କୁ ବିଭିନ୍ନ ବିଷୟରେ ଦିନସାରା ଜେରା କଲେ ମଧ୍ୟ, ମାଧବ ରାଉତରାୟଙ୍କୁ ଉତ୍କୋଚ ଦେବା ସଂପର୍କରେ କିଛି ପଚାରି ନଥିଲି। ଗୋଟିଏ ପ୍ରଶ୍ନର ଉତ୍ତରରେ ସେ ସ୍ୱୀକାର କରିଥିଲେ ଯେ କଂଗ୍ରେସ ଦଳର ନିର୍ବାଚନ ପାଣ୍ଠି ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ, ବିଶ୍ୱନାଥ ଦାସ ଓ ନିତ୍ୟାନନ୍ଦ କାନୁନ୍‌ଗୋ ନିୟନ୍ତ୍ରଣ କରନ୍ତି । ସେମାନଙ୍କ ମଧ୍ୟରୁ କେହି କାହିଁକି ସାକ୍ଷ୍ୟ ଦେଇ ନାହାନ୍ତି, ଏ ପ୍ରଶ୍ନର ସେ କୌଣସି ସନ୍ତୋଷଜନକ ଉତ୍ତର ଦେଇ ପାରିନଥିଲେ । ସେ ଦିନର କୋର୍ଟ କାର୍ଯ୍ୟ ଶେଷ ହେବା ପରେ ଆମେ ଯେତେବେଳେ ବାହାରକୁ ଆସିଲୁ, ମୁଁ

ବନମାଳୀ ପଟ୍ଟନାୟକଙ୍କୁ ଜୋରରେ କୁଣ୍ଢାଇ ପକାଇ କହିଲି "ତୁମେ ମତେ କ୍ଷମା କରିବ, କର୍ତ୍ତବ୍ୟାନୁରୋଧରେ ଯାହା ଆବଶ୍ୟକ, ମୁଁ କେବଳ ତାହା ହିଁ କରୁଚି ।"

ଚକ୍ରଧର ସିଂହ ସାମନ୍ତ ପ୍ରତିବାଦୀଙ୍କର ମୁଖ୍ୟ ସଫେଇ ସାକ୍ଷୀ । ସେ ଥିଲେ କମ୍ୟୁନିଷ୍ଟ ପାର୍ଟିର ଜଣେ ବଳିଷ୍ଠ ସମର୍ଥକ । ନିର୍ବାଚନରେ ମଧ୍ୟ ସେ ପ୍ରାଣନାଥ ପଟ୍ଟନାୟକଙ୍କର 'କାଉଣ୍ଟିଂ ଏଜେଣ୍ଟ୍' ଥିଲେ, ଅଥଚ ଅର୍ଥ ଲୋଭରେ କଂଗ୍ରେସ ଦ୍ୱାରା ପ୍ରତାରିତ ହୋଇ କେଦାରଗୌରୀ ପ୍ରେସ୍‌ର ଅର୍ଡ଼ର ବହିରେ ସ୍ୱାକ୍ଷର କରି ଦେଇ ଆସିଥିଲେ । ସେ ଯେତେବେଳେ ଅନୁତପ୍ତ ହୋଇ, ବିଶେଷତଃ ସ୍ତ୍ରୀଙ୍କଠାରୁ ଭର୍ତ୍ସନା ଶୁଣି ସାକ୍ଷ୍ୟ ଦେବା ପାଇଁ ଆଗେଇ ଆସିଲେ, ଆମ୍ଭେମାନେ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଲୁ । ଅପରାଧରେ ଭାଗୀଦାର ବା ଆକଂପ୍ଲିସ୍‌ର ସାକ୍ଷ୍ୟ ପ୍ରାମାଣିକ ସମର୍ଥନ ବିନା ଗ୍ରହଣ ଯୋଗ୍ୟ ନୁହେଁ । 'ସତ୍ୟ' ଅନେକ ସମୟରେ 'ମିଥ୍ୟା'ଠାରୁ ମଧ୍ୟ ଚାଂଚଲ୍ୟକର ମନେ ହୁଏ । ତଥାପି, ସତ୍ୟର ବିକଳ୍ପ ନାହିଁ । ଏଣୁ ପରିଣତି ଯାହା ହେଉନା କାହିଁକି, ଚକ୍ରଧରଙ୍କୁ ସାକ୍ଷୀ ଭାବରେ ଉପସ୍ଥାପିତ କରାଗଲା । ତାଙ୍କର ଉପସ୍ଥିତି ଓକିଲ ଓ ଦର୍ଶକମାନଙ୍କ ମଧ୍ୟରେ ବେଶ୍ କୌତୁହଳ ସୃଷ୍ଟି କରିଥିଲା । କୋର୍ଟରେ ମଧ୍ୟ ସେ ଦିନ ଏକ ପ୍ରକାର ନାଟକୀୟ ପରିସ୍ଥିତି ସୃଷ୍ଟି ହେଲା । ଜଜ୍‌କୋର୍ଟରେ ଏକ ପକ୍ଷରେ ପ୍ରାଣନାଥ ପଟ୍ଟନାୟକ ଓ ଅନ୍ୟ ପଟରେ ବନମାଳୀ ପଟ୍ଟନାୟକଙ୍କୁ ଦେଖି ତାଙ୍କ ମୁଣ୍ଡ ବୁଲାଇବାକୁ ଆରମ୍ଭ କଲା ଓ ସେ ତଳେ ବସି ପଡ଼ିଲେ । ମୁଣ୍ଡରେ ପାଣି ଛିଂଚିବା ପରେ ତାଙ୍କର ହୋସ୍ ଫେରି ଆସିଲା ଓ ତା' ପରେ ସତ୍ୟ ଘଟଣା ସବୁ ସେ ଅନର୍ଗଳ କହି ଚାଲିଲେ । ମୋର ମନେ ଅଛି, ପ୍ରତିପକ୍ଷର ଜେରାରେ ସେ ଭାଂଗି ପଡ଼ି ନଥିଲେ ବା କୌଣସି ଭୁଲ ଉତ୍ତର ଦେଇ ନଥିଲେ ।

ଚକ୍ରଧରଙ୍କ ସାକ୍ଷ୍ୟର ଅନ୍ତର୍ନିହିତ ଦୁର୍ବଳତା ବିଷୟରେ ଆମ୍ଭେମାନେ ସଚେତନ ଥିଲୁ । ତାଙ୍କର ଆଚରଣ ପରସ୍ପର ବିରୋଧୀ, ଏଣୁ ହୁଏତ ଗ୍ରହଣୀୟ ହୋଇ ନପାରେ, ସେଥିପାଇଁ ମୁଁ ଓ ପ୍ରାଣନାଥ ବାବୁଙ୍କର ଦୃଢ଼ ସହଯୋଗୀ ଲକ୍ଷ୍ମଣ ପଟ୍ଟନାୟକ ଏକ ସାହସିକ ନିଷ୍ପତ୍ତି ନେଲୁ । ନିର୍ବାଚନ ପରେ ବିବାଦୀୟ ପ୍ରଚାର ପତ୍ର କେଉଁ ପ୍ରେସ୍‌ରେ ଛପା ଯାଇଛି ସେ ବିଷୟରେ ସାକ୍ଷ୍ୟ ପ୍ରମାଣ ଦେବାକୁ ହେବ । କଟକ ଚାନ୍ଦନୀଚୌକର ଗୋଟିଏ ପ୍ରେସ୍‌ର ଜଣେ କଂପୋଜିଟର,

ନିର୍ବାଚନ ପରେ ଏ ପ୍ରଚାରପତ୍ର କଂପୋଜ କରିଛନ୍ତି ଓ ତାଙ୍କ ପ୍ରେସ୍‌ରେ ଏହା ଛପାଯାଇଛି ବୋଲି ଜମାନବନ୍ଦୀ ଦେଇଥିଲେ । ବହୁ ଛପା କାର୍ଯ୍ୟ ମଧ୍ୟରେ ଏହି ନିର୍ଦ୍ଦିଷ୍ଟ ପ୍ରଚାରପତ୍ର କଥା କାହିଁକି ମନେ ଅଛି ବୋଲି ପ୍ରତିପକ୍ଷ ଓକିଲ ବିବୁଧେନ୍ଦ୍ର ମିଶ୍ରଙ୍କ ଜେରାରେ କଂପୋଜିଟର ଉତ୍ତର ଦେଲେ, ନିର୍ବାଚନ ଶେଷ ହେବାର ଦୁଇ ସପ୍ତାହ ପରେ ଏପରି ଏକ ପ୍ରଚାର ପତ୍ର ଛପା ହେବା ଘଟଣା ଅସ୍ୱାଭାବିକ ଥିବାରୁ, ତାହା ତାଙ୍କର ମନେ ଅଛି । ପ୍ରେସ୍‌ର ପରିଚାଳକ ଶ୍ରୀ ସତ୍ୟସୁନ୍ଦର ମିଶ୍ର (ପରେ ଖଣ୍ଡପଡ଼ାର ଏମ.ଏଲ୍.ଏ) ବନମାଳୀ ପଟ୍ଟନାୟକଙ୍କ ବରାଦ ଅନୁଯାୟୀ ଏହା ଛପା ଯାଇଥିଲା ବୋଲି ସାକ୍ଷ୍ୟ ଦେଇଥିଲେ । ସେତେବେଳେକୁ ଆବେଦନକାରୀ ପକ୍ଷର ସାକ୍ଷ୍ୟ ପ୍ରମାଣ ଶେଷ ହୋଇଥିଲା ଏବଂ ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ନାମ ଆବେଦନାକରୀଙ୍କ ସାକ୍ଷୀ ତାଲିକାରେ ନଥିଲା । ଏହା ସତ୍ତ୍ୱେ ଆବେଦନକାରୀଙ୍କ ଦରଖାସ୍ତ ମଂଜୁର କରି ବିଚାରକ ଟି.ଭି. ରାଓ ପ୍ରେସ୍‌ର ମାଲିକ ଓ ପାଠ୍ୟ ପୁସ୍ତକ ଲେଖକ- ପ୍ରକାଶକ ଭୁବନେଶ୍ୱର ମିଶ୍ରଙ୍କୁ ସାକ୍ଷୀ ଭାବରେ ତଲବ କରିଥିଲେ । ପଣ୍ଡିତ ମିଶ୍ର ପୁତ୍ର ସତ୍ୟ ସୁନ୍ଦରର ବୟାନ ସତ୍ୟ ନୁହେଁ ବୋଲି ସାକ୍ଷ୍ୟ ଦେଇଥିଲେ । ଏହି ସାକ୍ଷ୍ୟ ପ୍ରମାଣ, ପିତା ପୁତ୍ର ଲଢ଼େଇ, ଚକ୍ରଧରଙ୍କର ନାଟକୀୟ ବୟାନ କୋର୍ଟରେ ବେଶ୍ ଚାଂଚଲ୍ୟ ସୃଷ୍ଟି କରିଥିଲା ।

ଖୋର୍ଦ୍ଧା କେସ୍ ଆରମ୍ଭ ହେବା ପୂର୍ବରୁ ଦଶପଲ୍ଲା ନିର୍ବାଚନ ମୋକଦ୍ଦମାର ବିଚାର ପୁରୀ ଜିଲ୍ଲା ଜଜ୍‌ଙ୍କ କୋର୍ଟରେ ଚାଲିଥିଲା । ବାଣପୁରର ପଣ୍ଡିତ ରଘୁନାଥ ମିଶ୍ର କଂଗ୍ରେସ ମନ୍ତ୍ରୀ ଦଶପଲ୍ଲା ରାଜାଙ୍କ ନିର୍ବାଚନକୁ ଅବୈଧ ଘୋଷଣା କରିବା ପାଇଁ ଆବେଦନ କରିଥିଲେ । ରଘୁନାଥ ମିଶ୍ରଙ୍କ ତରଫରୁ କଟକର ବିଶିଷ୍ଟ ଆଡ଼୍‌ଭୋକେଟ୍ ହରିହର ମହାପାତ୍ର ଓ ରଙ୍ଗନାଥ ମିଶ୍ର ଏବଂ କଂଗ୍ରେସ ପକ୍ଷରୁ ବିବୁଧେନ୍ଦ୍ର ମିଶ୍ର ମୋକଦ୍ଦମା ଚଳାଉଥିଲେ । ଖୋର୍ଦ୍ଧା କେସ୍‌ର ବିଚାର ସରି ଆସିଲା ବେଳକୁ ଦଶପଲ୍ଲା କେସ୍‌ର ରାୟ ପ୍ରକାଶ ପାଇଲା ଓ କଂଗ୍ରେସ ମନ୍ତ୍ରୀଙ୍କ ନିର୍ବାଚନ କାଏମ୍ ରହିଲା । କଂଗ୍ରେସ ପାର୍ଥୀଙ୍କ ସପକ୍ଷରେ ରାୟ ପ୍ରକାଶ ପାଇବା ପରେ ପୁରୀର ଅନେକ ଓକିଲ ବନ୍ଧୁ ଫୁସ୍‌ଫାସ ହେଲେ, ପ୍ରାଣନାଥ ପଟ୍ଟନାୟକ ମଧ୍ୟ ହାରିଯିବେ, କାରଣ ରାଓ କଂଗ୍ରେସ ସପକ୍ଷବାଦୀ ଲୋକ, ସରକାର ଯୁଆଡ଼େ, ସେ ସିଆଡ଼େ । ମୁଁ କିନ୍ତୁ ଏ ଜନରବରେ ବିଶ୍ୱାସ କରୁ ନଥିଲି ।

ଖୋର୍ଦ୍ଧା କେସ୍‌ର ସାକ୍ଷୀ ଜମାନବନ୍ଦୀ ଶେଷ ହେବା ପରେ ଦୁଇ ତିନି ଦିନ ବ୍ୟବଧାନରେ ସୁଆଲ ଜବାବ ଆରମ୍ଭ ହେଲା । ଉଭୟ ପକ୍ଷର ବାଦାନୁବାଦ ଶୁଣିବା ପରେ ରାୟ ପାଇଁ ମୋକଦ୍ଦମା ମୁଲତବୀ ରହିଲା । ପ୍ରାୟ ଦଶ ପନ୍ଦର ଦିନ ପରେ ଦିନେ ସମାଚାର ସଂଧ୍ୟା ସଂସ୍କରଣରେ ପଢ଼ିଲି, ଖୋର୍ଦ୍ଧା ନିର୍ବାଚନ ମୋକଦ୍ଦମାର ରାୟ ପ୍ରକାଶ ପାଇଛି । ବନମାଳୀ ପଟ୍ଟନାୟକଙ୍କ ଆବେଦନ ମଂଜୁର ହୋଇଅଛି ଓ ପ୍ରାଣନାଥ ପଟ୍ଟନାୟକଙ୍କ ନିର୍ବାଚନ ଅସିଦ୍ଧ ଘୋଷିତ ହୋଇଛି । ମୋ ଭିତରେ ବିଦ୍ରୋହର ଦାବାନଳ ଜଳିବାକୁ ଆରମ୍ଭ କଲା । ସାରା ରାତି ମୁଁ ଶୋଇ ପାରିଲି ନାହିଁ । ମନେହେଲା, ନ୍ୟାୟ ବିଚାରର ଏକ ପ୍ରହସନ ମଧ୍ୟରେ, ଦୁନିଆର ସମସ୍ତ ଅନ୍ୟାୟ ପ୍ରାଣନାଥଙ୍କ ଉପରେ ଚାପି ଦିଆଯାଇଛି । ଅସତ୍ୟ ଅଭିଯୋଗ ଉପରେ ଜନତାର ରାୟକୁ ବିଚାରପତି ବାତିଲ କରିଦେଇଛନ୍ତି ।

ଦୁଇ ଦିନ ପରେ ପ୍ରାଣନାଥ ବାବୁ ରାୟ ନକଲ ଧରି କଟକରେ ପହଂଚଲେ । ଦୁଃଖରେ ସେ ଭାଙ୍ଗି ପଡ଼ିଥିଲେ ମଧ୍ୟ ଅନ୍ୟାୟର ପ୍ରତିକାର ପାଇଁ ଦୃଢ଼ ପରିକର ଥିଲେ । ରାୟ ନକଲ ପଢ଼ି ମୁଁ ଅନୁଭବ କଲି, ହାଇକୋର୍ଟରେ ଅପିଲ କଲେ ଟ୍ରାଇବ୍ୟୁନାଲଙ୍କ ନିଷ୍ପତ୍ତି ଖାରଜ ହୋଇଯିବ । ଏହି ସମୟରେ ବ୍ରହ୍ମପୁରର ପ୍ରବୀଣ ଆଡ୍‌ଭୋକେଟ୍ ଓ୍ୱାଇ ସନ୍ୟାସୀ ରାଓ ଅନ୍ୟ କାମରେ କଟକ ଆସିଥିଲେ । ପାର୍ଲିଆମେଣ୍ଟ ସଦସ୍ୟ ବିଜୟ ଚନ୍ଦ୍ର ଦାସଙ୍କର ସେ ଘନିଷ୍ଠ ବଂଧୁ ଓ ସେହି ସୂତ୍ରରେ ତାଙ୍କ ସହିତ ବିଶେଷ ପରିଚୟ । ୧୯୫୨ ମସିହାରେ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବିଜୟ ଚନ୍ଦ୍ର ଦାସଙ୍କ ବିରୁଦ୍ଧରେ ଦାଏର କରିଥିବା ନିର୍ବାଚନ ମୋକଦ୍ଦମାରେ ସେ ବିଜୟ ଦାସଙ୍କ ଆଡ଼ଭୋକେଟ ଅନ୍ଧ ବାରିଷ୍ଟର ସାଧନ ଗୁପ୍ତଙ୍କର ସହଯୋଗୀ ଥିଲେ । ଆମେ ତାଙ୍କୁ ରାୟ ନକଲ ଓ ହାଇକୋର୍ଟ ଅପିଲ୍ ପାଇଁ ପ୍ରସ୍ତୁତ କରିଥିବା ଗ୍ରାଉଣ୍ଡର ନକଲ ଦେଖାଇଲୁ । ସେ ମୋ ସହିତ ଏକମତ ହେଲେ ଯେ ଅପିଲ୍‌ରେ ଜୟଲାଭ କରିବାର ସଂଭାବନା ଖୁବ୍ ଉଜ୍ଜ୍ୱଳ । ପ୍ରାଣନାଥ ବାବୁ କାଗଜପତ୍ର ନେଇ . ଅବସରପ୍ରାପ୍ତ ପ୍ରଧାନ ବିଚାରପତି ବୀର କିଶୋର ରାୟଙ୍କ ସହିତ ପରାମର୍ଶ କଲେ । ସେ ମଧ୍ୟ ଅନୁରୂପ ମତ ଦେଲେ । କିନ୍ତୁ ତାଙ୍କର ମନ ବୋଧହୁଏ ମାନିଲା ନାହିଁ । ସେ ଦିନେ କାଗଜପତ୍ର ଧରି କଲିକତା ଚାଲିଲେ, ହାଇକୋର୍ଟ ଅପିଲ ପାଇଁ ସ୍ନେହାଂଶୁ ଆଚାର୍ଯ୍ୟଙ୍କୁ ନିଯୁକ୍ତ କରିବା ନିମନ୍ତେ । ଦୁଇ ମାସ ପର୍ଯ୍ୟନ୍ତ ତାଙ୍କ ସହିତ ଆଉ ସାକ୍ଷାତ ନାହିଁ । କଲିକତାରେ କ'ଣ ଆଲୋଚନା ହେଲା ଜଣା ନାହିଁ । ୧୯୫୮ ମସିହା ଫେବୃୟାରୀ ମାସରେ

ଅପିଲ ବିଚାର ପାଇଁ ଲିଷ୍ଟରେ ବାହାରିଲା । ଶୁଣାଣିର ଦୁଇ ଦିନ ଆଗରୁ ଦିନେ ସଂଧ୍ୟାରେ ଫାଇଲ କାଖରେ ଯାକି, ହସ ହସ ମୁହଁରେ ପ୍ରାଣନାଥ ବାବୁ ଆମ ଘରେ ପହଂଚିଲେ । ସାଂଗରେ ଥିଲେ ଲକ୍ଷ୍ମଣ ପଟ୍ଟନାୟକ । ତାଙ୍କର ଅନୁରୋଧ, ମୋତେ ହାଇକୋର୍ଟରେ ଆର୍ଗୁମେଣ୍ଟ କରିବାକୁ ହେବ ।

ସେ ବର୍ଷ ଇଲେକ୍‌ସନ୍ ଅପିଲଗୁଡ଼ିକର ବିଚାର ପାଇଁ ଚିଫ୍ ଜଷ୍ଟିସ ଆର.ଏଲ୍. ନରସିମହମ୍ ଓ ଜଷ୍ଟିସ୍ ପି.ଭି.ବି. ରାଓଙ୍କୁ ନେଇ ଏକ ସ୍ୱତନ୍ତ୍ର ବେଂଚ୍ ଗଠିତ ହୋଇଥାଏ । ଲିଷ୍ଟରେ ତାଲିକାଭୁକ୍ତ ପ୍ରଥମ କେସ୍ ଥିଲା ଭୋଗରାଇ ନିର୍ବାଚନ ମଣ୍ଡଳୀର ଇଲେକସନ୍ ଅପିଲ୍ । ନିର୍ବାଚିତ ବିଧାୟକଙ୍କର ପ୍ରତିଦ୍ୱନ୍ଦୀ ପ୍ୟାରୀମୋହନଙ୍କ ତରଫରୁ ଆଡ଼ଭୋକେଟ୍ ଅଶୋକ ଦାସ ଓ ବିଧାୟକ ଦୁର୍ଗାଶଙ୍କରଙ୍କ ପକ୍ଷରୁ ମୁଁ ବାଦାନୁବାଦ କରିଥିଲୁ । ଅଶୋକ ବାବୁ ହାରିଗଲେ ଓ ଦୁର୍ଗାଶଙ୍କରଙ୍କ ନିର୍ବାଚନ କାଏମ୍ ରହିଲା । ମନେ ଅଛି, ମୁଁ ଯେତେବେଳେ ପ୍ରତିବାଦୀ ଦୁର୍ଗାଶଙ୍କରଙ୍କ ତରଫରୁ ସୁଆଲ ଜବାବ୍ କରିବାକୁ ଠିଆ ହେଲି, ଚିଫ୍ ଜଷ୍ଟିସ୍ ପଚାରିଲେ, ମୁଁ ଏକା ଏ ଅପିଲ୍‌ରେ ବାଦାନୁବାଦ କରିବି ନା ମୋ ସହିତ ଅନ୍ୟ କେହି ଆଡ଼୍‌ଭୋକେଟ୍ ଅଛନ୍ତି ? ଏତେ ବଡ଼ କେସ୍ ଚଳାଇବା ପାଇଁ ମୋର ଦକ୍ଷତା ଉପରେ ତାଙ୍କ ମନରେ ବୋଧହୁଏ ସଂଶୟ । ମୁଁ ଏ ପ୍ରଶ୍ନରେ ବିବ୍ରତ ହେଲି ନାହିଁ । ମୋର ଓକିଲାତି ଜୀବନର ପରମାୟୁ ସେତେବେଳକୁ ମାତ୍ର ତିନ ବର୍ଷ । କିନ୍ତୁ ଏହି କେସ୍‌ର ସଫଳତା ମୋ ପାଇଁ ଥିଲା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଆତ୍ମ ବିଶ୍ୱାସ ଉପରେ ଭରସା ରଖିବାକୁ ଏହା ପରେ ମୁଁ କେବେ କୁଣ୍ଠିତ ହୋଇ ନାହିଁ ।

ପ୍ରାଣନାଥ ପଟ୍ଟନାୟକଙ୍କ ଅପିଲରେ ମୋର ସହକାରୀ ଥିଲେ ଆଡ଼ଭୋକେଟ୍ ଶରତ୍ ଚନ୍ଦ୍ର ମହାପାତ୍ର (ବର୍ତ୍ତମାନ ମାନ୍ୟବର ଜଷ୍ଟିସ୍ ମହାପାତ୍ର) । ମୁଁ ଯେତେବେଳେ ବିଚାରପତିମାନଙ୍କୁ ସମ୍ବୋଧନ କରି କେସ୍‌ର ବିଷୟବସ୍ତୁ ଉପସ୍ଥାପନ କରିବାକୁ ଆରମ୍ଭ କଲି, ଚିଫ୍ ଜଷ୍ଟିସ ନରସିଂହମ୍ ପଚାରିଲେ "ମିଷ୍ଟର ରଥ ! ତୁମେ ଏଥି ପୂର୍ବରୁ କଂଗ୍ରେସ ଦଳ ପକ୍ଷରୁ ଆର୍ଗୁମେଣ୍ଟ କରୁଥିଲ, ବର୍ତ୍ତମାନ କମ୍ୟୁନିଷ୍ଟ ଦଳ ପକ୍ଷରୁ ବାଦାନୁବାଦ କରିବାକୁ ବାହାରିଛ । ତୁମେ କେଉଁ ଦଳର ସମର୍ଥକ ?"

ମୁଁ ଆବେଗପୂର୍ଣ୍ଣ କଂଠରେ କହିଲି "ମୁଁ ଦୀର୍ଘ ଆଠ ବର୍ଷ ହେଲା କୌଣସି ରାଜନୈତିକ ଦଳ ସହିତ ସଂପୃକ୍ତ ନୁହେଁ । କିନ୍ତୁ ଜଣେ ନିଷ୍ଠାପର ଦେଶସେବୀ, ୧୯୩୭ ମସିହାରୁ ଯେ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀର ପ୍ରତିନିଧିତ୍ୱ କରିଆସୁଛନ୍ତି, ବିଚାରର ପ୍ରହସନରେ ଦୋଷୀ ସାବ୍ୟସ୍ତ ହୋଇ ସେ ଆଜି

ନ୍ୟାୟ ବିଚାର ପାଇଁ ମାନ୍ୟବର ବିଚାରପତିମାନଙ୍କର ଦ୍ୱାରସ୍ଥ । ମୁଁ କେବଳ ତାଙ୍କରି ପକ୍ଷ ସମର୍ଥନ କରିବା ପାଇଁ ଦଣ୍ଡାୟମାନ ।''

ବିଚାରପତି ପି.ଭି.ବି. ରାଓ ସାମାନ୍ୟ ଉତ୍ତେଜିତ ହୋଇ କହିଲେ ''ଇଲେକ୍‌ସନ୍ ଟ୍ରାଇବ୍ୟୁନାଲର ବିଚାରକୁ ତୁମେ ପ୍ରହସନ ଆଖ୍ୟା ଦେଉଛ, ଏପରି କଟୁ ମନ୍ତବ୍ୟ ତୁମେ ପ୍ରମାଣ କରି ପାରିବ ?''

ମୁଁ ନମ୍ର ଭାବରେ ଉତ୍ତର ଦେଲି ''ମହାମାନ୍ୟ ବିଚାରପତିଗଣ ! ଏ କେସ୍‌ର ବିସ୍ତୃତ ବିବରଣୀ ଉପସ୍ଥାପିତ କରିବା ପୂର୍ବରୁ, ମତେ ଯଦି ଅନୁମତି ମିଳେ, ତାହାହେଲେ ପାଂଚ ମିନିଟ୍ ମଧ୍ୟରେ ଏ ଅଭିଯୋଗର ଯଥାର୍ଥତା ପ୍ରମାଣ କରି ଦେଇ ପାରିବି ।''

ତାପରେ ଲୋକ ପ୍ରତିନିଧି ନିର୍ବାଚନ ଆଇନର ୧୨୩ ଧାରାର ଚତୁର୍ଥ ଉପଧାରାରେ ବର୍ଣ୍ଣିତ ଅପରାଧ ପ୍ରତି ବିଚାରପତିମାନଙ୍କର ଦୃଷ୍ଟି ଆକର୍ଷଣ କରି କହିଲି, ''ଯଦି କୌଣସି ପ୍ରାର୍ଥୀ ବା ତାଙ୍କର ଏଜେଣ୍ଟ୍ ପ୍ରତିଦ୍ୱନ୍ଦୀଙ୍କର ବ୍ୟକ୍ତିଗତ ଚରିତ୍ର ଓ ଆଚରଣ ସଂପର୍କରେ ମିଥ୍ୟା ପ୍ରଚାର କରନ୍ତି, ତାହାହେଲେ ତାଙ୍କର ନିର୍ବାଚନ ଅସିଦ୍ଧ ହେବ । କିନ୍ତୁ ବ୍ୟକ୍ତିଗତ ଚରିତ୍ର ଉପରେ ଆକ୍ଷେପ ଯେ ମିଥ୍ୟା, ତାର ପ୍ରମାଣ ଦାୟିତ୍ୱ ଆବେଦନକାରୀଙ୍କ ଉପରେ ନ୍ୟସ୍ତ । ଏ କ୍ଷେତ୍ରରେ ବିବାଦୀୟ ପ୍ରଚାର ପତ୍ରରେ ବର୍ଣ୍ଣିତ ସ୍ୱାଧୀନ ପ୍ରାର୍ଥୀଙ୍କୁ ଉତ୍କୋଚ ଦେବା ଅଭିଯୋଗ ଯେ ମିଥ୍ୟା, ଅର୍ଜି ବା ଆବେଦନ ପତ୍ରରେ ତାର କୌଣସି ଉଲ୍ଲେଖ ନାହିଁ । ଆବେଦନକାରୀ ନିଜେ ଏ ବିଷୟରେ ନୀରବ । ତାଙ୍କ ଜମାନବନ୍ଦୀରେ ମଧ୍ୟ ସେ ଏ ବିଷୟରେ ପଦେ ହେଲେ କହି ନାହାନ୍ତି । ନଥି ଅନାବୃତ କଲେ, ଆପଣମାନେ ମୁହୂର୍ତ୍ତକ ମଧ୍ୟରେ ତାହା ଦେଖି ପାରିବେ ।''

ମୋର ବକ୍ତବ୍ୟ ଶୁଣି ଜଷ୍ଟିସ ରାଓ ବିସ୍ମୟ ପ୍ରକାଶ କଲେ । ଚିଫ୍ ଜଷ୍ଟିସ୍ ଯେ କୌଣସି ମୋକଦ୍ଦମାର ନଥିପତ୍ର ଖୋଜିବାରେ ଧୂରନ୍ଧର । ସେ ଜଣେ ଆଇ.ସି.ଏସ୍. ଜଜ୍ । ସେ କାଳର ଆଇ.ସି.ଏସ୍ ଅଫିସରମାନଙ୍କୁ ସବୁ ପ୍ରକାରର ପ୍ରଶାସନିକ କାର୍ଯ୍ୟ ଶିଖିବାକୁ ସୁଯୋଗ ଦିଆଯାଉଥିଲା । ନରସିଂହମ୍ ସାହେବଙ୍କର ପ୍ରଥମ ପୋଷ୍ଟିଂ ସହକାରୀ ସେଟଲମେଣ୍ଟ ଅଫିସର ଓ ପରେ ଏସ.ଡ଼ି.ଓ. ଭାବରେ । ସେ ମୁହୂର୍ତ୍ତକ ମଧ୍ୟରେ ନଥିରୁ ଇଲେକ୍‌ସନ୍ ପିଟିସନ୍ ବାହାରକରି ପଢ଼ିଦେଲେ । ବନମାଳୀ ପଟ୍ଟନାୟକଙ୍କ ଜମାନବନ୍ଦୀ ଉପରେ ମଧ୍ୟ ଆଖି ବୁଲାଇ ଦେଲେ । ଚିଫ୍ ଜଷ୍ଟିସ କହିଲେ ''କାହିଁ, ଉତ୍କୋଚ ଦେବା ଅଭିଯୋଗ ଯେ ମିଥ୍ୟା, ଏହାର ତ କୌଣସି ଉଲ୍ଲେଖ ନାହିଁ ।

ତାହାହେଲେ ୧୨୩ ଧାରାର ଚତୁର୍ଥ ଉପଧାରା ପ୍ରଯୁଜ୍ୟ ହେଲା କିପରି ?'' ଜଷ୍ଟିସ ରାଓ ମନ୍ତବ୍ୟ ଦେଲେ ''ନିର୍ବାଚନ ତାହାହେଲେ ଅସିଦ୍ଧ ହେବ କାହିଁକି ?''

ମୁଖ୍ୟ ଆଇନଗତ ପ୍ରଶ୍ନ ଉପରେ ବିଚାରପତିମାନଙ୍କର ମନ୍ତବ୍ୟରେ ଉତ୍ସାହିତ ହୋଇ ମୁଁ ପୁନର୍ବାର କହିଲି, ''ବିବାଦୀୟ ପ୍ରଚାରପତ୍ର ମୋକଦ୍ଦମା ପାଇଁ ପ୍ରସ୍ତୁତ ଏକ ସୁପରିକଳ୍ପିତ ମିଥ୍ୟା ଚାଲ । ଆବେଦନକାରୀଙ୍କ ପକ୍ଷରୁ ପ୍ରମାଣିତ କେଦାରଗୌରୀ ପ୍ରେସ୍‌ର ଅର୍ଡ଼ର- ବହି ଦେଖିଲେ ଜଣା ପଡ଼ିବ ଯେ, ଯେଉଁ ପୃଷ୍ଠାରେ ସାକ୍ଷୀ ଚକ୍ରଧରଙ୍କର ସ୍ୱାକ୍ଷର ରହିଛି, ଅର୍ଡ଼ର ବହିର ସିଲେଇ ଛିଣ୍ଡାଇ ସେହି ପୃଷ୍ଠାଟି ପରେ ଭର୍ତ୍ତି କରାଯାଇଛି । ସେଇ ପୃଷ୍ଠାରେ କେବଳ ସୂତାରେ ନୂତନ ଗଣ୍ଠି ପଡ଼ିଛି, ଅଥଚ ଅର୍ଡ଼ର ବହି ମଝିରେ ଅନ୍ୟ କୌଣସିଠାରେ ସୂତାରେ ଗଣ୍ଠି ପଡ଼ି ନାହିଁ । ନିର୍ଦ୍ଦିଷ୍ଟ ପୃଷ୍ଠାଟି ପ୍ରତି ବିଚାରପତି ମାନଙ୍କର ଦୃଷ୍ଟି ଆକର୍ଷଣ କରି କହିଲି, ମାନ୍ୟବର ବିଚାରପତିମାନେ ନିଜ ଟେବୁଲ ଉପରେ ଥିବା ଆପଣାର ନୋଟ୍ ବହି ଅନୁଗ୍ରହ କରି ଖୋଲି ଦେଖନ୍ତୁ । ନୋଟ ବହି ମଝିରେ ପ୍ରତି ଥାକରେ ଥିବା ସିଲେଇରେ କୌଣସିଠାରେ ଗଣ୍ଠି ପଡ଼ିବାର ଦେଖିବେ ନାହିଁ । କାରଣ ଏ ପ୍ରକାରର ବଂଧେଇରେ ଗଣ୍ଠି ପଛ ପଟେ ରହେ । ଉଭୟ ବିଚାରପତି ନିଜ ନିଜର ନୋଟ୍ ବହି ତନ୍ନ ତନ୍ନ କରି ପରୀକ୍ଷା କରି ସମସ୍ୱରରେ କହିଲେ, ''ତୁମେ ଠିକ୍ କହିଛ, ନୋଟ୍ ବହି ମଝିରେ କୌଣସିଠାରେ ସିଲେଇରେ ଗଣ୍ଠି ନାହିଁ । ଏହାପରେ ବାଦାନୁବାଦ ସପ୍ତାହଟିଏ ଚାଲିଲା । ମୁଁ ତିନି ଦିନ ଆର୍ଗୁମେଣ୍ଟ କରିଥିଲି । ବନମାଳୀ ପଟ୍ଟନାୟକଙ୍କ ଆଡ଼୍‌ଭୋକେଟ କୁନି ଭାଇନା (ବିବୁଧେନ୍ଦ୍ର ମିଶ୍ର) ଦୁଇ ଦିନ ଜବାବ୍ ଦେଲେ । କିନ୍ତୁ ମୁଁ ଅନୁଭବ କଲି, ପ୍ରଥମ ଦିନର ପ୍ରଥମ ପନ୍ଦର ମିନିଟ୍ ମଧ୍ୟରେ କେସ୍‌ର ଭାଗ୍ୟ ନିର୍ଣ୍ଣିତ ହୋଇଯାଇଛି ।

ପ୍ରାୟ ପନ୍ଦର ଦିନ ପରେ ହାଇକୋର୍ଟଙ୍କ ରାୟ ପ୍ରକାଶିତ ହେଲା । ପ୍ରାଣନାଥ ପଟ୍ଟନାୟକଙ୍କର ଅପିଲ୍ ମଂଜୁର ହେଲା । ମୁଖ୍ୟ ଜଜ୍‌ମେଣ୍ଟଟି ଲେଖିଥିଲେ ଜଷ୍ଟିସ ବାଳକୃଷ୍ଣ ରାଓ । ବିଭିନ୍ନ ବିବାଦୀୟ ପ୍ରଶ୍ନ. ଉପରେ ନିଷ୍ପତ୍ତି ଦେଇ ସେ ଲେଖିଥିଲେ ଯେ, ପ୍ରଚାର ପତ୍ରର ଉଲ୍ଲିଖିତ ମାଧବ ରାଉତରାୟଙ୍କୁ ଉତ୍କୋଚ ଦେବା ଅଭିଯୋଗ ମିଥ୍ୟା ବୋଲି ପ୍ରମାଣିତ ହୋଇ ନାହିଁ । ପ୍ରଚାର ପତ୍ରଟି କମ୍ୟୁନିଷ୍ଟ ପାର୍ଟି ପ୍ରକାଶ କରିଥିବା ଅଭିଯୋଗର ସତ୍ୟତା ପ୍ରମାଣ କରିବାକୁ ଆବେଦନକାରୀ ସମର୍ଥ ହୋଇନାହାନ୍ତି । ନିର୍ବାଚନ ଟ୍ରାଇବ୍ୟୁନାଲଙ୍କ ରାୟ ତ୍ରୁଟିପୂର୍ଣ୍ଣ ଓ ପ୍ରାଣନାଥ ପଟ୍ଟନାୟକଙ୍କ ନିର୍ବାଚନ ଆଇନ ଅନୁଯାୟୀ ଅସିଦ୍ଧ ନୁହେଁ । ଚିଫ୍ ଜଷ୍ଟିସ ନରସିଂହମ୍ ଜଷ୍ଟିସ୍ ରାଓଙ୍କ ସହ ଏକମତ

ହୋଇ ଗୋଟିଏ ସଂକ୍ଷିପ୍ତ ମନ୍ତବ୍ୟରେ ଲେଖିଥିଲେ ଯେ ବିବାଦୀୟ ପ୍ରଚାର ପତ୍ରରେ ଉଲ୍ଲିଖିତ ଉତ୍କୋଚ ଅଭିଯୋଗ କଂଗ୍ରେସ ଦଳର ସମାଲୋଚନା, ବନମାଳୀ ପଟ୍ଟନାୟକଙ୍କ ବ୍ୟକ୍ତିଗତ ଆଚରଣର ସମାଲୋଚନା ନୁହେଁ । ଏଣୁ ଲୋକ ପ୍ରତିନିଧି ନିର୍ବାଚନ ଆଇନର ୧୨୩ ଧାରା ଏ କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ ।

ଏହି ସୁଦୀର୍ଘ ରାୟଟି ୧୯୫୮ ମସିହାରେ ସୁପ୍ରସିଦ୍ଧ ଆଇନ ପତ୍ରିକା ଏ.ଆଇ.ଆର୍‌ରେ ପ୍ରକାଶିତ ହୋଇଛି । ଏ ଅଧ୍ୟାୟଟି ଲେଖିବା ସମୟରେ ଉପରୋକ୍ତ ନିଷ୍ପତ୍ତିଟି ଏ. ଆଇ. ଆର ପତ୍ରିକାରୁ ମୁଁ ପୁଣି ଥରେ ପାଠ କରିଥିଲି । ପି.ଭି.ବି. ରାଓଙ୍କ ରାୟରେ ଏ ଅକିଂଚନର ନାମ ପ୍ରାୟ କୋଡ଼ିଏ ଥର ଉଲ୍ଲେଖ କରାଯାଇଛି ଓ ବିଭିନ୍ନ ଦିଗରୁ ମୋ ଦ୍ୱାରା ଉପସ୍ଥାପିତ ପ୍ରତ୍ୟେକ ଯୁକ୍ତି ବିସ୍ତୃତ ଭାବରେ ଆଲୋଚିତ ହୋଇଛି । ଜଷ୍ଟିସ୍ ନରସିଂହମ୍ ଓ ଜଷ୍ଟିସ୍ ରାଓ ଉଭୟ ବହୁଦିନୁ ଇହଧାମରୁ ବିଦାୟ ନେଲେଣି । ସେମାନଙ୍କର ଶ୍ରଦ୍ଧା ଓ ସଦିଚ୍ଛା ଏବେ ମଧ୍ୟ ମୋ ମନରେ ଜୀବନ୍ତ ରହିଛି ।



# କୋରାପୁଟର ଗାନ୍ଧୀ

ଓକିଲାତି ସହଜ ବୃତ୍ତି ନୁହେଁ । କେବଳ ଆଇନ କଲେଜରୁ ଉଚ୍ଚ ଶ୍ରେଣୀରେ ଡିଗ୍ରୀ ହାସଲ କରିପାରିଲେ, ଜଣେ ଯେ ଏ ବୃତ୍ତିରେ ନିଶ୍ଚିତ ସଫଳତା ଲାଭ କରିବ, ଏହାର କୈଣସି ଭରସା ନାହିଁ । ଅବଶ୍ୟ ଆଇନ-ଜ୍ଞାନ, ପ୍ରତିଭା, ବାଗ୍ମିତା ଓ ଅଧ୍ୟବସାୟ ସର୍ବାଦୌ ଆବଶ୍ୟକ । କିନ୍ତୁ ଏ ସବୁର ସମନ୍ୱୟ ସତ୍ତ୍ୱେ, କେତେ ମହାରଥୀ, ଦୁର୍ଗମ ପଥରେ ଝୁଣ୍ଟି ପଡିଛନ୍ତି, କେତେ ଅସାଧାରଣ ବ୍ୟକ୍ତିତ୍ୱ ମହକିଲଙ୍କ ଦୃଷ୍ଟି ଆକର୍ଷଣ କରି ନ ପାରି ବାର୍ ଲାଇବ୍ରେରୀରେ ବସି ବସି ଜୀବନ କଟାଇ ଦେଇଛନ୍ତି, କେତେ ପ୍ରତିଭାବାନ୍ ପୁରୁଷ ସୁଯୋଗ ଅଭାବରେ ବଣମଲ୍ଲୀ ପରି ମଉଳି ଯାଇଛନ୍ତି । ଏଣୁ ମୋର ଭବିଷ୍ୟତ କ'ଣ ହେବ, ଏ ବିଷୟରେ ଯେ ମୁଁ ସନ୍ଦିହାନ ନଥିଲି, ତା ନୁହେଁ । କିନ୍ତୁ ପ୍ରାଣନାଥ ପଟ୍ଟନାୟକଙ୍କ ନିର୍ବାଚନ ମୋକଦ୍ଦମା ପରେ ଓକିଲାତିରେ ମୋର ପାଦ ସ୍ଥିର ହେଲା । ଏ କେସ୍‌ଟି ମୋର ବୃତ୍ତି-ଜୀବନର ଏକ ମାଇଲ ଖୁଣ୍ଟ ।

୧୯୫୮ ମସିହା ପ୍ରାରମ୍ଭରେ ହାଇକୋର୍ଟରେ ଭୋଗରାଇ ଓ ଖୋର୍ଦ୍ଧା ନିର୍ବାଚନ ଅପିଲ୍‌ର ଫଳାଫଳ ପ୍ରକାଶିତ ହେବାପରେ, କଂଗ୍ରେସ ଦଳର ସବୁ ନିର୍ବାଚନ ଅପିଲ୍ ଚଳାଇବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହେଲା । ଡକ୍ଟର ହରେକୃଷ୍ଣ ମହତାବ ଏହି ସମୟରେ ଓଡିଶାର ମୁଖ୍ୟମନ୍ତ୍ରୀ ଓ କଂଗ୍ରେସ ଦଳର ନେତା । ଆଡ୍‌ଭୋକେଟ୍ ବିବୁଧେନ୍ଦ୍ର ମିଶ୍ର ରାଜ୍ୟସଭାକୁ ନିର୍ବାଚିତ ହେବା ପରେ, ଡକ୍ଟର ମହତାବ ଦିନେ ମତେ ଭୁବନେଶ୍ୱର ଡକାଇ, ଯେ ସବୁ ଅପିଲ୍ ହାଇକୋର୍ଟରେ ପଡିରହିଛି, ତାର ଦାୟିତ୍ୱ ନେବାକୁ ଅନୁରୋଧ କଲେ । ମୋକଦ୍ଦମାର କାଗଜପତ୍ର ଅନୁଧ୍ୟାନ କରି ଦୁଇ ତିନି ଦିନ ମଧ୍ୟରେ ମୋର ମତାମତ ଜଣାଇବି ବୋଲି ତାଙ୍କଠାରୁ ସମୟ ନେଲି । ସେତେବେଳେ ପୂର୍ବତନ କଂଗ୍ରେସ ମନ୍ତ୍ରୀ କୋରାପୁଟର ରାଧାକୃଷ୍ଣ ବିଶ୍ୱାସରାୟଙ୍କ ବିରୁଦ୍ଧରେ ଆଗତ ନିର୍ବାଚନ ଅପିଲ୍ ଓ ପୂର୍ବତନ ଡେପୁଟୀ ସ୍ପିକର ଭଦ୍ରଖର ମୌଲବୀ ମହମ୍ମଦ ହନିଫ୍‌ଙ୍କ ଅପିଲ୍ ହାଇକୋର୍ଟରେ ବିଚାରାଧୀନ ଥାଏ । ମୁଁ ଦୁଇଟିଯାକ ନଥିର କାଗଜପତ୍ର ପଢ଼ାପଢ଼ି କରି ଦେଖିଲି ଯେ, ଉଭୟ କେସ୍‌ରେ ସଫଳତାର ସମ୍ଭାବନା ଅତି କ୍ଷୀଣ । ମୁଁ ଦୁଇଦିନ ପରେ ଡକ୍ଟର ମହତାବଙ୍କୁ ମୋର ମତାମତ ଜଣାଇଲି । ସେଠାରେ ପ୍ରଦେଶ କଂଗ୍ରେସ କମିଟିର ସଂପାଦକ ବନମାଳୀ ପଟ୍ଟନାୟକ ଓ

କଟକର ଏମ୍.ଏଲ.ଏ ବୀରେନ୍ ମିତ୍ର ଉପସ୍ଥିତ ଥାଆନ୍ତି । ମୁଁ କହିଲି- ନବରଂଗପୁରର ଏ.ଆର.ଖାଁଙ୍କ ଦ୍ୱାରା ଆଗତ ନିର୍ବାଚନ ମୋକଦ୍ଦମାରେ ବିଶ୍ୱାସରାୟ ଟ୍ରାଇବ୍ୟୁନାଲ୍‌ଙ୍କ ପାଖରେ ଜିତିଥିଲେ ମଧ୍ୟ, ତାଙ୍କ ବିରୁଦ୍ଧରେ ଆଗତ ସମସ୍ତ ଅଭିଯୋଗର ସତ୍ୟତା ସେ ନିଜ ଜବାବରେ ସ୍ୱୀକାର କରିଛନ୍ତି ଏବଂ ଏହିସବୁ ସ୍ୱୀକାରୋକ୍ତିଗୁଡ଼ିକୁ ଅତିକ୍ରମ କରିବା ଦୁଃସାଧ୍ୟ ବ୍ୟାପାର । ଭଦ୍ରଖ ମୋକଦ୍ଦମାରେ ଟ୍ରାଇବ୍ୟୁନାଲ ଆବେଦନକାରୀ ହନିଫ୍ ବାବୁଙ୍କର ସାକ୍ଷୀମାନଙ୍କୁ ସଂପୂର୍ଣ୍ଣ ଅବିଶ୍ୱାସ କରିଅଛନ୍ତି । ହାଇକୋର୍ଟ ପ୍ରମାଣଗତ ବିଷୟ ପୁନର୍ବିଚାର କରି କ୍ୱଚିତ୍ ଭିନ୍ନ ମତ ଦେଇଥାନ୍ତି । ମହତାବ ବାବୁ କେବଳ ଜଣେ ବିଚକ୍ଷଣ ରାଜନୀତିଜ୍ଞ ନୁହନ୍ତି, ସେ ଜଣେ କରିତ୍‌କର୍ମା । ତାଙ୍କର ସାଧାରଣ ଜ୍ଞାନ ଅତି ପ୍ରଖର ଓ ପୋଖତ । ମୋର ମତାମତ ଶୁଣି ସେ କହିଲେ, ‘‘ସବୁ ମୋକଦ୍ଦମା ଯେ ଆମେ ଜିତିବା, ଏପରି ଭାବିବାର ଯଥାର୍ଥତା ନାହିଁ । ମୋକଦ୍ଦମାର ଅନ୍ତର୍ନିହିତ ବଳ ଥିବା ଦରକାର । ତା’ ନହେଲେ ଆଡ୍‌ଭୋକେଟମାନେ କେବଳ ନିଜର ବୁଦ୍ଧି ଓ ବାକ୍‌ଚାତୁରୀ ବଳରେ ସବୁ ମୋକଦ୍ଦମା ଜିତିଯିବେ, ଏପରି ଆଶା କରିବା ସଂପୂର୍ଣ୍ଣ ଅବାସ୍ତବ ।’’ ତା’ପରେ ସେ କହିଲେ ‘‘ଥରେ ଯେବେ ଆମେ ମୋକଦ୍ଦମାରେ ଛନ୍ଦି ହୋଇ ଯାଇଛେ, ସେଥିରୁ ଉଦ୍ଧାର ପାଇବା ପାଇଁ ତୁମେ ଯଥାସାଧ୍ୟ ଚେଷ୍ଟା କର । ଫଳାଫଳ ପାଇଁ ଚିନ୍ତିତ ହେବାର କାରଣ ନାହିଁ ।’’ ମୁଁ କଂଗ୍ରେସ ଦଳର ସଭ୍ୟ ନୁହେଁ । ମୋ ମନରେ ଆଶଙ୍କା ଥାଏ, ଖରାପ କେସ୍‌ର ଦାୟିତ୍ୱ ନେଇ ଶେଷରେ ଯଦି ସୁଫଳ ନମିଳେ, ତା’ହେଲେ ସଂପୃକ୍ତ କଂଗ୍ରେସ ଲୋକେ ମୋର ନିଷ୍ଠା ଉପରେ ସନ୍ଦେହ କରିପାରନ୍ତି । ମୁଖ୍ୟମନ୍ତ୍ରୀଙ୍କ କଥା ଶୁଣି ମୁଁ ଅନେକଟା ଆଶ୍ୱସ୍ତ ହେଲି । ଆଲୋଚନା ଟେବୁଲ୍‌ରୁ ମହତାବ ବାବୁ ଉଠିଯିବା ପରେ ଉଭୟ ବୀରେନ ଦା ଓ ବନମାଳୀ ମୋତେ କହିଲେ, ‘‘ଖୋର୍ଦ୍ଧା କେସ୍‌ରେ ଜିତିବା ପରେ ମହତାବ ବାବୁଙ୍କର ତୁମ ଉପରେ ଅଖଣ୍ଡ ବିଶ୍ୱାସ । ତୁମେ ଏ କେସ୍ ନ କରିବ କାହିଁକି ?’’

ଭଦ୍ରଖ ନିର୍ବାଚନ କେସ୍ ଦାଏର କରିଥିଲେ ପୂର୍ବତନ ଡେପୁଟୀ ସ୍ପିକର ମୌଲବୀ ମହମ୍ମଦ ହନିଫ୍, ତାଙ୍କର ପ୍ରତିଦ୍ୱନ୍ଦୀ ସ୍ୱାଧୀନ ବିଧାୟକ ଓ ଡ଼ଗର ସଂପାଦକ ନିତ୍ୟାନନ୍ଦ ମହାପାତ୍ରଙ୍କ ନିର୍ବାଚନ ଅସିଦ୍ଧ ଘୋଷଣା କରିବା ପାଇଁ । ଟ୍ରାଇବ୍ୟୁନାଲରେ ହାରିଯାଇ ସେ ହାଇକୋର୍ଟରେ ଅପିଲ ଦାଏର କରିଥିଲେ । ଏ ଅପିଲର ବିଚାର ପାଇଁ ଜଷ୍ଟିସ୍ ବାଳକୃଷ୍ଣ ରାଓ ଓ ଜଷ୍ଟିସ୍ ସତ୍ୟଭୂଷଣ

ବର୍ମନ୍‌ଙ୍କୁ ନେଇ ଏକ ସ୍ୱତନ୍ତ୍ର ବେଞ୍ଚ ଗଠିତ ହୋଇଥିଲା । ସତ୍ୟଭୂଷଣ ବର୍ମନ୍ କଲିକତା ହାଇକୋର୍ଟର ବାରିଷ୍ଟର । ସେ ଭାରତର ତତ୍କାଳୀନ ପ୍ରଧାନ ବିଚାରପତି ସୁଧୀରଂଜନ ଦାସ କଲିକତାରେ ପ୍ରାକ୍ଟିସ୍ କରିବା ସମୟରେ ଅଶୋକ ସେନ୍‌ଙ୍କ ସହ ତାଙ୍କର ଜୁନିୟର ଥିଲେ । ଶୁଣାଯାଏ, ଜଜ୍ ନିଯୁକ୍ତି ବ୍ୟାପାରରେ ମୁଖ୍ୟ ବିଚାରପତି ନରସିଂହମ୍ ଓ ଗୃହମନ୍ତ୍ରୀ (ପୂର୍ବତନ ମୁଖ୍ୟ ବିଚାରପତି) ଲିଙ୍ଗରାଜ ପାଣିଗ୍ରାହୀଙ୍କ ମଧ୍ୟରେ ମତପାର୍ଥକ୍ୟ ହେତୁ ଏ ଦାୟିତ୍ୱ ଭାରତର ପ୍ରଧାନ ବିଚାରପତିଙ୍କୁ ଅର୍ପଣ କରାଯାଇଥିଲା ଓ ବର୍ମନ୍‌ଙ୍କ ମନୋନୟନ ପଛରେ ଏସ୍.ଆର. ଦାସଙ୍କର ବିଶେଷ ଆଶୀର୍ବାଦ ଥିଲା । ବର୍ମନ ମାର୍ଚ୍ଚ ୬୦ର ତାରିଖରେ ହାଇକୋର୍ଟ ଜଜ୍ ଭାବରେ ଶପଥ ନେଲେ । ଏପ୍ରିଲ ଦ୍ୱିତୀୟ ସପ୍ତାହରେ ଭଦ୍ରଖ ନିର୍ବାଚନ ଅପିଲ୍‌ର ଶୁଣାଣି ଆରମ୍ଭ ହେଲା ।

ଏ ଅପିଲ୍‌ରେ ବିଶେଷ କୌଣସି ଆଇନଗତ ପ୍ରଶ୍ନ ଜଡ଼ିତ ନଥିଲା । ନିର୍ବାଚନ ସମୟରେ ନିତ୍ୟାନନ୍ଦ ମହାପାତ୍ର ମହମ୍ମଦ ହନିଫଙ୍କ ବିରୁଦ୍ଧରେ ଅପପ୍ରଚାର କରିଥିଲେ କି ନାହିଁ, ମୁଖ୍ୟତଃ ଏହି ପ୍ରଶ୍ନ ଉପରେ ଅନେକ ସାକ୍ଷୀ ଜମାନବନ୍ଦୀ ଦେଇଥିଲେ । ଆବେଦନକାରୀଙ୍କ ପକ୍ଷର ସାକ୍ଷ୍ୟ ବିଶ୍ୱାସଯୋଗ୍ୟ କି ନାହିଁ ତାହାହିଁ ଥିଲା ବିଚାର୍ଯ୍ୟ ବିଷୟ । ଆପେଲାଣ୍ଟ୍ ମହମ୍ମଦ୍ ହନିଫଙ୍କ ପକ୍ଷରୁ ମୁଁ ଓ ଅପର ପକ୍ଷରୁ ଆଡ଼ଭୋକେଟ୍ ଅଶୋକ ଦାସ ସୁଆଲ ଜବାବ କରିଥିଲୁ । ତିନି ସପ୍ତାହ ଧରି ବାଦାନୁବାଦ ଚାଲିବା ପରେ ବିଚାରପତିମାନେ ପରସ୍ପର ବିରୋଧୀ ମତ ପୋଷଣ କରିଥିଲେ । ଜଷ୍ଟିସ୍ ବର୍ମନ୍ ମୋର ଯୁକ୍ତିଗୁଡ଼ିକ ଗ୍ରହଣ କରି ଅପିଲ ମଂଜୁର କରିଥିଲେ ଓ ନିତ୍ୟାନନ୍ଦ ମହାପାତ୍ରଙ୍କର ନିର୍ବାଚନକୁ ଅସିଦ୍ଧ ଘୋଷଣା କରିଥିଲେ । କିନ୍ତୁ ଜଷ୍ଟିସ୍ ପି.ଭି.ବି ରାଓ ଅପିଲ ଡିସ୍‌ମିସ୍ କରିଥିଲେ । ଜଷ୍ଟିସ୍ ରାଓ ମୋ ଦ୍ୱାରା ଉପସ୍ଥାପିତ ଯୁକ୍ତିଗୁଡ଼ିକ ଅଗ୍ରାହ୍ୟ କଲେ ମଧ୍ୟ ତାଙ୍କ ରାୟର ପ୍ରଥମ ବାକ୍ୟରେ ଲେଖିଥିଲେ "ଅପିଲକାରୀଙ୍କର ଆଡ଼ଭୋକେଟ୍ ଶ୍ରୀ ଜି. ରଥ ଏ ଅପିଲଟି ଅତି ଦକ୍ଷତା ଓ କୃତିତ୍ୱ ସହ ପରିଚାଳନା କରି ଅଛନ୍ତି ।" ମୋର ମନେ ଅଛି, ରାୟ ପ୍ରକାଶିତ ହେବା ପରେ ହନିଫ୍ ସାହେବ ଯେତେବେଳେ ମୋତେ ସାକ୍ଷାତ କରିବା ପାଇଁ କଟକ ଆସିଲେ, ମୁଁ ତାଙ୍କୁ ପରିହାସରେ କହିଲି, "ଆପଣ ମୋକଦ୍ଦମା ହାରି ଯାଇଛନ୍ତି, କିନ୍ତୁ ମୁଁ ଜିତିଛି ।" ସେ ଏ କଥାର ତାତ୍ପର୍ଯ୍ୟ ବୁଝି ପାରିଲେ ନାହିଁ । ମୁଁ କହିଲି, "ଜଷ୍ଟିସ୍ ବର୍ମନ୍ ଆପଣଙ୍କ ପକ୍ଷରେ ରାୟ ଦେଇଛନ୍ତି, ଏହା

ଆମ ଉଭୟଙ୍କର ବିଜୟ । ଜଷ୍ଟିସ୍ ରାଓ ଆପଣଙ୍କ ବିରୁଦ୍ଧରେ ରାୟ ଦେଲେ ମଧ୍ୟ, ଜଜ୍‌ମେଣ୍ଟର ପ୍ରଥମ ବାକ୍ୟରେ ମୋ ସଂପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା କ'ଣ ମୋର ବିଜୟ ନୁହେଁ?'' ହନିଫ ବାବୁ ବେଶ୍ ମଜାଦାର ଲୋକ । ଏ ମନ୍ତବ୍ୟ ଉପରେ ବେଶ ହାସ୍ୟରୋଳ ଉଠିଲା ।

ଦୁଇଜଣ ବିଚାରପତିଙ୍କ ମଧ୍ୟରେ ମତଭେଦ ହେତୁ, ଅପିଲ୍‌ଟି ନିଷ୍ପତ୍ତି ପାଇଁ ତୃତୀୟ ବିଚାରପତିଙ୍କ ନିକଟକୁ ପ୍ରେରିତ ହେଲା । ଜଷ୍ଟିସ୍ ଗୋପାଳ ଚନ୍ଦ୍ର ଦାସ ଉଭୟ ପକ୍ଷ ଆଡ୍‌ଭୋକେଟ୍‌ମାନଙ୍କର ବାଦାନୁବାଦ ଶୁଣିବା ପରେ ଜଷ୍ଟିସ୍ ରାଓଙ୍କ ସହ ଏକମତ ହୋଇଥିଲେ ।

ଜୟପୁରର ରାଧାକୃଷ୍ଣ ବିଶ୍ୱାସରାୟ ଦ୍ୱିତୀୟ ମହାଯୁଦ୍ଧ ସମୟରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିଲେ । ପଣ୍ଡିତ ନୀଳକଂଠ ଓ ଡକ୍ଟର ମହତାବଙ୍କ ମଧ୍ୟରେ ଗୋଷ୍ଠିବିବାଦ ହେତୁ, ତାଙ୍କୁ ସଭାପତି ଦାୟିତ୍ୱ ଅର୍ପଣ କରାଯାଇଥିଲା । ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍‌କାଳରେ ଡକ୍ଟର ମହତାବଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳର ସେ ସଦସ୍ୟ । ଜଣେ ସାଧୁ ଓ ସଚ୍ଚୋଟ ମନ୍ତ୍ରୀ ଭାବରେ ତାଙ୍କର ଅଶେଷ ଖ୍ୟାତି ଥାଏ । କୋରାପୁଟ ଜିଲ୍ଲାରେ କଂଗ୍ରେସ ସଂଗଠନ ଗଢ଼ିବାରେ ତାଙ୍କର ଦାନ ଅଦ୍ୱିତୀୟ । ସାଧାରଣ ଲୋକେ ତାଙ୍କୁ 'କୋରାପୁଟର ଗାନ୍ଧୀ' ନାମରେ ସମ୍ବୋଧନ କରୁଥିଲେ । ୧୯୫୭ ମସିହାରେ ଉମରକୋଟ ନିର୍ବାଚନ ମଣ୍ଡଳୀରୁ ପୂର୍ବତନ କଂଗ୍ରେସ ମନ୍ତ୍ରୀ ହବିବୁଲ୍ଲା ଖାଁଙ୍କର ମାମୁଁ ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ଏ.ଆର୍.ଖାଁକୁ ପରାସ୍ତ କରି ସେ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥାନ୍ତି । ପ୍ରତିଦ୍ୱନ୍ଦୀ ଏ.ଆର୍ ଖାଁ ବିଶ୍ୱାସରାୟ ଧର୍ମ ନାମରେ ପ୍ରଚାର କରି ନିର୍ବାଚନ ଜିତିଛନ୍ତି ବୋଲି ଅଭିଯୋଗ କରି ନିର୍ବାଚନକୁ ଅସିଦ୍ଧ କରିବା ପାଇଁ ଆବେଦନ କରିଥିଲେ । ବିଶ୍ୱାସରାୟ ଟ୍ରାଇବ୍ୟୁନାଲରେ ଜିତିବା ପରେ ଖାଁ ହାଇକୋର୍ଟରେ ଅପିଲ ଦାଏର କରିଥିଲେ ।

ନିର୍ବାଚନ ପ୍ରଚାର ସମୟରେ ବିଶ୍ୱାସରାୟ ଗାନ୍ଧିନୀତି ବିରୋଧୀ ଆଚରଣ ଅବଲମ୍ବନ କରିଥିବାର ଅଭିଯୋଗ ହୋଇଥିଲା । ତାଙ୍କ ପକ୍ଷରୁ ପ୍ରକାଶିତ ଏକ ପ୍ରଚାର ଗୀତିକାରେ ମୁସଲମାନ ସଂପ୍ରଦାୟ ଉପରେ ନାନା ପ୍ରକାର ଆକ୍ଷେପ କରାଯାଇଥିଲା ଓ ସେହି କାରଣରୁ ଏ.ଆର. ଖାଁଙ୍କୁ ଭୋଟ ନ ଦେବା ପାଇଁ ନିବେଦନ କରାଯାଇଥିଲା । ଏହି କ୍ଷୁଦ୍ର ଗୀତିକା ଛପାଇବାର ଖର୍ଚ୍ଚ

ବିଶ୍ୱାସରାୟ ଇଲେକ୍‌ସନ୍ କମିସନ୍‌ଙ୍କ ନିକଟରେ ଦାଖଲ କରିଥିବା ନିର୍ବାଚନ ହିସାବ ଫର୍ଦ୍ଦରେ ଦର୍ଶାଇଥିଲେ ଓ ଟ୍ରାଇବ୍ୟୁନାଲ୍‌ରେ ଫାଇଲ କରିଥିବା ନିଜର 'ଜବାବ'ରେ ମଧ୍ୟ ତାହା ସ୍ୱୀକାର କରିଥିଲେ । ଏଣୁ ଏ.ଆର.ଖାଁଙ୍କ ଅପିଲ ଯେ ନିଶ୍ଚିତ ଭାବରେ ମଂଜୁର ହେବ, ଏ ବିଷୟରେ ମୋର ସଂଦେହ ରହିଲା ନାହିଁ । ନିର୍ବାଚିତ ବିଧାୟକ ତାଙ୍କ ବିରୁଦ୍ଧରେ ଆଗତ ସମସ୍ତ ଅଭିଯୋଗ ଅବାଧରେ ସ୍ୱୀକାର କରିଥିବା ବେଳେ, ମୁଁ ତାଙ୍କ ପକ୍ଷରୁ କ'ଣ ବାଦାନୁବାଦ କରିବି, କି ଭାବରେ କହିବି, ଏଥିପାଇଁ ଅତ୍ୟନ୍ତ ବିବ୍ରତ ଥାଏ । ବ୍ୟକ୍ତିଗତ ଆଲୋଚନା ପାଇଁ କଟକ ଆସିବାକୁ ତାଙ୍କୁ ଖବର ପଠାଇଲି । ତାଙ୍କ ବିଷୟରେ ପୂର୍ବରୁ ଅନେକ କିଛି ଶୁଣିଥିଲେ ମଧ୍ୟ, ତାଙ୍କ ସହ ବ୍ୟକ୍ତିଗତ ପରିଚୟ ନଥିଲା । ଆଣ୍ଠୁଲୁଚା ଖଦଡ଼ ଧୋତି ଓ ପୁରୁଣା ଖଦଡ଼ ପଂଜାବୀ ପିନ୍ଧି ଜଣେ ବୟସ୍କ ଲୋକ ଦିନେ ସଂଧ୍ୟାରେ ମୋ ଅଫିସ ଘରେ ପ୍ରବେଶ କଲେ । କାନ୍ଧରେ ଖଣ୍ଡେ ଖଦଡ଼ ଚାଦର ଓ ପାଦରେ ହଳେ ପୁରୁଣା ଚଟି, ସାଂଗରେ ଥିଲେ କଂଗ୍ରେସ ସଂପାଦକ ବନମାଳୀ ପଟ୍ଟନାୟକ । ଆଲୋଚନା ପ୍ରସଙ୍ଗରେ ଟ୍ରାଇବ୍ୟୁନାଲରେ ଦାଖଲ ହୋଇଥିବା ଜବାବରେ ତାଙ୍କର ସ୍ୱୀକାରୋକ୍ତି ପ୍ରତି ଦୃଷ୍ଟି ଆକର୍ଷଣ କରିବାରେ ସେ ଉତ୍ତର ଦେଲେ "ଏ ସବୁ ସତ କଥା ହେ ବାବୁ, ମିଛ କିପରି ଲେଖିବି?" ତାଙ୍କ ଉତ୍ତର ଶୁଣି ଭକ୍ତିରେ ତାଙ୍କ ପାଦ ଛୁଇଁବାକୁ ଇଚ୍ଛା ହେଲା । ମନେ ହେଲା ଗାନ୍ଧି କେବଳ ଗୁଜୁରାଟରେ ଜନ୍ମ ନିଅନ୍ତି ନାହିଁ, କୋରାପୁଟ ଜିଲାରେ ମଧ୍ୟ ତାଙ୍କର ଅବତାର ଆବିର୍ଭୂତ ହୁଅନ୍ତି । ସବୁ ଦୋଷ ତ୍ରୁଟି ସତ୍ତ୍ୱେ, ଏତେ ବଡ଼ ବିପଦ୍‌ରେ ପଡ଼ି ଯେ ମିଥ୍ୟାର ଆଶ୍ରୟ ନେବାକୁ ଯେ ପ୍ରସ୍ତୁତ ନୁହନ୍ତି ତାଙ୍କୁ କ'ଣ ସାଧାରଣ ମଣିଷ କୁହାଯିବ? ଯାହାହେଉ କେସ୍ ସଂକ୍ରାନ୍ତୀୟ ଆଲୋଚନା ଅଧିକ ଦୂର ଆଗେଇ ପାରିଲା ନାହିଁ ।

ହାଇକୋର୍ଟର ଯେଉଁ ବଡ଼ ହଲଟି ବର୍ତ୍ତମାନ ଚିଫ୍ ଜଷ୍ଟିସ୍‌ଙ୍କ କୋର୍ଟ ରୁମ୍ ରୂପେ ବ୍ୟବହୃତ ହେଉଛି, ତାହା ୧୯୫୮ ମସିହା ଖରା ଛୁଟି ପରେ ଉଦ୍‌ଘାଟିତ ହୋଇଥାଏ । ଅଫିସ୍ ପାଇଁ ବ୍ୟବହୃତ ଦୁଇଟି କୋଠରୀ ମଝିରେ ଥିବା କାନ୍ଥ ଭାଂଗି ଚିଫ୍ ଜଷ୍ଟିସ୍‌ଙ୍କ କୋର୍ଟ ହଲ୍‌ର ପୁନର୍ବିନ୍ୟାସ କରାଯାଇଥିଲା । ଏ ନୂତନ ହଲରେ ଚିଫ୍ ଜଷ୍ଟିସ୍ ଆର. ଏଲ. ନରସିଂହମ ଓ ଜଷ୍ଟିସ ଗୋପାଳ ଚନ୍ଦ୍ର ଦାସଙ୍କୁ ନେଇ ଗଠିତ ବେଂଚରେ ଉମରକୋର୍ଟ ଅପିଲ ବିଚାର

ପାଇଁ ଉଠିଲା । ଏ. ଆର. ଖାଁଙ୍କ ପକ୍ଷରୁ ଆଡ୍‌ଭୋକେଟ୍ ଅଶୋକ ଦାସ ଅଭିଯୋଗ ଗୁଡ଼ିକ ଆମୂଳଚୂଳ ପେଶ୍ କଲେ । ବିବାଦୀୟ 'ଗୀତିକା'ର ଧର୍ମଭିତ୍ତିକ ଆକ୍ଷେପ ସଂବଳିତ ପଂକ୍ତି ଗୁଡ଼ିକର ଇଂରାଜୀ ଅନୁବାଦ କରି ଜଜ୍‌ମାନଙ୍କୁ ବୁଝାଇଲେ । ଦୁଇ ଦିନ ପରେ ମୋର ପାଳି ପଡ଼ିଲା । ମୁଁ ସ୍ଥିର କଲି, ଆବେଦନକାରୀଙ୍କ ପକ୍ଷରୁ ଆଗତ ଅଭିଯୋଗ ଗୁଡ଼ିକୁ ଅପିଲ ସ୍ତରରେ ଅସ୍ୱୀକାର କରିବା ନିରର୍ଥକ ହେବ । ବିବାଦୀୟ ଗୀତିକାର ଅର୍ଥ ଓ ଆଇନ ଦୃଷ୍ଟିରୁ ତାହା ଦୋଷାବହ କି ନୁହେଁ, କେବଳ ସେହି ଦୃଷ୍ଟି କୋଣରୁ ଆଲୋଚନା କରିବି । ମୋର ଯୁକ୍ତି ଥିଲା ଯେ ଏହି ଗୀତିକାରେ କେବଳ ହିନ୍ଦୁ ଧର୍ମର ଉତ୍କର୍ଷତା ବର୍ଣ୍ଣନା କରାଯାଇଛି, ତୁଳନାତ୍ମକ ଭିତ୍ତିରେ । ଯଦିବା ଏହାକୁ ଅନ୍ୟ ଧର୍ମର ନିନ୍ଦା ବୋଲି ଗ୍ରହଣ କରାଯାଏ, ତଥାପି ଏହା ଲୋକ ପ୍ରତିନିଧି ନିର୍ବାଚନ ଆଇନ ଅନୁଯାୟୀ ଦୋଷାବହ ନୁହେଁ ... ଇତ୍ୟାଦି । ମୋର ମନେଅଛି, ସ୍ୱୀକୃତ ତଥ୍ୟଗତ ପ୍ରମାଣଗୁଡ଼ିକୁ ଅସ୍ୱୀକାର ନ କରିବା ଫଳରେ ଏବଂ ମୋର ଉପସ୍ଥାପନା ଶୈଳୀରେ ଚିଫ୍ ଜଷ୍ଟିସ୍ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ବାଦାନୁବାଦ ଚାଲିଥିବା ସମୟରେ ମୋର 'ଫେୟାରନେସ୍' ବା ନ୍ୟାୟୋଚିତ ଆଚରଣ ଲାଗି ମତେ ବାରବାର ଧନ୍ୟବାଦ ଦେଇଥିଲେ । ଏହି ଅପିଲ୍‌ର ବିଚାର ଚାଲିଥିବା ସମୟରେ, ସମୟ ସୁବିଧା ହେଲେ ଆଡ୍‌ଭୋକେଟ୍ ଗତିକୃଷ୍ଣ ମିଶ୍ର (ପରେ ଓଡ଼ିଶା ହାଇକୋର୍ଟର ମାନ୍ୟବର ପ୍ରଧାନ ବିଚାରପତି) ଅନେକ ସମୟରେ କୋର୍ଟରେ ବସି ଆଲୋଚନା ଶୁଣୁଥିଲେ । ଶେଷଦିନ କୋର୍ଟ ଉଠିଯିବା ପରେ ଗତିକୃଷ୍ଣ ବାବୁ ମୋତେ କହିଲେ, "ମୋକଦ୍ଦମା ତୁମେ ହାରିଯାଇ ପାର, କିନ୍ତୁ ବ୍ୟକ୍ତିଗତ ସ୍ତରରେ ତୁମେ ବିରାଟ ବିଜୟ ହାସଲ କରିଛ ।"

ଧର୍ମ ନାମରେ ନିର୍ବାଚନ ପ୍ରଚାର କରିବା ଲୋକ ପ୍ରତିନିଧି ନିର୍ବାଚନ ଆଇନର ୧୨୩ ଦଫାରେ ସଂପୂର୍ଣ୍ଣ ନିଷିଦ୍ଧ । ଅଜ୍ଞତା ହେତୁ ହେଉ ବା ବଂଧୁମାନଙ୍କର ଭ୍ରାନ୍ତ ପରାମର୍ଶ ହେତୁ ହେଉ, ବିଶ୍ୱାସରାୟ ଏହି ନିଷିଦ୍ଧ ବଟିକା ଅନାୟାସରେ ସେବନ କରିଥିଲେ ଓ ମିଥ୍ୟାର ଆଶ୍ରୟ ନେବେ ନାହିଁ ବୋଲି ଟ୍ରାଇବ୍ୟୁନାଲଙ୍କ ନିକଟରେ ଦାଖଲ କରିଥିବା 'ଜବାବ୍'ରେ ତାହା ସ୍ୱୀକାର କରିଥିଲେ । ଏଣୁ ନଜିର ଓ ଆଇନ ଦୃଷ୍ଟିରୁ ଅର୍ଥ ଅର୍ଥାନ୍ତର କରିବା ବିଶେଷ ଫଳପ୍ରଦ ହେଲା ନାହିଁ । ବାଦାନୁବାଦ ଚାଲିଥିବା ସମୟରେ ମୋର ଧାରଣା ହେଲା ଯେ ଚିଫ୍ ଜଷ୍ଟିସ୍ ନରସିଂହମ୍‌ଙ୍କର ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପ୍ରତି

ପ୍ରଗାଢ଼ ସହାନୁଭୂତି ରହିଛି । ଏହି ପ୍ରକାରର ଧାରଣା ହେତୁ ମୁଁ ବିନା ପ୍ରତିବଂଧକରେ ଦୁଇ ଦିନବ୍ୟାପୀ ମୋର ଯୁକ୍ତି ଚଳାଇ ପାରିଥିଲି । ବିଶ୍ୱାସରାୟଙ୍କ ସ୍ୱୀକାରୋକ୍ତି ହେତୁ ସେ ଅତ୍ୟନ୍ତ ବିବ୍ରତ ଜଣା ପଡୁଥିଲେ । ଦ୍ୱିତୀୟ ଦିନ ମୁଁ ଯୁକ୍ତି କରୁଥିଲି ଯେ ନିଜର ଧର୍ମ ବିଶ୍ୱାସ ପ୍ରତି ନିଷ୍ଠା ପ୍ରକାଶ କରିବାର ଅର୍ଥ ନୁହେଁ ଯେ ଅନ୍ୟର ଧର୍ମ ପ୍ରତି ଅବମାନନା କରିବା । ଚିଫ୍ ଜଷ୍ଟିସ୍ ମୋ ଯୁକ୍ତିରେ ବାଧା ଦେଇ ପଚାରିଲେ "କିନ୍ତୁ ତୁମ ମହକିଲ ବିବାଦୀୟ ଗୀତିକା ପ୍ରକାଶ କରିବା ଅଭିଯୋଗ ସ୍ୱୀକାର କରିଛନ୍ତି କାହିଁକି ?" ମୁଁ ମୂହୂର୍ତ୍ତେ ଚିନ୍ତା କରି ନମ୍ରତା ସହ ଉତ୍ତର ଦେଲି "ମୁଁ ଏ ବିଷୟରେ ମହକିଲଙ୍କୁ ପଚାରିଥିଲି । ସେ ଉତ୍ତର ଦେଇଥିଲେ, ଗୀତିକା ପ୍ରକାଶ କରିବା ସତ୍ୟ ଓ ସେ ମିଥ୍ୟା ବୟାନ କରିବାକୁ ଅକ୍ଷମ ।" ମୋ କଥା ଶୁଣି ଚିଫ୍ ଜଷ୍ଟିସ୍ ଟେବୁଲ ଉପରେ କଲମଟି ରଖି ଦେଇ କିଛିକ୍ଷଣ ନୀରବ ହୋଇ ବସି ରହିଲେ । ତା ପରେ ଗଂଭୀର ଭାବରେ କହିଲେ, "ମୁଁ ଯେତେବେଳେ ଆଇନ ସଚିବ, ବିଶ୍ୱାସରାୟ ସେତେବେଳେ ମୋର ମନ୍ତ୍ରୀ । ମନ୍ତ୍ରୀ ଭାବରେ ମୁଁ ତାଙ୍କୁ ଅତି ସାଧୁ ଓ ସତ୍ୟନିଷ୍ଠ ବୋଲି ଜାଣିଥିଲି । ସେ ଧାରଣା ଏବେ ନିଶ୍ଚିତ ଭାବରେ ଦୃଢ଼ୀଭୂତ ହୋଇଛି ।"

ବାଦାନୁବାଦ ଶେଷ ହେବାର ପ୍ରାୟ ଦଶ ଦିନ ପରେ ରାୟ ପ୍ରକାଶିତ ହେଲା । କୋରାପୁଟ ଗାନ୍ଧୀଙ୍କର ନିର୍ବାଚନ ଅସିଦ୍ଧ ଘୋଷିତ ହୋଇଥିଲା ।



# ଆଇନ୍ ପ୍ରତି ଆସକ୍ତି

ଓକିଲାତି ଆରମ୍ଭ କଲା ପରେ ମୁଁ ଏ ବୃତ୍ତିରେ ପୂରାପୂରି ମଜ୍ଜି ଯାଇଥିଲି । ଆଇନ ଚର୍ଚ୍ଚାରେ ଆସକ୍ତି ଥିଲା ଅକଳ୍ପନୀୟ । ସକାଳେ ସଂଧ୍ୟାରେ ଘରେ ନଥି ବା ପୋଥି ପଢ଼ିବା, କୋର୍ଟରେ କାମ ଥାଉ ବା ନଥାଉ, କୋର୍ଟ ପଦ୍ଧତି ଓ ବିଚାର ପ୍ରଣାଳୀ ପର୍ଯ୍ୟବେକ୍ଷଣ କରିବା; ବିଶିଷ୍ଟ ଅଧିବକ୍ତାମାନଙ୍କର ଅଭିବ୍ୟକ୍ତି, ଭାଷା ବିନ୍ୟାସ ଓ ଉପସ୍ଥାପନା ଶୈଳୀ ଅନୁଧ୍ୟାନ କରିବା ଥିଲା ମୋର ନିତ୍ୟ ନୈମିତ୍ତିକ କାର୍ଯ୍ୟ । ସବୁଠାରୁ ବିଦ୍ୱାନ ଓ ସର୍ବଶ୍ରେଷ୍ଠ ଅଧିବକ୍ତାଙ୍କ ପରି ମୁଁ କିପରି କୋର୍ଟରେ ମୋର ବକ୍ତବ୍ୟ ଉପସ୍ଥାପନ କରି ପାରିବି, ସେଥିପାଇଁ ମୁଁ ଅହରହ ନିଜକୁ ପ୍ରସ୍ତୁତ କରୁଥିଲି ।

ଏହି ମନୋବୃତ୍ତିର କେତେକ ମୁଖ୍ୟ କାରଣ ଥିଲା । ପ୍ରଥମତଃ, ଛାତ୍ରାବସ୍ଥାରୁ ମୁଁ ଜୀବନ ଆରମ୍ଭ କରିଥିଲି ରାଜନୈତିକ ସଂଘର୍ଷ ମଧ୍ୟରେ । ପାଠପଢ଼ା ସହିତ ସଭା ସମିତି ଓ ଶୋଭାଯାତ୍ରା ମୋର କର୍ମମୟ ଜୀବନର ଅଙ୍ଗ ଥିଲା କହିଲେ ଚଳେ । ତର୍କ ବିତର୍କରେ ଭାଗ ନେବା, ସାଧାରଣ ସଭା ସମିତିରେ ଭାଷଣ ଦେବା ଓ ଲେଖାଲେଖି ପ୍ରତି ବିଶେଷ ଦୃଷ୍ଟି ଦେବା ମୋର ଅଭ୍ୟାସ ଥିଲା । କିନ୍ତୁ ୧୯୫୦ ମସିହାରେ ରାଜନୈତିକ ମତଭେଦ ହେତୁ ମୁଁ ଯେତେବେଳେ କମ୍ୟୁନିଷ୍ଟ ଦଳରୁ ଅଲଗା ହୋଇଗଲି ଓ ଅନ୍ୟ କୌଣସି ଦକ୍ଷିଣପନ୍ଥୀ ରାଜନୈତିକ ଦଳରେ ଯୋଗ ନ ଦେବାକୁ ସ୍ଥିର କଲି, ସେତେବେଳେ ସମସ୍ୟା ହେଲା, ରାଜନୀତିରେ ଯେଉଁ ମାଦକତା, ଆନନ୍ଦ ଓ ଆତ୍ମ ସନ୍ତୋଷ ଲାଭ କରୁଥିଲି, ଏବେ ତା'ର ଅଭାବ ପୂରଣ ହେବ କିପରି ?

ରାଜନୀତି ହେଉ ବା ଅନ୍ୟ କୌଣସି ବୃତ୍ତି ହେଉ, ସବୁ କ୍ଷେତ୍ରରେ ସମାଜର ସ୍ୱୀକୃତି ଲାଭ କରିବାକୁ ହେଲେ କଠିଣ ସଂଗ୍ରାମ ଓ ସାଧନା ଆବଶ୍ୟକ । ପରନ୍ତୁ ଓକିଲାତି ଏକ ପ୍ରତିଯୋଗିତାମୂଳକ ବ୍ୟବସାୟ । ଏ ବୃତ୍ତିରେ ପ୍ରତିଷ୍ଠା ଲାଭ କରିବାକୁ ହେଲେ, ନିଜକୁ ନିଜ ଗୋଡ଼ରେ ଠିଆ ହେବାକୁ ହେବ । ଯେଉଁମାନଙ୍କର ବାପା, ଦାଦା ବା ଶ୍ୱଶୁର ଏ ବୃତ୍ତିରେ ଆଗରୁ ରହିଛନ୍ତି, ସେମାନଙ୍କ କଥା ଭିନ୍ନ । ନଚେତ୍ ଯେ କୌଣସି ନବାଗତଙ୍କୁ ସ୍ୱୀକୃତି ପାଇଁ ପ୍ରଗାଢ଼ ଅଧ୍ୟବସାୟ କରିବାକୁ ହେବ । ଏ ବୃତ୍ତିର ଆଉ ଗୋଟିଏ ବିଶେଷତ୍ୱ ହେଲା, କେଜାଣି କିପରି ଜଣେ ଜଣେ ଅଳ୍ପ ସମୟରେ ଅକଳ୍ପନୀୟ କୃତିତ୍ୱ ଲାଭ କରନ୍ତି, ଆଉ କେତେକ ସବୁ ଉଦ୍ୟମ ସତ୍ତ୍ୱେ ପଛୁଆ ହୋଇ

ଜୀବନ ସାରା ରହି ଯାଆନ୍ତି । ଏହାର ଯୁକ୍ତିଯୁକ୍ତ କାରଣ ଅନେକ ସମୟରେ ନିର୍ଦ୍ଧାରଣ କରି ହୁଏନା । ତଥାପି ମୁଁ ବିଚାର କଲି, ଯଦି ସ୍କୁଲ କଲେଜଠାରୁ ଆରମ୍ଭ କରି ସାଧାରଣ କ୍ଷେତ୍ରରେ ଜଣେ ସବୁବେଳେ ଆଗୁଆ ଥାଏ, ତାହାହେଲେ ଏ ବୃତ୍ତିରେ ସେ ପଛୁଆ ହେବ କାହିଁକି? ଏହି ମନୋଭାବ ଥିଲା ମୋର ଅନୁପ୍ରେରଣା, କର୍ମ ପ୍ରବାହର ମୂଳମନ୍ତ୍ର ।

ମୁଁ ନିଃସଂକୋଚରେ ସ୍ୱୀକାର କରୁଛି, ଏ ମନୋଭାବ ବହୁକାଳ ଧରି ମୋର ଜୀବନଯାତ୍ରା ନିୟନ୍ତ୍ରଣ କରି ଆସିଛି । ଓଡ଼ିଶା ବାହାରୁ ବହୁ ବିଶିଷ୍ଟ ଆଡ଼୍‌ଭୋକେଟ୍ ବିଭିନ୍ନ ସମୟରେ କଟକ ଆସିଛନ୍ତି ଓ ସେମାନଙ୍କର ପ୍ରତିଯୋଗୀ ହେବାର ସୌଭାଗ୍ୟ ଘଟିଛି । ମୁଁ ଗଭର୍ଣ୍ଣମେଣ୍ଟ ଆଡ଼୍‌ଭୋକେଟ ଓ ଆଡ଼୍‌ଭୋକେଟ୍ ଜେନେରାଲ ଥିବା ସମୟରେ ପୂର୍ବତନ କେନ୍ଦ୍ର ଆଇନ ମନ୍ତ୍ରୀ ଅଶୋକ ସେନ୍, ପୂର୍ବତନ ଆଟର୍ଣ୍ଣି ଜେନେରାଲ ଲାଲ ନାରାୟଣ ସିନ୍‌ହା, କଲିକତାର ବାରିଷ୍ଟର ସ୍ନେହାଂଶୁ ଆଚାର୍ଯ୍ୟ, ସିଦ୍ଧାର୍ଥ ଶଙ୍କର ରାୟ ଓ ରଣଦେବ ଚୌଧୁରୀ ପ୍ରମୁଖଙ୍କ ବିରୁଦ୍ଧରେ ବାଦାନୁବାଦ କରିବାର ସୁଯୋଗ ପାଇଛି । ସବୁବେଳେ ମନରେ ସେହି ଗୋଟିଏ ଚିନ୍ତା । କେହି ଯେପରି ନ କହନ୍ତୁ ଯେ ଦିଲ୍ଲୀ ବା କଲିକତାର ଆଡ଼୍‌ଭୋକେଟମାନେ କଟକ ଆଡ଼୍‌ଭୋକେଟ୍‌ମାନଙ୍କଠାରୁ ଅଧିକ ବୁଦ୍ଧିମାନ, ଅଧିକ ଦକ୍ଷ । ଦୀର୍ଘ କୋଡ଼ିଏ ବର୍ଷରୁ ଅଧିକ କାଳ ସୁପ୍ରିମ କୋର୍ଟରେ ଓକିଲାତି କରିଛି । ସେଠି ମଧ୍ୟ ଅନୁରୂପ ମନୋଭାବ ମତେ ସଦା ସର୍ବଦା ଅନୁପ୍ରାଣିତ କରେ । ୭୧-୭୨ ମସିହାରେ ମୁଁ ପ୍ରଥମେ ପ୍ରଥମେ ତତ୍‌କାଳୀନ ଆଟର୍ଣ୍ଣି ଜେନେରାଲ ନୀରେନ୍ ଦେଙ୍କର ସହକାରୀ ଭାବରେ କାର୍ଯ୍ୟ କରିଥିଲି । ପରେ ଅନୁଭବ କଲି, ଆଡ଼୍‌ଭୋକେଟ୍ ଜେନେରାଲ ହେବା ପରେ ଅନ୍ୟର ଜୁନିୟର ଭାବରେ କାର୍ଯ୍ୟ କରିବା ମର୍ଯ୍ୟାଦା ହାନିକର । ତା' ପରେ ମୁଁ ପୂର୍ବତନ ଆଟର୍ଣ୍ଣି ଜେନେରାଲ ଓ ପ୍ରଖ୍ୟାତ ଆଡ଼ଭୋକେଟ୍ ସି.କେ. ଦପ୍ତରୀ, ଅଶୋକ ସେନ, ଏସ. ଟି. ଦେଶାଇ, ଫଲି ନରିମ୍ୟାନ୍ ଓ ସୋଲି ସୋରାବଜୀ ପ୍ରଭୃତି ପ୍ରାୟ ସବୁ ବିଶିଷ୍ଟ ଆଡ଼ଭୋକେଟ୍‌ମାନଙ୍କ ବିରୁଦ୍ଧରେ ବଡ଼ ବଡ଼ ମୋକଦ୍ଦମାରେ ଅବତୀର୍ଣ୍ଣ ହୋଇଛି, କିନ୍ତୁ କାହାର ସହଯୋଗୀ ଭାବରେ ନୁହେ । ମୋକଦ୍ଦମାରେ ଜିତିବା ହାରିବା ମୁଖ୍ୟ ବିବେଚନାର ବିଷୟ ନଥିଲା । ମୁଁ ସବୁବେଳେ ମନେ କରୁଥିଲି, ଯେପରିକି ଓଡ଼ିଶାର ସମ୍ମାନ, ଓଡ଼ିଶା ହାଇକୋର୍ଟର ମର୍ଯ୍ୟାଦା ମୋ ହାତ ମୁଠାରେ ଅଛି । ମୋର ଆଚରଣ ଓ କାର୍ଯ୍ୟ ନିର୍ବାହ ଏପରି ନ ହେଉ, ଯେଉଁଥିରୁ ଅନ୍ୟମାନେ ଅନୁଭବ କରିବେ ଯେ ଓଡ଼ିଶାର ମହାଧିବକ୍ତା ଅନ୍ୟ ରାଜ୍ୟର ଅଧିବକ୍ତାମାନଙ୍କଠାରୁ ବିଦ୍ୟା ବୁଦ୍ଧିରେ ନ୍ୟୁନ ।

ବୃତ୍ତିରେ ଏପରି ନିରବଚ୍ଛିନ୍ନ ଧ୍ୟାନ ଦେବାର ଅନ୍ୟ ଏକ କାରଣ ହେଲା, ମୋର ସାଥି ସହପାଠୀମାନେ ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ ଥିଲେ । ମୋର ସହପାଠୀ ଯାମିନୀ ମୋହନ ଦାସ ଜଣେ ଦକ୍ଷ ଇଂଜିନିଅର ଭାବରେ, ପୁରୀର ସର୍ବେଶ୍ୱର ଦାସ ଓ ସମ୍ବଲପୁରର ଦୁର୍ଗାଚରଣ ନାୟକ ଅଧ୍ୟାପକ ଭାବରେ, ସୁରେନ୍ଦ୍ର ନାଥ ଖୁଣ୍ଟିଆ ଓ ପ୍ରହଲ୍ଲାଦ ରଥ ପ୍ରଶାସକ ଭାବରେ ଏବଂ ଆନନ୍ଦ ଚନ୍ଦ୍ର ପଣ୍ଡା ପ୍ରମୁଖ ପୋଲିସ ବିଭାଗରେ ସୁନାମ ଅର୍ଜନ କରିଥିଲେ । ଶ୍ରମିକ ନେତା ଦୁର୍ଗାଚରଣ ମହାନ୍ତି, ଅଧ୍ୟାପକ କୃଷ୍ଣ ପ୍ରସାଦ ପଟ୍ଟନାୟକ, ନୀଳଗିରୀର ବନମାଳୀ ଦାସ, ଡିର୍ହୋଲର ନିଶାମଣି ଖୁଣ୍ଟିଆ ଓ ସାଲେପୁର- ମାହାଙ୍ଗାର ପ୍ରଦୀପ୍ତ କିଶୋର ଦାସ ଏବଂ କଂଗ୍ରେସ ନେତା ବୀରେନ୍ ମିତ୍ର, ନୀଳମଣି ରାଉତରାୟ ଓ ବନମାଳୀ ପଟ୍ଟନାୟକ ପ୍ରମୁଖ ଥିଲେ ହୁଏତ ମୋର ସହପାଠୀ, ସମବୟସୀ ବା ବରିଷ୍ଠ ବନ୍ଧୁ । ଏମାନଙ୍କ ମଧ୍ୟରୁ କିଏ ଏମ୍.ଏଲ.ଏ., କିଏ ମନ୍ତ୍ରୀ । ଏମାନେ ଯେତେବେଳେ ରାଜନୀତି କ୍ଷେତ୍ରରେ ଯଶଧ୍ୱଜା ଧରି ବିରାଜମାନ, ଏମାନଙ୍କ ସାମନାରେ ମୁଁ ଜଣେ ନଗଣ୍ୟ ଅନାମଧେୟ ଅଧିବକ୍ତା ରୂପେ ପରିଗଣିତ ହେବାକୁ ଅପମାନଜନକ ମନେ କରୁଥିଲି । ସେଥିପାଇଁ ଦଳୀୟ ରାଜନୀତିରୁ ବିଚ୍ଛିନ୍ନ ହୋଇଥିଲେ ମଧ୍ୟ, ଅନ୍ତତଃ ନିଜ କର୍ମ ଭୂମିରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିବାକୁ ସବୁବେଳେ ମୋର ପ୍ରୟାସ ଥିଲା ।

ଏପରି ଉଚ୍ଚାଭିଳାଷକୁ କେହି କେହି ଅହଂକାର ଆତ୍ମବଡ଼ିମା ବା ପରଶ୍ରୀକାତରତା ଆଖ୍ୟା ଦେଇ ପାରନ୍ତି । କିନ୍ତୁ ଏପରି ବିଶ୍ଳେଷଣ ବୋଧହୁଏ ସବୁ କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ । ନିଜର ସାଥୀ ସହପାଠୀ ଓ ବନ୍ଧୁମାନଙ୍କ ସହ ସମକକ୍ଷ ହେବାର ପ୍ରଚେଷ୍ଟାକୁ ପରଶ୍ରୀକାତରତା କୁହାଯାଇ ପାରିବ ନାହିଁ । ଅସୂୟା ଓ ଅସହିଷ୍ଣୁତା ନ ଥିଲେ ନିଜକୁ ସମୁନ୍ନତ କରିବାର ପ୍ରଚେଷ୍ଟା ଦୋଷାବହ ନୁହେଁ । ବରଂ ଏ ପ୍ରଯତ୍ନ ଥିଲା ସଂପୂର୍ଣ୍ଣ ସ୍ୱାଭିମାନ ପ୍ରସୂତ । ସ୍ୱାଭିମାନ ନଥିଲେ କୌଣସି ଜାତି ବା ସମାଜର ଅଗ୍ରଗତି ସମ୍ଭବ ନୁହେଁ । ବ୍ୟକ୍ତିଗତ କ୍ଷେତ୍ରରେ ମଧ୍ୟ ତାହା ହିଁ ନିରାଟ ସତ୍ୟ ।

ବୃତ୍ତିରେ ଏପରି ଗଭୀର ମନୋନିବେଶ ପଛରେ ଥିଲା ମୋର ସେ ସମୟର ନିଃସଙ୍ଗ ବନ୍ଧୁହୀନ ଜୀବନ । ସ୍ତ୍ରୀ, ପୁତ୍ର ଓ ପରିବାରର ସ୍ନେହ ବନ୍ଧନ ଯଦି ସାମାଜିକ ଜୀବନର ପରିଧି ହୁଏ, ତାହାହେଲେ ମୋର ସେ ବନ୍ଧନର ଅଭାବ ନଥିଲା । କିନ୍ତୁ ଛାତ୍ରାବସ୍ଥାରୁ ମୋର କାର୍ଯ୍ୟକ୍ଷେତ୍ରର ପରିଧି ଥିଲା ବ୍ୟାପକ । ସ୍ୱାଧୀନତା ସଂଗ୍ରାମର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ମୁଁ

ଯେଉଁମାନଙ୍କର ସଂସ୍ପର୍ଶରେ ଆସିଥିଲି, ସେମାନେ ମୁଖ୍ୟତଃ କଂଗ୍ରେସ ବା ସମାଜବାଦୀ ନେତା । ଛାତ୍ରାବସ୍ଥାରୁ ମୁଁ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ସାରଂଗଧର ଦାସ, ସରଳା ଦେବୀ ଓ ହରେକୃଷ୍ଣ ମହତାବଙ୍କ ସାନ୍ନିଧ୍ୟ ଲାଭ କରିବାର ସୁଯୋଗ ପାଇଥିଲି । ମାର୍କ୍ସୀୟ ଦର୍ଶନରେ ପ୍ରଭାବିତ ହୋଇ ମୁଁ ଯେଉଁମାନଙ୍କର ସହଯାତ୍ରୀ ହୋଇଥିଲି ସେମାନେ ଥିଲେ କମ୍ୟୁନିଷ୍ଟ ମତବାଦୀ । କଲେଜିଏଟ୍ ସ୍କୁଲର ଛାତ୍ରଥିବା ସମୟରେ ସପ୍ତାହରେ ଅନ୍ତତଃ ଥରେ ସ୍ୱରାଜ୍ୟ ଆଶ୍ରମ ବା ନବବାବୁଙ୍କ (ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ) କାଠଯୋଡ଼ୀକୂଳ ଘରକୁ ଯାଇ ସ୍ୱାଧୀନତା ସଂଗ୍ରାମୀମାନଙ୍କ ସହ ଦେଖା ସାକ୍ଷାତ ନ କଲେ ମନ ତୃପ୍ତ ହେଉ ନ ଥିଲା । ୧୯୪୦ ମସିହାରୁ କମ୍ୟୁନିଷ୍ଟ ଦଳ ସହିତ ମୋର ଯେଉଁ ନିବୀଡ଼ ସଂପର୍କ ଗଢ଼ି ଉଠିଥିଲା, ସେ କଥା ପୂର୍ବରୁ ଉଲ୍ଲେଖ କରିଛି । ମୋର ରାଜନୈତିକ ଜୀବନ ଏଇମାନଙ୍କ ମେଳରେ । ମୋର ସାଂବାଦିକତା ଓ ସାହିତ୍ୟ ସେବା ଏଇମାନଙ୍କ ସହଯୋଗରେ । ଏହି ରାଜନୈତିକ ବଂଧୁମାନେ ଥିଲେ ମୋର ସାଙ୍ଗ ସାଥୀ ଓ ସହୋଦର । ରାଜନୀତିରୁ ବିଦାୟ ନେଇ ଓକିଲାତିରେ ଯୋଗ ଦେବା ବେଳକୁ ମୋର ବୟସ ବତ୍ରିଶ ବର୍ଷ । ସେ ବୟସରେ ହଠାତ୍ ନୂଆ ସାଥୀ ଅନ୍ୱେଷଣ କରିବା ବା ନୂତନ ବଂଧୁତ୍ୱ ଗଢ଼ିବା ସଂଭବପର ନଥିଲା । କିଛି ଦିନ ପାଇଁ ମତେ ଏକ ପ୍ରକାରର ସମାଜଚ୍ୟୁତ ବଂଧୁହୀନ ଜୀବନ କଟାଇବାକୁ ହେଲା । ଏବେ ପଶ୍ଚାତ୍ ଦୃଷ୍ଟିପାତ କରି ଅନୁଭବ କରୁଚି, ଏକ ବଂଧୁହୀନ ସମାଜରେ ଜଣେ ବୃନ୍ତଚ୍ୟୁତ ବ୍ୟକ୍ତି ପକ୍ଷରେ, ଅନ୍ତତଃ ଅବସର ବିନୋଦନ ପାଇଁ, ସମସ୍ତ ଶକ୍ତି ନିଷ୍ଠା ଓ ଆସକ୍ତି ଆଇନ୍ ଅଧ୍ୟୟନ ପ୍ରତି ବିନିଯୋଗ କରିବା ବ୍ୟତୀତ ବୋଧହୁଏ ଅନ୍ୟ ଗତି ନଥିଲା ।



# ଅପରାଧୀ କିଏ ?

୧୯୫୯ ମସିହା ଫେବୃୟାରୀ ଚବିଶ ତାରିଖରେ ମୁଁ ହାଇକୋର୍ଟରେ ଷ୍ଟାଣ୍ଡିଂ କାଉନ୍‌ସେଲ ନିଯୁକ୍ତ ହେଲି । ଆଡ଼ଭୋକେଟ ଜେନେରାଲଙ୍କୁ ବାଦ ଦେଇ ବର୍ତ୍ତମାନ ହାଇକୋର୍ଟ ପାଇଁ ଓଡ଼ିଶା ସରକାରଙ୍କର ପ୍ରାୟ ଷୋଳ ଜଣ ଓକିଲ ଅଛନ୍ତି । ଜଣେ ଗଭର୍ଣ୍ଣମେଣ୍ଟ୍ ଆଡ୍‌ଭୋକେଟ, ସାତଜଣ ଅତିରିକ୍ତ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍, ଜଣେ ଷ୍ଟାଣ୍ଡିଂ କାଉନସେଲ ଓ ସାତ ଜଣ ଅତିରିକ୍ତ ଷ୍ଟାଣ୍ଡିଂ କାଉନ୍‌ସେଲ । ସେ ସମୟରେ ଆଡ୍‌ଭୋକେଟ୍ ଜେନେରାଲଙ୍କୁ ସାହାଯ୍ୟ କରିବା ପାଇଁ ହାଇକୋର୍ଟରେ ମାତ୍ର ଦୁଇଜଣ ସରକାରୀ ଓକିଲ ଥିଲେ- ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଓ ଷ୍ଟାଣ୍ଡିଂ କାଉନ୍‌ସେଲ୍ । ମୋର ନିଯୁକ୍ତିକୁ ବିଭିନ୍ନ ମହଲରେ କି ଭାବରେ ଗ୍ରହଣ କରାଯାଇଥିଲା, ତାହା କହିହେବ ନାହିଁ । ତେବେ ବହୁ ବରିଷ୍ଠ ଆଡ୍‌ଭୋକେଟଙ୍କର ସଶ୍ରଦ୍ଧ ଆଶୀର୍ବାଦର ସୂଚନା ମୁଁ ଅନୁଭବ କରିପାରିଥିଲି । ହରିହର ମହାପାତ୍ର, ଲଳିତ କୁମାର ଦାସଗୁପ୍ତ, ପି.ସି. ଚାଟାର୍ଜି, ଗତିକୃଷ୍ଣ ମିଶ୍ର ଓ ହେମେନ୍ଦ୍ର ନାଥ କାନୁନ୍‌ଗୋ ପ୍ରକୃତି ମୋର ନିଯୁକ୍ତିକୁ ସ୍ୱାଗତ କରିଥିଲେ । ଅତୀତର ସରକାର ବିରୋଧୀ ଭୂମିକାକୁ ଉପଲକ୍ଷ୍ୟ କରି ମଧୁସୂଦନ ମହାନ୍ତି (ରଣଜିତଙ୍କ ବାପା) ପରିହାସରେ କହିଲେ ''ଗଂଗାଧରର ମୃତ୍ୟୁ ହୋଇଗଲା ।'' ଚିଫ୍ ଜଷ୍ଟିସ୍ ନରସିମ୍‌ହମ୍, ଜଷ୍ଟିସ ସୌରୀ ପ୍ରସାଦ ମହାପାତ୍ର, ଜଷ୍ଟିସ୍ ରାଓ ଓ ଜଷ୍ଟିସ୍ ବର୍ମନ୍ ମୋତେ ସଦିଚ୍ଛା ଜଣାଇଥିଲେ ।

ବାର୍ ଆସୋସିଏସନ୍‌ର କେତେକ ଜୁନିୟର୍ ବନ୍ଧୁଙ୍କ ଫୁସ୍‌ଫାସ ମୋ କାନରେ ପଡ଼ିଲା । ମୋର ଅଳ୍ପ ଦିନର ଓକିଲାତି ସତ୍ତ୍ୱେ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଧରାଧରି କରି ଏ ନିଯୁକ୍ତି ପାଇଛି ବୋଲି ଗୁଜବ ଶୁଣିବାକୁ ମିଳିଲା । ଏହା ପ୍ରାୟ ୩୪ ବର୍ଷ ତଳର ଘଟଣା । ଏ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବ ଇହଧାମରୁ ବିଦାୟ ନେଇଛନ୍ତି । ତତ୍‌କାଳୀନ ଆଇନ ମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଓ ଆଡ୍‌ଭୋକେଟ୍ ଜେନେରାଲ ଦାମୋଦର ମହାନ୍ତି ଆଉ ନାହାନ୍ତି । ଏମାନଙ୍କ ସଂପର୍କରେ ମିଥ୍ୟା ଅବତାରଣା କରିବା ଘୋର ଅପରାଧ ହେବ । ପ୍ରକୃତରେ ମୁଁ କାହାକୁ ହାରିଗୁହାରୀ କରି ନଥିଲି ବା କାହାର ଅନୁଗ୍ରହ ପ୍ରାର୍ଥୀ ହୋଇ ନଥିଲି । ଯେଉଁ ପଟ୍ଟଭୂମିରୁ ଆସି ମୁଁ ଓକିଲାତିରେ ଯୋଗ ଦେଇଥିଲି, ସେଥିରେ କ୍ଷମତାସୀନ କର୍ତ୍ତାମାନଙ୍କର ଶରଣାଗତ ହେବା ମୋ ଜାତକରେ ନଥିଲା ।

ସ୍ୱାଧୀନତା ସଂଗ୍ରାମ, ଛାତ୍ର ଆନ୍ଦୋଳନ ଓ ବାମପନ୍ଥୀ ଆନ୍ଦୋଳନରେ ଲିପ୍ତ ରହି ୧୯୩୮ ମସିହାରୁ ମୋର ମହତାବ ବାବୁଙ୍କ ସହ ବ୍ୟକ୍ତିଗତ ପରିଚୟ ଥିଲା । ମହତାବଙ୍କର କେହି ସ୍ଥାୟୀ ଶତ୍ରୁ ବା ମିତ୍ର ନଥାନ୍ତି । ତାଙ୍କ ବିବେଚନା ଅନୁଯାୟୀ ଯେ କାମ ନେଇ ଆଣି ଥୋଇ ପାରିବ, ତା' ଉପରେ ଦାୟିତ୍ୱ ଅର୍ପଣ କରିବାକୁ ସେ କୁଣ୍ଠିତ ହୁଅନ୍ତି ନାହିଁ । ଆଡ୍‌ଭୋକେଟ୍ ଭାବରେ ମୋ ସଂପର୍କରେ ତାଙ୍କର ଧାରଣା କ'ଣ, ତାହା ମଧ୍ୟ ମୋତେ ଅଜଣା ନଥିଲା । ଏଣୁ ଧରାଧରି ବା ହାରିଗୁହାରୀର ଆବଶ୍ୟକତା କେଉଁଠି ? ଆଡ୍‌ଭୋକେଟ୍ ଜେନେରାଲ ଷ୍ଟାଣ୍ଡିଂ କାଉନ୍ସେଲ ପଦ ପାଇଁ ଦୁଇଜଣଙ୍କ ନାମ ପ୍ରସ୍ତାବ କରିଥିଲେ । ଆଇନମନ୍ତ୍ରୀ ପାଣିଗ୍ରାହୀ ଅନ୍ୟ ଜଣେ ଆଡ୍‌ଭୋକେଟ୍‌କୁ ପ୍ରଥମ ସ୍ଥାନ ଦେଇ ମୋତେ ଦ୍ୱିତୀୟ ସ୍ଥାନ ଦେଇଥିଲେ । ସ୍ୱର୍ଗତଃ ଅଭିମନ୍ୟୁ ମିଶ୍ର (ପରକାଳରେ ହାଇକୋର୍ଟ ବିଚାରପତି) ସେତେବେଳେ ଆଇନ ବିଭାଗର ଅତିରିକ୍ତ ସେକ୍ରେଟାରୀ ଓ ଆଇନ୍ ସଚେତକ । ଅଭିମନ୍ୟୁ ବାବୁଙ୍କ ଠାରୁ ପରେ ଶୁଣିଲି, ଫାଇଲ୍ ଯେତେବେଳେ ଅନୁମୋଦନ ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ପଠାଗଲା, ମୁଖ୍ୟମନ୍ତ୍ରୀ ଆଇନ ମନ୍ତ୍ରୀଙ୍କ ସୁପାରିଶ୍‌କୁ ଆଗ୍ରାହ୍ୟ କରି ମୋ ନାମରେ ନିଯୁକ୍ତି ପତ୍ର ପଠାଇବାକୁ ନିର୍ଦ୍ଦେଶ ଦେଲେ ।

ରାଜନୀତିର ଘନଘଟାରୁ ବିଦାୟ ନେଇ ବିଚାରାଳୟର ଶାନ୍ତ ସୁଶୀତଳ ଛାୟାରେ ମୁଁ ଆଶ୍ରୟ ନେଇଥିଲି ସତ୍ୟ, କିନ୍ତୁ ସଂଘର୍ଷର ବାତାବରଣ ମୋ ପଛେ ପଛେ ଛାଇ ପରି ଗୋଡ଼ାଇ ଚାଲିଥିଲା । ବିଚାରାଳୟରେ ସାଧାରଣତଃ ଯେଉଁ ବିବାଦର ସମ୍ମୁଖୀନ ହେବାକୁ ହୁଏ ମୁଁ ତାକୁ ଅତି ଆନ୍ତରିକତା ସହ ଗ୍ରହଣ କରୁଥିଲି ଏବଂ ଅଧିବକ୍ତା ଭାବରେ ମୋର ଯାହା କର୍ତ୍ତବ୍ୟ ତାହା ଯେପରି ନିଷ୍ଠା ଓ ସୁନାମ ସହ ପାଳନ କରି ପାରିବି, ସେଥିପାଇଁ ନିରନ୍ତର ଉଦ୍ୟମ କରୁଥିଲି । ଯେଉଁ ପ୍ରକାରର ମୋକଦ୍ଦମାରେ ଅନ୍ତତଃ କିଛିଟା ସାମାଜିକ କର୍ତ୍ତବ୍ୟ ପାଳନ କରାଯାଇ ପାରିବ ବା ଯଥାସଂଭବ ଜନସ୍ୱାର୍ଥ ସଂରକ୍ଷଣ କରାଯାଇ ପାରିବ, କୌଣସି କେସ୍‌ର ଦାୟିତ୍ୱ ଗ୍ରହଣ କଲାବେଳେ ସେ ଦିଗ ପ୍ରତି ବିଶେଷ ଧ୍ୟାନ ଦେଉଥିଲି । ଏ ପ୍ରକାରର କୌଣସି ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମାରେ ଅବତୀର୍ଣ୍ଣ ହେଲେ, ସମ୍ବାଦପତ୍ରମାନେ କେସର୍ ବିବରଣୀ ଓ ମୋର ବକ୍ତବ୍ୟକୁ ପ୍ରାଧାନ୍ୟ ଦେଉଥିଲେ । ବହୁ ରୋମାଂଚକର ଓ ଚାଂଚଲ୍ୟକର କେସ୍ ପରିଚାଳନାରେ ସଂପୃକ୍ତ ରହି ବହୁ ସମୟରେ ମୋତେ ଜନସାଧାରଣ

ଓ ସମ୍ବାଦପତ୍ର ଗୁଡ଼ିକର ତୀକ୍ଷ୍ଣ ଦୃଷ୍ଟି ମଧ୍ୟରେ କାର୍ଯ୍ୟ କରିବାକୁ ହେଉଥିଲା । ଅର୍ଥ ଉପାର୍ଜନ ନୁହେଁ, କେସ୍ ପରିଚାଳନାରେ ଏ ପ୍ରକାରର ପ୍ରକାଶ୍ୟ ଜନ ସମର୍ଥନ ଥିଲା ମୋ ପାଇଁ ପ୍ରେରଣାର ଉତ୍ସ ଓ ଅଗ୍ରଗମନର ପାଥେୟ ।

ବହୁ ସମୟରେ କେସ୍‌ର ଶେଷ ପରିଣତି ଦାବୀର ଯଥାର୍ଥତା ଓ କେସ୍‌ର ଅନ୍ତର୍ନିହିତ ଶକ୍ତି ଉପରେ ନିର୍ଭର କରେ । କିନ୍ତୁ ବେଳେ ବେଳେ ଏପରି ବିସ୍ମୟକର ପରିଣତି ଘଟେ, ଯାହାକି କେବେ କଳ୍ପନାରେ ମଧ୍ୟ ଚିନ୍ତା କରାଯାଇ ନଥାଏ । ଅନେକ ସମୟରେ ସବୁ ଅନ୍ତର୍ନିହିତ ଶକ୍ତି ଓ ଅଧିବକ୍ତାଙ୍କର ସଘନ ଉଦ୍ୟମ ସତ୍ତ୍ୱେ, କେତେକ ବାହ୍ୟ ଶକ୍ତି ଓ କର୍ତ୍ତୃତ୍ୱର ପ୍ରଭାବ ଆଇନ ଶାସନର ମୂଳପିଣ୍ଡକୁ ମଧ୍ୟ ଭାଂଗି ନଷ୍ଟଭ୍ରଷ୍ଟ କରିଦିଏ । ବିଶେଷତଃ ପ୍ରତିବାଦୀ ବା ମୁଦାଲା ଯଦି ଶକ୍ତିଶାଳୀ ରାଜନୈତିକ କର୍ତ୍ତାମାନଙ୍କର ଆଶୀର୍ବାଦ ଲାଭ କରି ପାରନ୍ତି, ତାହାହେଲେ ବହୁକ୍ଷେତ୍ରରେ ନ୍ୟାୟ ବିଚାର ପ୍ରହସନରେ ପରିଣତ ହୁଏ । ଏଠାରେ ଏପରି ଏକ ଅଭିଜ୍ଞତା ପ୍ରସୂତ ଘଟଣାର ଉଲ୍ଲେଖ କରୁଛି । ଷ୍ଟାଣ୍ଡିଂ କାଉନ୍‌ସେଲ ଥିବା ସମୟରେ ହାଇକୋର୍ଟରେ ଦୈନନ୍ଦିନ କେସ୍ କରିବା ବ୍ୟତୀତ, କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ଓ ଚାଂଚଲ୍ୟକର କେସ୍‌ରେ ସରକାରଙ୍କ ତରଫରୁ ସ୍ୱତନ୍ତ୍ର ପବ୍ଲିକ୍ ପ୍ରସେକ୍ୟୁଟର ରୂପେ ନିଯୁକ୍ତ ହୋଇଥିଲି । କଳାହାଣ୍ଡିର ତତ୍‌କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ ଓ କଲେକ୍ଟର ବି. ଜି. ରାଓ ପଟ୍ଟନାୟକଙ୍କ ବିରୁଦ୍ଧରେ ଜଂଗଲରୁ ଚୋରାରେ ଚନ୍ଦନ କାଠ ନେଇଯାଇ ଥିବାର ଅଭିଯୋଗ ହୋଇଥିଲା ଓ ସମ୍ବାଦ ଖବରକାଗଜରେ ବିସ୍ତୃତ ଭାବରେ ପ୍ରକାଶିତ ହୋଇଥିଲା । ପରେ ପରେ କଲେକ୍ଟର କାଠ ବ୍ୟବସାୟୀମାନଙ୍କଠାରୁ ମାଗଣାରେ ସାଗୁଆନ କାଠ ନେଇଛନ୍ତି ବୋଲି ଅଭିଯୋଗ ହେଲା । ଏ ଘଟଣାକୁ ଚପାଇ ଦେବା ପାଇଁ ସ୍ଥାନୀୟ ଫରେଷ୍ଟ ଅଫିସରମାନଙ୍କ ବିରୁଦ୍ଧରେ କେତେକ ମିଥ୍ୟା ଏକ୍‌ସାଇଜ କେସ୍ କଲେକ୍ଟରଙ୍କ ପ୍ରରୋଚନାରେ ଆରମ୍ଭ ହୋଇଥିଲା । ଏହିସବୁ ଦୁର୍ନୀତି ବିରୁଦ୍ଧରେ ଭବାନୀପାଟଣାରେ ପ୍ରବଳ ଜନ ଆନ୍ଦୋଳନ ଆରମ୍ଭ ହେଲା । ଏହି ଗଣ୍ଡଗୋଳିଆ ପରିସ୍ଥିତିରେ ମହତାବଙ୍କ ସରକାର ବି. ଜି. ରାଓ ପଟ୍ଟନାୟକଙ୍କୁ କଳାହାଣ୍ଡିରୁ ସ୍ଥାନାନ୍ତରିତ କରିଥିଲେ ଓ ଅଭିଯୋଗର ତଦନ୍ତ ଦାୟିତ୍ୱ ଭିଜିଲାନ୍ସ ପୋଲିସ ଉପରେ ନ୍ୟସ୍ତ କରିଥିଲେ । ତଦନ୍ତ ପରେ ଭିଜିଲାନ୍ସ ପୋଲିସ ରାଓ ପଟ୍ଟନାୟକଙ୍କ ବିରୁଦ୍ଧରେ ଦୁର୍ନୀତି ନିରୋଧ ଆଇନ ଅନୁଯାୟୀ ପାଂଚୋଟି କେସ୍ ରୁଜୁ କରିଥିଲେ ଓ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ମୋତେ ସେଥିରେ ସ୍ପେଶିଆଲ ପବ୍ଲିକ୍ ପ୍ରସେକ୍ୟୁଟର ନିଯୁକ୍ତ କରାଯାଇଥିଲା ।

ପ୍ରଥମ କେସ୍‌ରେ ଅଭିଯୋଗ ଥିଲା, ଜଣେ ମାରୁଆଡ଼ୀ ବ୍ୟବସାୟୀଙ୍କର ଧାନ ସଂଗ୍ରହ କରିବା ପାଇଁ ସରକାରୀ ଏଜେଣ୍ଟ୍ ହେବା ନିମନ୍ତେ ଦରଖାସ୍ତ କଲେକ୍ଟରଙ୍କ ନିକଟରେ ବିଚାରାଧୀନ ଥିବା ସମୟରେ, କଲେକ୍ଟର ଉକ୍ତ ବ୍ୟବସାୟୀଙ୍କ ଠାରୁ ୪୦୦ କ୍ୟୁବିକ୍ ଫୁଟ ମାପର ସାଗୁଆନ କାଠ ବଜାର ଦର ଠାରୁ ଅତି ଅଳ୍ପ ମୂଲ୍ୟରେ ଖରିଦ୍ କରି ନିଜେ ଲାଭବାନ୍ ହୋଇଥିଲେ ଓ କାଠ ବ୍ୟବସାୟୀଙ୍କୁ ପରେ ଧାନ ପରଚେଜିଂ ଏଜେଣ୍ଟ୍ ନିଯୁକ୍ତ କରିଥିଲେ । ଓଡ଼ିଶାର ସବୁ ଜଙ୍ଗଲ ମଧ୍ୟରେ କଳାହାଣ୍ଡି ଜଙ୍ଗଲର ସାଗୁଆନ୍ ସବୁଠାରୁ ଅଧିକ ମୂଲ୍ୟବାନ୍ । ସେତେବେଳେ ବଜାରରେ ଚାରିଫୁଟ ଗୋଲେଇ କାଠର ଦର କ୍ୟୁବିକ୍ ଫୁଟ ଅନ୍ୟୁନ ଦଶଟଙ୍କା । ବର୍ତ୍ତମାନ ଅବଶ୍ୟ ଏହି ଶ୍ରେଣୀର ସାଗୁଆନ କାଠର ଦାମ କ୍ୟୁବିକ୍ ଫୁଟ ପାଂଚଶହ ଟଂକା । ଅଥଚ ଅଢ଼େଇ ଟଂକା ଭାଉରେ ଖରିଦ୍ କରିଛନ୍ତି ବୋଲି କଲେକ୍ଟର ବ୍ୟବସାୟୀଙ୍କଠାରୁ ବିଲ୍ କରାଇଥାନ୍ତି । ଭିଜିଲାନ୍ସ ପୋଲିସ କଳାହାଣ୍ଡି ଓ ବଲାଂଗୀରର ପ୍ରସିଦ୍ଧ କାଠ ବିକ୍ରୟ କେନ୍ଦ୍ର ଟିଟିଲାଗଡ଼ର କାଠ ବ୍ୟବସାୟୀମାନଙ୍କ ଠାରୁ ପ୍ରାୟ ଏକ ହଜାର ବିଲ୍ ଜବତ୍ କରିଥାନ୍ତି । ବିଲ୍‌ଗୁଡ଼ିକରୁ ଦେଖା ଯାଉଥାଏ ଯେ ସେ ସମୟରେ ଦଶ ଟଂକାରୁ କମ୍ ଦରରେ କୌଣସି ବିକ୍ରି କାରବାର ହୋଇ ନାହିଁ । ଚିଫ୍ ସେକ୍ରେଟାରୀ ରାମନାଥନ୍‌ଙ୍କ ପ୍ରଶାସନିକ ତଦନ୍ତ ନୋଟିସ ଜବାବରେ କଲେକ୍ଟର ସ୍ୱୀକାର କରିଥିଲେ ଯେ ସାଗୁଆନ କାଠ ସେ ଅଢ଼େଇ ଟଂକା ଭାଉରେ ଖରିଦ୍ କରିଅଛନ୍ତି ଓ ଉକ୍ତ କାଠ ବ୍ୟବସାୟୀଙ୍କର ଧାନ ପରଚେଜିଂ ଏଜେଣ୍ଟ ନିଯୁକ୍ତ ହେବା ଦରଖାସ୍ତ ସେ ସମୟରେ କଲେକ୍ଟରଙ୍କ ନିକଟରେ ବିଚାରାଧୀନ ଥିଲା । ଏ ପ୍ରକାରର ପ୍ରମାଣ ଓ ମୁଦାଲାଙ୍କର ପ୍ରାକ୍ତନ ସ୍ୱୀକାରୋକ୍ତି ହେତୁ ସମସ୍ତେ ଭାବୁଥିଲେ ଯେ ସେ ନିଶ୍ଚିତ ଭାବରେ ଦୁର୍ନୀତି ଅପରାଧରେ ଦୋଷୀ ସାବ୍ୟସ୍ତ ହେବେ । ଉକ୍ତ ମାରୁଆଡ଼ୀ ବ୍ୟବସାୟୀଙ୍କୁ କେସ୍‌ରେ ଦୁଇ ନମ୍ବର ମୁଦାଲା ଭାବରେ ଅଭିଯୁକ୍ତ କରାଯାଇଥାଏ । ପରଚେଜିଂ ଏଜେଣ୍ଟ ଦରଖାସ୍ତ ବିଚାରାଧୀନ ଅବସ୍ଥାରେ କଲେକ୍ଟରଙ୍କୁ ଆର୍ଥିକ ସୁବିଧା ଯୋଗାଇ ଦେଇ ସେ ଥିଲେ ଅପରାଧରେ ଭାଗୀଦାର । ବିଚରା ବ୍ୟବସାୟୀ ଅସହାୟ ଅବସ୍ଥାରେ କଚେରୀ ବାରଣ୍ଡାରେ ବୁଲି ବୁଲି କହୁଥାଆନ୍ତି, କଲେକ୍ଟର ସାହେବ କୌଣସି ଦାମ୍ ଦେଇ ନାହାନ୍ତି, ତେବେ ଦଶ ଟଂକା ନ ଲେଖି ଅଢ଼େଇ ଟଂକା ମୂଲ୍ୟରେ ବିଲ୍ କରିବାକୁ କହିଲେ କାହିଁକି ? ତାଙ୍କ ଭାଷାରେ "କୋଇ ଦିଆ ହେଁ ଯା କୋଇ ଲିୟା ହେ, ଜବ୍ (ଅ) ଢ଼ାଇ ରୁପୟା ଲିଖାୟା, ତୋ

ଦଶ ରୂପୟା କେୟୁଁ ନହିଁ ଲିଖାୟା ?'' ନିଜ ଆୟର ପରିସୀମାରୁ ଅଧିକ ସଂପତ୍ତି ଠୁଳ କରିବା ଜଣେ ସରକାରୀ କର୍ମଚାରୀଙ୍କ ପକ୍ଷରେ ଦଣ୍ଡନୀୟ ଅପରାଧ । ଏଣୁ ଅନ୍ୟ ଗୋଟିଏ ଅପରାଧରୁ ନିଜକୁ ଦୋଷମୁକ୍ତ କରିବା ପାଇଁ କଲେକ୍ଟର ସାହେବ ଯେ ଅଳ୍ପ ମୂଲ୍ୟରେ ବିଲ୍‌ର ବ୍ୟବସ୍ଥା କରିଥିଲେ, ତାହା ବୋଧହୁଏ ଅଶିକ୍ଷିତ ବ୍ୟବସାୟୀ ବୁଝି ପାରୁ ନଥିଲେ ।

ସେହି ସମୟରେ ଭିଜିଲାନ୍ସ ବିଭାଗ ଏତେ ବ୍ୟାପକ ନଥିଲା । କଟକରେ ଅବସ୍ଥାପିତ ଭିଜିଲାନ୍ସ ଏସ୍. ପି. ଘନଶ୍ୟାମ ଦାଶ (ପରେ ଆଇ.ଜି.) ମୋତେ ଗୋପନରେ କହିଲେ, ''ମୁଦାଲା ରାଓ ପଟ୍ଟନାୟକଙ୍କ ପଛରେ ବହୁ ବରିଷ୍ଠ ସରକାରୀ କର୍ତ୍ତାଙ୍କର ପ୍ରଚ୍ଛନ୍ନ ସମର୍ଥନ ରହିଛି । ତାଙ୍କୁ ଖଲାସ କରିବା ପାଇଁ ସେମାନେ ସବୁ ପ୍ରକାରର ଅସ୍ତ୍ର ପ୍ରୟୋଗ କରିବେ । ମୁଖ୍ୟମନ୍ତ୍ରୀ ମହତାବଙ୍କର ଆପଣଙ୍କର ନିଷ୍ଠା ଓ ସାଧୁତା ଉପରେ ଅଖଣ୍ଡ ବିଶ୍ୱାସ, ସେଥିପାଇଁ ତାଙ୍କ ନିର୍ଦ୍ଦେଶରେ ଆପଣଙ୍କର ନିଯୁକ୍ତି ।'' ଏ କେସ୍ ବଲାଂଗୀର ସ୍ପେଶିଆଲ୍ ଜଜ୍ କୋର୍ଟରେ ବିଚାର ହେଲା । ମୋର ପ୍ରସ୍ତାବ କ୍ରମେ ଭବାନୀପାଟଣାର ଆଡ୍‌ଭୋକେଟ ଗଣାଧିପ ଭୋଇ ଓ ବଳରାମ ପାଟଯୋଷୀ ସହକାରୀ ପ୍ରସେକ୍ୟୁଟର ରୂପେ ନିଯୁକ୍ତ ହୋଇଥିଲେ । ରାଓ ପଟ୍ଟନାୟକଙ୍କର ଆଡ୍‌ଭୋକେଟ୍ ଥିଲେ ବ୍ରହ୍ମପୁରର ବିଶିଷ୍ଟ ଆଇନଜୀବି ମୋଚାଲା ସୀତାରାମାୟା । ମୋଚାଲାଙ୍କର ଫୌଜଦାରୀ କେସ୍ ପରିଚାଳନାରେ ବିଶେଷ ସୁନାମ ଥିଲା । କେବଳ ଗଞ୍ଜାମ ନୁହେଁ, ଓଡ଼ିଶାର ବିଶିଷ୍ଟ କ୍ରିମିନାଲ୍ ଲୟରମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ତାଙ୍କର ଆଇନ ଜ୍ଞାନ, ଜେରା କରିବାର ଦକ୍ଷତା, ଇଂରେଜୀ ଭାଷାରେ ଦଖଲ ଓ ଉପସ୍ଥାପନା ଶକ୍ତି ଥିଲା ଅଦ୍ୱିତୀୟ । ବଲାଂଗୀରରେ କେସ୍‌ର ବିଚାର ଚାଲୁଥିବା ସମୟରେ ମୋକଦ୍ଦମାର ବିବରଣୀ ଦୁଇ କଲମ ହେଡ଼ିଂରେ 'ସମାଜ' ଓ 'ପ୍ରଜାତନ୍ତ୍ର'ରେ ପ୍ରକାଶିତ ହେଉଥାଏ । ସାଗୁଆନ କାଠ ଚୋରା କାରବାର ବିବରଣୀ ଥିଲା ପାଠକମାନଙ୍କ ପାଇଁ ଉପାଦେୟ ରୋମାଂଚକର ପାଠ୍ୟ । ସମ୍ବାଦପତ୍ରମାନେ କୋର୍ଟର ବିବରଣୀ ପ୍ରକାଶ କଲାବେଳେ ମୋର ଯୁକ୍ତି ଓ ବକ୍ତବ୍ୟକୁ ବିଶେଷ ପ୍ରାଧାନ୍ୟ ଦେଉଥିଲେ । ଏ ପ୍ରକାରର ପରିପ୍ରଚାର ପ୍ରତିବାଦୀ ମହଲରେ ମହା ଆତଙ୍କ ସୃଷ୍ଟି କରୁଥିଲା ।

୧୯୬୧ ମସିହାରେ ଓଡ଼ିଶା ରାଜନୀତିରେ ଚମକପ୍ରଦ ପରିବର୍ତ୍ତନ ଘଟିଲା । କଂଗ୍ରେସ ଦଳର ନେତା ହରେକୃଷ୍ଣ ମହତାବ ନିଜ ଦଳର ବହୁ ବିଶିଷ୍ଟ ଯୁବ ସହକର୍ମୀଙ୍କର ସମର୍ଥନ ହରାଇଲେ । ତାଙ୍କର ଅତି ଅନ୍ତରଂଗ ସମର୍ଥକ ଭାବରେ ପରିଚିତ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ନୀଳମଣି ରାଉତରାୟ ମହତାବଙ୍କ ନେତୃତ୍ୱରେ ଚାଳିତ କଂଗ୍ରେସ ଗଣତନ୍ତ୍ର ପରିଷଦର ମିଳିତ ସରକାରକୁ ସମର୍ଥନ କରିବେ ନାହିଁ ବୋଲି କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ଜଣାଇଦେଲେ । ମହତାବଙ୍କୁ ଇସ୍ତଫା ଦେବାକୁ ପଡ଼ିଲା ଓ ମିଳିତ ମନ୍ତ୍ରୀମଣ୍ଡଳ ଭାଂଗିଗଲା । ଜୁନ୍ ମଧ୍ୟଭାଗରେ ଅନୁଷ୍ଠିତ ମଧ୍ୟବର୍ତ୍ତୀ କାଳୀନ ବିଧାନ ସଭା ନିର୍ବାଚନରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ଦଳ ୧୯୩୭ ମସିହା ପରେ ପ୍ରଥମ ଥର ପାଇଁ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କଲେ । ପ୍ରଥମ ଓ ଦ୍ୱିତୀୟ ସାଧାରଣ ନିର୍ବାଚନରେ କଂଗ୍ରେସ ଦଳ ପଂଚାବନରୁ ଷାଠିଏ ମଧ୍ୟରେ ସିଟ୍ ହାସଲ କରିଥିଲେ, ଅଥଚ ଏହି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ଦଳ ୮୨ଟି ସିଟ୍ ଦାଖଲ କରିବାକୁ ସମର୍ଥ ହୋଇଥିଲେ । ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ, ବୀରେନ୍ ମିତ୍ର ଉପମୁଖ୍ୟମନ୍ତ୍ରୀ ଓ ନୀଳମଣି ରାଉତରାୟ ପ୍ରମୁଖ ମନ୍ତ୍ରୀମଣ୍ଡଳର ସଦସ୍ୟ ହେଲେ । ଆଇନ ବିଭାଗ ରହିଲା ଉପମୁଖ୍ୟ ମନ୍ତ୍ରୀଙ୍କ ହାତରେ ଏବଂ ଏଥର ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ନଥିବା ଦୀନବଂଧୁ ସାହୁ ହେଲେ ନୂତନ ସରକାରଙ୍କର ଆଡ଼ଭୋକେଟ୍ ଜେନେରାଲ । ରାଓ ପଟ୍ଟନାୟକଙ୍କର ପରମ ହିତାକାଂକ୍ଷୀ ଭାବରେ ପରିଚିତ ଶିବରମଣ, ଯାହାଙ୍କୁ ପୂର୍ବ ସରକାର ଚିଫ୍ ସେକ୍ରେଟାରୀ ପଦରୁ ଅନ୍ତର କରି ବୋର୍ଡ଼ ଅଫ୍ ରେଭିନିଉ ସଭ୍ୟ ପଦକୁ ସ୍ଥାନାନ୍ତରିତ କରିଥିଲେ, ତାଙ୍କୁ ପୁନର୍ବାର ଚିଫ୍ ସେକ୍ରେଟାରୀ ପଦରେ ଅଧିଷ୍ଠିତ କରାହେଲା । ଭିଜିଲାନ୍ସ ପୋଲିସ ସୂତ୍ରରୁ ଖବର ଆସିଲା, ସରକାର ରାଓ ପଟ୍ଟନାୟକଙ୍କ ବିରୁଦ୍ଧରେ ଚାଲୁଥିବା ମୋକଦ୍ଦମା ଉଠାଇ ନେବେ । କିଛି ଦିନ ପରେ ସେହି ସୂତ୍ରରୁ ନୂତନ ସମ୍ବାଦ- ମୋକଦ୍ଦମା ଉଠାଇନେଲେ ସମାଲୋଚନା ହୋଇପାରେ, ଏଣୁ ଅନ୍ୟ ବାଟରେ ତାଙ୍କୁ ପ୍ରଥମ କେସ୍‌ରେ ଖଲାସ କରାଇଦବାର ବ୍ୟବସ୍ଥା କରାହେବ ଓ ପରେ ସେହି କାରଣ ଦେଖାଇ ଅନ୍ୟ କେସ୍‌ଗୁଡ଼ିକ ଉଠାଇ ନିଆହେବ । ଷଡ଼ଯନ୍ତ୍ରର ପ୍ରଥମ ସୂଚନାରେ ମୁଁ ଆତଙ୍କିତ ହୋଇଉଠିଲି ।

ଏ ମଧ୍ୟରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଧର୍ମଶାଳା ନିର୍ବାଚନ ମଣ୍ଡଳୀରୁ ସାମ୍ୟବାଦୀ ନେତା ବାଂକ ବିହାରୀ ଦାସଙ୍କୁ ପରାଜିତ କରି ନିର୍ବାଚିତ ହୋଇଥିବା

ବିଧାୟକ (ପରେ ଉପମନ୍ତ୍ରୀ) ଚିତ୍ତରଂଜନ ନାୟକଙ୍କ ବିରୁଦ୍ଧରେ ଏକ ନିର୍ବାଚନ ମୋକଦ୍ଦମା ହୋଇଥିଲା । ସୋସାଲିଷ୍ଟ୍ ନେତା ବାଙ୍କ ବିହାରୀ ଦାସ ଏ ଆବେଦନ ପତ୍ର ଦାଖଲ କରିଥିଲେ । ସେ ସମୟର ରୁଲ୍‌ରେ ଆଡ୍‌ଭୋକେଟ୍ ଜେନେରାଲ ବା ତାଙ୍କର ସହକାରୀମାନେ ନିର୍ବାଚନ ମୋକଦ୍ଦମା ଚଳାଇବାରେ ନିଷେଧ ଥିଲା । ଆଇନ ବିଭାଗର ସ୍ୱତନ୍ତ୍ର ଅନୁମତିକ୍ରମେ ମୁଁ ଚିତ୍ତ ରଂଜନ ନାୟକଙ୍କ ପକ୍ଷରୁ ଆଡ୍‌ଭୋକେଟ୍ ନିଯୁକ୍ତ ହେଲି । ହାଇକୋର୍ଟ କୋଠାରେ ଆଲ୍ଲାହାବାଦ ହାଇକୋର୍ଟର ଜଣେ ଅବସରପ୍ରାପ୍ତ ବିଚାରପତି ଜଷ୍ଟିସ୍ ବି.ଏମ୍. ଲାଲ୍‌ଙ୍କୁ ନେଇ ଗଠିତ ଟ୍ରାଇବ୍ୟୁନାଲ୍‌ରେ ଏହି ମୋକଦ୍ଦମାର ବିଚାର ହୋଇଥିଲା । ଜଷ୍ଟିସ୍ ଲାଲ୍‌ଙ୍କ ରାୟ ଅନୁଯାୟୀ ଚିତ୍ତରଂଜନଙ୍କର ନିର୍ବାଚନ କାଏମ୍ ରହିଲା ଓ ବାଙ୍କବିହାରୀ ଦାସଙ୍କ ଆବେଦନ ଖାରଜ ହେଲା । ଏହି ସଫଳତା ପାଇଁ ଆଇନ ମନ୍ତ୍ରୀ ମତେ ଫୋନ୍‌ରେ ବାରବାର ଅଭିନନ୍ଦନ ଜଣାଇଲେ ଓ ତାଙ୍କ କଟକ ଘରକୁ ଡକାଇ ପଠାଇଲେ । ଯେତେଦୂର ମନେ ପଡୁଛି, ବୀରେନ୍ ମିତ୍ର ସେତେବେଳେ ବିହାରୀବାଗ୍‌ରେ ରହୁଥାଆନ୍ତି । କିଛି ଦିନ ପରେ ମହତାବ ବାବୁଙ୍କ ସହ ଅପଡ଼ ହେତୁ ବିହାରୀବାଗ୍ ଘର ଛାଡ଼ି ଦେଇଥିଲେ । ନିର୍ବାଚନ ମୋକଦ୍ଦମାରେ ସଫଳତା ପାଇଁ ପୁଣିଥରେ ବଧାଇ ଦେଇ ବୀରେନ୍ ଦା କହିଲେ :-

''ଏ ସଫଳତା ପାଇଁ ଆମେ ସମସ୍ତେ ଖୁବ୍ ଖୁସି । ତତେ ଗୋଟିଏ ଅନୁରୋଧ, ଚିଫ୍ ସେକ୍ରେଟାରୀଙ୍କ ଇଚ୍ଛା- ରାଓ ପଟ୍ଟନାୟକଙ୍କୁ ସେ ଫୌଜଦାରୀ କେସ୍‌ରୁ ଖଲାସ କରାଇଦେ । ମହତାବ ତାଙ୍କୁ ଅନ୍ୟାୟ ଭାବରେ କେସ୍‌ରେ ଜଡ଼ିତ କରି ଦେଇଛନ୍ତି, କିନ୍ତୁ ସେ ନିର୍ଦ୍ଦୋଷ ।''

ବୀରେନ୍ ମିତ୍ରଙ୍କ ସହିତ ୧୯୩୯ ମସିହାରୁ ସଦ୍‌ଭାବ । ସୁଭାଷ ଚନ୍ଦ୍ର ବୋଷ ଯୁବ ସମ୍ମିଳନୀ ଉଦ୍‌ଘାଟନ କରିବା ପାଇଁ ସେ ବର୍ଷ କଟକ ଆସିବା ବେଳେ, ବୀରେନ ଦା ଯୁବ ସମ୍ମିଳନୀ ଅଭ୍ୟର୍ଥନା ସମିତିର ଜଣେ ବଡ଼ କାର୍‌ପଟଦାର । ତା'ପରେ ପରେ ସେ ଛାତ୍ର ସଂଘରେ ଯୋଗ ଦେଲେ । ୧୯୪୧ ମସିହାରେ ନିଖିଳ ଉତ୍କଳ ଛାତ୍ରସଂଘର ସାଧାରଣ ସଂପାଦକ ନିର୍ବାଚିତ ହେଲେ । ତାଙ୍କ ସହିତ ସଂପର୍କ ଅଧିକ ଘନିଷ୍ଠତର ହେଲା । ଭାରତ ଛାଡ଼ ଆନ୍ଦୋଳନରେ ଗିରଫ ହୋଇ ବ୍ରହ୍ମପୁର ଜେଲରେ କଂଗ୍ରେସ ନେତାମାନଙ୍କ ସଂସ୍ପର୍ଶରେ ଆସିଲେ । ଜେଲ୍‌ରୁ ଖଲାସ ହୋଇ ବିଧିବଦ୍ଧ ଭାବରେ କଂଗ୍ରେସରେ

ଯୋଗ ଦେଲେ । କିନ୍ତୁ କୌଣସି ପ୍ରକାରର ରାଜନୈତିକ ବିରୋଧ ବା ମତଭେଦ ତାଙ୍କର ବ୍ୟକ୍ତିଗତ ସଂପର୍କକୁ ପ୍ରଭାବିତ କରୁ ନଥିଲା । ଚରମ ରାଜନୈତିକ ଶତ୍ରୁ ଆଶ୍ରୟପ୍ରାର୍ଥୀ ହେଲେ ସେ ତାଙ୍କୁ ସାହାଯ୍ୟ କରିବାକୁ କୁଣ୍ଠିତ ହେଉ ନଥିଲେ । ସେଥିପାଇଁ ଆବାଳ ବୃଦ୍ଧ ସମସ୍ତଙ୍କର ଏ ଥିଲେ ପ୍ରିୟ ‘‘ବୀରେନ ଦା’’

ବୀରେନ୍‌ଦାଙ୍କର ଅନୁରୋଧ ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ପୂର୍ବରୁ ଏପରି ସଂଯୋଜନାର କିଛି ସୂରାକ ପାଇଥିଲି । ମୁହୂର୍ତ୍ତଟିଏ ଚିନ୍ତା କରି ମୁଁ କହିଲି, ‘‘ମହତାବ ବାବୁଙ୍କ ବ୍ୟକ୍ତିଗତ ଆକ୍ରୋଷ ବିଷୟରେ ମତେ କିଛି ଜଣା ନାହିଁ । ଜଣେ ସରକାରୀ କର୍ମଚାରୀଙ୍କ ପ୍ରତି ବିନା କାରଣରେ କେବଳ ମନ୍ଦ ଉଦ୍ଦେଶ୍ୟ ନେଇ ମୁଖ୍ୟମନ୍ତ୍ରୀ ଏପରି କରିବେ, ଏହା ମୋ କଳ୍ପନାରେ ଆସୁନାହିଁ । ତେବେ କେସର ସମସ୍ତ କାଗଜ ପତ୍ର ମୁଁ ପଢ଼ିଛି । ମୋ ମତରେ ରାଓ ପଟ୍ଟନାୟକଙ୍କ ବିରୁଦ୍ଧରେ ଆଗତ ଅଭିଯୋଗ ଗୁଡ଼ିକ ଯଥାର୍ଥ ।’’

ବୀରେନ ଦା ଚଢ଼ା ଗଳାରେ କହିଲେ ‘‘ତୁ ସବୁ କଥା ଜାଣି ନାହୁଁ । ଏ କେବଳ ମହତାବଙ୍କ କାର୍‌ସାଦୀ’’ ମୁଁ ଉତ୍ତର ଦେଲି ‘‘ଯେ କୌଣସି ମୋକଦ୍ଦମା ଉଠାଇ ନେବାକୁ ସରକାରଙ୍କର ଆଇନଗତ କ୍ଷମତା ଅଛି । ସରକାର ଇଚ୍ଛା କଲେ ସେପରି କରି ପାରନ୍ତି । କିନ୍ତୁ ସେ ନିଷ୍ପତ୍ତିରେ ବା କୌଣସି ପ୍ରକାର ଦୁର୍ନୀତିରେ ମୁଁ ଭାଗୀଦାର ହୋଇ ପାରିବି ନାହିଁ । ସରକାର ମତେ ଏ ଦାୟିତ୍ୱରୁ ଅବ୍ୟାହତି ଦେଲେ ମୋର ଆପତ୍ତି ନାହିଁ । କିନ୍ତୁ ମୋ ଜରିଆରେ କୌଣସି ଅନ୍ୟାୟ ଆଚରଣ ଆଶା କରିବା ଉଚିତ ନୁହେଁ ।’’

ଏ ଆଲୋଚନା ଏତିକିରେ ଇତି ହେଲା । ମୋ ଠାରୁ ଏ ପ୍ରକାରର ସିଧା ସଳଖ ଉତ୍ତର ସେ ବୋଧହୁଏ ଆଶା କରୁ ନଥିଲେ । ମନେ ହେଲା, ମୋ ଉତ୍ତରରେ ସେ ଅତ୍ୟନ୍ତ କ୍ଷୁବ୍‌ଧ । ଆଶା କରୁଥିଲି, କେସ୍‌ରୁ ବିଦାୟ ଦେବାକୁ ଶୀଘ୍ର ନିର୍ଦ୍ଦେଶ ଆସିଯିବ, କିନ୍ତୁ ସେପରି ଆଦେଶ ଆସିଲା ନାହିଁ । ବହୁ ଅଭିଜ୍ଞତାରୁ ଜାଣିଥିଲି, ବୀରେନ୍ ମିତ୍ରଙ୍କର ମତାମତର ଯୁକ୍ତିଯୁକ୍ତ ବିରୋଧ କଲେ ସେ ଭୁଲ ବୁଝନ୍ତି ନାହିଁ ବା ଆକ୍ରୋଷ ରଖନ୍ତି ନାହିଁ । ଅନେକ ଥର ବିରୋଧର ସମ୍ମୁଖୀନ ହୋଇ ସେ ସ୍ୱୀକାର କରିଛନ୍ତି ଯେ ବିବାଦ ସହିତ ସଂଶ୍ଳିଷ୍ଟ ଲୋକର ଭୁଲ ପରାମର୍ଶରେ ସେ ପରିଚାଳିତ ହୋଇଛନ୍ତି ।

ସରକାରଙ୍କ ନୀରବତାରୁ ମୁଁ ଅନୁମାନ କଲି, ସେ ବୋଧହୁଏ ନିଜର ଭୁଲ ବୁଝି ପାରିଛନ୍ତି । କିନ୍ତୁ ଏ ଘଟଣାର ମର୍ମ ଥିଲା ଆହୁରି ଗଭୀର । କିଛି ଦନି ପରେ ଆଡ୍‌ଭୋକେଟ୍ ଜେନେରାଲଙ୍କଠାରୁ ଶୁଣିଲି, ନୂତନ ସରକାରଙ୍କ ପୂର୍ବ ନିଷ୍ପତ୍ତିରେ କୌଣସି ପରିବର୍ତ୍ତନ ହୋଇ ନାହିଁ । ସଂଶ୍ଳିଷ୍ଟ ବ୍ୟକ୍ତିମାନଙ୍କର ପ୍ରରୋଚନା ଓ ଚାପ ବୋଧହୁଏ ଅଧିକ ଶକ୍ତିଶାଳୀ ହୋଇଛି ।

କେସ୍ ବିଚାରର ଶେଷ ଆଡ଼କୁ ଦିନେ ଦେଖାଗଲା, ଆଇନ ମନ୍ତ୍ରୀଙ୍କର ସହପାଠୀ, ସରକାରଙ୍କର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଭାଗର ଜଣେ ଜଏଣ୍ଟ ସେକ୍ରେଟାରୀ, ବିଶ୍ରାନ୍ତି ସମୟରେ ବଲାଂଗୀର ସ୍ପେଶିଆଲ ଜଜ୍‌ଙ୍କ ଚାମ୍ବରରେ ଦୀର୍ଘ ଆଲୋଚନାରେ ବ୍ୟସ୍ତ । ଜଜ୍ ସାହେବ କୋର୍ଟକୁ ଆସିବାରେ ବିଳମ୍ବ ହେବାରୁ ପେସ୍କାରଙ୍କଠାରୁ ଶୁଣିଲୁ, କେସ୍ ବିଷୟରେ କ'ଣ ଆଲୋଚନା ଚାଲିଛି । ପ୍ରାୟ ଦେଢ଼ ଘଣ୍ଟା ପରେ ଜଏଣ୍ଟ୍ ସେକ୍ରେଟାରୀ ବିଦାୟ ନେଲେ । ଏହି କେସ୍‌ରେ ମୋର ସହକାରୀ ଭବାନୀପାଟଣାର ଆଡ୍‌ଭୋକେଟ୍ ସ୍ୱର୍ଗୀୟ ବଳରାମ ପାଟଯୋଷୀ ଉକ୍ତ ଜଏଣ୍ଟ୍ ସେକ୍ରେଟାରୀଙ୍କର ସହପାଠୀ । ସଂଧ୍ୟାବେଳେ ସେ କହିଲେ- ସ୍ପେଶିଆଲ ଜଜ୍‌କୁ ପ୍ରଭାବିତ କରିବା ପାଇଁ ଜଏଣ୍ଟ ସେକ୍ରେଟାରୀ ବଲାଂଗୀର ଆସିଛନ୍ତି । ଏହା ପରେ କେସ୍ ଚାଲିଲା- ସାକ୍ଷୀ ଜମାନବନ୍ଦୀ ନିଆହେଲା । କିନ୍ତୁ ସ୍ପେଶିଆଲ ଜଜ୍‌ଙ୍କ ମନୋଭାବରେ କୌଣସି ପରିବର୍ତ୍ତନ ପରିଦୃଷ୍ଟ ହେଲା ନାହିଁ ।

ଯେତେଦୂର ମନେ ଅଛି, କେସ୍‌ର ବିଚାର ୧୯୬୨ ମସିହା ଖରାଛୁଟି ଆଗରୁ ଶେଷ ହେଲା । ସୁଆଲ୍ ଜବାବ ସମୟରେ ମୁଁ ଓ ମୋର ଅନ୍ୟ ସହଯୋଗୀ ଆଡ୍‌ଭୋକେଟ୍‌ମାନେ ବଲାଂଗୀର ସର୍କିଟ୍ ହାଉସ୍‌ରେ ରହୁଥାଉ । ଆମ ପାଖ ସୁଇଟ୍‌ରେ ଆଉ ଜଣେ ଜିଲ୍ଲା ଜଜ୍ ଗସ୍ତରେ ଆସି ଡେରା ପକାଇଲେ । ଉକ୍ତ ବଂଗଳାଭାଷୀ ଜିଲା ଜଜ୍ ସେହି ସମୟରେ ହାଇକୋର୍ଟରୁ ଡେପୁଟେସନ୍‌ରେ ଯାଇ ସରକାରଙ୍କ ଅଧୀନରେ ସେଲ୍‌ସଟ୍ୟାକ୍ସ ଟ୍ରାଇବ୍ୟୁନାଲର ସଦସ୍ୟ ଥାଆନ୍ତି । ଦିନେ ସଂଧ୍ୟାବେଳେ ଭ୍ରମଣରୁ ଫେରି ଆମେ ଦେଖିଲୁ, ସ୍ପେଶିଆଲ ଜଜ୍ ଓ ଟ୍ରାଇବ୍ୟୁନାଲ ସଦସ୍ୟ ସର୍କିଟ ହାଉସ ଲନ୍‌ରେ ବସି ଆଲୋଚନାରତ । ସେମାନେ ଏତେ ଦୂରରେ ବସିଥାଆନ୍ତି ଯେ କାହାରି ସ୍ୱର ଶବ୍ଦ ମଧ୍ୟ ଆମକୁ ଶୁଣାଯାଉ ନଥାଏ । ମଝିରେ ମଝିରେ ସର୍କିଟ୍ ହାଉସ୍‌ର ଖାନସମା କେବଳ ଚା' ନେଇ ପରିବେଷଣ କରୁଥାଏ । ଖାନସମା ପାଟଯୋଷୀଙ୍କର

ପୂର୍ବ ପରିଚିତ । ପାଟଯୋଷୀ କେବଳ ଏତିକ ଖବର ସଂଗ୍ରହ କରି ପାରିଲେ ଯେ ସେମାନେ ଜଣେ ରାଓ ପଟ୍ଟନାୟକଙ୍କ ବିଷୟରେ ଗପ କରୁଛନ୍ତି । ଦୁଇଘଣ୍ଟା ପରେ ସ୍ପେଶିଆଲ ଜଜ୍ ସର୍କିଟ୍ ହାଉସରୁ ବିଦାୟ ନେଲେ । ଏହି ମୋକଦ୍ଦମାର ମୁଖ୍ୟ ଅନୁସଂଧାନକାରୀ ଡି.ଏସ୍.ପି ସାରଥି ପାତ୍ର ପରଦିନ ସକାଳେ ମତେ ଚୁପ୍ କରି କହିଲେ, ଏହି ଟ୍ରାଇବ୍ୟୁନାଲ ଜଜ୍ କେବଳ ସ୍ପେଶିଆଲ ଜଜ୍‌ଙ୍କୁ ପ୍ରଭାବିତ କରିବା ପାଇଁ ବଲାଂଗୀର ଆସିଛନ୍ତି । ଦ୍ୱିତୀୟ ଦିନ ସଂଧ୍ୟାରେ ଦେଖାଗଲା, ସର୍କିଟ୍ ହାଉସ ଲନ୍‌ରେ ପୂର୍ବ ସଂଧ୍ୟାର ପୁନରାବୃତ୍ତି । ଆମର ସଂଦେହ ଦୃଢ଼ୀଭୂତ ହେଲା । ତୃତୀୟ ଦିନ ସୁଆଲ ଜବାବ ଶେଷ ହେଲା । ଗଣାଧିପ ଭୋଇ ଓ ପାଟଯୋଷୀ ଭବାନୀପାଟଣା ଗଲେ । ପରଦିନ ସକାଳୁ ଆମେ କଟକ ଆସିଲୁ ।

କିଛି ଦିନ ପରେ ରାୟ ପ୍ରକାଶିତ ହେଲା । ଡି.ଏସ୍.ପି. ପାତ୍ର ଓ ଇନସ୍‌ପେକ୍ଟର ବ୍ରହ୍ମା ଛଳ ଛଳ ଆଖିରେ କହିଲେ, ରାଓ ପଟ୍ଟନାୟକ ଖଲାସ ହୋଇଛନ୍ତି । ପୂର୍ବାପର ସବୁ ଘଟଣା ଜାଣିଥିଲେ ମଧ୍ୟ, ନିଜର ଅକ୍ଳାନ୍ତ ଶ୍ରମର ନିଷ୍ଫଳତାରେ ବୋଧହୁଏ ସେମାନେ ମର୍ମାହତ ହୋଇଥିଲେ । ମୁଁ ସ୍ଥିର କଲି, କର୍ତ୍ତବ୍ୟ ପଥରୁ ବିଚଳିତ ହେବି ନାହିଁ । ଖଲାସ ଆଦେଶ ବିରୁଦ୍ଧରେ ହାଇକୋର୍ଟରେ ଅପିଲକରିବା ପାଇଁ ସୁପାରିଶ କରି ମତାମତ ପଠାଇଲି । କିନ୍ତୁ ଅପିଲ ନ କରିବା ପାଇଁ ଆଇନ୍ ବିଭାଗ ନିଷ୍ପତ୍ତି ନେଲେ । ସେ କାଳରେ ଭୁବନେଶ୍ୱରରେ ଅବସ୍ଥାପିତ ହେଲେ ପ୍ରଥମ ଶ୍ରେଣୀ ଅଫିସରମାନଙ୍କୁ ମାସିକ ଅଢ଼େଇଶହ ଟଂକା ସ୍ୱତନ୍ତ୍ର ଭତ୍ତା ମିଳୁଥିଲା । ମାତ୍ର ସପ୍ତାହକ ମଧ୍ୟରେ ବଲାଂଗୀର ସ୍ପେଶିଆଲ ଜଜ୍‌ଙ୍କର ଭୁବନେଶ୍ୱର ଆଇନ ବିଭାଗକୁ ଜଏଣ୍ଟ ସେକ୍ରେଟାରୀ ଭାବରେ ବଦଳି ହେଲା । ହାଇକୋର୍ଟର ନିୟମ କାନୁନ୍ ଓ କଡ଼ା କଟକଣାରୁ ସେ ମୁକ୍ତ ହେଲେ । କିଛି ଦିନ ପରେ ରାଓ ପଟ୍ଟନାୟକଙ୍କ ବିରୁଦ୍ଧରେ ବିଚାରାଧୀନ ଥିବା ଅନ୍ୟ କେସ୍‌ଗୁଡ଼ିକ ପ୍ରତ୍ୟାହାର କରି ନେବାକୁ ସରକାର ଆଦେଶ ଦେଲେ । ରାଓ ପଟ୍ଟନାୟକ ଅପରାଧୀ ନା ଖୋଦ ସରକାର, ତାହା ମୁଁ ସ୍ଥିର କରି ପାରିଲି ନାହିଁ । ମନେ ହେଲା, ସମସ୍ତେ ଯେପରି ଗୋଟିଏ ସୂତ୍ରରେ ଛନ୍ଦା । ବିଚରା ସ୍ପେଶିଆଲ୍ ଜଜ୍- ଏ ରାଜନୈତିକ ପଶା ଖେଳରେ ସେ ଯେପରି ଏକ ଦୟନୀୟ ଗୋଟି ।

# ପାଣିଗ୍ରାହୀଙ୍କ ସହ ଲଢ଼େଇ

ଓଡ଼ିଶାର ଜଣେ ଖ୍ୟାତନାମା ପୁରୁଷ ଲିଙ୍ଗରାଜ ପାଣିଗ୍ରାହୀ । ୧୯୫୩ରୁ ୫୬ ମସିହା ପର୍ଯ୍ୟନ୍ତ ସେ ଥିଲେ ଓଡ଼ିଶା ହାଇକୋର୍ଟର ଚିଫ୍ ଜଷ୍ଟିସ । ତାଙ୍କରି କଲମ ମୁନରେ ମୁଁ ହାଇକୋର୍ଟରେ ଆଡ୍‌ଭୋକେଟ ତାଲିକାଭୁକ୍ତ ହୋଇଥିଲି । ଅବସର ନେବା ପରେ ୧୯୫୭ ମସିହା ସାଧାରଣ ନିର୍ବାଚନରେ ପାଣିଗ୍ରାହୀ କଂଗ୍ରେସ ଟିକେଟରେ ବିଧାନ ସଭାକୁ ନିର୍ବାଚିତ ହୋଇ ଆଇନ ଓ ଶିକ୍ଷା ମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୬୧ ମସିହା ନିର୍ବାଚନରେ ପୁଣି ଥରେ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହୋଇ ସେ ବିଧାନ ସଭାର ବାଚସ୍ପତି ନିର୍ବାଚିତ ହୋଇଥିଲେ । ମୁଁ ସ୍ୱପ୍ନରେ ମଧ୍ୟ କଳ୍ପନା କରିନଥିଲି ଯେ ଦିନେ କର୍ତ୍ତବ୍ୟାନୁରୋଧରେ ମତେ ତାଙ୍କ ବିରୁଦ୍ଧରେ ମୋକଦ୍ଦମା ଲଢ଼ିବାକୁ ହେବ ।

ଲିଙ୍ଗରାଜ ପାଣିଗ୍ରାହୀଙ୍କର ପତ୍ନୀ ସ୍ୱର୍ଣ୍ଣଲତା ପାଣିଗ୍ରାହୀଙ୍କ ନାମରେ ବ୍ରହ୍ମପୁର ସହର ମଝିରେ ଗୋଟିଏ ଜମିଦାରୀ ଥିଲା । ବର୍ତ୍ତମାନ ଯେଉଁ ଅଂଚଳକୁ କୋର୍ଟପେଟା ବୋଲି କୁହାଯାଉଛି ଓ ଯେଉଁଠି ଜିଲ୍ଲା ଜଜ୍‌କୋର୍ଟ ଓ ସବ୍‌କୋର୍ଟ ଆଦି ଅଛି, ରେଭିନିଉ ରେକର୍ଡ଼ରେ ତାର ନାମ "ବୈଦ୍ୟନାଥ ପୁରମ୍ ।" ସରକାରୀ କାଗଜ ପତ୍ର ଅନୁଯାୟୀ ଏହି ବୈଦ୍ୟନାଥ ପୁରମ୍ ଗୋଟିଏ 'ଇନାମ' ଗ୍ରାମ । ତାର କ୍ଷେତ୍ରଫଳ ଏକ ହଜାର ଭରଣ ବା ପ୍ରାୟ ଦୁଇଶହ ଏକର । ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶାରେ ଜମିଦାରୀ ଉଚ୍ଛେଦ ଆଇନ ପ୍ରବର୍ତ୍ତିତ ହୋଇଥିଲା । ଏହି ଆଇନରେ ପ୍ରଦତ୍ତ କ୍ଷମତା ଅନୁଯାୟୀ ସରକାରୀ ବିଜ୍ଞପ୍ତି ପ୍ରକାଶିତ ହେବା ମାତ୍ରେ ଗୋଟିଏ ନିର୍ଦ୍ଦିଷ୍ଟ ତାରିଖରୁ ଓଡ଼ିଶାର ସବୁ ଛୋଟ ବଡ଼ ଜମିଦାରୀ ଲୋପ ହେଲା ଓ ଜମିଦାରମାନଙ୍କର ସମସ୍ତ ସ୍ୱତ୍ୱ ସରକାରଙ୍କଠାରେ ନ୍ୟସ୍ତ ହେଲା । ଗଞ୍ଜାମ ଜିଲ୍ଲାରେ ପାରଳା, ଖଲ୍ଲିକୋଟ ବଡ଼ ଖେମୁଣ୍ଡି ଆଦି ସବୁ ବଡ଼ ଜମିଦାରୀ ଲୋପ ହେଲେ ମଧ୍ୟ, ବ୍ରହ୍ମପୁର ସହର ମଝିରେ ଥିବା ଏହି କ୍ଷୁଦ୍ର ଅଥଚ ମୂଲ୍ୟବାନ ଜମିଦାରୀ ଖଣ୍ଡିକ ସରକାର ହାତକୁ ନେଇ ପାରିଲେ ନାହିଁ । କାରଣ ସ୍ୱର୍ଣ୍ଣଲତା ପାଣିଗ୍ରାହୀଙ୍କ ପକ୍ଷରୁ ୧୯୫୫ ମସିହାରେ ବ୍ରହ୍ମପୁର ସବଜଜ କୋର୍ଟରେ ଏକ ସୁଟ୍ ଦାଖଲ କରାଯାଇ ସେଥିରେ ଓଡ଼ିଶା ସରକାର ଓ ସ୍ଥାନୀୟ କଲେକ୍ଟରଙ୍କ ବିରୁଦ୍ଧରେ ଜମିଦାରୀ ଉଚ୍ଛେଦ ଆଇନ ଅନୁଯାୟୀ କାର୍ଯ୍ୟକ୍ରମ ଗ୍ରହଣ ନ କରିବାକୁ ନିଷେଧ ଆଦେଶ ବା ଇଂଜକ୍‌ସନ୍ ଜାରୀ ହୋଇଥିଲା । ବହୁଦିନ ଏପରି ଅଚଳ ଅବସ୍ଥାରେ

ରହିବା ପରେ ୧୯୬୦-୬୧ ମସିହା ଆଡ୍‌କୁ ସୁଟ୍ ବିଚାର ପାଇଁ ଉଠିଲା । ସେତେବେଳେ ସ୍ୱର୍ଗୀୟ ଦିବାକର ସୁବୁଦ୍ଧି ଥିଲେ ଗଞ୍ଜାମ ଜିଲ୍ଲାର ଗଭର୍ଣ୍ଣମେଣ୍ଟ ପ୍ଲିଡ୍‌ର । ସାଧାରଣତଃ ସବ୍‌ଜଜ୍ କୋର୍ଟରେ ମୋକଦ୍ଦମା ଚଳାଇବା ଗଭର୍ଣ୍ଣମେଣ୍ଟ ପ୍ଲିଡରଙ୍କ ଦାୟିତ୍ୱ । କିନ୍ତୁ ସୁବୁଦ୍ଧି ଥିଲେ ପାଣିଗ୍ରାହୀଙ୍କର ପ୍ରିୟ ଲୋକ । ସେ ଏହି ମୋକଦ୍ଦମା ଚଳାଇବାକୁ ଅକ୍ଷମତା ପ୍ରକାଶ କଲେ । ବ୍ରହ୍ମପୁରର ଅନ୍ୟ ବିଶିଷ୍ଟ ଓକିଲମାନଙ୍କ ମଧ୍ୟରେ ଅନେକେ ଥିଲେ ପାଣିଗ୍ରାହୀଙ୍କର ଜଣାଶୁଣା ସମର୍ଥକ ଓ କେତେକ ତାଙ୍କର ବିରୋଧୀ । ଏପରି ଅବସ୍ଥାରେ ହାଇକୋର୍ଟର ସରକାରୀ ଓକିଲମାନଙ୍କ ମଧ୍ୟରୁ ଜଣକୁ ଏ ଦାୟିତ୍ୱ ଦେବା ପାଇଁ ସରକାର ନୀତିଗତ ଭାବରେ ସ୍ଥିର କଲେ ଏବଂ ସେ ଦାୟିତ୍ୱ ମୋ ମୁଣ୍ଡରେ ପଡ଼ିଲା ।

ପାଣିଗ୍ରାହୀଙ୍କ ସୁଟ୍‌ର ଫଳାଫଳ ମାନ୍ଦ୍ରାଜ ଇଷ୍ଟେଟ୍ ଲ୍ୟାଣ୍ଡ ଆକ୍ଟର କେତେକ ଅତି ବିବାଦୀୟ ଜଟିଳ ଧାରାର ବ୍ୟାଖ୍ୟା ଉପରେ ନିର୍ଭର କରୁଥିଲା । ସେତେବେଳେ ମାନ୍ଦ୍ରାଜ ଜମିଜମା ଆଇନ ସଂପର୍କରେ ମୁଁ ଥିଲି ସଂପୂର୍ଣ୍ଣ ଅଜ୍ଞ । ଆଇନ ପରୀକ୍ଷାରେ ସେ ସମୟରେ ଛାତ୍ରମାନେ ଉତ୍ତର ଓଡ଼ିଶାରେ ପ୍ରଚଳିତ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ, ସମ୍ବଲପୁର ଅଂଚଳରେ ପ୍ରଚଳିତ 'ଛୋଟନାଗପୁର ପ୍ରଜାସ୍ୱତ୍ୱ ଆଇନ ବା ଦକ୍ଷିଣ ଓଡ଼ିଶାରେ ପ୍ରଚଳିତ ମାନ୍ଦ୍ରାଜ ଭୂମିବିଧି ଆଇନ୍ ମଧ୍ୟରୁ ଯେ କୌଣସି ଗୋଟିକରେ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇ ପାରୁଥିଲେ । ମୁଁ ପରୀକ୍ଷା ଦେବା ସମୟରେ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନକୁ ମନୋନୀତ କରିଥିଲି । ଅବଶ୍ୟ ଟେନାନ୍ସି ପେପର୍‌ରେ ମୋର ଶହେରୁ ପଂଚାନବେ ମାର୍କ ଥିଲା ଓ ବିଶ୍ୱବିଦ୍ୟାଳୟ ଆଇନ ପରୀକ୍ଷାରେ ଏହା ଏକ ରେକର୍ଡ଼ ସୃଷ୍ଟି କରିଥିଲା । ତଥାପି ଦକ୍ଷିଣ ଓଡ଼ିଶାରେ ପ୍ରଚଳିତ ମାଡ୍ରାସ ଇଷ୍ଟେଟ୍ ଆଇନ ସଂପର୍କରେ ମୋର ଅଭିଜ୍ଞତା ଥିଲା ନଗଣ୍ୟ । ପାଂଚ ବର୍ଷର ବୃତ୍ତି 'ମଧ୍ୟରେ ମୁଁ ଏ ବିଷୟରେ ହୁଏତ ଗୋଟିଏ ଦୁଇଟି କେସ୍ କରିଥିବି । ଏ ଆଇନରେ ବ୍ୟବହୃତ 'ମେଲୋଭରମ୍' (ରାଜଭାଗ) ଓ 'କୁଡ଼ିଭରମ୍' (ପ୍ରଜାଭାଗ) ପ୍ରଭୃତି କେତୋଟି ଅବୋଧ୍ୟ ଶବ୍ଦ ପ୍ରତି ମୋ ମନରେ ଥିଲା ବିତୃଷ୍ଣା ଓ ଭୟ । ଅପର ପକ୍ଷରେ ବାଦୀ ପାଣିଗ୍ରାହୀଙ୍କର ଆଡ୍‌ଭୋକେଟ୍ ଥିଲେ ବ୍ରହ୍ମପୁରର ସୁବିଖ୍ୟାତ ସିଭିଲ୍ ଲୟର ଜି.ଏଲ୍. ନରସିଂହମ୍ । ମନରେ ବାରମ୍ବାର ପ୍ରଶ୍ନ ଉଠିଲା ଏପରି ଏକ ଜଟିଳ ଆଇନ ସଂପର୍କୀୟ ଦେଓ୍ୱାନୀ ମୋକଦ୍ଦମାରେ ମୋତେ ଓକିଲ ମନୋନୟନ କରିବା ପଛରେ ସରକାରଙ୍କର ମନ୍ଦ ଉଦ୍ଦେଶ୍ୟ ନାହିଁ ତ ? ତା'ନହେଲେ ଆଡ୍‌ଭୋକେଟ ଜେନେରାଲ ବାଂଛାନିଧି ମହାପାତ୍ର ବା ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ

ରାମଚନ୍ଦ୍ର ମିଶ୍ରଙ୍କ ପରିବର୍ତ୍ତେ ସର୍ବ କନିଷ୍ଠ ଷ୍ଟାଣ୍ଡିଂ କାଉନସେଲଙ୍କୁ ଏ ଅପ୍ରୀତିକର ଦାୟିତ୍ୱ ବହନ କରିବାକୁ କାହିଁକି ମନୋନୀତ କରାଯାଇଛି ?

ସେ ସମୟରେ ଅଭିମନ୍ୟୁ ମିଶ୍ର ଥିଲେ ଲିଗାଲ୍ ରିମେମ୍ବ୍ରାନ୍‌ସର୍ । ସେ ପାଣିଗ୍ରାହୀଙ୍କର ଅତି ନିକଟ ସଂପର୍କୀୟ ଭାବରେ ପରିଚିତ । ମନରେ ସଂଦେହ ହେଲା, ଆଇନ ବିଭାଗ ବୋଧହୁଏ ମୋର ଏହି ନିର୍ଦ୍ଦିଷ୍ଟ ଆଇନରେ ଅପରିପକ୍ୱତା ସମ୍ବନ୍ଧରେ ସଚେତନ । ଏଣୁ ବାଦୀଙ୍କର ସୁବିଧା ଲାଗି ମୋତେ ଅଧିବକ୍ତା ନିଯୁକ୍ତ କରାଯାଇଛି । ମୁଁ ଦିନେ ଅଭିମନ୍ୟୁ ବାବୁଙ୍କୁ ଏ ବିଷୟରେ ସିଧା ସଳଖ ପଚାରିଲି । ମୋର ସହପାଠୀ ଓ ବନ୍ଧୁ ଇଂରାଜୀ ଅଧ୍ୟାପକ ସର୍ବେଶ୍ୱର ଦାଶଙ୍କର ସେ ଶ୍ୱଶୁର ଓ ତାଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କ ଥିଲା ଅତି ମଧୁର । ଅଭିମନ୍ୟୁ ବାବୁ ଉତ୍ତର ଦେଲେ, ପାଣିଗାହୀଙ୍କ ସହ ଆଡ୍‌ଭୋକେଟ ଜେନେରାଲ ବାଂଛାନିଧି ମହାପାତ୍ରଙ୍କର ସଂପର୍କ ତିକ୍ତ, ରାମଚନ୍ଦ୍ର ମିଶ୍ର ତାଙ୍କର ପ୍ରିୟ ଲୋକ, ଏଣୁ ନିରପେକ୍ଷ ବ୍ୟକ୍ତି ଭାବରେ ଆପଣଙ୍କୁ ମନୋନୀତ କରାଯାଇଛି । ଏ ଉତ୍ତରରେ ମନ ମାନିଲା ନାହିଁ, ବରଂ ସଂଦେହ ବଢ଼ିଲା । ମୁଁ ଭାବିଲି, ଯଦି ମାଡ୍ରାସ ଲ୍ୟାଣ୍ଡ୍ ଆକ୍ଟରେ ମୋର ଅନଭିଜ୍ଞତା ଏ ମନୋନୟନର ଭିତ୍ତି ହୋଇଥାଏ, ତାହାହେଲେ ନିଯୁକ୍ତିଦାତାମାନଙ୍କୁ ଦିନେ ଅନୁତାପ କରିବାକୁ ହେବ । ଅଧ୍ୟୟନ ଓ ଅଧ୍ୟବସାୟ ବଳରେ ମୁଁ ଯଦି କାର୍ଯ୍ୟକ୍ଷେତ୍ରରେ ପ୍ରମାଣ କରିଦିଏ ଯେ ମାନ୍ଦ୍ରାଜ ଜମିଜମା ଆଇନରେ ମୋର ଜ୍ଞାନ, ସବୁଠାରୁ ଅଭିଜ୍ଞ, ବରିଷ୍ଠ ଓ ବିଜ୍ଞ ଅଧିବକ୍ତାଙ୍କଠାରୁ ମଧ୍ୟ ଊଣା ନୁହେଁ, ତେବେ ତାହାହିଁ ହେବ ସେମାନଙ୍କୁ ଯଥାର୍ଥ ଜବାବ୍ ।

ପାଠକେ ମନେ କରୁଥିବେ ଯେ ଜଣେ ଯୁବ ଆଇନଜୀବି ପକ୍ଷରେ ଏ ପ୍ରକାରର ଦାମ୍ଭିକତା ଅକ୍ଷମଣୀୟ । ଏବେ ପରିଣତ ବୟସରେ ଅଭିଜ୍ଞତାରୁ ଲେଖୁଛି, ଏ ପ୍ରକାରର ଦାମ୍ଭିକତା ଆତ୍ମବିଶ୍ୱାସ ବ୍ୟତୀତ ଅନ୍ୟ କିଛି ନୁହେଁ । ଉଚ୍ଚ ଅଭିଳାଷ ଓ ଆତ୍ମବିଶ୍ୱାସ ପରସ୍ପର ସହାୟକ । ଉଚ୍ଚ ଅଭିଳାଷ ପୋଷଣ କରିବା ଗର୍ବ ବା ଆତ୍ମବଡ଼ିମା ନୁହେଁ । ବରଂ ଉଚ୍ଚାଭିଳାଷ ଓ ଆତ୍ମବିଶ୍ୱାସ ନ ଥିଲେ ଅଗ୍ରଗତି ଅସଂଭବ । ଜ୍ଞାନ ଅର୍ଜନ କାହାରି ଏକଚାଟିଆ ଅଧିକାର ନୁହେଁ । ଏଥିପାଇଁ କୋଡ଼ିଏ ବା ତିରିଶ ବର୍ଷର ଅଭିଜ୍ଞତା ଏକ ଅପରିହାର୍ଯ୍ୟ ଆବଶ୍ୟକତା ନୁହେଁ, କିମ୍ବା ସେଥିପାଇଁ ସମୟ ସୀମା ଧାର୍ଯ୍ୟ କରିବାର ପ୍ରୟୋଜନ ନାହିଁ । ଉଦ୍ୟମ ଅଧ୍ୟୟନ ଓ ଅଧ୍ୟବସାୟ ବଳରେ ଯେ କୌଣସି ବୁଦ୍ଧିମାନ ଲୋକ ଜ୍ଞାନାର୍ଜନରେ ଅନ୍ୟ ପ୍ରତିଭାଶାଳୀ ବ୍ୟକ୍ତି ସହ ସମକକ୍ଷ ହୋଇ ପାରିବ ।

ସ୍ୱର୍ଣ୍ଣଲତା ପାଣିଗ୍ରାହୀଙ୍କର ମୋକଦ୍ଦମାକୁ ମୁଁ ଏକ କଠିଣ ସଂଗ୍ରାମ ରୂପେ ଆଦରି ନେଲି ଏବଂ ଉପରୋକ୍ତ ମନୋଭାବ ନେଇ ଏହି ସଂଗ୍ରାମରେ ଲଂଫ ଦେଲି ।

ଶୁଣାଣି ତାରିଖରେ ବ୍ରହ୍ମପୁର ଯିବାର ଦୁଇ ଦିନ ପୂର୍ବରୁ ମୁଁ ପ୍ରଥମେ ଆଡ଼ଭୋକେଟ୍ ଜେନେରାଲଙ୍କ ସହ ପରାମର୍ଶ କଲି । ବାଂଛାନିଧି ବାବୁ ଥିଲେ ଶାନ୍ତ ଶିଷ୍ଟ ଓ ବୋଧା ଲୋକ । ସେ ଅଳ୍ପ କଥାରେ କେସ୍‌ର ବିଷୟ ବସ୍ତୁ ସଂପର୍କରେ କେତେକ ପରାମର୍ଶ ଦେବା ପରେ କହିଲେ, ବ୍ରହ୍ମପୁରରେ ପହଂଚି ବୟୋଜ୍ୟୋଷ୍ଠ ଓକିଲ ବାଳକୃଷ୍ଣ ରଥଙ୍କ ସହ ପରାମର୍ଶ କରିବା ଉଚିତ । ବାଳକୃଷ୍ଣ ରଥ ପୂର୍ବତନ ପବ୍ଲିକ ସର୍ଭିସ କମିସନର ସଦସ୍ୟ ଆଡ଼୍‌ଭୋକେଟ୍ ରାମକୃଷ୍ଣ ରଥଙ୍କ ଭାଇ । ପରେ ଶୁଣିଲି ସେ ପାଣିଗ୍ରାହୀଙ୍କ ବିରୋଧୀ ଗୋଷ୍ଠୀର ଲୋକ । ମୁଁ ବ୍ରହ୍ମପୁରରେ ପଂହଚି ବାଳକୃଷ୍ଣ ରଥ, ବି.ଏସ. ରଥ, ଓ୍ୟାଇ ରାମମୂର୍ତ୍ତି ପ୍ରମୁଖ ବହୁ ବିଶିଷ୍ଟ ଆଡ଼୍‌ଭୋକେଟଙ୍କ ସହ ଆଲୋଚନା କଲି । ପାଠ ଅପେକ୍ଷା ଶାଠ ବିଷୟରେ ବହୁ ପରାମର୍ଶ ମିଳିଲା । ସମସ୍ତେ ଏକସ୍ୱରରେ କହିଲେ, ପାଣିଗ୍ରାହୀ ମହାପ୍ରତାପୀ ଲୋକ, ଜି. ଏଲ୍ ନରସିଂହମ୍ ଦେଓ୍ୟାନୀ ଆଇନ ଓ ଜମିଜମା ଆଇନ୍‌ରେ ଧୂରୀଣ । ତାଙ୍କ ବିରୁଦ୍ଧରେ ପାରି ଉଠିବା ସହଜ ନୁହେଁ । ପାଣିଗ୍ରହୀଙ୍କ ପ୍ରତି ସ୍ଥାନୀୟ ଓକିଲମାନଙ୍କର ଏତେ ଭୟ ଯେ, ବୟସ୍କ ଓକିଲମାନେ କେସ ବିଷୟରେ ମୋ ସହିତ ଖୋଲାଖୋଲି ଆଲୋଚନା କରିବାକୁ ଭୟ କରୁଥିଲେ । ଏ ସବୁ ଦେଖି ମୁଁ ସ୍ଥିର କଲି, ସବୁ ପ୍ରକାର ଭୟ ଓ ହୀନମନ୍ୟତା ପରିହାର କରିବାର ଏକମାତ୍ର ପଥ ହେଲା, କୌଣସି ବିବଦମାନ ଗୋଷ୍ଠି ସହ ସଂପୃକ୍ତ ନ ହୋଇ, ବିବାଦୀୟ ଆଇନଗତ ସମସ୍ୟା ଉପରେ ପାଠ ପଢ଼ିବା ଓ କେସ୍ ପାଇଁ ବିଧିବଦ୍ଧ ଭାବରେ ପ୍ରସ୍ତୁତ ହେବା ।

ସୁଟ୍‌ରେ ବାଦୀ ସ୍ୱର୍ଣ୍ଣଲତାଙ୍କର ଦାବୀ ଥିଲା, 'ବୈଦ୍ୟନାଥ ପୁରମ୍' ଏକ ଇନାମ ଗ୍ରାମ । ତାଙ୍କର ପୂର୍ବାଧିକାରୀମାନେ ଏହି ଗ୍ରାମକୁ ଏକ ଇନାମ୍ ବା ପୁରସ୍କାର ସ୍ୱରୂପ ପାଇଥିଲେ । ଏହି ଇନାମ କଲେକ୍ଟରଙ୍କ ଦ୍ୱାରା ସ୍ୱୀକୃତ ହୋଇଅଛି । ଏହି ଗ୍ରାମ ମାଡ୍ରାସ ଲ୍ୟାଣ୍ଡ ଆକ୍ଟ ଅନୁଯାୟୀ ଏକ 'ଇଷ୍ଟେଟ' ନୁହେଁ ବା ଏହାର ମାଲିକ ମଧ୍ୟସ୍ୱତ୍ୱାଧିକାରୀ ନୁହନ୍ତି । ଏଣୁ ଓଡ଼ିଶା ଜମିଦାରୀ ଉଚ୍ଛେଦ· ଆଇନ ଏଥିପ୍ରତି ପ୍ରଯୁଜ୍ୟ ନୁହେଁ ଏବଂ ସରକାର ଏହି ଇନାମ ହାତକୁ ନେବାରୁ କ୍ଷାନ୍ତ ହେବା ଉଚିତ ।

ଜବାବ୍‌ରେ ପ୍ରତିବାଦୀ ସରକାରଙ୍କ ବକ୍ତବ୍ୟ ଥିଲା, ବୈଦ୍ୟନାଥ ପୁରମ୍ ଗୋଟିଏ 'ଇନାମ' ସତ୍ୟ, କିନ୍ତୁ ଏହା ଏକ 'ଇଷ୍ଟେଟ' । ଏହା ଏକ ହୋଲ-ଇନାମ ଭିଲେଜ୍, ଅର୍ଥାତ ଗ୍ରାମର କୌଣସି ଅଂଶ ଇନାମରୁ ବାଦ୍ ଯାଇ ନାହିଁ । ମାଡ୍ରାସ ଇଷ୍ଟେଟ ଲ୍ୟାଣ୍ଡ ଆକ୍ଟରେ 'ଇଷ୍ଟେଟ୍' ଶବ୍ଦର ଯେଉଁ ସଂଜ୍ଞା ଦିଆଯାଇଛି, ତାର ସମସ୍ତ ସର୍ତ୍ତ ଏ କ୍ଷେତ୍ରରେ ସଂପୂର୍ଣ୍ଣ ରୂପେ ପରିପୂର୍ଣ୍ଣ ହେଉଛି । ପରନ୍ତୁ ଜମିଦାରୀ ଉଚ୍ଛେଦ ଆଇନର ୧୯୫୪ ମସିହାର ସଂଶୋଧନ ଅନୁଯାୟୀ ଯେ କୌଣସି ପ୍ରକାରର ଇନାମ 'ଇଷ୍ଟେଟ' ରୂପେ ପରିଗଣିତ ହେବ । ଏହି ସଂଶୋଧନ ଦୃଷ୍ଟିରୁ ବୈଦ୍ୟନାଥପୁରମ୍ ଗୋଟିଏ ଜମିଦାରୀ ଓ ତିନି ଧାରାର ବିଜ୍ଞପ୍ତି ଜାରୀ ହେବା ମାତ୍ରେ ଏହାର ମଧ୍ୟସ୍ୱତ୍ତ୍ୱାଧିକାରୀ ସ୍ୱତ୍ୱ ସରକାରଙ୍କଠାରେ ନ୍ୟସ୍ତ ହୋଇଛି । ଏଣୁ ବାଦୀଙ୍କର ସୁଟ୍ ଖାରଜ ହେବା ଉଚିତ ।

ଏହି ମୋକଦ୍ଦମାରେ ମୁଖ୍ୟ ବିଚାର୍ଯ୍ୟ ବିଷୟ ଥିଲା ମାଡ୍ରାସ ଇଷ୍ଟେଟ୍ ଲ୍ୟାଣ୍ଡ ଆକ୍ଟ ଅନୁଯାୟୀ ଏ ଇନାମ ଏକ ଜମିଦାରୀ କି ନୁହେଁ ଏବଂ ଜମିଦାରୀ ଉଚ୍ଛେଦ ଆଇନର ସଂଶୋଧନ ଦୃଷ୍ଟିରୁ ଏହି ଇନାମ ସରକାରଙ୍କଠାରେ ନ୍ୟସ୍ତ ହୋଇଛି କି ନାହିଁ । ଏହି ବିବାଦର ଅନ୍ୟ ଏକ ଦିଗ ହେଲା, ଏହି ଇନାମ ଅଧୀନରେ ଥିବା ରଇତମାନଙ୍କର କୌଣସି ଦଖଲ ସ୍ୱତ୍ୱ ନଥିଲା । କିନ୍ତୁ ମଧ୍ୟସ୍ୱତ୍ୱାଧିକାରୀ ସ୍ୱତ୍ୱ ଯଦି ସରକାରଙ୍କଠାରେ ନ୍ୟସ୍ତ ହୁଏ, ତାହେଲେ ରଇତମାନେ ସରକାରଙ୍କ ଅଧୀନରେ ଦଖଲ ସ୍ୱତ୍ୱ ସହିତ ସ୍ଥାୟୀ ପ୍ରଜା ହୋଇ ରହି ପାରିବେ । ବିବାଦର ନିଷ୍ପତ୍ତି ମୁଖ୍ୟତଃ ମାନ୍ଦ୍ରାଜ ଭୂମିବିଧି ଆଇନର ଅର୍ଥ ଅର୍ଥାନ୍ତର ଉପରେ ନିର୍ଭର କରୁଥିଲା । ହାଇଦ୍ରାବାଦ ମୈଶୁର, ତ୍ରାଭାନ୍‌କୋର କୋଚିନ ଆଦି କେତେକ ଦେଶୀୟ ରାଜ୍ୟକୁ ବାଦ୍ ଦେଇ ମାନ୍ଦ୍ରାଜ ପ୍ରଦେଶ ସାରା ଦକ୍ଷିଣ ଭାରତକୁ ନେଇ ଗଠିତ । ୧୯୫୫ ମସିହା ପୂର୍ବରୁ ଆନ୍ଧ୍ର ପ୍ରଦେଶ, କର୍ଣ୍ଣାଟକ, କେରଳ ଓ ତାମିଲନାଡୁର ସମସ୍ତ ଅଂଚଳ ଏହି ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା ଓ ୧୯୩୬ ମସିହା ପର୍ଯ୍ୟନ୍ତ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମଧ୍ୟ ମାନ୍ଦ୍ରାଜ ପ୍ରଦେଶର ଅଂଶ ଥିଲା । ଏହି ବିରାଟ ପ୍ରଦେଶର ଜମିଦାରମାନେ ଥିଲେ ବିଶେଷ କ୍ଷମତାଶାଳୀ । ଜମିଦାରମାନେ ଜଷ୍ଟିସ ପାର୍ଟି ଗଠନ କରି ବ୍ରିଟିଶ ଅମଳରେ ପ୍ରାଦେଶିକ ଶାସନ କ୍ଷମତା ମଧ୍ୟ ହାତରେ ରଖୁଥିଲେ । ଜମିଦାରୀ ଅଧୀନରେ ଥିବା ରୟତମାନଙ୍କୁ ଜମି ଉପରେ କେତେକ ଅଧିକାର ଦେବା ପାଇଁ ବ୍ରିଟିଶ ସରକାର ପ୍ରଥମେ ୧୯୦୮ ମସିହା ମାଡ୍ରାସ ଲ୍ୟାଣ୍ଡ ଆକ୍ଟ ନାମକ ଏକ ଜମିଜମା ଆଇନ ପ୍ରଣୟନ କରିଥିଲେ । କିନ୍ତୁ ଏହି

ଆଇନରେ ରଇତର ଅଧିକାର ଥିଲା ଅତି ସୀମିତ । ତଦୁପରି ଏହି ଆଇନର ବିଭିନ୍ନ ଧାରାଗୁଡ଼ିକ ଥିଲା ଅତି କ୍ଲିଷ୍ଟ ଓ ଅବୋଧ୍ୟ । କୌଣସି କ୍ଷେତ୍ରରେ ଯଦି ରୟତର ଅଧିକାର ଉପରେ ମାଡ୍ରାସ ହାଇକୋର୍ଟ ନିଷ୍ପତ୍ତି ଦେଉଥିଲେ, ଜମିଦାରମାନେ ତା ବିରୁଦ୍ଧରେ ପ୍ରିଭିକାଉନ୍‌ସିଲ ପର୍ଯ୍ୟନ୍ତ ଅପିଲ କରୁଥିଲେ ଏବଂ ଶେଷ ନିଷ୍ପତ୍ତି ଲଣ୍ଡନରେ ହେଉଥିଲା । ସେଥିପାଇଁ ଭାରତର ଜମିଜମା ବିବାଦ ଉପରେ ପ୍ରିଭିକାଉନସିଲର ଯେତେ ନିଷ୍ପତ୍ତି ଅଛି, ସେଥିରୁ ସର୍ବାଧିକ ନିଷ୍ପତ୍ତି ମାନ୍ଦ୍ରାଜ ପ୍ରଦେଶରୁ । ମାଡ୍ରାସ ହାଇକୋର୍ଟର ଜଣେ ଖ୍ୟାତନାମା ପୂର୍ବତନ ଚିଫ୍ ଜଷ୍ଟିସ ପି.ଭି. ରାଜମାନ୍ନାରଙ୍କ ଭାଷାରେ "ବହୁ କାରଣରୁ ଏହି ଆଇନର ଅନେକ ଗୁଡ଼ିଏ ବିଧି ବିଧାନ ଅତି ଅସ୍ପଷ୍ଟ ଅସଂଗତ ଓ ଅପ୍ରାସଂଗିକ.. ଫଳରେ ଏହି ଆଇନର ଅର୍ଥ ଅର୍ଥାନ୍ତର ଉପରେ ବିଚାର ବିଭାଗର ନିଷ୍ପତ୍ତି ବହୁ ସଂଖ୍ୟାରେ ବଢ଼ି ଚାଲିଛି ।"

ଏହି ଜଟିଳ ଆଇନଟି ମୁଁ କେତେଦୂର ଆୟତ୍ତ କରି ପାରିବି ସେଥିପାଇଁ ମନରେ ସଂଦେହ ଥାଏ । ବ୍ରହ୍ମପୁର ସବ୍‌ଜଜ କୋର୍ଟରେ ପ୍ରଥମ ଦୁଇ ତିନୋଟି ତାରିଖର ଶୁଣାଣି ବାଦୀଙ୍କ ମହଲତ ଦରଖାସ୍ତ ଉପରେ ସ୍ଥଗିତ ରହିଲା । କିନ୍ତୁ ମହଲତ୍ ମୋ ପାଇଁ ଥିଲା ଏକ ଅପୂର୍ବ ସୁଯୋଗ । ଏହି ସମୟ ମଧ୍ୟରେ 'ମାଡ୍ରାସ ଇଷ୍ଟେଟ ଲ୍ୟାଣ୍ଡ ଆକ୍ଟ' ଆମୂଳଚୂଳ ପାଠ କଲି । ଏହି ଆଇନ ଉପରେ ମାଡ୍ରାସର ସୁଦକ୍ଷ ଆଡ୍‌ଭୋକେଟ ଭି. ଭେଦାନ୍ତାଚାରୀଙ୍କର ସୁବିଖ୍ୟାତ ଟୀକା ଅଧ୍ୟୟନ କଲି । ବିଶେଷତଃ ଇନାମ, ଇଷ୍ଟେଟ ଓ ଭୂମ୍ୟାଧିକାରୀ ଶବ୍ଦ ଗୁଡ଼ିକର ଅର୍ଥ କ'ଣ ସେ ବିଷୟରେ ଆଇନ ପତ୍ରିକାରେ ପ୍ରକାଶିତ ମାଡ୍ରାସ ହାଇକୋର୍ଟ ଓ ପ୍ରିଭିକାଉନ୍‌ସିଲର ପ୍ରାୟ ପଚାଶରୁ ଅଧିକ ରାୟ ପାଠ କରିଥିଲି । ସେଥିପାଇଁ ଆଜି ନିଃସଂକୋଚରେ କହିପାରେ, ଯେତେବେଳେ ବ୍ରହ୍ମପୁର ସବ୍‌ଜଜ୍ କୋର୍ଟରେ ବିଚାର ଆରମ୍ଭ ହେଲା, ମୁଁ ଅନୁଭବ କଲି ଯେ ଏହି ଆଇନ ଉପରେ ବାଦୀ ପକ୍ଷର ବିଜ୍ଞ ଅଧିବକ୍ତାଙ୍କଠାରୁ ମୋର ଜ୍ଞାନ କୌଣସିମତେ ଊଣା ନୁହେଁ । ବରଂଚ ଆଇନର ଅର୍ଥ ଅର୍ଥାନ୍ତର ଉପରେ ମୋର ଧାରଣା ଅଧିକ ସ୍ପଷ୍ଟ ଓ ପ୍ରାଂଜଳ, ଯେପରିକି ବିବାଦୀୟ ଆଇନଗତ ପ୍ରଶ୍ନ ଉପରେ ଶେଷ ପଂକ୍ତି ମଧ୍ୟ ମୁଁ ପଢ଼ି ଦେଇଛି ।

ବିଚାର ଆରମ୍ଭ ହେବା ପୂର୍ବରୁ ବାଦୀଙ୍କ ପକ୍ଷର ଆଡ୍‌ଭୋକେଟ୍ ବୈଦ୍ୟନାଥପୁରମ ଗ୍ରାମ ସଂକ୍ରାନ୍ତୀୟ ସମସ୍ତ ରେଭିନିଉ ରେକର୍ଡ଼ କୋର୍ଟରେ ଦାଖଲ କରିବା ପାଇଁ କଲେକ୍‌ଟରଙ୍କ ଅଫିସ୍‌ରୁ ତଲବ୍ କଲେ । ଉକ୍ତ ଦଲିଲଗୁଡ଼ିକ

କୋର୍ଟରେ ଦାଖଲ କରାଯିବ କି ତା ବିରୁଦ୍ଧରେ ଆପତ୍ତି କରିବାକୁ ହେବ, ତାହା ନିଷ୍ପତ୍ତି କରିବା ପାଇଁ ଦଲିଲ ଗୁଡ଼ିକ କଟକ ପଠାଇବା ନିମନ୍ତେ କଲେକ୍ଟରଙ୍କୁ ଲେଖିଲି । ଜଣେ ତେଲୁଗୁ ଭାଷାଭାଷୀ ହେଡ୍ କିରାଣି ରେକର୍ଡ଼ର ବିରାଟ ବୋଝ ଧରି କଟକରେ ପହଂଚିଲେ । ତେଲୁଗୁ ଭାଷାରେ ଲିଖିତ ଏହିସବୁ ଦଲିଲ ଦେଖି ମୁଁ ସତକୁ ସତ ଭୟ କରିଗଲି, କାରଣ ଏଥିରୁ କୌଣସି ଦଲିଲ ମୋ ପକ୍ଷରେ ପଢ଼ିବା ବା ବୁଝିବା ସଂଭବପର ନଥିଲା । ସ୍ଥିର କଲି, ଏଥର ମହଲଦ୍ ନେଇ ସମସ୍ତ ରେକର୍ଡ଼ର ଇଂରାଜୀ ଅନୁବାଦର ନକଲ ପଠାଇବା ପାଇଁ କଲେକ୍ଟରଙ୍କୁ ଅନୁରୋଧ କରିବି । ତାରିଖ ଦିନ ରାତି ଚାରିଟାରୁ ଉଠି ଆମ୍ଭେମାନେ ମୋ କାର୍‌ରେ ବ୍ରହ୍ମପୁର ଚାଲିଲୁ । ସହଯାତ୍ରୀ ଥିଲେ ଛତ୍ରପୁରର ହେଡ୍ କିରାଣୀ ଓ ତାଙ୍କ ଦଲିଲ ବସ୍ତାନୀ । ଟାଙ୍ଗୀ ଅତିକ୍ରମ କରିବା ପରେ ସକାଳ ହେଲା । ନାଚୁଣୀ ବଜାର ରାସ୍ତା କଡ଼ରେ ଗାଡ଼ି ରହିଲା, ଉଦ୍ଦେଶ୍ୟ ଚା'ପାନ ଓ ଡ୍ରାଇଭରକୁ କିଛି ସମୟ ପାଇଁ ବିଶ୍ରାନ୍ତି ପ୍ରଦାନ । ଚା' ପିଉ ପିଉ ହଠାତ୍ ମନରେ ଖିଆଲ ଉଠିଲା, ଏ ଦଲିଲ ଗୁଡ଼ିକରେ କ'ଣ ଲେଖାଅଛି, ଅନ୍ତତଃ ତଲବ୍ ତାଲିକାର ପ୍ରଥମ ଦଲିଲଟି ବାହାର କରି ଦେଖିଲେ ହୁଅନ୍ତା । ମୋର ଅନୁରୋଧରେ ସହଯାତ୍ରୀ ହେଡ୍ କିରାଣୀ ତେଲୁଗୁ ଭାଷାରେ ଲିଖିତ ପ୍ରଥମ ଦଲିଲଟି ପଢ଼ି ଖଣ୍ଡିଆ ଇଂରାଜୀରେ ତାର ଅନୁବାଦ କଲେ । ମୁଁ ଚମକି ଉଠିଲି । ବୈଦ୍ୟନାଥପୁରମ ଗ୍ରାମ ଏକ 'ଇଷ୍ଟେଟ' ଓ ତାର ମାଲିକ ଜଣେ ମଧ୍ୟସ୍ୱତ୍ୱାଧିକାରୀ ବୋଲି ପ୍ରମାଣ କରିବା ପାଇଁ ପ୍ରତିବାଦୀ ସରକାରଙ୍କ ପକ୍ଷରୁ ଯେଉଁସବୁ ତଥ୍ୟ ଆଗତ କରିବା ଆବଶ୍ୟକ, ଏ ଦଲିଲରେ ତାହାହିଁ ସ୍ପଷ୍ଟ ଭାବରେ ଲେଖାଅଛି । ଅର୍ଥାତ୍ ବିବାଦୀୟ ଇନାମ୍ ଗ୍ରାମର ବର୍ତ୍ତମାନ ନାମ ଯାହା ଉନବିଂଶ ଶତାବ୍ଦୀରେ ମଧ୍ୟ ଗ୍ରାମର ସେହି ନାମ ଥିଲା । ଗ୍ରାମର ଏରିଆ ବା ଚୌହଦୀରେ ପୁରୁଣା ରେକର୍ଡ଼ ଓ ବର୍ତ୍ତମାନର ରେକର୍ଡ଼ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଗ୍ରାମର କୌଣସି ଅଂଶ ଦାନ (ଇନାମ)ରୁ ବା ସରକାରୀ ସ୍ୱୀକୃତିରୁ ବାଦ୍ ଦିଆଯାଇ ନାହିଁ । ଆନନ୍ଦରେ ମୁଁ ବିହ୍ୱଳିତ ହୋଇଗଲି । ବିଳମ୍ୱ ହେଲେ ମଧ୍ୟ, ଅନୁସଂଧିତ୍ସା ରୋକି ହେଲା ନାହିଁ । ଗୋଟିକ ପରେ ଗୋଟିଏ ଦଲିଲ ବାହାର କରି ଦେଖାଗଲା, ସବୁଥିରେ ଉପରୋକ୍ତ ତଥ୍ୟଗୁଡ଼ିକ ସ୍ପଷ୍ଟ ଭାବରେ ଲେଖାଅଛି । ଶୀତଦିନିଆ ସକାଳେ, ନାଚୁଣୀ ବଜାରର ଆମ୍ବଗଛ ତଳେ, ବାଳସୂର୍ଯ୍ୟର ଉଦୟ କାଳରେ ମୋର

ଏ ଜ୍ଞାନୋଦୟରେ ମୁଁ ଅଧୀର ହୋଇ ପଡ଼ିଲି । ମୋର ଚଂଚଳତାର ମର୍ମ କିରାଣୀ ବିଚରା ବୋଧହୁଏ ବୁଝି ପାରୁ ନଥିଲେ । ବାଦୀ ପାଣିଗ୍ରାହୀଙ୍କ ପକ୍ଷରୁ ତଲବ୍ କରାଯାଇଥିବା ସମସ୍ତ ଦଲିଲ ପ୍ରତିବାଦୀଙ୍କ ସପକ୍ଷରେ !

ବ୍ରହ୍ମପୁରରେ ପହଂଚିବାକୁ ଘଣ୍ଟାଏ ଡେରି ହୋଇଗଲା । ଗାଧୁଆ ପାଧୁଆ କରିବାକୁ ସମୟ ନଥିଲା । ସର୍କିଟ ହାଉସରେ କୋର୍ଟ ଇତ୍ୟାଦି ପିନ୍ଧି ଗାଉନ ଧରି ସିଧା କୋର୍ଟକୁ ଗଲି । କୋର୍ଟରେ ମାସଟିଏ ସମୟ ନେଲି, ଦଲିଲ ସବୁ ଦାଖଲ କରିବା ପାଇଁ । ଏଣେ କଲେକ୍ଟରଙ୍କୁ ଅନୁରୋଧ କଲି, ଏ ଦଲିଲଗୁଡ଼ିକର ଇଂରାଜୀ ଅନୁବାଦ କରାଇ ତାର ତିନିକିତା ନକଲ ମୋ ନିକଟକୁ ପଠାଇବେ - ଗୋଟିଏ କିତା ମୋର ବ୍ୟବହାର ପାଇଁ, ଦ୍ୱିତୀୟ କିତା ଶୁଣାଣି ସମୟରେ କୋର୍ଟରେ ଦାଖଲ ହେବ ଏବଂ ଅନ୍ୟ ଗୋଟିଏ ଅପର ପକ୍ଷକୁ ଦିଆଯିବ । ପର ତାରିଖରେ ରେଭିନିଉ ରେକର୍ଡ଼ସବୁ ତାଲିକା ସହ କୋଟରେ ଦାଖଲ ହେଲା । ମୁଁ ଅବୋଧ ବାଳକ ପରି ସବ୍‌ଜଜ୍‌ଙ୍କୁ କହିଲି, ତେଲୁଗୁ ଭାଷାରେ ଲିଖିତ ଏସବୁ ରେକର୍ଡ଼ ଓ ରେଜିଷ୍ଟରର ବିଷୟ ବସ୍ତୁ ମୋ ପକ୍ଷରେ ବୁଝିବା କଠିଣ । ଯାହାହେଉ ପ୍ଲେନ୍‌ଟିଫ୍ ବା ବାଦୀ ଯେହେତୁ ଏ ରେକର୍ଡ଼ ତଲବ୍ କରିଛନ୍ତି ଏସବୁ ତାଙ୍କ ପକ୍ଷରେ 'ଏକ୍‌ଜିବିଟ୍' ହେଉ । ପୁରାତନ ଦଲିଲ ହୋଇଥିବା ଦୃଷ୍ଟିରୁ ଏଗୁଡ଼ିକୁ ପ୍ରମାଣ କରିବାର ଆବଶ୍ୟକତା ନାହିଁ । ସବ୍‌ଜଜ୍ ସେହି ମର୍ମରେ ଆଦେଶ ଦେଲେ । ସମସ୍ତ ରେକର୍ଡ଼ ବାଦୀ ପକ୍ଷର ଡକୁମେଣ୍ଟ୍ ଭାବରେ ବିନା ଆପତ୍ତିରେ ଗୃହୀତ ହେଲା । ମୁଁ ଦୃଢ଼ତାର ସହ କହିପାରେ, ସେ ପର୍ଯ୍ୟନ୍ତ ମଧ୍ୟ ବାଦୀଙ୍କ ପକ୍ଷର ଓକିଲ ତଲବ୍ କରିଥିବା ଡକୁମେଣ୍ଟ୍‌ରେ କ'ଣ ଲେଖାଅଛି, ତାହା ଜାଣି ନଥିଲେ ଏବଂ ସେଦିନ ମୁଁ ଅନୁଭବ କଲି, ବାଦୀଙ୍କ ସୁଟ୍ ଖାରଜ ହେବା ସୁନିଶ୍ଚିତ ।

ସେତେବେଳେ ବ୍ରହ୍ମପୁରର ସବର୍ଡିନେଟ୍ ଜଜ୍ ଥିଲେ ସ୍ୱର୍ଗୀୟ ରାଧାଚରଣ କର । ସେ ଜଣେ ଅଭିଜ୍ଞ ବିଚାରକ । ମୌଖିକ ପ୍ରମାଣ ଦିଆଯିବ କି ନାହିଁ, ଏ ବିଷୟରେ ପ୍ରଶ୍ନ ଉଠିଲା । ଉଭୟ ପକ୍ଷ ମୌଖିକ ସାକ୍ଷ୍ୟ ନ ଦେଇ କେବଳ ଡକୁମେଣ୍ଟ ଭିତ୍ତିରେ ସୁଆଲ ଜବାବ୍ କରିବାକୁ ସମ୍ମତ ହେଲେ । ଶୁଣାଣି ଦିନ ବାଦୀ ପକ୍ଷର ଆଡ୍‌ଭୋକେଟ ଜି.ଏଲ ନରସିଂହମ୍ 'ଇନାମ' ଓ 'ଇଷ୍ଟେଟ୍' ଶବ୍ଦର ତର୍ଜମା କରି ତାଙ୍କ ବକ୍ତବ୍ୟରେ ବୈଦ୍ୟନାଥପୁରମ୍

ଇନାମ ଗ୍ରାମ ଇଷ୍ଟେଟ୍ ନୁହେଁ ବୋଲି ଯୁକ୍ତି କଲେ ଏବଂ ଏହି ଯୁକ୍ତି ସପକ୍ଷରେ କଲେକ୍ଟରଙ୍କ ଅଫିସରୁ ତଲବ୍ କରାଯାଇଥିବା ଦଲିଲ ଗୁଡ଼ିକ ପାଠ କରି ତାର ଇଂରାଜୀ ଅନୁବାଦ କରିବାକୁ ଆରମ୍ଭ କଲେ । ମୁଁ ପୂର୍ବବତ୍ ଅଜ୍ଞତାର ବାହାନା କରି ପୂର୍ବରୁ ଇଂରାଜୀରେ ଅନୁବାଦିତ ନକଲ କୋର୍ଟରେ ପେଶ କଲି ଓ ଚପା ଗଳାରେ କହିଲି, ବାଦୀ ପକ୍ଷର ବିଜ୍ଞ ଆଡ୍‌ଭୋକେଟ୍‌ଙ୍କର ଶ୍ରମ ଲାଘବ କରିବା ପାଇଁ ଏ ଅନୁବାଦ କରାଇ ଦେଇଛି । ହଠାତ୍ ମୁଁ ନିରୀକ୍ଷଣ କଲି, ଏ ସବୁ ଦଲିଲ ଓ ରେଜିଷ୍ଟରଗୁଡ଼ିକ ପଢ଼ିଲାବେଳେ, ନରସିଂହମ୍‌ଙ୍କର ମୁହଁ ଯେପରି ଶୁଖି ଶୁଖି ଯାଉଛି । ନରସିଂହମ୍ ଗୋରା ଲୋକ ନଥିଲେ, କିନ୍ତୁ ଦଲିଲ ପଠନ ଆଗେଇବା ମାତ୍ରେ ତାଙ୍କ ମୁଖମଣ୍ଡଳ ଆହୁରି କଳା ପଡ଼ିଗଲା । ଏଣୁ ତେଣୁ କୋର୍ଟ ନଜିର ଦେଖାଇ ସେ ଯୁକ୍ତି କଲେ ଯେ ଜମିଦାରୀ ଉଚ୍ଛେଦ ଆଇନ ଏକ ସଂବିଧାନ ବିରୋଧୀ ବିଧାନ ।

ପରଦିନ ମୋତେ ଜବାବ୍ ଦେବାକୁ ହେଲା । କୋର୍ଟ ହଲ୍ ବୟସ୍କ ଓ ଯୁବ ଆଇନଜୀବି ଏବଂ ମହକିଲଙ୍କ ସମାବେଶରେ ଭରପୂର । ଏକେତ ପୂର୍ବତନ ମୁଖ୍ୟ ବିଚାରପତି ପାଣିଗ୍ରାହୀଙ୍କ ପରିବାରର ମୋକଦ୍ଦମା, ତେଣେ ଜଣେ ସ୍ଥାନୀୟ ବରିଷ୍ଠ ଓ ବୟସ୍କ ଆଇନଜୀବିଙ୍କ ସହ ଜଣେ ନବାଗତ ଯୁବକ ଅଧିବକ୍ତାଙ୍କର ଲଢ଼େଇ । ଏ ଚିତ୍ତାକର୍ଷକ ଦୃଶ୍ୟ ସମସ୍ତେ ଉପଭୋଗ କରୁଥିଲେ । ମାନ୍ଦ୍ରାଜ ଜମିଜମା ସଂକ୍ରାନ୍ତୀୟ ବିଧିବିଧାନ ଓ ତା' ଉପରେ ଗଢ଼ି ଉଠିଥିବା ବିଚାରାଳୟର ନିଷ୍ପତ୍ତିଗୁଡ଼ିକ ଉପରେ ମୋର ଦୃଢ଼ ଦଖଲ ଥିଲା । ବାଦୀ ପକ୍ଷରୁ ଦର୍ଶାଯାଇଥିବା ନଜିରଗୁଡ଼ିକ ଯେ ଏ କ୍ଷେତ୍ରରେ ଆଦୌ ପ୍ରଯୁଜ୍ୟ ନୁହେଁ ତାହା ମୁଁ ଅତି ସହଜରେ ବିଚାରପତିଙ୍କୁ ବୁଝାଇ ଦେଇ ପାରିଥିଲି । ଶହେ ବର୍ଷର ପୁରଣା ରେଭିନିଉ ରେକର୍ଡ଼ରୁ ସଂଗୃହୀତ ତଥ୍ୟ ପ୍ରତି କୋର୍ଟଙ୍କ ଦୃଷ୍ଟି ଆକର୍ଷଣ କରି ମୁଁ କହିଥିଲି, ଏହି ଗ୍ରାମଟି ଯେ ଏକ ଇଷ୍ଟେଟ୍ ବା ଜମିଦାରୀ, ତାହା ବାଦୀଙ୍କ ପକ୍ଷରୁ ତଲବ କରାଯାଇଥିବା ଦଲିଲରୁ ସ୍ପଷ୍ଟ ପ୍ରମାଣିତ ହେଉଛି । ଜମିଦାରୀ ଉଚ୍ଛେଦ ଆଇନର ସଂଶୋଧନ ଦୃଷ୍ଟିରୁ ମୋର ବକ୍ତବ୍ୟ ଥିଲା ଯେ ବର୍ତ୍ତମାନ ସବୁ ପ୍ରକାର ଇନାମକୁ ଇଷ୍ଟେଟ୍ ରୂପେ ଗଣାଯିବ ଓ ଜମିଦାରୀ ଉଚ୍ଛେଦ ଆଇନର ତୃତୀୟ ଧାରାର ବିଜ୍ଞପ୍ତି ହେତୁ ସବୁ ଇଷ୍ଟେଟ ସରକାରଙ୍କଠାରେ ନ୍ୟସ୍ତ ହୋଇଛି । ଜମିଦାରୀ ଉଚ୍ଛେଦ ଆଇନ ଯେ ସଂବିଧାନ ସମ୍ମତ, ତାହା ପ୍ରମାଣ କରିବାକୁ ଯାଇ ମୁଁ ଯେତେବେଳେ ପାରଳା ଖେମୁଣ୍ଡି ଜମିଦାରୀ ସଂପର୍କରେ ସୁପ୍ରିମକୋର୍ଟ ନିଷ୍ପତ୍ତିର ଉଲ୍ଲେଖ କଲି,

ଜଣେ କେହି ପଛ ବେଂଚରୁ ଚିତ୍କାର କଲେ ''ଏ କ'ଣ ଓରେକ୍ଲଙ୍କର ବକ୍ତବ୍ୟ ?'' ମୁଁ ପଛକୁ ନ ଚାହିଁ ଉତ୍ତର ଦେଲି ''ଗ୍ରୀକ୍ ପୁରାଣରେ ଓରେକ୍ଲକୁ ଜଣେ ବିଦ୍ୱାନ ରୂପେ ବିଚାର କରାଯାଏ । ପ୍ରଶ୍ନକର୍ତ୍ତା ଯଦି ସେପରି ଭାବିଥାନ୍ତି ତାହାହେଲେ ମୁଁ ଅନୁଗୃହୀତ ହେବି ।'' ମୋର ଶ୍ଳେଷୋକ୍ତିରେ କୋର୍ଟ ହଲରେ ମୃଦୁ ହାସ୍ୟରୋଳ ଉଠିଲା । ଦୁଇ ଦିନ ପରେ ସୁଆଲ ଜବାବ ଶେଷ ହେଲା ଓ ରାୟ ପାଇଁ ଦିନ ଧାର୍ଯ୍ୟ ହେଲା । କ୍ଳାନ୍ତ ହୋଇ ମୁଁ ଯେତେବେଳେ ବାହାରକୁ ଆସିଲି, ବରିଷ୍ଠ ବଂଧୁ ଓ୍ୟାଇ ସନ୍ୟାସୀ ରାଓ ମତେ ସଶ୍ରଦ୍ଧ ଆଲିଙ୍ଗନ କରି କହିଲେ ''ତୁମର ଉପସ୍ଥାପନାର ମାନ ଏତେ ବଳିଷ୍ଠ, ଉନ୍ନତ ଓ ମାର୍ଜିତ ହେବ ବୋଲି ଆମେ ଆଶା କରି ନଥିଲୁ ।'' ଏତିକି କହି ସେ ସଦିଚ୍ଛାର ନିଦର୍ଶନ ସ୍ୱରୂପ ସେ ମୁହୂର୍ତ୍ତରେ ଅତି ଆବଶ୍ୟକ କଫି କପେ ଅର୍ପଣ କଲେ ।

ଧାର୍ଯ୍ୟ ତାରିଖରେ ଦିନ ଗୋଟାଏ ବେଳେ ସବ୍‌ଜଜ୍ ତାଙ୍କର ରାୟ ଘୋଷଣା କଲେ । ପାଣିଗ୍ରାହୀଙ୍କ ସୁଟ୍ ଡିସ୍‌ମିସ୍ ହୋଇଥିଲା ଓ ନିଷେଧ ଆଦେଶ ପ୍ରାର୍ଥନା ଅଗ୍ରାହ୍ୟ ହୋଇଥିଲା । ଲଢ଼େଇ ସମାପ୍ତ ହେଲା । ବିଶ୍ରାନ୍ତି ସମୟରେ ବାର୍ ଆସୋସିଏସନ୍‌ର ସଭାପତି ମୋତେ ଆସୋସିଏସନ୍ ହଲକୁ ନିମନ୍ତ୍ରଣ କରି କଫି ଅର୍ପଣ କଲେ । ମନେ ଅଛି ଓକିଲ ରାମମୂର୍ତ୍ତି, ଦିଗମ୍ବର ରଥ, ବୁର୍ଲା ଜଗନ୍ନାଥ ରାଓ ପ୍ରମୁଖ ବହୁ ବୟସ୍କ ଓ ଯୁବକ ଆଇନଜୀବି ସେଠି ଉପସ୍ଥିତ ଥିଲେ । ସଭାପତି ମହାଶୟ ସର୍ବସମକ୍ଷରେ ମୋ ସଂପର୍କରେ ଯେଉଁ ପ୍ରଶଂସାସୂଚକ ଅଭିମତ ଦେଲେ, ତା ଶୁଣି ମୁଁ ସଂକୁମତାରେ ଝାଉଁଳି ପଡ଼ିଲି । ଉତ୍ତରରେ ମୁଁ କେବଳ ଏତିକ କହିଲି ''ଆପଣଙ୍କ ପରି ଜଣେ ବରିଷ୍ଠ ଓ ଅଭିଜ୍ଞ ସମଧର୍ମୀଙ୍କର ଅଭିମତକୁ ମୁଁ ନମ୍ରତାର ସହ ଆଶୀର୍ବାଦ ରୂପେ ଗ୍ରହଣ କରୁଛି ।''



# ବୃତ୍ତି ଜୀବନରେ ନୂଆ ମୋଡ଼

ବୃତ୍ତି ଜୀବନର ପ୍ରାରମ୍ଭ କାଳରେ ବିଭିନ୍ନ ସୂତ୍ରରୁ, ବିଶେଷତଃ ହାଇକୋର୍ଟ ବିଚାରପତିମାନଙ୍କଠାରୁ ମୁଁ ଯେଉଁ ବିପୁଳ ଶ୍ରଦ୍ଧା, ସମାଦର ଓ ପ୍ରୋତ୍ସାହନ ଲାଭ କରିଥିଲି, ଖୁବ୍ କମ୍ ଆଇନଜୀବିଙ୍କ ଭାଗ୍ୟରେ ସେପରି ସୁଯୋଗ ମିଳେ । ମୋର ପିତୃ ପିତାମହ ବା ପରିବାରରେ କେହି ଆଇନଜୀବି ନଥିଲେ । ଅନ୍ୟଥା ପ୍ରତିଷ୍ଠା ଲାଭ କରିବା ପାଇଁ ଯଥେଷ୍ଟ ଅର୍ଥବଳ ନଥିଲା । କେବଳ ସଂଗ୍ରାମ ଓ ସାଧନା ବଳରେ ସମାଜର ଦୃଷ୍ଟି ଆକର୍ଷଣ କରିବା ଥିଲା ଏକମାତ୍ର ଭରସା । ପ୍ରାଣନାଥ ପଟ୍ଟନାୟକଙ୍କ ନିର୍ବାଚନ ଅପିଲ୍‌ରେ ‘ସୁଆଲ ଜବାବ’ କରିବା ପରେ, ଚିଫ୍ ଜଷ୍ଟିସ ଆର.ଏଲ. ନରସିଂହମ୍ ମୋ ସଂପର୍କରେ ଯେଉଁ ଧାରଣା ପୋଷଣ କରୁଥିଲେ, ତାହା ତାଙ୍କ ତୁଣ୍ଡରୁ ନ ଶୁଣିବା ପର୍ଯ୍ୟନ୍ତ ମୋର ଜାଣିବାର ଅବକାଶ ନଥିଲା । ନରସିଂହମ୍ ଆଉ ଇହ ଜଗତରେ ନାହାନ୍ତି । ଜୀବନ କାଳରେ ତାଙ୍କୁ ବ୍ୟକ୍ତିଗତ ଭାବରେ କୃତଜ୍ଞତା ଜଣାଇବାର ସୁଯୋଗ ମିଳିନାହିଁ । ଅନ୍ତତଃ ତାଙ୍କ ସଂପର୍କରେ ଦୁଇ ପଦ ଲେଖି ତାଙ୍କ ସ୍ମୃତିରେ ଶ୍ରଦ୍ଧାଂଜଳି ଅର୍ପଣ କରି ପାରିଲେ ନିଜକୁ ଧନ୍ୟ ମନେ କରିବି । ସେ କାଳର ଜଜ୍‌ମାନେ ସାଧାରଣ ଲୋକ ଓ ଆଇନଜୀବିମାନଙ୍କଠାରୁ ନିଜକୁ ଯଥାସଂଭବ ଦୂରରେ ରଖୁଥିଲେ । ଅନ୍ୟମାନଙ୍କଠାରୁ ଓ ଜନ ସମାଜରୁ ନିର୍ଲିପ୍ତ ରହିବା ନୈତିକତାର ମାନଦଣ୍ଡ ରୂପେ ବିବେଚିତ ହେଉଥିଲା । ତା ଛଡ଼ା ଚିଫ୍ ଜଷ୍ଟିସ୍ ଥିଲେ ଜଣେ ତାମିଲିଆନ୍ ଆଇ.ସି.ଏସ୍ ଜଜ୍ । ବୟସରେ ମୋ ଠାରୁ ପ୍ରାୟ ସତର ବର୍ଷ ବଡ଼ । ମୋ ପରି ଜଣେ ଯୁବ ଆଇନୀଜୀବିଙ୍କ ସହିତ ତାଙ୍କର ବା କି ବ୍ୟକ୍ତିଗତ ସଂପର୍କ ରହନ୍ତା ! ମୋର ବହୁ ଅନୁଭୂତି ମଧ୍ୟରୁ ତାଙ୍କ ସଂପର୍କରେ ଗୋଟିଏ ଦୁଇଟି ଘଟଣା ଉଲ୍ଲେଖ କରୁଛି ।

୧୯୫୮ ମାର୍ଚ୍ଚ ଅଠର ତାରିଖରେ କଲିକତାର ବାରିଷ୍ଟର ସତ୍ୟଭୂଷଣ ବର୍ମନ ଓଡ଼ିଶା ହାଇକୋର୍ଟରେ ଜଜ୍ ଭାବରେ ଯୋଗ ଦେଲେ । ଶପଥ ନେବା ପରେ ପ୍ରଥମ ଦିନ ଚିଫ୍ ଜଷ୍ଟିସ୍ ଓ ବର୍ମନଙ୍କୁ ନେଇ ଏକ ଦୁଇଜଣିଆ ବେଂଚ ଗଠିତ ହୋଇଥିଲା ଏବଂ ସେ ବେଂଚରେ ମୋର ଗୋଟିଏ ଆପିଲ ବିଚାର ତାଲିକାର ପ୍ରଥମ ସ୍ଥାନରେ ଥିଲା । ମୁଁ ଯେତେବେଳେ ଆପିଲଟି ଆର୍ଗୁମେଣ୍ଟ କରିବା ପାଇଁ ଠିଆ ହୁଏ, ମୁଁ କିଛି କହିବା ପୂର୍ବରୁ ଚିଫ୍ ଜଷ୍ଟିସ୍ ଅନୁଚ୍ଚ ସ୍ୱରରେ ଜଷ୍ଟିସ୍ ବର୍ମନଙ୍କୁ ମୋର ପରିଚୟ ଦେଇ କହିଲେ, ‘‘ଏ

ରଥ ତରୁଣ ହେଲେ ମଧ୍ୟ ଜଣେ ବିଚକ୍ଷଣ ଆଡ୍‌ଭୋକେଟ୍ । କିଛି ଦିନ ଆଗେ କେତୋଟି ଅପିଲ ସେ ଅତି ଦକ୍ଷତାର ସହ ଏହି କୋର୍ଟରେ ପରିଚାଳନା କରିଛନ୍ତି ।'' ଚିଫ୍ ଜଷ୍ଟିସ୍ ଅବଶ୍ୟ ତାଙ୍କର ସହଯୋଗୀ ଜଜ୍‌ଙ୍କୁ ଅତି ଆସ୍ତେ ଆସ୍ତେ କହୁଥିଲେ, କିନ୍ତୁ ମୋ ସମେତ ସାମନା ଧାଡ଼ିରେ ବସିଥିବା ଆଡ୍‌ଭୋକେଟ୍‌ମାନେ ତାଙ୍କର ମନ୍ତବ୍ୟ ସ୍ପଷ୍ଟ ଭାବରେ ଶୁଣି ପାରୁଥିଲେ । ଜଣେ ନୂଆ କରି ଶପଥ ନେଇଥିବା ସଂପୂର୍ଣ୍ଣ ଅପରିଚିତ ବିଚାରପତିଙ୍କ ନିକଟରେ ଖୋଦ୍ ଚିଫ୍ ଜଷ୍ଟିସ୍‌ଙ୍କ ଦ୍ୱାରା ମୋର ଏହି ଅପ୍ରତ୍ୟାଶିତ ପରିଚୟ ପ୍ରଦାନ, ବାର୍ ଆସୋସିଏନ୍‌ରେ ଆଲୋଚନାର ବିଷୟବସ୍ତୁ ହେଲା । ଜଣେ ତରୁଣ ଅଧିବକ୍ତାଙ୍କୁ ଏହାଠାରୁ ଅଧିକ ପ୍ରୋତ୍ସାହନ କ'ଣ ମିଳିପାରେ ?

୧୯୬୧ ମସିହାର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ମୋର ବଂଧୁ ଆଡ୍‌ଭୋକେଟ୍ ରାମଚନ୍ଦ୍ର ରାମ ଟାଂଗୀ-ରଣପୁର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ରଘୁନାଥ ରାୟଙ୍କୁ ପରାଜିତ କରି ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ରାମଚନ୍ଦ୍ର ଓ ପରାଜିତ ପ୍ରାର୍ଥିଙ୍କ ମଧ୍ୟରେ ଭୋଟ ସଂଖ୍ୟାର ବ୍ୟବଧାନ ଥିଲା ମାତ୍ର ପାଂଚୋଟି । ରଘୁନାଥ ରାୟ ପୁରୀ ଜିଲ୍ଲା ଜଜ୍ ବୈକୁଣ୍ଠନାଥ ମିଶ୍ରଙ୍କୁ ନେଇ ଗଠିତ ଇଲେକ୍‌ସନ ଟ୍ରାଇବ୍ୟୁନାଲ୍ ନିକଟରେ ନିର୍ବାଚନ ମୋକଦ୍ଦମା ଦାଏର କରିଥିଲେ । ରାମଚନ୍ଦ୍ରଙ୍କ ନିର୍ବାଚନ ଅସିଦ୍ଧ ଘୋଷିତ ହୋଇଥିଲା । ଟ୍ରାଇବ୍ୟୁନାଲ୍‌ଙ୍କ ରାୟ ବିରୁଦ୍ଧରେ ରାମଚନ୍ଦ୍ର ହାଇକୋର୍ଟରେ ଯେଉଁ **ଅପିଲ୍** ଦାଏର କରିଥିଲେ, ସେଥିରେ କଲିକତାର ସୁବିଖ୍ୟାତ ବାରିଷ୍ଟର ସ୍ନେହାଂଶୁ ଆଚାର୍ଯ୍ୟ ଓ ରେସ୍‌ପଡେଣ୍ଟ ରଘୁ ରାୟଙ୍କ ତରଫରୁ ପୂର୍ବତନ ଆଡ୍‌ଭୋକେଟ୍ ଜେନେରାଲ ବାଂଛାନିଧି ମହାପାତ୍ର ସୁଆଲ ଜବାବ୍ କରିଥିଲେ । ମୁଁ ସେହି ସମୟରେ ହାଇକୋର୍ଟରେ ଷ୍ଟାଣ୍ଡିଂ କାଉନସେଲ୍, ଏଣୁ ରାମଚନ୍ଦ୍ରର କେସ୍‌ର ବିଚାର ସମୟରେ କୋର୍ଟରେ ଉପସ୍ଥିତ ରହିବା ସଂଭବ ହେଉ ନଥିଲା । ଚିଫ୍ ଜଷ୍ଟିସ୍ ନରସିଂହମ୍ ଓ ବିଚାରପତି ଆର.କେ.ଦାସଙ୍କ କୋର୍ଟରେ ବିଚାର ହେଉଥାଏ । ଦ୍ୱିତୀୟ ଦିନ ଲଂଚ୍ ପରେ ମୁଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ମୂହୂର୍ତ୍ତରେ ଚିଫ୍ ଜଷ୍ଟିସ୍‌ଙ୍କ କୋର୍ଟରେ ପ୍ରବେଶ କଲି । ସ୍ନେହାଂଶୁ ଆଚାର୍ଯ୍ୟ ଜିଲ୍ଲା ଜଜ୍‌ଙ୍କୁ ଅତି କଟୁ ଭାଷାରେ କଠୋର ସମାଲୋଚନା କରୁଥିଲେ । ଅପର ପକ୍ଷରୁ ବାଂଛାନିଧି ବାବୁ ଏହାର ପ୍ରତିବାଦ କଲେ । ସ୍ନେହାଂଶୁ ଆଚାର୍ଯ୍ୟ ଉତ୍ତର ଦେଲେ ''ମୁଁ ତ ଜିଲ୍ଲା ଜଜ୍‌ଙ୍କ ପ୍ରତି ଅନେକ ଗୁଡ଼ିଏ ବିଶେଷଣ ପ୍ରୟୋଗ କରିଛି । ସେଥିରୁ ଯେଉଁ

ବିଶେଷଣଟି ତାଙ୍କ ପ୍ରତି ପ୍ରଯୁଜ୍ୟ ଆପଣ ତାହା ବାଛି ନିଅନ୍ତୁ ।'' ଆଚାର୍ଯ୍ୟଙ୍କର ରସିକତାପୂର୍ଣ୍ଣ ମନ୍ତବ୍ୟରେ କୋର୍ଟରେ ହାସ୍ୟରୋଳ ଉଠିଲା । ଏହି ସମୟରେ କୋର୍ଟରେ ପ୍ରବେଶ କରି ବାମପଟ ସାମନା ଧାଡ଼ିରେ ଗୋଟିଏ ଚୌକୀରେ ବସିଲି । ମତେ ଦେଖି ଚିଫ୍ ଜଷ୍ଟିସ୍ ପଚାରିଲେ, ''ତୁମେ କ'ଣ ମିଷ୍ଟର ରାମଙ୍କର ଆଡ଼ଭୋକେଟ୍?'' ମୁଁ ଉତ୍ତର ଦେଲି ''ମୁଁ ଷ୍ଟାଣ୍ଡିଂ କାଉନସେଲ୍, ଏଣୁ ନିର୍ବାଚନ ଅପିଲରେ ଓକିଲାତି କରିପାରିବି ନାହିଁ ।'' ଚିଫ୍ ଜଷ୍ଟିସ୍ କହିଲେ ''ଓଃ ମିଷ୍ଟର ରାମଙ୍କର ତୁମେ ବଂଧୁ, ସେଇଥିପାଇଁ ବାମ ପାଖରେ ଚୌକୀ ବାଛି ନେଇଛ ।'' ତା'ପରେ ସେ ଆପଣାଛାଏଁ କହି ଚାଲିଲେ ''ତିନିବର୍ଷ ତଳେ ପ୍ରାଣନାଥ ପଟ୍ଟନାୟକଙ୍କ ନିର୍ବାଚନ ଅପିଲ୍‌ରେ ତୁମେ ଯେଉଁ ବିଚକ୍ଷଣ ଆଡ୍‌ଭୋକେସି ପ୍ରଦର୍ଶନ କରିଥିଲ, ତାହା ମୁଁ ଏ ପର୍ଯ୍ୟନ୍ତ ଭୁଲି ନାହିଁ ।'' ମୁଁ କୌଣସି ଉତ୍ତର ନ ଦେଇ ସକୃତଜ୍ଞ ନୟନରେ ତାଙ୍କୁ ଚାହିଁ ରହିଲି ।

ଚାରିଟାବେଳେ କୋର୍ଟ ଉଠିଯିବା ପରେ ସ୍ନେହାଂଶୁଦା ମୋ ସହିତ ହାତ ମିଳାଇ କହିଲେ 'ତୁମେ ତାହେଲେ ଏହି କୋର୍ଟର 'ବ୍ଲୁ-ଆଏଡ୍ ବଏ', ଚିଫ୍ ଜଷ୍ଟିସ୍‌ଙ୍କର ଫେଭରିଟ୍'' । ଏହାପରେ ଯେବେ ଦେଖାହୁଏ ସେ ମୋତେ ସେହି ଭାବରେ ସମ୍ବୋଧନ କରନ୍ତି । ୧୯୭୪ ମସିହାରେ ଆର. ଏନ୍. ସିଂହଦେଓଙ୍କ ମୋକଦ୍ଦମାରେ ମତେ କଲିକତା ହାଇକୋର୍ଟର ଚିଫ୍ ଜଷ୍ଟିସ୍‌ଙ୍କ କୋର୍ଟରେ ସାତ ଦିନ ଆର୍ଗୁମେଣ୍ଟ୍ କରିବାକୁ ହୋଇଥିଲା । ଦିନେ ସାଢ଼େ ଦଶଟା ସମୟରେ ମୁଁ ଓ ମୋର ସହଯୋଗୀ ଆଡ଼ଭୋକେଟ୍ ବିପିନ୍ ବିହାରୀ ମହାନ୍ତି ଚିଫ୍ ଜଷ୍ଟିସ୍‌ଙ୍କ କୋର୍ଟ ଆଡ଼କୁ ଚାଲିଛୁ; ହଠାତ୍ ଜଣେ କିଏ ପଛରୁ ଚିତ୍କାର କଲେ ''ହଲୋ ଫେଭରିଟ୍!'' ମୁଁ ପଛକୁ ଚାହିଁ ଦେଖେ, ସ୍ନେହାଂଶୁଦା ।

ଜଷ୍ଟିସ୍ ପି. ଭି. ବାଳକୃଷ୍ଣ ରାଓ ୧୯୫୮ ମସିହାରେ ଭଦ୍ରଖ ନିର୍ବାଚନ ଅପିଲ୍‌ରେ ରାୟ ଦେଇ ମୋ ସଂପର୍କରେ ଯାହା ଲେଖିଥିଲେ, ତାହା ପୂର୍ବେ ''କୋରାପୁଟର ଗାନ୍ଧୀ'' ଶୀର୍ଷକ ଅଧ୍ୟାୟରେ ଉଲ୍ଲେଖ କରିଛି ! ରାୟ ନକଲ ନେଇ ହନିଫ ବାବୁ (ପୂର୍ବତନ ଡେପୁଟୀ ସ୍ପିକର ମୌଲବୀ ମହମ୍ମଦ୍ ହନିଫ) ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ଓ ଅନ୍ୟମାନଙ୍କୁ ଦେଖାଇଥିଲେ । ଏହି ମନ୍ତବ୍ୟରୁ ମତେ ଯେଉଁ ପ୍ରେରଣା ମିଳିଥିଲା ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ୧୯୫୯ ମସିହା ଶେଷ ଭାଗରେ ସେ ବିଚାରପତି ପଦରୁ ଅବସର ନେଲେ । ଅବସର ତାରିଖର ପ୍ରାୟ ଚାରିମାସ ପୂର୍ବରୁ ସେ ଛୁଟିରେ ରହିଲେ । ଛୁଟିରେ

ଥିବା ସମୟରେ ବାର୍ ଆସୋସିଏସନ୍‌ର କୌଣସି ଏକ ଅନୁଷ୍ଠାନରେ ଯୋଗ ଦେବା ନିମନ୍ତେ ନିମନ୍ତ୍ରଣ କରିବା ପାଇଁ ତାଙ୍କ କ୍ୟାଣ୍ଟନ୍‌ମେଣ୍ଟ ରୋଡ୍ ବଂଗଳାକୁ ଯାଇଥିଲି । ନିମନ୍ତ୍ରଣ ଗ୍ରହଣ କରି ସେ ମୋତେ କଫି ଅର୍ପଣ କଲେ ଏବଂ ପ୍ରସ୍ତାବ କଲେ ଯେ, ତାଙ୍କ ବଡ଼ ପୁଅ ଆଡ୍‌ଭୋକେଟ୍ ପି.ଭି. ରାମଦାସ୍ ମୋର ଜୁନିୟର ରହିବେ । ରାମଦାସ ମାସେ ଦୁଇମାସ ଆଗରୁ ବାର୍‌ରେ ଯୋଗ ଦେଇଥାଆନ୍ତି । ଯଦିଓ ବୟସରେ ରାମ ଦାସ ମୋଠାରୁ ଚଉଦ ପନ୍ଦର ବର୍ଷ ସାନ, କିନ୍ତୁ ମୋର ବୃତ୍ତି ଜୀବନର ଅଭିଜ୍ଞତା ମାତ୍ର ଚାରିବର୍ଷ । ଏଣୁ ପ୍ରସ୍ତାବଟି ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ମୁଁ କହିଲି, "ସାର୍, ମୁଁ କାଲି ସକାଳେ ବାର୍‌ରେ ଯୋଗ ଦେଇଛି । ମୋର ବୃତ୍ତି ଅଭିଜ୍ଞତା ମାତ୍ର ଚାରିବର୍ଷର । ମୁଁ କ'ଣ ସିନିୟର ହେବାକୁ ଯୋଗ୍ୟ ?" ଜଷ୍ଟିସ୍ ରାଓ ମୋ କଥାରେ ବାଧା ଦେଇ କହିଲେ "ତୁମେ ମୋ କୋର୍ଟରେ ଅନେକ କେସ୍ ଆର୍ଗୁମେଣ୍ଟ କରିଛ । ବହୁଦିନ ଧରି ତୁମର କାର୍ଯ୍ୟାଲୋପ ମୁଁ ଅନୁଧ୍ୟାନ କରି ଆସୁଛି । ତୁମ ବିଷୟରେ ସବୁ ଜଜ୍‌ମାନଙ୍କର ଅତି ଉଚ୍ଚ ଧାରଣା । ତୁମେ ହିଁ ରାମଦାସର ସିନିୟର ହେବାକୁ ଉପଯୁକ୍ତ ବ୍ୟକ୍ତି ।" ତାଙ୍କ ମନ୍ତବ୍ୟ ଉପରେ ମୁଁ କିଛି ଉତ୍ତର ଦେଇ ପାରିଲି ନାହିଁ । ଏହାପରେ ପି.ଭି ରାମଦାସ ମୋର ସହଯୋଗୀ ଭାବରେ ଯୋଗ ଦେଲେ । ସେ ମୋର ପ୍ରଥମ ଜୁନିୟର ।

ଜଣେ ବିଜ୍ଞ ଓ ବିଚାରବନ୍ତ ନ୍ୟାୟମୂର୍ତ୍ତି ଭାବରେ ଜଷ୍ଟିସ୍ ସୌରୀ ପ୍ରସାଦ ମହାପାତ୍ରଙ୍କର ଅସାମାନ୍ୟ ପ୍ରତିଷ୍ଠା ଥିଲା । ୧୯୫୧ ମସିହାରେ ସେ ଜଜ୍ ନିଯୁକ୍ତ ହୋଇ ୧୯୬୧ ଜାନୁଆରୀ ୨୩ ତାରିଖରେ ବିଚାରପତି ପଦରୁ ଅବସର ନେଲେ ଏବଂ ମାତ୍ର ଚାରିଦିନ ପରେ, ଜାନୁଆରୀ ୨୭ ତାରିଖ ଦିନ ମର-ସଂସାରରୁ ଚିର ଅବସର ନେଲେ । ତାଙ୍କର ଅକାଳ ବିୟୋଗ ଓଡ଼ିଶାର ଆଇନ ଜଗତରେ ଏକ ଚରମ ଶୂନ୍ୟତା ସୃଷ୍ଟି କରିଥିଲା । ସୌରୀ ବାବୁ ଥିଲେ ବିଦ୍ୱାନ, ସାଧୁ, ସଚ୍ଚୋଟ, ଧର୍ମପରାୟଣ ଓ ନୀତିବାଦୀ । ଦେଓ୍ୱାନୀ ଆଇନରେ ତାଙ୍କର ବିଶେଷ ପାରଦର୍ଶିତା ଥିଲା । ଷ୍ଟାଣ୍ଡିଂ କାଉନ୍‌ସେଲ ହେବାର ଅଳ୍ପ ଦିନ ପରେ ତାଙ୍କ କୋର୍ଟରେ ମୁଁ ଗୋଟିଏ ଘରୋଇ ସେକେଣ୍ଡ ଅପିଲ୍ ବାଦାନୁବାଦ କରିଥିଲି । ଅପର ପକ୍ଷରେ ସ୍ୱନାମଧନ୍ୟ ଆଡ୍‌ଭୋକେଟ୍ ଏମ୍. ସୁବ୍ବା ରାଓ ସୁଆଲ ଜବାବ୍ କରିଥିଲେ । ହିଅରିଂ ଶେଷରେ ଜଷ୍ଟିସ୍ ମହାପାତ୍ର କୋର୍ଟରେ ମୋ ମହକିଲଙ୍କ ପକ୍ଷରେ ରାୟ ଡାକି ଦେଲେ । ତାପର ଦିନ

ସଂଧ୍ୟାବେଳେ ମୁଁ ଗୋଟିଏ ସାଇକେଲ୍ ରିକ୍ସାରେ ବସି କାଠଯୋଡ଼ୀ କୂଳ ରାସ୍ତାରେ ବୁଲି ଯାଉଛି, ଦୂରରୁ ଦେଖିଲି ପୁରୀଘାଟ ରାସବିହାରୀ ମଠ ସାମନାରେ ଜଷ୍ଟିସ୍ ମହାପାତ୍ରଙ୍କ ଗାଡ଼ି । ମୋ ରିକ୍ସା ମଠ ସାମନା ରାସ୍ତା ଅତିକ୍ରମ କଲାବେଳକୁ ସେ ମଠରୁ ବାହାରି ଗାଡ଼ିକୁ ଆସୁଥିଲେ । ମୁଁ ଦୂରରୁ ନମସ୍କାର କଲି । ସେ ପ୍ରତି ନମସ୍କାର କରି ଏତିକ କହିଲେ, ''ଆଜି ଆଠଟା ବେଳେ ମତେ ସାକ୍ଷାତ କରିବ ।'' ମନରେ ନାନା ଦୁଷ୍ଚିନ୍ତା ଉଠିଲା । କାହିଁକି ହଠାତ୍ ଡାକିଲେ । ବୋଧହୁଏ ପୂର୍ବଦିନ ଆପିଲ୍‌ଟି ମୁଁ ଯଥାବିଧି ଚଳାଇ ପାରିନାହିଁ । କିମ୍ବା ମୋର ଆଚରଣରେ କୌଣସି ତ୍ରୁଟି ରହିଛି । ଯାହାହେଉ ସଂଧ୍ୟା ଆଠଟାରେ ମୁଁ ତାଙ୍କ କ୍ୟାଣ୍ଟନ୍‌ମେଣ୍ଟ୍ କୋଠିରେ ପହଂଚିଲି ।

ସୌରୀ ବାବୁଙ୍କର କଥାବାର୍ତ୍ତା, ଚାଲିଚଳନ, ଆଚାର ବ୍ୟବହାର ସବୁଥିରେ ସଦା ସୌମ୍ୟ ଓ ସୌଜନ୍ୟ ପରିସ୍ଫୁଟ । ମତେ ସାମନା ସୋଫାରେ ବସିବାକୁ ଇଂଗିତ ଦେଇ ସେ ସିଧାସଳଖ ଆରମ୍ଭ କଲେ ''ତୁମେ କାଲି ମୋ କୋର୍ଟରେ ଯେଉଁ ଆପିଲ୍‌ଟି ବାଦାନୁବାଦ କରିଥିଲ, ସେଥିପାଇଁ ତୁମକୁ ବଧାଇ ଦେବାକୁ ଡାକିଛି ।'' ମୁଁ କହିଲି ''ଓକିଲାତିରେ ମୋର ପ୍ରବେଶ ଅତି ଅଳ୍ପ ଦିନର । ଭୁଲ ଭଟକା ହେଲେ ମୁଁ ଶିଖିବାକୁ ଆଗ୍ରହୀ ।'' ମୋ କଥା ନସରୁଣୁ ଜଷ୍ଟିସ୍ ମହାପାତ୍ର କହିଲେ ''ଏ ବୃତ୍ତିରେ କେହି କାହାକୁ ଶିଖାଇବେ ନାହିଁ । ନିଜକୁ ନିଜ ଗୋଡ଼ରେ ଠିଆ ହେବାକୁ ହେବ । କଠୋର ଉଦ୍ୟମ ଓ ଅଧ୍ୟୟନ କଲେ ସବୁ ଶିଖି ପାରିବ ।'' ଏହାପରେ ନିଜ ଜୀବନର ଦୃଷ୍ଟାନ୍ତ ଦେଇ କହିଲେ ''ମୁଁ ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଏମ୍.ଏ. ପାସ୍ କରିବା ପରେ ଯେତେବେଳେ ଓକିଲାତିରେ ଯୋଗ ଦେଲି, ମତେ କେତେକ ପରିହାସ କରୁଥିଲେ, ଏ ଟୋକାଟା ଏଡ଼େ ଭଲ ଛାତ୍ର, ସରକାରୀ ଚାକିରୀ ନ କରି ଏଠି ବରଗଛ ମୂଳରେ ଚିନାବାଦାମ ଚୋବାଇବାକୁ ଆସିଛି । କାଳକ୍ରମେ ନିନ୍ଦୁକମାନେ ନିଜର ଭୁଲ ବୁଝି ପାରିଥିବେ । ତୁମେ ଜଣେ ମେଧାବୀ ଛାତ୍ର- ଏ ବୃତ୍ତିରେ ସଫଳତା ପାଇଁ ପ୍ରଗାଢ଼ ସାଧନା ଆବଶ୍ୟକ- କିନ୍ତୁ ଉଦ୍ୟମ ଥିଲେ ଯଶ ସୁନିଶ୍ଚିତ ।''

ଅବସର ନେବାର ବର୍ଷକ ପୂର୍ବରୁ ଜଷ୍ଟିସ୍ ମହାପାତ୍ର ବିଶେଷ ଅସୁସ୍ଥ ହେଲେ । ଶାରୀରିକ ଅସୁସ୍ଥତା ହେତୁ ଅନେକ ସମୟରେ ଶିଡ଼ିରେ ଯାଇ

ଉପର ମହଲାରେ କୋର୍ଟ କରିବା ସଂଭବ ହେଉ ନଥିଲା । ବର୍ତ୍ତମାନ ଯେଉଁଠି ଛ' ନମ୍ବର କୋର୍ଟ ହଲ୍, ଅତୀତରେ ସେହି ହଲ୍‌ଟି ଥିଲା ରେଜିଷ୍ଟ୍ରାରଙ୍କ କୋର୍ଟ । ସେହି ହଲ୍‌ରେ କୋର୍ଟ କରିବାକୁ ତାଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହେଲା ଓ ତା' ପାଖରେ ଥିବା କୋଠରୀଟି ତାଙ୍କ ଚାମ୍ବର । ସେ କାଳରେ ଭାରତର ପ୍ରଧାନ ବିଚାରପତିମାନେ ହାଇକୋର୍ଟ ପରିଦର୍ଶନ କରି କୋର୍ଟ କାର୍ଯ୍ୟ ତଦାରଖ କରିବାର ପରଂପରା ଥିଲା । ୧୯୫୩ ମସିହା ଆରମ୍ଭରେ ଭାରତର ପ୍ରଧାନ ବିଚାରପତି ଜଷ୍ଟିସ୍ ମହାଜନ ହାଇକୋର୍ଟ ପରିଦର୍ଶନରେ ଆସିଥିଲେ । ୧୯୫୭ରେ ତତ୍‌କାଳୀନ ଚିଫ୍ ଜଷ୍ଟିସ୍ ସୁଧୀରଂଜନ ଦାସ ଓ ୧୯୬୦ ମସିହା ଶେଷ ଆଡ଼କୁ ପ୍ରଧାନ ବିଚାରପତି ଭୁବନେଶ୍ୱରୀ ପ୍ରସାଦ ସିନ୍‌ହା କଟକ ଆସିଥିଲେ । ସେତେବେଳେ ହାଇକୋର୍ଟରେ ମାତ୍ର ଛ' ଜଣ ଜଜ୍ । ପରିଦର୍ଶନ ଦିନ ତିନୋଟି ଡିଭିଜନ୍ ବେଂଚ ଗଠିତ ହୋଇଥିଲା । ଚିଫ୍ ଜଷ୍ଟିସ୍ ଓ ଜଷ୍ଟିସ୍ ଆର.କେ. ଦାସଙ୍କ କୋର୍ଟରେ ରିଟ୍ କେସ୍, ଜଷ୍ଟିସ୍ ଗୋପାଳ ଚନ୍ଦ୍ର ଦାସ ଓ ଜଷ୍ଟିସ୍ ବର୍ମନ୍‌ଙ୍କ କୋର୍ଟରେ କ୍ରିମିନାଲ୍ ଆପିଲ୍ ଏବଂ ଜଷ୍ଟିସ୍ ଏସ.ପି. ମହାପାତ୍ର ଓ ଜଷ୍ଟିସ୍ ଜୟକୃଷ୍ଣ ମିଶ୍ରଙ୍କ ଇଜ୍‌ଲାସରେ ସିଭିଲ ଆପିଲ୍ ଲିଷ୍ଟଭୁକ୍ତ ହୋଇଥିଲା । ମୋର ସ୍ମରଣ ଅଛି, ହାଇକୋର୍ଟର ବିଶିଷ୍ଟ ଆଡ଼ଭୋକେଟ୍‌ମାନଙ୍କୁ ପ୍ରଧାନ ବିଚାରପତିଙ୍କ ସମ୍ମୁଖରେ ବାଦାନୁବାଦ କରିବାର ସୁଯୋଗ ଦେବା ପାଇଁ ଦୈନିକ ହିଅରିଂ ଲିଷ୍ଟ୍ ବିଶେଷ ଭାବରେ ପ୍ରସ୍ତୁତ କରାଯାଇଥିଲା । ଚିଫ୍ ଜଷ୍ଟିସ୍ ନରସିଂହମ୍‌ଙ୍କ କୋର୍ଟରେ ସରକାରଙ୍କ ତରଫରୁ ଆଡ୍‌ଭୋକେଟ୍ ଜେନେରାଲ ବି. ମହାପାତ୍ର ଓ ଅପର ପକ୍ଷରୁ ମୁରଲୀଧର ମହାନ୍ତି, ଜଷ୍ଟିସ୍ ଗୋପାଳ ଦାସଙ୍କ କୋର୍ଟରେ ମୁଦାଲା ଆପେଲାଣ୍ଟ ପକ୍ଷରୁ ହେମେନ୍ଦ୍ର ନାଥ କାନୁନ୍‌ଗୋ ଓ ସରକାରଙ୍କ ପକ୍ଷରୁ ଗଭର୍ଣ୍ଣମେଣ୍ଟ୍ ଆଡ୍‌ଭୋକେଟ୍ ଶ୍ରୀକାନ୍ତ ମହାନ୍ତି ଏବଂ ଜଷ୍ଟିସ୍ ମହାପାତ୍ରଙ୍କ କୋର୍ଟରେ ଷ୍ଟାଣ୍ଡିଂ କାଉନସେଲ୍ ମୁଁ ଓ ଅପର ପକ୍ଷରେ ଏନ୍.ଭି. ରାମଦାସଙ୍କ କେସ୍ ପ୍ରଥମରେ ଲିଷ୍ଟଭୁକ୍ତ ହୋଇଥିଲା । ମୁଁ କିନ୍ତୁ ଏପରି ଲିଷ୍ଟ୍ ହେବାର ତାତ୍ପର୍ଯ୍ୟ ବୁଝିନଥିଲି ବା ମୋ ଦାୟିତ୍ୱରେ ଥିବା ସେକେଣ୍ଡ୍ ଆପିଲ୍ ପ୍ରତି ବିଶେଷ ଗୁରୁତ୍ୱ ଦେଇନଥିଲି । ସେକେଣ୍ଡ୍ ଅପିଲ ସାଧାରଣତଃ ଜଣିକିଆ ଜଜ୍‌ଙ୍କ କୋର୍ଟରେ ବିଚାର ହୁଏ । କେତେକ ଗୁରୁତ୍ୱପୂର୍ଣ୍ଣ ଆଇନଗତ ପ୍ରଶ୍ନ ସନ୍ନିହିତ ଥିବାରୁ ଏହି ଆପିଲ୍‌ଟି ଦୁଇଜଣ ଜଜ୍ ବା ଡିଭିଜନ୍ ବେଂଚ୍‌କୁ ପ୍ରେରିତ ହୋଇଥିଲା । ଏହି ସମୟରେ ମୁଁ ହାଇକୋର୍ଟ ବାର

ଆସୋସିଏସନ୍‌ର ସାଧାରଣ ସଂପାଦକ ଥାଏ । ପ୍ରଧାନ ବିଚାରପତିଙ୍କୁ ବାର୍ ଆସୋସିଏସନ୍ ତରଫରୁ ସମ୍ବର୍ଦ୍ଧନା ଜଣାଇବା ଓ ତାଙ୍କ ଉପଲକ୍ଷ୍ୟେ ଡିନର ଭୋଜି ଆୟୋଜନରେ ବରଂ ବ୍ୟସ୍ତ ଥାଏ । ମୋର ଓକିଲାତି ସେତେବେଳେକୁ ପାଂଚ ବର୍ଷର । ହାଇକୋର୍ଟରେ କୌଣସି ପଦ ପଦବୀ ପାଇଁ ମୋର ଅଭିଜ୍ଞତାଜନିତ ଯୋଗ୍ୟତା ନଥିଲା । ଏଣୁ ଭାରତର ପ୍ରଧାନ ବିଚାରପତିଙ୍କର ସଦୟ ଦୃଷ୍ଟି ଆକର୍ଷଣ କରିବା ପାଇଁ ମନରେ କୌଣସି ବ୍ୟାକୁଳତା ମଧ୍ୟ ନଥିଲା । ଜଷ୍ଟିସ ମହାପାତ୍ର ତଳ ମହଲାରେ କୋର୍ଟ କରୁଥିବା ହେତୁ ପ୍ରଧାନ ବିଚାରପତି ସିନ୍‌ହା ପ୍ରଥମେ ତାଙ୍କ କୋର୍ଟ ପରିଦର୍ଶନରେ ଆସିଲେ । ମୁଁ ସେତେବେଳେ ସେକେଣ୍ଡ୍ ଅପିଲ୍‌ଟିର ଆର୍ଗୁମେଣ୍ଟ ଆରମ୍ଭ କରୁଥିଲି । ମୁଁ ପ୍ରାୟ ଅଧଘଣ୍ଟାଏ ବିତର୍କ କରି ସାରିବା ପରେ ପ୍ରଧାନ ବିଚାରପତି ଏହି କୋର୍ଟର ପରିଦର୍ଶନ ଶେଷ କରି ଉପର ମହଲାକୁ ଗଲେ । ଆଉ କିଛି ସମୟ ବାଦାନୁବାଦ ଚାଲିବା ପରେ ଜଷ୍ଟିସ୍ ମହାପାତ୍ରଙ୍କ ଅସୁସ୍ଥତା ହେତୁ, ଉଭୟ ବିଚାରପତି ମିଶଲ ଛାଡ଼ି ଚାମ୍ବରକୁ ପ୍ରସ୍ଥାନ କଲେ । ଆମେ ଆଡ଼ଭୋକେଟମାନେ ମଧ୍ୟ ନିକଟସ୍ଥ ବାର୍ ଆସୋସିଏସନ୍ ହଲ୍‌କୁ ଫେରିଗଲୁ । ତା'ପରେ ଯାହା ଘଟିଲା, ଦୀର୍ଘ ତେତ୍ରିଶ ବର୍ଷ ପରେ ମଧ୍ୟ ମନରେ ତାହା ଜୀବନ୍ତ ରହିଛି ।

ବର୍ତ୍ତମାନ ଯେଉଁଠି ପାଂଚ ନମ୍ବର କୋର୍ଟ ହଲ୍ ଓ ଲ' ରିପୋର୍ଟରଙ୍କ ଅଫିସ, ପୂର୍ବେ ଏହା ଗୋଟିଏ ହଲ୍ ଥିଲା ଏବଂ ଏହି ବିରାଟ ହଲ୍‌ଟି ବାର୍ ଆସୋସିଏସନ୍‌ର ଆବାସ ରୂପେ ବ୍ୟବହୃତ ହେଉଥିଲା । କୋର୍ଟରୁ ଫେରି ବାର୍ ଆସୋସିଏସନ୍‌ରେ ମୁଁ ବିଶ୍ରାମ ନେଉଛି, ହଠାତ୍ ଜଷ୍ଟିସ୍ ମହାପାତ୍ରଙ୍କ ଚାମ୍ବରରୁ ଡାକରା ଆସିଲା । ନାନା ଆଶଂକାରେ ମନ ଭରି ଉଠିଲା । ନିଶ୍ଚୟ କିଛି ଗୁରୁତର ତ୍ରୁଟି ଘଟିଯାଇଛି, ଯେଉଁଥିପାଇଁ ଏ ଡାକରା । ସେ କାଳରେ ହାଇକୋର୍ଟ ସାମନା ବାରଣ୍ଡା ଆଡ଼୍‌ଭୋକେଟ୍‌ମାନଙ୍କ ବ୍ୟବହାର ପାଇଁ ଉନ୍ମୁକ୍ତ ଥିଲା । ମୁଁ ସାମନା ବାରଣ୍ଡାରେ ଗଲାବେଳେ ମୁଖ୍ୟ ପ୍ରବେଶ ଦ୍ୱାର ଅତିକ୍ରମ କରିବା ପରେ ଦେଖିଲି, ଉପର ଶିଡ଼ିରୁ ଓହ୍ଲାଇ ଜଷ୍ଟିସ୍ ଜୟକୃଷ୍ଣ ମିଶ୍ର ମୋ ଆଗେ ଆଗେ ଚାଲିଛନ୍ତି । ଜଷ୍ଟିସ୍ ମିଶ୍ର ମୋତେ କହିଲେ "କନ୍‌ଗ୍ରାଚ୍ୟୁଲେସନ୍, ତୁମେ ଆଜି ଓଡ଼ିଶାର ସମ୍ମାନ ବଢ଼ାଇ ଦେଇଛ ।" ଏ ମନ୍ତବ୍ୟ ଶୁଣି ମୁଁ ଟିକିଏ ବିସ୍ମିତ ହୋଇପଡ଼ିଲି । କିନ୍ତୁ ଏହାର ତାତ୍ପର୍ଯ୍ୟ ବୁଝିବାକୁ ସମୟ ସୁଯୋଗ ନଥିଲା । ଉଭୟ ଆଗ ପଛ ହୋଇ ସୌରୀ ବାବୁଙ୍କ ଚାମ୍ବରରେ ପ୍ରବେଶ କଲୁ ।

ଅସୁସ୍ଥତା ସତ୍ତ୍ୱେ ସୌରୀ ବାବୁ ସେ ଦିନ ଅତି ପ୍ରଫୁଲ୍ଲ ଦେଖାଯାଉଥିଲେ । ହସି ହସି ସେ ଆରମ୍ଭ କଲେ "ରଥ, ତୁମେ ଆଜି ଆମର ମାନ୍ ରଖିଛ, ଏ ବାର୍‌ର ଇଜ୍ଜତ ରକ୍ଷା କରିଛ । ତୁମର ବାଦାନୁବାଦ ଅତି ଉଚ୍ଚକୋଟିର ହୋଇଛି ।" ସେ ପୁଣି କହି ଚାଲିଲେ "ତୁମକୁ ପୂର୍ବରୁ ସାବଧାନ କରିଦେବାକୁ ଉଚିତ ମନେ କରି ନଥିଲି । କିନ୍ତୁ ଆଜିର ବାଦାନୁବାଦ ପରେ, ମୁଁ ବ୍ୟକ୍ତିଗତ ଭାବରେ ଅତି ଆନନ୍ଦିତ । ବାଂଛାନିଧି (ଆଡ୍‌ଭୋକେଟ୍ ଜେନେରାଲ ସ୍ୱର୍ଗୀୟ ବି. ମହାପାତ୍ର) କେସ୍‌ଟିର ଗୁରୁତ୍ୱ ଦୃଷ୍ଟିରୁ ନିଜେ ଏହାକୁ ଆର୍ଗୁ କରିବାକୁ ଚାହିଁଥିଲେ ଓ କେସ୍‌ଟି ଲିଷ୍ଟରୁ ବାଦ୍ ଦେବାକୁ ମତେ ଅନୁରୋଧ କରିଥିଲେ । କିନ୍ତୁ ତୁମକୁ ଭାରତର ପ୍ରଧାନ ବିଚାରପତିଙ୍କ ସାମନାରେ ସୁଆଲ୍ ଜବାବ୍ କରିବାର ସୁଯୋଗ ଦେବା ପାଇଁ, ମୁଁ ତାଙ୍କ ଅନୁରୋଧ ରକ୍ଷା କରି ନଥିଲି । ମୁଁ ଜାଣି ଥିଲି ଯେ ଆଡ୍‌ଭୋକେଟ୍ ଜେନେରାଲ ଓ ଗଭର୍ଣ୍ଣମେଣ୍ଟ୍ ଆଡ୍‌ଭୋକେଟ୍ ଆଜି ଅନ୍ୟ କୋର୍ଟରେ ବ୍ୟସ୍ତ ରହିବେ, ଏଣୁ ଏ ସେକେଣ୍ଡ୍ ଅପିଲ୍‌ର ଦାୟିତ୍ୱ ତୁମ ଉପରେ ପଡ଼ିବ । ମୁଁ ଅତ୍ୟନ୍ତ ଖୁସି ଯେ ତୁମେ ଏ ଦାୟିତ୍ୱ ସୂଚାରୁରୂପେ ସଂପନ୍ନ କରିଛ ଓ ଓଡ଼ିଶାର ସମ୍ମାନ ରଖିଛ ।"

ଜଷ୍ଟିସ୍ ମହାପାତ୍ରଙ୍କୁ ଏତେ ପ୍ରଗଲ୍‌ଭ ହେବାର ମୁଁ କେବେ ଦେଖିନାହିଁ । ସେ ଅଳ୍ପ କଥା କହିନ୍ତି, ମୃଦୁ ହସନ୍ତି, ବାହୁଲ୍ୟ ତାଙ୍କ ଜାତକରେ ନଥିଲା । କଥା ପ୍ରସଙ୍ଗରେ ସେ କହିଲେ, "ସିଭିଲ ଲ'ରେ ବିଶ୍ଳେଷଣର ଗୁରୁତ୍ୱ ତୁମେ ନିଶ୍ଚୟ ଆଜି ଅନୁଭବ କରିଥିବ । ଗୋଟିଏ ଆଇନଗତ ସୂତ୍ର ଖୋଳୁ ଖୋଳୁ ସେଥିରୁ କେତେ ନୂଆ ନୂଆ ଖିଅ ବାହାରେ । ଯେ ଅନୁସଂଧାନ କରେ ସେହିଁ କେବଳ ତାର ମହତ୍ତ୍ୱ ଉପଲବ୍‌ଧି କରିପାରେ ।" ମୁଁ କ'ଣ ଉତ୍ତର ଦେବି ଭାବି ପାରିଲି ନାହିଁ । ସେ ପୁଣି କହିଲେ "ସିଭିଲ୍ ଲ'ରେ ଗ୍ରାଉଣ୍ଡିଂ ଥିଲେ ଯେ କୌଣସି ଆଇନରେ ପ୍ରବେଶ ସହଜସାଧ୍ୟ ହୁଏ । ଏଣିକି ସିଭିଲ୍ କେସ୍ ପ୍ରତି ଅଧିକ ଧ୍ୟାନ ଦିଅ । ତାହାହେଲେ ଆଇନର ସବୁ ବିଭାଗରେ ପ୍ରତିଷ୍ଠା ଲାଭ କରି ପାରିବ ।"

ଆଜି ଦୀର୍ଘ ତେତ୍ରିଶ ବର୍ଷ ପରେ ମନେ ପଡୁଛି, ପିତୃ-ପ୍ରତିମ ଶୁଭାକାଂକ୍ଷୀମାନଙ୍କର ଅପ୍ରତ୍ୟାଶିତ ଅଭିନନ୍ଦନ ଓ ଉପଦେଶରେ ମୋ ଆଖି ଆନନ୍ଦରେ ଛଳ ଛଳ ହୋଇ ଉଠିଥିଲା । ଅତି ଦୃଢ଼ତାର ସହ ଅନ୍ତରର ଭାବନାକୁ ଚାପି ରଖିଲି । କୃତଜ୍ଞତାର ନିଦର୍ଶନ ସ୍ୱରୂପ ଉଭୟ ଜଷ୍ଟିସ୍ ମହାପାତ୍ର ଓ ମିଶ୍ରଙ୍କୁ ବିନମ୍ର ନମସ୍କାର ଜଣାଇ ଆସିଲା ପରେ ମନେ ହେଲା, ମୁଁ

ଯେପରି ଗୋଟିଏ ଅଗ୍ନି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ଆସିଛି । ଭାରତର ପ୍ରଧାନ ବିଚାରପତିଙ୍କ ଆଗରେ ବାଦାନୁବାଦ କରିବାର ସୁଯୋଗ ଠାରୁ, ଜଷ୍ଟିସ୍ ମହାପାତ୍ରଙ୍କ ଶୁଭକାମନା ମନରେ ଗଭୀର ରେଖାପାତ କରିଥିଲା । ସେହି ଦିନଠାରୁ ସିଭିଲ୍ କେସ୍ ପ୍ରତି ମୋର ଆଗ୍ରହ ବଢ଼ିଲା । ମୁଁ ଅନୁଭବ କଲି, ଓଡ଼ିଶା ସାରା ବୁଲି ବୁଲି ତଳ କୋର୍ଟମାନଙ୍କରେ ଚାଂଚଲ୍ୟକର କ୍ରିମିନାଲ୍ କେସ୍ କରି ସମ୍ବାଦପତ୍ରରେ ପରିପ୍ରଚାରର ଆଉ ଆବଶ୍ୟକତା ନାହିଁ । ଜନସାଧାରଣ ଓ ମହକିଲ ମହଲରେ ଏହି କେତେ ବର୍ଷ ମଧ୍ୟରେ ମୋର ଯଥେଷ୍ଟ ଅନୁକୂଳ ପରିଚୟ ଘଟିଛି । ଏଣିକି ହାଇକୋର୍ଟରେ ବୃତ୍ତି ଆବଦ୍ଧ ରଖି, ରିଟ୍ କେସ୍ ଓ ସିଭିଲ୍ କେସ୍ ପ୍ରତି ଅଧିକ ଧ୍ୟାନ ଦେବାକୁ ହେବ ।

ବାସ୍ତବିକ୍, ଏହି ସମୟରେ କେତେଗୁଡ଼ିଏ ଚାଂଚଲ୍ୟକର କ୍ରିମିନାଲ କେସ୍ ଚଳାଇବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହୋଇଥାଏ । କଟକର ଶାନ୍ତିଲତା ହତ୍ୟା ମୋକଦ୍ଦମା, ବଲାଂଗୀରର ବି.ଜି.ରାଓ ପଟ୍ଟନାୟକ ମୋକଦ୍ଦମା ଓ ସମ୍ବଲପୁରରେ କିଷାନ ପଟ୍ଟନାୟକଙ୍କ ବିରୁଦ୍ଧରେ ମୁଁ ସ୍ୱତନ୍ତ୍ର ପବ୍ଲିକ ପ୍ରସେକ୍ୟୁଟର ନିଯୁକ୍ତ ହୋଇଥାଏ । ମୋକଦ୍ଦମାର ଗୁରୁତ୍ୱ ଦୃଷ୍ଟିରୁ ସମ୍ବାଦପତ୍ରମାନଙ୍କରେ କେସ୍‌ର ବିସ୍ତୃତ ବିବରଣୀ ପ୍ରକାଶିତ ହୁଏ । ମୋର ସ୍ମରଣ ଅଛି, କଟକ ପୁରୀଘାଟ ନିକଟରେ ରହୁଥିବା ଜଣେ ସାଧାରଣ କଂଗ୍ରେସ କର୍ମୀଙ୍କର ପତ୍ନୀ ଶାନ୍ତିଲତାକୁ ଗର୍ଭାବସ୍ଥାରେ କେତେକ ଲୋକ ପାଶବିକ ଅତ୍ୟାଚାର କରିବା ହେତୁ ତାର ମୃତ୍ୟୁ ଘଟିଥିଲା ଓ ଘଟଣାକୁ ଲୁଚାଇବା ପାଇଁ ମୃତ ଶରୀରକୁ ଘରର କୂଅରେ ପକାଇ ଦିଆଯାଇଥିଲା । କଟକର କେତେକ ନାମକରା ପରିବାରର ପିଲାମାନେ ଏହି କେସରେ ମୁଦାଲା ଥିଲେ । ଏହି କେସ୍‌ରେ ମୋର ସୁଆଲ୍ ଜବାବ୍ 'ସମାଜ' ଓ 'ପ୍ରଜାତନ୍ତ୍ର'ରେ ଦୁଇ ତିନି କଲମ ହେଡ଼ିଂରେ ନିୟମିତ ରୂପେ ପ୍ରକାଶିତ ହେଉଥିଲା । ଏହି କେସ୍ ଜନସାଧାରଣଙ୍କ ମନରେ ଏପରି ବିଦ୍ୱେଷ ସୃଷ୍ଟି କରିଥିଲା ଯେ ଘଟଣା ସଂପର୍କରେ ଦଶ ପଇସା ମୂଲ୍ୟର ଗୀତ ବହିମାନ ଲେଖାହୋଇ ସହର ବଜାର ଓ ଗାଁ ଗହଳର ମେଳା ଓ ହାଟରେ ମଧ୍ୟ ବିକ୍ରି ହେଉଥିଲା । ଦିନେ ସାଢ଼େ ଦଶଟା ବେଳେ ହାଇକୋର୍ଟ ଯାଉଛି, ନୟାସଡ଼କ ଓସ୍ତଗଛ ଛକରେ ଦେଖିଲି, ଦୁଇ ଜଣ ଲୋକ ହାରମୋନିୟମ ବଜାଇ ଗୀତ ବୋଲି ବହି ବିକ୍ରି କରୁଛନ୍ତି । ଲୋକ ଭିଡ଼ ହେତୁ ଓସ୍ତ ଗଛ ପାଖରେ ଗାଡ଼ି ମନ୍ଥର ହେଲା ଓ ଗାୟକମାନଙ୍କ କଂଠରେ ମୋ ନାମଟା ଦୁଇ ତିନିଥର

କାନରେ ପଡ଼ିଲା । ଟିକେ ଦୂରରେ ଗାଡ଼ି ରହିଲା ଓ ଡ୍ରାଇଭର ଦଶ ପଇସା ଦେଇ ଖଣ୍ଡେ ଗୀତ ବହି କିଣି ଆଣିଲା । ବହିର ନାମ ଥିଲା "ଶାନ୍ତି ଲତା ହତ୍ୟା ରହସ୍ୟ ।" ଗୀତ ମଝିରେ ମୋ ସଂପର୍କରେ ଲେଖାଥିବା ଦୁଇ ତିନୋଟି ଧାଡ଼ି ଏବେ ମଧ୍ୟ ମନରେ ରହିଛି ।

"ଓକିଲ ଗଂଗାଧର
ପ୍ରତାପୀ ମହାବୀର
ଲଢ଼ିଲେ ଖରତର
ପେଷି ଅମୋଘ ଶର".. ଇତ୍ୟାଦି

ଏ ସବୁ ପରିପ୍ରଚାର ମୋ ମନରେ ଗୋଟିଏ ପ୍ରକାରର ପ୍ରତିକୂଳ ପ୍ରତିକ୍ରିୟା ସୃଷ୍ଟି କଲା । ଯଦିଚ ମୁଁ ହାଇକୋର୍ଟରେ ସବୁ ପ୍ରକାରର କେସ୍ କରୁଥିଲି, ମୋର ଧାରଣା ହେଲା ସମ୍ବାଦ ପତ୍ରରେ ଏହି ପରିପ୍ରଚାର ହେତୁ ଲୋକ ଚକ୍ଷୁରେ ଜଣେ କ୍ରିମିନାଲ୍ ଲୟର ଭାବରେ ମୋର ପରିଚିତି ସ୍ଥାୟୀ ହୋଇଯିବ । ଜଷ୍ଟିସ୍ ସୌରୀପ୍ରସାଦ ମହାପାତ୍ର ସେତେବେଳେ ଇହଧାମରେ ନଥିଲେ । ଅବସର ନେବାର ଚାରିଦିନ ପରେ ତାଙ୍କର ଅକାଳ ବିୟୋଗ ଘଟିଥିଲା । କିନ୍ତୁ ତାଙ୍କର ଶେଷ କଥା ଓ ଶୁଭକାମନା ସବୁବେଳେ ମନରେ ଉଙ୍କି ମାରୁଥାଏ । ମୁଁ କାହାକୁ କିଛି ନ କହି କ୍ରମିନାଲ୍ କେସ୍‌ରେ ଏ ପ୍ରକାରର ସ୍ୱତନ୍ତ୍ର ନିଯୁକ୍ତିକୁ ଆଉ ଗ୍ରହଣ କଲି ନାହିଁ । ଯଥା ସଂଭବ ମୋର ବୃତ୍ତି ହାଇକୋର୍ଟରେ ଆବଦ୍ଧ ରଖିବାକୁ ବଦ୍ଧପରିକର ହେଲି ।



# କର୍ତ୍ତା ଓ ପରିବାର

ମଣିଷ ଏକ ସାମାଜିକ ଜୀବ । ବଂଧୁ ବାନ୍ଧବ ସାଂଗ ସାଥୀମାନଙ୍କଠାରୁ ବିଚ୍ଛିନ୍ନ ହୋଇ କେହି ସୁଖୀ ହୋଇ ପାରେ ନାହିଁ । ନିର୍ଜନତା ସାମୟିକ ଭାବରେ ଶାନ୍ତି ଦେଇପାରେ; କିନ୍ତୁ ଶେଷ ପର୍ଯ୍ୟାୟରେ ନିର୍ଜନତା ଏକ ଚରମ ଶାସ୍ତି । ସେଥିପାଇଁ ନିଜର ବୃତ୍ତି ନୌକରୀ ବା ବ୍ୟବସାୟର ପରିସର ବାହାରେ କୌଣସି ନୂଆ ଖିଆଲ, ସଉକ୍ ବା ହବି ନଥିଲେ, ଜୀବନ ଦୁର୍ବହ ହୋଇ ପଡ଼େ । ଦୈନନ୍ଦିନ କାର୍ଯ୍ୟରୁ ନିଷ୍କୃତି ନେଇ ଅବସର ବିନୋଦନ ପାଇଁ ଅନେକେ ନିଜ ନିଜର ରୁଚି ଓ ଶକ୍ତି ଅନୁଯାୟୀ ଏକ ବା ଏକାଧିକ ସଉକ୍ ବାଛି ନିଅନ୍ତି । କିଏ ଲେଖାଲେଖିରେ, କିଏ ସଂଗୀତ ଚର୍ଚ୍ଚାରେ, କିଏ ଧର୍ମାଲୋଚନାରେ, କିଏ କ୍ଲବରେ ବଂଧୁ ମେଳରେ ଖୁସି ଗପରେ ବା ମଉଜ ମଜଲିସ୍ କରିବାରେ ସମୟ ଅତିବାହିତ କରନ୍ତି । ଅଧିକ ଗଂଭୀର ପ୍ରକୃତିର ଆଦର୍ଶବାଦୀମାନେ ରାଜନୈତିକ ବା ସାମାଜିକ କାର୍ଯ୍ୟକଳାପରେ ନିମଜ୍ଜିତ ରହନ୍ତି । କିନ୍ତୁ ଓକିଲାତି ଏପରି ଏକ ନିଷ୍ଠୁର ବୃତ୍ତି ଯେଉଁଥିରେ କି ଅନ୍ୟ କୌଣସି ହବି, ସଉକ୍ ବା ଚିତ୍ତ ବିନୋଦନ ପ୍ରକ୍ରିୟାରେ ଭାଗ ନେବା ପାଇଁ ସୁଯୋଗ ମିଳେ ନାହିଁ । ସକାଳେ ସଂଧ୍ୟାରେ ଅଫିସ୍ ଘରେ ମହକିଲଙ୍କ ସହ ଆଲୋଚନା ଓ ପରାମର୍ଶ ଏବଂ ପରଦିନ ପାଇଁ କେସ୍ ପ୍ରସ୍ତୁତିରେ ସମୟ ଚାଲିଯାଏ । ଦିନ ତମାମ୍ କଟେ କଚେରୀର କୋଳାହଳ ମଧ୍ୟରେ । ଆଇନ ସେବାରେ ଦିନ ଗଡ଼ିଯାଏ । ସେଥିପାଇଁ ଇଂରେଜୀରେ କହନ୍ତି "ଲ ଇଜ୍ ଏ ଯିଯଲସ୍ ମିଷ୍ଟ୍ରେସ୍" ଅର୍ଥାତ୍ ଆଇନ୍ ଏକ ଅସହିଷ୍ଣୁ ପରଶ୍ରୀକାତର ପ୍ରଣୟିନୀ । ପଂଚଦେଶକର ଅଧିବକ୍ତାମାନଙ୍କ ମଧ୍ୟରେ ହରିହର ମହାପାତ୍ର, ଦୀନବଂଧୁ ସାହୁ, ବିଶ୍ୱନାଥ ପଶାୟତ ଓ କେତେକାଂଶରେ ଲଳିତ କୁମାର ଦାସଗୁପ୍ତଙ୍କ ବ୍ୟତୀତ ଅନ୍ୟମାନେ କ୍ୱଚିତ୍ ଆପଣାର ବୃତ୍ତି ବାହାରେ ସମୟ ବିନିଯୋଗ କରୁଥିଲେ ।

ଧୀରେ ଧୀରେ ମୁଁ ମଧ୍ୟ ଏହି ଗତାନୁଗତିକ ଢାଂଚାରେ ପଡ଼ିଗଲି । ଘର ଓ ହାଇକୋର୍ଟ ବାହାରେ ମୋର ସାମାଜିକ କାର୍ଯ୍ୟକଳାପ କ୍ରମେ ସଂକୁଚିତ ହୋଇଗଲା । ଏହି ସମୟରେ ମୁଁ ଶାନ୍ତି କମିଟିର ସଂପାଦକ ଥିଲି । ଯୁଦ୍ଧ ପରବର୍ତ୍ତୀ କାଳର ସଂକଟ ସମୟରେ ମଧ୍ୟ ମୁଁ ଶାନ୍ତି ଆନ୍ଦୋଳନ ପ୍ରତି ବିଶେଷ ଧ୍ୟାନ ଦେଇ ନଥିଲି । ୧୯୬୦ ମସିହାରେ ସର୍ବାଧିକ ଭୋଟରେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍‌କୁ ନିର୍ବାଚିତ ହୋଇଥିଲି । ସିନେଟ୍‌ର ସାଧାରଣ

ବୈଠକରେ ଯୋଗ ଦେଇ ବକ୍ତୃତା ଦେବା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ କରିବାକୁ ମୋର ସମୟ ନଥିଲା । ସବୁବେଳେ କେବଳ ଗୋଟିଏ ଚିନ୍ତା । ବିଳମ୍ବରେ ଆଇନ ବୃତ୍ତିରେ ପ୍ରବେଶ କରିଥିଲେ ମଧ୍ୟ, ସେଠି ଯେପରି ସମସ୍ତଙ୍କ ଠାରୁ ଆଗରେ ରହିବି । ଅନ୍ୟଥା କୌଣସି କ୍ଲବରେ ବା ନୂଆ ବଂଧୁମେଳରେ ସମୟ କାଟିବାକୁ ମୋର ମନୋବୃତ୍ତି ବା ଆଗ୍ରହ ମଧ୍ୟ ନଥାଏ ।

ଭାଗ୍ୟ ଭଲ, ମୋର କେତେଜଣ ପୁରାତନ ରାଜନୈତିକ ସାଥୀ ଏହି ସମୟରେ ଓକିଲାତି କରୁଥାନ୍ତି । ବରିଷ୍ଠ ସାଥୀ ବିଶ୍ୱନାଥ ପଶାୟତଙ୍କ ସହ ପରିଚୟ ୧୯୩୭ ମସିହାରୁ । ସେତେବେଳେ ସେ ନିଖିଳ ଉତ୍କଳ ଛାତ୍ର ସଂଘର ଯୁଗ୍ମ ସଂପାଦକ । ଆଇନ ପାସ୍ କରି ଦୁଇ ତିନ ବର୍ଷ ଗାଁରେ ବସି ରହିବା ପରେ ସେ ଆଇନ ବୃତ୍ତିରେ ଯୋଗ ଦେଲେ । ପ୍ରଥମେ ଚିନ୍ତାମଣି ଆଚାର୍ଯଙ୍କ ସହକାରୀ ଭାବରେ, ପରେ ସ୍ୱାଧୀନ ଭାବରେ କାର୍ଯ୍ୟ କରି ସେ ବେଶ୍ ସୁନାମ ଅର୍ଜନ କରିଥିଲେ । ତଳ କୋର୍ଟରୁ ଆରମ୍ଭ କରି ହାଇକୋର୍ଟ ପର୍ଯ୍ୟନ୍ତ ତାଙ୍କର ସବୁଆଡ଼େ କେସ୍ ଥାଏ । ରାମଚନ୍ଦ୍ର ରାମ ଶ୍ରମିକ ଆନ୍ଦୋଳନ ସହ ଆଇନ ବ୍ୟବସାୟ ମଧ୍ୟ କରୁଥାନ୍ତି । ବିପିନ ବିହାରୀ ମହାନ୍ତି, ଅଦ୍ୱୈତ ପ୍ରସାଦ ମହାନ୍ତି ଓ ଦୟାନିଧି ସିଂ ମଧ୍ୟ ବାରରେ ଯୋଗ ଦେଇଥାନ୍ତି । ସୀତାକାନ୍ତ ପଟ୍ଟନାୟକ ସରକାରୀ ଚାକିରୀରୁ ଇସ୍ତଫା ଦେଇ ଆଇନ ବ୍ୟବସାୟ ଆରମ୍ଭ କରୁଥାନ୍ତି । ପ୍ରାରମ୍ଭ ଅବସ୍ଥାରେ ଏଇମାନଙ୍କ ମେଳରେ ମୋର ସମୟ କଟିଯାଏ । ସ୍ମରଣ ଅଛି, ପ୍ରଥମ ବର୍ଷ ଖରାବେଳର ବିଶ୍ରାନ୍ତି ସମୟଟା ଆମ୍ଭେମାନେ ଗୋଟିଏ ଟେବୁଲରେ ବସି ଗପସପ କରୁ ଓ ଚା' ପାନ କରୁ । କ୍ରମେ ଆମେମାନେ ଗୋଟିଏ ପରିବାର ଭୁକ୍ତ ହେଲୁ । ମୋର ସହପାଠୀ ରାମଚନ୍ଦ୍ର ଓ ଲୋକନାଥ ମହାପାତ୍ର (ପରେ ଆଇନ-ବିଭାଗର ସେକ୍ରେଟାରୀ) ଆଡ୍‌ଭୋକେଟ୍ ସଦାଶିବ ମିଶ୍ରଙ୍କର ଜୁନିଅର୍ ଥିଲେ । ସଦାଶିବ ବାବୁ ଥିଲେ ଏହି ପରିବାରର 'କର୍ତ୍ତା' ।

ଆଡ୍‌ଭୋକେଟ୍ ତାଲିକାଭୁକ୍ତ, ହେବା ପରେ ଅବଶ୍ୟ ମୋର ଡେରା ସିଭିଲକୋର୍ଟ ବାର୍ ଆସୋସିଏସନ୍‌ରୁ ହାଇକୋର୍ଟ ବାର ଆସୋସିଏସନ୍‌କୁ ଘୁଂଚିଲା । ଏଠି ମଧ୍ୟ ପୂର୍ବ ପରିଚିତ ଅନେକ ବଂଧୁଙ୍କ ସାନ୍ନିଧ୍ୟ ମିଳିଲା । ରଙ୍ଗନାଥ ମିଶ୍ର, ରମାକାନ୍ତ ମହାପାତ୍ର, ଯୁଗଳ କିଶୋର ମହାନ୍ତି ଓ ଶୋଭେଶ ଚନ୍ଦ୍ର ରାୟ ପ୍ରମୁଖ ମୋଠାରୁ ବୟସରେ ଅନେକ ସାନ ହେଲେ ମଧ୍ୟ, ମୋ

ଆଗରୁ ବାର୍‌ରେ ଯୋଗ ଦେଇଥିଲେ । କିଛି ବର୍ଷ ପରେ ରାଧାଚରଣ ପଟ୍ଟନାୟକ, ଶରତ ଚନ୍ଦ୍ର ମହାପାତ୍ର, ଲିଙ୍ଗରାଜ ରଥ ଓ ତା'ପରେ ଗୋପାଳ ବଲ୍ଲଭ ପଟ୍ଟନାୟକ ଓ ଦେବପ୍ରିୟ ମହାପାତ୍ର ପ୍ରମୁଖ ବାର୍‌ରେ ଯୋଗ ଦେଲେ । ଏମାନଙ୍କ ମଧ୍ୟରୁ ଅନେକେ କାଳକ୍ରମେ ବହୁ ଉଚ୍ଚ ପଦ ମର୍ଯ୍ୟାଦା ଲାଭ କରିଛନ୍ତି । ରଙ୍ଗନାଥ ମିଶ୍ର ଭାରତର ପ୍ରଧାନ ବିଚାରପତି ଭାବରେ ନିକଟରେ ଅବସର ଗ୍ରହଣ କରିଛନ୍ତି । ଗୋପାଳ, ଦେବ, ଶରତ ଓ ଲିଙ୍ଗରାଜ ବର୍ତ୍ତମାନ ହାଇକୋର୍ଟର ମାନ୍ୟବର ବିଚାରପତି । ଯୁଗଳ ସିକିମ୍ ହାଇକୋର୍ଟର ପ୍ରଧାନ ବିଚାରପତି ପଦରୁ ଅବସର ନେଇଛନ୍ତି । '୭୨ ମସିହାରୁ '୯୦ ମସିହା ମଧ୍ୟରେ ମୁଁ ଦୀର୍ଘ ତେର ବର୍ଷ ଆଡ୍‌ଭୋକେଟ୍ ଜେନେରାଲ ରହିବା ପରେ ଶୋଭେଶ ବର୍ତ୍ତମାନ ଆଡ୍‌ଭୋକେଟ ଜେନେରାଲ ଅଛନ୍ତି । ଏମାନଙ୍କ ସହ ବାର ଆସୋସିଏସନ୍‌ରେ ଶ୍ରଦ୍ଧା ଓ ବନ୍ଧୁତ୍ୱର ଯେଉଁ ଅଭେଦ୍ୟ ସଂପର୍କ ଗଢ଼ି ଉଠିଥିଲା ତାହା ଏବେ ମଧ୍ୟ ଅତୁଟ ରହିଛି । କିନ୍ତୁ ମୋର କାର୍ଯ୍ୟାବଳୀ କାଳକ୍ରମେ ହାଇକୋର୍ଟରେ ଆବଦ୍ଧ ରହିଥିଲେ ମଧ୍ୟ 'ପରିବାର' ସହ ସଂପର୍କ ଅକ୍ଷୁନ୍ନ ରହିଥିଲା ।

'ପରିବାର'ର କର୍ତ୍ତା ସ୍ୱର୍ଗୀୟ ସଦାଶିବ ମିଶ୍ର ଥିଲେ ଅତି ସ୍ନେହୀ ଓ ମିଳାପୀ ଲୋକ । ଦେଓ୍ୱାନୀ ଆଇନରେ ସେ ଥିଲେ ଧୂରୀଣ । ସିଭିଲ୍ କୋର୍ଟରେ ତାଙ୍କର ଅପର୍ଯ୍ୟାପ୍ତ କେସ୍ ଥିଲା । ତାଙ୍କ ତେଲେଙ୍ଗା ବଜାର ଘରେ ମହକିଲ ମାନଙ୍କର ଏତେ ଭିଡ଼ ହୁଏ ଯେ, ଅନେକ ସମୟରେ ଅଫିସ୍ ଘରକୁ ମଧ୍ୟ ଯାଇହୁଏ ନାହିଁ । ସଦାଶିବ ବାବୁ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର ସମସାମୟିକ ଓ ସହପାଠୀ । ଓକିଲାତି ବୃତ୍ତିରେ ଦୀର୍ଘ ଦିନ ବ୍ୟସ୍ତ ରହି ସେ ବୋଧହୁଏ, କର୍ମକ୍ଲାନ୍ତ ହୋଇ ଆସୁଥିଲେ ଓ ଆମ୍ଭମାନଙ୍କ ସହିତ ସମୟ କଟାଇ ଆନନ୍ଦ ଉପଭୋଗ କରୁଥିଲେ । କର୍ତ୍ତାଙ୍କ ଗହଣରେ କର୍ମ ଜଂଜାଳରୁ ନିଷ୍କୃତି ପାଇଁ ଆମେ ଓଡ଼ିଶାର ବହୁ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିଛୁ । ପୁରୀ, କୋଣାର୍କ, ଭୁବନେଶ୍ୱରର ସ୍ୱର୍ଣ୍ଣ ତ୍ରିଭୁଜ ମଧ୍ୟରେ ଏପରି କୌଣସି ଦର୍ଶନୀୟ ସ୍ଥାନ ନାହିଁ ଯେଉଁଠି ପରିବାରର ସଦସ୍ୟମାନେ ଅନ୍ତତଃ ଗୋଟିଏ ରାତ୍ରି ଅତିବାହିତ ନ କରିଛନ୍ତି । ପ୍ରତିବର୍ଷ ଅନ୍ତତଃ ଥରେ ଦୁଇଥର ଆମ୍ଭେମାନେ କଟକ ଛାଡ଼ି ବାହାରକୁ ବୁଲିଯାଉ । ମୁଖ୍ୟ ତୀର୍ଥସ୍ଥାନ ଓ ଅତି ପରିଚିତ ପର୍ଯ୍ୟଟନ କେନ୍ଦ୍ର ସମେତ ବହୁ ନିକାଂଚନ ଜଙ୍ଗଲ ଅଥଚ ମନୋରମ ସ୍ଥାନରେ ଆମ୍ଭେମାନେ

ବଣଭୋଜୀ କରିଛୁ । ସ୍ଥାନ ନିରୂପଣ ଓ ଅନ୍ୟାନ୍ୟ ଆନୁସଂଗିକ ବ୍ୟବସ୍ଥା କରିବାରେ ସଦାଶିବ ବାବୁଙ୍କ ବଡ଼ ପୁଅ ଆଡ୍‌ଭୋକେଟ୍ ପୂର୍ଣ୍ଣଚନ୍ଦ୍ର ମିଶ୍ର (ବର୍ତ୍ତମାନ ମାନ୍ୟବର ବିଚାରପତି ପି.ସି.ମିଶ୍ର) ଓ ଦୟାନିଧି ସିଂ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । କିଛି ଦିନ ପରେ ବିଜୟ କୃଷ୍ଣ ମହାନ୍ତି ଓ ଅରୁଣ କୁମାର ମିତ୍ର ମଧ୍ୟ ପରିବାରରେ ଯୋଗ ଦେଲେ । ରାଧାନାଥ ମହାନ୍ତି ଥିଲେ ସାନ ବଡ଼ ସମସ୍ତଙ୍କର ପ୍ରିୟ ପାତ୍ର । ରାଧାନାଥଙ୍କୁ ନେଇ ପରିହାସ କରିବାରେ ବହୁ ସମୟ କଟିଯାଉଥିଲା । ଦିନେ ଦିନେ ସବୁ ଆଲୋଚନାର ବିଷୟବସ୍ତୁ ଥିଲେ ରାଧାନାଥ । ଦୟାନିଧି ସିଂହଙ୍କର ରସରସିଆ ମଉଜିଆ ଗପ ସମସ୍ତଙ୍କୁ ମୁଗ୍ଧ କରି ରଖୁଥିଲା । କର୍ତ୍ତା ତାଙ୍କଠାରୁ ଅନେକ ସାନ ଆମ୍ଭମାନଙ୍କ ସହ ସିଧା ସଳଖ ଥଟ୍ଟା ପରିହାସ ନ କଲେ ମଧ୍ୟ, ଅଳ୍ପ ହସି ପରୋକ୍ଷରେ ମଉଜ ମଜଲିସ କରିବା ପାଇଁ ଆମ୍ଭମାନଙ୍କୁ ଆନ୍ତରିକ ଇସାରା ଦେଉଥିଲେ ।

ଦିନକର ଅନୁଭୂତି ସ୍ପଷ୍ଟ ମନେ ଅଛି । ଥରେ ଆମ୍ଭେମାନେ ପଟିଆ ଜଙ୍ଗଲ ମଧ୍ୟରେ ଗୋଟିଏ ସ୍ଥାନରେ ବଣଭୋଜୀ କରିବାକୁ ସ୍ଥିର କଲୁ । ବିଶ୍ୱନାଥ ବାବୁଙ୍କ ମୋହରୀର ବନମାଳୀ ଜେନା ସବୁ ଆୟୋଜନର ଦାୟିତ୍ୱ ନେଲେ । ବନମାଳୀ ମଣିଷ ମଧ୍ୟରେ ହୀରା । କଟକରେ ସେ ମୋହରୀର କରନ୍ତି, ଫୁରସତ୍ ସମୟରେ ଚାଷୀ ଆନ୍ଦୋଳନ ଓ ଅନ୍ୟାନ୍ୟ ଜନ ହିତକର କାର୍ଯ୍ୟରେ ଭାଗ ନିଅନ୍ତି । ତାଙ୍କ ପରି ସଚ୍ଚୋଟ ଲୋକ ବିରଳ । ଦିନେ ଶୀତ ଦିନ ସକାଳ ନ'ଟା ସମୟରେ ଆମ୍ଭେମାନେ ଲୋକାଲ୍ ଟ୍ରେନ୍‌ରେ ଯାଇ ବାରଙ୍ଗ ଷ୍ଟେସନ୍‌ରେ ଓହ୍ଲାଇଲୁ । ଖୋଦ୍ କର୍ତ୍ତା, ବିଶ୍ୱନାଥ ବାବୁ, ରାଜେନ୍ଦ୍ର ମହାନ୍ତି, ରାମଚନ୍ଦ୍ର ରାମ, ଲୋକନାଥ ମହାପାତ୍ର, ଦୟାନିଧି ସିଂ, ଅଦ୍ୱୈତ ମହାନ୍ତି, ସୁଦାମ ଚରଣ ସାହୁ, ଗୋବିନ୍ଦ ଚନ୍ଦ୍ର ସାହୁ, ବ୍ରଜବନ୍ଧୁ ବିଶ୍ୱାଳ, ବିପିନ ବିହାରୀ ମହାନ୍ତି ଓ ଶ୍ରୀନିବାସ ମିଶ୍ର ପ୍ରମୁଖ ପ୍ରାୟ ଷୋଳ ସତର ଜଣ । ବାରଙ୍ଗ ଷ୍ଟେସନରୁ ବୁଦୁବୁଦିଆ ଜଂଗଲ ଦେଇ ପ୍ରାୟ ଦୁଇ କିଲୋମିଟର ଯିବା ପରେ ଚୂଡ଼ଙ୍ଗଗଡ଼ର ଭଗ୍ନାବଶେଷ ଓ ତା' ପାଖରେ ଏକ ବିରାଟ ପଦ୍ମ ଫୁଲ ପୋଖରୀ । ଫୁଲ ଓ ପତ୍ରରେ ପୋଖରୀଟି ଯେପରି କିଏ ସଜାଇ ରଖିଛି । ସକାଳ ସୂର୍ଯ୍ୟ କିରଣରେ ଉଦ୍‌ଭାସିତ ପଦ୍ମପତ୍ର ଉପରେ ଅଜସ୍ର ଜଳବିନ୍ଦୁ- ଯେପରି ସମୁଦ୍ର ଗର୍ଭରୁ ଉଦ୍ଧାର କରି ସହସ୍ର ଉଜ୍ଜ୍ୱଳ ମୋତି କିଏ ପଦ୍ମ ପତ୍ର ଉପରେ ବିଛାଇ ଦେଇଛି । ମଝିରେ ମଝିରେ ସହାସ୍ୟ

ବଦନରେ ମଥା ଟେକିଛନ୍ତି ଅସଂଖ୍ୟ ପଦ୍ମଫୁଲ-କିଏ ଅର୍ଦ୍ଧ ପ୍ରସ୍ଫୁଟିତ, କିଏ ସଂପୂର୍ଣ୍ଣ ପ୍ରକଟିତ । କି ଅପୂର୍ବ ଶୋଭା ! ମନେ ପଡ଼ିଲା ମୋର ସମ୍ବନ୍ଧି ଡାକ୍ତର ପାର୍ଥ ରାଓଙ୍କ ପିତାମହ ଭକ୍ତ କବି ମଧୁସୂଦନଙ୍କର 'ପଦ୍ମ' କବିତାର କେତୋଟି ପଂକ୍ତି :

''କୋଟି ଲାବଣ୍ୟନିଧି ରେ ପଦ୍ମ ତୁହି,
କି ଅମୃତେ ତୋ ତନୁ ଗଢ଼ିଲା ବିହି ?
ତୋ ରୂପ ଦରଶନେ ମୋର ହୃଦୟ
ପୂର୍ଣ୍ଣ ଆନନ୍ଦେ ହୁଏ ଅମୃତମୟ

ଢଳ ଢଳ ସୁନୀଳ ସରସୀ ଜଳ
ଢଳ ଢଳ ଶ୍ୟାମଳ ନଳିନୀ ଦଳ
ଢଳ ଢଳ ଭାସ୍କର ରଶ୍ମି ଉଜ୍ଜ୍ୱଳ
ତା ମଧ୍ୟେ ଢଳ ଢଳ ତୁହି କମଳ ।''.. ଇତ୍ୟାଦି ।

ପୋଖରୀର ଅନତି ଦୂରରେ ଜଙ୍ଗଲ । ଜଣେ ମୁସଲମାନ ଭଦ୍ରଲୋକ ଏ ଜାଗାଟିକୁ ଲିଜ୍ ନେଇ ପୋଖରୀ ଦ୍ବାର ଗୋଟିଏ ପାଖରେ କଦଳୀ ବଗିଚା ଓ କୁକୁଡ଼ା ଫାର୍ମ କରିଥାନ୍ତି । ସୁଦୀର୍ଘ ପୁଷ୍କରିଣୀର ଅନ୍ୟ ଗୋଟିଏ କୋଣରେ ଗୋଟିଏ ବିରାଟ ବରଗଛ । ବରଗଛ ମୂଳରେ ଦୁଇଟା ବଡ଼ ସତରଂଚି ବିଛାଇ ଆମ୍ଭେମାନେ ବିଶ୍ରାମ ନେଲୁ । ହେଳାରେ ହେଳାରେ ଜଳଖିଆ ଖାଉ ଖାଉ ଦିନ ବାରଟା । ଦିନ ଚାରିଟା ପର୍ଯ୍ୟନ୍ତ ରୋଷାଇବାସ ସରି ନଥାଏ । ଜଣେ ସ୍ଥାନୀୟ ଲୋକ କହିଲେ, ଏଠି ବାଘ ଭୟ, ସଂଧ୍ୟା ପୂର୍ବରୁ ଏ ସ୍ଥାନ ଛାଡ଼ିବା ଦରକାର । ଦୂରରୁ ଦେଖିଲୁ ଜଣେ କାଠ କଟାଳୀ ଗୋଛାଏ ଜାଳେଣି କାଠ ବିଡ଼ା ମୁଣ୍ଡରେ ବୋହି ତର ତର ହୋଇ ଚାଲିଛି । ସେ କହିଲା, ବାଘ ବାସନା ବାରି ସେ ଦିନ ଥାଉଁ ଥାଉଁ ଘରକୁ ଫେରି ଯାଉଚି । ବନମାଳୀ ତୁରନ୍ତ ଯାଇ ପାଖ ଗାଁ'ରୁ ଦୁଇ ଜଣ ବାଣୁଆ ଡାକି ଆଣିଲେ । ଖିଆ ପିଆ ସରିଲା ବେଳକୁ ପ୍ରାୟ ପାଂଚଟା । ଶୀତଦିନିଆ ପାହାଡ଼ୀ ସଂଧ୍ୟା କ୍ଷିପ୍ର ଗତିରେ ମାଡ଼ି ଆସୁଥାଏ । ଜଣେ ଦୋନଳୀ ବଂଧୁକଧାରୀ ବାଣୁଆ ଆଗରେ ଓ ଆଉ ଜଣେ ପଛରେ- ମଝିରେ ଆମ୍ଭେମାନେ । ସଂଧ୍ୟା ସାତଟା ସୁଧା ବାଣୁଆମାନେ ଆମକୁ ବାରଂଗ ଷ୍ଟେସନ୍‌ରେ ଛାଡ଼ି ଦେଇଗଲେ ।

ସେ ଦିନ ସଂଧ୍ୟାରେ ବାଘର କୌଣସି ସୁରାକ୍ ଆମେ ପାଇ ନଥିଲୁ । କିନ୍ତୁ କିଛି ଦିନ ପରେ ଖବର କାଗଜରେ ପଢ଼ିଲୁ ନନ୍ଦନ କାନନରେ ଆବଦ୍ଧ ବାଘୁଣୀର ହେଣ୍ଟାଳ (ପ୍ରେମ ନିବେଦନ) ଶୁଣି ଚନ୍ଦକା ଜଙ୍ଗଲରୁ ଗୋଟିଏ ମହାବଳ ବାଘ ନନ୍ଦନ-କାନନର ବାଡ଼ ଭାଂଗି ବ୍ୟାଘ୍ର ସଫାରୀ ମଧ୍ୟକୁ ଲଂଫ ପ୍ରଦାନ କରିଛି ଓ ଚିରଦିନ ପାଇଁ ମଣିଷର ଦାସତ୍ୱ ସ୍ୱୀକାର କରିଛି ।

୧୯୬୪ ମସିହା ଡିସେମ୍ବର ୨୭ ତାରଖରେ ବିଶ୍ୱନାଥ ପଶାୟାତଙ୍କର ଅକାଳ ବିୟୋଗ ଘଟିଲା । ଏକ ଅମ୍ଳାନ ପ୍ରତିଭା ମାତ୍ର ୫୩ ବର୍ଷ ବୟସରେ ଚିରଦିନ ପାଇଁ ମଉଳିଗଲା । ଜଣେ ବାମପନ୍ଥୀ ପ୍ରଗତିଶୀଳ ଚିନ୍ତାଧାରାର ପ୍ରତୀକ ସ୍ତ୍ରୀ, ପୁତ୍ର (ଜଷ୍ଟିସ୍ ଅରିଜିତ୍ ପଶାୟତ) ଏବଂ ଅସଂଖ୍ୟ ବଂଧୁ ବାନ୍ଧବ ଓ ସାଥୀ ସହଯାତ୍ରୀଙ୍କଠାରୁ ଅସମୟରେ ବିଦାୟ ନେଲେ । ପରିବାରର କାର୍ଯ୍ୟାକଳାପ କ୍ରମେ ଶିଥିଳ ହୋଇଗଲା । ସଦାଶିବ ବାବୁ ମଧ୍ୟ ସତୁରି ବର୍ଷ ବୟସରେ ଓକିଲାତିରୁ ଅବସର ନେଲେ । ବଡ଼ ପୁଅ ପୂର୍ଣ୍ଣଚନ୍ଦ୍ର (ଜଷ୍ଟିସ୍ ପୂର୍ଣ୍ଣଚନ୍ଦ୍ର ମିଶ୍ର) ସିରସ୍ତାର ସମସ୍ତ ଦାୟିତ୍ୱ ଆବୋରି ନେଇଥିଲେ । ଶରୀର ସଂପୂର୍ଣ୍ଣ ଅଚଳ ହୋଇ ନଥିଲେ ଆଇନ ବୃତ୍ତିରୁ ଅବସର ନେବା ଆଇନୀଜୀବିଙ୍କ ସଂଖ୍ୟା ବିରଳ । ନବେ ବର୍ଷ ବୟସରେ ମଧ୍ୟ ବର୍ତ୍ତମାନ କେତେକ ଅଧିବକ୍ତା ନିୟମିତ କଚେରୀକୁ ଆସୁଛନ୍ତି । ସଦାଶିବ ବାବୁ ବୋଧହୁଏ କଟକର ପ୍ରଥମ ଆଡ଼୍ଭୋକେଟ୍ ଯେ ଶରୀର ସୁସ୍ଥ ଥିଲେ ମଧ୍ୟ ସ୍ୱଇଚ୍ଛାରେ ବୃତ୍ତିରୁ ଅବସର ନେବାକୁ ନିଷ୍ପତ୍ତି ନେଇଥିଲେ । ୧୯୯୧ ମସିହା ସେପ୍ଟେମ୍ବର ମାସରେ ପ୍ରାୟ ନବେ ବର୍ଷ ବୟସରେ ତାଙ୍କର ମହାପ୍ରୟାଣ ଘଟିଲା । ଆମେ ପରିବାରର ସଦସ୍ୟମାନେ ଅଶ୍ରୁସିକ୍ତ ନୟନରେ କର୍ତ୍ତାଙ୍କଠାରୁ ବିଦାୟ ନେଲୁ ।

କର୍ତ୍ତାଙ୍କ ଅନ୍ତେ ପରିବାରର ଆଉ ଦୁଇ ଜଣ ପ୍ରବୀଣ ସଦସ୍ୟ ସୀତାକାନ୍ତ ପଟ୍ଟନାୟକ ଓ ରାମଚନ୍ଦ୍ର ରାମ ନିକଟରେ ଇହଧାମରୁ ବିଦାୟ ନେଇଛନ୍ତି । ପରିବାର ବର୍ତ୍ତମାନ ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ।



# ପରିବର୍ତ୍ତନର ପ୍ରବାହ

୧୯୬୧ ମସିହାର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ପରେ ବିଜୟାନନ୍ଦ ପଟ୍ଟନାୟକଙ୍କ ମନ୍ତ୍ରୀ ପରିଷଦର ମହାଧିବକ୍ତା ବା ଆଡ଼ଭୋକେଟ୍ ଜେନେରାଲ ଥିଲେ ଦୀନବଂଧୁ ସାହୁ । ସେ ଆକୃତିରେ ଛୋଟ, ଉଚ୍ଚତା ପାଂଚ ଫୁଟରୁ କମ୍, କିନ୍ତୁ ବୁଦ୍ଧି ବିଚକ୍ଷଣ । ବିଦ୍ୟା ଓ ବୁଦ୍ଧି ମଧ୍ୟରେ ଯଦି ତୁଳନାତ୍ମକ ବିଚାର କରାଯାଏ, ତେବେ ଦୀନବଂଧୁ ସାହୁଙ୍କ କ୍ଷେତ୍ରରେ ବିଦ୍ୟା ହାର ମାନିଯିବ । ସେ ଥିଲେ ମୁଖ୍ୟତଃ ଜଣେ କ୍ରିମିନାଲ ଲୟର, ସେସନ୍ସ କେସ୍ ପରିଚାଳନାରେ ଅତି ଧୁରନ୍ଧର । କିନ୍ତୁ ସମ୍ବିଧାନ ଓ ସିଭିଲ୍ ଲ'ରେ ତାଙ୍କର ପ୍ରବେଶ ଥିଲା ସୀମିତ । ସେ କାଳରେ ହାଇକୋର୍ଟ ପାଇଁ ମାତ୍ର ତିନିଜଣ ଅଧିବକ୍ତା ଥିଲେ । ଆଡ୍‌ଭୋକେଟ୍ ଜେନେରାଲ୍, ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ ଓ ଷ୍ଟାଣ୍ଡିଂ କାଉନ୍‌ସେଲ୍ । ଏଥି ପୂର୍ବରୁ ଆଡ୍‌ଭୋକେଟ୍ ଜେନେରାଲ ନିଜେ ସବୁ ରିଟ୍ କେସ ଓ ବଡ଼ ବଡ଼ ସିଭିଲ ଅପିଲମାନ ଚଳାଉଥିଲେ । ଅତିରିକ୍ତ ଜଜ୍ ମିଶାଇ ହାଇକୋର୍ଟରେ ମୋଟ ଜଜ୍ ସଂଖ୍ୟା ଛ'ଜଣ । ଏଣୁ କୌଣସି ସମୟରେ ଏକରୁ ଅଧିକ ରିଟ୍ ବେଂଚ ବସୁ ନଥିଲା । ଚିଫ୍ ଜଷ୍ଟିସଙ୍କ କୋର୍ଟରେ ମୁଖ୍ୟତଃ ରିଟ୍ କେସ୍ ଗୁଡ଼ିକର ବିଚାର ହୁଏ । ଏହି ପରଂପରାରେ ପରିବର୍ତ୍ତନ ଘଟିଲା ଦୀନବଂଧୁ ସାହୁଙ୍କ କାର୍ଯ୍ୟକାଳ ମଧ୍ୟରେ । ସାମ୍ବିଧାନିକ ମୋକଦ୍ଦମା ଓ ରିଟ୍ କେସ୍ ଆଦି ଚଳାଇବା ପାଇଁ ସେ ସହଯୋଗୀମାନଙ୍କ ଉପରେ ନିର୍ଭର କରିବାକୁ ଆରମ୍ଭ କଲେ । ଏ ପରିସ୍ଥିତି ମୋ ପାଇଁ ଥିଲା ସୁବର୍ଣ୍ଣ ସୁଯୋଗ ଓ ତାର ସଦ୍‌ବ୍ୟବହାର କରିବା ପାଇଁ ମୁଁ ଥିଲି ବଦ୍ଧପରିକର । ମନ ଧ୍ୟାନ ଦେଇ ସଂବିଧାନ ଅଧ୍ୟୟନ କରିବା, ରିଟ୍ କେସରେ ଆଡ୍‌ଭୋକେଟ ଜେନେରାଲଙ୍କୁ ସାହାଯ୍ୟ କରିବା ଓ ଆବଶ୍ୟକ ହେଲେ ନିଜେ କେସ୍ ପରିଚାଳନା କରିବାକୁ ମୁଁ ଉଦ୍ୟମ କଲି ।

ଏହି ସମୟରେ ହାଇକୋର୍ଟରେ କେତେକ ଅପ୍ରତ୍ୟାଶିତ ପରିବର୍ତ୍ତନ ଘଟିଲା । ଦୁଇବର୍ଷ ଅତିରିକ୍ତ ବିଚାରପତି ରହିବା ପରେ ଜଷ୍ଟିସ୍ ଜୟକୃଷ୍ଣ ମିଶ୍ରଙ୍କୁ ସ୍ଥାୟୀ ବିଚାରପତି କରିବା ପାଇଁ ଚିଫ୍ ଜଷ୍ଟିସ୍ ସୁପାରିଶ କଲେ ନାହିଁ । ଏଣୁ ୧୯୬୧ ମସିହାରେ ତାଙ୍କୁ ଅବସର ନେବାକୁ ହେଲା । ଏ ଘଟଣାରେ ଜଷ୍ଟିସ ମିଶ୍ରଙ୍କର ଅଗଣିତ ବଂଧୁ ଓ ଶୁଭାନୁଧ୍ୟାୟୀ ତଥା ଆଇନଜୀବୀ ମର୍ମାହତ ହୋଇଥିଲେ ।

କିନ୍ତୁ କର୍ତ୍ତୃପକ୍ଷଙ୍କୁ ଖୋସାମତ କରି କିମ୍ବା "ମା ବ୍ରୂୟାତ୍ ସତ୍ୟମପ୍ରିୟମ୍" ନୀତି ଅବଲମ୍ବନ କରି ବ୍ୟକ୍ତିଗତ ସୁବିଧା ହାସଲ କରିବା ତାଙ୍କ ଜାତକରେ ନଥିଲା । ସେ ଥିଲେ ସାଧୁ ସଚ୍ଚୋଟ ଓ କର୍ତ୍ତବ୍ୟ ପରାୟଣ । ବହୁଦିନ ଧରି ଦେଶୀୟ ରାଜ୍ୟ ଢେଙ୍କାନାଳରେ ସେ ଜଜ୍ ଥିଲେ । ରାଜା ଶଙ୍କର ପ୍ରତାପଙ୍କର ଆଜ୍ଞାନୁବର୍ତ୍ତୀ ହୋଇ ନ ପାରିବା ହେତୁ ତାଙ୍କୁ ସ୍ଥାନୀୟ ହାଇସ୍କୁଲର ହେଡ୍‌ମାଷ୍ଟର ପଦକୁ ସ୍ଥାନାନ୍ତରିତ କରାହେଲା । ସେ ବରଂ ହେଡ୍‌ମାଷ୍ଟର ପଦ ଗ୍ରହଣ କଲେ, କିନ୍ତୁ ଦରବାରଙ୍କ କୁଶାସନରେ ଭାଗୀଦାର ହେଲେ ନାହିଁ । ଅବଶ୍ୟ କିଛି ଦିନ ପରେ ପୂର୍ବ-ଦେଶୀୟ ରାଜ୍ୟଗୁଡ଼ିକର ପଲିଟିକାଲ ଏଜେଣ୍ଟ ତାଙ୍କୁ ପଡ଼ୋଶୀ ରାଜ୍ୟକୁ ଦେଓ୍ୱାନ୍ ଭାବରେ ବଦଳି କରିଥିଲେ । କିନ୍ତୁ ରାଜା, ରାଜ ପ୍ରତିନିଧି ବା ରାଜ ଦରବାର ଏ ସାଧୁ ଓ ନିଷ୍ଠାବାନ୍ ମଣିଷଟିର ଚରିତ୍ର ସଂଶୋଧନ କରିବାକୁ ସମର୍ଥ ହୋଇ ନଥିଲେ । ଦେଶୀୟ ରାଜ୍ୟ ଓଡ଼ିଶା ସହ ମିଶିବା ପରେ ଜୟକୃଷ୍ଣ ମିଶ୍ର ହାଇକୋର୍ଟ ଦ୍ୱାରା ଜିଲ୍ଲା ଜଜ୍ ମନୋନୀତ ହୋଇଥିଲେ ଓ ୧୯୫୯ ମସିହାରେ ଏହି ପଦରୁ ଅବସର ନେବା ପରେ ହାଇକୋର୍ଟରେ ଆଡ଼ିସନାଲ ଜଜ୍ ନିଯୁକ୍ତ ହୋଇଥିଲେ । ବିଚାରପତି ଭାବରେ ତାଙ୍କର ବ୍ୟବହାର ଥିଲା ଅତି ଭଦ୍ର ଓ ମଧୁର । ବିବାଦୀୟ ବିଷୟରେ ଓକିଲମାନଙ୍କୁ ସେମାନଙ୍କର ମତାମତ ବ୍ୟକ୍ତ କରିବା ପାଇଁ ସେ ପୂର୍ଣ୍ଣ ସୁଯୋଗ ଦିଅନ୍ତି । ନିଜେ ସନ୍ତୁଷ୍ଟ ନ ହେବା ପର୍ଯ୍ୟନ୍ତ ତରବରିଆ ଭାବରେ କୌଣସି ନିଷ୍ପତ୍ତି ନିଅନ୍ତି ନାହିଁ । ଏହି ପ୍ରକ୍ରିୟାରେ କେସ୍ ଫଏସଲ୍ କରିବାରେ ଅବଶ୍ୟ ବିଳମ୍ବ ଘଟେ । ଶୁଣାହେଲା, ଏହି କାରଣରୁ ଚିଫ୍ ଜଷ୍ଟିସ ତାଙ୍କର କାର୍ଯ୍ୟ-ନିର୍ବାହରେ ସନ୍ତୁଷ୍ଟ ନଥିଲେ । ସେ ଯାହାହେଉ, ଜୟକୃଷ୍ଣ ବାବୁଙ୍କର ଅନିଚ୍ଛାକୃତ ଅବସର ଫଳରେ ହାଇକୋର୍ଟର ଯେଉଁ ଅପୂରଣୀୟ କ୍ଷତି ଘଟିଲା, ତାହା ଦୀର୍ଘ ଦିନ ସ୍ଥାୟୀ ହେଲା ନାହିଁ ।

୧୯୬୨ ଜାନୁଆରୀ ଆରମ୍ଭରେ ଜଷ୍ଟିସ୍ ଗୋପାଳ ଚନ୍ଦ୍ର ଦାସ ଷାଠିଏ ବର୍ଷ ବୟସରେ ଅବସର ଗ୍ରହଣ କଲେ । ମାତ୍ର ଅଳ୍ପ କେତେ ଦିନ ପରେ ବିଚାରପତିମାନଙ୍କର ବୟସ ସୀମା ବାଷଠି ବର୍ଷକୁ ବଢ଼ାଇ ଦିଆଗଲା । କିନ୍ତୁ ଗୋପାଳ ବାବୁ ସେ ସୁବିଧା ଉପଭୋଗ କରି ପାରିଲେ ନାହିଁ । ତାଙ୍କ ସ୍ଥାନରେ ଆଡ୍‌ଭୋକେଟ୍ ଗତିକୃଷ୍ଣ ମିଶ୍ର ହାଇକୋର୍ଟର ସ୍ଥାୟୀ ବିଚାରପତି ନିଯୁକ୍ତ ହେଲେ । ଗତିବାବୁ ଜୟକୃଷ୍ଣ ମିଶ୍ରଙ୍କର ସାନ ଭାଇ । ଛାତ୍ରାବସ୍ଥାରୁ ଜଣେ ମେଧାବୀ ଛାତ୍ର ଭାବରେ ତାଙ୍କର ଅଶେଷ ଖ୍ୟାତି । ପାଟନା ବିଶ୍ୱବିଦ୍ୟାଳୟରୁ

ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଅର୍ଥନୀତିରେ ଏମ୍. ଏ ଓ ଆଇନ ପରୀକ୍ଷାରେ ପ୍ରଥମ ଶ୍ରେଣୀର ପ୍ରଥମ ସ୍ଥାନ ଅଧିକାର କରି ଅଧ୍ୟୟନ ସମାପ୍ତ କଲା ପରେ, ୧୯୪୦ ମସିହାରେ ସେ ଓକିଲାତିରେ ଯୋଗ ଦେଲେ । ମାତ୍ର ତିନି ବର୍ଷ ଓକିଲାତି କରିବା ପରେ ସେ ବିଚାର ବିଭାଗରେ ମୁନସଫ୍ ନିଯୁକ୍ତ ହେଲେ ଓ ପରେ ସବ୍‌ଜଜ୍ ପଦକୁ ଉନ୍ନୀତ ହେଲେ । ୧୯୫୦ ମସିହାରେ ସବ୍‌ଜଜ୍ ଚାକିରୀରୁ ଇସ୍ତଫା ଦେଇ ସେ ଆରମ୍ଭ କଲେ ହାଇକୋର୍ଟରେ ଓକିଲାତି । ଅଳ୍ପ ଦିନ ମଧ୍ୟରେ କଟକ, ବ୍ରହ୍ମପୁର ଓ ସମ୍ବଲପୁର ଅଂଚଳରୁ ବହୁ ସଂଖ୍ୟକ ସିଭିଲ, କ୍ରିମିନାଲ ଓ ରିଟ୍ କେସରେ ତାଙ୍କ ସିରସ୍ତା ଭରପୁର ହୋଇଗଲା । ୧୯୫୪ ମସିହାରେ ବାଂଛାନିଧି ବାବୁଙ୍କ ସ୍ଥାନରେ ସେ ବିକ୍ରିକର ବିଭାଗର ଷ୍ଟାଣ୍ଡିଂ କାଉନସେଲ ନିଯୁକ୍ତ ହେଲେ । ଜଜ୍ ହେବା ସମୟରେ ହାଇକୋର୍ଟରେ ତାଙ୍କର ସର୍ବାଧିକ ସିଭିଲ କେସ ଥାଏ । ତାଙ୍କର ପଦୋନ୍ନତିରେ ଆଇନଜୀବୀ, ନିମ୍ନ ବିଚାର ବିଭାଗ, ସରକାର ଓ ଜନ ସାଧାରଣ ଅନୁଭବ କରିଥିଲେ ଯେ ଜଣେ ଅତି ସୁଯୋଗ୍ୟ ଅଧିବକ୍ତାଙ୍କୁ ବିଚାରପତି ପଦରେ ନିଯୁକ୍ତି ଦିଆଯାଇଛି । ଏ ପ୍ରକାରର ଆସ୍ଥା ଓ ବିଶ୍ୱାସ ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ମିଳେ ।

୧୯୬୩ ମସିହା ଶେଷାର୍ଦ୍ଧରେ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ ଶ୍ରୀକାନ୍ତ ମହାନ୍ତିଙ୍କର ତିନିବର୍ଷିଆ କାର୍ଯ୍ୟକାଳ ଶେଷ ହେଲା । ତାଙ୍କର ପୁନର୍ନିଯୁକ୍ତି ପାଇଁ ଆଡ୍‌ଭୋକେଟ ଜେନେରାଲ୍ ତାଙ୍କର ନାମ ସୁପାରିଶ୍ କରିଥିଲେ । ଜଣେ ଦକ୍ଷ ଆଇନଜୀବୀ ଭାବରେ ଶ୍ରୀକାନ୍ତ ବାବୁଙ୍କର ସୁଖ୍ୟାତି ଥିଲା । ନିଷ୍ଠାପର ଓ ସଚ୍ଚୋଟ ଅଧିବକ୍ତା ଭାବରେ ସେ ବିବେଚିତ ହେଉଥିଲେ । ଯେଉଁ କେସ୍‌ରେ ସେ ନିଯୁକ୍ତ ହୁଅନ୍ତି, ତହିଁରେ ଜୋକ ପରି ଲାଗି ରହନ୍ତି । ବ୍ୟକ୍ତିଗତ ଭାବରେ ସେ ଥିଲେ ଅତି ସ୍ନେହୀ ଓ ଶ୍ରଦ୍ଧାଳୁ ପୁରୁଷ । କିନ୍ତୁ ନୂତନ ସରକାରର ନେତା ଥିଲେ ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ର । ଏମାନେ ଥିଲେ ରାଜନୀତିରେ ଯୁବଗୋଷ୍ଠୀର ବଳିଷ୍ଠ ପ୍ରତିନିଧି । ପ୍ରଶାସନ କ୍ଷେତ୍ରରେ ମଧ୍ୟ ଏହି ନେତୃତ୍ୱ ଯୁବ ଗୋଷ୍ଠୀକୁ ପ୍ରାଧାନ୍ୟ ଦେଉଥିଲେ । ଆଇନ ମନ୍ତ୍ରୀ ବୀରେନ୍ ମିତ୍ର ଶ୍ରୀକାନ୍ତ ବାବୁଙ୍କ କାର୍ଯ୍ୟନିର୍ବାହରେ ସନ୍ତୁଷ୍ଟ ନଥିଲେ ଏବଂ ସେ ଚାହୁଁଥିଲେ ଏକ ପରିବର୍ତ୍ତନ । ପୂର୍ବତନ ଆଇନମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ସହିତ ଶ୍ରୀକାନ୍ତ ବାବୁଙ୍କର ଘନିଷ୍ଠତା ଏହାର ଅନ୍ୟତମ କାରଣ । ଅଗଷ୍ଟ ଆରମ୍ଭରେ ମୁଖ୍ୟମନ୍ତ୍ରୀ ଓ ଆଇନ ମନ୍ତ୍ରୀ

ଏ ବିଷୟରେ ଆଲୋଚନା କରି ଏକ ନିଷ୍ପତ୍ତି ନେଇଛନ୍ତି ବୋଲି ଶୁଣାହେଲା । କିଛି ଦିନ ପରେ ଆଇନମନ୍ତ୍ରୀ ମୋତେ ଭୁବନେଶ୍ୱର ଡକାଇ ତାହାର ସୂଚନା ଦେଲେ ଏବଂ ଏ କଥା ମଧ୍ୟ କହିଲେ ଯେ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ପଦରେ ଷ୍ଟାଣ୍ଡିଂ କାଉନସେଲଙ୍କୁ ପଦୋନ୍ନତି ଦିଆଯାଉଛି । ସେ ପୁଣି ତାଗିଦ କରିଦେଲେ, ନିଯୁକ୍ତି ଆଦେଶ ପ୍ରେରିତ ହେବା ପର୍ଯ୍ୟନ୍ତ ଏ ବିଷୟ ସଂପୂର୍ଣ୍ଣ ଗୋପନୀୟ ରହିବା ଦରକାର । ମୁଁ ମନେ ମନେ ହସିଲି - ଲଙ୍କାରେ ହରିନାମ, ବୀରେନ୍‌ଦାଙ୍କ ଦରବାରରେ ଗୋପନୀୟତା ! କିନ୍ତୁ ଏ ନିଷ୍ପତ୍ତିଟି ତାଙ୍କ ଦରବାରରୁ ଫୁଟି ବାହାରିବାର ଅବକାଶ ରହିଲା ନାହିଁ । ଅଦିନିଆ ଝଞ୍ଜା ପରି ଓଡ଼ିଶା ରାଜନୀତିରେ ଏପରି କେତେକ ଚାଂଚଲ୍ୟକର ପରିବର୍ତ୍ତନ ଘଟିଲା, ଯାହା ଫଳରେ ଏ ବିଷୟଟି ପ୍ରତି ସରକାରୀ ସ୍ତରରେ କେହି ଧ୍ୟାନ ଦେଲେ ନାହିଁ ।

ଭାରତର ରାଜନୀତିରେ ଏକଦା ସୁପରିଚିତ 'କାମରାଜ ଯୋଜନାର ଜନ୍ମ ଏହି ସମୟରେ' । ଓଡ଼ିଶା ରାଜନୀତିରେ ଏହି ଯୋଜନା ଯେଉଁ ଅଯାଚିତ ବିଭ୍ରାଟ ସୃଷ୍ଟି କରିଥିଲା, ଏହି ସମୟରେ ତାର ଅୟମାରମ୍ଭ । କାମରାଜ ନାଦର ବହୁଦିନ ଧରି ମାଦ୍ରାଜ (ବର୍ତ୍ତମାନ ତାମିଲନାଡୁ) ପ୍ରଦେଶର ମୁଖ୍ୟମନ୍ତ୍ରୀ ରହିବା ପରେ ନିଖିଳ ଭାରତ କଂଗ୍ରେସ କମିଟର ସଭାପତି ନିର୍ବାଚିତ ହେଲେ । ସେ ତାଙ୍କ ନାମରୁ 'ନାଦର' ଉପାଧି ଉଠାଇ ଦେଇଥିଲେ । ସେ ସମୟରେ ବିଜୟାନନ୍ଦ ପଟ୍ଟନାୟକ ମଧ୍ୟ ନିଜକୁ 'ବିଜୁ ପଟ୍ଟନାୟକ' ନାମରେ ପରିଚିତ କରାଇଲେ । କାମରାଜ ନିଜ ଅଭିଜ୍ଞତାରୁ ଅନୁଭବ କରିଥିଲେ ଯେ, ଜଣେ ଜଣେ ନେତା ବହୁଦିନ କ୍ଷମତାରେ ରହିବା ହେତୁ ଜନସାଧାରଣଙ୍କ ମଧ୍ୟରେ ଅପ୍ରିୟ ହୋଇ ଉଠୁଛନ୍ତି । ସେମାନେ କ୍ଷମତାରୁ ଅପସରି ଯାଇ କିଛି ଦିନ କଂଗ୍ରେସ ସଂଗଠନ କାର୍ଯ୍ୟରେ ଓ ଜନସେବାରେ ସମୟ ବିନିଯୋଗ କଲେ, ସଂଗଠନ ମଜବୁଦ୍ ହୁଅନ୍ତା ଓ ସେମାନେ ମଧ୍ୟ ଜନପ୍ରିୟତା ଫେରି ପାଇ ପାରନ୍ତେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ କାମରାଜଙ୍କ ଏହି ଯୋଜନାର ମୁଖ୍ୟ ପୃଷ୍ଠପୋଷକ ଭାବରେ ଅବତୀର୍ଣ୍ଣ ହେଲେ ଓ ସ୍ୱେଚ୍ଛାକ୍ରମେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ପ୍ରଧାନମନ୍ତ୍ରୀଙ୍କୁ ପ୍ରସ୍ତାବ ଦେଲେ । ପ୍ରଧାନମନ୍ତ୍ରୀ ନେହରୁ ସେହି ସମୟରେ କାଶ୍ମୀରର ପହେଲଗାଁଓରେ ବିଶ୍ରାମ ନେଉଥାନ୍ତି । ବହୁ ବିଚାର ବିମର୍ଷ ପରେ ସେ ଏହି ଯୋଜନାରେ ସମ୍ମତ ହେଲେ ଓ 'କାମରାଜ ଯୋଜନା କାର୍ଯ୍ୟକାରୀ ହେଲା । ଏହାର ପରିଣତି ସ୍ୱରୂପ କେନ୍ଦ୍ର ସରକାରରୁ

ମୋରାରଜୀ ଦେଶାଇ, ଏସ୍.କେ ପାଟିଲ, କାଶ୍ମୀର ମୁଖ୍ୟମନ୍ତ୍ରୀ ବକ୍ସି ଗୋଲାମ ମହମ୍ମଦ୍, ଲାଲବାହାଦୁର ଶାସ୍ତ୍ରୀ, ପଶ୍ଚିମ ବଙ୍ଗଳାର ମନ୍ତ୍ରୀ ଅଜୟ ମୁଖାର୍ଜି ଓ ଓଡ଼ିଶା ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ପ୍ରମୁଖ ବହୁ ନେତା ନିଜ ପଦରୁ ଇସ୍ତଫା ଦେଲେ ।

ନେହ୍ରୁଙ୍କର ଜଣେ ସମାଲୋଚକ, ବମ୍ବେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଏସ୍.କେ. ପାଟିଲ କେନ୍ଦ୍ର ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେବା ପରେ ନିବୃତ୍ତି ଦେଲେ ଯେ ନେହ୍ରୁ-ବିରୋଧୀମାନଙ୍କୁ କ୍ଷମତାରୁ ବିତାଡ଼ିତ କରିବା ପାଇଁ କାମରାଜ ଯୋଜନା ଏକ ସୁପରିକଳ୍ପିତ ଷଡ଼ଯନ୍ତ୍ର । ସେତେବେଳେ ନେହ୍ରୁଙ୍କର ବିଶ୍ୱସ୍ତ ପରାମର୍ଶଦାତା ଥିଲେ ତାଙ୍କର କନ୍ୟା ଇନ୍ଦିରା ଗାନ୍ଧୀ । ଇନ୍ଦିରାଙ୍କର ଯେ ଏପରି ଉଦ୍ଦେଶ୍ୟ ନଥିଲା ତାହା କୁହାଯାଇ ପାରିବ ନାହିଁ । ଏହା ଯୋଜନା ହେଉ ବା ପ୍ରବଂଚନା ହେଉ, ବିଜୁ ପଟ୍ଟନାୟକ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହେବାର କୌଣସି କାରଣ ନଥିଲା । ସେ ସେତେବେଳେ ନେହ୍ରୁ ବିରୋଧୀ ନଥିଲେ ବା ମୁଖ୍ୟମନ୍ତ୍ରୀ ଭାବରେ ଜନସାଧାରଣଙ୍କର ଆସ୍ଥା ହରାଇ ନଥିଲେ । ଶାସନ ଗାଦୀରେ ତାଙ୍କର କାର୍ଯ୍ୟକାଳ ଥିଲା ଅଢ଼େଇ ବର୍ଷରୁ କମ୍ । ଅଥଚ ଅକ୍ଟୋବର ପହିଲା ତାରିଖରେ ବିଜୁ ପଟ୍ଟନାୟକ ଇସ୍ତଫା ଦେଲେ । ବିଜୁ ବାବୁଙ୍କର ଅନ୍ୟତମ ସହଯୋଗୀ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ତାଙ୍କର ଆତ୍ମଜୀବନୀ ''ସ୍ମୃତି ଓ ଅନୁଭୂତି'' ବହିରେ ବିଜୁ ପଟ୍ଟନାୟକଙ୍କର ଏତାଦୃଶ ପଦତ୍ୟାଗକୁ ଏକ 'ଉଦ୍‌ଭଟ ନିଷ୍ପତ୍ତି' ବୋଲି ବର୍ଣ୍ଣନା କରିଛନ୍ତି । ବିଜୁ ପଟ୍ଟନାୟକଙ୍କୁ କଟୁ ଆକ୍ଷେପ କରି ସେ ପୁଣି ଲେଖିଛନ୍ତି ''ଅବ୍ୟବସ୍ଥିତ ଚିତ୍ତସ୍ୟ ପ୍ରସାଦୋପି ଭୟଙ୍କରଃ । ସମସ୍ତ ଦକ୍ଷତା ଓ ପ୍ରଶାସନିକ ବିଚକ୍ଷଣତା ସତ୍ତ୍ୱେ ବିଜୁ ପଟ୍ଟନାୟକ ଜଣେ ଅବ୍ୟବସ୍ଥିତ ଓ ଚଂଚଳମନା ବ୍ୟକ୍ତି ।'' ରାଉତରାୟଙ୍କ ବିଶ୍ଳେଷଣର ଯଥାର୍ଥତା ଉପରେ ମୁଁ କୌଣସି ମନ୍ତବ୍ୟ ପ୍ରକାଶ କରୁନାହିଁ । କିନ୍ତୁ ଯେଉଁ ଯୋଜନାର ଭିତିରି ଉଦ୍ଦେଶ୍ୟ ଥିଲା ରାଜନୈତିକ ପ୍ରତିଦ୍ୱନ୍ଦୀମାନଙ୍କୁ ଶାସନ ଦାୟିତ୍ୱରୁ ବିମୁକ୍ତ କରିବା, ତାହାର ତାତ୍ପର୍ଯ୍ୟ ବୁଝି ନ ପାରିବା ଏକ ଅକ୍ଷମଣୀୟ ଅପାରଗତା ଓ ସେହି ଷଡ଼ଯନ୍ତ୍ରର ପ୍ରକ୍ରିୟାରେ ନିଜକୁ ସମର୍ପଣ କରିବା ଏକ ପ୍ରକାରର ରାଜନୈତିକ ଅପରିପକ୍ୱତା । ଯେଉଁ ପ୍ରବଂଚନାର ଶିକାର ହୋଇ ସେ କ୍ଷମତାରୁ ଅପସରିଗଲେ, ସେଥିପାଇଁ ତାଙ୍କୁ ବହୁ ଦିନ ଧରି ରାଜନୈତିକ ଶୂନ୍ୟତା ମଧ୍ୟରେ ବିଚରଣ କରିବାକୁ ହୋଇଥିଲା ।

ଯାହାହେଉ ଅକ୍ଟୋବର ଦୁଇ ତାରିଖ ଗାନ୍ଧିଜୟନ୍ତୀ ଦିନ ବୀରେନ ମିତ୍ର ଓଡ଼ିଶାର ନୂତନ ମୁଖ୍ୟମନ୍ତ୍ରୀ ହେଲେ । ଭ୍ରାତା ବିଜୁଙ୍କୁ ରାମଚନ୍ଦ୍ରଙ୍କ ସହ ତୁଳନା କରି, ତାଙ୍କ କଠାଉ ପୂଜା କରି, ତାଙ୍କ ନିର୍ଦ୍ଦେଶରେ ରାଜକାର୍ଯ୍ୟ ପରିଚାଳନା କରିବେ ବୋଲି ଘୋଷଣା କଲେ । ତାଙ୍କ ମନ୍ତ୍ରୀ ପରିଷଦର ଆଇନମନ୍ତ୍ରୀ ହେଲେ ସମ୍ବଲପୁରର ବିଶିଷ୍ଟ ଆଡ୍‌ଭୋକେଟ୍ ବନମାଳୀ ବାବୁ । ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ନିଯୁକ୍ତି ବ୍ୟାପାରରେ ସରକାରଙ୍କ ପୂର୍ବ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାକୁ ସେ ଥିଲେ ତତ୍ପର । ୧୯୬୩ ମସିହା ଛ' ତାରିଖ ନଭେମ୍ବର ଦିନ ମୁଖ୍ୟମନ୍ତ୍ରୀ ଫାଇଲରେ ଦସ୍ତଖତ୍ କଲେ । ନଭେମ୍ବର ସାତ ତାରିଖରେ ମୁଁ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଦାୟିତ୍ୱ ଗ୍ରହଣ କଲି ।

ସେତେବେଳେ (ସ୍ୱର୍ଗୀୟ) ବାଳକୃଷ୍ଣ ପାତ୍ର ଓଡ଼ିଶା ସରକାରଙ୍କର ଆଇନ ସଚେତକ ବା ଲିଗାଲ ରିମେମ୍ବ୍ରାନ୍ସର ଥାଆନ୍ତି । ମୁଖ୍ୟମନ୍ତ୍ରୀ ଛ'ତାରିଖ ଦିନ ଦିଲ୍ଲୀ ଯିବା ସମୟରେ କୁଆଡ଼େ ଆଇନ ସଚେତକଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ ମୋ ସହିତ ପରାମର୍ଶ କରି ଷ୍ଟାଣ୍ଡିଂ କାଉନସେଲ ନିଯୁକ୍ତ ପାଇଁ ଫାଇଲ୍ ପେଶ୍ କରିବେ । ସାତ ତାରିଖ ଦିନ ଡାକରା ଆସିଲା ବାଳକୃଷ୍ଣ ବାବୁଙ୍କ ପାଖରୁ, ତାଙ୍କୁ ଭୁବନେଶ୍ୱରରେ ସାକ୍ଷାତ କରିବା ପାଇଁ । ଷ୍ଟାଣ୍ଡିଂ କାଉନସେଲ ମନୋନୟନ ପାଇଁ ଆଲୋଚନା ହେଲା । ମୋ ସହିତ ପରାମର୍ଶ କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ସଂପର୍କରେ ସେ ମୋତେ ସୂଚନା ଦେଲେ । ମୋର ପରାମର୍ଶ ଅନୁଯାୟୀ ଆଇନ ସଚେତକ ନବ କୁମାର ଦାସଙ୍କ ନାମ (ପରେ ଜଷ୍ଟିସ୍ ଦାସ) ସୁପାରିଶ୍ କଲେ । କିଛି ଦିନ ପରେ ନବବାବୁ ମୋ ସ୍ଥାନରେ ଷ୍ଟାଣ୍ଡିଂ କାଉନସେଲ ନିଯୁକ୍ତ ହେଲେ ।

୧୯୬୪ ଶେଷ ଆଡ଼କୁ ଚିଫ୍ ଜଷ୍ଟିସ୍ ଆର.ଏଲ୍. ନରସିଂହମ୍‌ଙ୍କର ବଦଳି ସଂପର୍କରେ ଗୁଜବ ଉଠିଲା । ୧୯୪୮ ମସିହାରେ ଆଇନ ସେକ୍ରେଟାରୀ ଥିବା ସମୟରେ ସେ ନବଗଠିତ ଓଡ଼ିଶା ହାଇକୋର୍ଟର ଚତୁର୍ଥ ବିଚାରପତି ଭାବରେ ନିଯୁକ୍ତ ହୋଇଥିଲେ । ୧୯୫୬ ମସିହାରେ ଲିଙ୍ଗରାଜ ପାଣିଗ୍ରାହୀଙ୍କ ପରେ ମୁଖ୍ୟ ବିଚାରପତି ହେଲେ । ନରସିଂହମ୍ ଜଣେ ଆଇ.ସି. ଏସ୍ ଅଫିସର । ପ୍ରଶାସନ ବିଭାଗରେ କେତେ ବର୍ଷ କାର୍ଯ୍ୟ କରିବା ପରେ ସେ ବିଚାର ବିଭାଗରେ ଯୋଗ ଦେଇଥିଲେ । କିନ୍ତୁ ତାଙ୍କର କୌଣସି ଲ' ଡିଗ୍ରୀ ନଥିଲା । ଦୀର୍ଘ ନ' ବର୍ଷ ଓଡ଼ିଶାର ଚିଫ୍ ଜଷ୍ଟିସ୍ ରହିବା ପରେ ମଧ୍ୟ

ତାଙ୍କୁ ସୁପ୍ରିମ୍‌କୋର୍ଟକୁ ନିଆ ହେଲା ନାହିଁ । ବାହାରେ ପ୍ରକାଶ ନ କଲେ ମଧ୍ୟ, ଗୋଟିଏ ହାଇକୋର୍ଟରେ ସୁଦୀର୍ଘ ଅବସ୍ଥାନ ହେତୁ ଶେଷ ଆଡ଼କୁ କାର୍ଯ୍ୟ ନିର୍ବାହ ପ୍ରତି ବୀତସ୍ପୃହ ହେବା ସ୍ୱାଭାବିକ । ଏକ ସ୍ଥାନରେ, ଏକା ବାତାବରଣ ମଧ୍ୟରେ, ଏକ ପ୍ରକାରର ଲୋକଙ୍କ ମେଳରେ ଦୀର୍ଘ ଦିନ କାର୍ଯ୍ୟ କରିବା ଯେ ପୀଡା ଦାୟକ ଜଷ୍ଟିସ ନରସିଂହମ୍‌ଙ୍କ ଉଦାହରଣ ବୋଧ ହୁଏ ତାର ବ୍ୟତିକ୍ରମ ନଥିଲା । ଯାହାହେଉ ଅବସର ନେବାର ସାଢ଼େ ତିନି ବର୍ଷ ପୂର୍ବରୁ ପାଟଣା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ଭାବରେ ତାଙ୍କର ବଦଳି ହେଲା ଓ ୧୯୬୫ ମସିହା ଜାନୁଆରୀ ଚାରି ତାରିଖରେ ସେ ପାଟଣା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ଭାବରେ ଶପଥ ନେଲେ । ଅବଶ୍ୟ ବିହାର ଭାରତର ଦ୍ୱିତୀୟ ବୃହତ୍ତମ ରାଜ୍ୟ । ମୋକଦ୍ଦମା ସଂଖ୍ୟା ଓ ଜଜ୍ ସଂଖ୍ୟା ଦୃଷ୍ଟିରୁ ପାଟନା ହାଇକୋର୍ଟ ଓଡ଼ିଶା ହାଇକୋର୍ଟଠାରୁ ଅନେକ ବଡ଼ । ୧୯୩୬ ମସିହା ପର୍ଯ୍ୟନ୍ତ ବିହାର ଓଡ଼ିଶା ଗୋଟିଏ ପ୍ରଦେଶ ଥିଲା । ସ୍ୱତନ୍ତ୍ର ହେବା ପରେ ମଧ୍ୟ ଓଡ଼ିଶାର ବିଚାର ବିଭାଗ ପାଟଣା ହାଇକୋର୍ଟର କର୍ତ୍ତୃତ୍ୱରେ ପରିଚାଳିତ ହେଉଥିଲା । ୧୯୪୮ ମସିହାରେ ଓଡ଼ିଶା ହାଇକୋର୍ଟ ଗଠିତ ହେବା ପର୍ଯ୍ୟନ୍ତ, ପାଟନା ଜଜ୍‌ମାନେ ସର୍କିଟ୍‌ରେ କଟକ ଆସି ମୋକଦ୍ଦମା ବିଚାର କରୁଥିଲେ । ଏହି ସୁଦୀର୍ଘ ପ୍ରଶାସନିକ ସଂପର୍କ ସତ୍ତ୍ୱେ ପାଟନା ହାଇକୋର୍ଟରେ ଓଡ଼ିଆଙ୍କର କୌଣସି ସ୍ୱୀକୃତି ନଥିଲା । ୧୯୩୭ ମସିହାରେ ନିଯୁକ୍ତ ଜଜ୍ କଟକର ଆଡ୍‌ଭୋକେଟ୍ ସୁବୋଧ ଚନ୍ଦ୍ର ଚାଟାର୍ଜି ପାଟଣା ହାଇକୋର୍ଟରେ ଓଡ଼ିଶାର ପ୍ରଥମ ପ୍ରତିନିଧି । ୧୯୪୪ ମସିହାରେ ତତ୍‌କାଳୀନ ଆଡ୍‌ଭୋକେଟ ଜେନେରାଲ ବୀର କିଶୋର ରାୟ ପାଟନା ହାଇକୋର୍ଟର ଜଜ୍ ନିଯୁକ୍ତ ହୋଇ ୧୯୪୮ ମସିହାରେ ନବଗଠିତ ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ରୂପେ କଟକ ପ୍ରତ୍ୟାବର୍ତ୍ତନ କଲେ । ୧୯୫୯ ଅଗଷ୍ଟ ମାସରେ ପାଟନା ହାଇକୋର୍ଟର ବିଚାରପତି ନିଯୁକ୍ତ ହେଲେ କଟକର ଆଡ୍‌ଭୋକେଟ୍ ହରିହର ମହାପାତ୍ର । ନରସିଂହମ ପାଟନା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ନିଯୁକ୍ତ ହେବା ପରେ ଉକ୍ତ ହାଇକୋର୍ଟର ସର୍ବ ବରିଷ୍ଠ ବିଚାରପତି ଖଲିଲ ଅହମଦ୍ ୧୯୬୫ ଜାନୁଆରୀ ମାସରେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ରୂପେ ଯୋଗ ଦେଲେ ।



# ଦରବାରୀ ମିଜାଜ

ଗୋଟିଏ ବଡ଼ ହାଇକୋର୍ଟର ଚିଫ୍ ଜଷ୍ଟିସ୍ ନିଯୁକ୍ତ ହୋଇ ଓଡ଼ିଶାରୁ ଖୁସି ମନରେ ବିଦାୟ ନେଲେ ନରସିଂହମ୍; କିନ୍ତୁ ଖଲିଲ ଅହମଦ୍‌ଙ୍କ ପ୍ରତିକ୍ରିୟା ଥିଲା ଠିକ୍ ଓଲଟା । ପାଟନାର ସେ ସର୍ବ ବରିଷ୍ଠ ବିଚାରପତି ଥିଲେ ମଧ୍ୟ, ବିହାରର ତତ୍‌କାଳୀନ କଂଗ୍ରେସୀ ମୁଖ୍ୟମନ୍ତ୍ରୀ ତାଙ୍କୁ ଚିଫ୍ ଜଷ୍ଟିସ୍ କରିବାର ବିରୋଧ କରୁଥିଲେ । ଏଣୁ ତାଙ୍କୁ ଓଡ଼ିଶା ପଠାଇ କେନ୍ଦ୍ର ସରକାର ଏହି ବିବାଦର ସମାଧାନ କରିବାକୁ ନିଷ୍ପତ୍ତି ନେଇଥିଲେ । ଖଲିଲ୍ ଅହମଦ୍‌ଙ୍କୁ ଇଚ୍ଛା ବିରୁଦ୍ଧରେ ଓଡ଼ିଶା ଆସିବାକୁ ହେଲା । କୌଣସି ସ୍ଥାନୀୟ ଜଜ୍‌ଙ୍କୁ ସେହି ହାଇକୋର୍ଟର ଚିଫ୍ ଜଷ୍ଟିସ୍ ନକରିବା ପାଇଁ ବର୍ତ୍ତମାନ ଯେଉଁ ନିୟମ ହୋଇଛି, ସେତେବେଳେ ସେପରି ନିୟମ ବା ପରଂପରା ନଥିଲା । କେବଳ ବ୍ୟକ୍ତିଗତ ବିଦ୍ୱେଷ ହେତୁ ଅହମଦ୍‌ଙ୍କୁ ପାଟନାରୁ ବସ୍ତୁତଃ ବିତାଡ଼ିତ କରା ହୋଇଥିଲା । ଏଥିପାଇଁ ସେ ଥିଲେ ଅତ୍ୟନ୍ତ କ୍ଷୁବ୍ଧ । ପ୍ରଥମ ଦିନରୁ ତାଙ୍କର ଏହି ରାଗ ଓ ରୋଷ ପ୍ରତି କଥାରେ ପ୍ରକାଶ ପାଉଥିଲା । ସେ ଥିଲେ ଜମିଦାର ପରିବାରର ଦାୟାଦ । ତାଙ୍କର ଆଭିଜାତ୍ୟ ଉପରେ ଏହି ଧକ୍କା ହେତୁ କ୍ଷଣକ୍ଷଣକେ ଆହତ ବ୍ୟାଘ୍ରର ପ୍ରତିକ୍ରିୟା ତାଙ୍କର ପ୍ରକାଶ ପାଉଥିଲା ।

ନୂତନ ଚିଫ୍ ଜଷ୍ଟିସ୍‌ଙ୍କର କୋର୍ଟରେ ପ୍ରଥମ ଦିନର ପ୍ରଥମ କେସ୍‌ଟି ଥିଲା ମୋର । ମୁଁ କେସ୍‌ଟି ପାଇଁ ଯଥାସଂଭବ ପ୍ରସ୍ତୁତ ହୋଇଥିଲି । ଠିକ୍ ମନେ ପଡୁ ନାହିଁ, ଅପର ପକ୍ଷର ଆଡ୍‌ଭୋକେଟ୍ ଥିଲେ ବୋଧହୁଏ ରଙ୍ଗନାଥ ମିଶ୍ର । ସେ ଦିନ ସଂଧ୍ୟାରେ ଚିଫ୍ ମିନିଷ୍ଟର ଭୁବନେଶ୍ୱର ଗେଷ୍ଟ ହାଉସ ଲନ୍‌ରେ ଚିଫ୍ ଜଷ୍ଟିସଙ୍କୁ ସ୍ୱାଗତ ଜଣାଇବା ପାଇଁ ଏକ ରାତ୍ରି ଭୋଜନର ଆୟୋଜନ କରିଥିଲେ । ଅନୁଷ୍ଠାନରେ ଉପସ୍ଥିତ ଥିଲେ ହାଇକୋର୍ଟର ବିଚାରପତି ଗଣ, ମନ୍ତ୍ରୀମଣ୍ଡଳର ସଦସ୍ୟବୃନ୍ଦ, କେତେ ଜଣ ବରିଷ୍ଠ ଆଡ୍‌ଭୋକେଟ ଓ ପଦସ୍ଥ ସରକାରୀ କର୍ମଚାରୀ । ଚିଫ୍ ମିନିଷ୍ଟର ମୋତେ ଚିଫ୍ ଜଷ୍ଟିସଙ୍କ ସହ ପରିଚୟ କରାଇ ଦେଲେ । ଚିଫ୍ ଜଷ୍ଟିସ୍ ମୋର କର ମର୍ଦ୍ଦନ କରି କହିଲେ, "ମିଷ୍ଟର ରଥ ଆଜି ମୋ କୋର୍ଟରେ ପ୍ରଥମ କେସ୍‌ଟି ବେଶ୍ ଦକ୍ଷତାର ସହ ବାଦାନୁବାଦ କରିଛନ୍ତି" । ଚିଫ୍ ଜଷ୍ଟିସ୍‌ଙ୍କ ମନ୍ତବ୍ୟ ଶୁଣି ବୀରେନ୍ ଦା ମତେ ଚୁପ୍ କରି କହିଲେ, "କିରେ, ଚିଫ୍ ଜଷ୍ଟିସ୍‌ଙ୍କ ସହ ବେଶ ଜମେଇ ଦେଇଛୁ ?" ମୁଁ ଉତ୍ତର ନ ଦେଇ ମନେ ମନେ ହସିଲି । ପୈତୃକ ପରିଚୟ ଓ ଆଭିଜାତ୍ୟର ସଂଭାର ଧରି ନୂତନ ଅତିଥିଙ୍କର ସାନ୍ନିଧ୍ୟ ଲାଭ କରିବାର

ସୌଭାଗ୍ୟ ମୋର ନଥିଲା । କାରଣ ଆମ ପରିବାରରେ କେହି ଓକିଲ ବା ଜଜ୍ ନଥିଲେ । ଏଣୁ ଚିଫ୍ ଜଷ୍ଟିସ୍‌ଙ୍କ ସହ ଭେଟଘାଟ କରିବାର ଅବକାଶ କେଉଁଠୁ ଆସିବ ? ମୁଁ ସବୁବେଳେ ସଚେତ ଥିଲି, ମୋତେ ନିଜକୁ ନିଜେ ଦୁନିଆ ଦରବାରରେ ପରିଚିତ କରାଇବାକୁ ହେବ, ଠିକ୍ ଯେପରି କଟକର ସାହିବଷ୍ଟିରେ ଅନୁଷ୍ଠିତ ରାମଲୀଳା ଉତ୍ସବରେ ହନୁମାନ ଉଚ୍ଚ ସ୍ଥାନରୁ ମଂଚ ଉପରକୁ ଡେଇଁ ନିଜକୁ ପରିଚୟ କରାଏ "ଆମ୍ଭେ ହାଜର ହୋଇଲୁ ହୋ ହନୁମାନ୍" । ଅବଶ୍ୟ କ୍ଷମତାସୀନ କର୍ତ୍ତୃପକ୍ଷଙ୍କୁ ବହୁ ଲୋକ ବହୁ ଭାବରେ ସନ୍ତୁଷ୍ଟ କରିବାକୁ ଉଦ୍ୟମ କରନ୍ତି । ଅନ୍ତତଃ ଚାଟୁ କଥା କହି ବା ଖୋସାମଦ୍ କରି ଅନୁଗ୍ରହ ଲାଭ କରାଯାଇପାରେ । କିନ୍ତୁ ନିଜ କର୍ତ୍ତବ୍ୟ ପାଳନରେ ବା କାର୍ଯ୍ୟ ସାଧନରେ ପରାକାଷ୍ଠା ପ୍ରତିପାଦିତ କରି ପାରିଲେ ଯେଉଁ ପ୍ରତିଷ୍ଠା ଲାଭ କରାଯାଏ, ସେଥିରେ ଗୌରବ ଅଛି, ଆନନ୍ଦ ଅଛି ।

ଜଷ୍ଟିସ୍ ଅହମଦ୍ ଯେ ଜଣେ ବିଦ୍ୱାନ ଓ ଦକ୍ଷ ଆଇନ ବିଶାରଦ, ଏହା ନିଃସଂଦେହରେ କୁହାଯାଇପାରେ । ସବୁ ପ୍ରକାରର ଆଇନରେ ତାଙ୍କର ପାରଦର୍ଶିତା ଥିଲା । ରାୟଗୁଡ଼ିକର ଭାଷା ଓ ପ୍ରକାଶ ଶୈଳୀ ମଧ୍ୟ ଉଚ୍ଚକୋଟୀର । କିନ୍ତୁ ସେ ନବାବୀ ମିଜାଜ୍‌ର ଲୋକ । ବସିବା, ହସିବା, କାଶିବା ଓ କଥା କହିବା, ସବୁଥିରେ ପରିସ୍ଫୁଟ ଥିଲା ଅସାମାନ୍ୟ ପ୍ରୌଢ଼ି ଓ ଔଦ୍ଧତ୍ୟ । ଗୋଟିଏ ପ୍ରତିଷ୍ଠିତ ହାଇକୋର୍ଟରୁ ଛ'ଜଣ ଜଜ୍ ବିଶିଷ୍ଟ ଓଡ଼ିଶା ହାଇକୋର୍ଟକୁ ଆସିଥିବାରୁ ଅନ୍ୟମାନଙ୍କୁ ହେୟ ଜ୍ଞାନ କରିବା ଥିଲା ତାଙ୍କର ମନୋବୃତ୍ତି । କିନ୍ତୁ ସେ ଜାଣି ନଥିଲେ ଯେ ଓଡ଼ିଶା ଲୋକେ ବିହାରବାସୀଙ୍କଠାରୁ କେବେ ନିଜକୁ ନ୍ୟୁନ ମନେ କରନ୍ତି ନାହିଁ । ତାଙ୍କ ଦୁର୍ଭାଗ୍ୟକୁ ସେ କଟକ ଆସିବା ପରେ ପରେ ଓଡ଼ିଶା ରାଜନୀତିରେ ନାଟକୀୟ ପରିବର୍ତ୍ତନ ଆରମ୍ଭ ହେଲା । ବୀରେନ୍ ମିତ୍ରଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ତାଙ୍କ ବିରୁଦ୍ଧରେ ନାନା ଅସଂଗତ ଆଚରଣର ଅଭିଯୋଗ ହେଲା । ବିଜୁ ପଟ୍ଟନାୟକଙ୍କ କଳିଙ୍ଗ ଟିଉବ୍‌ସ୍‌ରୁ ପାଇପ୍ ଆଣି ତାଙ୍କ ସ୍ତ୍ରୀ ସରକାରଙ୍କୁ ପାଇପ୍ ଯୋଗାଇ ପନ୍ଦର ଲକ୍ଷ ଟଂକା ଲାଭ କରିଛନ୍ତି ବୋଲି ଗୋଟିଏ ସାମ୍ବାଦିକ ସମ୍ମିଳନୀରେ ସେ ନିଜେ ସ୍ୱୀକାର କରିଥିଲେ । ଅସଦାଚରଣର ଅଭିଯୋଗ ଓ ରାଜନୈତିକ ବିରୋଧର ମଂଚ ଉପରେ ବସି ସେ ଅଧିକ ଦିନ ନେତୃତ୍ୱ ରଖି ପାରିଲେ ନାହିଁ । କେନ୍ଦ୍ର କ୍ୟାବିନେଟ୍ ସବ୍ କମିଟି ଏହି ଅଭିଯୋଗଗୁଡ଼ିକର ତଦନ୍ତ କରି ତାଙ୍କ ବିରୁଦ୍ଧରେ ରିପୋର୍ଟ ଦେଲେ । ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର ଶାସ୍ତ୍ରୀଙ୍କ ନିର୍ଦ୍ଦେଶ ଅନୁଯାୟୀ ଜାନୁୟାରୀ ଶେଷ ଭାଗରେ ବିଜୁ ପଟ୍ଟନାୟକ ଯୋଜନା ବୋର୍ଡ଼ର ଅଧ୍ୟକ୍ଷ ପଦ ତ୍ୟାଗ କଲେ

ଓ ବୀରେନ୍ ମିତ୍ର ଫେବ୍ରୁଆରୀ ୨୦ ତାରିଖରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ତାଙ୍କ ସ୍ଥାନରେ କଂଗ୍ରେସ ଦଳର ନେତା ନିର୍ବାଚିତ ହେଲେ କୋରାପୁଟର ବରିଷ୍ଠ ମନ୍ତ୍ରୀ ସଦାଶିବ ତ୍ରିପାଠୀ । ସଦାଶିବ ବାବୁ ମଧ୍ୟ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଦୁଇ ବର୍ଷ ଧରି ଓଡ଼ିଶାରେ ରାଜନୈତିକ ସଂକଟ ଲାଗି ରହିଲା । ଏହି ରାଜନୈତିକ ଅସ୍ଥିରତା ମଧ୍ୟରେ ହାଇକୋର୍ଟ ଓ ସରକାରଙ୍କ ମଧ୍ୟରେ ସଂପର୍କ ମଧ୍ୟ ଅତି ଅସ୍ଥିର ଅବସ୍ଥାରେ ରହିଲା ।

କଟକରୁ ହାଇକୋର୍ଟ ଭୁବନେଶ୍ୱରକୁ ସ୍ଥାନାନ୍ତରିତ କରିବା ପାଇଁ ଅହମଦ୍ ଉଦ୍ୟମ ଆରମ୍ଭ କଲେ । କ୍ୟାପିଟାଲ ନିର୍ମାଣ ଯୋଜନାରେ ହାଇକୋର୍ଟ ପାଇଁ ଜମି ସ୍ୱତନ୍ତ୍ର ଭାବରେ ନିର୍ଦ୍ଧାରିତ ହୋଇଥିଲା । ଏ ବିଷୟରେ ଚିଫ୍ ଜଷ୍ଟିସ୍ ଆଡ୍‌ଭୋକେଟମାନଙ୍କର ମତାମତ ଲୋଡ଼ିଥିଲେ ଓ ବହୁ ବରିଷ୍ଠ ଆଡ୍‌ଭୋକେଟ ଏ ପ୍ରସ୍ତାବରେ ସମ୍ମତି ଦେଇଥିଲେ । କିନ୍ତୁ ସରକାରୀ ସ୍ତରରେ ଏ ପ୍ରସ୍ତାବ ପ୍ରତି କେହି କର୍ଣ୍ଣପାତ କଲେ ନାହିଁ । କଟକରେ ଯେଉଁ କୋଠାରେ ବର୍ତ୍ତମାନ ହାଇକୋର୍ଟର କାର୍ଯ୍ୟ ଚାଲୁଅଛି, ତାହା ଆରମ୍ଭରେ ଥିଲା ଜିଲ୍ଲା ଜଜ୍ ଓ ସବ୍‌ଜଜ୍ କୋର୍ଟ । ଚିଫ୍ ଜଷ୍ଟିସଙ୍କ ଚାମ୍ବର, କନ୍‌ଫରେନ୍ସ ହଲ ଓ ବର୍ତ୍ତମାନ ଆଡ୍‌ଭୋକେଟ୍ ଜେନେରାଲଙ୍କ ଅଫିସ୍ ବ୍ଲକ୍, ପରେ ବର୍ମନ ଚିଫ୍ ଜଷ୍ଟିସ୍ ଥିବା ସମୟରେ ନିର୍ମିତ ହୋଇଛି । ଦକ୍ଷିଣ ଦିଗର ଏକ୍ସଟେନ୍‌ସନ, ଚିଫ୍ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ରଙ୍କ ସମୟରେ ଆରମ୍ଭ । ଏବେ ଯେଉଁ ତିନି ମହଲା କୋଠା ହାଇକୋର୍ଟ ଅଫିସ୍ ଓ ବାର ଆସୋସିଏସନ ହଲ ରୂପେ ବ୍ୟବହୃତ ହେଉଛି ତାହା ଚିଫ୍ ଜଷ୍ଟିସ ହରିଲାଲ ଅଗ୍ରବାଲଙ୍କ ସମୟରେ ନିର୍ମିତ । ଅଥଚ ହାଇକୋର୍ଟର ପରିବୃଦ୍ଧି ନିମିତ୍ତ ଅହମ୍ମଦ୍‌ଙ୍କ କୌଣସି ପ୍ରସ୍ତାବ ସରକାରୀ ସମର୍ଥନ ଲାଭ କରି ନଥିଲା । ସେ ସମୟରେ ଚିଫ୍ ଜଷ୍ଟିସଙ୍କୁ ବାଦ୍ ଦେଇ ହାଇକୋର୍ଟରେ ମାତ୍ର ତିନିଜଣ ଜଜ୍ ଥିଲେ । ଜଷ୍ଟିସ୍ ସତ୍ୟଭୂଷଣ ବର୍ମନ, ଜଷ୍ଟିସ୍ ଆର.କେ.ଦାସ ଓ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ର । ଦୁଇଟି ଯାକ ଅତିରିକ୍ତ ବିଚାରପତି ପଦ ଶୂନ୍ୟ ଥିଲା । ନୂତନ ଜଜ୍ ନିଯୁକ୍ତି ପାଇଁ ଚିଫ୍ ଜଷ୍ଟିସ୍‌ଙ୍କର ଉଦ୍ୟମ ଫଳପ୍ରଦ ହେଲା ନାହିଁ । ମୋର ମନେ ଅଛି, ୧୯୬୫ ମସିହା ଡିସେମ୍ବର ମାସରେ ମୋର ଭୁବନେଶ୍ୱର ଘରର ପ୍ରତିଷ୍ଠା ପାଇଁ ରାତ୍ରି ଭୋଜନର ଆୟୋଜନ କରିଥିଲି । ଅନ୍ୟମାନଙ୍କ ସହିତ ଚିଫ୍ ଜଷ୍ଟିସ୍ ଅହମଦ୍, ଜଷ୍ଟିସ ବର୍ମନ, ଜଷ୍ଟିସ୍ ଦାସ, ଆଡ୍‌ଭୋକେଟ ଜେନେରାଲ ଦୀନବଂଧୁ ସାହୁ, ଆଇନ ମନ୍ତ୍ରୀ ବନମାଳୀ ବାବୁ ଓ ଆଇନ ସଚେତକ କେ. କେ. ବୋଷ ମଧ୍ୟ ଉପସ୍ଥିତ ଥିଲେ । ଚିଫ୍ ଜଷ୍ଟିସ୍ ସେଠାରେ ହାଇକୋର୍ଟର ବିଭିନ୍ନ ସମସ୍ୟା ଉପରେ ଆଇନ ମନ୍ତ୍ରୀ

ଓ ଆଡ୍‌ଭୋକେଟ୍ ଜେନେରାଲଙ୍କ ସହ ବିସ୍ତୃତ ଆଲୋଚନା କରିଥିଲେ । କିନ୍ତୁ ଏହି ବ୍ୟକ୍ତିଗତ ଆଲୋଚନାର ମଧ୍ୟ କୌଣସି ଫଳ ହେଲା ନାହିଁ । ଚିଫ୍ ଜଷ୍ଟିସଙ୍କର ଧାରଣା ହେଲା, କେହି ସ୍ୱାର୍ଥାନ୍ୱେଷୀ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀଙ୍କର ନାସ୍ତିବାଚକ କାର୍ଯ୍ୟଧାରାକୁ ନିୟନ୍ତ୍ରିତ କରୁଛି ।

ଉପରୋକ୍ତ ଘଟଣାଗୁଡ଼ିକରୁ ସ୍ପଷ୍ଟ ଅନୁମିତ ହେବ ଯେ, ଅହମଦ୍ ଓଡ଼ିଶାରେ ସୁଖୀ ନଥିଲେ । ବେଳେ ବେଳେ ମନେ ହେଉଥିଲା, ଯେପରି ନିରପେକ୍ଷ ନ୍ୟାୟନୀତି ବ୍ୟତୀତ ଅନ୍ୟାନ୍ୟ ବିଷୟ ତାଙ୍କ ବିଚାରଧାରାକୁ ପ୍ରଭାବିତ କରୁଛି । ଅସନ୍ତୁଷ୍ଟ ଓ ହତାଶ ବ୍ୟକ୍ତି ପକ୍ଷରେ ଏହା ଅସ୍ୱାଭାବିକ ନୁହେ । ନିଜ ଅନୁଭୂତିରୁ ଗୋଟିଏ ଘଟଣା ଉଲ୍ଲେଖ କରୁଛି । ଥରେ (ସ୍ୱର୍ଗୀୟ) ବରଦାକାନ୍ତ ମିଶ୍ର ହାଇକୋର୍ଟରେ ଗୋଟିଏ ରିଟ୍ କେସ୍ ଦାଖଲ କରି ଅଭିଯୋଗ କରିଥିଲେ ଯେ ତାଙ୍କୁ ବେଆଇନ ଭାବରେ ଆଡ଼ିସନାଲ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ (ଜୁଡ଼ିସିଆଲ) ପଦରୁ ସବଜଜ୍ ପଦକୁ ରିଭର୍ସନ କରିଦିଆଯାଇଛି । କେସରେ ପକ୍ଷ ଥିଲେ ସରକାର ଓ ହାଇକୋର୍ଟ । ହାଇକୋର୍ଟର ସମସ୍ତ ଜଜ୍ ଏକତ୍ର ବିଚାର କରି ସୁପାରିଶ କରିବା ପରେ ସରକାର ଏହି ସୁପାରିଶ ଗ୍ରହଣ କରି ରିଭର୍ସନ ଆଦେଶ ଦେଇଥିଲେ । ବରଦାକାନ୍ତଙ୍କ ପକ୍ଷରୁ ପୂର୍ବତନ ଆଡ୍‌ଭୋକେଟ ଜେନେରାଲ ବାଂଛାନିଧି ମହାପାତ୍ର, ସରକାରଙ୍କ ପକ୍ଷରୁ ମୁଁ ଓ ହାଇକୋର୍ଟ ପକ୍ଷରୁ ଶ୍ରୀକାନ୍ତ ମହାନ୍ତି ଏହି ମୋକଦ୍ଦମା ଚଳାଉଥାଉ । ଦରଖାସ୍ତକାରୀଙ୍କ ତରଫରୁ ପବ୍ଲିକ୍ ସର୍ଭିସ୍ କମିସନ୍‌ଙ୍କ ସୁପାରିଶ ସଂବଳିତ ଏକ ଦଲିଲ କୋର୍ଟରେ ଦାଖଲ କରିବା ପାଇଁ ଆବେଦନ କରାଯାଇଥାଏ । ଏହା ଏକ ଗୋପନୀୟ ଦଲିଲ ଏବଂ କୋର୍ଟରେ ଏହାର ପରିପ୍ରକାଶ ଜନସ୍ୱାର୍ଥ ବିରୋଧୀ ହେବ, ଏହି ମର୍ମରେ ସରକାରଙ୍କ ତରଫରୁ ବିଶେଷ ଅଧିକାର ବା ପ୍ରିଭିଲେଜ ଦାବୀ କରାଯାଇଥାଏ । ସରକାରଙ୍କ ସଂପୃକ୍ତ ବିଭାଗର ସେକ୍ରେଟାରୀ ଏହି ଆପତ୍ତି ସପକ୍ଷରେ କୋର୍ଟରେ ଆଫିଡେ଼ଭିଟ୍ ବା ସତ୍ୟପାଠ ଦାଖଲ କରିଥାନ୍ତି ।

ରିଟ୍ କେସର ବିଚାର ଆରମ୍ଭ ହେଲା ଚିଫ୍ ଜଷ୍ଟିସ୍ ଅହମ୍ମଦ୍ ଓ ଜଷ୍ଟିସ୍ ବର୍ମନଙ୍କ ଇଜଲାସରେ । ହାଇକୋର୍ଟର ସମସ୍ତ ଜଜ୍ ବା ଫୁଲକୋର୍ଟ ଯେଉଁ ପ୍ରଶାସନିକ ନିଷ୍ପତ୍ତି ନେଇଛନ୍ତି, ତା ପ୍ରତି କୌଣସି ଗୁରୁତ୍ୱ ନ ଦେଇ ନୂତନ ଚିଫ୍ ଜଷ୍ଟିସ୍ ଦରଖାସ୍ତକାରୀଙ୍କ ସପକ୍ଷରେ ଆରମ୍ଭରୁ ମତାମତ ପ୍ରକାଶ କରିବାକୁ ଆରମ୍ଭ କଲେ । ଶ୍ରୀକାନ୍ତ ବାବୁ ଓ ମୁଁ ଆଶ୍ଚର୍ଯ୍ୟ ଓ ଶଙ୍କିତ ହେଲୁ । ଚିଫ୍ ଜଷ୍ଟିସ୍‌ଙ୍କ ଇଜଲାସର କାନ୍ଥରେ ଏକ ବିରାଟ ତୁଳାଦଣ୍ଡର ଛବି ରହିଛି ଓ ତା ତଳେ ଲେଖାଅଛି "ନ୍ୟାୟଃ ତୁ ଅବଧାରଣୀୟଃ ।" ଶ୍ରୀକାନ୍ତ ବାବୁ ମତେ

ପରିହାସରେ କହିଲେ, "ନ୍ୟାୟଦଣ୍ଡର କଣ୍ଟା କ'ଣ ଆରମ୍ଭରୁ ସେ ପଟକୁ ଝୁଲି ରହିଛି?" ମୁଁ ଉତ୍ତର ଦେଲି "ଚିଫ୍ ଜଷ୍ଟିସ ସଂସ୍କୃତ ଜାଣନ୍ତି ନାହିଁ, ସେଥିପାଇଁ ବୋଧହୁଏ ଏ ଅସ୍ୱାଭାବିକତା ।" ବିଚାରର ଦ୍ୱିତୀୟ ଦିନ ଆବେଦନକାରୀ ତଲବ୍ କରିଥିବା ଦଲିଲଟି ପେଶ୍ କରିବା ପାଇଁ ଚିଫ୍ ଜଷ୍ଟିସ୍ ନିର୍ଦ୍ଦେଶ ଦେଲେ । ସିଲ୍ କରା ହୋଇଥିବା ଲଫାପାଟି ମୁଁ କୋର୍ଟକୁ ବଢ଼ାଇ ଦେଇ କହିଲି, "ଲଫାପାରେ ଥିବା ଦଲିଲ ସଂପର୍କରେ ଆମେ 'ପ୍ରିଭିଲେଜ' ଦାବୀ କରିଛୁ ।" ଚିଫ୍ ଜଷ୍ଟିସ୍ କିଛି ନ ଶୁଣିବା ପରି ଲଫାପାଟି ଖୋଲିବାକୁ ଆରମ୍ଭ କଲେ । ମୁଁ ଠିଆ ହୋଇ ପୁନର୍ବାର କହିଲି, "ପ୍ରିଭିଲେଜ ସଂକ୍ରାନ୍ତୀୟ ଆପତ୍ତି ଉପରେ ଶୁଣାଣି ହେବା ପୂର୍ବରୁ ଲଫାପାଟି ଖୋଲିବା ସଂଗତ ହେବ ନାହିଁ ।" ସେ ନବାବୀ ଢଂଗରେ କହିଲେ, "ଓଃ, କୋର୍ଟ ପ୍ରତି ଏ ପ୍ରତିବନ୍ଧକ ପ୍ରଯୁଜ୍ୟ ନୁହେ ।" ଏତିକି କହି ସେ ଲଫାପାରୁ ଦଲିଲଟି ବାହାର କରି ପଢ଼ିବାକୁ ଆରମ୍ଭ କଲେ । ଚିଫ୍ ଜଷ୍ଟିସ୍‌ଙ୍କର ଏତାଦୃଶ ଖାମଖିଆଲୀ ଆଚରଣରେ ଆମ୍ଭେମାନେ ସ୍ତମ୍ଭୀଭୂତ ହୋଇଗଲୁ । ମୁଁ ସାହସ ବାନ୍ଧି ପୁଣି ଥରେ ଗମ୍ଭୀର ଭାବରେ କହିଲି, "ଗୋପନୀୟ ଦଲିଲ ପ୍ରକାଶ ବିରୁଦ୍ଧରେ ଯେଉଁ ଆପତ୍ତି ଦିଆଯାଇଛି, ତା ଉପରେ ନିଷ୍ପତ୍ତି ଦେବା ପୂର୍ବରୁ ମାନ୍ୟବର କୋର୍ଟ ଦଲିଲଟି ପଢ଼ିବା ଆଇନ ସଂଗତ ହେବ ନାହିଁ ।" ମୋର କୌଣସି ଯୁକ୍ତି ତାଙ୍କ କର୍ଣ୍ଣରେ ପ୍ରବେଶ କଲା ଭଳି ମନେ ହେଉ ନଥିଲା । ଦଲିଲର ପଠନ ଶେଷ କରି ସେ ଜଷ୍ଟିସ୍ ବର୍ମନଙ୍କ ହାତକୁ ଦଲିଲଟି ପଢ଼ିବା ପାଇଁ ବଢ଼ାଇ ଦେଲେ । ତା ପରେ ଯାହା ହେଲା ତାହା ସଂପୂର୍ଣ୍ଣ ଅବିସ୍ମରଣୀୟ ଓ ମୋ ଜୀବନର ଏକ ଉଲ୍ଲେଖନୀୟ ଘଟଣା ।

ଜଷ୍ଟିସ୍ ଅହମଦ୍ ଯେତେବେଳେ ଦଲିଲଟି ପଢୁଥିଲେ, ଆମେ ଅନୁଭବ କଲୁ, କ୍ଷୋଭ ଓ ବିରକ୍ତିରେ ଜଷ୍ଟିସ୍ ବର୍ମନଙ୍କର ମୁହଁ ଯେପରି ଅଧିକରୁ ଅଧିକ ଲାଲ ହୋଇ ଉଠୁଛି, ସେ ଯେପରି ସଂପୂର୍ଣ୍ଣ ବିବ୍ରତ । ପଢ଼ିବା ତ ଦୂରର କଥା, ସେ କାଗଜ କେତେ ଖଣ୍ଡ ଚିଫ୍ ଜଷ୍ଟିସ୍‌ଙ୍କ ହାତରୁ ଗ୍ରହଣ ନ କରି ମୋ ଆଡ଼କୁ ଚାହିଁ ଦୃଢ଼ କଂଠରେ ଓ ଉଚ୍ଚ ଗଳାରେ କହିଲେ, "ମିଷ୍ଟର ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ! ତୁମେ ଯେଉଁ ପ୍ରିଭିଲେଜ ଆପତ୍ତି ଉତ୍‌ଥାପନ କରିଛ, ସେ ବିଷୟରେ ତୁମର ଯୁକ୍ତି ଶୁଣି ନିଷ୍ପତ୍ତି ନ ଦେବା ପର୍ଯ୍ୟନ୍ତ, ଏ କାଗଜ ପଢ଼ିବା ତ ଦୂରର କଥା, ମୁଁ ତାକୁ ସ୍ପର୍ଶ କରିବି ନାହିଁ, ସେଥି ପ୍ରତି ଦୃଷ୍ଟିପାତ ମଧ୍ୟ କରିବି ନାହିଁ ।" ବର୍ମନ ସାହେବଙ୍କର ମନ୍ତବ୍ୟରେ କୋର୍ଟ ଗୃହରେ ଚାଂଚଲ୍ୟ ଖେଳିଗଲା । ତାଙ୍କର ଦୃଢ଼ତା ଓ ନ୍ୟାୟନିଷ୍ଠ

ପ୍ରତିରୋଧ ଦେଖି କୃତଜ୍ଞତାରେ ମୋ ଆଖି ଛଳ ଛଳ ହୋଇ ଉଠିଲା । ସମସ୍ତେ ଅବାକ୍ ହୋଇଗଲେ ଯେ ଜଣେ ଜୁନିୟର ଜଜ୍, ଚିଫ୍ ଜଷ୍ଟିସଙ୍କର ଏତାଦୃଶ ଖାମଖିଆଲୀ ଆଚରଣର ଖୋଲାଖୋଲି ପ୍ରତିରୋଧ କରିବାକୁ ପଶ୍ଚାତ୍‌ପଦ ନୁହନ୍ତି । ଅବଶ୍ୟ ଆଇନ ଅନୁଯାୟୀ ମୋକଦ୍ଦମା ବିଚାର କ୍ଷେତ୍ରରେ ଉଭୟ ଜଜ୍‌ଙ୍କର ସମାନ ଅଧିକାର । ଚିଫ୍ ଜଷ୍ଟିସଙ୍କ ସହ ଅନ୍ୟ ଜଜ୍‌ମାନେ ସହମତ ହେବାକୁ ବାଧ୍ୟ ନୁହନ୍ତି । ସେଥିପାଇଁ ସୁପ୍ରିମ କୋର୍ଟରେ ବହୁ କେସ୍‌ରେ ଜଜ୍‌ମାନେ ଭିନ୍ନ ମତ ପୋଷଣ କରିଥା'ନ୍ତି ଏବଂ ଶେଷରେ ବହୁମତ ଅନୁଯାୟୀ ମୋକଦ୍ଦମାର ଚୂଡ଼ାନ୍ତ ନିଷ୍ପତ୍ତି ଘୋଷିତ ହୁଏ । ଅନ୍ୟ ହାଇକୋର୍ଟମାନଙ୍କରେ ମଧ୍ୟ ଏହି ପରଂପରା ପ୍ରଚଳିତ । କିନ୍ତୁ ସହଯୋଗୀ ଜଜ୍‌ଙ୍କଠାରୁ ଭିନ୍ନ ମତ ପୋଷଣ କରିବାର ଦୃଷ୍ଟାନ୍ତ ଓଡ଼ିଶାରେ ବିରଳ ।

ଯାହାହେଉ, ଜଷ୍ଟିସ୍ ବର୍ମନଙ୍କର ମନୋଭାବ ଦେଖି, ଚିଫ୍ ଜଷ୍ଟିସ୍ ପଛଘୁଂଚା ଦେଲେ ଓ 'ପ୍ରିଭିଲେଜ' ଆପତ୍ତି ଉପରେ ମୋର ବକ୍ତବ୍ୟ ପେଶ୍ କରିବା ପାଇଁ ନିର୍ଦ୍ଦେଶ ଦେଲେ । ମୌଖିକ ବାଦାନୁବାଦ ପାଇଁ କୋର୍ଟ ହଲ୍‌ରେ ଉପଯୁକ୍ତ ବାତାବରଣ ନଥିଲା । ମୁଁ ୧୯୬୧ରେ ଘୋଷିତ ସୋଧି ସୁଖଦେବ ସିଂ କେସରେ ସୁପ୍ରିମ କୋର୍ଟର ରାୟ ଓ ସଦ୍ୟ ପ୍ରକାଶିତ କଲିକତା ଓ ବମ୍ବେ ହାଇକୋର୍ଟର ଦୁଇଟି ନିଷ୍ପତ୍ତିର ନଜିର ପାଠ କଲି । ଉଭୟ ବିଚାରପତି ମୋ ସହିତ ଏକମତ ହୋଇ ପ୍ରିଭିଲେଜ ଆପତ୍ତି ଗ୍ରହଣ କରିନେଲେ । ତା ପରେ ଯାହାହେଲା, ଏହି ଦୀର୍ଘ ଅଠେଇଶ ବର୍ଷ ପରେ ମଧ୍ୟ ସେ ଦୃଶ୍ୟ ମନରେ ଜୀବନ୍ତ ରହିଛି ।

ଚିଫ୍ ଜଷ୍ଟିସ୍ ଅହମଦ୍ ତାଙ୍କର ଅନ୍ୟାୟ ଓ ଅସଙ୍ଗତ ଆଚରଣର ତାତ୍ପର୍ଯ୍ୟ ବୁଝିଲେ କି ନାହିଁ ଜଣାନାହିଁ । କିନ୍ତୁ କୌଣସି କଥା ନ କହି, ସେ ସମସ୍ତଙ୍କ ସାମନାରେ ଦଲିଲ୍‌ଟି ଲଫାପାରେ ଭର୍ତ୍ତି କଲେ । ଅଫିସରୁ ଚପ୍ରାସି ଜରିଆରେ ଅଠା ବୋତଲ ମଗାଇ ନିଜ ହାତରେ ଲଫାପାଟି ବନ୍ଦ କରି ମୋତେ ଫେରାଇ ଦେଲେ । ଇଂରେଜୀରେ ଯାହାକୁ କହନ୍ତି "ଟୁ ଇଟ୍ ହିଜ୍ ଅମ୍ଳ ପାଇ" ତା'ର ପୁନରାବୃତ୍ତି ଘଟିଲା । ଅତି ସୁବୋଧ ବାଳକ ପରି ଲଫାପାଟି ମୁଁ ଫାଇଲରେ ବାଂଧିଦେଲି । ଅହମଦ୍ ବୋଧହୁଏ ନିଜର ଉଦାରତା ଓ ନିରପେକ୍ଷତା ପ୍ରମାଣ କରିବା ପାଇଁ ଲଫାପା ନିଜ ହାତରେ ବନ୍ଦ କରିବାର ପ୍ରହସନ କରିଥିଲେ । ମୋର ସ୍ମରଣ ଅଛି, କୋର୍ଟରେ ବାଦ ପ୍ରତିବାଦର ଏହି ନାଟକ ଚାଲିଥିବା ସମୟରେ ମୋ ପାଖରେ ବସିଥିବା ଜଣେ ବରିଷ୍ଠ ଆଇନଜୀବୀ ମୋତେ ଉପଦେଶ ଛଳରେ କହିଥିଲେ "ମୋକଦ୍ଦମାର ଫଳାଫଳ ଯାହା

ହେଉନା କାହିଁକି, ମୁଁ ଏତେଦୂର ଜିଦ୍‌ଖୋର ହେବା ଉଚିତ ନୁହେ।'' ମୁଁ, ତାଙ୍କୁ ଉତ୍ତର ଦେଇଥିଲି ''ବିନା ପ୍ରତିବାଦରେ ଅନ୍ୟାୟ ଆଗରେ ମୁଣ୍ଡ ନୋଇଁ ଦେବା କାପୁରୁଷତା ହେବ।'' ଏବେ ପରିଣତ ବୟସରେ, ପୂର୍ବର ସେହି ଦୃଢ଼ ମନୋବଳ ଆଉ ଅଛି କି ନାହିଁ, କହି ପାରୁ ନାହିଁ। କିନ୍ତୁ ଏତିକି କହିପାରେ ଯେ ସେ ଦିନ କୋର୍ଟରେ ମୋର ଆଚରଣ ସଂପୂର୍ଣ୍ଣ ଭଦ୍ରୋଚିତ, ନ୍ୟାୟ ସଂଗତ ଓ ଅତି ଆବଶ୍ୟକ ଥିଲା। ସବୁ ବାଦାନୁବାଦ ଶେଷ ହେବା ପରେ ପୂର୍ବୋକ୍ତ ବରିଷ୍ଠ ଅଧିବକ୍ତା ମତ ପରିବର୍ତ୍ତନ କରି ମୋତେ ବାରବାର ବଧାଇ ଦେଇଥିଲେ ଓ ଜଷ୍ଟିସ୍ ବର୍ମନଙ୍କର ଭୂରିଭୂରି ପ୍ରଶଂସା କରିଥିଲେ।

ଦୁଇଦିନ ପରେ ମୂଳ ମୋକଦ୍ଦମାର ବିଚାର ଶେଷ ହେଲା। ବରଦାକାନ୍ତଙ୍କର ରିଟ୍ ଆବେଦନ ନାମଂଜୁର ହୋଇଥିଲା। ନିଜେ ଅହମଦ୍ ରାୟଟି ଲେଖିଥିଲେ ଓ ତାହା ୧୯୬୬ ମସିହା ଇଣ୍ଡିଆନ ଲ' ରିପୋର୍ଟର କଟକ ସିରିଜରେ ପ୍ରକାଶିତ ହୋଇଛି।

ଓଡ଼ିଶାରେ ଜଷ୍ଟିସ୍ ଅହମଦ୍‌ଙ୍କର ଦୁଇ ବର୍ଷ ଦୁଇ ମାସର କାର୍ଯ୍ୟକାଳ ମଧ୍ୟରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ସାଂବିଧାନିକ ମୋକଦ୍ଦମାର ନିଷ୍ପତ୍ତି ହେଲା। ସୁପିରିଅର ଜୁଡ଼ିସିଆଲ ସର୍ଭିସର ସଦସ୍ୟ ଥିବା ଯେଉଁ ଜିଲା ଜଜ୍ ବା ଆଡ଼ିସନାଲ ଜଜ୍‌ମାନେ ସରକାରଙ୍କ ଅଧୀନରେ ବିଭିନ୍ନ ସ୍ୱତନ୍ତ୍ର ପୋଷ୍ଟରେ କାର୍ଯ୍ୟ କରୁଅଛନ୍ତି, ସମ୍ବିଧାନର ୨୩୫ ଅନୁଚ୍ଛେଦରେ ପ୍ରଦତ୍ତ କ୍ଷମତା ଅନୁଯାୟୀ ହାଇକୋର୍ଟ ସେମାନଙ୍କୁ ନିଜ ନିୟନ୍ତ୍ରଣକୁ ଫେରାଇ ଆଣି ପାରିବେ କି ନାହିଁ ଏବଂ ସେ ସ୍ଥାନରେ ଅନ୍ୟ ଜିଲ୍ଲା ଜଜ୍ ନିଯୁକ୍ତ କରି ପାରିବେ କି ନାହିଁ, ଏହାହିଁ ଥିଲା ମୋକଦ୍ଦମାର ବିଚାର୍ଯ୍ୟ ବିଷୟ। ମୋ ଦୃଷ୍ଟିରୁ ଏହି ରିଟ୍ ମୋକଦ୍ଦମାର ସର୍ବଭାରତୀୟ ଗୁରୁତ୍ୱ ଥିଲା। ମୋର ସୌଭାଗ୍ୟ ଯେ ଏହି ମୋକଦ୍ଦମାର ବିଚାର ସହିତ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ ଭାବରେ ମୁଁ ଉଭୟ ହାଇକୋର୍ଟ ଓ ସୁପ୍ରିମକୋର୍ଟରେ ଘନିଷ୍ଠ ଭାବରେ ଜଡ଼ିତ ଥିଲି।

୧୯୬୫ ମସିହା ଫେବ୍ରୁଆରୀ ମାସରେ ହାଇକୋର୍ଟ ଏକ ପ୍ରଶାସନିକ ନିଷ୍ପତ୍ତି ନେଇଥିଲେ ଯେ ସୁପିରିଅର ଜୁଡ଼ିସିଆଲ ସର୍ଭିସର ଯେଉଁ ସଦସ୍ୟମାନେ ସରକାରଙ୍କ ଅଧୀନରେ ସ୍ୱତନ୍ତ୍ର ପୋଷ୍ଟରେ କାର୍ଯ୍ୟ କରୁଅଛନ୍ତି, ସେମାନେ ସେ ସବୁ ପୋଷ୍ଟରେ ତିନି ବର୍ଷରୁ ଅଧିକ କାଳ ରହିବା ଉଚିତ୍ ନୁହେ। ବିଚାର ବିଭାଗରୁ ବହୁଦିନ ଧରି ବିଚ୍ଛିନ୍ନ ରହି, ଏହି ଜିଲ୍ଲା ଜଜ୍‌ମାନଙ୍କର ଆଇନ ଜ୍ଞାନ ଓ ବିଚାର ଶକ୍ତି କ୍ରମେ ମଳିନ ହୋଇଯିବାର ସମ୍ଭାବନା

ଅଛି । ହାଇକୋର୍ଟର ଏହି ପ୍ରଶାସନିକ ନିଷ୍ପତ୍ତି ସରକାରଙ୍କ ନିକଟକୁ ପଠା ହୋଇଥିଲା । କିନ୍ତୁ ସରକାର ଏହି ତିନି ବର୍ଷିଆ ନୀତି ସହ ଏକମତ ହେଲେ ମଧ୍ୟ କାର୍ଯ୍ୟତଃ ଏ ଦିଗରେ କୌଣସି ପଦକ୍ଷେପ ନେଲେ ନାହିଁ । ବରିଷ୍ଠ ଜିଲ୍ଲା ଜଜ୍ ବି.କେ. ପାତ୍ର (ପରେ ଜଷ୍ଟିସ୍ ପାତ୍ର) ୧୯୬୨ ମସିହାରୁ ଆଇନ ସଚେତକ ବା ଲେଗାଲ ରିମେମ୍ବ୍ରାନ୍ସର ରୂପେ କାର୍ଯ୍ୟ କରି ୧୯୬୫ ମସିହାରେ ଆଇନ ସଚିବ ରୂପେ ପଦୋନ୍ନତି ପାଇ ସେହି ଭୁବନେଶ୍ୱରରେ ଅବସ୍ଥାପିତ ହୋଇଥିଲେ । କେ. କେ. ବୋଷ ତିନି ବର୍ଷ ଜଏଣ୍ଟ ସେକ୍ରେଟାରୀ ରହିବା ପରେ ପଂଚଷଠି ମସିହାରେ ଆଇନ ସଚେତକ ଭାବରେ ପଦୋନ୍ନତି ପାଇଥିଲେ । ପି. ସି. ଦେ ମଧ୍ୟ ବହୁ ବର୍ଷ ଧରି ସେଲ୍‌ସ୍‌ଟ୍ୟାକ୍ସ ଟ୍ରାଇବ୍ୟୁନାଲର ସଦସ୍ୟ ଭାବରେ କାର୍ଯ୍ୟ କରୁଥିଲେ । ଯାହାହେଉ ସବୁ ଜଜ୍‌ଙ୍କର (ଫୁଲ କୋର୍ଟ) ମିଳିତ ନିଷ୍ପତ୍ତି ପ୍ରତି ସରକାରଙ୍କର ଉଦାସୀନତା ବିରୁଦ୍ଧରେ ଘରୋଇ ବିଭାଗକୁ ସ୍ମାରକ ପତ୍ର ପଠାଇବା ବ୍ୟତୀତ ଅନ୍ୟ କୌଣସି ଫଳପ୍ରଦ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ହାଇକୋର୍ଟର ଆଇନଗତ କ୍ଷମତା ନାହିଁ ବୋଲି ବିଚାର କରାଯାଉଥିଲା । କାରଣ ଗଭର୍ଣ୍ଣରଙ୍କ ଦ୍ୱାରା ପ୍ରଣୀତ ସୁପିରିଅର ଜୁଡ଼ିସିଆଲ ସର୍ଭିସ ରୁଲରେ ଉଲ୍ଲେଖ ଥିଲା ଯେ ଗଭର୍ଣ୍ଣର କେବଳ ହାଇକୋର୍ଟଙ୍କ ସହିତ ପରାମର୍ଶ କରି ଜିଲ୍ଲା ଜଜ୍‌ମାନଙ୍କୁ ସ୍ଥାନାନ୍ତରିତ କରିପାରିବେ । ୧୯୩୫ ମସିହା ଭାରତ ଶାସନ ଆଇନ ପ୍ରବର୍ତ୍ତିତ ହେବା ସମୟରୁ ଓଡ଼ିଶାରେ ଓ ଭାରତର ଅନ୍ୟ ସବୁ ରାଜ୍ୟରେ ଏହି ପ୍ରଥା ପ୍ରଚଳିତ ଥିଲା । ଚିଫ୍ ଜଷ୍ଟିସ୍ ସଂଦେହ କରୁଥିଲେ ଯେ ହାଇକୋର୍ଟର ସୁପାରିଶ ପ୍ରତି ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀଙ୍କର ଏପରି ବେଖାତିର ମନୋଭାବ ଅନ୍ତରାଳରେ ଜୟପୁରବାସୀ ଜିଲ୍ଲା ଜଜ୍ ଓ ତତ୍‌କାଳୀନ ଆଇନ ସଚିବ ବି. କେ. ପାତ୍ରଙ୍କର ପ୍ରଚ୍ଛନ୍ନ ପ୍ରଭାବ ରହିଛି ।

ଯାହାହେଉ ଏ ନତଯୌ ନତସ୍ଥୌ ଅବସ୍ଥା ବେଶି ଦିନ ରହିଲା ନାହିଁ । ୧୯୬୬ ମସିହାରେ ସୁପ୍ରିମ କୋର୍ଟର ପାଂଚ ଜଣ ଜଜ୍ ବିଶିଷ୍ଟ କନ୍‌ଷ୍ଟିଚ୍ୟୁସନ ବେଂଚ ଦ୍ୱାରା ପ୍ରଦତ୍ତ ଦୁଇଟି ନିଷ୍ପତ୍ତି ସମସ୍ତ ପ୍ରଚଳିତ ଚିନ୍ତାଧାରାକୁ ଓଲଟ ପାଲଟ କରିଦେଲା । ପଶ୍ଚିମବଂଗ ସରକାର ବନାମ ନୃପେନ୍ଦ୍ରନାଥ ବାଗ୍‌ଚି କେସ୍‌ରେ ସୁପ୍ରିମ କୋର୍ଟ ରାୟ ଦେଲେ ଯେ ଜିଲା ଜଜ୍‌ମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ କରିବାର କ୍ଷମତା ଗଭର୍ଣ୍ଣର ବା ସରକାରଙ୍କର ନାହିଁ । ସମ୍ବିଧାନର ୨୩୫ ଅନୁଚ୍ଛେଦ ବଳରେ ଏ କ୍ଷମତା କେବଳ ହାଇକୋର୍ଟଙ୍କ ଉପରେ ନ୍ୟସ୍ତ । ସେହି ବର୍ଷ ସେପ୍ଟେମ୍ବର ୨୧ ତାରିଖରେ ରଂଗା ମହମଦ୍

ବନାମ ଷ୍ଟେଟ ଅଫ୍ ଆସାମ ମୋକଦ୍ଦମାରେ ସୁପ୍ରିମ କୋର୍ଟ ୨୩୫ ଅନୁଚ୍ଛେଦର ବ୍ୟାପକ ପରିସର ସଂପର୍କରେ ଯେଉଁ ଅଭିମତ ଦେଲେ ତାର ତାତ୍ପର୍ଯ୍ୟ ଭାରତର ଆଇନ ଜଗତରେ ଚହଳ ପକାଇ ଦେଲା । ଜଷ୍ଟିସ୍ ହିଦାୟତଉଲ୍ଲା ତାଙ୍କର ରାୟରେ ଉଲ୍ଲେଖ କରିଥିଲେ ଯେ ୨୩୩ ଅନୁଚ୍ଛେଦରେ ଜିଲ୍ଲା ଜଜ୍‌ମାନଙ୍କୁ ନିଯୁକ୍ତ କରିବାର କ୍ଷମତା ଅବଶ୍ୟ ଗଭର୍ଣ୍ଣରଙ୍କ ହାତରେ ନ୍ୟସ୍ତ ହୋଇଛି ଓ ଗଭର୍ଣ୍ଣର କେବଳ ହାଇକୋର୍ଟ ସହିତ ପରାମର୍ଶ କରି ଜିଲା ଜଜ୍‌ମାନଙ୍କୁ ଚାକିରୀରେ ପ୍ରାଥମିକ ନିଯୁକ୍ତି ଓ ପୋଷ୍ଟିଂ ଦେଇ ପାରିବେ । କିନ୍ତୁ ସମ୍ବିଧାନ ୨୩୫ ଅନୁଚ୍ଛେଦରେ ଜିଲ୍ଲା ଜଜ୍‌ମାନଙ୍କୁ ନିୟନ୍ତ୍ରଣ ବା 'କଂଟ୍ରୋଲ' କରିବାର ସମସ୍ତ କ୍ଷମତା ହାଇକୋର୍ଟଙ୍କୁ ଦେଇ ଅଛନ୍ତି । ଏଣୁ ସରକାର ନୁହେ, ଏକମାତ୍ର ହାଇକୋର୍ଟ ଜିଲ୍ଲା ଜଜ୍‌ମାନଙ୍କୁ ଗୋଟିଏ ସ୍ଥାନରୁ ଅନ୍ୟତ୍ର ବଦଳି କରି ପାରିବେ ।

ଚିଫ୍ ଜଷ୍ଟିସ୍ ମନେ କଲେ ଯେ ରଂଗା ମହମ୍ମଦ୍ ନିଷ୍ପତ୍ତି ତାଙ୍କୁ ଏକ ବ୍ରହ୍ମାସ୍ତ୍ର ଅର୍ପଣ କରିଛି । ସରକାରଙ୍କ ଉପରେ ନିର୍ଭର ନ କରି, ହାଇକୋର୍ଟ ନିଜର କ୍ଷମତା ଜାହିର କରିବା ପାଇଁ ସେ ବଦ୍ଧପରିକର ହେଲେ । ଅକ୍ଟୋବର ଦଶ ତାରିଖ ଦିନ ହାଇକୋର୍ଟରେ ବଦଳି ନିର୍ଦ୍ଦେଶ ଜାରୀ ହେଲା ଓ ଅବିଳମ୍ବେ ତାହା ଗେଜେଟ୍‌ରେ ପ୍ରକାଶିତ ହେଲା । ଏହି ନିର୍ଦ୍ଦେଶ ଅନୁଯାୟୀ ଆଇନ ସଚିବ ବି. କେ. ପାତ୍ରଙ୍କୁ ଗଞ୍ଜାମ-ବଉଦ ଜିଲ୍ଲା ଜଜ୍ ଭାବରେ, ଆଇନ ସଚେତକ କେ. କେ. ବୋଷଙ୍କୁ ମୟୂରଭଞ୍ଜ-କେଉଁଝର ଜିଲ୍ଲା ଜଜ୍ ଭାବରେ ଓ ପି. ସ. ଦେଙ୍କୁ ବଲାଂଗୀର-କଳାହାଣ୍ଡି ଜିଲ୍ଲା ଜଜ୍ ଭାବରେ ବଦଳି କରାଗଲା । ଏପରି କି ସରକାରଙ୍କ ସହିତ ପରାମର୍ଶ ନ କରି, ସେକ୍ରେଟାରୀଏଟ୍‌ର ତିନୋଟି ପୋଷ୍ଟ ଅର୍ଥାତ୍ ଆଇନ ସଚିବ, ଡେପୁଟୀ ଆଇନ ସଚିବ ଓ ଆଇନ ସଚେତକ ପଦରେ ଜିଲ୍ଲା ଜଜ୍ କୁଞ୍ଜ ବିହାରୀ ପଣ୍ଡା, ପ୍ରଫୁଲ୍ଲ କିଶୋର ମହାନ୍ତି ଓ ତ୍ରିଲୋଚନ ମିଶ୍ରଙ୍କୁ ନିଯୁକ୍ତି ଦିଆହେଲା । କିନ୍ତୁ ହାଇକୋର୍ଟଙ୍କର ଏ ଆଦେଶ ସରକାର ଗ୍ରହଣ କରି ନେବାକୁ ପ୍ରସ୍ତୁତ ନଥିଲେ । ଶ୍ରୀ ପଣ୍ଡା, ଶ୍ରୀ ମିଶ୍ର ଓ ଶ୍ରୀ ମହାନ୍ତି ନିଜ ନିଜ ପଦରୁ ଅବ୍ୟାହତି ନେଇ ଭୁବନେଶ୍ୱରରେ ପହଂଚିଲେ ମଧ୍ୟ, ନୂତନ ପୋଷ୍ଟରେ ଯୋଗ ଦେଇ ପାରିଲେ ନାହିଁ । ସରକାର ଆଦେଶ ଦେଲେ ଯେ ଶ୍ରୀ ପାତ୍ର, ଶ୍ରୀ ବୋଷ ଓ ଶ୍ରୀ ଦେ ନିଜ ନିଜ ଦାୟିତ୍ୱରେ ପୂର୍ବବତ୍ ରହିବେ । ଏହିପରି ଭାବରେ ଆରମ୍ଭ ହେଲା ସରକାର ଓ ହାଇକୋର୍ଟଙ୍କ ମଧ୍ୟରେ ଗୁରୁତର ସାଂବିଧାନିକ ସଂଘର୍ଷ ଓ ସଂକଟ ।

ଅକ୍ଟୋବର ୧୬ ତାରିଖ ଦିନ ବଲାଂଗୀରର ଆଡ୍‌ଭୋକେଟ୍ ସୁଧାଂଶୁ ଶେଖର ମିଶ୍ର ହାଇକୋର୍ଟର ବଦଳି ଆଦେଶ କାର୍ଯ୍ୟକାରୀ କରିବା ପାଇଁ ସରକାରଙ୍କ ବିରୁଦ୍ଧରେ ଏକ ରିଟ୍ କେସ ଦାଏର କଲେ । ଏଥିରେ ଓଡ଼ିଶା ସରକାର, ହାଇକୋର୍ଟ, ବି. କେ. ପାତ୍ର, କେ. କେ. ବୋଷ ଓ ପି. ସି. ଦେଙ୍କୁ ମଧ୍ୟ ପକ୍ଷଭୁକ୍ତ କରାଯାଇଥିଲା । ପାତ୍ର, ବୋଷ ଓ ଦେଙ୍କ ବିରୁଦ୍ଧରେ କୋର୍ଟ ଆଦେଶ ପାଳନ ନ କରିଥିବା ହେତୁ ଅଦାଲତ ଅବମାନନା ନୋଟିସ୍ ମଧ୍ୟ ଜାରୀ ହେଲା । ତଦୁପରି ଏହି ସମୟରେ ଓଡ଼ିଶାର ରାଜନୈତିକ ବାୟୁମଣ୍ଡଳ ମଧ୍ୟ ସରଗରମ । ୧୯୬୭ ମସିହାରେ ସାଧାରଣ ନିର୍ବାଚନ ଲାଗି ପ୍ରସ୍ତୁତି ଆରମ୍ଭ ହୋଇଥାଏ । କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଟିକଟରେ ପ୍ରତିଦ୍ୱନ୍ଦିତା କରିବା ପାଇଁ ଦୀନବଂଧୁ ସାହୁ ଆଡ୍‌ଭୋକେଟ୍ ଜେନେରାଲ ପଦରୁ ଡିସେମ୍ବର ମାସରେ ଇସ୍ତଫା ଦେଲେ ଓ ତାଙ୍କର ପରାମର୍ଶ କ୍ରମେ ପାଟନା ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି ହରିହର ମହାପାତ୍ର ୧୯୬୭ ଜାନୁଆରୀ ୧୫ ତାରିଖରେ ନୂତନ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ ହେଲେ । ଆଇନ ବିଭାଗ କୁଆଡ଼େ ସରକାରଙ୍କୁ ପରାମର୍ଶ ଦେଇଥିଲେ ଯେ ସାଧାରଣ ନିର୍ବାଚନ ଆସନ୍ନ ଥିବା ଦୃଷ୍ଟିରୁ କୌଣସି ବ୍ୟକ୍ତିଙ୍କୁ ଆଡ୍‌ଭୋକେଟ ଜେନେରାଲ ନିଯୁକ୍ତ ନକରି, ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍‌ଙ୍କୁ ଅସ୍ଥାୟୀ ଭାବରେ ଏ ଦାୟିତ୍ୱ ଚଳାଇବା ପାଇଁ ଅନୁରୋଧ କରାଯିବା ଉଚିତ । କିନ୍ତୁ କଂଗ୍ରେସ ନେତାମାନଙ୍କ ନିକଟରେ ଦୀନବଂଧୁ ବାବୁଙ୍କ ପରାମର୍ଶ ଗ୍ରହଣଯୋଗ୍ୟ ବିବେଚିତ ହେଲା । ଜଣେ ଅବସରପ୍ରାପ୍ତ ବିଚାରପତିଙ୍କୁ ମହାଧିବକ୍ତା ନିଯୁକ୍ତ କରିବା ଦ୍ୱାରା ଅବଶ୍ୟ ଏକ ନୂତନ ପରଂପରା ସୃଷ୍ଟି ହେଲା, ମାତ୍ର ଦୁଇ ମାସ ପରେ ନବ ନିର୍ବାଚିତ ଜନ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ହରିହର ବାବୁଙ୍କୁ ବିଦାୟ ଦେଇ ଅଶୋକ ଦାସଙ୍କୁ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ କରିଥିଲେ ।

ଯାହାହେଉ ୧୯୬୭ ମସିହା ଫେବ୍ରୁଆରୀ ଆରମ୍ଭରେ ସୁଧାଂଶୁ ଶେଖର ମିଶ୍ରଙ୍କ ରିଟ ଆବେଦନର ବିଚାର ତାରିଖ ଧାର୍ଯ୍ୟ ହେଲା । ଦିନେ ହାଇକୋର୍ଟର ରେଜିଷ୍ଟ୍ରାର ମୋତେ ପଚାରିଲେ, ଚିଫ୍ ଜଷ୍ଟିସ ଜାଣିବାକୁ ଚାହାନ୍ତି, ଏ କେସ୍‌ରେ ହାଇକୋର୍ଟ ତରଫରୁ ଆଡ୍‌ଭୋକେଟ୍ ନିଯୁକ୍ତ ହେବାକୁ ମୋର ଆପତ୍ତି ଅଛି କି ? ସେତେବେଳେ (ସ୍ୱର୍ଗୀୟ) ଅଭିମନ୍ୟୁ ମିଶ୍ର ରେଜିଷ୍ଟ୍ରାର । ତାଙ୍କ ସହିତ ମୋର ବହୁ କାଳରୁ ଅତି ଘନିଷ୍ଠ ସଦ୍‌ଭାବ । ମୁଁ ସ୍ୱଭାବତଃ ତାଙ୍କର ପରାମର୍ଶ ଲୋଡ଼ିଲି । ସେ ମତ ଦେଲେ ଯେଉଁ କେସ୍‌ରେ ହାଇକୋର୍ଟ ଓ ସରକାରଙ୍କ ମଧ୍ୟରେ ବିବାଦ, ସେ କ୍ଷେତ୍ରରେ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଭାବରେ ମୋର

ସରକାରଙ୍କ ବିରୁଦ୍ଧରେ ଓକିଲାତି କରିବା ସମୀଚୀନ ନୁହେ । ଏହି ମତାମତ ଚିଫ୍ ଜଷ୍ଟିସ୍‌ଙ୍କୁ ଜଣାଇ ଦିଆଗଲା ଓ ସେ ହାଇକୋର୍ଟ ପକ୍ଷରୁ କଲିକତା ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି ଜେ. ପି. ମିତ୍ରଙ୍କୁ ଆଡ୍‌ଭୋକେଟ୍ ନିଯୁକ୍ତ କଲେ । ସୁଧାଂଶୁ ଶେଖର ମିଶ୍ରଙ୍କ ତରଫରୁ ବି.ଏମ୍ ପଟ୍ଟନାୟକ, ହାଇକୋର୍ଟ ପକ୍ଷରୁ ଜେ. ପି. ମିତ୍ର ଓ ସରକାରଙ୍କ ତରଫରୁ ଆଡ୍‌ଭୋକେଟ ଜେନେରାଲ ହରିହର ମହାପାତ୍ର ଓ ମୁଁ ମକଦ୍ଦମା ଚଳାଇଲୁ । ପରନ୍ତୁ ବି. କେ. ପାତ୍ର ଓ କେ. କେ. ବୋଷଙ୍କ ତରଫରୁ ମଧ୍ୟ ମୁଁ ଆଡ୍‌ଭୋକେଟ୍ ନିଯୁକ୍ତ ହୋଇଥିଲି ।

ବିଚାର ଆରମ୍ଭ ହେଲା ଚିଫ୍ ଜଷ୍ଟିସ୍ ଓ ଜଷ୍ଟିସ୍ ସତ୍ୟଭୂଷଣ ବର୍ମନଙ୍କ କୋର୍ଟରେ । ପ୍ରଥମ ତିନି ଦିନର ଶୁଣାଣି ପରେ ଦେଖାଗଲା ଚିଫ୍ ଜଷ୍ଟିସ୍ ଓ ତାଙ୍କର ସହଯୋଗୀ ଜଜ୍‌ଙ୍କ ମଧ୍ୟରେ ଗୁରୁତର ମତଭେଦ । ଚିଫ୍ ଜଷ୍ଟିସ୍‌ଙ୍କର ଉଦ୍ଦେଶ୍ୟ ଥିଲା ତାଙ୍କର କାର୍ଯ୍ୟକାଳ ମଧ୍ୟରେ ସେ ଏ ବିବାଦର ନିଷ୍ପତ୍ତି କରିଦେବେ । ମାର୍ଚ୍ଚ ଦ୍ୱିତୀୟ ସପ୍ତାହରେ ସେ ଅବସର ନେବେ, ଏଣୁ ବିଚାର ତ୍ୱରାନ୍ୱିତ କରିବା ପାଇଁ କେସ୍‌ଟି ସେ ହିଅରିଂ ମଝିରେ ଫୁଲବେଂଚକୁ ରେଫର୍ କରିଦେଲେ । ପର ସପ୍ତାହରେ ଚିଫ୍ ଜଷ୍ଟିସ, ଜଷ୍ଟିସ୍ ବର୍ମନ ଓ ଜଷ୍ଟିସ ଗତିକୃଷ୍ଣ ମିଶ୍ରଙ୍କୁ ନେଇ ଗଠିତ ଫୁଲ ବେଂଚରେ ପୁନର୍ବାର ଶୁଣାଣି ଆରମ୍ଭ ହେଲା । ବାଦାନୁବାଦ ସମୟରେ ଜଜ୍‌ମାନେ ଆଡ୍‌ଭୋକେଟ୍‌ମାନଙ୍କୁ ନାନା ପରସ୍ପର ବିରୋଧୀ ପ୍ରଶ୍ନ ପଚାରୁଥାନ୍ତି । ସୁପ୍ରିମ କୋର୍ଟର ରଂଗା ମହମ୍ମଦ୍ କେସ୍‌ରେ ନିଷ୍ପତ୍ତିର ଯେଉଁ ଚର୍ବିତ ଚର୍ବଣ କରାଯାଉଥାଏ ସେଥିରୁ ଯେ କୌଣସି ଦର୍ଶକର ମନେ ହେବ, ରଂଗା ମହମ୍ମଦ୍ ନିଷ୍ପତ୍ତି ଯେପରି ଏକ ବେଦ ଓ ସେଥିରୁ ଅମୃତର ଯେଉଁ ଧାରା ଝରୁଛି, ତାହା ବିନା ଦ୍ୱିଧାରେ ପାନ ନ କଲେ ଜୀବନ ଅତୃପ୍ତ ରହିଯିବ । ହାଇକୋର୍ଟର ହେଉ ବା ସୁପ୍ରିମ କୋର୍ଟର ନିଷ୍ପତ୍ତି ହେଉ, ପ୍ରତ୍ୟେକ ନିଷ୍ପତ୍ତି ବା ରାୟ ଯେ ସେହି କେସର ଘଟଣାବଳୀ ଉପରେ ପର୍ଯ୍ୟବେସିତ, ଏ କଥା କେହି ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ମୋଟାମୋଟି କୋର୍ଟ ରୁମ୍‌ରେ ଅଭିନୀତ ଏହି ନାଟକର ପ୍ରତ୍ୟେକ ଦୃଶ୍ୟ ଥିଲା ଅତି ରୋମାଂଚକର ଓ ଚିତ୍ତାକର୍ଷକ । ଜଜ୍ ହୁଅନ୍ତୁ ବା ଆଡ୍‌ଭୋକେଟ୍ ହୁଅନ୍ତୁ, ପ୍ରତ୍ୟେକ ଅଭିନେତା ଯେପରି ନିଜ ନିଜର ଭୂମିକା ଦକ୍ଷତାର ସହ ପ୍ରଦର୍ଶନ କରିବାକୁ ବ୍ୟାକୁଳ ।

ଜଷ୍ଟିସ ଅହମଦ୍ ଅବସର ନେବାର ଚାରି ପାଂଚ ଦିନ ପୂର୍ବରୁ ମାର୍ଚ୍ଚ ମାସ ଛ' ତାରିଖ ଦିନ କୋର୍ଟରେ ଫୁଲବେଂଚର ରାୟ ପ୍ରକାଶିତ ହେଲା । ପ୍ରତ୍ୟେକ ଜଜ୍ ନିଜ ଲିଖିତ ରାୟର କେତେକାଂଶ ଓ ନିର୍ଦ୍ଦେଶ ସଂବଳିତ

ଶେଷାଂଶ କୋର୍ଟରେ ପାଠ କଲେ । ମୁଖ୍ୟ ବିଚାରପତି ହାଇକୋର୍ଟର ବଦଳି ଆଦେଶ ତୁରନ୍ତ କାର୍ଯ୍ୟକାରୀ କରିବା ପାଇଁ ସରକାରଙ୍କୁ ଓ ସଂପୃକ୍ତ ଅନ୍ୟ ପକ୍ଷମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଜଷ୍ଟିସ ମିଶ୍ର ଏକ ସ୍ୱତନ୍ତ୍ର ରାୟରେ ଚିଫ୍ ଜଷ୍ଟିସଙ୍କ ସହ ଏକମତ ହୋଇଥିଲେ ଓ ଜଷ୍ଟିସ୍ ବର୍ମନ ଆବେଦନକୁ ନାମଂଜୁର କରିଥିଲେ । କିନ୍ତୁ ରାୟ ଦେବା ସମୟରେ ଚିଫ୍ ଜଷ୍ଟିସ୍ ଅହମଦ୍ ତାଙ୍କ ନବାବୀ ମିଜାଜ୍‌ର ଯେଉଁ ନଗ୍ନ ସ୍ୱରୂପ ପ୍ରକାଶ କଲେ, ବିଚାର ବିଭାଗର ଇତିହାସରେ ତାହା ଏକ କଳଂକ । ରାୟ ପ୍ରଦାନ ଶେଷ ହେବା ପରେ ଆଇନ ସଚିବ ବି. କେ. ପାତ୍ର ସୁପ୍ରିମ କୋର୍ଟରେ ଅପିଲ କରିବା ପର୍ଯ୍ୟନ୍ତ ରାୟ ସ୍ଥଗିତ ରଖିବା ପାଇଁ କୋର୍ଟରେ ପ୍ରାର୍ଥନା କରିବା ନିମନ୍ତେ ମୋତେ ଅନୁରୋଧ କଲେ । ବାଳକୃଷ୍ଣ ବାବୁଙ୍କ ଚେହେରା ଦେଖି ଚିଫ୍ ଜଷ୍ଟିସ୍‌ଙ୍କ ମୁହଁ ରାଗରେ ଲାଲ ପଡ଼ିଗଲା । ମୁଁ ଠିଆ ହୋଇ ଅନୁରୋଧ କଲି, ଏ ରାୟ ବିରୁଦ୍ଧରେ ସରକାର, ସୁପ୍ରିମ କୋର୍ଟରେ ଅପିଲ କରିବାକୁ ଚାହାନ୍ତି । ସୁପ୍ରିମ କୋର୍ଟରୁ ଷ୍ଟେ ଆଦେଶ ଆଣିବା ପର୍ଯ୍ୟନ୍ତ ହାଇକୋର୍ଟ ତାଙ୍କର ନିର୍ଦ୍ଦେଶ କିଛିଦିନ ପାଇଁ କାର୍ଯ୍ୟକାରୀ ନ କରିବାକୁ ଆଦେଶ ଦିଅନ୍ତୁ । ଏପରି ଅନୁରୋଧ ନୂଆ କଥା ନୁହେ । ଗୁରୁତ୍ୱପୂର୍ଣ୍ଣ ଓ ଜଟିଳ କେସ୍‌ରେ ଏପରି ଆବେଦନ କରାଯାଇଥାଏ ଏବଂ ଉପଯୁକ୍ତ କେସ୍‌ରେ ବିଚାରପତିମାନେ ନିଜ ରାୟର କାର୍ଯ୍ୟକାରିତା ସ୍ଥଗିତ ରଖିଥାନ୍ତି । ଆମ ହାଇକୋର୍ଟରେ ମଧ୍ୟ ଏପରି ଆବେଦନର ବହୁ ନଜିର ଅଛି । କିନ୍ତୁ କୋର୍ଟ ରୁମ୍‌ର ସମସ୍ତ ସୌଜନ୍ୟ ଓ ଶାଳୀନତା ଭଂଗ କରି ଖଲିଲ ଅହମଦ୍ ମୋର ପୂର୍ଣ୍ଣ ବକ୍ତବ୍ୟ ଶୁଣିବା ପୂର୍ବରୁ ଗୋଟିଏ "ନାଁ" ଶବ୍ଦରେ ଆବେଦନକୁ ନାମଂଜୁର କରି ଠିଆ ହୋଇ ପଡ଼ିଲେ ଓ ଡାଏସରୁ ଓହ୍ଲାଇବାକୁ ଉଦ୍ୟତ ହେଲେ । ନିଜ ଆଦେଶକୁ ଅବିଳମ୍ବେ କାର୍ଯ୍ୟକାରୀ କରିବା ପାଇଁ ତାଙ୍କର ଅବାଂଛନୀୟ ବ୍ୟାକୁଳତା ସ୍ପଷ୍ଟ ହୋଇଗଲା । ସେ ଠିଆ ହୋଇଯିବା ପରେ ଅନ୍ୟ ଦୁଇ ଜଣ ଜଜ୍ ମଧ୍ୟ ବାଧ୍ୟ ହୋଇ ତାଙ୍କର ଅନୁଗମନ କଲେ । ଏ ପରିସ୍ଥିତି ପାଇଁ ଅପ୍ରସ୍ତୁତ ବିଚରା ପିଅନମାନେ ସଂପୂର୍ଣ୍ଣ ବିବ୍ରତ ଅବସ୍ଥାରେ ଡାଏସ ନିକଟସ୍ଥ ପ୍ରସ୍ଥାନ-ଦ୍ୱାର ଖୋଲିବା ପାଇଁ ଦୌଡ଼ିବାକୁ ଆରମ୍ଭ କଲେ ।

ଦିନ ଗୋଟାଏ ବେଳେ ମୁଁ ଚାମ୍ବରରେ ବସିଛି, ହଠାତ୍ ଜଷ୍ଟିସ ମିଶ୍ରଙ୍କ ଠାରୁ ଡାକରା ଆସିଲା । ଗତିକୃଷ୍ଣ ବାବୁ ମୋତେ ଅତି ଦୁଃଖର ସହିତ କହିଲେ, "ଚିଫ୍ ଜଷ୍ଟିସ ଆଜି କୋର୍ଟରେ ଯେପରି ବ୍ୟବହାର କଲେ ମୁଁ ସେଥିପାଇଁ ଅତ୍ୟନ୍ତ ଲଜ୍ଜିତ । କୌଣସି ଆଡ୍‌ଭୋକେଟ୍‌ଙ୍କର ବକ୍ତବ୍ୟ ପୂରାପୂରି

ନ ଶୁଣି ଆଦେଶ ଦେବା ଅସମୀଚୀନ । ଏପରି ପରିସ୍ଥିତି ପାଇଁ ଆମ୍ଭେମାନେ ପ୍ରସ୍ତୁତ ନଥିଲୁ । ସେ ଡାଏସରୁ ହଠାତ୍ ଉଠିଯିବା ପରେ କ'ଣ କରିବାକୁ ହେବ ସେଥିପାଇଁ ଭାବିବାକୁ ମଧ୍ୟ ସମୟ ନଥିଲା ... ଇତ୍ୟାଦି ।'' ମୁଁ ଉତ୍ତର ଦେଲି, ''ଏ କେବଳ ସୌଜନ୍ୟ ଓ ଶିଷ୍ଟାଚାରର ପ୍ରଶ୍ନ ନୁହେ । ଜଣେ ଜଜ୍ ନିଜର ଜିଦ୍ ବଜାୟ ରଖିବା ପାଇଁ ବଦ୍ଧପରିକର । କାଳେ ଅନ୍ୟ ଦୁଇ ଜଣ ସହଯୋଗୀ ଜଜ୍ ଷ୍ଟେ ଆଦେଶ ସଂପର୍କରେ ଭିନ୍ନ ମତ ପୋଷଣ କରିବେ, ତାହା ବ୍ୟର୍ଥ କରିବା ପାଇଁ ସେ ଜାଣିଶୁଣି ଏପରି ପଦକ୍ଷେପ ନେଇଛନ୍ତି ।'' ସଂଧ୍ୟାବେଳେ ଜଷ୍ଟିସ୍ ବର୍ମନ ଫୋନ କରି ମତେ ଅନୁରୂପ ମନ୍ତବ୍ୟ ଦେଲେ ଏବଂ ଏପରି ଏକ ଅପ୍ରତ୍ୟାଶିତ ପରିସ୍ଥିତିରେ ତାଙ୍କର 'କିଂକର୍ତ୍ତବ୍ୟ ବିମୂଢ଼ତା' ଲାଗି ଦୁଃଖ ପ୍ରକାଶ କଲେ ।

ସେ ଦିନ ରାତି ଆଠଟା ସମୟରେ ଘରୋଇ ବିଭାଗର ସେକ୍ରେଟାରୀ ନଟରାଜନ ଓ ଆଇନ ସଚିବ ବି.କେ ପାତ୍ର ମୋ ଘରେ ପହଂଚିଲେ । ସେମାନଙ୍କର ଅନୁରୋଧ, ମୁଁ ଦିଲ୍ଲୀ ଯାଇ ସୁପ୍ରିମ କୋର୍ଟରେ ଅପିଲ ଫାଇଲ କରିବାର ବ୍ୟବସ୍ଥା କରିବି । ସେମାନଙ୍କ ଠାରୁ ଶୁଣିଲି, ଚିଫ୍ ଜଷ୍ଟିସ ରେଜିଷ୍ଟ୍ରାରଙ୍କ ସହ ସଂଧ୍ୟା ଫ୍ଲାଇଟ୍‌ରେ ଦିଲ୍ଲୀ ଯାଇଛନ୍ତି । ମୁଁ ପରିହାସରେ କହିଲି ''ଅବସର ନେବାର ଅବ୍ୟବହିତ ପୂର୍ବରୁ ସରକାରୀ ପଇସାରେ ଥରେ ଦିଲ୍ଲୀ ବୁଲି ଆସିଲେ, କ୍ଷତି କ'ଣ ?'' ଯାହାହେଉ ଅପିଲ ଯଥାବିଧି ଦାଖଲ ହେଲା ଓ ତାହା ବିଚାର ପାଇଁ ଗୃହୀତ ହେଲା । ଅପିଲ୍ ଦାଖଲ କରିବା ପାଇଁ ମୁଁ ଦିଲ୍ଲୀ ପହଂଚିବାର ଦୁଇ ଦିନ ପରେ ଜନ କଂଗ୍ରେସ ଓ ସ୍ୱତନ୍ତ୍ର ଦଳର ମିଳିତ ସରକାର କ୍ଷମତାକୁ ଆସିଲେ । ଷ୍ଟେ ଦରଖାସ୍ତ ପେଶ୍ ନ କରିବା ପାଇଁ ନୂତନ ଆଇନ ସଚେତକଙ୍କ ଠାରୁ ନିର୍ଦ୍ଦେଶ ମିଳିଲା । ଯାହାହେଉ ମୂଳ ଅପିଲ୍‌ର ଶୁଣାଣି ହେଲା ୧୯୬୭ ଅକ୍ଟୋବର ମାସରେ । ଓଡ଼ିଶା ସରକାରଙ୍କ ପକ୍ଷରୁ ତତ୍‌କାଳୀନ ଆଟର୍ଣ୍ଣି ଜେନେରାଲ ସି. କେ. ଦପ୍ତରୀ ବାଦାନୁବାଦ କରିଥିଲେ ଓ ମୁଁ ତାଙ୍କୁ ସାହାଯ୍ୟ କରୁଥିଲି । ପାଂଚଜଣ ଜଜ୍ ବିଶିଷ୍ଟ କନ୍‌ଷ୍ଟିଚ୍ୟୁସନ ବେଂଚରେ ଅପିଲଟି ଆଂଶିକ ଭାବରେ ମଂଜୁର ହେଲା ।

ସୁପ୍ରିମ୍ କୋର୍ଟ ଅଭିମତ ଦେଲେ ଯେ ବିବାଦୀୟ ବିଷୟର ନିଷ୍ପତ୍ତି ପାଇଁ ରଂଗା ମହମଦ୍ ନିଷ୍ପତ୍ତି ବିଶେଷ ସହାୟକ ନୁହେ । ଓଡ଼ିଶା ପରି ଆସାମ ସୁପରିଅର ଜୁଡ଼ିସିଆଲ ସର୍ଭିସ ରୁଲରେ ଖୋଦ୍ ସରକାରଙ୍କ ଅଧୀନସ୍ଥ କୌଣସି ପୋଷ୍ଟ ଅନ୍ତର୍ଭୁକ୍ତ ନଥିଲା । ହାଇକୋର୍ଟ ରେଜିଷ୍ଟ୍ରାରଙ୍କ ସମେତ କେବଳ ଜିଲ୍ଲା ଜଜ୍ ଓ ଅତିରିକ୍ତ ଜିଲ୍ଲା ଜଜ୍ ଆସାମ କ୍ୟାଡ଼ରର ଅନ୍ତର୍ଭୁକ୍ତ । ଏଣୁ ସମ୍ବିଧାନର

୨୩୫ ଅନୁଚ୍ଛେଦ ଅନୁଯାୟୀ ରେଜିଷ୍ଟ୍ରାରଙ୍କୁ ବାଦ ଦେଇ ଅନ୍ୟମାନଙ୍କୁ କେବଳ ହାଇକୋର୍ଟ ସ୍ଥାନାନ୍ତର କରି ପାରିବେ । ଏହାର ଅର୍ଥ ନୁହେ ଯେ ଆଇନ ସଚିବ ବା ଆଇନ ସଚେତକ ଆଦି ଖୋଦ ସରକାରଙ୍କ ନିୟନ୍ତ୍ରଣରେ ଥିବା ପଦରେ ସରକାରଙ୍କ ବିନା ସମ୍ମତିରେ ହାଇକୋର୍ଟ ଜିଲା ଜଜ୍‌ମାନଙ୍କୁ ସେହି ପଦକୁ ସ୍ଥାନାନ୍ତର କରିଦେଇ ପାରିବେ । ପ୍ରତ୍ୟେକ ରାୟ ବା ନିଷ୍ପତ୍ତି ସେହି କେସ୍‌ର ବିବାଦୀୟ ବିଷୟ ବସ୍ତୁ ଉପରେ ପର୍ଯ୍ୟବସିତ । ଗୋଟିଏ ରାୟରୁ ଧାଡ଼ିଟିଏ ଉଦ୍ଧାର କରି ତାକୁ ସବୁ କ୍ଷେତ୍ରରେ ପ୍ରୟୋଗ କରାଯାଇ ନ ପାରେ ।

ସୁପ୍ରିମ କୋର୍ଟ ନିଷ୍ପତ୍ତି ଦେଲେ, ଯେହେତୁ ଶ୍ରୀ ବି. କେ ପାତ୍ର, ଶ୍ରୀ ବୋଷ ଓ ଶ୍ରୀ ଦେଙ୍କର ଚାକିରୀ କୌଣସି ନିର୍ଦ୍ଦିଷ୍ଟ ସମୟ ସୀମା ପର୍ଯ୍ୟନ୍ତ ସରକାରଙ୍କ ହାତରେ ନ୍ୟସ୍ତ କରାଯାଇ ନଥିଲା, ଏଣୁ ହାଇକୋର୍ଟ ଯେ କୌଣସି ସମୟରେ ନିଜ ଅଫିସରଙ୍କୁ ସରକାରୀ କର୍ତ୍ତୃତ୍ୱରୁ ଫେରାଇ ଆଣିବାରେ କୌଣସି ଅସଂଗତି ନାହିଁ । କିନ୍ତୁ ସରକାରଙ୍କ ସମ୍ମତି ନ ନେଇ ଆଇନ ସଚିବ, ଆଇନ ସଚେତକ ଓ ଉପ ସଚିବ ପଦରେ ହାଇକୋର୍ଟଙ୍କ ଦ୍ୱାରା ଶ୍ରୀ ପଣ୍ଡା, ଶ୍ରୀ ମିଶ୍ର ଓ ଶ୍ରୀ ମହାନ୍ତିଙ୍କର ନିଯୁକ୍ତି ସଂପୂର୍ଣ୍ଣ ଅବୈଧାନିକ ଓ କ୍ଷମତା ବହିର୍ଭୂତ । ଅବଶ୍ୟ ରାୟ ପ୍ରକାଶିତ ହେବା ସମୟରେ ଖଲିଲ ଅହମ୍ମଦ୍ ଓଡ଼ିଶାରେ ନଥିଲେ ।



# ମିସ୍ ସିଦ୍ଦିକ୍‌ର ଛାଇ

ଓକିଲାତିରେ ସଫଳତାର ଚାବିକାଠି କ'ଣ ? ଏହାର ସଠିକ୍ ଉତ୍ତର ବୋଧହୁଏ କେହି ଦେଇ ପାରିବେ ନାହିଁ । ଅନ୍ଧର ହାତୀ ବର୍ଣ୍ଣନା ପରି ବିଭିନ୍ନ ଲୋକ ଭିନ୍ନ ଭିନ୍ନ ଉତ୍ତର ଦେବେ । ମୋ ମତରେ ସଫଳତାର ଅନ୍ୟତମ ଚାବିକାଠି ହେଲା ନ୍ୟାୟ ନିଷ୍ଠା । ବିଦ୍ୟା, ବୁଦ୍ଧି ବାଗ୍ମିତା ସବୁଥାଇ ମଧ୍ୟ ଫେଆରନେସ୍ ନ ଥିଲେ, ନ୍ୟାୟ ପ୍ରତି ଆସକ୍ତି ନଥିଲେ, ଅଧିବକ୍ତା କୋର୍ଟରେ ଗ୍ରହଣୀୟ ହେବେ ନାହିଁ । ବିଚାରପତି କେବଳ ନୀତି ଆଚରଣ କରିବେ, ସତ୍ ପଥରେ ଯିବେ, ନ୍ୟାୟ ଦାନ କରିବେ, ଅଥଚ ସେହି ନ୍ୟାୟ ହାସଲ କରିବା ପାଇଁ ଓକିଲଙ୍କର କର୍ମ ନିର୍ବାହରେ ନୈତିକତା ରହିବ ନାହିଁ, ଏହା କସ୍ମିନକାଳେ ନୀତି-ସଂଗତ ବିବେଚିତ ହୋଇ ନପାରେ ବା ଫଳପ୍ରଦ ହୋଇ ନପାରେ । ସେଥିପାଇଁ ପ୍ରତ୍ୟେକ ଅଧିବକ୍ତାଙ୍କର ଆଚରଣ ଏପରି ହେବା ଉଚିତ, ଯେପରିକି ବିଚାରାଳୟରେ ତାଙ୍କର ବଚନିକା ବିନା ଦ୍ୱିଧାରେ ଗ୍ରହଣୀୟ ହେବ, ନ୍ୟାୟ ପ୍ରଦାନର ଆୟୁଧ ରୂପେ ସେ ବିବେଚିତ ହେବ । ଏ ପ୍ରକାରର ଆଚରଣ, ଫେଆରନେସ, କେଉଁ କ୍ଷେତ୍ରରେ କି ରୂପରେ ପ୍ରକଟିତ ହେବ, ସେ ବିଷୟରେ ପୂର୍ବରୁ କେହି ତାଲିମ୍ ଦେଇ ପାରିବେ ନାହିଁ । ପ୍ରତ୍ୟେକ ଅଧିବକ୍ତାଙ୍କୁ ନିଜର ସୀମିତ ପରିସର ମଧ୍ୟରେ ତାର ପନ୍ଥା ନିର୍ଦ୍ଧାରଣ କରିବାକୁ ହେବ । ଆଡ୍‌ଭୋକେଟ୍ ଜେନେରାଲ ହୁଅନ୍ତୁ ବା ସରକାରୀ ଆଡ୍‌ଭୋକେଟ୍ ବା ସାଧାରଣ ଅଭିଯୋକ୍ତା ହୁଅନ୍ତୁ ସବୁରି ପକ୍ଷରେ ଏହା ସଂଭବ । ଏପରି ଆଚରଣ ଦ୍ୱାରା ସେମାନେ କୋର୍ଟର କାର୍ଯ୍ୟ ପ୍ରଣାଳୀ ଓ ଚରମ ନିଷ୍ପତ୍ତିକୁ ବହୁ ଭାବରେ ପ୍ରଭାବିତ କରି ପାରିବେ ଓ ନିଜର ନିଷ୍ଠା ଓ ପଦ ମର୍ଯ୍ୟାଦା ଜନ ସମାଜରେ ପ୍ରତିପାଦିତ କରି ପାରିବେ । ଏପରି ଆଚରଣରୁ ଯେଉଁ ଆନନ୍ଦ ମିଳେ, ତାର ବିକଳ୍ପ ନାହିଁ । ନିଜ ଅନୁଭୂତିରୁ ଏପରି ଗୋଟିଏ ଘଟଣା ଉଲ୍ଲେଖ କରୁଚି ।

୧୯୬୪ ମସିହା ମାର୍ଚ୍ଚ ମାସରେ ରାଉରକେଲା ସହରରେ ଅଭୂତପୂର୍ବ ସାଂପ୍ରଦାୟିକ ଦଂଗା ଆରମ୍ଭ ହେଲା । ରାଉରକେଲା ନୂଆ ସହର । କିନ୍ତୁ ଏପରି ମାରାତ୍ମକ ଦଂଗା ଓଡ଼ିଶାରେ କୁତ୍ରାପି କେବେ ଘଟିନାହିଁ । ଏହି ସମୟରେ ପୂର୍ବବଂଗର ଶରଣାର୍ଥୀମାନଙ୍କୁ କଲିକତାରୁ ଟ୍ରେନ୍‌ରେ ମଧ୍ୟ ପ୍ରଦେଶର ମାନା ଓ କୋରାପୁଟର ଦଣ୍ଡକାରଣ୍ୟ ଶରଣାର୍ଥୀ ଶିବିରକୁ ନିଆଯାଉଥାଏ । ଏହି ଶରଣାର୍ଥୀମାନଙ୍କୁ ସାହାଯ୍ୟ କରିବା ପାଇଁ ରାଉରକେଲା ସମେତ ବଡ଼

ଷ୍ଟେସନମାନଙ୍କରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ନେତୃତ୍ୱରେ ସ୍ୱେଚ୍ଛାସେବକ ଅନୁଷ୍ଠାନମାନ ଗଠିତ ହୋଇଥାଏ । ଷ୍ଟେସନରେ ଏମାନେ ଶରଣାର୍ଥୀମାନଙ୍କୁ ମାଗଣା ଖାଇବା ଯୋଗାଇ ଦିଅନ୍ତି ଓ ତା ସହିତ ଢାଳି ଦିଅନ୍ତି ଉତ୍କଟ ସାଂପ୍ରଦାୟିକତାର ବିଷ । ରାଉରକେଲା ଷ୍ଟେସନରେ ପ୍ରଚାର ହେଲା ଯେ ମୁସଲମାନ ହକରମାନେ ଯାତ୍ରୀମାନଙ୍କୁ ବିଷାକ୍ତ ଖାଦ୍ୟ ଯୋଗାଇ ଦେଉଛନ୍ତି । ହକରମାନଙ୍କ ଉପରେ ମାଡ଼ ହେବା ପରେ ସେମାନେ ତାର ପ୍ରତିରୋଧ କଲେ ଓ ତାପରେ ଆରମ୍ଭ ହେଲା ସାଂପ୍ରଦାୟିକ ଦଂଗା । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ, ସ୍ଥାନୀୟ ଆଦିବାସୀମାନଙ୍କୁ ଏପରି ଭାବରେ ମତେଇ ଦିଆଯାଇଥିଲା ଯେ ସେମାନେ ମୁସଲମାନମାନଙ୍କ ଉପରେ ଆକ୍ରମଣରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

ହାଇକୋର୍ଟରେ ବିଚାରାଧୀନ ଥିବା ଯେଉଁ କ୍ରିମିନାଲ ଅପିଲ୍‌ର ବିଷୟବସ୍ତୁ ଉଲ୍ଲେଖ କରିବାକୁ ଯାଉଛି, ସେଥିରେ ଅନ୍ୟ ସଂପ୍ରଦାୟର ଆକ୍ରମଣର ମୁଖ୍ୟ ଶିକାର ଥିଲେ ମହମ୍ମଦ୍ ସିଦ୍ଦିକ୍ ନାମଧାରୀ ଜୀବନ ବୀମା କରପୋରେସନ୍‌ର ଜଣେ ଇନ୍‌ସ୍ପେକ୍ଟର ଓ ତାଙ୍କର ପରିବାର । ରାଉରକେଲାର ବିଭିନ୍ନ ସେକ୍ଟରରେ ଯେଉଁ ମାର୍କେଟ୍ ବିଲ୍‌ଡିଂ ଅଛି, ତାର ଉପର ମହଲାରେ ରହିବା ପାଇଁ କ୍ୱାଟର ରହିଛି । ଏହିପରି ଏକ ମାର୍କେଟ ବିଲ୍‌ଡିଂରେ ଉପରେ ଥିବା କ୍ୱାଟରରେ ରହୁଥିଲେ ଜୀବନ ବୀମା ଇନସ୍‌ପେକ୍ଟର ସିଦ୍ଦିକ୍ । ତାଙ୍କର ପଡ଼ୋଶୀ ଥିଲେ ଅନ୍ୟ ବହୁ ବନ୍ଧୁ ଓ ପରିଚିତ ପରିବାର । ସିଦ୍ଦକ୍ ବିହାରର ଲୋକ । ସେ ଅତି ଭଦ୍ର ଓ ମିଳାପୀ । ତାଙ୍କର ଅଗଣିତ ବନ୍ଧୁ ମେଳରେ ସେ ଥିଲେ ଅତି ଜନପ୍ରିୟ । ଯେତେବେଳେ ସହରରେ ଦଂଗା ଆରମ୍ଭ ହେଲା, ବହୁ ମୁସଲମାନ ଅଧିବାସୀ ନିଜର ଘର ଦ୍ୱାର ଛାଡ଼ି ସରକାରୀ ତତ୍ତ୍ୱାବଧାନରେ ପରିଚାଳିତ ଅସ୍ଥାୟୀ ଶିବିରରେ ଆଶ୍ରୟ ନେଲେ । ସିଦ୍ଦିକ୍ ମଧ୍ୟ ନିଜ କ୍ୱାଟର ଛାଡ଼ି ପରିବାର ସହ ଆଶ୍ରୟ ଶିବିରକୁ ଚାଲିଯିବାକୁ ଚାହୁଁଥିଲେ । କିନ୍ତୁ ତାଙ୍କର ପଡ଼ୋଶୀ ବନ୍ଧୁମାନେ ତାଙ୍କୁ ନିର୍ଭୟ ଦେଲେ, ସେମାନେ ଥାଉଁ ଥାଉଁ ତାଙ୍କର କିଛି କ୍ଷତି ହେବ ନାହିଁ । ପରିବାର ତାଙ୍କର କ୍ଷୁଦ୍ର । ସ୍ତ୍ରୀ ସମେତ ତେର ଚଉଦ ବର୍ଷର ଗୋଟିଏ ଝିଅ, ବାର ବର୍ଷର ପୁଅ ଓ ଦୁଇ ବର୍ଷର ଶିଶୁ ପୁତ୍ର । ବନ୍ଧୁମାନଙ୍କ ଭରସାରେ ସିଦ୍ଦିକ ଘର ଛାଡ଼ି ଆଶ୍ରୟ ଶିବିରକୁ ଗଲେ ନାହିଁ ।

ଦୁଇଦିନ ପରେ ତାଙ୍କର କ୍ୱାଟର ଉପରେ ଆକ୍ରମଣ ହେଲା । ଅସଂଖ୍ୟ ଆଦିବାସୀ ଧନୁ ତୀର ଧରି ତାଙ୍କ ଘର ଉପରେ ଚଢ଼ାଉ କଲେ ଓ ସେମାନଙ୍କ ସାଂଗରେ ଥିଲେ ରାଉରକେଲାରେ ଚାକିରୀ ଓ ବ୍ୟବସାୟ କରୁଥିବା ଗଞ୍ଜାମ

ଜିଲାର କେତେଜଣ ଅଣ-ଆଦିବାସୀ ଯୁବକ । ମହମ୍ମଦ୍ ସିଦ୍ଦିକ୍‌ଙ୍କୁ ତାଙ୍କର କ୍ୱାଟର ମଧ୍ୟରେ ହତ୍ୟା କରାହେଲା । ଚଉଦ ବର୍ଷର ଝିଅକୁ କେତେକ ଦଂଗାକାରୀ ଟାଣି ନେଇ ପଳାୟନ କଲେ । ବିକଳରେ ବାର ବର୍ଷର ପୁଅ ଛାତ ଉପରୁ ତଳକୁ ଡେଇଁ ପଡ଼ି ପ୍ରାଣ ହରାଇଲା । ଘରୁ ସମସ୍ତ ଜିନିଷ ପତ୍ର ଲୁଟି ନିଆଗଲା । ବଂଚି ରହିଲେ କେବଳ ସିଦ୍ଦିକ୍‌ଙ୍କର ବିଧବା ପତ୍ନୀ ଓ ଦୁଇ ବର୍ଷର ଶିଶୁ ପୁତ୍ର । ପର ଦିନ ପୋଲିସ୍ ମିସ୍ ସିଦ୍ଦିକ୍‌ର ଶବକୁ ନିକଟସ୍ଥ ଗୋଟିଏ ନଳା ପାଖରୁ ଉଦ୍ଧାର କଲେ ଓ ଡାକ୍ତରୀ ମାଇନାରେ ତା ପ୍ରତି ଧର୍ଷଣର ସୂଚନା ମିଳିଥିଲା । ସିଦ୍ଦିକ୍‌ଙ୍କର କାହାଣୀ ଥିଲା ଅପ୍ରତ୍ୟାଶିତ ପ୍ରତିହିଂସା, ବିଶ୍ୱାସଘାତକତା ଓ ନିଷ୍ଠୁରତାର କରୁଣ କାହାଣୀ ।

ସିଦ୍ଦିକ୍‌ଙ୍କର ମୃତ୍ୟୁ ଘଟଣାରେ ପୋଲିସ ଛ' ଜଣ ମୁଦାଲାଙ୍କୁ ଢେରା ସୁପର୍ଦ୍ଦ କରିଥିଲେ । ଏମାନେ ସମସ୍ତେ ଗଞ୍ଜାମ ଜିଲାର ଲୋକ । ଦଂଗାକାରୀ ଆଦିବାସୀମାନଙ୍କୁ ଚିହ୍ନଟ କରାଯାଇ ପାରିଲା ନାହିଁ । ବିଧିର ଏପରି ବୁଝାମଣା, ଯେଉଁ ବଂଧୁମାନେ ସିଦ୍ଦିକ୍‌ଙ୍କୁ ଆଶ୍ରୟ ଶିବିରକୁ ନ ଯାଇ କ୍ୱାଟରରେ ରହିବା ପାଇଁ ପରାମର୍ଶ ଦେଇଥିଲେ, ଘଟଣା ବେଳେ ସେମାନେ ସମସ୍ତେ ପଛଘୁଂଚା ଦେଲେ । ଏପରିକି ଦଂଗା ଶାନ୍ତ ହୋଇଯିବା ପରେ ମଧ୍ୟ ପୋଲିସ୍ ଅନୁସଂଧାନ ସମୟରେ 'ବଂଧୁତାର ଚରମ ନିଦର୍ଶନ' ଦେଖାଇ, ଏମାନଙ୍କ ମଧ୍ୟରୁ ଜଣେ ମଧ୍ୟ ସାକ୍ଷ୍ୟ ଦେବା ପାଇଁ ଆଗଭର ହୋଇ ନଥିଲେ । ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀ ସିଦ୍ଦିକ୍‌ଙ୍କର ବିଧବା । ଘଟଣାର ଦୁଇମାସ ପରେ ପୋଲିସ୍ ଦକ୍ଷିଣ ବିହାରର ଅଭ୍ୟନ୍ତରରେ ଗୋଟିଏ ଗାଁରେ ବାସ କରୁଥିବା ଏହି ମହିଳାଙ୍କର ଜମାନବଂଦୀ ରେକର୍ଡ଼ କରିଥିଲେ । ଯେଉଁ ଛ' ଜଣଙ୍କୁ ମିସେସ୍ ସିଦ୍ଦିକ୍ ଚିହ୍ନଟ କରିଥିଲେ, ସେହିମାନଙ୍କୁ ସେସନ୍ସ ଜଜ୍ ବିଚାର ଶେଷରେ ଯାବଜ୍ଜୀବନ କାରାଦଣ୍ଡ ଆଦେଶ ଦେଇଥିଲେ ।

ଏହି ଛ'ଜଣ ମୁଦାଲାଙ୍କ ତରଫରୁ ହାଇକୋର୍ଟରେ ଅପିଲ୍ ଦାଖଲ କରିଥିଲେ ପୂର୍ବତନ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ (ସ୍ୱର୍ଗୀୟ) ରାମଚନ୍ଦ୍ର ମିଶ୍ର । ଅପିଲ୍‌ର ବିଚାର ହେଲା ୧୯୬୭ ମସିହାରେ, ଚିଫ୍ ଜଷ୍ଟିସ ବର୍ମନ ଓ ଜଷ୍ଟିସ ଆର. କେ ଦାସଙ୍କ କୋର୍ଟରେ । ରାମଚନ୍ଦ୍ର ମିଶ୍ର ଦୁଇ ଦିନ ବାଦାନୁବାଦ କରି ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀଙ୍କର ଜମାନବଂଦୀକୁ ବିଭିନ୍ନ ଦିଗରୁ ସମାଲୋଚନା କରିଥିଲେ । ତାଙ୍କ ମତରେ ଏ ବିଧବା ମହିଳା ଘଟଣାର ଦୁଇ ମାସ ପରେ ପ୍ରଥମ ଥର ପାଇଁ ପୋଲିସ୍ ନିକଟରେ ବୟାନ ଦେଇଛନ୍ତି ଏବଂ ଏହି ବିଳମ୍ବିତ ବୟାନର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ । ସେ ପୁଣି ଯୁକ୍ତି କରିଥିଲେ

ଯେ ଏହି ପରଦାନସୀନ ମହିଳା ଭୟରେ ଲୁଚି ରହିଥିଲେ । ସେ କିଛି ଦେଖି ପାରି ନାହାନ୍ତି ଓ ତାଙ୍କର ସାକ୍ଷ୍ୟ ଗ୍ରହଣୀୟ ନୁହେ । ମିଶ୍ରଙ୍କର ସୁଆଲ ଜବାବ୍‌ର ଶେଷ ଆଡ଼କୁ ଚିଫ୍ ଜଷ୍ଟିସ ମୋତେ ପଚାରିଲେ, ''ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍? ଏ କେସ୍ ବିଷୟରେ ତୁମ୍‌ର ମତାମତ କ'ଣ?'' ମୁଁ ଗମ୍ଭୀର ଭାବରେ ଉତ୍ତର ଦେଲି ''କୋର୍ଟ ରୁମ୍ ଭିତରେ ମୁଁ କେବଳ ମିସ୍ ସିଦ୍ଦିକ୍‌ର ପ୍ରେତାତ୍ମାର ଛାଇ ଦେଖି ପାରୁଚି । ମୋର ମସ୍ତିଷ ଭାରାକ୍ରାନ୍ତ । ମତେ ଚିନ୍ତା କରବାକୁ ସମୟ ଦିଅନ୍ତୁ ।'' ସେ ଦିନ ଚାରିଟା ସମୟରେ ଆସାମୀ ପକ୍ଷର ଯୁକ୍ତିତର୍କ ଶେଷ ହେଲା ଓ ପରଦିନ ସାଢ଼େ ଦଶଟାରେ ମୋର ଜବାବ ଆରମ୍ଭ ।

ଏ କେସର ମର୍ମନ୍ତୁଦ ଘଟଣାବଳୀ ମତେ ଏତେଦୂର ବ୍ୟଥିତ ଓ ବିଚଳିତ କରିଥିଲା ଯେ, ସତକୁ ସତ ମୁଁ ସ୍ଥିର ମନରେ କିଛି ଚିନ୍ତା କରି ପାରୁନଥିଲି । ପରଦିନ ମୁଁ ଅତି ଭାବପ୍ରବଣ ହୋଇ ଆବେଗଭରା କଂଠରେ ଆରମ୍ଭ କଲି ''ଯଦି କୌଣସି କେସ୍‌ର ନଥିପତ୍ର ପଢ଼ିଲେ ପାଠକର ଆଖିରେ ଲୁହ ଭରିଯାଏ, ଏ ସେଇ ପ୍ରକାରର ଗୋଟିଏ କେସ୍ । କିନ୍ତୁ ମୋର ବିଶେଷ ଅନୁରୋଧ, ସିଦ୍ଦିକ୍ ପରିବାରର ଏହି କରୁଣ କାହାଣୀ ଶୁଣି ମାନ୍ୟବର ବିଚାରପତିମାନେ ବିଷାଦରେ ଅଶ୍ରୁସିକ୍ତ ହେବେ ନାହିଁ ।'' ମୋର ପ୍ରଥମ ବାକ୍ୟଟି. ଶୁଣିବା ପରେ ଜଷ୍ଟିସ୍ ଦାସଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇଗଲା । ଚିଫ୍ ଜଷ୍ଟିସ୍ ବର୍ମନଙ୍କ ଆଖିରେ ଦେଖିଲି ଲୋତକର ଧାର । ମୋ କଥା ଶୁଣି ନିଃସନ୍ତାନ ଜଷ୍ଟିସ ବର୍ମନ୍ ଅନ୍ତର୍ବେଦନା ବୋଧହୁଏ ରୋକିପାରି ନଥିଲେ । ପରେ ମୁଁ ଅନୁଭବ କରିଛି, ଏହି ଦିନଟି ମୋ ପକ୍ଷରେ ଏକ ସ୍ମରଣୀୟ ଦିବସ । ଭାବପ୍ରବଣତାର ଉଲ୍ଲାସରେ ଗୋଟିଏ ପ୍ରାଣସ୍ପର୍ଶୀ ବାକ୍ୟର ପ୍ରୟୋଗରେ ବିଚାରପତିଙ୍କ ଆଖିରୁ ଯଦି ଲୁହ ଝରିଗଲା, ତା ହେଲେ ସେ ଦିନଟି ମୋର ବୃତ୍ତି ଜୀବନର ସବୁଠାରୁ ସଫଳ ମୁହୂର୍ତ୍ତ । ଏହା ପରେ ମୁଁ ଯାହା କିଛି ଯୁକ୍ତି କଲି ସବୁ ବିନା ଦ୍ୱିଧାରେ ଗୃହୀତ ହେଲା ।

ମୁଁ ଯୁକ୍ତି କଲି, ରାଉରକେଲାର ବିପଦପୂର୍ଣ୍ଣ ପରିସ୍ଥିତିରେ ଶିଶୁପୁତ୍ରକୁ ଧରି ନିଜ ଗାଁକୁ ପଳାଇବା ଛଡ଼ା ମିସେସ୍ ସିଦ୍ଦିକ୍‌ଙ୍କର ଅନ୍ୟ ପନ୍ଥା ନଥିଲା । ଏଣୁ ତାଙ୍କର ଘରଦ୍ୱାର ଠିକଣା ସଂଗ୍ରହ କରି ସେଠାରେ ତାଙ୍କର ଜମାନବନ୍ଦୀ ନେବାରେ ପୋଲିସ୍ ପକ୍ଷରେ ଯଦି ବିଳମ୍ବ ହୋଇଥାଏ, ସେଥିରେ କିଛି ଅସ୍ୱାଭାବିକତା ନାହିଁ । ସ୍ୱଳ୍ପ ସଂଖ୍ୟକ ପୋଲିସ ଅଫିସରଙ୍କ ପକ୍ଷରେ ଏକ ସମୟରେ ଅସଂଖ୍ୟ ହତ୍ୟା ଅପରାଧର ଅନୁସଂଧାନ କରିବାରେ ଯେଉଁ ବିଳମ୍ବ ଘଟିଛି, ତାହା

ମାର୍ଜନୀୟ । ମାର୍କେଟ୍ ବିଲ୍‌ଡିଂର ଅନ୍ୟ ଅଧିବାସୀମାନଙ୍କର ସାକ୍ଷ୍ୟ ସଂଗ୍ରହ କରିବାରେ ପୋଲିସ ଅବହେଳା ସଂପର୍କରେ ମୁଦାଲା ପକ୍ଷର ସମାଲୋଚନାର ଉତ୍ତର ଦେଇ ମୁଁ କହିଲି, ଯେଉଁ କାପୁରୁଷମାନଙ୍କର ଆଶ୍ୱାସନା ଉପରେ ଭରସା କରି ସିଦ୍ଦିକ୍ ଓ ତାଙ୍କ ପୁଅ ଝିଅ ପ୍ରାଣବଳି ଦେଲେ, ଅଥଚ ଜଣେ କେହି ତାଙ୍କର ସୁରକ୍ଷା ପାଇଁ ଧାଇଁ ଆସିଲେ ନାହିଁ, ଏପରିକି କର୍ତ୍ତୃପକ୍ଷଙ୍କର ସାହାଯ୍ୟ ମଧ୍ୟ ଲୋଡ଼ିଲେ ନାହିଁ; ଅବସ୍ଥା ଶାନ୍ତ ପଡ଼ିବା ପରେ ମଧ୍ୟ ସେମାନେ ଯେ ସାକ୍ଷ୍ୟ ଦେବା ପାଇଁ ପଛଘୁଂଚା ଦେଲେ, ଏହାର ଏକମାତ୍ର କାରଣ ସେମାନଙ୍କର ଭୟ ଓ ସ୍ୱାର୍ଥପରତା -ତଦନ୍ତକାରୀମାନଙ୍କର ଅବହେଳା ନୁହେ । ପ୍ରମାଣ ଆଇନରେ ସାକ୍ଷୀମାନଙ୍କର ସଂଖ୍ୟାର କୌଣସି ଗୁରୁତ୍ୱ ନାହିଁ । ଜଣେ ବିଶ୍ୱାସଯୋଗ୍ୟ ବ୍ୟକ୍ତିଙ୍କର ସାକ୍ଷ୍ୟ ଉପରେ ଆସ୍ଥା ସ୍ଥାପନ କରି ଦୋଷୀକୁ ଦଣ୍ଡ ଦେବାରେ କୌଣସି ଆଇନଗତ ବାଧା ନାହିଁ । ଯେଉଁ ମହିଳାଙ୍କର ଘଟଣା ସ୍ଥଳରେ ଉପସ୍ଥିତି ସଂପର୍କରେ ବିବାଦ ନାହିଁ, ଯାହାଙ୍କର ସ୍ୱାମୀ ଓ ପୁତ୍ର ନିହତ, କନ୍ୟା ଧର୍ଷିତା ଓ ମୃତା, ଏପରି ଅସହାୟା ନାରୀ ମୁଦାଲାମାନଙ୍କ ବିରୁଦ୍ଧରେ ମିଥ୍ୟା ସାକ୍ଷ୍ୟ ଦେବେ କାହିଁକି ? ଏହି ଜଣେ ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀଙ୍କର ଜମାନବଂଦୀ ଓ ଚିହ୍ନଟ ଉପରେ ଅପରାଧ ସାବ୍ୟସ୍ତ କରାଯାଇପାରେ ।

ଏହି ସବୁ ଆଲୋଚନା ଚାଲୁ ଚାଲୁ ପ୍ରାୟ ତିନିଟା ପଇଁଚାଳିଶ ମିନିଟ । ଏହି ସମୟରେ ମୁଦାଲା ପକ୍ଷର ଆଡ୍‌ଭୋକେଟ୍ ହଠାତ୍ ଠିଆ ହୋଇ ପୋଲିସ୍ କେସ୍ ଡାଏରୀର କେତେକ ପୃଷ୍ଠା ପ୍ରତି ବିଚାରକ ମାନଙ୍କର ଦୃଷ୍ଟି ଆକର୍ଷଣ କଲେ । କେସ୍ ଡାଏରୀରୁ ଦେଖା ଗଲା, ପୂରା କେସ ଡାଏରୀଟି ପୋଲିସ ମାନୁଏଲ ନିୟମାନୁଯାୟୀ ଗଭର୍ଣ୍ଣମେଣ୍ଟ ପ୍ରେସ୍‌ରେ ମୁଦ୍ରିତ ଫର୍ମରେ ଲେଖାଯାଇଛି ଓ ପ୍ରତ୍ୟେକ ପୃଷ୍ଠାରେ କ୍ରମିକ ନମ୍ବର ମଧ୍ୟ ଛପାଯାଇଛି, ଅଥଚ ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀ ମିସେସ୍ ସିଦ୍ଦିକ୍‌ଙ୍କର ବୟାନ ଲେଖାଯାଇଛି, ନମ୍ବର ବିହୀନ ତିନିଖଣ୍ଡ ସାଦା କାଗଜରେ । କୋର୍ଟ ରୁମ୍‌ରେ ଚାଂଚଲ୍ୟ ଖେଳିଗଲା । ରାମଚନ୍ଦ୍ର ମିଶ୍ର ଦୃଢ଼ତାର ସହ କହିଲେ, କେସ୍ ଡାଏରୀରେ ଏ ମାରପେଂଚ ତାଙ୍କୁ ପୂର୍ବରୁ ଜଣା ନଥିଲା, ନଚେତ୍ ପ୍ରଥମରୁ ସେ ଏ ବିଷୟ କୋର୍ଟଙ୍କ ଦୃଷ୍ଟିକୁ ଆଣିଥାନ୍ତେ । ସେ ଅଭିଯୋଗ କଲେ, ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀଙ୍କର ଜମାନବଂଦୀ ପୋଲିସ୍ କେସ୍‌କୁ ସୁହାଇଲା ଭଳି ପରେ ଲେଖିଛନ୍ତି । ଏପରି ସାକ୍ଷୀର ଜମାନବନ୍ଦୀ ଭିତ୍ତିରେ ଆସାମୀମାନଙ୍କର ଅପରାଧ ସାବ୍ୟସ୍ତ କରାଯାଇ ନପାରେ । ସେତେବେଳେକୁ କୋର୍ଟ ଘଡ଼ିରେ ଚାରିଟା । ଜଜ୍‌ମାନେ ଚୌକି ଛାଡ଼ି ଚେମ୍ବରକୁ ପ୍ରସ୍ଥାନ କଲେ । କିନ୍ତୁ ମୁଁ ଅନୁଭବ କଲି, ଯେପରି ଏକ ବିରାଟ 'ଧର୍ମ-ସଂକଟ'ର ଗଭୀର ଘୂର୍ଣ୍ଣି ମଧ୍ୟରେ ମୁଁ ଦୋଳାୟିତ ।

ଘରକୁ ଫେରି ମୁଁ ମୁହୂର୍ତ୍ତେ ବିଶ୍ରାମ ନେଇ ପାରିଲି ନାହିଁ । ଘଟଣାର ସତ୍ୟାସତ୍ୟ ସଂପର୍କୀୟ ନାନା ପ୍ରଶ୍ନରେ ମନ ଆନ୍ଦୋଳିତ ହେଲା । ସିଦ୍ଧିକଙ୍କର ଅବଶ୍ୟ ମୃତ୍ୟୁ ଘଟିଛି, କିନ୍ତୁ ଦଣ୍ଡିତ ଅପରାଧୀ ମାନଙ୍କ ବିରୁଦ୍ଧରେ ସଂଗୃହୀତ ପ୍ରମାଣ କ'ଣ ସଂପୂର୍ଣ୍ଣ ବିଶ୍ୱାସଯୋଗ୍ୟ ? ଯଦି ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀର ପ୍ରଥମ ବୟାନକୁ ପୋଲିସ୍ ପରେ ପରିବର୍ତ୍ତନ କରିଥାନ୍ତି ଏବଂ ସେହି କାରଣରୁ ସେ ବୟାନ ଗ୍ରହଣଯୋଗ୍ୟ ନ ହୁଏ, ତାହାହେଲେ ଘଟଣାର ଦୁଇ ବର୍ଷ ପରେ କୋର୍ଟରେ ପ୍ରଦତ୍ତ ସାକ୍ଷ୍ୟକୁ ନିଃସଂଦେହରେ ଗ୍ରହଣ କରାଯାଇ ପାରେ କି ? କୋର୍ଟରେ ପ୍ରଦତ୍ତ ସାକ୍ଷ୍ୟର ସତ୍ୟତା ନିର୍ଦ୍ଧାରଣ କରିବା ପାଇଁ, ତଦନ୍ତ ସମୟରେ ଫୌଜଦାରୀ କାର୍ଯ୍ୟବିଧି ଆଇନର ୧୬୧ ଧାରା ଅନୁଯାୟୀ ପୋଲିସ ଯେଉଁ ବୟାନ ବା ବକ୍ତବ୍ୟ ଲିପିବଦ୍ଧ କରିଥାନ୍ତି, ତାହା ସହିତ କୋର୍ଟ ସାକ୍ଷ୍ୟର ତୁଳନା କରାଯାଏ । ଯଦି ଉଭୟ ଜମାନବନ୍ଦୀ ମଧ୍ୟରେ ତାରତମ୍ୟ ଦେଖାଯାଏ, ତାହାହେଲେ ସେ କ୍ଷେତ୍ରରେ କୋର୍ଟ ସାକ୍ଷ୍ୟକୁ ଅଗ୍ରାହ୍ୟ କରାଯାଏ । ପୋଲିସ୍ ଅନୁସଂଧାନ ସମୟରେ ସାକ୍ଷୀମାନଙ୍କର ଯେଉଁ ଜମାନବଂବୀ ରେକର୍ଡ଼ କରନ୍ତି, ସେଥିରେ ସାକ୍ଷୀର ସନ୍ତକ ନିଆଯାଏ ନାହିଁ । ଏଣୁ ବିଚାର ପୂର୍ବରୁ କେସ୍ ଡାଏରୀରେ ଲିପିବଦ୍ଧ ଜମାନବନ୍ଦୀ ଯଦି ବଦଳାଇ ଦିଆଯାଇଥାଏ, ତାହାହେଲେ କୋର୍ଟରେ ପ୍ରଦତ୍ତ ଜମାନବନ୍ଦୀର ସମୀକ୍ଷା କରାଯିବ କିପରି ? ଦୁଇ ବର୍ଷ ମଧ୍ୟରେ ମୁଦେଇ ପକ୍ଷରୁ ସାକ୍ଷୀକୁ ଯେ ପ୍ରଲୋଭନ ଦିଆ ନ ଯାଇଛି ବା ଅନ୍ୟଥା ପ୍ରଭାବିତ କରା ନ ଯାଇଛି, ତାର ଭରସା କ'ଣ ? ଏ ପ୍ରକାର ଦ୍ୱନ୍ଦରେ ମସ୍ତିଷ୍କ ଭାରାକ୍ରାନ୍ତ ହୋଇଗଲା ।

ରାଉରକେଲାରେ ସରକାରଙ୍କ ତରଫରୁ ଦଂଗାଜନିତ କେସ୍ ଗୁଡ଼ିକର ତତ୍ତ୍ୱାବଧାନ ଦାୟିତ୍ୱରେ ଥିଲେ ପୋଲିସ୍ ବିଭାଗର ନବ ନିଯୁକ୍ତ ଇନ୍ସପେକ୍ଟର ଜେନେରାଲ ଶ୍ରୀକାନ୍ତ ଘୋଷ ଓ କୋର୍ଟ ଦାୟିତ୍ୱରେ ଥିଲେ ବ୍ରହ୍ମପୁରର ସୁପ୍ରସିଦ୍ଧ ଆଡ୍‌ଭୋକେଟ୍ ମୋଚାଲା ସୀତାରାମାୟା ଓ ତାଙ୍କର ସହକାରୀ ଥିଲେ ବଲାଂଗୀରର ହରିବଂଧୁ ସ୍ୱାଇଁ ଓ କଟକର ଆଡ୍‌ଭୋକେଟ୍ ଶରତ୍ ଚନ୍ଦ୍ର ମହାପାତ୍ର (ପରେ ଜଷ୍ଟିସ ମହାପାତ୍ର) । କେତେକ କାରଣରୁ ଅସନ୍ତୁଷ୍ଟ ହୋଇ କିଛି ଦିନ ପରେ ଶରତ ଏ ଦାୟିତ୍ୱରୁ ଅବ୍ୟାହତି ନେଇ କଟକ ଫେରି ଆସିଥିବା ବିଷୟ ମୁଁ ଶୁଣିଥିଲି । ଶରତଙ୍କ ସହ ମୋର ବିଶେଷ ଆତ୍ମୀୟତା ଥିଲା । ମୁଁ ତାଙ୍କୁ ଫୋନ୍ କଲି ଓ କେସ ଡାଏରୀ ପରିବର୍ତ୍ତନ ସଂପର୍କରେ ପଚାରିଲି । ଶରତ୍ କହିଲେ, ଏହି ନିର୍ଦ୍ଦିଷ୍ଟ କେସ୍ ବିଷୟରେ ସେ କିଛି କହି ପାରିବେ ନାହିଁ ।

କିନ୍ତୁ ଓକିଲମାନଙ୍କ ଜ୍ଞାତସାରରେ ଏପରି କାଗଜପତ୍ର ବଦଳା ବଦଳି ଚାଲିଥିଲା, ଯାହା ତାଙ୍କ ପକ୍ଷରେ ଅସହ୍ୟ ହେଲା । ଏ ପ୍ରକାରର ବହୁ କାରଣରୁ ସେ ଏ ଦାୟିତ୍ୱରୁ ଅବ୍ୟାହତି ନେଇ ରାଉରକେଲାରୁ ଫେରି ଆସିଲେ । ତାଙ୍କର ଉତ୍ତର ଶୁଣି ମୁଁ ଆହୁରି ହତବୁଦ୍ଧି ହୋଇଗଲି ।

ମୋର ଚିରାଚରିତ ଅଭ୍ୟାସ ବିରୁଦ୍ଧରେ, ରାତି ଅଧ ପର୍ଯ୍ୟନ୍ତ ବସି କେସ୍ ରେକର୍ଡ଼ ପୁଣିଥରେ ସାବଧାନତା ସହ ଅନୁଧ୍ୟାନ କଲି । ଏହି କେସର ଇନ୍‌ଭେଷ୍ଟିଗେଟିଂ ଅଫିସର ବା ମୁଖ୍ୟ ଅନୁସଂଧାନକାରୀଙ୍କୁ ଅନ୍ୟ ଦୁଇଜଣ ସହକାରୀ ପୋଲିସ ଅଫିସର ସାହାଯ୍ୟ କରିଥିଲେ ଓ ଏମାନେ ସମସ୍ତେ କୋର୍ଟରେ ସାକ୍ଷ୍ୟ ଦେଇଥିଲେ । ଜଣେ ଅଫିସର ଘଟଣାର ଦୁଇ ମାସ ପରେ ବିହାର ଯାଇ ମିସେସ୍ ସିଦ୍ଦିକ୍‌ଙ୍କର ଜମାନବନ୍ଦୀ ତାଙ୍କ ଗ୍ରାମରେ ରେକର୍ଡ଼ କରିଥିଲେ । ଉକ୍ତ ଅଫିସରଙ୍କ ସାକ୍ଷ୍ୟ ବିବରଣୀ ପଢ଼ି ଦେଖିଲି ଯେ ମୁଦାଲା ପକ୍ଷର ଜେରାରେ ସାଦା କାଗଜରେ ଲେଖା ଆଂଶିକ କେସ୍ ଡାଏରୀ ତାଙ୍କ ହାତ ଲେଖା ବୋଲି ସେ ସ୍ୱୀକାର କରିଛନ୍ତି । କ୍ରମିକ ନମ୍ବରଯୁକ୍ତ ଫର୍ମ ପରିବର୍ତ୍ତେ ସାଦା କାଗଜ କାହିଁକି ବ୍ୟବହାର କରାଯାଇଛି ସେ ତାର କୌଣସି କାରଣ ଦର୍ଶାଇ ପାରି ନାହାନ୍ତି । ଯଦି କେସ୍ ଡାଏରୀ ଫର୍ମର ଅଭାବ ଥିଲା ବା ସାଦା କାଗଜ ବ୍ୟବହାର କରିବାର ଅନ୍ୟ କୌଣସି କାରଣ ଥିଲା, ସେ ତାହା ସହଜରେ ଦର୍ଶାଇ ପାରିଥାନ୍ତେ ! କିନ୍ତୁ ଏପରି ଅସାଧାରଣ ବିଚ୍ୟୁତି ପାଇଁ ତାଙ୍କର କୌଣସି କୈଫିୟତ୍ ନଥିଲା । ମୁଦାଲାମାନଙ୍କ ବିରୁଦ୍ଧରେ ବ୍ୟବହାର କରିବା ପାଇଁ ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀର ବୟାନକୁ ଯେ ପରେ ବଦଳାଇ ଦିଆଯାଇଛି ଏ ବିଷୟରେ ମୋର ଆଉ ସଂଦେହର ଅବକାଶ ରହିଲା ନାହିଁ ।

ମୁଁ ଜାଣିଥିଲି ବିଚାରପତିମାନଙ୍କର ମୋ ଉପରେ ଆସ୍ଥା ଅଛି ଏବଂ ପରଦିନ କୋର୍ଟରେ ମୋର ବକ୍ତବ୍ୟ ଉପରେ ମୁଦାଲାମାନଙ୍କର ଭାଗ୍ୟ ନିର୍ଭର କରୁଛି । ମନ ସ୍ଥିର କରି ନେଲି, କୌଣସି ଅନ୍ୟାୟରେ ମୁଁ ଭାଗୀଦାର ହେବି ନାହିଁ । ଯଦି ମୁଦାଲାମାନଙ୍କ ବିରୁଦ୍ଧରେ ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀର ଜମାନବନ୍ଦୀ ସଂଦେହମୁକ୍ତ ନୁହେ, ତାହାହେଲେ ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ପ୍ରୟାସ କରିବା ଅନ୍ୟାୟ ହେବ । ନ୍ୟାୟଦାନ ପଦ୍ଧତିର ମୁଁ ମଧ୍ୟ ଗୋଟିଏ ଅଂଗ । ସରକାରୀ ଅଧିବକ୍ତା ଭାବରେ ଅନ୍ୟାୟକୁ ପ୍ରଶ୍ରୟ ଦେବା ମୋର କର୍ତ୍ତବ୍ୟ ନୁହେ ।

ପରଦିନ ମୁଁ ଯେତେବେଳେ କୋର୍ଟରେ କହିଲି ଯେ ଗତ ଅପରାହ୍ନରେ କେସ୍ ଡାଏରୀ ସଂପର୍କୀୟ ବିଚ୍ୟୁତିର ଅନାବରଣ ପରେ, ମୁଦାଲାମାନଙ୍କ ପ୍ରତି ଦଣ୍ଡବିଧାନକୁ ମୁଁ ସମର୍ଥନ କରିବାକୁ ଅକ୍ଷମ, ବିଚାରପତିମାନେ ସଂପୂର୍ଣ୍ଣ ଅବାକ୍ ହୋଇଗଲେ । ମୋର ପୂର୍ବଦିନର ଆବେଗପୂର୍ଣ୍ଣ ଉପସ୍ଥାପନା ଓ ପରଦିନର ଦ୍ୱିଧାହୀନ ଅବରୋହଣକୁ ଗ୍ରହଣ କରିନେବା କୌଣସି ବିଚାରପତିଙ୍କ ପକ୍ଷରେ ସହଜ ନୁହେ । ମୁଁ ପୁଣିଥରେ ପୋଲିସ ଡାଏରୀରେ ସଂଲଗ୍ନ କ୍ରମିକ ନମ୍ବର ବିହୀନ ସାଦା କାଗଜରେ ଲିଖିତ ମିସେସ୍ ସିଦ୍ଦିକ୍‌ଙ୍କର ବୟାନ ଓ ସଂପୃକ୍ତ ପୋଲିସ୍ ଅଫିସରଙ୍କ ସାକ୍ଷ୍ୟ ପ୍ରତି ବିଚାରକମାନଙ୍କର ଦୃଷ୍ଟି ଆକର୍ଷଣ କରି କହିଲି, ଉପଯୁକ୍ତ କୈଫିୟତ୍ ଅଭାବରେ ଏ ଜମାନବନ୍ଦୀ ପରେ ପ୍ରସ୍ତୁତ ହୋଇଛି ବୋଲି ମାନି ନେବାକୁ ହେବ । ଏପରି ପରିସ୍ଥିତିରେ ଘଟଣାର ଦୁଇ ବର୍ଷ ପରେ ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀର କୋର୍ଟରେ ପ୍ରଦତ୍ତ ବିବରଣୀ ସଂପୂର୍ଣ୍ଣ ବିଶ୍ୱାସଯୋଗ୍ୟ ହୋଇ ନପାରେ । ସଂଦେହର ବାତାବରଣରୁ ତାଙ୍କ ସାକ୍ଷ୍ୟ ମୁକ୍ତ ନୁହେ । ଜଷ୍ଟିସ୍ ଆର୍. କେ. ଦାସ ଫୌଜଦାରୀ ଆଇନରେ ଥିଲେ ଅତି ଅଭିଜ୍ଞ ଓ ପାରଂଗମ । ମୋ ବକ୍ତବ୍ୟର ତାତ୍ପର୍ଯ୍ୟ ବୁଝିବାକୁ ତାଙ୍କୁ ସମୟ ଲାଗିଲା ନାହିଁ । ମୁଦାଲାମାନଙ୍କର ଅପିଲ ମଂଜୁର ହେଲା ଓ ସେମାନଙ୍କୁ ମୁକ୍ତି ଦେବା ପାଇଁ ଆଦେଶ ହେଲା ।

ବରିଷ୍ଠ ଆଡ୍‌ଭୋକେଟ୍ ରାମଚନ୍ଦ୍ର ମିଶ୍ର ମୋର ନ୍ୟାୟନିଷ୍ଠ ଆଚରଣରେ ପ୍ରଶଂସା କରି ମୋ ଉପରେ ସାଧୁବାଦ ଅଜାଡ଼ି ଦେଲେ । ରାମଚନ୍ଦ୍ର ମିଶ୍ର ୧୯୫୭ ରୁ ୧୯୬୦ ମସିହା ପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଓ ୧୯୭୧ ମସିହାରେ ବର୍ଷକ ପାଇଁ ଆଡ୍‌ଭୋକେଟ୍ ଜେନେରାଲ ଥିଲେ । କାର୍ଯ୍ୟତଃ ୧୯୭୨ ଜୁନ୍ ମାସରେ ମୁଁ ତାଙ୍କଠାରୁ ଆଡ୍‌ଭୋକେଟ୍ ଜେନେରାଲ କାର୍ଯ୍ୟଭାର ଗ୍ରହଣ କରିଥିଲି । ସେ ଆଉ ନାହାନ୍ତି । ଗତ ଚାରିବର୍ଷ ତଳେ ଆମେରିକାରେ ତାଙ୍କର ଦେହାନ୍ତ ହୋଇଯାଇଛି । କିନ୍ତୁ ସର୍ବ ସମକ୍ଷରେ ତାଙ୍କର ଉଲ୍ଲସିତ ସାଧୁବାଦ ମୁଁ ଏବେ ମଧ୍ୟ ଭୁଲିନାହିଁ ।



# ବୀରେନ୍ ମିତ୍ରଙ୍କ ଲୋକ

୧୯୬୭ ମସିହା ଫେବୃଆରୀ ମାସରେ ଅନୁଷ୍ଠିତ ସାଧାରଣ ନିର୍ବାଚନରେ କଂଗ୍ରେସ ବିରୁଦ୍ଧରେ ଏକ ଶକ୍ତିଶାଳୀ ମେଣ୍ଟ ଗଢ଼ିଉଠିଲା । ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର ରାଧାନାଥ ରଥ, ରାଜେନ୍ଦ୍ର ନାରାୟଣ ସିଂହଦେଓ, ନବକୃଷ୍ଣ ଚୌଧୁରୀ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ଏହି କଂଗ୍ରେସ-ବିରୋଧୀ ଆନ୍ଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ପୂର୍ବ ପାଂଚ ବର୍ଷର ପ୍ରଶାସନିକ ବିଶୃଙ୍ଖଳା, ନୈତିକ ଅଧୋଗତି ଓ ଦଳୀୟ କନ୍ଦଳ ହେତୁ କଂଗ୍ରେସ ଦଳ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହେଲେ । ବିଧାନ ସଭାକୁ କଂଗ୍ରେସ ଦଳରୁ ମାତ୍ର ଏକୋଇଶ ଜଣ ସଦସ୍ୟ ନିର୍ବାଚିତ ହୋଇଥିଲେ । ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାୟ ପ୍ରଭୃତି ଦଳର ବରିଷ୍ଠ ନେତାମାନଙ୍କର ମଧ୍ୟ ପରାଜୟ ଘଟିଲା । ଅଥଚ ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଦଳ ଅଣଚାଶ, ମହତାବଙ୍କ ଜନ-କଂଗ୍ରେସ ଦଳ ଛବିଶ ଓ ସୋସାଲିଷ୍ଟ ଦଳ ଏକୋଇଶଟି ସ୍ଥାନ ହାସଲ କରିଥିଲେ । ସ୍ୱତନ୍ତ୍ର ଓ ଜନ-କଂଗ୍ରେସର ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା ଓ ଆର.ଏନ୍. ସିଂହଦେଓ ହେଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ।

ଏପରି ଏକ ଖେଚୁଡ଼ି ମନ୍ତ୍ରୀ ପରିଷଦ ଅଧୀନରେ ପ୍ରଶାସନିକ ନିର୍ମଳତା ଓ ଜନ-କଲ୍ୟାଣ କାର୍ଯ୍ୟକ୍ରମର ଭବିଷ୍ୟତ କ'ଣ ହେବ, ଏ ବିଷୟରେ ମନରେ ଘୋର ସଂଦେହ ଥାଏ । ବିଶେଷତଃ ସରକାର ଓ ହାଇକୋର୍ଟ ମଧ୍ୟରେ କି ପ୍ରକାରର ସଂପର୍କ ରହିବ, ଏବଂ ଜଜ୍ ଓ ଲ' ଅଫିସର ନିଯୁକ୍ତି କ୍ଷେତ୍ରରେ ନୂତନ ସରକାର କି ନୀତି ଅବଲମ୍ବନ କରିବେ, ତାହା ଜାଣିବାକୁ ଆମ୍ଭେମାନେ ଉତ୍ସୁକ ଥାଉ । ପ୍ରଥମ ପରିବର୍ତ୍ତନ ହେଲା ଆଡ୍‌ଭୋକେଟ୍ ଜେନେରାଲ ପଦରେ । ଜଷ୍ଟିସ୍ ହରିହର ମହାପାତ୍ର ପାଟନାରୁ ଫେରି ଜାନୁଆରୀ ପନ୍ଦର ତାରିଖରେ ଏ ଦାୟିତ୍ୱ ଗ୍ରହଣ କରିଥିଲେ । ସରକାର ପରିବର୍ତ୍ତିତ ହେଲେ ଆଡ୍‌ଭୋକେଟ୍ ଜେନେରାଲଙ୍କୁ ଯେ ଇସ୍ତଫା ଦେବାକୁ ହୁଏ, ଏ ପରଂପରା ସେ ସ୍ୱୀକାର କଲେ ନାହିଁ । ମାର୍ଚ୍ଚ ତେର ତାରିଖରେ କାର୍ଯ୍ୟକାଳର ଦୁଇମାସ ପୂରିବା ପୂର୍ବରୁ ତାଙ୍କୁ ଅବ୍ୟାହତି ଦିଆହେଲା ଓ ତାଙ୍କ ସ୍ଥାନରେ ଆଶୋକ ଦାସ ନୂତନ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ ହେଲେ । ଆଶଂକା ହେଉଥିଲା, ଏହାପରେ

ଜଷ୍ଟିସ୍ ବର୍ମନଙ୍କ ପାଳି ପଡ଼ିବ । ୧୯୬୪ ଛାତ୍ର ଅଶାନ୍ତି ଉପରେ ଯେଉଁ ତଦନ୍ତ କମିସନ ଗଠିତ ହୋଇଥିଲା, ଜଷ୍ଟିସ୍ ବର୍ମନ ଥିଲେ ସେ କମିସନର ଏକମାତ୍ର ସଦସ୍ୟ । ଛାତ୍ର ଗଣ୍ଡଗୋଳକୁ ଦମନ କରିବାରେ ପୋଲିସ୍ ପକ୍ଷରୁ କୌଣସି ମାତ୍ରାଧିକ କାର୍ଯ୍ୟ କରାଯାଇ ନାହିଁ ବୋଲି ସେ ରିପୋର୍ଟ ଦେଇଥିଲେ । ଏଥିପାଇଁ ପ୍ରଜାତନ୍ତ୍ର ଓ ସ୍ୱତନ୍ତ୍ର ଦଳର ମୁଖପତ୍ରରେ ତାଙ୍କର ଘୋର ସମାଲୋଚନା କରାଯାଇ ଥିଲା । ଏଣୁ ସଂଦେହ ଥିଲା ଯେ ଅହମଦ୍‌ଙ୍କ ପରେ ବର୍ମନଙ୍କ ଚିଫ୍ ଜଷ୍ଟିସ୍ ନିଯୁକ୍ତି ବ୍ୟାପାରରେ ନୂତନ ସରକାର ବୋଧହୁଏ ବାଧା ସୃଷ୍ଟି କରିବେ । କିନ୍ତୁ ପରେ ଜଣା ପଡ଼ିଲା, ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ଫେବ୍ରୁଆରୀ ମାସରୁ ବର୍ମନଙ୍କ ଚିଫ୍ ଜଷ୍ଟିସ ନିଯୁକ୍ତି ସଂପର୍କରେ ନିଜର ସୁପାରିଶ କେନ୍ଦ୍ର ସରକାରଙ୍କୁ ଜଣାଇ ଦେଇଥିଲେ । ଏପ୍ରିଲ ଛ' ତାରିଖରେ ଓଡ଼ିଶା ହାଇକୋର୍ଟର ଷଷ୍ଠ ମୁଖ୍ୟ ବିଚାରପତି ଭାବରେ ଶପଥ ନେଲେ ଜଷ୍ଟିସ୍ ସତ୍ୟ ଭୂଷଣ ବର୍ମନ ।

ଅହମଦ୍ ଓଡ଼ିଶାରୁ ଅବସର ନେବା ପରେ ହାଇକୋର୍ଟ ଜଜ୍ ସଂଖ୍ୟା ହେଲା ମାତ୍ର ତିନି । ୧୯୬୨ ଜାନୁଆରୀ ପରେ ଚିଫ୍ ଜଷ୍ଟିସ ନରସିଂହମ୍‌ଙ୍କ ଉଦାସୀନତା ଓ ପରେ ହାଇକୋର୍ଟ ଓ ସରକାରଙ୍କ ମଧ୍ୟରେ ବୁଝାମଣାର ଅଭାବ ଓ ଅନ୍ୟ ବହୁ କାରଣରୁ ଜଜ୍ ପଦରେ କୌଣସି ନିଯୁକ୍ତି ଦିଆଯାଇ ନଥିଲା । ସର୍ଭିସେସରୁ, ଅର୍ଥାତ୍ ଜିଲା ଜଜ୍‌ମାନଙ୍କ ମଧ୍ୟରୁ କେହି ଜଜ୍ ପଦରେ ନଥିଲେ । ଜଷ୍ଟିସ ବର୍ମନ ଚିଫ୍ ଜଷ୍ଟିସ ଦାୟିତ୍ୱ ଗ୍ରହଣ କରିବା ମାତ୍ରେ ତତ୍‌କାଳୀନ ରେଜିଷ୍ଟ୍ରାର ଓ ବରିଷ୍ଠ ଜିଲାଜଜ୍ ଅଭିମନ୍ୟୁ ମିଶ୍ରଙ୍କୁ ହାଇକୋର୍ଟ ଜଜ୍ ଭାବରେ ନିଯୁକ୍ତି ଦେବା ପାଇଁ ସୁପାରିଶ କଲେ । ଓଡ଼ିଶା ସରକାର ଓ ଭାରତ ସରକାରଙ୍କ ସହମତ ହେତୁ, ଦୀର୍ଘ ପାଂଚ ବର୍ଷ ପରେ ଜୁଲାଇ ଉଣେଇଶ ତାରିଖରେ ଅଭିମନ୍ୟୁ ବାବୁ ଶପଥ ଗ୍ରହଣ କଲେ ଓ ତାଙ୍କର ନିଯୁକ୍ତି ସବୁ ସ୍ତରରେ ସମାଦୃତ ହୋଇଥିଲା ।

ସେପ୍ଟେମ୍ବର ମାସରେ ଜଷ୍ଟିସ ରାଜ କିଶୋର ଦାସଙ୍କ ଅବସର ନେବା ସମୟ ନିକଟେଇ ଆସୁଥାଏ । ଶୂନ୍ୟ ସ୍ଥାନ ପୂରଣ କରିବା ପାଇଁ ଚିଫ୍ ଜଷ୍ଟିସ ତନାଘନା ଉଦ୍ୟମ ଆରମ୍ଭ କଲେ । ଯେଉଁ ଚାରିଜଣ ଆଡ୍‌ଭୋକେଟ୍‌ଙ୍କ ନାମ ଚିଫ୍ ଜଷ୍ଟିସ ସୁପାରିଶ୍ କରିଥିଲେ, ସେଥିରେ ମୋ ନାମ ସହିତ

ବୀରେନ୍ଦ୍ର ମୋହନ ପଟ୍ଟନାୟକ, ସୁକାନ୍ତ କିଶୋର ରାୟ ଓ ରଂଗନାଥ ମିଶ୍ରଙ୍କ ନାମ ଅନ୍ତର୍ଭୁକ୍ତ । ରଂଗନାଥ ମିଶ୍ରଙ୍କ ସଂପର୍କରେ ଚିଫ୍ ଜଷ୍ଟିସ ଲେଖିଥିଲେ, ସେ ଜଜ୍ ପଦ ପାଇଁ ଯୋଗ୍ୟ ହେଲେ ମଧ୍ୟ, ତାଙ୍କର ଅଳ୍ପ ବୟସ ଦୃଷ୍ଟିରୁ ତାଙ୍କ ନାମ ପରେ ବିଚାର କରାଯାଇପାରେ । ଅବଶ୍ୟ ୧୯୬୯ ମସିହାରେ ସେ ଜଜ୍ ନିଯୁକ୍ତ ହୋଇ ଦୁଇ ବର୍ଷ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି ରହିବା ପରେ ୧୯୮୩ ମସିହାରେ ସୁପ୍ରିମ କୋର୍ଟ ବିଚାରପତି ଭାବରେ ପଦୋନ୍ନତି ପାଇଥିଲେ ଓ ନିକଟରେ ଭାରତର ପ୍ରଧାନ ବିଚାରପତି ଭାବରେ ଅବସର ନେଇଛନ୍ତି । ଯାହାହେଉ ତତ୍‌କାଳୀନ ନିୟମ ଦୃଷ୍ଟିରୁ, ଚିଫ୍ ଜଷ୍ଟିସଙ୍କ ପ୍ରସ୍ତାବ ସହ ଚିଫ୍ ମିନିଷ୍ଟର ସହମତ ହେଲେ ତାହା ରାଜ୍ୟପାଳଙ୍କ ଜରିଆରେ ଭାରତ ସରକାରଙ୍କ ନିକଟକୁ ପଠାଯାଏ । ଭାରତ ସରକାର ଚିଫ୍ ଜଷ୍ଟିସ ଅଫ ଇଣ୍ଡିଆଙ୍କ ସହ ପରାମର୍ଶ କରିବା ପରେ ରାଷ୍ଟ୍ରପତିଙ୍କ ସ୍ୱାକ୍ଷରରେ ଜଜ୍ ନିଯୁକ୍ତ ହୁଅନ୍ତି । କାର୍ଯ୍ୟତଃ ମୁଖ୍ୟ ବିଚାରପତି ଓ ମୁଖ୍ୟମନ୍ତ୍ରୀଙ୍କ ସମ୍ମତି ବ୍ୟତିରେକେ ଭାରତ ସରକାର କୌଣସି ବିଚାରପତି ନିଯୁକ୍ତ କରନ୍ତି ନାହିଁ । ଅବଶ୍ୟ ବର୍ତ୍ତମାନ ହାଇକୋର୍ଟ ଜଜ୍ ନିଯୁକ୍ତି ପଦ୍ଧତିରେ କେତେକ ପରିବର୍ତ୍ତନ କରାଯାଇଛି । ଯାହାହେଉ ଚିଫ୍ ଜଷ୍ଟିସ ବର୍ମନଙ୍କ ସୁପାରିଶ୍‌କୁ ମୁଖ୍ୟମନ୍ତ୍ରୀ ଗ୍ରହଣ କଲେ ନାହିଁ । ଚାରିଟି ନାମ ମଧ୍ୟରୁ ତୃତୀୟ ପ୍ରସ୍ତାବିତ ନାମଟି ମୁଖ୍ୟମନ୍ତ୍ରୀଙ୍କ ପକ୍ଷରେ ଗ୍ରହଣୀୟ ହେଲା । ତଦନୁଯାୟୀ ୧୯୬୭ ଅକ୍ଟୋବର ପଚିଶ ତାରିଖ ଦିନ ସୁକାନ୍ତ କିଶୋର ରାୟ ଅତିରିକ୍ତ ବିଚାରପତି ଭାବରେ ଶପଥ ନେଲେ ।

ସେ ଦିନ ସଂଧ୍ୟା ସମୟରେ ଚିଫ୍ ଜଷ୍ଟିସଙ୍କ କୋଠିରୁ ଫୋନ୍ ଆସିଲା, ତାଙ୍କୁ ଦେଖା କରିବା ପାଇଁ । ଚିଫ୍ ଜଷ୍ଟିସ କହିଲେ, ''ରଥ, ତୁମେ ଜାଣ ଜଜ୍ ନିଯୁକ୍ତି ପାଇଁ ମୁଁ ତୁମର ନାମ ପ୍ରସ୍ତାବ କରିଥିଲି । କିନ୍ତୁ ତୁମ ନିଯୁକ୍ତିର ବିରୋଧ କଲେ ଚିଫ୍ ମିନିଷ୍ଟର । ତାଙ୍କ ସହିତ କ'ଣ ତୁମର ପରିଚୟ ନାହିଁ, ତୁମେ ତାଙ୍କୁ ସାକ୍ଷାତ କଲ ନାହିଁ କାହିଁକି ?'' ମୁଁ ଉତ୍ତର ଦେଲି, ''ଆର.ଏନ୍. ସିଂହଦେଓଙ୍କ ସହ ୧୯୫୫ ମସିହାରେ ସୀମା ଆନ୍ଦୋଳନ ସମୟରୁ ମୋର ବ୍ୟକ୍ତିଗତ ପରିଚୟ ଅଛି । ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଭାବରେ ମୋର ଦକ୍ଷତା ଉପରେ ତାଙ୍କର ଆସ୍ଥା ଅଛି ବୋଲି ମୁଁ ବହୁ ସୂତ୍ରରୁ ଜାଣିଛି । ମୋର ନାମ ଜଜ୍‌ସିପ୍ ପାଇଁ ବିଚାରାଧୀନ ଥିବା ସମୟରେ ମୁଁ ତାଙ୍କୁ ସାକ୍ଷାତ କରିବା ଉଚିତ ମନେ କରି ନଥିଲି ।'' ମୋ ଉତ୍ତର ଶୁଣି ଚିଫ୍ ଜଷ୍ଟିସ୍ ନୀରବ ରହିଲେ ।

ଚାରିମାସ ପରେ ସୁକାନ୍ତ କିଶୋର ରାୟ ସ୍ଥାୟୀ ବିଚାରପତି ହେଲେ । ଏଥର ଚିଫ୍ ଜଷ୍ଟିସ ପୁନର୍ବାର ଦୁଇଜଣ ବିଚାରପତି ନିଯୁକ୍ତି ପାଇଁ ଉଦ୍ୟମ ଆରମ୍ଭ କଲେ । ଜିଲ୍ଲା ଜଜ୍‌ମାନଙ୍କ ମଧ୍ୟରୁ ରେଜିଷ୍ଟ୍ରାର ବି. କେ. ପାତ୍ର ଓ ବାର୍‌ରୁ ମୋ ନାମ ସୁପାରିଶ୍ କରି ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନା କଲେ । କିନ୍ତୁ ମୋ ପ୍ରତି ଆର୍. ଏନ. ସିଂହଦେଓଙ୍କ ବିରାଗରେ ଭଟା ପଡ଼ିନଥିଲା । ତାରିଖଟା ମନେ ନାହିଁ । ୧୯୬୮ ମସିହା ଆରମ୍ଭରେ ଦିନେ ସଂଧ୍ୟାରେ ଚିଫ୍ ଜଷ୍ଟିସଙ୍କ କୋଠିରୁ ଡାକରା ଆସିଲା । ଚିଫ୍ ଜଷ୍ଟିସ ବର୍ମନ କହିଲେ, "ରଥ ! କାହିଁକି ଚିଫ୍ ମିନିଷ୍ଟର ତୁମର ବିରୋଧ କରୁଛନ୍ତି ? ଏସ୍. କେ. ରାୟଙ୍କ ନଯୁକ୍ତି ସମୟରେ ମୋ ପ୍ରସ୍ତାବରେ ତୁମ ନାମ ଉପରେ ଥିଲା । ଅଥଚ ଚିଫ୍ ମିନିଷ୍ଟରଙ୍କ ବିରୋଧ ହେତୁ ତାହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ପୁଣି ଥରେ ମୁଁ ତୁମ ବିଷୟରେ ଏବେ ଆଲୋଚନା କରିଥିଲି । ତାଙ୍କର ବିରୋଧୀ ଭୂମିକାରେ କୌଣସି ପରିବର୍ତ୍ତନ ନାହିଁ ।" ଚିଫ୍ ଜଷ୍ଟିସଙ୍କ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ । ଜଣେ ଛାମୁଙ୍କର ଅନୁଗ୍ରହ ଲାଭ କରିବା ପାଇଁ ଯେଉଁ ସବୁ ସଦ୍‌ଗୁଣ ଆବଶ୍ୟକ, ମୋଠାରେ ଯେ ତାର ସମ୍ପୂର୍ଣ୍ଣ ଅଭାବ, ସେ ବିଷୟରେ ମୁଁ ସଚେତ ଥିଲି । ମୁଁ ଉତ୍ତର ଦେଲି, "ସେ ତ ରାଜାରାଜୁଡ଼ା ଲୋକ । କାନକୁହା କଥାରେ ତାଙ୍କର ବହୁ ବିଶ୍ୱାସ । ମୁଁ କଂଗ୍ରେସୀ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ପ୍ରଥମେ ଷ୍ଟାଣ୍ଡିଂ କାଉନ୍‌ସେଲ ଓ ପରେ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ ନିଯୁକ୍ତ ହୋଇଥିଲି । ଏଣୁ ମୋତେ ହୁଏତ କଂଗ୍ରେସ ଲୋକ ବୋଲି ସଂଦେହ କରୁଥିବେ.... ।" ମୁଁ ଅଧିକ ଆଗେଇବା ପୂର୍ବରୁ ବର୍ମନ୍ ସାହେବ ମୋ କଥାରେ ବାଧା ଦେଇ କହିଲେ, "ନା ନା, ସେ କହୁଛନ୍ତି, ଇୟୁ ଆର ଏ ମ୍ୟାନ ଅଫ ବୀରେନ୍ ମିତ୍ର, ତୁମେ ବୀରେନ ମିତ୍ରଙ୍କ ଲୋକ - ଘଟଣା କ'ଣ ?"

ଚିଫ୍ ଜଷ୍ଟିସଙ୍କ ପ୍ରଶ୍ନରେ ପୁରୁଣା ଦିନର ସ୍ମୃତିଗୁଡ଼ିକ ମନରେ ନାଚି ଉଠିଲା । ଅବଶ୍ୟ ବୀରେନ୍ ମିତ୍ର ଥିଲେ ମୋର ଅତି ପରିଚିତ, ୧୯୩୮ ମସିହାରୁ ତାଙ୍କ ସହ ଘନିଷ୍ଠ ସଦ୍‌ଭାବ । ଛାତ୍ର ଆନ୍ଦୋଳନ ଓ ବିଭିନ୍ନ ବାମପନ୍ଥୀ ଆନ୍ଦୋଳନରେ ସେ ଥିଲେ ଆମ୍ଭମାନଙ୍କର ସହାୟକ । ପରେ ସେ ବିଧିବଦ୍ଧ ଭାବରେ ବାମପନ୍ଥୀ ରାଜନୀତି ଛାଡ଼ି କଂଗ୍ରେସ ଦଳରେ ଯୋଗ ଦେଲେ । ଅଥଚ ୧୯୫୦ ମସିହାରେ ମୁଁ ସକ୍ରିୟ ରାଜନୀତିରୁ ବିଦାୟ ନେଇଥିଲି ।

ସାଧାରଣ କର୍ମୀରୁ ଉଠି ସେ ୧୯୬୩ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ଜୀବନରେ ବହୁ ଘାତ ପ୍ରତିଘାତ, ଦୁଃଖ କଷ୍ଟ ଓ ଉତ୍ଥାନ ପତନ ମଧ୍ୟରେ ଗତି କରି ଶେଷ ଅବସ୍ଥାରେ ଅତି ଦୟନୀୟ ଅବସ୍ଥାରେ ଇହଧାମ ତ୍ୟାଗ କଲେ । କିନ୍ତୁ ଶେଷ ପର୍ଯ୍ୟନ୍ତ ତାଙ୍କ ସହିତ ବଂଧୁତା ଅତୁଟ ରହିଥିଲା । ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି ଏବଂ ସେମାନଙ୍କ ସଂଖ୍ୟା ଅଗଣିତ, ସେମାନେ ମୁକ୍ତ କଂଠରେ ସ୍ୱୀକାର କରନ୍ତି ଯେ ତାଙ୍କ ପରି ହୃଦୟବାନ, ସ୍ନେହଶୀଳ ଓ ପରୋପକାରୀ ବ୍ୟକ୍ତି ପୃଥିବୀରେ ବିରଳ । ତାଙ୍କର ବ୍ୟକ୍ତିଗତ ସଂପର୍କରେ ସେ ରାଜନୀତିକୁ ସ୍ଥାନ ଦିଅନ୍ତି ନାହିଁ ଏବଂ ଆବଶ୍ୟକ ହେଲେ ଚରମ ରାଜନୈତିକ ବିରୋଧୀକୁ ମଧ୍ୟ ସାହାଯ୍ୟ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

ମୁଁ ଚିଫ୍ ଜଷ୍ଟିସ୍‌ଙ୍କୁ କହିଲି, ‘‘ଅତି ସାମାନ୍ୟ ଘଟଣାକୁ ମୁଖ୍ୟମନ୍ତ୍ରୀ ମୋ ବିରୁଦ୍ଧରେ ବ୍ୟବହାର କରୁଛନ୍ତି । ୧୯୬୧ ମସିହାରେ ବୀରେନ୍ ମିତ୍ର ଥରେ ମତେ ଫୋନ୍ କଲେ, ତାଙ୍କର ଘର ତିଆରି ପାଇଁ ସିମେଣ୍ଟ ୱ୍ୟାଗନ୍ ଆସିଛି, ୱ୍ୟାଗନ୍ ଖଲାସ କରିବା ପାଇଁ ପାଖରେ ଟଂକା ନାହିଁ । ମୋତେ ପାଂଚ ଶହ ଟଂକା ଧାର ଦେବାକୁ ହେବ । ସେତେବେଳେ ସେ କଟକରୁ ବିଧାନ ସଭା ସଦସ୍ୟ । ବିହାରୀବାଗ ପ୍ରଜାତନ୍ତ୍ର ହତାରେ ରହୁଥାନ୍ତି ଓ କାଠଗଡ଼ା ସାହିରେ ତାଙ୍କର ନୂଆ ଘର ତିଆରି ହେଉଥାଏ । ବୀରେନ୍‌ଦାଙ୍କୁ ମନା କରିବାକୁ ମୋର ଜିଭ ଲେଉଟିଲା ନାହିଁ । ଅଧଘଣ୍ଟାଏ ପରେ ତାଙ୍କ ସେକ୍ରେଟାରୀ କେଫାୟତ୍ ମୁନ୍‌ସୀ ଆସି ପହଂଚିଲେ । ମୁଁ ପାଂଚଶହ ଟଂକାର ଗୋଟିଏ ବିଅରର ଚେକ୍ ବଢ଼ାଇ ଦେଲି । ପ୍ରକୃତରେ ତାଙ୍କର ଟଂକାର ଅଭାବ ଥିଲା ବା ଅନ୍ୟ କୌଣସି କାରଣରୁ ସେ ଧାର ନେଉଥିଲେ, ସେ ବିଷୟ ସେତେବେଳେ ମୋ ମନକୁ ଛୁଇଁ ନାହିଁ । ଏ ଘଟଣାର କିଛି ଦିନ ପରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ଦଳ କଂଗ୍ରେସ ଓ ଗଣତନ୍ତ୍ର ପରିଷଦର ମିଳିତ ମନ୍ତ୍ରୀମଣ୍ଡଳରୁ ସମର୍ଥନ ପ୍ରତ୍ୟାହାର କରି ନେଇଥିଲେ । ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ଇସ୍ତଫା ଦେଲେ ଓ ଜୁନ ମାସରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲା । ସବୁ ବର୍ଷ ପରି ସେ ବର୍ଷ ଖରା ଛୁଟିରେ ମୁଁ ସପରିବାର ବାହାରକୁ ବୁଲି ଯାଇଥିଲି । ନିର୍ବାଚନର ସପ୍ତାହକ ପୂର୍ବରୁ କଟକ ଫେରି ଦେଖେ କଟକ ସହରର କଂଗ୍ରେସ ପ୍ରାର୍ଥୀ ବୀରେନ୍ ମିତ୍ରଙ୍କ ତରଫରୁ ଏକ ହଳଦିଆ କାଗଜର ପ୍ରଚାର ପତ୍ର

ବଣ୍ଟା ଯାଉଛି । କାଠଗଡ଼ା ସାହୀରେ ନୂଆ ଘର ତିଆରି ସଂପର୍କରେ ବିରୋଧୀ ଦଳ ପକ୍ଷରୁ ତାଙ୍କ ବିରୁଦ୍ଧରେ ଯେଉଁ ସମାଲୋଚନା କରା ହେଉଥିଲା, ତାର ଜବାବରେ ସେ ଏହି ପ୍ରଚାର ପତ୍ରରେ ଉଲ୍ଲେଖ କରିଥିଲେ ଯେ ତାଙ୍କର ବନ୍ଧୁ ବାନ୍ଧବଙ୍କ ଠାରୁ ଧାର ଉଧାର କରି ସେ ଏ ଘର ତିଆରି କରୁଛନ୍ତି । ପ୍ରଚାର ପତ୍ରରେ ଅନ୍ୟ ବନ୍ଧୁ ଲୋକଙ୍କ ସମେତ ମୋ ଠାରୁ ପାଂଚଶହ ଟଂକା ଧାର ନେଇଥିବା ବିଷୟରେ ଉଲ୍ଲେଖ ଥିଲା ।''

ମୁଁ ତା'ପରେ କହି ଚାଲିଲି, ''କଟକ ଫେରିବା ପରେ ଗୋଟିଏ ପ୍ରତିଷ୍ଠିତ ସଂବାଦପତ୍ରର ଜଣେ ସାମ୍ବାଦିକ ବନ୍ଧୁ ମୋତେ ସାକ୍ଷାତ କରି ଏହି ପ୍ରଚାରପତ୍ରରେ ଉଲ୍ଲିଖିତ ବିଷୟରେ ଏକ ପ୍ରତିବାଦ ଦେବାକୁ ଅନୁରୋଧ କଲେ । କଥାବାର୍ତ୍ତାରୁ ବୁଝାଗଲା, ସମ୍ବାଦପତ୍ର ସହ ସଂପୃକ୍ତ ଜଣେ ବିଶିଷ୍ଟ ନେତାଙ୍କ ଦ୍ୱାରା ସେ ପ୍ରେରିତ । ମୁଁ ଉକ୍ତ ସାଂବାଦିକ ବନ୍ଧୁଙ୍କୁ ସ୍ପଷ୍ଟ କହିଲି, ପ୍ରଚାର ପତ୍ରରେ ବୀରେନ୍ ମିତ୍ର ମୋର ନାମକୁ ଯେପରି ଭାବରେ ବ୍ୟବହାର କରିଛନ୍ତି ସେଥିପାଇଁ ମୁଁ ଦୁଃଖିତ । ସେ ମୋର ସମ୍ମତି ନେଇ ନାହାନ୍ତି ଏବଂ ନିର୍ବାଚନ ପ୍ରଚାରରେ ମୋର ନାମର ବ୍ୟବହାର ମୁଁ ଆଦୌ ପସନ୍ଦ କରୁନାହିଁ । କିନ୍ତୁ ମୋ ସଂପର୍କରେ ଯାହା ଲେଖା ଅଛି ତାହା ସତ୍ୟ, ପ୍ରତିବାଦ କରିବା ମୋ ପକ୍ଷରେ ସଂଭବ ନୁହେ । ସତକୁ ସତ ସେ ମୋ ଠାରୁ ପାଂଚଶହ ଟଂକା ଧାର ନେଇଛନ୍ତି ଏବଂ ତାହା ମଧ୍ୟ ମୁଁ ଚେକ୍‌ରେ ଦେଇଛି ।''

'ମ୍ୟାନ୍ ଅଫ୍ ବୀରେନ୍ ମିତ୍ର' କାହାଣୀଟି ଶୁଣିବା ପରେ ବର୍ମନ ପଚାରିଲେ ''ତୁମେ କାହାକୁ ଟଂକା ଧାର ଦେଲ, ଏ କଥା ମୁଖ୍ୟମନ୍ତ୍ରୀ ଜାଣିବେ କିପରି ?'' ମୁଁ କହିଲି, ''ରାଜେନ୍ଦ୍ର ନାରାୟଣ ସିଂହଦେଓ ଅବଶ୍ୟ ବର୍ତ୍ତମାନ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ସେ ମଧ୍ୟ ବଲାଙ୍ଗୀର ପାଟଣାର ଭୂତପୂର୍ବ ମହାରାଜା, ପ୍ରଶାସନିକ କୌଶଳ ପ୍ରୟୋଗରେ ମହା ଧୁରନ୍ଧର । ୧୯୬୧ ମସିହା ଆରମ୍ଭରେ ବିଜୁ ବୀରେନ କଗ୍ରେସ ଓ ଗଣତନ୍ତ୍ର ପରିଷଦ ମନ୍ତ୍ରୀମଣ୍ଡଳକୁ ଭାଂଗି ତାଙ୍କୁ ଯେ କ୍ଷମତାରୁ ବିତାଡ଼ିତ କରିଥିଲେ, ସେଥିପାଇଁ ସେ ସେମାନଙ୍କୁ କ୍ଷମା ଦେଇ ନାହାନ୍ତି । ସେ ତାଙ୍କର ରାଜନୈତିକ ବିରୋଧୀମାନଙ୍କ ବିରୁଦ୍ଧରେ ବିଧିବଦ୍ଧ ପଂଜିକା ରଖନ୍ତି । ବୀରେନ୍ ମିତ୍ରଙ୍କ ସଂକ୍ରାନ୍ତୀୟ ପଂଜିକାରେ ଏ ହଳଦିଆ ପ୍ରଚାରପତ୍ରଟି ରହିଛି ଏବଂ ସେ ଏହାକୁ ମୋ ବିରୁଦ୍ଧରେ ବ୍ୟବହାର କରୁଛନ୍ତି ।

ଚିଫ୍ ଜଷ୍ଟିସ ପଚାରିଲେ, "ବୀରେନ୍ ମିତ୍ରଙ୍କ ବନ୍ଧୁ ହେବାଟା କ'ଣ ଜଜ୍ ପଦ ପାଇଁ ଅଯୋଗ୍ୟତା?" ମୁଁ ଉତ୍ତର ଦେଲି "ସେ କଥା ଆଉ ଭାବି ଲାଭ ନାହିଁ। ମୁଁ ଅବଶ୍ୟ କୌଣସି ରାଜନୈତିକ ଦଳ ସହିତ ସଂପୃକ୍ତ ନୁହେ ବା କାହାରି ଲୋକ ନୁହେ। କିନ୍ତୁ ମୁଖ୍ୟମନ୍ତ୍ରୀ ତାଙ୍କ ମତ ପରିବର୍ତ୍ତନ କରିବାର ସଂଭାବନା ନାହିଁ।"

ମୁଁ ପୁଣି କହିଲି, "ଚିଫ୍ ଜଷ୍ଟିସ ଏଣିକି ମୋ ବିଷୟରେ ଚିନ୍ତିତ ହେବା ଉଚିତ ନୁହେ। ଆଇନ ବିଦ୍ୟାରେ ଅନଭିଜ୍ଞ ଜଣେ ଅଣ୍ଡର ଗ୍ରାଜୁଏଟ ଚିଫ୍ ମିନିଷ୍ଟରଙ୍କ ଅନୁଗ୍ରହ ଠାରୁ ମୋ ସଂପର୍କରେ ମାନ୍ୟବର ଚିଫ୍ ଜଷ୍ଟିସଙ୍କର ମତାମତ ମୋ ପକ୍ଷରେ ଅଧିକ ମୂଲ୍ୟବାନ।"

ଏପ୍ରିଲ ମାସରେ ହାଇକୋର୍ଟରେ ଦୁଇଜଣ ବିଚାରପତି ନିଯୁକ୍ତ ହେଲେ। ଜିଲ୍ଲା ଜଜ୍‌ମାନଙ୍କ ମଧ୍ୟରୁ ରେଜିଷ୍ଟ୍ରାର ବି. କେ. ପାତ୍ର ଓ ଆଡ୍‌ଭୋକେଟ୍ ସଚ୍ଚିଦାନନ୍ଦ ଆଚାର୍ଯ୍ୟ। ମୁଖ୍ୟମନ୍ତ୍ରୀଙ୍କ ପକ୍ଷରୁ ସ୍ପଷ୍ଟ ସୂଚନା ଦିଆହେଲା, ତାଙ୍କ ଦ୍ୱାରା ମନୋନୀତ ଆଡ୍‌ଭୋକେଟ୍ ଆଚାର୍ଯ୍ୟଙ୍କ ମନୋନୟନରେ ମୁଖ୍ୟ ବିଚାରପତି ସମ୍ମତି ନ ଦେଲେ, ବି. କେ. ପାତ୍ରଙ୍କ ମନୋନୟନରେ ମୁଖ୍ୟମନ୍ତ୍ରୀ ମଧ୍ୟ ସ୍ୱୀକୃତି ଦେବେ ନାହିଁ। ଏ ପରିସ୍ଥିତିରେ ବର୍ମନ ସିଂହଦେଓଙ୍କ ପ୍ରସ୍ତାବରେ ସମ୍ମତ ହେଲେ।

୬୨-୬୮ ମସିହାରେ ମୁଁ ମନେ କରୁଥିଲି, ମୋର ବିଚାରପତି ନିଯୁକ୍ତିରେ କୌଣସି ବାଧାବିଘ୍ନ ଉଠିବ ନାହିଁ। ଏକେତ ମୁଁ ଥିଲି ହାଇକୋର୍ଟରେ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍। ପୁନଶ୍ଚ ମୋ ପ୍ରତି ଚିଫ୍ ଜଷ୍ଟିସ ଓ ଅନ୍ୟ ବିଚାରପତିମାନଙ୍କର ମନୋଭାବ ଏ ଧାରଣାକୁ ଦୃଢ଼ କରୁଥିଲା। କିନ୍ତୁ ଆର. ଏନ୍. ସିଂହଦେଓଙ୍କ ବିରୋଧ ହେତୁ ସବୁ ଓଲଟ ପାଲଟ ହୋଇଗଲା। ସୁକାନ୍ତ କିଶୋର ରାୟଙ୍କ ନିଯୁକ୍ତିରେ ମୁଁ ବିସ୍ମିତ ବା ବିବ୍ରତ ହୋଇ ନଥିଲି। ସେ ଥିଲେ ବୟସରେ ମୋଠାରୁ ଅନ୍ତତଃ ଚାରିବର୍ଷ ବଡ଼। କିନ୍ତୁ ପରେ ପରେ ଯାହା ସବୁ ଘଟିଲା, ତାହା ଆଣିଦେଲା ମୋର ବୃତ୍ତି-ଜୀବନରେ ଏକ ନିଷ୍ପତ୍ତିମୂଳକ ପରିବର୍ତ୍ତନ। ମୋର ବହୁ ଶୁଭାକାଂକ୍ଷୀ ମୋତେ ସମବେଦନା ଜଣାଇଥିଲେ। ମୁଁ ଯେ ମର୍ମାହତ ହୋଇ ନଥିଲି, ତା ନୁହେ। ମଣିଷ ଯାହା ଆଶାକରେ, ତା ଯଦି ପାଇବାରେ ବିଫଳ ହୁଏ, ବିଫଳତା ଆଣିଦିଏ ମନରେ ନୈରାଶ୍ୟ ଓ ମନସ୍ତାପ।

ମୁଁ ବିଚାର କରି ଦେଖିଲି, ମନରୁ ଯଦି ସେହି ନିର୍ଦ୍ଦିଷ୍ଟ ଆଶା ଓ ଅଭିଳାଷକୁ ପୋଛି ଦିଆଯାଏ, ତାହାହେଲେ ମନସ୍ତାପର କାରଣ ରହିବ ନାହିଁ । ମୁଁ ସେହି ପ୍ରକାରର ନିଷ୍ପତ୍ତି ନେଲି । ମୁଁ ଜାଣିଥିଲି, ରାଜନୀତିରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ ଓ ଆର୍. ଏନ୍. ସିଂହଦେଓ ସବୁଦିନେ ମୁଖ୍ୟମନ୍ତ୍ରୀ ରହିବେ ନାହିଁ । ଦିନେ ନା ଦିନେ ପୁଣିଥରେ ଏ ସୁଯୋଗ ଆସିବ । କିନ୍ତୁ ଗୋଟାଏ ନିର୍ଦ୍ଦିଷ୍ଟ ସମୟରେ ଫଳର ସ୍ୱାଦ ଥାଏ । ସମୟ ଗଡ଼ିଗଲେ ଫଳ ଖଟା ହୋଇଯାଏ ଓ ତାର ସ୍ୱାଦ ନଷ୍ଟ ହୋଇଯାଏ । ଆଶା ଓ ନିରାଶାର ଅନିଶ୍ଚିତତା ଭିତରେ ଝୁଲିବା ଅପେକ୍ଷା ମୁଁ ଭାବିଲି, ହାଇକୋର୍ଟରେ ବୃତ୍ତି ଆରମ୍ଭ କରିଥିଲି ଅଧିବକ୍ତା ଭାବରେ ଏବଂ ଶେଷ ପର୍ଯ୍ୟନ୍ତ ସେହି ଅଧିବକ୍ତାହିଁ ରହିବି । ପୁଣିଥରେ ଯଦି ଜଜ୍ ପଦ ପାଇଁ ସୁଯୋଗ ଆସେ ଏବଂ ମୁଁ ଯଦି ସେ ସୁଯୋଗକୁ ଦୃଢ଼ତାର ସହ ପ୍ରତ୍ୟାଖ୍ୟାନ କରିପାରେ, ତାହାହେଲେ ମୁଁ ହେବି ସବୁଠାରୁ ସୁଖୀ ମଣିଷ । ବିଚାରପତି ପଦଠାରୁ ଆତ୍ମସମ୍ମାନକୁ ମୁଁ ଅଧିକ ଗୁରୁତ୍ୱ ଦେଲି ଏବଂ ସ୍ଥିର କଲି ଯେ ଏ ନିଷ୍ପତ୍ତି ଅପରିବର୍ତ୍ତନୀୟ ରହିବ । ପର କାଳରେ ପୁନର୍ବାର ଯେତେବେଳେ ଏ ସୁଯୋଗ ଆସିଲା, ମୁଁ ଅତି ଆନନ୍ଦର ସହ ତାହା ପ୍ରତ୍ୟାଖ୍ୟାନ କରିଥିଲି । ପ୍ରଧାନ ବିଚାରପତି ଗତିକୃଷ୍ଣ ମିଶ୍ର 'ତାର ସାକ୍ଷୀ । କିନ୍ତୁ ସେ କଥା ପରେ ଲେଖିବି । ଏହି ସମୟରେ ମୁଁ ଆଉ ଗୋଟିଏ ନିଷ୍ପତ୍ତି ନେଇଥିଲି- ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ ପଦରୁ ମୋତେ ଇସ୍ତଫା ଦେବାକୁ ହେବ ।



# ରାଜା ଓ ରାଜତରଂଗିଣୀ

ରାଜେନ୍ଦ୍ର ନାରାୟଣ ସିଂହଦେଓ ଜଣେ ଦକ୍ଷ ପ୍ରଶାସକ ବୋଲି ତାଙ୍କର ପ୍ରସିଦ୍ଧି ଥାଏ । ଗୋଟିଏ ପୂର୍ବତନ ଦେଶୀୟ ରାଜ୍ୟର ଏକଛତ୍ର ଶାସକ ଭାବରେ ତାଙ୍କର ନିଶ୍ଚୟ ଶାସନ ପରିଚାଳନାର ଅଭିଜ୍ଞତା ଥିଲା । କିନ୍ତୁ ସେ ଅଭିଜ୍ଞତା ଗଣତାନ୍ତ୍ରିକ ପରମ୍ପରାରେ ରଂଜିତ ନୁହେ, ତାହା ଥିଲା ନିରଂକୁଶ କ୍ଷମତା ପ୍ରୟୋଗରେ ଶାଣିତ । ଏଣୁ ଗୋଟିଏ ମିଳିତ ଦଳର ନେତା ନିର୍ବାଚିତ ହେଲେ ମଧ୍ୟ ସେ ଅଧିକ ଦିନ ଦୁଇଟି ଦଳ ମଧ୍ୟରେ ସଂହତି ରକ୍ଷା କରି ପାରିଲେ ନାହିଁ । ୧୯୬୭ ମସିହାରେ କ୍ଷମତାକୁ ଆସିବା ପରେ ସେ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ନୀଳମଣି ରାଉତରାୟ ପ୍ରମୁଖ ପନ୍ଦର ଜଣ ପୂର୍ବତନ କଂଗ୍ରେସ ମନ୍ତ୍ରୀଙ୍କ ବିରୁଦ୍ଧରେ କମିସନ୍ ଅଫ ଇନକ୍ୱାରୀ ଆକ୍ଟ ଅନୁଯାୟୀ ଏକ ତଦନ୍ତ କମିସନ ବସାଇଲେ । ଦିଲ୍ଲୀ ହାଇକୋର୍ଟର ତତ୍କାଳୀନ ବିଚାରପତି ଏଚ୍.ଆର୍. ଖାନ୍ନା (ପରେ ସୁପ୍ରିମ କୋର୍ଟ ବିଚାରପତି) ଏହି କମିସନର ଅଧ୍ୟକ୍ଷ ଭାବରେ ତଦନ୍ତ କରିଥିଲେ । ଏଣେ କଂଗ୍ରେସ ଦଳ ଜନ କଂଗ୍ରେସ ନେତା ଡକ୍ଟର ହରେକୃଷ୍ଣ ମହତାବଙ୍କ ବିରୁଦ୍ଧରେ ମଧ୍ୟ ଏକ ଅଭିଯୋଗ ଫର୍ଦ୍ଦ ପ୍ରସ୍ତୁତ କରି ଭାରତ ସରକାର ଓ ରାଷ୍ଟ୍ରପତିଙ୍କ ନିକଟକୁ ପଠାଇଲେ । ପ୍ରଧାନମନ୍ତ୍ରୀ ଓ କଂଗ୍ରେସ କର୍ତ୍ତୃପକ୍ଷଙ୍କ ପରାମର୍ଶ କ୍ରମେ ଏ ବିଷୟରେ ଶେଷ ନିଷ୍ପତ୍ତି ନେବା ପାଇଁ ଗୃହମନ୍ତ୍ରୀ ଓ୍ୟାଇ. ବି. ଚୌହାନଙ୍କ ଉପରେ ଦାୟିତ୍ୱ ପଡ଼ିଲା ଓ କେନ୍ଦ୍ର ଗୃହମନ୍ତ୍ରୀ ସ୍ୱଭାବତଃ ଏ ସଂପର୍କରେ ରାଜ୍ୟ ମୁଖ୍ୟ ମନ୍ତ୍ରୀଙ୍କ ସହ ଆଲୋଚନା କଲେ । ଉଭୟ ଐକମତ ହେଲେ ଯେ ମହତାବ ବାବୁଙ୍କ ବିରୁଦ୍ଧରେ ଆପାତ ପ୍ରମାଣ ଯୋଗ୍ୟ ଅଭିଯୋଗ ଅଛି କି ନାହିଁ ସେ ବିଷୟରେ ସୁପ୍ରିମକୋର୍ଟ ଜଜ୍ ପାହିଆର ଜଣେ ବ୍ୟକ୍ତି ତଦନ୍ତ କରିବେ । ତଦନୁଯାୟୀ ଓଡ଼ିଶା ସରକାର ମହତାବଙ୍କ ବିରୁଦ୍ଧରେ ପ୍ରାଥମିକ ତଦନ୍ତ କରିବା ପାଇଁ ସୁପ୍ରିମ୍ କୋର୍ଟର ଅବସରପ୍ରାପ୍ତ ବିଚାରପତି ଜେ. ଆର. ମୁଧୋଲକରଙ୍କୁ ୧୯୬୮ ମସିହା ମଇ ମାସରେ ନିଯୁକ୍ତ କରିଥିଲେ । ସମସ୍ତଙ୍କର ସଂଦେହ ହେଲା ଯେ ଜନ କଂଗ୍ରେସ ନେତା ମହତାବଙ୍କୁ ବଦନାମ କରିବା ପାଇଁ ସିଂହଦେଓ କେନ୍ଦ୍ର ଗୃହମନ୍ତ୍ରୀ ଚୌହାନଙ୍କ ସହ ରାଜି ହୋଇ ଯାଇଛନ୍ତି । ଏହା ପରେ ଜନ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ମଧ୍ୟରେ ସଂହତି ସଂପୂର୍ଣ୍ଣ ନଷ୍ଟ ହୋଇଗଲା ଓ ଉଭୟ ଦଳ ପରସ୍ପର ବିରୁଦ୍ଧରେ ଦୋଷାରୋପ କରିବାକୁ ଆରମ୍ଭ କଲେ । ଅତି ଛୋଟ ଛୋଟ ଘଟଣାରେ ସେ ବିରୋଧ ପଦାକୁ ଫୁଟି ବାହାରିଲା ।

ବର୍ତ୍ତମାନ କଟକ ବକ୍ସିବଜାରରେ ଯେଉଁଠି ରାଜ ତରଙ୍ଗିଣୀ ସିନେମା ଓ ଓରିଯେଣ୍ଟା ହୋଟେଲ ଅଛି, ପୂର୍ବେ ତାହା ସରକାରଙ୍କର ଏକ ଖୋଲା ଅନାବାଦୀ ଜମି ଥିଲା । ସ୍ୱତନ୍ତ୍ର ଓ ଜନ କଂଗ୍ରେସ ମନ୍ତ୍ରୀ ପରିଷଦର ରାଜସ୍ୱ ମନ୍ତ୍ରୀ ଥିଲେ ଜନ କଂଗ୍ରେସ ନେତା ସୁରେନ୍ଦ୍ର ନାଥ ପଟ୍ଟନାୟକ । ରାଜସ୍ୱ ମନ୍ତ୍ରୀଙ୍କ ସହାୟତାରେ ଏହି ବିରାଟ ପ୍ଲଟ୍‌ଟି ପଟା ନେଇଥିଲେ ରାଣୀହାଟ ରାଜତରଙ୍ଗିଣୀ ଫିଲମ୍‌ର ସ୍ୱତ୍ୱାଧିକାରୀ ଅଲେଖ ଚନ୍ଦ୍ର ସାହୁ । ଏ ପଟ୍ଟାଦାନ ବିରୁଦ୍ଧରେ ବିଶ୍ୱନାଥ ପଣ୍ଡିତଙ୍କ ନେତୃତ୍ୱରେ କେତେକ ପ୍ରଭାବଶାଳୀ ସୋସାଲିଷ୍ଟ ନେତା ଅନ୍ନପୂର୍ଣ୍ଣା ଥିଏଟର (ବି.ଗ୍ରୁପ୍)ର ମାଲିକ ଲିଙ୍ଗରାଜ ନନ୍ଦ ଓ ଚୌଧୁରୀ ବଜାରର ସାଧୁଚରଣ ବେହେରାଙ୍କ ଜରିଆରେ ହାଇକୋର୍ଟରେ ଦୁଇଟି ରିଟ୍ କେସ୍ ଦାଏର କରିଥିଲେ । ସେମାନଙ୍କର ଅଭିଯୋଗ ଥିଲା ଯେ ଏହି ଜମି ଖଣ୍ଡିକ ଏକ ପାର୍କ ଉଦ୍ଦେଶ୍ୟରେ ରଖାଯାଇଛି, ଅଥଚ ରାଜସ୍ୱ ବିଭାଗ ଅସତ୍ ଉଦ୍ଦେଶ୍ୟରେ ଏହି ଜମି ଖଣ୍ଡ ଅଲେଖ ଚନ୍ଦ୍ର ସାହୁଙ୍କୁ ଲିଜ୍ ଦେଇଛନ୍ତି । ଏହା ସଂପୂର୍ଣ୍ଣ ଜନସ୍ୱାର୍ଥ ବିରୋଧୀ । ଯେଉଁଦିନ କେସ୍‌ଟି ପ୍ରାଥମିକ ବିଚାର ପାଇଁ କୋର୍ଟରେ ଉଠିଲା ସେଦିନ ଦରଖାସ୍ତକାରୀଙ୍କ ପକ୍ଷରୁ ଶ୍ରୀନିବାସ ମିଶ୍ର, 'ରାଜତରଙ୍ଗିଣୀ ଫିଲ୍‌ମ'ର ମାଲିକ ଅଲେଖ ସାହୁଙ୍କ ତରଫରୁ ତତ୍କାଳୀନ ଆଡ୍‌ଭୋକେଟ ରଂଗନାଥ ମିଶ୍ର ଓ ଆଡ୍‌ଭୋକେଟ ଜେନେରାଲଙ୍କ ତରଫରୁ ମୁଁ କୋର୍ଟରେ ଉପସ୍ଥିତ ଥିଲୁ । ମୁଁ ଯୁକ୍ତି କରିଥିଲି ଯେ ଲିଙ୍ଗରାଜ ନନ୍ଦ ଅବଶ୍ୟ ଏ ଜମିର ଗୋଟିଏ ଅଂଶ ପଟା ନେବା ପାଇ ଦରଖାସ୍ତ କରିଥିଲେ, କିନ୍ତୁ ସେ ଦରଖାସ୍ତ କେବେ ମଂଜୁର ହୋଇନାହିଁ । ସାଧୁଚରଣ ବେହେରାଙ୍କର ଏ ଜମି ସହିତ ବା ଏ ସଂକ୍ରାନ୍ତୀୟ ବିବାଦ ସହିତ ସଂପର୍କ ନାହିଁ । ଏଣୁ ଏମାନଙ୍କ ଆବେଦନ ଗ୍ରହଣୀୟ ନୁହେ । ସେତେବେଳେ ଅବଶ୍ୟ ଜନସ୍ୱାର୍ଥ ସମ୍ବଳିତ ମୋକଦ୍ଦମାର ସୂତ୍ରପାତ ହୋଇନଥିଲା । ମୁଁ ପୁନଶ୍ଚ କହିଥିଲି ଯେ ଯେଉଁ ଜମିର ମାଲିକାନା ସରକାରଙ୍କଠାରେ ନ୍ୟସ୍ତ, ତାକୁ ଯେ କୌଣସି ସାଧାରଣ ନାଗରିକଙ୍କୁ ପଟା ଦେବା ପାଇଁ ସରକାରଙ୍କର ଆଇନଗତ ଅଧିକାର ଅଛି । ମୋର ଦୃଢ଼ ପ୍ରତିରୋଧ ହେତୁ ସରକାରଙ୍କ ବିରୁଦ୍ଧରେ କୌଣସି ରହିତାଦେଶ ବା ଷ୍ଟେ ଆଦେଶ ହୋଇ ପାରିଲା ନାହିଁ । କେସ୍‌ଟି କେବଳ ବିଚାର ପାଇଁ ଗୃହୀତ ହେଲା ।

ଆଡ୍‌ଭୋକେଟ୍ ଜେନେରାଲ ଅଶୋକ ଦାସ ଏହି ରିଟ୍ ମୋକଦ୍ଦମାରେ ସରକାରଙ୍କୁ ମତ ଦେଲେ ଯେ ଏହି ଲିଜ ବା ପଟ୍ଟାଦାନ ସଂପୂର୍ଣ୍ଣ ବେଆଇନ ଓ ଏହା ଖାରଜ ନକଲେ ସରକାର ନିଶ୍ଚିତ ଭାବରେ ମୋକଦ୍ଦମା ହାରିଯିବେ ।

ଏହା ପରେ ଆରମ୍ଭ ହେଲା ବିରାଟ ରାଜନୈତିକ କନ୍ଦଳ । ଚିଫ୍ ମିନିଷ୍ଟର ଅଡ଼ି ବସିଲେ ଯେ ଆଡ଼୍‌ଭୋକେଟ୍ ଜେନେରାଲଙ୍କ ମତ ଦୃଷ୍ଟିରୁ ଏ ଲିଜ ଖାରଜ ହେବା ଉଚିତ । ଜନ-କଂଗ୍ରେସ ମନ୍ତ୍ରୀମାନେ ଅଭିଯୋଗ କଲେ ଯେ ମୁଖ୍ୟମନ୍ତ୍ରୀ ଅଯଥା ସେମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁଛନ୍ତି । ୧୯୬୯ ମସିହା ଫେବ୍ରୁଆରୀ କି ମାର୍ଚ୍ଚ ମାସ ହେବ । ଦିନେ ସଂଧ୍ୟାରେ ହଠାତ୍ ମୋ, ଅଫିସରେ ଟେଲିଫୋନ୍ ବାଜିଲା, ଉପମୁଖ୍ୟ ମନ୍ତ୍ରୀ ଓ ରାଜସ୍ୱ ମନ୍ତ୍ରୀ ସର୍କିଟ୍ ହାଉସ୍‌ରେ ଅଛନ୍ତି, ସେମାନେ ଅଧଘଣ୍ଟାଏ ମଧ୍ୟରେ ମୋ ଅଫିସରେ ଆସି ପହଁଚିବେ । ପ୍ରାୟ କୋଡ଼ିଏ ମିନିଟ୍ ପରେ ପବିତ୍ରବାବୁ ଓ ସୁରେନ୍ଦ୍ର ବାବୁ ମୋ ଘରେ ପହଁଚିଲେ । ଉଭୟଙ୍କ ସହିତ କଲେଜିଏଟ୍ ସ୍କୁଲରେ ପଢ଼ିବା ଦିନୁ ପରିଚୟ । ଉପମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ଥିଲେ ମୁଁ ସ୍କୁଲରେ ପଢ଼ିବା ବେଳେ ଟ୍ରେନିଂ କଲେଜର ଛାତ୍ର । ପବିତ୍ର ବାବୁ କୌଣସି ଉପକ୍ରମଣିକା ନ କରି ସିଧାସଳଖ ଆରମ୍ଭ କଲେ "ଅଲେଖ ସାହୁ ଲିଜ କେସରେ ସରକାର ହାରିଯିବା କ'ଣ ନିଶ୍ଚିତ ?" ମୁଁ ସେତେବେଳେକୁ ଅଶୋକ ବାବୁଙ୍କ ମନ୍ତବ୍ୟ ଓ ଦୁଇଦଳ ମଧ୍ୟରେ ଏହି ପ୍ରଶ୍ନ ଉପରେ ଚାଲିଥିବା ଅନ୍ତର୍ବିବାଦ ବିଷୟରେ ଅବଗତ ନଥିଲି । ମୁଁ ଉତ୍ତର ଦେଲି "ଏ କେସ୍‌ରେ ସରକାର ହାରିଯିବେ ବୋଲି କିଏ କହୁଛନ୍ତି ? ସରକାରଙ୍କ ନିଜ ଖାସମାହାଲ ଜମି, ସରକାର ତାକୁ ପଟ୍ଟା ସୂତ୍ରରେ ହସ୍ତାନ୍ତର କରିବାରେ କୌଣସି ଆଇନଗତ ବାଧା ନାହିଁ । ତେବେ ପଟ୍ଟା ଦେବା ଉଚିତ କି ନାହିଁ, ତାହା ଏକ ପ୍ରଶାସନିକ ବିଷୟ, ତାହା ଖୋଦ୍ ସରକାର ବିଚାର କରିବେ ।" ମୋର ଉତ୍ତର ଶୁଣିବା ପରେ ରାଜସ୍ୱମନ୍ତ୍ରୀ ଆଡ଼୍‌ଭୋକେଟ୍ ଜେନେରାଲଙ୍କ ମତାମତ ବିଷୟରେ କହିଲେ । ମୁଁ କେବଳ ଏତିକି କହିଲି "ମୁଁ ସେପରି ମତାମତ ସହ ଏକମତ ନୁହେ ।"

ରାଜ୍ୟସଭା ସଦସ୍ୟ ମୋର ବଂଧୁ ସୂରଜ୍ ମଲ୍ଲ ସାହାଙ୍କ ଠାରୁ ଶୁଣିଲି ରାଜ ତରଙ୍ଗିଣୀ ଲିଜ୍ ସଂପର୍କରେ କ୍ୟାବିନେଟ୍ ବୈଠକରେ ତୁମୁଳ ଝଗଡ଼ା ହୋଇଯାଇଛି । ରାଜସ୍ୱମନ୍ତ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ କୁଆଡ଼େ କ୍ୟାବିନେଟ୍ ମିଟିଂରେ କହିଲେ ଯେ ଆଡ଼୍‌ଭୋକେଟ୍ ଜେନେରାଲଙ୍କ ମତାମତ ଉପରେ ତାଙ୍କର ଆସ୍ଥା ନାହିଁ । ଲିଜ୍ ଖାରଜ ପାଇଁ ଆଦେଶ ଦେବା ପୂର୍ବରୁ ହାଇକୋର୍ଟରେ ଯେଉଁ ଗଭର୍ଣ୍ଣମେଣ୍ଟ ଆଡ଼୍‌ଭୋକେଟ୍ ମୋକଦ୍ଦମା ଚଳାଉଥିଲେ, ତାଙ୍କର ମତାମତ ନିଆଯାଉ । କ୍ୟାବିନେଟ୍‌ରେ ଅଣଅନୁଷ୍ଠାନିକ ଭାବରେ ସ୍ଥିର ହୋଇଛି ଯେ ଉପମୁଖ୍ୟ ମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ଓ ସୁରେନ୍ଦ୍ର ନାଥ ପଟ୍ଟନାୟକଙ୍କ

ଉପସ୍ଥିତିରେ ମୁଖ୍ୟମନ୍ତ୍ରୀ ମୋର ମତାମତ ନେବେ । ସପ୍ତାହକ ପରେ, ବୋଧହୁଏ ୧୯୬୯ ମାର୍ଚ୍ଚ ଶେଷ ଆଡ଼କୁ ଚିଫ୍ ମିନିଷ୍ଟରଙ୍କୁ ତାଙ୍କ ଆସେମ୍ବ୍ଲି ଚାମ୍ବରରେ ସାକ୍ଷାତ କରିବା ପାଇଁ ତାଙ୍କ ସେକ୍ରେଟାରୀଙ୍କ ଠାରୁ ଫୋନ୍ ଆସିଲା । ଏହି ବୈଠକରେ ଉପସ୍ଥିତ ଥିଲେ ଆର.ଏନ୍. ସିଂହଦେଓ, ଉପମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ଓ ରାଜସ୍ୱ ମନ୍ତ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ । ଏ ଆଲୋଚନାରେ ଆଡ୍‌ଭୋକେଟ ଜେନେରାଲ ଅଶୋକ ଦାସଙ୍କ ଅନୁପସ୍ଥିତି ମନରେ କୌତୂହଳ ସୃଷ୍ଟି କଲା । ମୁଖ୍ୟମନ୍ତ୍ରୀଙ୍କ ପ୍ରଶ୍ନର ଉତ୍ତରରେ ମୁଁ କହିଲି, ଏ ଜମିଟି ପୂର୍ବେ ଏକ ପୋଖରୀ ଥିଲା । ନିକଟରେ ବହୁ ଅର୍ଥ ବ୍ୟୟରେ ଏହାକୁ ମ୍ୟୁନିସିପାଲିଟି ଜରିଆରେ ସମାନ କରାଯାଇଛି । ଖର୍ଚ୍ଚ ଭରଣା କରିବା ପାଇଁ ସରକାର ଏହାକୁ ହସ୍ତାନ୍ତର କରିବେ କି ନାହିଁ, ଏ ବିଷୟରେ ମୋର କିଛି କହିବାର ନାହିଁ । ମୁଁ କେବଳ ଏତିକି କହିବି ଯେ ଏ ଜମି ପଟ୍ଟା ସୂତ୍ରରେ ହସ୍ତାନ୍ତର କରିବାରେ କୌଣସି ଆଇନଗତ ବାଧା ନାହିଁ । ମୁଖ୍ୟମନ୍ତ୍ରୀ ପୁଣି ପ୍ରଶ୍ନ କଲେ, "ମୋକଦ୍ଦମା ଜିତିବା ବିଷୟରେ ଆପଣ କ'ଣ ନିର୍ଭର ପ୍ରତିଶ୍ରୁତି ଦେଇ ପାରିବେ ?" ମୋର ମନେ ହେଲା ମୋର ମନୋବଳ ଭାଂଗି ଦେବା ପାଇଁ ଏପରି ପ୍ରଶ୍ନ ପଚରା ଯାଉଛି । ମୁଁ ନମ୍ର ଅଥଚ ଦୃଢ଼ତାର ସହ କହିଲି, "ମୋକଦ୍ଦମା ଗୋଟିଏ ପ୍ରକାରର ଜୁଆଖେଳ ବା ଗ୍ୟାମ୍ବଲ । ଜୟ ପରାଜୟ ସଂପର୍କରେ ନିର୍ଭର ପ୍ରତିଶ୍ରୁତି ଦେବା ଅସମୀଚୀନ ହେବ । ମୋର ମତରେ ବିଧିବଦ୍ଧ ଭାବରେ ପ୍ରତିରୋଧ କଲେ ହାରିଯିବାର ସଂଭାବନା ନାହିଁ ।"

ଆର. ଏନ୍. ସିଂହଦେଓ ମୃଦୁ ହସନ୍ତି, ଦାନ୍ତ ଚିପି ଚିପି କଥା କହନ୍ତି, ଅତି ଆବଶ୍ୟକ ନ ହେଲେ ସର୍ବ ସମକ୍ଷରେ କୌଣସି ମତାମତ ବ୍ୟକ୍ତ କରନ୍ତି ନାହିଁ । କିନ୍ତୁ ସେ ଦିନ ଦେଖିଲି ଏକ ବ୍ୟତିକ୍ରମ । ଆଲୋଚନା ଶେଷରେ ସେ ନିଷ୍ପତ୍ତି ଦେଲେ ଯେ ବର୍ତ୍ତମାନ ପାଇଁ ରାଜ ତରଙ୍ଗିଣୀ ଫିଲ୍ମର ଲିଜ୍ ଖାରଜ କରାଯିବ ନାହିଁ, ମୋକଦ୍ଦମାର ଫଳାଫଳକୁ ଅପେକ୍ଷା କରାଯିବ । ମୋର ଧାରଣା, ରାଜନୈତିକ ବିଚାର ତାଙ୍କର ନିଷ୍ପତ୍ତିକୁ ପ୍ରଭାବିତ କରିଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ବର୍ଷକ ପରେ ଏହି ଦୁଇଟି ରିଟ୍ ମୋକଦ୍ଦମାର ବିଚାର ହୋଇ ତାହା ଡିସମିସ ହେଲା । ସରକାରୀ ନିଷ୍ପତ୍ତି ବେଆଇନ ବା ତ୍ରୁଟିପୂର୍ଣ୍ଣ ନୁହେ ବୋଲି ହାଇକୋର୍ଟ ଘୋଷଣା କଲେ । ୧୯୭୦ ମସିହା ଜୁନ୍ ମାସରେ ରାୟ ପ୍ରକାଶିତ ହେଲା ବେଳକୁ ସିଂହଦେଓ ମୁଖ୍ୟମନ୍ତ୍ରୀ ନଥିଲେ ବା ମୁଁ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ନଥିଲି ।

୧୯୬୮ ମଇ ମାସରୁ ମୁଁ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ପଦରୁ ଇସ୍ତଫା ଦେବା ପାଇଁ ଚିନ୍ତା କରୁଥିଲି । ବହୁ ବନ୍ଧୁ ଓ ଶୁଭାକାଂକ୍ଷୀ ଏପରି ପଦକ୍ଷେପ ନେବାରୁ ନିବୃତ୍ତ କରାଇଥିଲେ । ଅନେକ ଡରାଇଲେ, ମୁଁ ଦଶ ବର୍ଷ ସରକାରୀ ଓକିଲ ରହିଲିଣି, ଇସ୍ତଫା ଦେଲେ ହଠାତ୍ ମୋତେ ପୁଣି ପ୍ରାଇଭେଟ କେସ୍ ମିଳିବ ନାହିଁ, ଇତ୍ୟାଦି । କିନ୍ତୁ ଚିଫ୍ ମିନିଷ୍ଟରଙ୍କ ଚାମ୍ବରରେ ରାଜତରଙ୍ଗିଣୀ କେସ୍ ସଂପର୍କୀୟ ଆଲୋଚନା ପରେ ମନେ ହେଲା ଅଯଥା ମୁଁ ଜନ-କଂଗ୍ରେସ ଓ ସ୍ୱତନ୍ତ୍ର ଦଳର ଅନ୍ତର୍ବିବାଦରେ ଜଡ଼ିତ ହୋଇ ପଡୁଛି, ଅଥଚ ଏ ଉଭୟ ଦଳର ନୀତି ଓ କାର୍ଯ୍ୟକ୍ରମ ସହିତ ମୋର ମାନସିକ ସମନ୍ୱୟ ନାହିଁ । ମୋ ପକ୍ଷରେ ଅଧିକ ଦିନ ସରକାରଙ୍କ ତରଫରୁ ଓକିଲାତି କରିବା ଦୁର୍ବହ ହୋଇ ଉଠିଲା । ମୁଁ ଅନୁଭବ କଲି, ପନ୍ଦର ବର୍ଷର ବୃତ୍ତି ଜୀବନରେ ଯାହା କିଛି ସୁନାମ ଅର୍ଜନ କରିଛି, ତାକୁ ଯେପରି ପୋଡ଼ି ଜାଳି ପାଉଁଶ କରି ଦେଉଛି । କୌଣସି ଦୃଢ଼ ନିଷ୍ପତ୍ତି ନେବା ସମୟରେ ଦୁର୍ବଳମନା ବନ୍ଧୁମାନେ ସବୁବେଳେ ନିରୁତ୍ସାହିତ କରିଥାନ୍ତି । ଏଥର ମଧ୍ୟ ସେହି ଅଭିଜ୍ଞତା । ଯାହାହେଉ ୧୯୬୯ ଅଗଷ୍ଟ ମାସରେ ଏକ ସୁପ୍ରିମ କୋର୍ଟ କେସ୍‌ରେ ଦିଲ୍ଲୀ ଯାଇଥିଲି । ସେଠାରେ ସ୍ଥିର କଲି, ଅଧିକ ଦିନ ଦୋଦୁଲ୍ୟମାନ ଅବସ୍ଥାରେ ରହିବା ଅପେକ୍ଷା, କାହାକୁ କିଛି ନ ପଚାରି ସରକାରଙ୍କୁ ଇସ୍ତଫା ପତ୍ର ପଠାଇ ଦେବି । ଦିଲ୍ଲୀ ଓଡ଼ିଶା ଭବନରେ ଇସ୍ତଫା ପତ୍ର ଟାଇପ କରି ସାଂଗରେ ନେଇ ଆସିଲି । କଟକରେ ପହଂଚିଲେ କାଳେ ମୋ ଉପରେ ଓଲଟା ଚାପ ପଡ଼ିବ, ସେଥିପାଇଁ ଭୁବନେଶ୍ୱର ଏଆରପୋର୍ଟରେ ପ୍ଲେନରୁ ଓହ୍ଲାଇ ସିଧା ଆଇନ ବିଭାଗର ସଚେତକ ପି.କେ. ମହାନ୍ତିଙ୍କ ଘରେ ପହଂଚିଲି । ସେ ଦିନ ଥିଲା ରବିବାର । ସେ ଘରେ ଥିଲେ । ତାଙ୍କ ହାତରେ ଇସ୍ତଫା ପତ୍ରଟି ଧରାଇଦେବା ପରେ କଟକ ଆସିଲି । ପ୍ରାୟ ସପ୍ତାହକ ପରେ ୧୯୬୯ ସେପ୍ଟେମ୍ବର ଚାରି ତାରିଖରେ ଇସ୍ତଫା ଗୃହୀତ ହେଲା ।



# ଗୋଆରୁ କାଶ୍ମୀର

ମୋର ଇସ୍ତଫା ସମ୍ବାଦ ଖବରକାଗଜରୁ ପଢ଼ି ପୁରୀର ବିଶିଷ୍ଟ ଆଡ୍‌ଭୋକେଟ୍ ଗଂଗୁ ଭାଇନା (ଶ୍ରୀ ଗଂଗାଧର ମହାପାତ୍ର) ଚିଠି ଲେଖିଥିଲେ "ତୁମର ଇସ୍ତଫା ସାଧାରଣ ମହକ୍କିଲମାନଙ୍କ ପାଇଁ ଅତି ଶୁଭ ସମ୍ବାଦ ।" ବଲାଂଗୀରର ଅନ୍ୟ ଜଣେ ବରିଷ୍ଠ ଆଡ୍‌ଭୋକେଟ୍ ପୂର୍ବତନ ଏମ୍.ପି. ସ୍ୱର୍ଗୀୟ ଯୁଧିଷ୍ଠିର ମିଶ୍ର ଓ ବ୍ରହ୍ମପୁର ତଥା ସମ୍ବଲପୁରର ଅନ୍ୟ କେତେକ ବିଶିଷ୍ଟ ସମଧର୍ମୀଙ୍କଠାରୁ ଅନୁରୂପ ପତ୍ର ମିଳିଥିଲା । ୧୯୬୮ ମଧ୍ୟ ଭାଗରେ ମୁଁ ଇସ୍ତଫା ଦେବା ପାଇଁ ନିଷ୍ପତ୍ତି ନେଇଥିଲି । ତାହା କାର୍ଯ୍ୟକାରୀ କରିବାକୁ ବର୍ଷଟାଏ ଲାଗିଗଲା । ବହୁ ଶୁଭାକାଂକ୍ଷୀ ମତେ ସତର୍କ କରାଇ ଦେଇଥିଲେ ଯେ ଇସ୍ତଫା ଦେବା ପରେ ସାଧାରଣ ମହକିଲମାନଙ୍କ ଠାରୁ ସ୍ୱୀକୃତି ପାଇବାକୁ ସମୟ ଲାଗିବ ଓ ମୋତେ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିପାରେ । ମୋ ନିଜର ମଧ୍ୟ ଆଶଂକା ଥିଲା ଯେ ଅଧିକ ଦିନ ସରକାରୀ ଆଡ୍‌ଭୋକେଟ୍ ରହିଲେ ପରେ ସରକାର ବିରୋଧୀ ମୋକଦ୍ଦମାରେ ନିଯୁକ୍ତି ପାଇବା ହୁଏତ କଷ୍ଟକର ହେବ । ଅଥଚ ସବୁ ବଡ଼ ମୋକଦ୍ଦମା, ବିଶେଷତଃ ସାଂବିଧାନିକ ମୋକଦ୍ଦମା' ସରକାର ବା ସରକାରୀ କର୍ମକର୍ତ୍ତାଙ୍କ ବିରୁଦ୍ଧରେ ହୋଇଥାଏ । ଏପରି ଆଶଙ୍କା ସଂପୂର୍ଣ୍ଣ ଭୁଲ । କାହା ପକ୍ଷରେ ଓକିଲାତି କରୁଛନ୍ତି, ତାହା ସଫଳତାର ନିୟାମକ ନୁହେ । ସବୁ ନିର୍ଭର କରେ, ଅଧିବକ୍ତାଙ୍କର ନିଷ୍ଠା, ଆଚରଣ, ଦକ୍ଷତା ଓ ପ୍ରତିଷ୍ଠା ଉପରେ । ପ୍ରତ୍ୟେକ ଅଧିବକ୍ତାଙ୍କର କୃତିତ୍ୱ ସାଧାରଣ ଲୋକ, ମହକିଲ ଓ ଆଇନଜୀବୀ ସଂପ୍ରଦାୟ ସବୁ ମୁହୂର୍ତ୍ତରେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ମୂଲ୍ୟାୟନ କରୁଥାନ୍ତି ଏବଂ ସେହି ମୂଲ୍ୟାୟନ ଉପରେ ଅଧିବକ୍ତାଙ୍କର ଅନ୍ତିମ ସଫଳତା ନିର୍ଭର କରେ । ମୋର ଆଶଂକାର ଭିତ୍ତିହୀନତା ପ୍ରମାଣିତ ହେବାକୁ ବେଶିଦିନ ସମୟ ଲାଗିଲା ନାହିଁ । କାର୍ଯ୍ୟତଃ ମୁଁ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ପଦରୁ ଇସ୍ତଫା ଦେବା ଦିନଠାରୁ ମୋର ବ୍ରିଫ୍ ସଂଖ୍ୟା ଅତି ମାତ୍ରାରେ ବଢ଼ିବାକୁ ଆରମ୍ଭ କଲା ଓ ତାହା ସହିତ ଆୟ ମଧ୍ୟ । ଅଯଥା ଗୋଟାଏ ବର୍ଷ କାହିଁକି ଅନିଶ୍ଚିତ ଅବସ୍ଥାରେ ରହିଲି ସେଥିପାଇଁ ବେଳେ ବେଳେ ନିଜ ପ୍ରତି ଅନୁକମ୍ପା ଆସୁଥାଏ ।

ଯାହାହେଉ, ଏହି ଅବସରରେ କେତେଗୁଡ଼ିଏ ପୁରୁଣା ଅଭ୍ୟାସର ପୁନର୍ବିନ୍ୟାସ ପାଇଁ ସୁଯୋଗ ମିଳିଲା । ୧୯୬୯ ମସିହା ଡିସେମ୍ବର ମାସରେ ଆମ୍ଭେମାନେ ଗୋଆ ପରିଭ୍ରମଣରେ ବାହାରିଲୁ । ଗୋଆ ରାଜ୍ୟର ମାର୍‌ଗାଁଓଠାରେ ଗାଇନିକ୍

ଡାକ୍ତର (ଗାୟାନୋକୋଲଜିଷ୍ଟ) ମାନଙ୍କର ନିଖିଳ ଭାରତୀୟ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ । ସମ୍ମିଳନୀରେ ନିରୁପମା ଓ ତାଙ୍କର ବନ୍ଧୁ ଡକ୍ଟର ସୁଖଲତା ଦାସ, ଅନ୍ୟମାନଙ୍କ ସହ ପ୍ରତିନିଧି ରୂପେ ଯୋଗ ଦେଉଥାନ୍ତି । ସେମାନେ ଜିଦ ଧରି ବସିଲେ, ମୁଁ ସେମାନଙ୍କର ସହଯାତ୍ରୀ ହେଲେ ଯାତ୍ରା ସୁଖମୟ ହେବ । ମୁଁ ଆନନ୍ଦରେ ଏ ନିମନ୍ତ୍ରଣ ଗ୍ରହଣ କଲି । କଟକରୁ ଆମେ ତିନିଜଣ ଖଡ଼ଗ୍‌ପୁର ଦେଇ ଟ୍ରେନ୍ ଯୋଗେ ବମ୍ବେ ବାହାରିଲୁ । ତିନି ଦିନ ବମ୍ବେରେ ରହିବା ପରେ ଡିସେମ୍ବର ୨୬ ତାରିଖ ଦିନ ଗୋଆ ଯିବାର କାର୍ଯ୍ୟକ୍ରମ । କିନ୍ତୁ ପନ୍ଦର ଦିନ ଆଗରୁ ବମ୍ବେ-ଗୋଆ ପ୍ଲେନ୍ ଟିକେଟ୍ କରିଥିଲେ ମଧ୍ୟ, ଡାବୋଲିମ୍‌କୁ (ଗୋଆର ଏଆର ପୋର୍ଟ) କୌଣସି ସିଟ୍ ମିଳିଲା ନାହିଁ । ବାଧ୍ୟ ହୋଇ ସେ କାଳରେ ବ୍ୟବହୃତ ଭାଇ କାଉଣ୍ଟ ପ୍ଲେନ୍‌ରେ ଆମ୍ଭେମାନେ ବମ୍ବେରୁ ବେଲଗାଓଁ ଓ ସେଠାରୁ ଟ୍ୟାକ୍ସିରେ ମାରଗାଓଁରେ ପହଁଚିଲୁ ।

ମାରଗାଓଁ ଏକ ଛୋଟ ସହର । ଏଠାରେ ଗୋଆ ମେଡ଼ିକାଲ କଲେଜ ଓ କଲେଜ ହତାରେ ସମ୍ମିଳନୀ । ନିରୁପମା ଓ ସୁକୁ (ସୁଖଲତା) ସମ୍ମିଳନୀକୁ ଯାଆନ୍ତି । ମୁଁ ଏଣେ ତେଣେ ବୁଲି ଗୋଆର ସାମାଜିକ ଜୀବନ ଯାତ୍ରା ସଂକ୍ରାନ୍ତରେ ଜାଣିବାକୁ ଚେଷ୍ଟା କରେ । ସୁ-ପ୍ରସିଦ୍ଧ ପର୍ତ୍ତୁଗୀଜ ନାବିକ ଭାସ୍କୋଡ଼ାଗାମା ଜଳପଥରେ ଆସି ଭାରତ ଆବିଷ୍କାର କରିଥିଲେ । ମାରଗାଁଓ ଠାରୁ ପ୍ରାୟ ତିରିଶ କିଲୋମିଟର ଦୂରରେ ଜୁଆରୀ ନଦୀ ଯେଉଁଠି ଆରବ ସାଗରରେ ମିଶି ଯାଇଛି, ଭସ୍କୋଡ଼ାଗାମା ସେହିଠାରେ ଜାହାଜର ଲଙ୍ଗର ପକାଇ ଭାରତ ମାଟିରେ ପାଦ ଦେଇଥିଲେ । ଏହିଠାରେ ବର୍ତ୍ତମାନ ଭାସ୍କୋ ବନ୍ଦର । ଜୁଆରୀ ନଦୀ କୂଳରେ ଗୋଟିଏ ଛୋଟ ସହର ଗଢ଼ି ଉଠିଛି ଓ ଏହା ଭାସ୍କୋଡ଼ାଗାମାଙ୍କ ନାମରେ ନାମିତ । ଅଷ୍ଟାଦଶ ଶତାବ୍ଦୀରେ ପର୍ତ୍ତୁଗୀଜମାନେ ଦକ୍ଷିଣ ଭାରତରେ ଇଂରେଜମାନଙ୍କ ଠାରୁ ଯୁଦ୍ଧରେ ପରାସ୍ତ ହୋଇ କେବଳ ଗୋଆ ଓ କ୍ଷୁଦ୍ର ଡାମନ୍ ଓ ଡିଉରେ ନିଜର ଶାସନ ଓ ବ୍ୟବସାୟ ଆବଦ୍ଧ ରଖିଥିଲେ । ୧୯୪୭ ମସିହାରେ ସ୍ୱାଧୀନତା ଆନ୍ଦୋଳନର ଧକ୍କାରେ ବ୍ରିଟିଶ ସରକାର ଭାରତ ଛାଡ଼ିଲେ ମଧ୍ୟ, ପର୍ତ୍ତୁଗାଲ ଗୋଆରୁ ଅପସରି ଯିବାକୁ ନାରାଜ । ପ୍ରଧାନ ମନ୍ତ୍ରୀ ନେହୁରୁ ଓ ଦେଶରକ୍ଷା ମନ୍ତ୍ରୀ କୃଷ୍ଣ ମେନନ୍‌ଙ୍କ ନେତୃତ୍ୱରେ ୧୯୬୧ ମସିହାରେ ସାମରିକ ଶକ୍ତି ପ୍ରୟୋଗ କରି ପର୍ତ୍ତୁଗୀଜମାନଙ୍କୁ ଗୋଆରୁ ତଡ଼ି ଦିଆହେଲା । କିନ୍ତୁ ଗୋଆ ସ୍ୱାଧୀନ ହେବାର ଦଶବର୍ଷ ପରେ ମଧ୍ୟ ପର୍ତ୍ତୁଗୀଜ ସଂସ୍କୃତିର ଅବଚ୍ଛାୟା ଗୋଆର ସାମାଜିକ ଜୀବନକୁ ଘେରି ରହିଥିଲା । ୧୯୬୯ ମସିହା ଶେଷ ଭାଗରେ ମଧ୍ୟ ଗୋଆର ସରକାରୀ ଅନୁଷ୍ଠାନ

ମାନଙ୍କରେ ପର୍ତ୍ତୁଗୀଜ ଭାଷା ବ୍ୟବହୃତ ହେଉଥାଏ । କୋର୍ଟ କଚେରୀରେ ଭାରତୀୟ ଆଇନ ସହିତ ପର୍ତ୍ତୁଗୀଜ ଆଇନ ପ୍ରଚଳିତ । ଅଧିକାଂଶ ଆଇନଜୀବିଙ୍କୁ ଇଂରେଜୀ ଭାଷା ଜଣା ନଥାଏ । ପର୍ତ୍ତୁଗୀଜ ଭାଷାରେ ସେମାନେ ଅଦାଲତରେ ସୁଆଲ ଜବାବ୍ କରନ୍ତି, କିନ୍ତୁ ଭାରତୀୟ ସଂସ୍କୃତି ଏବଂ ଇଂରାଜୀ ଭାଷା ଯେ ଦ୍ରୁତ ଗତିରେ ଗୋଆର ଜନଜୀବନକୁ ପ୍ରଭାବିତ କରିବାକୁ ଆରମ୍ଭ କରିଛି, ଏ କଥା ବୁଝିବାରେ ଅସୁବିଧା ନଥିଲା । ପର୍ତ୍ତୁଗୀଜ ଭାଷା ପରିବର୍ତ୍ତେ ସ୍ଥାନୀୟ ଅଧିବାସୀଙ୍କର ମାତୃଭାଷା କୋଙ୍କଣୀ ଓ ମରାଠିର ପ୍ରାଧାନ୍ୟ ଯେ ବଢ଼ି ଚାଲିଛି, ତାର ମଧ୍ୟ ସ୍ପଷ୍ଟ ସୂଚନା ମିଳୁଥିଲା ।

ସମ୍ମିଳନୀ ଶେଷ ହେବା ପରେ ଆମେ ଗୋଆର ରାଜଧାନୀ ପାନାଜୀ ଅଭିମୁଖେ ଯାତ୍ରା କଲୁ । ସେ ସମୟରେ ଜୁଆରୀ ନଦୀ ଉପରେ ପୋଲ ନଥିଲା । ଫେରିରେ ଟ୍ୟାକ୍ସି ଜୁଆରୀ ପାର ହେଲା । ପାନାଜୀ ସହର ମାଣ୍ଡବୀ ନଦୀ କୂଳରେ ଅବସ୍ଥିତ । ପର୍ତ୍ତୁଗୀଜ ଅମଳରେ ପାନାଜୀର ନାମ ଥିଲା ପାଞ୍ଜିମ୍ । ପାନାଜୀରୁ ପ୍ରାୟ ତିନି କିଲୋମିଟର ଦୂରରେ ମୀରାମାର ବିଚ୍ । ସେଇଠି ଗୋଟିଏ ହୋଟେଲ ଆମର ଅସ୍ଥାୟୀ ଆବାସ । ପାନାଜୀ ଓ ତାର ଆଖପାଖ ଅଂଚଳରେ ପର୍ତ୍ତୁଗୀଜ ଅମଳର ବହୁ ପୁରାତନ କ୍ୟାଥଲିକ୍ ଗୀର୍ଜା । ପ୍ରତ୍ୟେକଟି ଗୀର୍ଜା ପାଶ୍ଚାତ୍ୟ ଚାରୁକଳାର ଅପୂର୍ବ ନିଦର୍ଶନ । ଗୋଆର ନଦୀଗୁଡ଼ିକ ସୁଗଭୀର । ବର୍ଷସାରା ଜଳସ୍ରୋତ । ମାଣ୍ଡବୀ ନଦୀରେ ଅହର୍ନିଶି ବଡ଼ ବଡ଼ ଷ୍ଟିମର ସବୁ ଲୁହା ପଥରର ବୋଝ ଧରି ନିକଟସ୍ଥ ସମୁଦ୍ର ଗର୍ଭରେ ଅପେକ୍ଷାରତ ମାଲବାହୀ ଜାହାଜ ଆଡ଼କୁ ଧାଇଁଥାନ୍ତି । ଆରବ ସାଗରର କୂଳେ କୂଳେ ପଶ୍ଚିମ ଘାଟ ପର୍ବତମାଳା । ମଝିରେ ମଝିରେ ପାହାଡ଼ ଘେରା ସମୁଦ୍ର କୂଳରେ ଖଣ୍ଡେ ବେଳା ଭୂମି - ବିଦେଶାଗତ ପର୍ଯ୍ୟଟକମାନଙ୍କର ସମାବେଶରେ ଭରପୂର । ଏହି ବେଳାଭୂମି ଗୁଡ଼ିକ ଅତି ଚିତ୍ତାକର୍ଷକ । ପର୍ଯ୍ୟଟକମାନଙ୍କର ସୁବିଧା ନିମନ୍ତେ ବଡ଼ ବଡ଼ ହୋଟେଲ ସଂସ୍ଥାମାନେ ସେ ସମୟରେ ନୂଆ ନୂଆ ହୋଟେଲ ନିର୍ମାଣର ଶୁଭ ଦେଉଥାନ୍ତି । ବର୍ତ୍ତମାନ ଏହି ସବୁ ବିଚ୍‌ରେ ଅସଂଖ୍ୟ ନୂତନ ହୋଟେଲ ମୁଣ୍ଡ ଟେକିଛି । ସିନ୍‌କ୍ୱେରିମ ବିଚ୍‌ରେ ତାଜମହଲ ହୋଟେଲ ଗ୍ରୁପ୍‌ର ଫୋର୍ଟ ଆଗୁଆଡ଼ା ବିଚ୍ ରିଜର୍ଟ, ଆଗୁଆଡ଼ା ହରମିଟେଜ ଓ ତାଜ ହଲିଡ଼େ ଭିଲେଜ; ବୋଗମାଲୋ ବିଚ୍‌ରେ ହୋଟେଲ ଓବେରୋଇ; ଡୋର୍ନା ପାଓଲାର ଭୈନଗୁଇନିମ୍ ବିଚ୍‌ରେ ହୋଟେଲ ସି ଡାଡ଼େ ଗୋଆ; ପେଣ୍ଡା ବିଚ୍‌ରେ ଇଲା ପେଣ୍ଡା ହୋଟେଲ ଓ ଆହୁରି ଅନେକ ଛୋଟ ବଡ଼ ହୋଟେଲ । ଅନେକଙ୍କ ମତରେ ପୁରୀର ବେଳାଭୂମି ସାରା ପୃଥିବୀରେ ଅନ୍ୟତମ ରମଣୀୟ ସ୍ଥାନ ।

ଅବଶ୍ୟ ପୁରୀ ସମୁଦ୍ର କୂଳରେ ଅଧିକ ସମୟ ବସି ରହିଲେ ଲୁଣି ହାଓ୍ୱା ବାଜି ଦେହ ଚଟ୍ ଚଟ୍ ଲାଗେ । ଆରବ ସାଗର କୂଳରେ ଗୋଆର ବେଳାଭୂମିରେ ଲୁଣି ହାଓ୍ୱା ନାହିଁ । ଏଣୁ ଭ୍ରମଣ ଅତି ସୁଖ ଦାୟକ । ପୁରୀ ସମୁଦ୍ର କୂଳରେ ପାହାନ୍ତ ନାହିଁ । ତା ସତ୍ତ୍ୱେ ପୁରୀ ନିକଟରେ ବଂଗୋପସାଗରର ଶୋଭା ଅତୁଳନୀୟ । ପୁରୀର ସୁଦୀର୍ଘ ବେଳା ଭୂମି, ବଂଗୋପସାଗରର ଉତ୍ତାଳ ତରଂଗମାଳା ଭାରତରେ ଅନ୍ୟ କେଉଁଠି ଦେଖିବାକୁ ମିଳେ ନାହିଁ । ବିଶେଷତଃ ଶୁକ୍ଳପକ୍ଷ ରାତ୍ରିରେ କୃଷ୍ଣନୀଳ ସାଗର ହୀରକ ଖଚିତ ଅସଂଖ୍ୟ ମାଳା ଧରି ପୁରୀର ବେଳାଭୂମିକୁ ବାରବାର ଚୁମ୍ବନ କରି ଯେଉଁ ଅପୂର୍ବ ଦୃଶ୍ୟ ସୃଷ୍ଟିକରେ, ତାହା ବର୍ଣ୍ଣନାତୀତ ।

ଗୋଆରୁ ସିଧାସଳଖ ବମ୍ବେ ଫେରିବା ପାଇଁ ପ୍ଲେନ୍‌ରେ ସିଟ୍ ମିଳିଲା ନାହିଁ । ପୁଣି ଥରେ ଏକ ବୁଲାଣି ରାସ୍ତା ଦେଇ ଆମେ ପୁନେ ସହରରେ ପହଂଚିଲୁ । ପୁନେରେ ବିଖ୍ୟାତ ପ୍ରଭାତ ଷ୍ଟୁଡ଼ିଓରେ ଅବସ୍ଥିତ ଫିଲ୍ମ ଇନଷ୍ଟିଚ୍ୟୁଉଟ୍। ଆଗାର୍ଖାଁ ପ୍ୟାଲେସରେ କସ୍ତୁରବା ଗାନ୍ଧୀ ଓ ମହାଦେବ ଦେଶାଇଙ୍କ ସ୍ମୃତି ସ୍ତମ୍ଭରେ ଏକ ଫଳକରେ ଯେଉଁ ବାକ୍ୟଟି ଲେଖାଥିଲା, ତାକୁ ପଢ଼ି ଆଖିରେ ଲୁହ ଆସିଲା । ୪୨ ଆନ୍ଦୋଳନରେ ଗାନ୍ଧିଜୀଙ୍କୁ ଆଗାଖାଁ ପ୍ୟାଲେସରେ କସ୍ତୁରବା ଗାନ୍ଧି ଓ ସେକ୍ରେଟାରୀ ମହାଦେବ ଦେଶାଇଙ୍କ ସହିତ ଅଟକ ରଖା ଯାଇଥିଲା । ୪୩ ମସିହାରେ ପତ୍ନୀ କସ୍ତୁରବାଙ୍କର ମୃତ୍ୟୁ ଓ ପରେ ପରେ ମହାଦେବ ଦେଶାଇଙ୍କର ଅକାଳ ବିୟୋଗ ଘଟିଲା । ପ୍ରିୟ ସେକ୍ରେଟାରୀଙ୍କର ମୃତ୍ୟୁରେ ବ୍ୟଥିତ ହୋଇ ଗାନ୍ଧିଜୀ ଯେଉଁ ଭାଷାରେ ନିଜର ମର୍ମବେଦନା ପ୍ରକାଶ କରିଥିଲେ, ତାହା ଦେଶାଇଙ୍କ ସ୍ମୃତି ସ୍ତମ୍ଭରେ ଖଚିତ ମାର୍ବଲ ଫଳକରେ ଲେଖାହୋଇ ରହିଛି । ଗାନ୍ଧିଜୀ ଲେଖିଥିଲେ "ଯେଉଁ ପୁତ୍ର ପ୍ରତିମ ମହାଦେବ ମୋର ମୁଖାଗ୍ନି ଦେଇଥାଆନ୍ତା, ମୋର ଦୁର୍ଭାଗ୍ୟ ଯେ ତାର ଅନ୍ତିମ ବିଦାୟରେ ମୁଁ ନୀରବ ଦ୍ରଷ୍ଟା ହୋଇ ଲୁହ ଢାଳୁଛି ।"

ବଡ଼ ଦିନ ଛୁଟିରେ ପୂର୍ବରୁ ସଂରକ୍ଷଣ ନଥାଇ କୌଣସି ଟ୍ରେନରେ ସ୍ଥାନ ପାଇବା ଦୁରୂହ ବ୍ୟାପାର । ବାଧ୍ୟ ହୋଇ ଭାରତର ସବୁଠାରୁ ଜନାକୀର୍ଣ୍ଣ ରାସ୍ତା ପୁନା-ବମ୍ବେ ରୋଡ଼ରେ ଟ୍ୟାକ୍ସିରେ ଆସି ବମ୍ବେରେ ପହଂଚିଲୁ । ବମ୍ବେରେ ଆଉ ଦୁଇ ଦିନ ରହିବା ପରେ ବମ୍ବେରୁ ପ୍ଲେନ୍ ଯୋଗେ କଲିକତା ଓ ସେଠାରୁ ଟ୍ରେନ୍‌ରେ ଆସି କଟକରେ ପଦାର୍ପଣ କଲୁ । ପ୍ରତ୍ୟାଗମନ ବେଶ ସୁଖମୟ ଥିଲା ।

ଗୋଆରୁ ଫେରିବାର ଛ'ମାସ ପରେ ୧୯୭୦ ମଇ ମାସ ଶେଷରେ କାଶ୍ମୀର ଭ୍ରମଣର ସୁଯୋଗ ଆସିଲା । ନିରୁପମା ଖୁଡ଼ୀଙ୍କ (ଜଷ୍ଟିସ ଆର. କେ. ଦାସଙ୍କ ପତ୍ନୀ) ସହ ୧୯୫୮ ମସିହାରୁ କାଶ୍ମୀର ବୁଲି ଆସିଥିଲେ । ମୋର କିନ୍ତୁ ଏଥର ପ୍ରଥମ ସୁଯୋଗ । ସହଯାତ୍ରୀ ହେଲେ ନିରୁପମା, ତାଙ୍କର ବନ୍ଧୁ ସୁକୁ (ଡାକ୍ତର ସୁଖଲତା ଦାସ) ଓ ଅଧ୍ୟାପକ ଡାକ୍ତର ଗିରିଜା ଶଙ୍କର ଦାସ ମହାପାତ୍ର । ଆମ୍ଭେମାନେ ମଇ ମାସ ୨୮ ତାରିଖ ସଂଧ୍ୟାରେ କଟକ ଛାଡ଼ିଲୁ । କଲିକତାର ସିଆଲ୍‌ଦା ଷ୍ଟେସନରୁ ଯାତ୍ରାପଥ ପଠାନ୍‌କୋଟ ପର୍ଯ୍ୟନ୍ତ । ଏପରି ଏକ ବୁଲାଣି ରାସ୍ତା ଦେଇ ଯିବାର ଉଦ୍ଦେଶ୍ୟ ହେଲା, ଏକାଥରକେ ହରଦ୍ୱାର, ଋଷିକେଶ ଓ ଡ଼େହରାଡୁନ୍ ଆଦି ଦେଖାଯାଇ ପାରିବ । ପରଦିନ ସଂଧ୍ୟାରେ ଲକ୍‌ସର୍ ଜଂକ୍‌ସନ୍‌ରେ ଓହ୍ଲାଇ ଅନ୍ୟ ଗୋଟିଏ ଟ୍ରେନରେ ପ୍ରାୟ ଅଧଘଣ୍ଟାଏ ପରେ ଆମ୍ଭେମାନେ ହରଦ୍ୱାରରେ ପହଂଚିଲୁ । ଉତ୍ତର ଗଂଗା କେନାଲ କୂଳରେ ପୁରାଣ ପ୍ରସିଦ୍ଧ ହରଦ୍ୱାର ସହର ଅବସ୍ଥିତ । ହରଦ୍ୱାର ଠାରୁ ଅଳ୍ପ କେତେ ମାଇଲ ଉପରେ ଗଂଗା ନଦୀରୁ ଏହି କେନାଲ ବହିର୍ଗତ । ପ୍ରଖର ସ୍ରୋତା ଗଂଗାର ଯେଉଁ ପ୍ରତିଛବି ହରଦ୍ୱାରରେ ଦେଖିବାକୁ ମିଳେ, ତାହା କେବଳ ଏହି କେନାଲର ଜଳସ୍ରୋତ । ଏଇଠି ହରକି ପୈରୀ ମନ୍ଦିର । ହଜାର ହଜାର ହିନ୍ଦୁ ଏହି ଜଳସ୍ରୋତରେ ବୁଡ଼ ପକାଇଲେ ପାତକ ବିନାଶନ ହେବ ବୋଲି ବିଶ୍ୱାସ କରନ୍ତି । ହରଦ୍ୱାରରେ ଆମିଷ ଭୋଜନ ସଂପୂର୍ଣ୍ଣ ନିଷିଦ୍ଧ । ମାଛ ମଧ୍ୟ ଧରାଯାଏ ନାହିଁ । ଗଭୀର ଓ ପ୍ରଖର ଜଳସ୍ରୋତରେ ଅସଂଖ୍ୟ ବଡ଼ ବଡ଼ ମାଛ ଖେଳି ବୁଲନ୍ତି । ଯାତ୍ରୀ ଓ ଦର୍ଶକମାନେ ମୁଢ଼ି, ଚୂଡ଼ା ବା ଅନ୍ୟ କୌଣସି ଖାଦ୍ୟ ଜିନିଷ ପାଣିକି ପକାଇଲେ, କଳା କଳା ମୁଣ୍ଡ ପାଣି ଉପରକୁ ଟେକି ମାଛମାନେ ଖାଦ୍ୟ ସଂଗ୍ରହ କରି ନିଅନ୍ତି । ଏହି ସୁପ୍ରଶସ୍ତ କେନାଲ ଉପରେ ନିର୍ମିତ ସେତୁ ଅତିକ୍ରମ କଲେ ଅପର ପାର୍ଶ୍ୱରେ ଗଂଗାର ମୁଖ୍ୟ ଧାର । ହରଦ୍ୱାର ମୁଣ୍ଡରେ ଗଂଗା ହିମାଳୟରୁ ଲଂଫ ଦେଇ ସମତଳ ଭୂମିରେ ପ୍ରବେଶ କରିଛି ।

ଏହିଠାରୁ ଟ୍ୟାକ୍ସି ଧରି ଆମ୍ଭେମାନେ ଋଷିକେଶ ଓ ଲକ୍ଷ୍ମଣଝୋଲା ଯାତ୍ରା କଲୁ । ଋଷିକେଶରେ ଗଂଗାର ଉଭୟ କୂଳରେ ବହୁ ମଠ, ମନ୍ଦିର ଓ ହିନ୍ଦୁ ସନ୍ନ୍ୟାସୀମାନଙ୍କର ଆବାସ । ଭାରତୀୟ 'ଗୀତା ଭବନ' ଆଦି ହିନ୍ଦୁ ଦର୍ଶନ ଓ ସାହିତ୍ୟ ପ୍ରକାଶନର କେନ୍ଦ୍ରସ୍ଥଳ ଋଷିକେଶ । ଏଠାରୁ ପ୍ରାୟ ଏକ ମାଇଲ ଉପରକୁ ଲକ୍ଷ୍ମଣ ଝୋଲା । ଗଂଗା ନଦୀ ଉପରେ ମୋଟା ଲୁହା

ତାର ନିର୍ମିତ ଝୁଲା ପୋଲ । ଏହିଠାରେ ଆମେମାନେ ସୁବିଖ୍ୟାତ ମହର୍ଷି ମହେଶ ଯୋଗୀଙ୍କୁ ଗଂଗାର ଅପର ପାର୍ଶ୍ୱରେ ଥିବା ଏକ ମଠରୁ ବାହାରି ପୋଲ ଅତିକ୍ରମ କରି ଲକ୍ଷ୍ମଣ ଝୋଲାରେ ପହଂଚିବାର ଦେଖିଲୁ । କେତେଜଣ ତରୁଣୀ ଆମେରିକାନ ଶିଷ୍ୟାଙ୍କୁ ସାଂଗରେ ଧରି ଦୁଇଟି ଇଂପୋଟେଡ୍ ଗାଡ଼ିରେ ସେ ଦିଲ୍ଲୀ ଯାତ୍ରା କଲେ । ପରଦିନ ଖବର କାଗଜରେ ପଢ଼ିଲୁ, ମହେଶ ଯୋଗୀ ଶିଷ୍ୟାମାନଙ୍କ ସହ ଆମେରିକା ପଥରେ ଆକାଶ-ଯାତ୍ରୀ ।

ସୁଦକ୍ଷ ଟାକ୍ସି ଚାଳକ କହିଲେ, ଋଷିକେଶରୁ ଦେହରାଡୁନ୍ ସିଧା ରାସ୍ତା ଏବଂ ଅଳ୍ପ ଦୂର, ସଂଧ୍ୟା ପୂର୍ବରୁ ଫେରି ଲକ୍ସର୍ ଜଂକ୍ସନରେ ପହଂଚିହେବ । ଏଣୁ ଋଷିକେଶରୁ ଆମେ ସିଧା ଚାଲିଲୁ ଦେହରାଡୁନ । ଶୁଷ୍କ ଅଳକନନ୍ଦା ନଦୀ ଉପର ଦେଇ ରଂଗ ବେରଂଗର ମସୃଣ ଶିଳା । ଯେଉଁ କଳା ରଂଗର କ୍ଷୁଦ୍ର ଶିଳାକୁ ଗାଁରେ ଘରେ ଘରେ ଶାଳଗ୍ରାମ ରୂପେ ପୂଜା କରାଯାଏ ସେ ସବୁ ଏହି ପ୍ରକାରର ପାହାଡୀ ନଦୀ ଶଯ୍ୟାରୁ ସଂଗ୍ରହ କରାଯାଏ । ମଇ ମାସରେ ଅଳକନନ୍ଦା ଶୁଷ୍କ, ସ୍ଥାନେ ସ୍ଥାନେ କ୍ଷୀଣ ଜଳାଧାର । କିନ୍ତୁ ବର୍ଷାରମ୍ଭରେ ଏହି ସବୁ ପାହାଡ଼ୀ ଉପନଦୀ ହିମାଳୟରୁ ବହି ଆଣି ଗଂଗାବୁକୁରେ ଭରି ଦିଅନ୍ତି ଅଜସ୍ର ଜଳସ୍ରୋତ । ଦେହରାଡୁନରେ ଦୁଇ ଘଣ୍ଟା ବୁଲି ଦେଖିଲୁ, ମିଲିଟାରୀ ଟ୍ରେନିଂ ଆକାଦେମୀ, ଡୁନ ସ୍କୁଲ ଓ ଫରେଷ୍ଟ ରିସର୍ଚ୍ଚ ସେଣ୍ଟର ଆଦି ବିଭିନ୍ନ ଦର୍ଶନୀୟ ସ୍ଥାନ । ସେଠାରୁ ଶୈଳରାଣୀ ମଶୌରୀ ବିଶେଷ ଦୂର ନୁହେ । କିନ୍ତୁ ମଶୌରୀ ଯିବାକୁ ସମୟ ନଥିଲା । ଅବଶ୍ୟ ସେ ସୁଯୋଗ ଆସିଲା ୧୯୭୮ ମସିହାରେ । ଯାହାହେଉ ଦେହରାଡୁନ୍‌ରୁ ଫେରି ସଂଧ୍ୟା ପୂର୍ବରୁ ଆମେ ଷ୍ଟେସନରେ ପହଂଚିଲୁ । କଳ୍ପନାରେ ନଥିଲା ଯେ, ଏତେ ଅଳ୍ପ ସମୟ ମଧ୍ୟରେ ଏତେ ଗୁଡ଼ିଏ ନୂତନ ସ୍ଥାନ ପରିଦର୍ଶନ କରିହେବ । ସଂଧ୍ୟା ଆଠଟାରେ ଟ୍ରେନ୍‌ରେ ଉଠିବାକୁ ହେଲା । ପରଦିନ ପଠାଣକୋଟ ଷ୍ଟେସନରେ ପହଂଚିଲା ବେଳକୁ ଦିନ ଦଶଟା ।

ପଠାଣକୋର୍ଟ ଷ୍ଟେସନରୁ ଶ୍ରୀନଗର ଯିବା ପାଇଁ କାଶ୍ମୀର ସରକାରଙ୍କର ବହୁ ଆରାମଦାୟକ ବସ୍‌ର ବ୍ୟବସ୍ଥା ରହିଛି । ରେଳ ପଥ ଏବେ ଜାମ୍ମୁ ପର୍ଯ୍ୟନ୍ତ ପରିବର୍ଦ୍ଧିତ । ବର୍ତ୍ତମାନ ଅଧିକାଂଶ ଟ୍ରେନ ଜାମ୍ମୁ ପର୍ଯ୍ୟନ୍ତ ଯାଉଛି ଏବଂ ବସ ଯାତ୍ରାର ବ୍ୟବସ୍ଥା ମୁଖ୍ୟତଃ ଜାମ୍ମୁରୁ ଆରମ୍ଭ । ଡିଲକ୍ସ ବସ୍‌ରେ ଆମର ସିଟ ସଂରକ୍ଷିତ ଥିଲା । ପଠାଣକୋର୍ଟ ଛାଡ଼ି ଜାମ୍ମୁରେ ବସ୍ ପହଂଚିଲା ପ୍ରାୟ ଦିନ ଗୋଟାଏ ସମୟରେ । ଦୂରତା ଏକଶହ ଦଶ କିଲୋମିଟର ।

ଜାମୁ ସହର 'ଜାମୁ ଓ କାଶ୍ମୀର' ରାଜ୍ୟର ଶୀତକାଳୀନ ରାଜଧାନୀ । ନଭେମ୍ବର ମାସରେ ଅତ୍ୟଧିକ ଶୀତ ପ୍ରକୋପରୁ ରକ୍ଷା ପାଇବା ପାଇଁ ମୁଖ୍ୟ ସରକାରୀ କାର୍ଯ୍ୟାଳୟ ଗୁଡ଼ିକ ଜାମୁକୁ ଉଠିଆସେ ଏବଂ ଏହିଠାରୁ ରାଜ୍ୟଶାସନ ନିୟନ୍ତ୍ରିତ ହୁଏ । ଜାମୁ ସହରରେ ବହୁ ଦେବ ମନ୍ଦିର ଅଛି । ସୁପ୍ରସିଦ୍ଧ ରଘୁନାଥଜୀ ମନ୍ଦିର ସହରର କେନ୍ଦ୍ର ସ୍ଥଳରେ ଅବସ୍ଥିତ । ଯେଉଁ ଯାତ୍ରୀମାନେ ଦିନ ଦଶଘଣ୍ଟା ପୂର୍ବରୁ ବସ୍ ଧରି ପାରନ୍ତି ସେମାନେ ସେହିଦିନ ଶ୍ରୀନଗରରେ ପହଂଚି ପାରିବେ । ଜାମୁରୁ ଶ୍ରୀନଗରର ଦୂରତା ପ୍ରାୟ ତିନିଶହ କିଲୋମିଟର । ଏଥିରୁ ଜାମୁଠାରୁ କାଜୀଗୁଣ୍ଡ ପର୍ଯ୍ୟନ୍ତ ଦୁଇ ଶହ ତିରିଶ କିଲୋମିଟର୍ ସଂପୂର୍ଣ୍ଣ ପାହାଡ଼ୀ ରାସ୍ତା । ଉଧାମପୁର, କୁଦ୍, ବଟୋଟ୍ ରାମବାନ, ବନିହାଲ ଓ ତା ପରେ କାଜିଗୁଣ୍ଡ । ଜାମୁରୁ ଯାତ୍ରା ବିଳମ୍ବ ହେଲେ ସଂଧ୍ୟା ପୂର୍ବରୁ ରାସ୍ତାରେ କୁଦ୍ ବା ବଟୋଟ୍ ନିକଟରେ ପଥପ୍ରାନ୍ତ ହୋଟେଲ ବା ଟୁରିଷ୍ଟ ଲଜ୍‌ରେ ରାତି କଟାଇବାକୁ ହୁଏ । ସଂଧ୍ୟା ପରେ ସେ ପାହାଡ଼ୀ ରାସ୍ତାରେ ବସ୍ ଯାତାୟତ କରେ ନାହିଁ ।

କାଶ୍ମୀରରେ ସୂର୍ଯ୍ୟାସ୍ତ ହୁଏ ପ୍ରାୟ ସାଢ଼େ ସାତଟାରେ । ଆମ୍ଭେମାନେ ସଂଧ୍ୟା ସାଢ଼େ ସାତ ଘଣ୍ଟାରେ ବଟୋଟ୍‌ରେ ପହଂଚିଲୁ । ବଟୋଟ୍ ସମୁଦ୍ର ପତ୍ତନରୁ ୫୧୭୦ ଫୁଟ ଉଚ୍ଚରେ ଏକ ପର୍ବତ ପାର୍ଶ୍ୱରେ ଅବସ୍ଥିତ । ବଟୋଟ୍‌ର ଦୃଶ୍ୟ ଅତି ଚିତ୍ତାକର୍ଷକ, ଅନେକାଂଶରେ ମଶୌରୀ ପରି । ଏଠାରୁ ମାତ୍ର ଛ' କିଲୋମିଟର ପରେ 'ପତନି ଟୋପ୍', ଉଚ୍ଚତା ୬୪୪୭ ଫୁଟ । ପତନି ଟୋପ୍‌ରୁ ଯାତ୍ରୀମାନେ କାଶ୍ମୀରର ଶ୍ୟାମଳିମା ଓ ଦୂର ଦୂରାନ୍ତ ବରଫାବୃତ ପର୍ବତ ଶିଖରର ଦୃଶ୍ୟ ଦେଖି ପାରନ୍ତି । ଚାରି ପାଂଚ ହଜାର ଫୁଟ ଉଚ୍ଚରେ ସାପ ପରି ଘୁରି ଘୁରି ବସ୍, ଟ୍ରକ୍ ଓ କାର୍ ଆଦି ଯାନବାହନ ଗୋଟିଏ ପାହାଡ଼ରୁ ଅନ୍ୟ ପାହାଡ଼ ଅତିକ୍ରମ କରନ୍ତି । ବଟୋଟ୍ ପାର ହେବା ପରେ ଦୃଷ୍ଟିରେ ପଡ଼େ ପର୍ବତ କନ୍ଦରରେ ପ୍ରବାହିତା ଖରସ୍ରୋତା ଚେନାବ୍ ନଦୀ । ହଜାର ହଜାର ଫୁଟ ତଳେ ବାଳ ସୂର୍ଯ୍ୟ କିରଣରେ ଉଦ୍‌ଭାସିତ ଚେନାବ୍ ନଦୀର ପ୍ରଖର ଜଳସ୍ରୋତକୁ ଦୃଷ୍ଟିପାତ କଲେ ମନେ ହେବ, ଯେପରି ଏକ ଉଜ୍ଜ୍ୱଳ ରତ୍ନମାଳା ଖଚିତ ଚନ୍ଦ୍ରହାର ପାହାଡ଼ର କଟିଦେଶକୁ ଘେରି ରହିଛି । ରାମ୍‌ବାନ୍ ନିକଟରେ ଏକ କାଠପୋଲ ଉପରେ ରାସ୍ତା ଚେନାବ୍ ନଦୀ ଅତିକ୍ରମ କରେ । ରାମ୍‌ବାନ୍‌ଠାରେ ଯାତ୍ରୀମାନେ ବସ୍‌ରୁ ଓହ୍ଲାଇ ପ୍ରାତଃ ଭୋଜନ କରନ୍ତି । ଏହାପରେ ଆରମ୍ଭ ହୁଏ ପୀର ପଂଜଲ ପର୍ବତମାଳା ଓ 'ବନିହାଲ ପାସ୍' । ପର୍ବତ ମାଳାର ପୂର୍ବ ଦିଗରେ ଅବସ୍ଥିତ କ୍ଷୁଦ୍ର ବନିହାଲ ବସ୍ତି । ବନିହାଲଠାରୁ ପୀର୍ ପଂଜଲ୍ ପର୍ବତମାଳାର ବରଫାବୃତ ଶିଖର ଓ ହଜାର ହଜାର ବର୍ଷ

ପୂର୍ବେ ପର୍ବତ ଶିଖରରୁ ବହି ଆସିଥିବା ବରଫ ସ୍ରୋତ ବା ଗ୍ଲାସିଆରର ଶେଷାଂଶ ସ୍ପଷ୍ଟ ପରିଦୃଷ୍ଟ ହୁଏ । ବନିହାଲଠାରେ ପର୍ବତ ବୁକୁରେ ଟନେଲ ଖୋଳି ନୂତନ ରାସ୍ତା ପ୍ରସ୍ତୁତ କରାଯାଇଛି । ନାମ ଜବାହାର ଟନେଲ'', ଉଚ୍ଚତା ପ୍ରାୟ ୮୫୦୦ ଫୁଟ । ଏହି ଟନେଲରେ ଯିବା ଆସିବା ପାଇଁ ଦୁଇଟି ସ୍ୱତନ୍ତ୍ର ରାସ୍ତା ୧୯୫୬ ଡିସେମ୍ବର ମାସରେ ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନଙ୍କ ଦ୍ୱାରା ଉଦ୍‌ଘାଟିତ । ଉଦ୍‌ଘାଟକଙ୍କ ଭାଷାରେ ଇଂଜିନିୟରିଂ କୌଶଳର ଚରମ ପରାକାଷ୍ଠା ଏଠାରେ ପ୍ରଦର୍ଶିତ । ଏହି ଟନେଲ ନିର୍ମିତ ହେବା ପରେ ଜାମୁ ଶ୍ରୀନଗର ଦୂରତା ପ୍ରାୟ ତିରିଶ କିଲୋମିଟର କମିଯାଇଛି । ''ଜଓ୍ୟାହାର ଟନେଲ'' ଅତିକ୍ରମ କରିବା ପରେ ରାସ୍ତା ଧୀରେ ଧୀରେ ତଳକୁ ଖସି ପହଂଚେ କାଜିଗୁଣ୍ଡରେ । ଏହିଠାରୁ କାଶ୍ମୀର ଉପତ୍ୟକା ଆରମ୍ଭ । କାଜିଗୁଣ୍ଡରୁ ଶ୍ରୀନଗର ରାସ୍ତା ସଂପୂର୍ଣ୍ଣ ସମତଳ, ଦୂରତା ମାତ୍ର ସତୁରୀ କିଲୋମିଟର ।

ଜାମୁ କାଶ୍ମୀରର ଏହି ଗିରିପଥକୁ କେହି କେହି ସ୍ୱିଜରଲ୍ୟାଣ୍ଡର ଆଲ୍‌ପସ୍ ପର୍ବତମାଳାର ରାସ୍ତା ସହିତ ତୁଳନା କରିଥାଆନ୍ତି । ଆଲ୍‌ପ୍‌ସର ରାସ୍ତା ଅବଶ୍ୟ ଅତି ସୁନ୍ଦର । ମନୁଷ୍ୟକୃତ ପ୍ରଚେଷ୍ଟା ବଳରେ ଏହି ବରଫାବୃତ ରାସ୍ତାକୁ ଅଧିକ ସୁନ୍ଦର କରି ଦିଆଯାଇଛି । କିନ୍ତୁ ଜାମୁ କାଶ୍ମୀର ଗିରିପଥର ସ୍ୱାଭାବିକ ପ୍ରାକୃତିକ ସୌନ୍ଦର୍ଯ୍ୟ ପୃଥିବୀରେ ଅଦ୍ୱିତୀୟ । ସତୁରୀ ମସିହା ପରେ ମୁଁ ପରିବାରର ଅନ୍ୟମାନଙ୍କ ସହ ଅନେକ ଥର କାଶ୍ମୀର ଯାଇଛି । କିନ୍ତୁ ଜାମୁ ଶ୍ରୀନଗର ଗିରିପଥର ସ୍ମୃତି କେବେ ଭୁଲି ହୁଏନା । ସେଥିପାଇଁ ଆମ୍ଭେମାନେ ସାଧାରଣତଃ ଏହି ଗିରିପଥ ଦେଇ ଆରାମଦାୟକ ବସ୍‌ରେ ଶ୍ରୀନଗର ପର୍ଯ୍ୟନ୍ତ ଯାଉ ଏବଂ ଫେରିବା ବେଳେ ଶ୍ରୀନଗରରୁ ଦିଲ୍ଲୀକୁ ପ୍ଲେନ୍‌ରେ ଫେରୁ ।

ଜୁନ୍ ଦୁଇ ତାରିଖ ଦିନ ଗୋଟାଏ ବେଳେ ବସ୍ ଜାମୁ-କାଶ୍ମୀର ସରକାରଙ୍କ ଶ୍ରୀନଗର ଟୁରିଷ୍ଟ ଅଫିସ ପ୍ରାଙ୍ଗଣରେ ପ୍ରବେଶ କଲା । ଟୁରିଷ୍ଟ ଅଫିସ୍ କାନ୍ଥ ସାମନାରେ ବଡ଼ ବଡ଼ ଅକ୍ଷରରେ ଇଂରେଜୀରେ ଲେଖାଥିଲା ''ଏହି ସୌଭାଗ୍ୟଶାଳୀ ଉପତ୍ୟକାର ଅଭିନନ୍ଦନ ଗ୍ରହଣ କରନ୍ତୁ ।'' କାଜିଗୁଣ୍ଡରୁ ବାହାରି ଅନନ୍ତନାଗ ଦେଇ ଶ୍ରୀନଗର ଯିବା ସମୟରେ ମନେ ହେଉଥିଲା, ଏହି ଉପତ୍ୟକାର ପାଣି ପବନ, ରାସ୍ତା, ଘାଟ, ନଦୀ ନାଳ ସବୁ ଅଭିନବ । ତା' ସାଂଗକୁ ପ୍ରବେଶ ଦ୍ୱାରରେ ଏ ଅଭିନନ୍ଦନ ଥିଲା ଶାଳୀନତାର ପରାକାଷ୍ଠା, ସୌଜନ୍ୟର ଦର୍ପଣ ।

କଲ୍ହଣ ତାଙ୍କର ସୁବିଖ୍ୟାତ ରାଜତରଙ୍ଗିଣୀ'' ପୁସ୍ତକରେ କାଶ୍ମୀରକୁ ଭୂସ୍ୱର୍ଗ ବୋଲି ବର୍ଣ୍ଣନା କରିଅଛନ୍ତି । ପୁରାଣରେ ବର୍ଣ୍ଣିତ ଅଛି କାଶ୍ମୀର କାଶ୍ୟପ ମୁନିଙ୍କ ଦ୍ୱାରା ପ୍ରତିଷ୍ଠିତ । ପର୍ଯ୍ୟଟକମାନେ କାଶ୍ମୀରକୁ ''ଭେନିସ୍ ଅଫ ଦି ଇଷ୍ଟ'' ରୂପରେ କଳ୍ପନା କରନ୍ତି । ମହାକାଶରେ ମଣିଷର ଯାତ୍ରା ପରେ ଏବଂ ଚନ୍ଦ୍ର ଉପରେ ମଣିଷ ପାଦ ଦେବା ପରେ ସ୍ୱର୍ଗର ଅସ୍ତିତ୍ୱ ସଂପର୍କରେ ମନରେ ସଂଦେହ ଉଠେ । କିନ୍ତୁ ନିସଂଦେହରେ କୁହାଯାଇପାରେ ଯେ କାଶ୍ମୀର ସବୁ ସ୍ୱର୍ଗୀୟ ସୌନ୍ଦର୍ଯ୍ୟରେ ଭରପୂର । ନିମ୍ନଗାମୀ ବରଫ ସ୍ରୋତ, ଖରସ୍ରୋତା ନଦୀ ଓ ନିର୍ଝରିଣୀ, ଶ୍ୟାମଳ ଦୂର୍ବାଦଳ ଓ ସବୁଜ ବନାନୀ, ଡାଲ ମାନସବାଲ ଓ ଉଲାର ପରି ହ୍ରଦ ଏବଂ ସର୍ବୋପରି ପୃଥିବୀର ସବୁଠାରୁ ସୁନ୍ଦର ନରନାରୀ । ଏହି ଭୂସ୍ୱର୍ଗର ପ୍ରବେଶ ଦ୍ୱାର ଶ୍ରୀନଗର, କାଶ୍ମୀରର ରାଜଧାନୀ ।

ଶ୍ରୀନଗର ସହର ଝେଲମ୍ ନଦୀକୂଳରେ ଗଢ଼ି ଉଠିଛି । ଉଭୟ ପଟେ ଥିବା ସହରାଂଚଳକୁ ସଂଯୋଗ କରୁଥିଲେ ସାତଟି କାଠର ସେତୁ । ଏବେ ଝେଲମ୍ ଉପରେ ସିମେଣ୍ଟ କଂକ୍ରିଟ୍ ବ୍ରିଜ ନିର୍ମିତ ହେଲାଣି । ବ୍ରିଜ ସଂଖ୍ୟା ବର୍ତ୍ତମାନ ଦଶ । 'ଜଓ୍ୟାହାର ଟନେଲ' ପାର ହେବା ପରେ 'ଭେରିନାଗ' ନାମକ ଏକ ପାର୍ବତୀୟ ଝରଣାରୁ ଝେଲମ୍ ନିର୍ଗତ । ଭେରିନାଗରୁ ଶ୍ରୀନଗର ମଧ୍ୟରେ ଅନନ୍ତନାଗ ପାର ହେଲେ ଲିଡ଼ର ଆଦି ବରଫ ସ୍ରୋତରେ ପରିପୁଷ୍ଟ ପାହାଡ଼ୀ ନଦୀ ଓ ଝରଣାର ଜଳ ଝେଲମ୍‌ରେ ମିଶେ । ଶ୍ରୀନଗରଠାରୁ ୧୬୦ କିଲୋମିଟର ଦୂର ଉଲାର ହ୍ରଦରେ ଝେଲମ ପ୍ରବେଶ କରିଛି ଓ ଆଠ ଦଶ କିଲୋମିଟର ତଳକୁ ସେହି ଉଲାର ହ୍ରଦରୁ ନିର୍ଗତ ହୋଇ ଉରି ବାଟେ ପାକିସ୍ଥାନରେ ପ୍ରବେଶ କରିଛି । ଶ୍ରୀନଗର ସମୁଦ୍ର ପତ୍ତନରୁ ୫୨୦୦ ଫୁଟ ଉଚ୍ଚ ଓ ତାର ଜଳବାୟୁ ବିଚିତ୍ର । କାଶ୍ମୀରରେ ବର୍ଷା ଋତୁ ନାହିଁ, କେବଳ ଗ୍ରୀଷ୍ମ ଓ ଶୀତ ଋତୁ । ମେ ଓ ଜୁନ୍ ମାସରେ ସାମାନ୍ୟ ବର୍ଷା ହୁଏ ସତ୍ୟ, କିନ୍ତୁ ଭାରତରେ ମୌସୁମୀ ପ୍ରବାହ ସହିତ ତାର କୌଣସି ସଂପର୍କ ନାହିଁ । ଶୀତକାଳ ଅକ୍ଟୋବରରୁ ଆରମ୍ଭ ହୋଇ ଫେବ୍ରୁଆରୀ, ମାର୍ଚ୍ଚରେ ଶେଷ ହୁଏ । ଏପ୍ରିଲ ମାସରେ ହିମାଳୟର ବରଫ ତରଳି, ନଦୀ ନିର୍ଝରିଣୀ ସବୁ ଜଳପୂର୍ଣ୍ଣ ହୁଏ । ଡାଲ୍ ହ୍ରଦରେ ପୁଣି ଶିକାରା ଚାଲେ । ଫଳ ଫୁଲର ସମ୍ଭାରରେ କାଶ୍ମୀର ଏକ ଉଦ୍ୟାନରେ ପରିଣତ ହୁଏ ।

ଶ୍ରୀନଗରର କେନ୍ଦ୍ରସ୍ଥଳ ଲାଲଚୌକ । ଏହିଠାରେ ବଡ଼ ବଡ଼ ଦୋକାନ ବଜାର, ଜାମ୍ମୁ କାଶ୍ମୀର ସରକାରଙ୍କ ଆର୍ଟ ଏଂପୋରିୟମ୍, ସିଲ୍କ ଶାଢ଼ୀ ଓ ସାଲ୍‌ର ଭଣ୍ଡାର ଓ କାଠ ଏବଂ ଚମଡ଼ାର ଦୋକାନ । ସୌଖୀନ ଲୋକଙ୍କ

ପାଇଁ ବିଶେଷତଃ ସ୍ତ୍ରୀଲୋକଙ୍କ ପାଖରେ କାଶ୍ମୀରୀ ସିଲ୍‌କ ଓ ସାଲର ଆଦର ଅନେକ ବେଶି । କିନ୍ତୁ ଶ୍ରୀନଗରର ବିଶେଷତ୍ୱ ଏ ଶାଢ଼ୀ ଓ ସାଲ୍‌ର ଭଣ୍ଡାର ନୁହେ । ସବୁଠାରୁ ଆକର୍ଷଣୀୟ ହେଲା ଦାଲ୍ ଓ ନଗୀନ ଲେକ୍ ଓ ତାର ପାଖେ ପାଖେ ବୋଲେଭାର୍ଡ଼ ରାସ୍ତା ପାର୍ଶ୍ୱରେ ଥିବା ଚଷମାଶାହୀ, ନିଶାତ୍ ବାଗ ଓ ଶାଲିମାର ଉଦ୍ୟାନ ଏବଂ ଦାଲ ଲେକ୍‌ର ସୁସଜ୍ଜିତ ଶିକାରା ଓ ବସବାସ ଉପଯୋଗୀ ହାଉସ୍ ବୋଟ । ପର୍ଯ୍ୟଟନ କେନ୍ଦ୍ରରୁ ବାହାରି ପୂର୍ବ ପଟ ରାସ୍ତାରେ ପ୍ରାୟ ଦୁଇ କିଲୋମିଟର ଯିବା ପରେ ପଡ଼େ ବିଖ୍ୟାତ ଦାଲ୍ ଲେକ୍ । ରାସ୍ତା ପାଖରେ ଗୋଟିଏ ପାହାଡ଼ ଉପରେ ଶଙ୍କରାଚାର୍ଯ୍ୟ ମନ୍ଦିର । ହିନ୍ଦୁ ଧର୍ମଗୁରୁ ଆଦି ଶଙ୍କରାଚାର୍ଯ୍ୟ ସାରା ଭାରତ ପରିଭ୍ରମଣ କରି ପୁରୀ ସମେତ ଚତୁଃଧାମରେ ଚାରିଟି ମଠ ପ୍ରତିଷ୍ଠା କରିଥିଲେ । କାଶ୍ମୀର ଭ୍ରମଣ କାଳରେ ଶ୍ରୀନଗରଠାରେ ଦାଲ୍‌ଲେକ୍ କୂଳରେ ଏକ ପାହାଡ଼ ଉପରେ ପ୍ରତିଷ୍ଠା କରିଥିଲେ ଏହି ଶିବ ମନ୍ଦିର । ନେହୁରୁ ପାର୍କ ନିକଟରୁ ଏହି ମନ୍ଦିରକୁ ଏକ ରାସ୍ତା ନିର୍ମିତ ହୋଇଛି । ଏହି ଶଙ୍କରାଚାର୍ଯ୍ୟ ହିଲ ବା ପାହାଡ଼ ଉପରେ ଠିଆ ହେଲେ ଝେଲମ୍ ନଦୀ ଓ ସାରା ସହରର ଦୃଶ୍ୟ ଦୃଷ୍ଟିରେ ପଡ଼େ ।

ପ୍ରଥମ ଦିନ ଉପରବେଳା ଆମ୍ଭେମାନେ କେବଳ ଶିକାରାରେ ଦାଲ୍ ଲେକ୍‌ରେ ବୁଲୁ ବୁଲୁ ସୂର୍ଯ୍ୟାସ୍ତ ହେଲା । ଏହି ଶିକାରା ଗୁଡ଼ିକ ସୁସଜ୍ଜିତ କ୍ଷୁଦ୍ର ନୌକା । ନାଉରୀକୁ ବାଦ୍ ଦେଇ ଆରାମରେ ଚାରିଜଣ ବସି ପାରିବେ । ଶିକାରାରେ ଦାଲ ଲେକ୍‌ରେ ବୁଲିବା ପର୍ଯ୍ୟଟକମାନଙ୍କର ଏକ ଅପରିହାର୍ଯ୍ୟ ସଉକ୍ ଏବଂ ଆମେ ମଧ୍ୟ ସେଥିରୁ ବାଦ୍ ପଡ଼ିଲୁ ନାହିଁ । ପ୍ରତିଦିନ ଅନ୍ତତଃ ନେହୁରୁ ପାର୍କ, ଚାର ଚିନାର ଆଦି ବୁଲି ନ ଆସିଲେ ସନ୍ତୋଷ ଲାଗେ ନାହିଁ । କେବଳ ଆମ ପାଇଁ ନୁହେ, ସବୁ ପର୍ଯ୍ୟଟକଙ୍କ ପାଇଁ ବୋଧହୁଏ ସବୁଠାରୁ ଆକର୍ଷଣୀୟ ସ୍ଥାନ ଏହି 'ନେହୁରୁ ପାର୍କ' ଓ 'ଚାର ଚିନାର୍' । ବୋଲଭାର୍ଡ଼ ରାସ୍ତାରୁ ଶିକାରାରେ ପ୍ରାୟ ପାଂଚଶହ ଫୁଟ ଗଲେ "ନେହୁରୁ ପାର୍କ" । ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜହରଲାଲ ନେହୁରୁଙ୍କର ପୂର୍ବ ପୁରୁଷମାନେ କାଶ୍ମୀରର ଲୋକ । ପ୍ରଥମ ପ୍ରଧାନମନ୍ତ୍ରୀଙ୍କ ନାମାନୁସାରେ ଏହି ଦ୍ୱୀପର ନାମକରଣ କରାଯାଇଛି । ନାନା ଜାତିର ଗୋଲାପ ଓ ଅନ୍ୟ ସାମୟିକ ଫୁଲରେ ଭରା ଏହି ପାର୍କ ମଝିରେ ଗୋଟିଏ ବିରାଟ ରେଷ୍ଟୁରାଣ୍ଟ । ସଂଧ୍ୟାପରେ ନାନା କିସମର ଆଲୋକ ସଜ୍ଜାରେ ଏହି ଦ୍ୱୀପଟି ଝଲମଲ କରେ । ଶହ ଶହ ଶିକାରା ନେହୁରୁ ପାର୍କରୁ ଯାତ୍ରୀମାନଙ୍କୁ ନେବା ଆଣିବା କରନ୍ତି । ଦାଲ ଲେକ୍‌ର ପୂର୍ବ ଦିଗରେ 'ଚାର-ଚିନାର' । ଏହି କ୍ଷୁଦ୍ର ଦ୍ୱୀପରେ



ସୁପ୍ରିମ କୋର୍ଟର ଚିଫ୍ ଜଷ୍ଟିସ୍ ଏ. ଏନ୍. ରାୟଙ୍କ ସଂବର୍ଦ୍ଧନା ଉତ୍ସବରେ ଡାକ୍ତର ଶ୍ରୀମତୀ ରଥ, ମିସେସ୍ ରାୟ ଓ ତାଙ୍କର ଦୁଇଜଣ ସଂପର୍କୀୟା, ଲେଖକ, ଚିଫ୍ ଜଷ୍ଟିସ୍ ରାୟ, ଆଡ୍‌ଭୋକେଟ ନବ କୁମାର ଦାସ, ରାମଚନ୍ଦ୍ର ରାମ ଓ ରଜତ କୁମାର ରଥ (୧୯୭୪)



ଜଷ୍ଟିସ୍ ଆଚାର୍ଯ୍ୟ, ଚିଫ୍ ଜଷ୍ଟିସ୍ ଜି. କେ. ମିଶ୍ର, ଜଷ୍ଟିସ୍ ପି. ଏନ୍. ଭଗବତୀ,
ସି. ବାମନ ମୂର୍ତ୍ତି, ଲେଖକ (୧୯୭୫)




ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ, ଲେଖକ ଓ ଆଇନ କମିସନ ସଦସ୍ୟ ଡକ୍ଟର ପି.କେ. ତ୍ରିପାଠୀ (୧୯୭୫)



ସୁପ୍ରିମ୍‌କୋର୍ଟ ଜଜ୍ ଜଷ୍ଟିସ୍ ଭେଙ୍କଟ ରାମିୟା, ଲେଖକ ଓ ଆଟର୍ଣ୍ଣି ଜେନେରାଲ ପରାଶରନ୍ (୧୯୮୩)

ଅଛି ବହୁ ପୁରାତନ ଚାରିଟି ଚିନାର ଗଛ । ଚିନାର ଗଛ ଅତି ବିରାଟ । ପତ୍ର ଅତି ସୁନ୍ଦର । ଚିନାର ପତ୍ରର ସୌନ୍ଦର୍ଯ୍ୟ କାଶ୍ମୀରର କଳା ଓ ଭାସ୍କର୍ଯ୍ୟକୁ ବହୁ ଭାବରେ ପ୍ରଭାବିତ କରିଛି । କାଶ୍ମୀରରେ ପ୍ରସ୍ତୁତ ଶାଢ଼ୀ, ସାଲ ଓ କାଠକାମ ଉପରେ ଚିନାର୍ ପତ୍ରର ଅଭିଲେଖ ବହୁଭାବରେ ପ୍ରତିଫଳିତ । ଚିନାର ଗଛ ବ୍ୟତୀତ ଏହି କ୍ଷୁଦ୍ର ଦ୍ୱୀପରେ ଗୋଟିଏ ଛୋଟ ରେଷ୍ଟୁରାଣ୍ଟ ଓ ନାନା ପାନୀୟର ମଧ୍ୟ ବ୍ୟବସ୍ଥା ରହିଛି । ଦାଲ୍ ଲେକ୍‌ର ଉଭର ପଟେ ଶହ ଶହ ସଂଖ୍ୟାରେ ସୁନ୍ଦର ହାଉସ୍‌ବୋଟ । ପ୍ରତି ବୋଟରେ ଦୁଇ ତିନୋଟି ରହିବା ଘର, ଟଏଲେଟ୍, ଡାଇନିଂ ହଲ ଓ ଡ୍ରଇଂ ରୁମ । ଯେପରି ଭାସମାନ ତିନି ତାରକା ବିଶିଷ୍ଟ ହୋଟେଲର ଗୋଟିଏ ଅଂଶ । କେତେକ ବଡ଼ ବଡ଼ ହାଉସ ବୋଟର ସାଜସଜ୍ଜା ପାଂଚ ତାରକା ହୋଟେଲ ଠାରୁ ଊଣା ନୁହେ । ସେ ସମୟରେ ଏ ପ୍ରକାରର ଗୋଟିଏ ଗୋଟିଏ ହାଉସ ବୋଟର ମୂଲ୍ୟ ତିନି ଚାରି ଲକ୍ଷ ଟଂକାରୁ କମ୍ ନଥିଲା । ହାଉସ ବୋଟରେ ରହିବା ବିଷୟରେ ମନରେ ନାନା ରକମର ସଂଦେହ ଥାଏ । କେହି କେହି କହୁଥିଲେ ଦାଲ ଲେକ୍‌ର ପାଣିକୁ ହାଉସ୍ ବୋଟ ଗୁଡ଼ିକରେ ପିଇବା ପାଣି ରୂପେ ବ୍ୟବହାର କରାଯାଏ । ସେଥିପାଇଁ ସବୁ ଆକର୍ଷଣ ସତ୍ତ୍ୱେ ଆମ୍ଭେମାନେ ପ୍ରଥମ ଥର ହାଉସ୍ ବୋଟରେ ରହି ନଥିଲୁ । ପରେ ଆମର ଏହି ଦୁଃଧାରଣା ଦୂର ହୋଇଗଲା । ହାଉସ ବୋଟ ମାଲିକମାନେ ନିକଟସ୍ଥ ସ୍ଥଳ ଭାଗରେ ଟ୍ୟୁଉବ୍‌ଓଏଲ ବସାଇ ବୋଟକୁ ପାଣି ଯୋଗାଇ ଦିଅନ୍ତି । ପର୍ଯ୍ୟଟକ ଇଚ୍ଛା କଲେ ସଂପୂର୍ଣ୍ଣ ସିଦ୍ଧ କରାଯାଇଥିବା ଟ୍ୟୁଉବଓଏଲ ପାଣି ଯୋଗାଇ ଦେବାର ବ୍ୟବସ୍ଥା ଥାଏ । ୧୯୭୦ ମସିହା ପରେ ଆମ୍ଭେମାନେ ପରିବାରର ଅନ୍ୟ ଲୋକ ଓ ବଂଧୁ ବାଂଧବଙ୍କ ସହ ଅନେକ ଥର 'କାଶ୍ମୀର ଯାଇଛୁ ଏବଂ ସବୁ ଥର ଏହି ହାଉସ୍ ବୋଟରେ ରହିବାକୁ ଆରାମ ଦାୟକ ମନେ କରିଛୁ । ଅବଶ୍ୟ ହାଉଟ ବୋଟ ଗୁଡ଼ିକର ଭଡ଼ା ଓ ଖାଦ୍ୟ ପେୟର ଚାର୍ଜ ଯେ କୌଣସି ଥ୍ରୀଷ୍ଟାର ହୋଟେଲ ଠାରୁ ଅନେକ ବେଶି ।

ଦ୍ୱିତୀୟ ଦିନ ସକାଳ ନ'ଟାରେ ଆମେ ବାହାରିଲୁ ମୋଗଲ ଉଦ୍ୟାନ ପରିଦର୍ଶନରେ । ଦାଲଲେକ୍ ପାର୍ଶ୍ୱବର୍ତ୍ତୀ ରାସ୍ତା ବୋଲଭାର୍ଡ଼ ନାମରେ ପରିଚିତ । ଚଶମାଶାହୀ ଉଦ୍ୟାନ ବୋଲଭାର୍ଡ଼ ରାସ୍ତାରୁ ଦୁଇ କିଲୋମିଟର ଦକ୍ଷିଣକୁ ଗଲେ ପାହାଡ଼ ପାର୍ଶ୍ୱରେ ଅବସ୍ଥିତ । କାଶ୍ମୀରୀ ଭାଷାରେ 'ଚଶମା'ର ଅର୍ଥ ଝରଣା । ନିକଟସ୍ଥ ପାହାଡ଼ରୁ ବହି ଆସିଥିବା ଝରଣାକୁ ବିଭିନ୍ନ ସ୍ଥାନରେ ଆବଦ୍ଧ କରି ଏହି ଉଦ୍ୟାନ ସୃଷ୍ଟି କରାଯାଇଛି । ଏହି ଉଦ୍ୟାନର ପ୍ରତିଷ୍ଠାତା ମୋଗଲ ସମ୍ରାଟ୍

ସାହାଜାହାନ୍ । ବିଭିନ୍ନ ରଂଗର ପୁଷ୍ପଲତା ବିଶେଷତଃ ଗୋଲାପ ଫୁଲର ସଂଭାରରେ ଚଶମାସାହୀ ବିମଣ୍ଡିତ । ନିକଟସ୍ଥ ପାହାଡ଼ କଡ଼ରେ ରାଜଭବନ କୋଠି ।

ଚଶମା ସାହୀ ଠାରୁ ବୋଲଭାର୍ଡ଼ ରାସ୍ତାରେ ପ୍ରାୟ ଚାରି କିଲୋମିଟର ଆଗକୁ ଗଲେ 'ନିଶାତ୍ ବାଗ୍'' । ଦାଲ ଲେକ୍ କୂଳରେ ଏହି ଉଦ୍ୟାନଟି ଦଶଟି ସ୍ତରରେ ବିଭକ୍ତ । ପାହାଡ଼ କଡ଼ ମାଟି କାଟି ତାହାକୁ ଶିଢ଼ିର ପାହାଚ ପରି ଥାକ ଥାକ କରି ଗଢ଼ା ଯାଇଛି । ମଝିରେ ବହି ଆସିଛି ନିକଟସ୍ଥ ପାହାଡ଼ରୁ ଏକ ଝରଣା, ଯାହାକି ସାରା ଉଦ୍ୟାନକୁ ଆବଶ୍ୟକ ଜଳ ଯୋଗାଇ ଦିଏ । ସବୁଜ ଘାସର ଗାଲିଚା ସାଂଗକୁ ଧାଡ଼ି ଧାଡ଼ି ବିଭିନ୍ନ ରଂଗର ଗୋଲାପ ଫୁଲର ଚାରା ଏବଂ ମଝିରେ ମଝିରେ ଆପଲ୍ ଓ ଆଖ୍ରୋଟ୍ ଆଦି ନାନା ଫଳ ଗଛ । ପ୍ରତି ରବିବାରରେ ଏ ଉଦ୍ୟାନ ଦେଖିବା ପାଇଁ ବିରାଟ ଜନ ସମାଗମ ହୁଏ । ଏହି ଉଦ୍ୟାନର ପ୍ରତିଷ୍ଠାତା ମୋଗଲ ସମ୍ରାଟ ଜାହାଂଗୀରଙ୍କ ଶାଳକ ଆସଫଜାହ । ଦାଲ୍‌ଲେକ୍ ଠାରୁ ଅନତିଦୂରରେ ଖୋଦ୍ ସମ୍ରାଟ ଜାହାଂଗୀରଙ୍କ ଦ୍ୱାରା ପ୍ରତିଷ୍ଠିତ ସବୁଠାରୁ ବଡ଼ ଉଦ୍ୟାନ 'ଶାଲିମାର ଗାର୍ଡ଼େନ୍' । ଜାହାଂଗୀର ଓ ନୂରଜାହାନଙ୍କ ଅଗାଧ ପ୍ରେମର ନିଦର୍ଶନ ଏହି ଉଦ୍ୟାନ ନାନା ଫଳ ପୁଷ୍ପ ଗଛରେ ଭରପୂର । ଚିନାର ପପ୍‌ଲାର ଠାରୁ ଆରମ୍ଭ କରି ବହୁ ଦୁଷ୍ପ୍ରାପ୍ୟ ବୃକ୍ଷ ଲତା ଉଦ୍ୟାନର ଶୋଭା ବର୍ଦ୍ଧନ କରେ । ତା ସହିତ ପାହାଡ଼ୀ ଝରଣାର କୁଳୁକୁଳୁ ଶବ୍ଦ ଓ ଧାଡ଼ି ଧାଡ଼ି ଗଛରେ ଗୋଲାପ ଫୁଲ; ମୋଗଲମାନଙ୍କର ଅତି ପ୍ରିୟ ଆଦରଣୀୟ ପୁଷ୍ପ । ମୋଗଲ ସାମ୍ରାଜ୍ୟ ଲୋପ ହେବାର ତିନିଶହ ବର୍ଷରୁ ଅଧିକ ହେଲାଣି, ଅଥଚ ମୋଗଲମାନଙ୍କର କଳା-ପ୍ରୀତି ଓ ରୁଚିବୋଧର ଜୀବନ୍ତ ପ୍ରତୀକ ରୂପେ ଏହି ଉଦ୍ୟାନ ଗୁଡ଼ିକ ଏବେ ମଧ୍ୟ ବିରାଜମାନ ।

ଶ୍ରୀନଗରରେ ତିନି ଦିନ ରହିବା ପରେ ଆମ୍ଭେମାନେ ଚାଲିଲୁ ପହେଲଗାଁ ପଥରେ । ଆମ ସହିତ ନୂତନ ସହଯାତ୍ରୀ ହେଲେ ଶ୍ରୀନଗରର ଜଣେ ତରୁଣ ଡାକ୍ତର ମିଷ୍ଟର କୟୁମ୍ । ସେ କାଶ୍ମୀର ସରକାରଙ୍କ ଦ୍ୱାରା ମନୋନୀତ ହୋଇ କଟକ ମେଡ଼ିକାଲ କଲେଜରେ ଅଧ୍ୟୟନ କରି ଏମ୍.ବି.ବି.ଏସ୍ ପାସ୍ କରିଥିଲେ । ମୋ ବ୍ୟତୀତ ଅନ୍ୟ ତିନି ଡାକ୍ତରଙ୍କ ସହ ସେ ବେଶ୍ ପରିଚିତ, ଡାକ୍ତର ଦାସ ମହାପାତ୍ରଙ୍କର ଛାତ୍ର ମଧ୍ୟ । ଆମ୍ଭେମାନେ ଅବନ୍ତୀପୁର, ଅନନ୍ତନାଗ ବାଟ ଦେଇ ସିଧା ପହେଲଗାଁ ନ ଯାଇ, ଅନନ୍ତ ନାଗ ଅତିକ୍ରମ କରି ଆଚ୍ଛାବଲ ଉଦ୍ୟାନରେ ପହଂଚିଲୁ । ଏ ଉଦ୍ୟାନର ପ୍ରତିଷ୍ଠା କାଳ ମୋଗଲ ରାଜତ୍ୱ ସମୟରେ । କିଛି ଦୂର ଗଲେ କୋକରନାଗ ଝରଣା । ଉଚ୍ଚତା ଛ' ହଜାର ଫୁଟ । ଫେରନ୍ତା ବାଟରେ ଅନନ୍ତନାଗଠାରୁ ପ୍ରାୟ ଆଠ କିଲୋମିଟର

ଦୂର ମଟନ୍‌ଠାରେ ଏକ ପ୍ରସିଦ୍ଧ ଶିବ ମନ୍ଦିର । ମନ୍ଦିର ହତା ମଧ୍ୟରେ ଏକ କ୍ଷୁଦ୍ର ଝରଣା ପ୍ରବାହିତ । ଝରଣା ଜଳକୁ ଆବଦ୍ଧ କରି ମନ୍ଦିର ସାମନାରେ ଏକ କ୍ଷୁଦ୍ର ପୁଷ୍କରିଣୀ । ଝରଣାର ଜଳ ପ୍ରବାହ ଗୋଟିଏ କୋଣରେ ପୋଖରୀରେ ପ୍ରବେଶ କରି ଅନ୍ୟ କ'ଣରେ ତଳକୁ ବହିଯାଏ । ପୋଖରୀରେ ଅସଂଖ୍ୟ ଟ୍ରାଉଟ୍ ମାଛ, କିନ୍ତୁ ମାଛ ଧରିବା ସଂପୂର୍ଣ୍ଣ ନିଷିଦ୍ଧ । ମନ୍ଦିରର ବିଶେଷତ୍ୱ ଏହି ଯେ ମନ୍ଦିର ହତାରେ ହିନ୍ଦୁ ମୁସଲମାନ ସମସ୍ତେ ଅବାଧରେ ପ୍ରବେଶ କରି ପାରନ୍ତି । କାଶ୍ମୀର ପଣ୍ଡିତମାନଙ୍କ ଦ୍ୱାରା ସେ ସମୟରେ ମନ୍ଦିରଟି ପରିଚାଳିତ ହେଉଥାଏ । ଆମେ ଓଡ଼ିଶାରୁ ଆସିଥିବା ଜାଣି ଜଣେ ପଣ୍ଡା ନିଜର ଖାତା ପତ୍ର ବାହାର କରି ଦୁଇଜଣ ବିଶିଷ୍ଟ ଓଡ଼ିଆଙ୍କର ନାମ ଓ ଦସ୍ତଖତ୍ ଦେଖାଇଲେ । ସେମାନେ ଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ । ସଜ୍ଜନଙ୍କ ପଥ ଅନୁଗମନ କଲେ ସଦ୍‌ଗତି ମିଳେ । ଏହି ଧାରଣାରେ ପଣ୍ଡା ମହାଶୟଙ୍କ ଅନୁରୋଧ କ୍ରମେ ପରିଜା ସାହେବ ଓ ବିଶ୍ୱନାଥ ବାବୁଙ୍କ ନାମ ତଳକୁ ନିଜ ନାମ ଓ ପରିଚୟ ଓଡ଼ିଆ ଓ ହିନ୍ଦୀ ଅକ୍ଷରରେ ଲେଖି ଦେଲି । ମନେହେଲା, ଭବିଷ୍ୟତର ଐତିହାସିକମାନଙ୍କ ପାଇଁ ମୂଲ୍ୟବାନ ଉପାଦାନ ରଖି ଦେଇ ଯାଉଛି । ପଣ୍ଡାଙ୍କୁ ତାଙ୍କର ପ୍ରାପ୍ୟ ଦେବା ବିଷୟରେ ବିତଣ୍ଡା ମଧ୍ୟରେ ଏ ଭ୍ରାନ୍ତ ଧାରଣା ଦୂର ହେବାକୁ ସମୟ ଲାଗିଲା ନାହିଁ ।

ପହେଲଗାଁରେ ପହଂଚିଲୁ ସଂଧ୍ୟା ଛ'ଟାରେ । ନଟରାଜ ହୋଟେଲରେ ଆମ ରହଣିର ବ୍ୟବସ୍ଥା କରିଦେଇ ଡକ୍ଟର କୟୁମ ସେହି ଟ୍ୟାକ୍ସିରେ ଶ୍ରୀନଗର ଫେରିଗଲେ । ଆମ୍ଭେମାନେ ପହେଲଗାଁରେ ପାଂଚ ଦିନ ରହିଲୁ । ପହେଲଗାଁ କାଶ୍ମୀରର ସବୁଠାରୁ ସୁନ୍ଦର ଶୈଳନିବାସ । ଲିଡ଼ର ଉପତ୍ୟକାରେ ସମୁଦ୍ର ପତ୍ତନରୁ ୭୨୦୦ ଫୁଟ ଉଚ୍ଚରେ ପହେଲଗାଁ ଲିଡ୍‌ର ନଦୀ କୂଳରେ ଅବସ୍ଥିତ । ଚତୁର୍ଦ୍ଦିଗରେ ବରଫାବୃତ ପର୍ବତ ଶିଖର ଓ ଗ୍ଳାସିୟର ପହେଲଗାଁର ଶୋଭା ବର୍ଦ୍ଧନ କରେ । ଦକ୍ଷିଣ ପଟେ ପାହାଡ଼ ଉପରକୁ ପ୍ରାୟ ପାଂଚଶହ ଫୁଟ ଉପରକୁ ଉଠିଲେ ସୁନ୍ଦର 'ବାଇସରଣ୍' ଉପତ୍ୟକା । ପାଇନ ଓ ସେଡାର ଗଛରେ ମଣ୍ଡିତ ପାହାଡ଼ ମଝିରେ ବିସ୍ତୀର୍ଣ୍ଣ ଘାସ ପଡ଼ିଆ, ଏକ ସବୁଜ ଗାଲିଚା ପରି । ପହେଲଗାଁ ନିକଟରେ ବରଫ ସ୍ରୋତରେ ପରିପୁଷ୍ଟ ଲିଡ଼ର ନଦୀର ନୀଳ ଜଳ ପ୍ରବାହର ପ୍ରଚଣ୍ଡ କଳ କଳ ନାଦ ଯେଉଁ ଝଂକାର ସୃଷ୍ଟି କରେ ତା ବର୍ଣ୍ଣନାତୀତ । ବରଫ ତରଳି ଯେଉଁ ପାଣି ପର୍ବତ କନ୍ଦରରୁ ବହି ଆସେ, ତାର ରୂପ ବୈଚିତ୍ର୍ୟ ବର୍ଣ୍ଣନା କରିବା କେବଳ କବିବର ରାଧାନାଥ ବା କବିଗୁରୁ ରବୀନ୍ଦ୍ରନାଥଙ୍କ ପକ୍ଷରେ ସଂଭବ ହୋଇପାରେ ।

ପହେଲଗାଁରୁ ପ୍ରାୟ ପନ୍ଦର କିଲୋମିଟର ଦୂରରେ ୯୦୦୦ ଫୁଟ ଉଚ୍ଚରେ ଅବସ୍ଥିତ ଚନ୍ଦନବାଡ଼ି, ତାର ବରଫସେତୁ ପାଇଁ ବିଶ୍ୱବିଖ୍ୟାତ । ଲିଡ଼ର ନଦୀ କୂଳେ କୂଳେ ପାହାଡ଼ ଉପରେ ଚଲାପଥ । ଯାତ୍ରୀମାନେ ସାଧାରଣତଃ ଟଟୁଘୋଡ଼ାରେ ବସି ଚନ୍ଦନବାଡ଼ି ଯାତ୍ରା କରନ୍ତି । ବଂଧୁ ଡାକ୍ତର ଦାସମହାପାତ୍ରଙ୍କର ଘୋଡ଼ା ଚଢ଼ିବାକୁ ଭାରି ଭୟ । ଏଣେ ଘୋଡ଼ା ଉପରେ ଉଠିବା ପାଇଁ ନିରୁପମାଙ୍କ ଶାରୀରିକ ଅକ୍ଷମତା । ଏଣୁ ସୁକୁ ଓ ମୁଁ ତଥା ନଟରାଜ ହୋଟେଲରେ ରହୁଥିବା ଦୁଇଜଣ ଡାକ୍ତର ଦମ୍ପତି ଘୋଡ଼ାରେ ଚଢ଼ି ଚନ୍ଦନବାଡ଼ି ଯାତ୍ରା କଲୁଁ ସକାଳ ଆଠଟାରେ । ଯିବାବେଳେ ଘୋଡ଼ାମାନେ ଧୀରେ ଧୀରେ ଗୋଟାଏ ପାହାଡ଼ରୁ ଆଉ ଗୋଟାଏ ପାହାଡ଼ ଉପରକୁ ଆଗେଇ ଚାଲନ୍ତି । ତଳେ ପାହାଡ଼ କନ୍ଦରରେ ଲିଡ଼ର ନଦୀ, ପାହାଡ଼ ଉପରୁ ଲଂଫ ଦେଇ ମଝିରେ ମଝିରେ ଭୟାନକ ଜଳପ୍ରପାତ ସୃଷ୍ଟି କରି, ସବୁ ବାଧା ବିଘ୍ନ ଭାଂଗି ତଳକୁ କ୍ଷିପ୍ର ଗତିରେ ଧାଇଁ ଚାଲିଛି । ମନରେ ରୋମାଂଚ ସୃଷ୍ଟି ହୁଏ । ମନେ ପଡ଼େ କବିବର ରାଧାନାଥଙ୍କର "ଯୁଧିଷ୍ଠିରଙ୍କ ସ୍ୱର୍ଗାରୋହଣ" କାବ୍ୟର କେତୋଟି ପଂକ୍ତି । ମନେହୁଏ, ଆମ୍ଭେମାନେ ଯେପରି ସେହି ପଥରେ ପଥିକ । ଯାହାହେଉ ପ୍ରାୟ ପାଂଚ ଘଣ୍ଟା ପରେ ଆମ୍ଭେମାନେ ଚନ୍ଦନବାଡ଼ିରେ ପହଂଚିଲୁ । ଚନ୍ଦନବାଡ଼ି ନିକଟରେ ଲିଡ଼ର ନଦୀ ଉପରେ ବରଫର ସେତୁ । କିଏ ଜାଣେ, କେତେ ସହସ୍ର ବର୍ଷ ପୂର୍ବେ ହିମାଳୟ ଉପରୁ ଏକ ବରଫ ସ୍ରୋତ ବହି ଆସି ଲିଡ଼ର ନଦୀର ବୁକୁ ଭରି ଦେଇଛି । କାଳକ୍ରମେ ଏହି ବରଫ ଜମାଟ ବାଂଧି ଏତେ ଟାଣ ହୋଇଯାଇଛି ଯେ, ତା ତଳେ ଲିଡ଼ର ନଦୀର ସ୍ରୋତ ବହିଯାଏ, ଅଥଚ ଉପରେ ଲୋକେ ଯିବା ଆସିବା କରନ୍ତି, ନଦୀର ଅପର ପାର୍ଶ୍ୱରେ ଥିବା ପର୍ବତମାଳା, ବିଶେଷତଃ ଶେଷନାଗ, ପଂଚମାରୀ ଓ ଅମରନାଥ ଯିବାର ଚଲାପଥ । ଏହି ସେତୁର ନାମ "ସ୍ନୋ ବ୍ରିଜ" ।

ଦିଲ୍ଲୀର ଡାକ୍ତର ଦମ୍ପତି ଓ ଆମେ ଦୁହେଁ ଚନ୍ଦନବାଡ଼ିରୁ ଫେରି ପହେଲଗାଁରେ ପହଂଚିଲୁ ସଂଧ୍ୟା ସମୟରେ । ମୋ ପରି ଶାରୀରିକ ଶ୍ରମ କରିବାରେ ସଂପୂର୍ଣ୍ଣ ଅନଭ୍ୟସ୍ତ ଲୋକ ପକ୍ଷରେ ଦିନକ ମଧ୍ୟରେ ତିରିଶ କିଲୋମିଟର ରାସ୍ତା ଘୋଡ଼ାରେ ବସି ଯିବା ଆସିବା କରିବା ଫଳରେ ଶରୀର ସଂପୂର୍ଣ୍ଣ କ୍ଳାନ୍ତ ଓ ଅବଶ ହୋଇ ପଡ଼ିଥିଲା । ପରଦିନ ନିଦ ଭାଂଗିଲା ସକାଳ ନ'ଟାରେ । ତାଙ୍କ ପରିବାରରେ ଏକ ବିବାହ ଉତ୍ସବରେ ଯୋଗ ଦେବା ପାଇଁ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଡାକ୍ତର ଦାସ ମହାପାତ୍ର ସେ ଦିନ ପହେଲଗାଁ ଛାଡ଼ି ଶ୍ରୀନଗର ବାଟେ ଭୁବନେଶ୍ୱର ଫେରିଲେ । ଆମ୍ଭେମାନେ ଆଉ ଦୁଇ

ଦିନ ପହେଲଗାଁରେ ରହିବା ପରେ ଶ୍ରୀନଗର ଫେରିଲୁ । ଏଥର ଶ୍ରୀନଗରରେ ରହଣି ଓବେରୋଇ ପ୍ୟାଲେସ ହୋଟେଲରେ । 'ଓବେରୋଇ ପ୍ୟାଲେସ' ଶ୍ରୀନଗରର ସବୁଠାରୁ ବଡ଼ ପଂଚତାରକା ହୋଟେଲ । କାଶ୍ମୀରର ମହାରାଜା ଡକ୍ଟର କରଣଙ୍କ ପିତା ମହାରାଜା ହରି ସିଂଙ୍କ ଅମଳରେ ଏହା ନିର୍ମିତ । ମାର୍ବଲ ପଥରରେ ଗଢ଼ା ଏହି ପ୍ୟାଲେସର କୋଠରୀ ଓ ବାଥ୍‌ରୁମ ଗୁଡ଼ିକ ବେଶ ବଡ଼ ବଡ଼ । ପଛପଟେ ପୁଷ୍ପଲତାରେ ସଜ୍ଜିତ ଏକ ପାହାଡ଼ ଓ ସାମନାରେ ଡାଲଲେକ୍‌ର ସୁଦୂରପ୍ରସାରୀ ନୀଳ ଜଳ । ରାଜଗାଦୀ ଯିବା ପରେ ବର୍ତ୍ତମାନର ମହାରାଜା କରଣ ସିଂ ଏହି ରାଜବାଟୀକୁ ଓବୋରାଇ ହୋଟେଲ ଗ୍ରୁପକୁ ଲିଜ୍ ସୂତ୍ରରେ ହସ୍ତାନ୍ତର କରିଅଛନ୍ତି । ଆମେ ପାଲେସ ହୋଟେଲରେ ଥିବା ସମୟରେ ଅନେକ ଖ୍ୟାତନାମା ଫିଲ୍ମ ଷ୍ଟାର୍ ମଧ୍ୟ ସେଠି ରହୁଥାନ୍ତି । ସକାଳୁ ଝୁମୁରୁ ଝୁମୁରୁ ଶବ୍ଦ କରି ନୃତ୍ୟନାୟିକା ମମ୍‌ତାଜ ଓ ଅନ୍ୟ କେତେକ ଷ୍ଟାର ବାରଣ୍ଡାରେ ଯିବାର ଦୃଶ୍ୟ ଆମ୍ଭେମାନେ ଉପଭୋଗ କଲୁ । ଏହିଠାରେ ରହି ଆମ୍ଭେମାନେ ଟ୍ୟାକ୍ସିରେ ଯାଇ ଶ୍ରୀନଗର ବାହାରେ ବହୁ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିଥିଲୁ ।

ପରଦିନ ସକାଳ ଦଶଟାରେ ବାହାରିଲୁ ଗୁଲମାର୍ଗ । ଶ୍ରୀନଗରଠାରୁ ପଶ୍ଚିମ ଦିଗରେ ପ୍ରାୟ ୪୫ କିଲୋମିଟର ଦୂରବର୍ତ୍ତୀ ଏକ ପାହାଡ଼ ଉପରେ ଥିବା ଏକ ଉପତ୍ୟକାରେ ଗୁଲମାର୍ଗ ଅବସ୍ଥିତ । ଉଚ୍ଚତା ସମୁଦ୍ର ପତନରୁ ପ୍ରାୟ ୮୫୦୦ ଫୁଟ । ବର୍ଷରେ ଛ' ମାସ ଗୁଲମାର୍ଗ ବରଫାବୃତ ରହେ । ପ୍ରତିବର୍ଷ ଏଠାରେ ହାରାହାରୀ ଛ' ଫୁଟରୁ ଆଠ ଫୁଟ ଉଚ୍ଚରେ ବରଫ ପଡ଼େ । ଏପ୍ରିଲ ଶେଷ ଆଡ଼କୁ ବରଫ ତରଳିଲେ, ରାସ୍ତା ଘାଟ ସଫା ହୁଏ, ହୋଟେଲ ଓ ଯାତ୍ରୀନିବାସ ଗୁଡ଼ିକ ଖୋଲେ ଓ ଯାତ୍ରୀ ଭିଡ଼ ଆରମ୍ଭ ହୁଏ । ଅକ୍ଟୋବର ପରେ ସବୁ ଶୁନଶାନ୍ । କେବଳ ବିଦେଶାଗତ ପର୍ଯ୍ୟଟକମାନେ ବରଫ ଉପରେ ସ୍କିଇଂ ବା ସ୍କେଟିଂ ଖେଳିବା ପାଇଁ ଗୁଲମାର୍ଗ ଆସନ୍ତି । ଗଲ୍‌ଫ ଖେଳର ସୁବିଧା ପାଇଁ ଗୁଲମାର୍ଗ ପୃଥିବୀ ପ୍ରସିଦ୍ଧ । ଗୁଲମାର୍ଗରୁ ତିନି କିଲୋମିଟର ଦୂରରେ ପ୍ରାୟ ୨୫୦୦ ଫୁଟ ଉପରକୁ ଗଲେ ଖିଲାନ୍ ମାର୍ଗ, ପର୍ବତ ଉପରେ ଏକ ଶ୍ୟାମଳ ଉପତ୍ୟକା । ବର୍ଷସାରା ଅଞ୍ଚଳ ବହୁତ ତୁଷାରାବୃତ ରହେ । ଆଲ୍‌ପଥର ପର୍ବତମାଳାରୁ ଖିଲାନ୍ ମାର୍ଗକୁ ବହି ଆସିଛି କେତେକ ଗ୍ଲାସିୟର । ଏହି ଗ୍ଲାସିୟର ଉପରେ ଖଣ୍ଡେ ଛୋଟ କାଠ ପଟା ଉପରେ ବସାଇ ତଳକୁ କ୍ଷିପ୍ର ଗତିରେ ଗଡ଼ାଇ ଆଣି ସ୍ଥାନୀୟ ଗାଇଡ଼୍‌ମାନେ କିଛି କିଛି ଅର୍ଥ ଉପାର୍ଜନ କରନ୍ତି । ଗୁଲମାର୍ଗରୁ ଖିଲାନ ମାର୍ଗ ଯିବା ପାଇଁ ଏକମାତ୍ର ବାହନ ଘୋଡ଼ା । ଏ ସବୁ ପହେଲଗାଁର ଟଟ୍ଟୁ ଘୋଡ଼ା ନୁହନ୍ତି । ନିକଟସ୍ଥ ବରମୁଲ୍ଲା ଓ ଉରି

ଅଂଚଳରୁ ଅଶ୍ୱାରୋହୀମାନେ ବଡ଼ ବଡ଼ ଆରେବିଆନ୍ ବ୍ରିଡ୍‌ର ଘୋଡ଼ା ସାଂଗରେ ଧରି ଜୀବିକାର୍ଜନ ପାଇଁ ଖରାଦିନେ ଗୁଲମାର୍ଗ ଚାଲି ଆସନ୍ତି ଏବଂ ଏହି ଘୋଡ଼ାମାନେ ଟୀଖ ପାହାଡ଼ ଉପରେ ଚଢ଼ି ପର୍ଯ୍ୟଟକମାନଙ୍କୁ ଖିଲାନ୍‌ମାର୍ଗ ନେଇ ଯାଆନ୍ତି । ପାହାଡ଼ ଉପରେ ଘୋଡ଼ା ଚଢ଼ିବାର ସ୍ୱତନ୍ତ୍ର କୌଶଳ ଅଛି । ଘୋଡ଼ା ଉପରକୁ ଉଠିଲା ବେଳେ ଅଶ୍ୱାରୋହୀଙ୍କୁ ଆଗକୁ ଝୁଙ୍କି ବସିବାକୁ ହୁଏ । ସେହିପରି ତଳକୁ ଓହ୍ଲାଇଲା ବେଳେ ଅଶ୍ୱାରୋହୀଙ୍କୁ ପଛ ଆଡ଼କୁ ଝୁଂକି ପଡ଼ିବାକୁ ହୁଏ, ଯେପରିକି ପିଚ୍ଛିଳ ବା ଅସମତଳ ପାହାଡ଼ୀ ରାସ୍ତାରେ ଘୋଡ଼ା ନିଜର ଭାରସାମ୍ୟ ରକ୍ଷା କରିପାରିବ । ମୁଁ ଓ ସୁଖଲତା ଘୋଡ଼ାରେ ବସି ଖିଲାନ୍‌ମାର୍ଗ ଗଲୁ । କିନ୍ତୁ ନିରୁପମା ଦୁଇଜଣ ବାହକ କାଂଧେଇ ନେଉଥିବା ଦାଣ୍ଡି (ଦୋଳି)ରେ ବସି ଗ୍ଲାସିୟର ପର୍ଯ୍ୟନ୍ତ ଯାଇଥିଲେ । ଧନ୍ୟ ତାଙ୍କର ସାହସ ! ଖିଲାନ୍ ମାର୍ଗରେ ଘଡ଼ିକେ ପାଗର ପରିବର୍ତ୍ତନ ଘଟେ । ଆମେ ପହଞ୍ଚିଲା ବେଳେ ପାଗ ଶୁଖିଲା ଥିଲା । ଅଧଘଣ୍ଟାଏ ପରେ ଖୁବ୍ ଥଣ୍ଡା ପବନ, ପ୍ରବଳ ବୃଷ୍ଟି ଓ କରକାପାତ । କିଛି ସମୟପରେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକ । ଦୂରରେ ବରଫାବୃତ ହରମୁଖ ପର୍ବତମାଳା ଉପରେ ଅପରାହ୍ଣର ସୂର୍ଯ୍ୟକିରଣ ପଡ଼ି ଯେଉଁ ସ୍ୱର୍ଣ୍ଣାଭ ଶୋଭା ସୃଷ୍ଟି କରେ ତାହା ଆଜୀବନ ଭୁଲିବାର ନୁହେଁ । ଦିନ ଥାଉଁ ଥାଉଁ ଆମେମାନେ ଖିଲାନ୍‌ମାର୍ଗରୁ ଓହ୍ଲାଇ ଆସି ଗୁଲମାର୍ଗରେ ଅପେକ୍ଷାରତ ଟ୍ୟାକ୍ସିରେ ଶ୍ରୀନଗର ଫେରିଲୁ । ଏହାପରେ ଆମ୍ଭେମାନେ ପୁଣି କେତେଥର ଗୁଲମାର୍ଗ ଯାଇଛୁ ଏବଂ ସୁପ୍ରସିଦ୍ଧ ନିଦୋସ ହୋଟେଲରେ ରହି ଗୁଲମାର୍ଗର ନୀଳ ଆଲପଥର ପର୍ବତ ମାଳାରେ ଅସଂଖ୍ୟ ଶୁଭ୍ର ବରଫସ୍ରୋତର ଶୋଭା ଉପଭୋଗ କରିଛୁ । ରାତିରେ ନିବୁଜ ଘର ଭିତରେ ରହି, ଦୁଇ ଦୁଇଟା ଶେଯ ଘୋଡ଼ି ହୋଇ ମଧ୍ୟ ଏତେ ଥଣ୍ଡା ହୁଏ ଯେ, ଘର ଭିତରେ କାଠର ନିଆଁ ଜାଳି ଶୀତ ପ୍ରକୋପରୁ ରକ୍ଷା ପାଇବାକୁ ହୁଏ ।

ସୋନାମାର୍ଗ କାଶ୍ମୀରର ଅନ୍ୟତମ ସୁନ୍ଦର ଦର୍ଶନୀୟ ସ୍ଥାନ । ଶ୍ରୀନଗରରୁ ଦୂରତା ପ୍ରାୟ ନବେ କିଲୋମିଟର ଏବଂ ସମୁଦ୍ର ପତ୍ତନରୁ ଉଚ୍ଚତା ୮୬୦୦ ଫୁଟ । ଶ୍ରୀନଗରରୁ ଗଣ୍ଡରବାଲ ଦେଇ ଉତ୍ତର ପୂର୍ବ ଅଭିମୁଖରେ ଗଲେ ସିଂଧ୍ ନଦୀ କୂଳରେ ସୋନାମାର୍ଗ । ଗଣ୍ଡରବାଲ ଅତିକ୍ରମ କଲେ ସିଂଧ୍ ନଦୀ କୂଳେ କୂଳେ ରାସ୍ତା, ସ୍ଥାନୀୟ ଲୋକେ କହନ୍ତି ସିଂଧ୍ ନାଲା । ପଶ୍ଚିମ ହିମାଳୟର ବରଫ ସ୍ରୋତରୁ ବହିର୍ଗତ ଏହି କ୍ଷୁଦ୍ର ନଦୀର ଜଳ ନୀଳ ଓ ନିର୍ମଳ । ମାର୍ଚ୍ଚ ପରେ ବରଫ ତରଳି ନଦୀରେ ପାଣି ବଢ଼େ ଓ ପ୍ରଖର ଗତିରେ ପଥର କାଟି ଉପରୁ ତଳକୁ ଡେଇଁ ଯେଉଁ ପାଣି ଗଡ଼ି ଚାଲେ । ସେ ଦୃଶ୍ୟ

ଭାଷାରେ ବର୍ଣ୍ଣନା କରି ହେବ ନାହିଁ । ଥରେ ଗୋଟିଏ ଛୋଟ ମୁଭି କ୍ୟାମେରା ସଂଗ୍ରହ କରି ସୋନାମାର୍ଗ ରାସ୍ତାରେ ସିନ୍ଧ୍ ନଦୀର ଦୃଶ୍ୟ ଓ ପହେଲଗାଁ ଯିବା ପଥରେ ଲିଡ଼ର ନଦୀ ଉପର ବରଫ ସେତୁ ଓ ବହୁ ଜଳ ପ୍ରପାତର ଛବି ଉଠାଇଥିଲି । କ୍ୟାମେରା ନଥିଲେ ମଧ୍ୟ ଏ ଫିଲ୍ମ କ୍ୟାସେଟଟି ଏବେ ମଧ୍ୟ ମୋ ପାଖରେ ଅଛି । ବେଳେ ବେଳେ ନିର୍ଜନରେ ବସି ଅତୀତର ଏହି କୃତି ଦେଖିବାକୁ ଇଚ୍ଛା ହୁଏ । ପ୍ରତିଥର ଦେଖିଲା ବେଳେ ମନେ ହୁଏ ଯେପରି ଛବିଟି ନୂଆ କରି ଦେଖୁଛି । ସୋନାମାର୍ଗରେ ଗୋଟିଏ ଡାକ ବଂଗଳା ଓ ପର୍ଯ୍ୟଟକମାନଙ୍କ ରହିବା ପାଇଁ କେତେକ କୋଠରୀ ଅଛି । ଏପ୍ରିଲରୁ ସେପ୍ଟେମ୍ବର ମଧ୍ୟରେ ଯାତ୍ରୀମାନଙ୍କ ସୁବିଧା ପାଇଁ କେତେକ ଅସ୍ଥାୟୀ ରେଷ୍ଟୁରାଣ୍ଟ ଓ ଦୋକାନ ସବୁ ଜମେ । ସୋନାମାର୍ଗର ଚତୁର୍ଦ୍ଦିଗରେ ବିରାଟ ପର୍ବତମାଳାର ତୁଷାରାବୃତ ଶିଖର ଦର୍ଶକଙ୍କୁ ବିମୋହିତ କରେ । ଦୁଇ ତିନି ମାଇଲ ଉପରକୁ ଗଲେ ପ୍ରଖ୍ୟାତ ଗ୍ଲାସିୟର, ପାହାଡ଼ ଉପରୁ ନିର୍ଦ୍ଵନ୍ଦରେ ବହି ଆସି ଏହିଠାରେ ଛିଡ଼ି ଯାଇଛି । ପର୍ଯ୍ୟଟକମାନେ ବରଫ ଉପରେ ସ୍କେଟିଂ ଆଦି ଖେଳି ସମୟ କଟାନ୍ତି । ଏହିଠାରୁ ମଧ୍ୟ ବରଫ ତରଳି କ୍ଷୁଦ୍ର ଝରଣାମାନ ତଳକୁ ବୋହିଯାଇଛି । ଗୁଲମାର୍ଗ ଓ ସୋନାମାର୍ଗରେ ବରଫାବୃତ ପର୍ବତ ଶିଖର ସାଂଗକୁ ନଦୀ, ଝରଣା, ସବୁଜ ବନାନୀ ଓ ବରଫ ସ୍ରୋତର ସମାବେଶ ତାର ବୈଚିତ୍ର୍ୟକୁ ଆହୁରି ରଙ୍ଗିମନ୍ତ କରେ । ସୋନାମାର୍ଗଠାରୁ 'ରାସ୍ତା ପୂର୍ବ ଦିଗରେ କାରଗିଲ ଓ ଲାଦାଖର ରାଜଧାନୀ ଲେହ ପର୍ଯ୍ୟନ୍ତ ଯାଇଛି' । ଅନେକ ସମୟରେ ଏହି ରାସ୍ତାରେ ଅସଂଖ୍ୟ ସାମରିକ ଗାଡ଼ି (ମିଲିଟାରୀ କନ୍‌ଭଏ) ଏକତ୍ର ଲେହ ଆଡ଼କୁ ଯିବାର ଦେଖାଯାଏ । ଅମରନାଥ ଗୁମ୍ଫାର ବରଫାବୃତ ଶିବଲିଙ୍ଗ ଦର୍ଶନ ପାଇଁ ସୋନାମାର୍ଗରୁ ଗୋଟିଏ ରାସ୍ତା ମଧ୍ୟ ଅଛି । ଦୂରତା ମାତ୍ର ଚଉଦ କିଲୋମିଟର । ଅଠର ହଜାର ଫୁଟ ଉଚ୍ଚର ଜୋଜିଲା ପର୍ବତମାଳାର କଟି ଦେଶରେ ବାଇଟାଲ ଦେଇ ଅମର ନାଥ ଯିବାକୁ ହୁଏ । କିନ୍ତୁ ଅଧିକାଂଶ ଯାତ୍ରୀ ଶ୍ରୀନଗରରୁ ବିଜ୍‌ବେହେରା, ମର୍ତ୍ତନ, ପହେଲଗାଁ ଦେଇ ଚନ୍ଦନ ବାଡ଼ି ଯାଆନ୍ତି ଓ ସେଠାରେ ବରଫ ସେତୁ ପାର ହୋଇ ଶେଷନାଗ ପଂଚମାରୀ ଓ ଶେଷରେ ଅମରନାଥରେ ପହଂଚି ପାରନ୍ତି । ଅଗଷ୍ଟ ମାସରେ ଶ୍ରୀନଗରରୁ ସାଧୁମାନଙ୍କୁ ନେଇ ଅମରନାଥ ଯାତ୍ରା (ଛଡ଼ୀ ଯାତ୍ରା) ଆରମ୍ଭ ହୁଏ ସାଧାରଣତଃ ଶ୍ରାବଣ ପୂର୍ଣ୍ଣିମାରେ ।

ପ୍ରଥମଥର ଦୁଇ ସପ୍ତାହ ରହିବା ପରେ ଆମ୍ଭେମାନେ ଶ୍ରୀନଗରରୁ ଦିଲ୍ଲୀ ଫେରିଲୁ । ଏହାପରେ ମଧ୍ୟ ଆମେ କେତେଥର କାଶ୍ମୀର ଯାଇଛୁ । କାଶ୍ମୀର ଲୋକେ ସାଧାରଣତଃ ଶାନ୍ତିପ୍ରିୟ । ଉଚ୍ଚତାରେ ଖର୍ବ ହେଲେ ମଧ୍ୟ କାଶ୍ମୀରମାନଙ୍କର ଶରୀର ଗଠନ ଅତି ସୁନ୍ଦର । ପ୍ରାକୃତିକ ସୌନ୍ଦର୍ଯ୍ୟର ଛିଟ୍‌କା ଯେପରି ମଣିଷ ଗଠନରେ ପରିସ୍ଫୁଟ । ପର୍ଯ୍ୟଟକମାନଙ୍କ ପ୍ରତି ସେମାନଙ୍କର ବ୍ୟବହାର ଅତି ମଧୁର । ଅବଶ୍ୟ ଏପରି ଆଚରଣକୁ ବ୍ୟବସାୟିକ କାଏଦା ଭାବରେ ଚିତ୍ରଣ କରାଯାଇପାରେ । କାରଣ ପର୍ଯ୍ୟଟନ ବ୍ୟବସାୟ କାଶ୍ମୀରବାସୀଙ୍କର ବିଶେଷତଃ ଶ୍ରୀନଗରବାସୀଙ୍କର ମୁଖ୍ୟ ବ୍ୟବସାୟ । ସୁନ୍ଦର ସିଲ୍‌କ ଶାଢ଼ୀ, ସାଲ, ଚଦର ଗାଲିଚା ଓ କାଠ କାମର ଦୋକାନ, ବୋଲଭାର୍ଡ଼ ରାସ୍ତା ପାର୍ଶ୍ୱର ହୋଟେଲ, ଡାଲଲେକ୍‌ର ଶିକାରା ଓ ହାଉସ ବୋଟ ସବୁକିଛି ପର୍ଯ୍ୟଟକମାନଙ୍କ ଉଦ୍ଦେଶ୍ୟରେ ପରିଚାଳିତ ଏବଂ ଅଧିକାଂଶ ପର୍ଯ୍ୟଟକ ଭାରତର ବିଭିନ୍ନ ଅଂଚଳର ଲୋକ । ଅଧିକନ୍ତୁ କାଶ୍ମୀରବାସୀ ଭାରତ ସରକାରଙ୍କ ସାହାଯ୍ୟ ଦ୍ୱାରା ବହୁ ଭାବରେ ଉପକୃତ । ଏ ସବୁ ସତ୍ତ୍ୱେ କାଶ୍ମୀରବାସୀ ଭାରତୀୟ ପର୍ଯ୍ୟଟକମାନଙ୍କ ସହିତ ମନଖୋଲା ରାଜନୈତିକ ଆଲୋଚନା କରିବାକୁ ପରାଂମୁଖ । ପର୍ଯ୍ୟଟକମାନଙ୍କୁ ଅସନ୍ତୁଷ୍ଟ ନ କରିବାର ପ୍ରୟାସ ଏହାର କାରଣ ହୋଇପାରେ । ବର୍ତ୍ତମାନ ଅବଶ୍ୟ ପାକିସ୍ଥାନରେ ତାଲିମପ୍ରାପ୍ତ ଆତଙ୍କବାଦୀମାନେ କାଶ୍ମୀରର ସାମାଜିକ ଜୀବନକୁ ଆକଂଠ ଭରି ରଖିଛନ୍ତି । ମୁଁ କିନ୍ତୁ ସପ୍ତଦଶକର ଅନୁଭୂତି କଥା ଲେଖୁଛି । ରାଜନୈତିକ ଆଲୋଚନା ପ୍ରତି ଅନିଚ୍ଛା ସତ୍ତ୍ୱେ, ମୁଁ ସାଧାରଣ ଲୋକଙ୍କ ସହ ମିଶି ସେମାନଙ୍କର ମନୋଭାବ ଜାଣିବାକୁ ଚେଷ୍ଟା କରିଛି । ଟ୍ୟାକ୍ସି ଚାଳକ ବା ଶିକାରାର ନାଉରୀଠାରୁ ଆରମ୍ଭ କରି ଯଥାସଂଭବ ସାଧାରଣ ଲୋକଙ୍କର ମତାମତ ସଂଗ୍ରହ କରିବାକୁ ଉଦ୍ୟମ କରିଛି । ସବୁ ଆଲୋଚନାରୁ ମୁଁ ବୁଝିଥିଲି, କାଶ୍ମୀରବାସୀ ନିଜ ଭୂଖଣ୍ଡ ପାଇଁ ସ୍ୱାଧୀନତା ଚାହାଁନ୍ତି ସତ୍ୟ, କିନ୍ତୁ ସାଧାରଣ ଲୋକେ ପାକିସ୍ଥାନ ସମର୍ଥକ ନୁହନ୍ତି ବା ପାକିସ୍ଥାନରେ ମିଶିବାକୁ ଚାହାନ୍ତି ନାହିଁ ।



# ଭାରତୀୟ ବାର୍ କାଉନ୍‌ସିଲରେ

ନୂଆ ଆଡ୍‌ଭୋକେଟ୍‌ସ ଆକ୍ଟ ଅନୁଯାୟୀ ୧୯୬୯ ମସିହାରେ ବାର୍ କାଉନସିଲ ପାଇଁ ଦ୍ୱିତୀୟ ସାଧାରଣ ନିର୍ବାଚନ ହେଲା । ଓଡ଼ିଶା ବାର୍ କାଉନ୍‌ସିଲର ପନ୍ଦର ଜଣ ସଭ୍ୟଙ୍କୁ ନିର୍ବାଚନ କରିବା ପାଇଁ ମନୋନୟନ ଆହ୍ୱାନ କରାହେଲା, ମୋ ସମେତ କେବଳ ହାଇକୋର୍ଟ ବାରରୁ ବାଂଛାନିଧି ବାବୁ, ଲଳିତ ବାବୁ, ମୁରଲୀ ବାବୁ, ଶ୍ରୀକାନ୍ତ ବାବୁ, ରଂଗନାଥ ମିଶ୍ର ଓ ରଣଜିତ ମହାନ୍ତି ପ୍ରଭୃତି ଅନେକ ପ୍ରତିଦ୍ୱନ୍ଦିତା କରିଥିଲେ । ସର୍ବାଧିକ ଭୋଟ ମୋର ଥିଲା, ରଂଗନାଥ ମିଶ୍ରେ ଦ୍ୱିତୀୟ ସର୍ବାଧିକ ଭୋଟ ଓ ରଣଜିତ ତୃତୀୟ ସର୍ବାଧିକ ଭୋଟ ପାଇଥିଲେ । ପ୍ରଥମ ବୈଠକରେ ବାଂଛାନିଧି ମହାପାତ୍ର ନିର୍ଦ୍ୱନ୍ଦରେ ସଭାପତି ନିର୍ବାଚିତ ହେଲେ । ଭାରତୀୟ ବାର୍ କାଉନସିଲର ଓଡ଼ିଶା ପ୍ରତିନିଧି ପଦ ପାଇଁ ପ୍ରତିଦ୍ୱନ୍ଦିତା ହେଲା । ଶ୍ରୀକାନ୍ତ ମହାନ୍ତିଙ୍କର ପ୍ରସ୍ତାବ ଓ ଅନ୍ୟାନ୍ୟ ବନ୍ଧୁମାନଙ୍କର ସହଯୋଗରେ ମୁଁ ଲଳିତ ବାବୁ ଓ ମୁରଲୀବାବୁଙ୍କ ଠାରୁ ଅଧିକ ଭୋଟ ପାଇ କେନ୍ଦ୍ର କାଉନସିଲର ସଦସ୍ୟ ନିର୍ବାଚିତ ହେଲି ।

ଭାରତୀୟ ବାର୍ କାଉନ୍‌ସିଲର ସଦସ୍ୟ ଭାବରେ ପ୍ରାୟ ପ୍ରତି ମାସରେ ମୋତେ ଅନ୍ତତଃ ଥରେ ଦିଲ୍ଲୀ ଯିବାକୁ ପଡ଼େ । ସେହି ସମୟରୁ 'ଜନପଥ' ହୋଟେଲରେ ରହିବାକୁ ଆରମ୍ଭ କଲି । ଏବେ ମଧ୍ୟ ଦିଲ୍ଲୀରେ ଜନପଥ ହୋଟେଲ ମୋର ଆଶ୍ରୟ ସ୍ଥଳ । ଅନେକ ସମୟରେ କାଉନସିଲ ବୈଠକ ବମ୍ବେ, ବାଂଗାଲୋର, ଜୟପୁର ଓ ସିମଳା ଆଦି ବିଭିନ୍ନ ସହରରେ ଅନୁଷ୍ଠିତ ହୁଏ । ଠାକୁର ଦେଖା ସଂଗେ କଦଳୀ ଖିଆ ପରି କାଉନ୍‌ସିଲ୍ ବୈଠକରେ ଯୋଗଦେବା ପରିପ୍ରେକ୍ଷୀରେ ବହୁ ନୂତନ ସ୍ଥାନକୁ ଯିବାର ଓ ବହୁ ନୂତନ ବନ୍ଧୁଙ୍କର ସମାଦର ଲାଭ କରିବାର ସୁଯୋଗ ମିଳେ । ଏହି ବାର୍ କାଉନସିଲ ବୈଠକରେ ଲକ୍ଷ୍ନୌର ବରିଷ୍ଠ ଆଡ୍‌ଭୋକେଟ (ସ୍ୱର୍ଗୀୟ) ଏଚ୍. ଏନ୍. ଶ୍ରୀବାସ୍ତବ (ବାର କାଉନ୍‌ସିଲର୍ ତତ୍କାଳୀନ ଚେଆରମ୍ୟାନ୍) ମହାରାଷ୍ଟ୍ରର ରାମ ଜେଥମାଲାନୀ, ହରିୟାନାର ତତ୍‌କାଳୀନ ଆଡ୍‌ଭୋକେଟ୍ ଜେନେରାଲ (ପରେ ଭାରତର ଆଇନମନ୍ତ୍ରୀ) ଜଗନ୍ନାଥ କୌଶଲ, ସଲିସିଟର ଜେନେରାଲ ଜଗଦୀଶ ସ୍ୱରୂପ ଆଦି ବିଶିଷ୍ଟ ଆଇନଜୀବିମାନଙ୍କ ସହ ପରିଚୟ ଘଟେ । ରାମ ଜେଥ୍‌ମାଲାନୀ ସେ ସମୟରେ କାଉନ୍‌ସିଲର ଜଣେ ସାଧାରଣ ସଦସ୍ୟ ଥାଆନ୍ତି । ମୋର ମନେ ଅଛି, ତାଙ୍କର କେତେକ ବନ୍ଧୁ ଭାଇସ୍ ଚେଆରମ୍ୟାନ୍ ପଦ ପାଇଁ

ତାଙ୍କୁ ଭୋଟ ଦେବାକୁ ସଭ୍ୟମାନଙ୍କୁ ବାରମ୍ବାର ଅନୁରୋଧ କରୁଥିଲେ । କିନ୍ତୁ ଆବଶ୍ୟକ ସମର୍ଥନ ପାଇବାରେ ସେ ସଫଳ ହୋଇ ନଥିଲେ । ତିନି ବର୍ଷ ପରେ ଏପରି କେତେକ ଘଟଣା ଘଟିଲା, ଯାହା ଫଳରେ ଶ୍ରୀବାସ୍ତବଙ୍କୁ ଇସ୍ତଫା ଦେବାକୁ ହେଲା ଓ ଜେଥମାଲାନି ଭାରତୀୟ ବାର୍ କାଉନ୍‌ସିଲ୍‌ର ଚେଆରମ୍ୟାନ ନିର୍ବାଚିତ ହେଲେ । କାର୍ଯ୍ୟତଃ ସେହି ସମୟରୁ ଜେଥମାଲାନୀଙ୍କର ସାଧାରଣ ରାଜନୈତିକ ଜୀବନର ସୂତ୍ରପାତ ହେଲା । ତତ୍ ପୂର୍ବରୁ ସେ ମୁଖ୍ୟତଃ ଜଣେ ସୁଦକ୍ଷ କ୍ରିମିନାଲ ଲୟର ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ମୋର ମନେ ଅଛି, ୧୯୬୯ ମସିହା ସେପ୍ଟେମ୍ବର ମାସରେ ଯେଉଁଦିନ ଦିଲ୍ଲୀରେ ଅନୁଷ୍ଠିତ କାଉନ୍‌ସିଲ ବୈଠକରେ ମୁଁ ପ୍ରଥମେ ଯୋଗ ଦେଲି, ଜେଥମାଲାନୀ ନିଜ ସିଟ୍‌ରୁ ଉଠି ଆସି ମୋ ସହିତ ହାତ ମିଳାଇ ନିଜର ପରିଚୟ ଦେଲେ । ହଠାତ୍ ଅନ୍ୟ ଗୋଟିଏ ସିଟ୍‌ରୁ ଜଣେ ସଦସ୍ୟ ଚିତ୍କାର କଲେ "ଖବରଦାର, ଯାହାଙ୍କ ସହିତ କରମର୍ଦ୍ଦନ କରୁଛନ୍ତି, ସେ ସ୍ମଗ୍‌ଲରମାନଙ୍କ ଲୟର୍ । ଆପଣଙ୍କ ନିଜ ହାତଟା ମଧ୍ୟ ଗାଏବ୍ ହୋଇଯାଇପାରେ ।" ସେ ସଦସ୍ୟ ଜଣକ ଥିଲେ ଜବଲପୁରର ରାଜେନ୍ଦ୍ର ସିଂହ । ଏହିପ୍ରକାରର ହାସ୍ୟରସ ମଧ୍ୟରେ ଆମ୍ଭମାନଙ୍କର ପରିଚୟ ହୋଇଥିଲା ।

ଭାରତୀୟ ବାର୍ କାଉନ୍‌ସିଲର କାର୍ଯ୍ୟକଳାପ ସଂପର୍କରେ ମୋର ଅନୁଭୂତି ଅତି ନୈରାଶ୍ୟଜନକ । ଦୁଇ ଚାରିଜଣଙ୍କୁ ବାଦ୍ ଦେଲେ, ଅଧିକାଂଶ ରାଜ୍ୟର ପ୍ରତିନିଧିମାନେ ଥିଲେ ଅତି ସାଧାରଣ ଅଧିବକ୍ତା । ଆଇନରେ ସେମାନଙ୍କର କୌଣସି ବ୍ୟୁତ୍ପତ୍ତି ନଥିଲା, କୌଣସି ଖ୍ୟାତି ନଥିଲା ବା ସାଧାରଣ ଜନ ଜୀବନରେ ସେମାନଙ୍କର କୌଣସି ପ୍ରସିଦ୍ଧି ନଥିଲା । ବାର୍ କାଉନ୍‌ସିଲ୍‌ର କାର୍ଯ୍ୟର ପରିସର ଥିଲା ଅତି ବ୍ୟାପକ । ଅଧିବକ୍ତା (ଆଡ୍‌ଭୋକେଟ୍) ମାନଙ୍କର ବୃତ୍ତିଗତ ବା ପ୍ରଫେସନାଲ ଆଚରଣ ନିୟନ୍ତ୍ରଣ କରିବା, ଅଧିବକ୍ତାମାନଙ୍କ ବିରୁଦ୍ଧରେ ଆଗତ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ସଂପର୍କରେ ଶେଷ ନିଷ୍ପତ୍ତି ଦେବା, ବିଶ୍ୱ ବିଦ୍ୟାଳୟ ମାନଙ୍କରେ ଆଇନ ଶିକ୍ଷା ପ୍ରଦାନକୁ ନିୟନ୍ତ୍ରିତ କରିବା ଏବଂ କୋର୍ଟ ଓ ଅଧିବକ୍ତାମାନଙ୍କ ମଧ୍ୟରେ ପାରସ୍ପରିକ ସଂପର୍କ ଓ ଅନ୍ୟାନ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ନୀତି ନିର୍ଦ୍ଧାରଣ କରିବା କେନ୍ଦ୍ର ବାର୍ କାଉନ୍‌ସିଲ୍‌ର କ୍ଷମତାର ଅନ୍ତର୍ଭୁକ୍ତ । ଅଥଚ ଅଧିକାଂଶ ସଦସ୍ୟଙ୍କର କୌଣସି ଜଟିଳ ସମସ୍ୟା ଉପରେ ମତାମତ ଦେବା ପାଇଁ ଆଗ୍ରହ ବା ଅଭିରୁଚି ନଥିଲା କି ଦକ୍ଷତା ମଧ୍ୟ ନଥିଲା । ଆଟର୍ଣ୍ଣି ଓ ସଲିସିଟର ଆଦି ଏକ୍ସ-ଅଫିସିଓ ସଦସ୍ୟଙ୍କୁ ବାଦ୍

ଦେଇ, କ୍ଷୁଦ୍ର ପନ୍ଦର ଜଣିଆ କମିଟିରେ (ବର୍ତ୍ତମାନ ରାଜ୍ୟ ସଂଖ୍ୟାର ବୃଦ୍ଧି ହେତୁ ରାଜ୍ୟର ପ୍ରତିନିଧି ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି) କିଏ ସଭାପତି ବା ଉପ-ସଭାପତି ହେବ ବା କିଏ କେଉଁ କମିଟିରେ ସଭ୍ୟ ରହି ବିଭିନ୍ନ ସ୍ଥାନ ପରିଭ୍ରମଣ କରିବାକୁ ସୁଯୋଗ ପାଇବେ, ଏହାହିଁ ଥିଲା ସଭ୍ୟମାନଙ୍କର ମୁଖ୍ୟ ଚିନ୍ତାର ବିଷୟ । ସେଥିପାଇଁ କାଉନସିଲ ବୈଠକ ପରେ ଆଶାୟୀ ସଭ୍ୟମାନେ ଅନ୍ୟମାନଙ୍କୁ ଡିନର ଓ ଡ୍ରିଂକ୍ସ ପାଇଁ ନିମନ୍ତ୍ରଣ କରୁଥିଲେ । ଏହି ପ୍ରକ୍ରିୟାରେ ପନ୍ଦର ଜଣଙ୍କ ମଧ୍ୟରୁ ଆଠଜଣଙ୍କର ସମର୍ଥନ ଲାଭ କରି ପାରିଲେ ଜଣେ ଭାରତୀୟ ବାର୍ କାଉନ୍‌ସିଲ୍‌ର ସଭାପତି ହେବେ ! ଧନ୍ୟ ଗଣତନ୍ତ୍ର !

ଅବଶ୍ୟ ମୁଁ ପିଆପିଇ କରେ ନାହିଁ । ମଦ୍ୟପାନ ବା ସେ ପ୍ରକାରର ଆମୋଦ ପ୍ରମୋଦ ପ୍ରତି ମୋର ଆସକ୍ତି ନାହିଁ । କିନ୍ତୁ ଏହି ସବୁ ପାର୍ଟି ବା ଭୋଜିସଭାରେ ଯୋଗ ଦେବାକୁ ବ୍ୟାକୁଳତା ନଥିଲେ ମଧ୍ୟ, ଅନେକ ସମୟରେ ଭଦ୍ରତା ଖାତିର୍‌ରେ ଏହି ସବୁ ଅନୁଷ୍ଠାନରେ ଯୋଗ ଦେବାକୁ ପଡ଼େ । ନିଜ ଅନୁଭୂତିରୁ ମୁଁ ଶିଖିଥିଲି ଯେ ଏ ପ୍ରକାର ଭୋଜି ସଭାରେ ନିଜର ପ୍ରକୃତ ସ୍ୱରୂପ ବା ଅଭିରୁଚି ପ୍ରକାଶ ନ କରିବା ବରଂ ବିଜ୍ଞତାର ପରିଚାୟକ, ନଚେତ୍ ଅନେକ ସମୟରେ ଅପଦସ୍ଥ ହେବାକୁ ହୁଏ । ୧୯୬୮ ମସିହାର ଗୋଟିଏ ଘଟଣା ମନେ ପଡ଼ୁଛି । ସୁପ୍ରିମ କୋର୍ଟରେ ଓଡ଼ିଶାର ଗୋଟିଏ ମୋକଦ୍ଦମାରେ ମୁଁ ସୁପ୍ରସିଦ୍ଧ ଆଡ଼୍‌ଭୋକେଟ ଏ. ଏସ୍. ଆର ଚାରୀଙ୍କୁ ସାହାଯ୍ୟ କରୁଥିଲି । ମୋକଦ୍ଦମା ବିଚାରର ପୂର୍ବ ଦିନ ସଂଧ୍ୟାରେ ଚାରୀ ତାଙ୍କର ଡିଫେନ୍ସ କଲୋନୀ ଘରକୁ ମତେ ଡିନର ପାଇଁ ନିମନ୍ତ୍ରଣ କରିଥିଲେ । ସାଢ଼େ ଆଠଟା ସମୟରେ କେସ୍ ସଂକ୍ରାନ୍ତୀୟ ଆଲୋଚନା ଶେଷ ହେଲା । ତା ପରେ ଆମ୍ଭେମାନେ ବସିଲୁ ଘର ସାମନା ଲନ୍‌ରେ । ଚାରୀ ବମ୍ବେ ଓ ମାଡ୍ରାସରୁ ଆସିଥିବା ତାଙ୍କର ଚାରିଜଣ କମ୍ୟୁନିଷ୍ଟ ବଂଧୁ ଓ ଏକଦା ଜାତିସଂଘରେ ଭାରତୀୟ ପ୍ରତିନିଧି ଦଳର ସଦସ୍ୟ ଥିବା ଜଣେ ପାର୍ସି ଭଦ୍ର ମହିଳାଙ୍କୁ ମଧ୍ୟ ଡିନରକୁ ନିମନ୍ତ୍ରଣ କରିଥିଲେ । ସେମାନେ ଆରମ୍ଭ କଲେ ହୁଇସ୍କି ଓ ମୁଁ କୋକାକୋଲା । ପ୍ରାୟ ଦୁଇ ଘଣ୍ଟା ମଧ୍ୟରେ ତିନି ଚାରି ପେଗ୍ ଶେଷ କରିବା ପରେ, ଗପର ଧାରା କ୍ରମେ ମୋ ଆଡ଼କୁ ଢଳିଲା । ପାର୍ସି ଭଦ୍ର ମହିଳା ଆରମ୍ଭ କଲେ "ଆପଣ କି ପ୍ରକାରର ଶୁଷ୍କ ଲୋକ, ଆପଣ କ'ଣ କ୍ଲବ୍ ଯାଆନ୍ତି ନାହିଁ, ଆପଣଙ୍କର କ'ଣ ସାଂଗ ସାଥୀ ନାହାନ୍ତି, ସେମାନେ ଆପଣଙ୍କ ଘରକୁ ଆସିଲେ, ସେମାନଙ୍କୁ କ'ଣ ଡ୍ରିଂକ୍ସ ଦିଅନ୍ତି ନାହିଁ,

ଇତ୍ୟାଦି ଇତ୍ୟାଦି ।'' ପ୍ରଶ୍ନବାଣରେ ମୁଁ ବିବ୍ରତ ହୋଇ ପଡ଼ିଲି । ବଡ଼ ଅପ୍ରତିଭ ହୋଇ ମୁଁ କହିଲି, ''କ୍ଷମା କରିବେ, ଏ ଅଧମ ଏ ପର୍ଯ୍ୟନ୍ତ ଚା' କଫିରୁ ଆଗକୁ ଯାଇ ପାରିନାହିଁ ।''ବରିଷ୍ଠ ବନ୍ଧୁ ଚାରୀ ମୋର ମନୋଭାବ ବୁଝିପାରି ତୁରନ୍ତ ଆଲୋଚନାର ମୋଡ଼ ବଦଳାଇ ଦେଲେ । ଏହି ଘଟଣାରୁ ମୋର ଅନ୍ତତଃ ଏତିକି ଶିକ୍ଷା ହୋଇଥିଲା ଯେ ପିଇବା ଲୋକଙ୍କ ଆସରରେ ନିଜକୁ ସନ୍ନ୍ୟାସୀ ପ୍ରତିପାଦିତ କରିବାରେ ଲାଭ ନାହିଁ । ଏହାପରେ ମୁଁ ଯେଉଁ ପାର୍ଟିରେ ଯୋଗ ଦିଏ, ସେଠି ନିଜର ଅସଲ ରୁଚିର ପରିଚୟ ନ ଦେଇ ବରଂ ପିଇବାର ଅଭିନୟ କରେ, ଯେପରି ମୋତେ କୈଫିୟତ୍ ଦେବାକୁ ନ ପଡ଼ିବ ।

କିନ୍ତୁ ସବୁବେଳେ ଯେ ଅଭିନୟ କାମ ଦିଏ ନାହିଁ, ତାର ଗୋଟିଏ ଉଦାହରଣ ଉଲ୍ଲେଖ କରୁଛି । ୧୯୭୩ ମସିହାରେ ବାଂଗାଲୋର୍‌ରେ ବାର୍ କାଉନ୍‌ସିଲ୍‌ର ବୈଠକ ଆହୂତ ହୋଇଥାଏ । ସେ ସମୟରେ ରାମ୍ ଜେଠମାଲାନୀ କାଉନ୍‌ସିଲ୍‌ର ଚେଆରମ୍ୟାନ୍ । କର୍ଣ୍ଣାଟକ ହାଇକୋର୍ଟର ଗୋଟିଏ କୋଠରୀରେ ମିଟିଂ ଆରମ୍ଭ ହେଲା । ରୁଲ ସଂଶୋଧନ ଆଦି କେତେକ ବିଷୟରେ ସଭ୍ୟମାନଙ୍କ ମଧ୍ୟରେ ଗୁରୁତର ମତଭେଦ ଦେଖାଦେଲା । ଜେଠ୍‌ମାଲାନୀ ଗୋଟିଏ ପୁରୁଣା ପରିହାସପୂର୍ଣ୍ଣ ଗଳ୍ପର ପୁନରାବୃତ୍ତି କରି କହିଲେ, ''ଝଗଡ଼ାଟା ରାତି ପର୍ଯ୍ୟନ୍ତ ମୁଲତବୀ ରହୁ । ବାଂଗାଲୋରର ବରିଷ୍ଠ ଆଡ୍‌ଭୋକେଟ୍ ଏଥିରାଜୁଲୁ ନାଇଡୁ ବାର୍ କାଉନସିଲ ସଭ୍ୟମାନଙ୍କୁ ଡିନରକୁ ନିମନ୍ତ୍ରଣ କରିଛନ୍ତି । ସଂଧ୍ୟା ଆଠଟାରେ ସେଂଚୁରୀ କ୍ଲବ୍‌କୁ ଆମନ୍ତ୍ରଣ ।'' ସଂଧ୍ୟାରେ ଆମ୍ଭେମାନେ ହୋଟେଲରୁ ବାହାରି ସେଂଚୁରୀ କ୍ଲବ୍‌ରେ ପହଂଚିଲା ବେଳକୁ ବୃଦ୍ଧ ନାଇଡୁ ହାତରେ ଗୋଟିଏ ବୋତଲ ଧରି ଆମର ସଂବର୍ଦ୍ଧନା କଲେ ।

ଏଥିରାଜୁଲୁ ନାଇଡୁ ପଂଚଦଶକରେ ଦୁଇଥର ମହୀଶୂର ରାଜ୍ୟର ଆଡ୍‌ଭୋକେଟ୍ ଜେନେରାଲ ଥିଲେ । ଜଣେ ଦକ୍ଷ ଅଧିବକ୍ତା ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ପଂଚସ୍ତରୀ ବର୍ଷ ବୟସରେ ମଧ୍ୟ ସେ ବାଡ଼ି ପରି ସିଧା । ଉଚ୍ଚତା ପ୍ରାୟ ପାଂଚ ଫୁଟ ଦଶ ଇଂଚ, ଈଷତ୍ କୃଷ୍ଣ ବର୍ଣ୍ଣ, ଧଳା ଲମ୍ବ ନିଶ, କିନ୍ତୁ ଅତି ମଜାଦାର ମଣିଷ । ଡ୍ରିଂକ୍ସ ସେବା ଆରମ୍ଭ ହେବା ପୂର୍ବରୁ ଏଥି ରାଜୁଲୁ ଗୋଟିଏ କୌତୁକିଆ ଗଳ୍ପ ଆରମ୍ଭ କଲେ । ଥରେ କୁଆଡ଼େ ବର୍ଲିନ୍‌ର କୌଣସି ଗୋଟିଏ କ୍ଲବରେ ଜର୍ମାନ ଓ୍ୱାଇନ୍ ଓ ଫ୍ରେଂଚ୍ ଓ୍ୱାଇନର ତୁଳନାତ୍ମକ ଚର୍ଚ୍ଚା ଚାଲିଥାଏ । ହଠାତ୍ ଗୋଟାଏ ମୂଷା ଟେବୁଲ ଉପରକୁ ଡେଇଁପଡ଼ି ନିଶ ଚାଟି ଚାଟି ଚିତ୍କାର କଲା ''ମୁଁ ଜର୍ମାନ୍ ଓ୍ୱାଇନ୍ ପିଇଛି,

କୁଆଡ଼େ ଗଲା ସେ ଫ୍ରେଂଚ ବିରାଡ଼ି ?'' ଜର୍ମାନ୍ ଓ୍ୱାଇନ୍‌ର କରାମତି ଦେଖି ସମସ୍ତେ ତାର ବାହାବା କଲେ । ଗପ ନ ସରୁଣୁ ଏଥିରାଜୁଲୁ ଓ୍ୱେଟରକୁ ନିର୍ଦ୍ଦେଶ ଦେଲେ ହୁଇସ୍କି ପରିବେଷଣ କରିବା ପାଇଁ । ସମସ୍ତେ ଗୋଟିଏ ଗୋଟିଏ ଗ୍ଲାସ ଧରି ନାନା ରକମର ରହସ୍ୟ ଓ କୌତୁକିଆ ଗପରେ ନିମଜ୍ଜିତ । ମୁଁ ଜାଣିଶୁଣି କ୍ଲବର ଗୋଟିଏ କଣରେ ବସିଥାଏ । ଗ୍ଲାସଟା ଧରି ବେଳେ ବେଳେ ଓଠ ପାଖକୁ ନିଏ, ପୁଣି ତାକୁ ଯଥାସମ୍ଭବ ସାମନା ଟିପଏ ଉପରେ ରଖିଦିଏ । ସମସ୍ତଙ୍କର ଧାରଣା ଯେପରି ମୁଁ ଗ୍ଲାସ୍ ପରେ ଗ୍ଲାସ ପିଇ ଚାଲିଛି, ସେଥିପାଇଁ ମୋ ଗ୍ଲାସ୍ ଖାଲି ରହୁ ନାହିଁ । ପ୍ରାୟ ରାତି ସାଢ଼େ ଦଶଟା, ସମସ୍ତେ ଅନ୍ତତଃ ତିନି ଚାରି ପେଗ୍ ଶେଷ କରି ସାରିଲେଣି । ମୋର ବିପରୀତ ଦିଗରୁ ଏଥି ରାଜୁଲୁ ନାଇଡୁ ହଠାତ୍ ଚିତ୍କାର କଲେ ''ମିଷ୍ଟର ଆଡ୍‌ଭୋକେଟ ଜେନେରାଲ ! ମୋ ଦୃଷ୍ଟିକୁ ତୁମେ ଏତେ ସହଜରେ ଏଡ଼ାଇଦେଇ ପାରିବ ନାହିଁ । ସଂଧ୍ୟା ସମୟରୁ ତୁମେ ଗୋଟିଏ ଗ୍ଲାସ ଧରି ଅଭିନୟ କରି ଚାଲିଛ, ବିନ୍ଦୁଟାଏ ମଧ୍ୟ ସ୍ପର୍ଶ କରି ନାହଁ ।'' ଜେଥମାଲାନୀ ତାଙ୍କ କଥାରେ ବାଧା ଦେଇ କହିଲେ, ''ଠିକ୍ କଥା, ମିଷ୍ଟର ରଥ ହୁଇସ୍କି ପାନ କରନ୍ତି ନାହିଁ, ତାଙ୍କୁ ଗୋଟାଏ କୋକାକୋଲା ଦିଆଯାଉ ।'' କିଛି ସମୟ ପରେ କ୍ଲବ୍‌ର ଜଣେ ଓ୍ୱେଟର ମୋ ସାମନାରେ କୋଲା ଗ୍ଲାସଟିଏ ରଖିଦେଇଗଲା । ମୁଁ କୋଲା ଗ୍ଲାସଟି ଧରି ଢକ୍ ଢକ୍ କରି ପିଇଦେଲି । ଜେଥମାଲାନୀ ପଚାରିଲେ ''ଦିଲ୍ଲୀ କୋଲାଠାରୁ ବାଂଗାଲୋର କୋଲାର ଟେଷ୍ଟରେ ପାର୍ଥକ୍ୟ ଅଛି ?'' ମୁଁ କିଛି ନ ଭାବି ଉତ୍ତର ଦେଲି ''ଏଠିକାର ପାଣିର ଟେଷ୍ଟ ବୋଧହୁଏ ଭିନ୍ନ ।'' କ୍ଲବରେ ଉତ୍ତାଳ ହାସ୍ୟରୋଳ ଉଠିଲା । ମୁଁ ବୋକା ବନିଯାଇଥିଲି । ମୋର କୋକାକୋଲା ଗ୍ଲାସରେ କିଛି ହୁଇସ୍କି ମିଶାଇ ଦିଆଯାଇଥିଲା ।

୧୯୭୨ରୁ ୧୯୭୪ ମଧ୍ୟରେ ଏକ ସମୟରେ କେନ୍ଦ୍ର ବାର୍ କାଉନ୍‌ସିଲ୍‌ରେ ତିନିଜଣ ଆଡ୍‌ଭୋକେଟ୍ ଜେନେରାଲ ସଦସ୍ୟ ଥିଲେ । ହରିୟାନାର ଜଗନ୍ନାଥ କୌଶଲ, ଆସାମର ଡକ୍ଟର ମେଧି ଏବଂ ଓଡ଼ିଶାରୁ ମୁଁ । ଆମ୍ଭମାନଙ୍କ ମଧ୍ୟରେ ବିଶେଷ ସଦ୍‌ଭାବ ଥିଲା । କେତେକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଉପରେ ଆମ୍ଭେମାନେ କାଉନସିଲର ନିଷ୍ପତ୍ତିକୁ ପ୍ରଭାବିତ କରିବାକୁ ସମର୍ଥ ହୋଇଥିଲୁ । ଜଣେ ଆଡ୍‌ଭୋକେଟ୍ ଏନ୍‌ରୋଲ ହେଲେ, ଯେଉଁ ଫିସ୍ ରାଜ୍ୟ ବାର୍ କାଉନ୍‌ସିଲ୍‌ରେ ଦାଖଲ କରନ୍ତି, ନିୟମ ଅନୁଯାୟୀ ତାର ଗୋଟିଏ ନିର୍ଦ୍ଧାରିତ ଅଂଶ କେନ୍ଦ୍ର କାଉନ୍‌ସିଲ୍‌କୁ ପଠାଇ ଦିଆଯାଏ । ଏହି ସୂତ୍ରରେ ସଂଗୃହୀତ ଗଚ୍ଛିତ ପାଣ୍ଠିର ପରିମାଣ ଥିଲା ପ୍ରାୟ

ଅଢ଼େଇ କୋଟି ଟଂକା । ପାଣ୍ଠିର ଯେ ଅସଦ୍ ବ୍ୟବହାର ନ ହେଉଥିଲା, ତାହା କୁହାଯାଇ ପାରିବ ନାହିଁ । ଭାରତର ବିଭିନ୍ନ ଅଂଚଳରେ କାଉନ୍‌ସିଲ୍ ବୈଠକ ଡକାଇ ବହୁ ଅର୍ଥ କେବଳ ଗସ୍ତ ଖର୍ଚ୍ଚରେ ବ୍ୟୟିତ ହେଉଥିଲା । ଆମ୍ଭମାନଙ୍କ ଉଦ୍ୟମରେ ନିଷ୍ପତ୍ତି ନିଆହେଲା ଯେ ବାର୍ କାଉନ୍‌ସିଲ୍ ତରଫରୁ ଗୋଟିଏ ଟ୍ରଷ୍ଟ ପ୍ରତିଷ୍ଠା କରାହେବ ଏବଂ ଗଚ୍ଛିତ ଅର୍ଥ ଟ୍ରଷ୍ଟକୁ ଦିଆଯିବ । ଟ୍ରଷ୍ଟ ପାଣ୍ଠିର ସୁଧରୁ ଅଧିବକ୍ତାମାନଙ୍କର କଲ୍ୟାଣକାମୀ କେତେ ଗୁଡ଼ିଏ ଯୋଜନା କାର୍ଯ୍ୟକାରୀ କରାଯିବ । ପୁନଶ୍ଚ ବାର୍ କାଉନ୍‌ସିଲ୍‌ର ନିଜ ଜାଗାରେ ଗୋଟିଏ ଭବନ ନିର୍ମାଣ କରାଯାଇ ସେଠାରେ ଅଫିସ ଓ ମିଟିଂ ହଲ ଆଦି ପ୍ରତିଷ୍ଠା କରାଯିବ । ଏହି ସମୟରେ ଆଇନ ଶିକ୍ଷାର ଅବଧି ତିନି ବର୍ଷରୁ ପାଂଚ ବର୍ଷ ବଢ଼ାଇ ଦେବା ପାଇଁ କେତେକ ସୂତ୍ରରୁ ପ୍ରସ୍ତାବ ଆସିଥିଲା । କିନ୍ତୁ ଆମ୍ଭମାନଙ୍କର ମିଳିତ ବିରୋଧ ହେତୁ ଏ ପ୍ରକାରର ନିଷ୍ପତ୍ତି ନିଆଯାଇ ପାରିଲା ନାହିଁ ।

କେନ୍ଦ୍ର କାଉନ୍‌ସିଲ୍‌ର ସଦସ୍ୟ ଥିବା ସମୟରେ ବହୁ ବିଶିଷ୍ଟ ଲୋକଙ୍କ ସହ ପରିଚୟ ହୋଇଥିଲା । ଭାରତର ପ୍ରଧାନ ବିଚାରପତି ଏ. ଏନ୍. ରାୟ, ତତ୍‌କାଳୀନ କେନ୍ଦ୍ର ଆଇନ ମନ୍ତ୍ରୀ ଗୋଖଲେ, ସୁପ୍ରିମ କୋର୍ଟର ବିଚାରପତି ଜଷ୍ଟିସ ମାଥ୍ୟୁ, ହିମାଚଳ ପ୍ରଦେଶ ହାଇକୋର୍ଟର ମୁଖ୍ୟ ବିଚାରପତି ଏମ୍. ଏଚ୍. ବେଗ (ପରେ ଭାରତର ପ୍ରଧାନ ବିଚାରପତି), ବମ୍ବେର କାଉନ୍‌ସିଲ ସଦସ୍ୟ ରାମାରାଓ ଆଦିକ୍ (ବର୍ତ୍ତମାନ ମହାରାଷ୍ଟ୍ରର ମନ୍ତ୍ରୀ) ଇତ୍ୟାଦିଙ୍କ ସହ ପରିଚୟ ବାର କାଉନସିଲ ତରଫରୁ ଆୟୋଜିତ ବିଭିନ୍ନ ଅନୁଷ୍ଠାନ ଜରିଆରେ । ପରକାଳରେ ଚିଫ୍ ଜଷ୍ଟିସ୍ ଏ. ଏନ୍. ରାୟଙ୍କ ସହ ଘନିଷ୍ଠ ସୌହାର୍ଦ୍ଧ୍ୟ ଗଢ଼ି ଉଠିଥିଲା । ଜଷ୍ଟିସ ବେଗ୍‌ଙ୍କ ସଂପର୍କରେ ଗୋଟିଏ ଘଟଣା ଉଲ୍ଲେଖ କରିବାର ଲୋଭ ସମ୍ବରଣ କରି ପାରୁନାହିଁ ।

୧୯୭୧ ମସିହାରେ ସିମିଳାରେ ବାର୍ କାଉନ୍‌ସିଲ୍‌ର ଗୋଟିଏ କମିଟିର ବୈଠକ ଡକାଯାଇଥାଏ । କାଉନସିଲର୍ ଚେଆରମ୍ୟାନ ଶ୍ରୀବାସ୍ତବ, ହରିୟାନାର ପ୍ରତିନିଧି ଜଗନ୍ନାଥ କୌଶଲ, ମାଡ୍ରାସର ସଦସ୍ୟ କାର୍ତ୍ତିକେୟନ ଓ ମୁଁ ଯୋଗ ଦେଇଥାଉ । ପ୍ରଥମ ଦିନ ହିମାଚଳ ହାଇକୋର୍ଟ ବାର୍ ଆସୋସିଏସନ୍ ଆମ୍ଭମାନଙ୍କୁ ଚା' ପାନରେ ଆପ୍ୟାୟିତ କଲେ । ପରଦିନ ସଭାପତି ଶ୍ରୀବାସ୍ତବଙ୍କର ଅତି ପରିଚିତ ଲକ୍ଷ୍ନୌର ପୂର୍ବତନ ଜଜ୍ ଓ ସେତେବେଳେ ହିମାଚଳ ପ୍ରଦେଶ ହାଇକୋର୍ଟର ଚିଫ୍ ଜଷ୍ଟିସ୍ ଏମ୍. ଏଚ୍. ବେଗ୍ ଆମ୍ଭମାନଙ୍କୁ ଚା' ଭୋଜିକୁ ନିମନ୍ତ୍ରଣ କରିଥିଲେ ।

ସେହିଠାରେ ବେଗ୍ ସାହେବଙ୍କ ସହ ମୋର ପ୍ରଥମ ପରିଚୟ । ଏହାର କିଛି ଦିନ ପରେ ଜଷ୍ଟିସ ବେଗ୍ ସୁପ୍ରିମ୍ କୋର୍ଟର ଜଜ୍ ପଦକୁ ଉନ୍ନୀତ ହେଲେ ଓ ଏ. ଏନ୍. ରାୟଙ୍କ ପରେ ବର୍ଷକ ପାଇଁ ଭାରତର ପ୍ରଧାନ ବିଚାରପତି ହୋଇଥିଲେ । ଜଷ୍ଟିସ ବେଗ୍‌ଙ୍କ ସହିତ ଗୋଟିଏ ଦିନର ଆଳାପ ଆଲୋଚନା ମନରୁ ପାଶୋର ଯାଇନାହିଁ ।

୧୯୭୫ ମସିହା ଏପ୍ରିଲ୍ ମାସରେ କଂଗ୍ରେସ ଓ ବାମପନ୍ଥୀ ଗୋଷ୍ଠୀମାନଙ୍କର ମିଳିତ ଉଦ୍ୟମରେ ଦିଲ୍ଲୀରେ ଆଇନଜୀବୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଭାରତର ସବୁ ରାଜ୍ୟର ବହୁ ବିଶିଷ୍ଟ ଆଇନଜୀବୀ ଏଥିରେ ଭାଗ ନେଇଥିଲେ । ସମ୍ମିଳନୀ ଶେଷରେ ଆଇନମନ୍ତ୍ରୀ ଗୋଖ୍‌ଲେ ପ୍ରତିନିଧିମାନଙ୍କୁ ଚା'ଭୋଜିକୁ ନିମନ୍ତ୍ରଣ କରିଥିଲେ । ଏହି ଅନୁଷ୍ଠାନକୁ ସୁପ୍ରିମ କୋର୍ଟର ବିଚାରପତିବୃନ୍ଦ, କେତେକ ବରିଷ୍ଠ କେନ୍ଦ୍ର ମନ୍ତ୍ରୀଙ୍କ ସମେତ ପ୍ରଧାନ ମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ପ୍ରଧାନମନ୍ତ୍ରୀଙ୍କ ସହିତ ଆଡ୍‌ଭୋକେଟମାନଙ୍କୁ ବ୍ୟକ୍ତିଗତ ଭାବରେ ପରିଚିତ କରାଇବା ଗୋଖ୍‌ଲେଙ୍କର ଉଦ୍ଦେଶ୍ୟ ଥିଲା । ବିଭିନ୍ନ ରାଜ୍ୟର ଆନ୍‌ଜୀବୀମାନଙ୍କ ସହ ଏକତ୍ର ଗ୍ରୁପ ଫଟୋ ଉଠାଇବା ପାଇଁ ଇନ୍ଦିରାଜୀ ସୁଯୋଗ ଦେଇଥିଲେ । ଗୋଖ୍‌ଲେଙ୍କ ଲନ୍‌ରେ ଏଣେତେଣେ ବୁଲୁବୁଲୁ ଜଷ୍ଟିସ ବେଗ୍‌ଙ୍କ ସହିତ ମଧ୍ୟ ସାକ୍ଷାତ ହେଲା । ସେତେବେଳେ ବାର୍ କାଉନ୍‌ସିଲ୍‌ର ପୂର୍ବତନ ଚେଆରମ୍ୟାନ୍ ଲକ୍ଷ୍ନୌର ଶ୍ରୀବାସ୍ତବ ମଧ୍ୟ ମୋ ସହିତ ଉପସ୍ଥିତ ଥିଲେ । ନାନା ଆଳାପ ମଧ୍ୟରେ ମୁଁ ଜଷ୍ଟିସ ବେଗ୍‌ଙ୍କୁ କହିଲି, "ସିମିଳାରେ ଆପଣ ଅନେକ ଦିନ କଟାଇଲେ, ଏଥର ଖରା ଛୁଟିରେ ପୁରୀ ବୁଲି ଆସନ୍ତୁ ।" ଜଷ୍ଟିସ ବେଗ୍ ପଚାରିଲେ" ପୁରୀ ? ଉଚ୍ଚତା କେତେ ? ମୁଁ ସ୍ତମ୍ଭୀଭୂତ ହୋଇ ଉତ୍ତର ଦେଲି "ଜିରୋ" । ଅର୍ଥାତ୍ ପୁରୀ ଯେ ସମୁଦ୍ର କୂଳରେ ଅବସ୍ଥିତ ଏ କଥା ହୁଏତ୍ ତାଙ୍କୁ ଜଣା ନଥିଲା । ମୋର ଅନୁରୋଧ ଶୁଣି ତାଙ୍କର ହୁଏତ ଧାରଣା ହେଲା ପୁରୀ ଗୋଟିଏ ହିଲଷ୍ଟେସନ । ମୋର 'ଜିରୋ' ଉତ୍ତର ଶୁଣି ଜଷ୍ଟିସ ବେଗ୍ ଅପ୍ରତିଭ ହୋଇ ହଠାତ୍ ଅନ୍ୟତ୍ର ଚାଲିଗଲେ । ଶ୍ରୀବାସ୍ତବ ଜୋରରେ ମୋ ହାତ ଜାବୋଡ଼ି ଧରି କହିଲେ "ଆପନେ ମେରା ଦୋସ୍ତକୋ ଭଗା ଦିୟା ।" ମୁଁ ତାଙ୍କୁ ହିନ୍ଦୀରେ ଉତ୍ତର ଦେଲି "ଉତ୍ତର ଭାରତର ଶିକ୍ଷିତ ଲୋକଙ୍କର ଭୂଗୋଳ ଜ୍ଞାନର ଗାରିମା ମୋତେ ଜଣା ନଥିଲା, କ୍ଷମା କରିବେ ।"

# ମସ୍କୋ ଅଭିମୁଖେ

ରାଶି ନକ୍ଷତ୍ର ଉପରେ ମୋର କେବେ ବିଶ୍ୱାସ ନଥିଲା, ଏବେ ମଧ୍ୟ ନାହିଁ । ପତ୍ର ପତ୍ରିକାରେ ପ୍ରକାଶିତ 'ରାଶିଫଳ' ମୁଁ କେବେ ପଢ଼େ ନାହିଁ । କିନ୍ତୁ ୧୯୭୦ରେ ମୋର ରାଶିରେ ବୋଧହୁଏ ''ଭ୍ରମଣ ଯୋଗ''ର ମାତ୍ରାଧିକ ଲେଖାଥିଲା । କାଶ୍ମୀରରୁ ଫେରିବାର ସାଢ଼େ ତିନିମାସ ପରେ ସୋଭିଏଟ ୟୁନିଅନ ଯିବାର ସୁଯୋଗ ଆସିଲା । ୧୯୫୦ ମସିହାରୁ ମୁଁ କୌଣସି ରାଜନୈତିକ ଦଳ ସହିତ ସଂପୃକ୍ତ ନଥିଲେ ମଧ୍ୟ, ଭାରତ ସୋଭିଯେଟ୍ ମୈତ୍ରୀ ସଂସଦର ଜଣେ ସାଧାରଣ ସଦସ୍ୟ ଥାଏ । ମୈତ୍ରୀ ସଂସଦର ସଂପାଦକ ଶ୍ରଦ୍ଧେୟ ଅନୁଜ ଗିରିଜା ଭୂଷଣ ପଟ୍ଟନାୟକ ଏହି ଯାତ୍ରାର ପ୍ରଧାନ ଆୟୋଜକ ଥିଲେ । ତାଙ୍କର ଉଦ୍ୟମରେ ଓଡ଼ିଶାରୁ ୯'ଜଣ ସୋଭିଯେଟ ୟୁନିଅନ୍ ଯାତ୍ରା କରିଥିଲୁ । କଟକର ଆଡ୍‌ଭୋକେଟ୍ ରାଜେନ୍ଦ୍ର ଚନ୍ଦ୍ର ମହାନ୍ତି, ଭୁବନେଶ୍ୱରରୁ ପୂର୍ବତନ ଉପମନ୍ତ୍ରୀ (ସ୍ୱର୍ଗୀୟ) ଚିତ୍ତରଂଜନ ନାୟକ, ସମ୍ବଲପୁରର (ସ୍ୱର୍ଗୀୟ) ଡକ୍ଟର ପର୍ଶୁରାମ ମିଶ୍ରଙ୍କ ବଡ଼ ପୁଅ ଅବସରପ୍ରାପ୍ତ ଜିଲ୍ଲା ଜଜ୍ ଗତିକୃଷ୍ଣ ମିଶ୍ର, କେନ୍ଦ୍ରାପଡ଼ାର ପୂର୍ବତନ ଏମ୍.ଏଲ୍.ଏ. ଡାକ୍ତର ସରୋଜକାନ୍ତ କାନୁନ୍‌ଗୋ ଓ ବରଗଡ଼ ଅଂଚଳର ଅନ୍ୟ ଚାରିଜଣ ଆମର ସହଯାତ୍ରୀ ଥିଲେ । ସେପ୍ଟେମ୍ବର ୩୦ ତାରିଖ ସଂଧ୍ୟାରେ ଦିଲ୍ଲୀରେ ଭାରତ ସୋଭିଯେଟ ମୈତ୍ରୀ ସଂସଦ ପକ୍ଷରୁ ଅରୁଣା ଆସଫ ଅଲ୍ଲୀଙ୍କ ନେତୃତ୍ୱରେ ଆମକୁ ଏକ ବିଦାୟ ସଂବର୍ଦ୍ଧନା ଦିଆଯାଇଥିଲା । ଅକ୍ଟୋବର ପହିଲା ସକାଳ ସାତଟାରେ ଭାରତର ବିଭିନ୍ନ ରାଜ୍ୟରୁ ସମବେତ ପ୍ରାୟ ୧୨୫ ଜଣ ପର୍ଯ୍ୟଟକ ଏୟାର ଇଣ୍ଡିଆର ଏକ ବୋଇଂ ବିମାନର ମସ୍କୋ ଅଭିମୁଖେ ଯାତ୍ରା କଲୁ ।

ତିନି ବର୍ଷ ଆଗେ ୧୯୯୦ ମସିହା ପ୍ରାରମ୍ଭରେ ସୋଭିଯେତ୍ ୟୁନିଅନ୍‌ର ଅସ୍ତିତ୍ୱ ଲୋପ ପାଇଯାଇଅଛି । ପ୍ରାଚ୍ୟ ଗଗନର ଉଜ୍ଜ୍ୱଳ ପ୍ରଭାତୀ ତାରା ବିଲୀନ ହୋଇଯାଇଛି । ଯେଉଁ ସୋଭିଯେତ୍ ୟୁନିଅନ ଆଜି ଏକ ସ୍ୱର୍ଣ୍ଣାଭ ଐତିହ୍ୟର ବିଦୀର୍ଣ୍ଣ ପ୍ରତିରୂପ, ଏକ ସୁମଧୁର ସ୍ୱପ୍ନର ମଳିନ ଅବଶେଷ, ଏକ ଉଦୀୟମାନ ନୂତନ ସଭ୍ୟତାର ବିଷାଦଭରା ଅସ୍ତରାଗ, ୧୯୭୦ ମସିହାରେ ତାହା ଥିଲା ଅଗ୍ରଗତିର ଚରମ ସୋପାନରେ । କାହାର ଧୃଷ୍ଟତା, କାହାର ମୂର୍ଖତା ବା କାହାର ଅପକୀର୍ତ୍ତି ହେତୁ ଏହି ବିଶାଳ ସାମ୍ୟବାଦୀ ରାଷ୍ଟ୍ର ଆଜି ଖଣ୍ଡ ବିଖଣ୍ଡିତ ଓ ନଷ୍ଟଭ୍ରଷ୍ଟ ହୋଇଯାଇଛି, ତାହା ବିଚାର କରିବାର ଏଠି ଅବକାଶ ନାହିଁ । କିନ୍ତୁ ମୋପରି ବହୁ ଲୋକଙ୍କର ଜୀବନ ଧାରା ଗଢ଼ି ଉଠିଥିଲା ଏହି ନୂତନ ଶୋଷଣହୀନ ସମାଜ ବ୍ୟବସ୍ଥାର ଆବାହକ ଭାବରେ ।

ଏଣୁ ସ୍ୱପ୍ନର ସମ୍ଭାର ଧରି ଆମେ ଯେତେବେଳେ ସୋଭିଏଟ୍ ଭୂମିରେ ପଦାର୍ପଣ କଲୁ, ସେହି ମୁହୂର୍ତ୍ତର ମନର ଆବେଗ ଓ ଉଦ୍‌ବେଳନ ଭାଷାରେ ପ୍ରକାଶ କରିହେବ ନାହିଁ । ସୋଭିଏଟ୍ ବିପ୍ଳବର ନାଁ 'ଲାଲ ବିପ୍ଳବ', ସୋଭିଏଟ୍ ପତାକାର ରଂଗ ଲାଲ, ସୋଭିଏଟ୍ ପ୍ରତିରକ୍ଷା ବାହିନୀର ନାମ 'ଲାଲ ସେନା' । ଏଣୁ ମସ୍କୋ ଆକାଶରେ ପ୍ଲେନ୍ ଅବତରଣ କରିବା ଆଗରୁ ମନରେ ଆବେଗ ଛୁଟିଲା, ଯେଉଁ ମାଟିରେ ଆମେ ପଦାର୍ପଣ କରିବୁ, ତାର ରଂଗ କ'ଣ ସବୁଜ ନା ଲାଲ ? ଯାହାହେଉ ମୁହୂର୍ତ୍ତକ ପରେ ସବୁ ସଂଶୟ ଛେଦ କରି ପ୍ଲେନ ଯେତେବେଳେ ଏଆରପୋର୍ଟର ସବୁଜ ଭୂମିରେ ନିର୍ମିତ କୃଷ୍ଣ ବର୍ଣ୍ଣର ଟର୍ମିନାଲ ଉପରେ ଅବତରଣ କଲା, ସେତେବେଳକୁ ତାପମାତ୍ରା ଥିଲା ତିନି ଡିଗ୍ରୀ ସେଲ୍‌ସିୟସ୍, ତା ସାଂଗକୁ ଝିପି ଝିପି ବର୍ଷା । ଦୀର୍ଘ 'ଛ' ଘଣ୍ଟାର ଅବିଶ୍ରାନ୍ତ ଉଡ଼ାନ ପରେ ମସ୍କୋ ଏଆରପୋର୍ଟରେ ଉପସ୍ଥିତ ଟୁରିଷ୍ଟ ବିଭାଗର କର୍ମଚାରୀମାନେ ଆମକୁ ସ୍ମିତ ହସରେ ଅଭିନନ୍ଦନ ଜଣାଇଲେ । ଏହି ଇଣ୍ଟରନ୍ୟାସନାଲ ଏଆର ପୋର୍ଟରୁ ମସ୍କୋ ସହର ପ୍ରାୟ ପଚିଶ କିଲୋମିଟର ଦୂର । ଶୀତତାପ ନିୟନ୍ତ୍ରିତ ବସ୍‌ରେ ଉଠି ଆମେ ପହଂଚିଲୁ କୋଡ଼ିଏ ମହଲା ଉଚ୍ଚ ନବନିର୍ମିତ 'ଇନ୍-ଟୁରିଷ୍ଟ' ହୋଟେଲରେ । ଏହିଠାରେ ଦୁଇ ରାତି ଆମର ଅବସ୍ଥାନ ।

ସୋଭିଏଟ ୟୁନିଅନରେ ମୋଟ ପନ୍ଦର ଦିନ ରହଣି ମଧ୍ୟରୁ ପ୍ରଥମ ଦୁଇଦିନ ମସ୍କୋରେ କଟିଲା । ଦ୍ୱିତୀୟ ଦିନ ସକାଳ ନ'ଟାରୁ ଗାଇଡ୍‌ଙ୍କ ତତ୍ତ୍ୱାବଧାନରେ ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ, କ୍ରେମଲିନ୍ ଓ ଲେନିନଙ୍କ ମସୋଲିୟମ ଦେଖିବାରେ ଦିନ ବିତିଗଲା । ଲେନିନ୍‌ଙ୍କ ଶବକୁ କାଚର ଆବରଣ ମଧ୍ୟରେ କେମିକାଲ ଦିଆଯାଇ ଏପରି ଭାବରେ ରଖାଯାଇଛି, ଦେଖିଲେ ମନେ ହେବ, ସେ ଯେପରି ସତେଜ ଓ ଜୀବନ୍ତ । ଲେନିନ୍‌ଙ୍କ ପାର୍ଶ୍ୱରେ ଏକ ମୁକ୍ତ ଶଯ୍ୟା । ଏଠି ଥିଲା ୧୯୫୩ ମସିହା ପରେ ଷ୍ଟାଲିନ୍‌ଙ୍କର ମୃତ ଦେହ । କିନ୍ତୁ କ୍ରୁଶ୍ଚେଭ ପ୍ରଧାନମନ୍ତ୍ରୀ ଥିବା ସମୟରେ ଷ୍ଟାଲିନ୍‌ଙ୍କ ଶବକୁ ଲେନିନ୍ ମସେଲିୟମ୍‌ରୁ ଉଠାଇ ନିଆଯାଇ ଅନ୍ୟତ୍ର ସମାଧି ଦିଆଯାଇଥିଲା, ଅଥଚ ଲେନିନ୍ ଯେପରି ସୋଭିଏଟ୍ ରାଷ୍ଟ୍ରର ପ୍ରତିଷ୍ଠା କରିଥିଲେ ଷ୍ଟାଲିନ୍ ସେହି ରାଷ୍ଟ୍ରକୁ ଅତି ସଂକଟଜନକ ସମୟରେ ଦୀର୍ଘ ଅଠାଇଶ ବର୍ଷ ଧରି ସୁରକ୍ଷିତ କରି ରଖିଥିଲେ । ଷ୍ଟାଲିନ୍‌ଙ୍କର ବହୁ କାର୍ଯ୍ୟକୁ ଅନେକେ ସମର୍ଥନ ନ କଲେ ମଧ୍ୟ, ତାଙ୍କ ମୃତ୍ୟୁ ପରେ ତାଙ୍କର ଅଚେତନ ଶରୀର ପ୍ରତି ଏପରି ଅସମ୍ମାନ ଜନକ ବ୍ୟବହାର ଅନେକେ ପସନ୍ଦ କରନ୍ତି ନାହିଁ ।

ତୃତୀୟ ଦିନ ସକାଳୁ ପର୍ଯ୍ୟଟକମାନେ ଦୁଇ ଦଳରେ ବିଭକ୍ତ ହେଲୁ । ପ୍ରଥମ ଦଳରେ ଓଡ଼ିଶା, ଆନ୍ଧ୍ର ପ୍ରଦେଶ, ମାଡ୍ରାସ, କେରଳ, କର୍ଣ୍ଣାଟକ ଓ ମହାରାଷ୍ଟ୍ରର ପ୍ରାୟ ପଂଚଷଠି ଜଣ ଯାତ୍ରୀ ତାସକେଣ୍ଟ ଅଭିମୁଖେ ବାହାରିଲୁ । ତାସକେଣ୍ଟ ଉଜ୍‌ବେକିସ୍ଥାନର ରାଜଧାନୀ, ମଧ୍ୟ ଏସୀୟ ସଂସ୍କୃତିର ପୀଠସ୍ଥଳ । ତାସକେଣ୍ଟ ଭାରତୀୟମାନଙ୍କର ଅତି ପରିଚିତ । ପାଂଚ ବର୍ଷ ପୂର୍ବେ ଏହି ତାସକେଣ୍ଟରେ ରୁଷ ପ୍ରଧାନମନ୍ତ୍ରୀ କୋସିଜିନଙ୍କ ମଧ୍ୟସ୍ଥତାରେ ଭାରତର ପ୍ରଧାନମନ୍ତ୍ରୀ ଲାଲ ବାହାଦୁର ଶାସ୍ତ୍ରୀ ପାକିସ୍ଥାନ ରାଷ୍ଟ୍ରପତି ଆୟୁବ ଖାଁଙ୍କ ସହ ସନ୍ଧି ସର୍ତ୍ତ ଆଲୋଚନା କରିବା ସମୟରେ ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇଯାଇ ପ୍ରାଣଦାନ କରିଥିଲେ । ବର୍ଷକ ପରେ ଏକ ଦାରୁଣ ଭୂମିକଂପରେ ତାସକେଣ୍ଟ୍ ଭଗ୍ନ ସ୍ତୂପରେ ପରିଣତ ହୋଇଥିଲା । ଆମେ ପହଂଚିବା ସମୟରେ ତାସକେଣ୍ଟ୍ ସହର ନୂଆ କରି ଗଢ଼ି ଉଠୁଥାଏ । ତାସକେଣ୍ଟ୍‌ର ପୁନଃନିର୍ମାଣ ପାଇଁ ସୋଭିୟେଟ୍ ୟୁନିଅନର ବିଭିନ୍ନ ରାଜ୍ୟ ଯେପରି ଅକୁଣ୍ଠ ଚିତ୍ତରେ ସାହାଯ୍ୟଦାନ କରିଥିଲେ ଏବଂ ଅତି ଅଳ୍ପ ଦିନ ମଧ୍ୟରେ ତାସକେଣ୍ଟ୍ ଯେପରି ପୁନର୍ବାର ସଗର୍ବରେ ମଧ୍ୟଏସିଆରେ ନିଜର ଆସ୍ଥାନ ପ୍ରତିଷ୍ଠା କରି ପାରିଥିଲା, ତାହା ସୋଭିୟେତ୍ ୟୁନିଅନରେ ଜାତି ଜାତି ମଧ୍ୟରେ ଅଖଣ୍ଡ ମୈତ୍ରୀ ଓ ସହଯୋଗର ସ୍ମୃତିସ୍ତମ୍ଭ ରୂପେ ବିରାଜମାନ । ଏଠାରେ ତିନିଦିନ ରହି ଆମ୍ଭେମାନେ ବହୁ ପ୍ରସିଦ୍ଧ କଲେକ୍‌ଟିଭ୍ ଫାର୍ମ ଓ ସରକାରୀ କପା କୃଷିଫାର୍ମ ପରିଦର୍ଶନ କରିବାର ସୁଯୋଗ ପାଇଥିଲୁ । ମାଇଲ ମାଇଲ ଧରି ଏହି କପା ଫାର୍ମ ଦେଖିଲାବେଳେ ଦୂରରୁ ମନେହେଉଥିଲା, ଯେପରି ଭୂଇଁ ଉପରେ ବରଫଖଣ୍ଡ ମାନ ଜମା ହୋଇ ରହି ଶୁଷ୍କ ବାଲିଚର ଭୂମିକୁ ବିସ୍ତୀର୍ଣ୍ଣ ଶୁକ୍ଳଶଯ୍ୟାରେ ପରିଣତ କରି ଦେଇଛି ।

ତାସକେଣ୍ଟରୁ ଆମର ଯାତ୍ରା ସମରକନ୍ଦ, ଯେଉଁଠି ଭାରତ ଆକ୍ରମଣକାରୀ ତିମୁରଲେନ୍‌ଙ୍କର ଜନ୍ମପୀଠ । ତିମୁରଲେନ୍‌ଙ୍କର ସମାଧି ସୌଧ ଏବେ ମଧ୍ୟ ସମରକନ୍ଦରେ ବିଦ୍ୟମାନ । ମରୁଭୂମି ମଧ୍ୟରେ ସମରକନ୍ଦର ଅବସ୍ଥିତି ଓ ତାର ଅଗ୍ରଗତି ମନରେ ବିସ୍ମୟ ସୃଷ୍ଟି କରେ । ଆମର ଗାଇଡ୍ ଥିଲେ ଜଣେ ଉଦ୍‌ବେକୀ ମୁସଲମାନ ତରୁଣୀ । ଇଂରେଜୀ ଭାଷାରେ ତାଙ୍କର ବେଶ ଦଖଲ ଥିଲା ଏବଂ ଉଜବେକୀ ସ୍ଥାନର ସାମାଜିକ ଓ ସାଂସ୍କୃତିକ ଅଗ୍ରଗତିର ଚିତ୍ର ଉପସ୍ଥାପନା କରିବାରେ ସେ ଥିଲେ ଧୂରୀଣ । ତାଙ୍କର ପିତୃ ପିତାମହ ଓ ଗାଁର ଅନ୍ୟ ପରିବାରର ଲୋକେ ସୋଭିୟେତ୍ ବିପ୍ଳବ ପୂର୍ବରୁ କିପରି ଦୀନ ଦରିଦ୍ର ଓ ନିରକ୍ଷର ଥିଲେ, ତାହା ବର୍ଣ୍ଣନା କରି ସେ କହିଥିଲେ ଯେ ବର୍ତ୍ତମାନ ସାମ୍ୟବାଦୀ ଶାସନରେ ସମସ୍ତେ କାମ କରି ଆନନ୍ଦରେ ଜୀବିକା

ଚଳାଇ ପାରୁଛନ୍ତି ଏବଂ ନିରକ୍ଷରତା ପ୍ରାୟ ସଂପୂର୍ଣ୍ଣ ଲୋପ ପାଇଛି । ସମରକନ୍ଦର ଅର୍ଥନୈତିକ ଅଗ୍ରଗତିର ନମୁନା ଦେଖାଇବାକୁ ଯାଇ ଗାଇଡ୍ ଆମ୍ଭମାନଙ୍କୁ ସହର ଉପକଂଠରେ ଥିବା ଏକ ଟେକ୍ସଟାଇଲ ମିଲକୁ ବୁଲାଇ ନେଇଥିଲେ । ଏହି ମିଲ୍‌ର ଅଧିକାଂଶ ଶ୍ରମିକ ମହିଳା । ଆମେ ମିଲରୁ ଫେରିଲା ବେଳକୁ ସିଫ୍‌ଟ୍ ପରିବର୍ତ୍ତନ ସମୟ । ଦଳ ଦଳ ମହିଳା ଶ୍ରମିକ ଆମ୍ଭମାନଙ୍କ ସହିତ ଏକତ୍ର ଫଟୋ ଉଠାଇବାରେ ବେଶ୍ ଆନନ୍ଦ ଉପଭୋଗ କରୁଥିଲେ । ତାସକେଣ୍ଟ ଓ ସମରକଂନ୍ଦର ଲୋକଙ୍କର ଚାଲିଚଳନୀ, ବେଶଭୂଷା ଓ ଖାଦ୍ୟପେୟର ପଂଜାବ ଓ ଉତ୍ତର ଭାରତ ଲୋକଙ୍କ ସହିତ ବହୁ ସାମଂଜସ୍ୟ ଅଛି । ଭାରତୀୟ ସଂଗୀତ ଶୁଣିବାକୁ ସେମାନଙ୍କ ମଧ୍ୟରେ ଆଗ୍ରହ । ଭାରତୀୟ ନେତାମାନଙ୍କ ମଧ୍ୟରେ ନେହୁରୁ ଥିଲେ ସେମାନଙ୍କର ଅତି ଆଦରଣୀୟ ନେତା ଏବଂ ଫିଲ୍ମଷ୍ଟାରମାନଙ୍କ ମଧ୍ୟରେ ରାଜକାପୁର ସେମାନଙ୍କର ପ୍ରିୟତମ ତାରକା । ସମରକନ୍ଦର ଗୋଟିଏ ସ୍କୁଲରେ ଝିଅ ପିଲାମାନେ ରାଜକାପୁରଙ୍କ ସଂଗମ୍ ଫିଲ୍ମର ଗୋଟିଏ ଗୀତର ଟିଉନ୍ ବଜାଇ ଯେପରି ନୃତ୍ୟ ପରିବେଷଣ କଲେ ତାହା ଏବେ ମଧ୍ୟ ମନରେ ଜୀବନ୍ତ ରହିଛି । ତାସକେଣ୍ଟ୍ ହୋଟେଲରେ ପ୍ରଥମ ଦିନ ଡିନର ଖାଇବା ସମୟରେ ରାଜକାପୁରଙ୍କ ''ଶ୍ରୀ ୪୨୦' ଫିଲ୍ମର ପ୍ରଥମ ସଂଗୀତ ''ମେରା ଜୁତା ହେ ଜାପାନୀ, ଶର ପେ ଲାଲ ଟୋପି, ଦିଲ୍ ମେ ହିନ୍ଦୁସ୍ଥାନୀ''ର ଅର୍କେଷ୍ଟ୍ରା ବାଜିଲା । ଡାଇନିଂ ହଲରେ ପଂଚଷଠୀ ଜଣ ଭାରତୀୟ ଅତିଥିଙ୍କ ସହ ଆଉ ପ୍ରାୟ ଚାଳିଶ ଜଣ ସ୍ଥାନୀୟ ଅତିଥି ଥିଲେ । ଅର୍କେଷ୍ଟ୍ରାର ମୂର୍ଚ୍ଛନାରେ ତାଳ ଦେଇ ସେମାନେ ଆମକୁ ଯେଉଁ ସଂବର୍ଦ୍ଧନା ଜଣାଇଥିଲେ ତାହା ଏବେ ମଧ୍ୟ ମାନସ ପଟରେ ନାଚି ଉଠେ ।

ସମରକଂନ୍ଦରୁ ଆମେ ସିଧା ଫେରିଲୁ ମସ୍କୋ । ସେଠାରେ ଦିନଟିଏ ରହି ଯାତ୍ରା ସ୍ୱପ୍ନର ନଗରୀ ଲେନିନ୍‌ଗ୍ରାଡ୍ ଅଭିମୁଖେ । ସାରା ରୁଷ ମଧ୍ୟରେ ଲେନିନ୍‌ଗ୍ରାଡ୍ ସବୁଠାରୁ ସୁନ୍ଦର ସହର । ପୂର୍ବ ନାମ ପେଟ୍ରୋଗ୍ରାଡ୍, ରୁଷିଆର ଜାରଙ୍କ ରାଜଧାନୀ । ୧୯୧୭ର ବଲଶେଭିକ୍ ବିପ୍ଳବ ପରେ ମହାନ୍ ବିପ୍ଳବୀ ନେତା ଲେନିନ୍‌ଙ୍କ ନାମାନୁସାରେ ସହରର ନୂଆ ନାମକରଣ ହୋଇଥିଲା । ସହର ବୁକୁରେ ଅଂକାବଂକା ନେଭା ନଦୀ ନୀଳଜଳ ବହି ନେଇ ଫିନ୍‌ଲ୍ୟାଣ୍ଡ ସାଗର କୂଳକୁ ଧାଇଁ ଚାଲିଛି । ନଈ ମଝିରେ ଗୋଟିଏ ପୁରାତନ କ୍ଷୁଦ୍ର ଯୁଦ୍ଧ ଜାହାଜ - ୧୯୧୭ ବିପ୍ଳବ ସମୟରେ ଏହି ଜାହାଜର ନୌସେନା ଜାରଶାହୀ ଉପରେ ଆକ୍ରମଣରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏହି ଆକ୍ରମଣ ପରେ ଜାରଙ୍କର ପତନ ଘଟିଲା । ଜାହାଜଟିକୁ ବିପ୍ଳବର ଅନ୍ୟତମ

ସନ୍ତକ ରୂପେ ସେହିଦିନ ଠାରୁ ନଦୀ ବୁକୁରେ ସୁରକ୍ଷିତ କରି ରଖାଯାଇଛି । ଲେନିନ୍‌ଗ୍ରାଡ଼ର ଉତ୍ତର ଓ ଦକ୍ଷିଣରେ ଦୁଇଟି ଅତି ସୁନ୍ଦର ପ୍ୟାଲେସ । ଗୋଟିକର ନାମ ଉଇଣ୍ଟର ପ୍ୟାଲେସ, ଅନ୍ୟଟି ସମର ପ୍ୟାଲେସ୍ । ପ୍ୟାଲେସ ଦୁଇଟି ଥିଲା ଜାରଙ୍କ ବାସସ୍ଥଳୀ । ୧୯୧୭ ମସିହାର ବିପ୍ଳବ ପରେ ସାମନ୍ତବାଦୀ ଅତ୍ୟାଚାରର ପ୍ରତୀକ ଏହି ପ୍ୟାଲେସ ଦୁଇଟିକୁ ବିପ୍ଳବୀ ସେନା ଧ୍ୱଂସ କରିଦେବାକୁ ଉଦ୍ୟମ କରିଥିଲେ । କିନ୍ତୁ ଲେନିନ୍‌ଙ୍କ ନିର୍ଦ୍ଦେଶରେ, ଏହି ଦୁଇଟି ପ୍ୟାଲେସ ଓ ତହିଁରେ ସୁସଜ୍ଜିତ ଚିତ୍ରକଳାର ପ୍ରତୀକ ବହୁ ସୁନ୍ଦର ପେଣ୍ଟିଂ, ମୂର୍ତ୍ତି ଓ ଚାରୁକଳାର ନିଦର୍ଶନକୁ ସୁରକ୍ଷିତ କରି ରଖାଯାଇଛି । ଭବିଷ୍ୟତ ବଂଶଧରଙ୍କ ଉପଯୋଗ ପାଇଁ ଉଇଣ୍ଟର ପ୍ୟାଲେସ ଓ ସମର ପ୍ୟାଲେସକୁ ଦୁଇଟି ପ୍ରଦର୍ଶଶାଳା ବା ଯାଦୁଘର ରୂପେ ସୁସଜ୍ଜିତ କରାଯାଇଛି । ଏ ଦୁଇଟି ପ୍ୟାଲେସରେ ଚାରୁକଳାର ଏତେ ଗୁଡ଼ିଏ ନିଦର୍ଶନ ରହିଛି ଯେ ଏ ସବୁ ପରିଦର୍ଶନ କରିବାରେ ଆମର ଦୁଇଦିନ ଅତିବାହିତ ହୋଇଥିଲା ।

ଦ୍ୱିତୀୟ ମହାଯୁଦ୍ଧ ସମୟରେ ୧୯୪୧ ଜୁନ୍ ୨୨ ତାରିଖରେ ହିଟଲର ସୋଭିଯେତ୍ ୟୁନିଅନ ଉପରେ ଅତର୍କିତ ଆକ୍ରମଣ ଆରମ୍ଭ କରିଦେଲେ । ଫାସିଷ୍ଟ ସେନା ବାହିନୀର ଟ୍ୟାଂକ୍ ଅଭିଯାନରେ ସମଗ୍ର ୟୁକ୍ରାଇନର ପତନ ଘଟିଲା । ୟୁକ୍ରାଇନ ସୋଭିଯେତ୍ ରାଷ୍ଟ୍ରର ଶସ୍ୟ ଭଣ୍ଡାର । କିନ୍ତୁ ଯେଉଁ ଦୁଇଟି ସହରରେ ନାଜୀ ଆକ୍ରମଣକାରୀମାନଙ୍କୁ ଷ୍ଟାଲିନଙ୍କ ନେତୃତ୍ୱରେ ଲାଲସେନା ଅଟକାଇ ଦେଇଥିଲେ, ତାହା ହେଲା ଉତ୍ତରରେ ଲେନିନ୍‌ଗ୍ରାଡ୍ ଓ ଦକ୍ଷିଣରେ ଷ୍ଟାଲିନଗ୍ରାଡ଼ । ଲେନିନ୍‌ଗ୍ରାଡ଼ ସହରର ଉପକଂଠ ପର୍ଯ୍ୟନ୍ତ ଜର୍ମାନ ସେନା ମାଡ଼ି ଆସିଥିଲେ । ବର୍ଷାଧିକ କାଳ ଲେନିନ୍‌ଗ୍ରାଡ଼ ଆକ୍ରାନ୍ତ ହୋଇ ରହିଲା । ପରିଶେଷରେ ଏହିଠାରୁ ଆରମ୍ଭ ହେଲା ଜର୍ମାନମାନଙ୍କର ପରାଜୟ । ଲାଲସେନାର ପ୍ରତିରୋଧ ଓ ପ୍ରତି ଆକ୍ରମଣରେ ଜର୍ମାନମାନଙ୍କୁ ପଛଘୁଂଚା ଦେବାକୁ ପଡ଼ିଲା । ଲାଲସେନା ୧୯୪୪ ଏପ୍ରିଲ ମାସରେ ବର୍ଲିନ ଦଖଲ କରିନେଲେ । ଲାଲସେନାର ଅବିସ୍ମରଣୀୟ ଆତ୍ମତ୍ୟାଗ, ଦେଶପ୍ରେମ ଓ ବର୍ଣ୍ଣନାତୀତ ବୀରତ୍ୱର ଅମ୍ଳାନ ଯଶୋଗାଥା ଲେନିନ୍‌ଗ୍ରାଡ୍ ଉପକଂଠରେ ପ୍ରତି ଧୂଳିକଣାରେ ଲିପିବଦ୍ଧ ହୋଇ ରହିଛି । ଗତ ତିନି ବର୍ଷ ପୂର୍ବେ ବୋରିସ ୟେଲଚ୍‌ସିନଙ୍କ କମ୍ୟୁନିଷ୍ଟ ବିରୋଧୀ ସରକାରଙ୍କ ନିର୍ଦ୍ଦେଶରେ ଲେନିନଗ୍ରାଡ଼ ସହରର ନାମ ପରିବର୍ତ୍ତନ କରାଯାଇଛି । ଲେନିନ୍‌ଗ୍ରାଡ୍ ବର୍ତ୍ତମାନ ତାର ବିପ୍ଳବ-ପୂର୍ବ ନାମ ‘ପେଟ୍ରୋଗ୍ରାଡ୍’ ନାମରେ ପରିଚିତ ।

ଲେନିନ୍‌ଗ୍ରାଡ଼ରୁ ଫେରି ଶେଷ ଚାରିଦିନ ମସ୍କୋରେ ବିତିଗଲା । ଗାଇଡ୍ ଆମକୁ ନେଇଗଲେ ରୁଷିଆର ବିଜ୍ଞାନ କୌଶଳର ଏକ ପ୍ରଦର୍ଶନୀ ମଣ୍ଡପକୁ । ଅନ୍ତରୀକ୍ଷ ପରିଭ୍ରମଣ କରିବାର ବହୁ ଯନ୍ତ୍ରପାତି ଏଠାରେ ରଖାଯାଇଛି । ଯେଉଁ

କ୍ଷୁଦ୍ର ବାୟୁଯାନରେ ରୁଷିଆର ପ୍ରଥମ ମହାକାଶଚାରୀ ଅନ୍ତରୀକ୍ଷ ପରିଭ୍ରମଣ କରିଥିଲେ, ତାର ଏକ ନମୁନା ମଧ୍ୟ ଏଠାରେ ରହିଥିଲା । ଜଣେ ବିଜ୍ଞାନୀ ରକେଟ୍ ଯାନର ପ୍ରେରଣ କୌଶଳ ଦର୍ଶକମାନଙ୍କୁ ବୁଝାଇ ଦେଉଥିଲେ । ଦ୍ୱିତୀୟ ଦିନ ସକାଳ ଦଶଟା ବେଳକୁ ଆମ୍ଭେମାନେ ଗୋଟିଏ ସ୍କୁଲକୁ ବୁଲିଗଲୁ । ଏହି ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଇଂରେଜୀ ଭାଷା ଜାଣିଥିଲେ ଓ ଆମ ସହିତ ଇଂରେଜୀରେ କଥାବାର୍ତ୍ତା ହେଲା । ଭାରତ ଓ ଦକ୍ଷିଣ-ପୂର୍ବ ଏସିଆର ବିଭିନ୍ନ ଦେଶ ଓ ତାର ସମସ୍ୟା ସଂପର୍କରେ ସେମାନଙ୍କୁ ପ୍ରଶ୍ନ କରିବାକୁ ଆମକୁ ସୁଯୋଗ ଦିଆହେଲା ଏବଂ ଛାତ୍ରଛାତ୍ରୀମାନେ ପ୍ରଶ୍ନର ଯଥାବିଧି ଉତ୍ତର ଦେଇ ପାରୁଥିଲେ । ମନେ ହେଉଥିଲା, ଯେପରି ଭବିଷ୍ୟତରେ ବିଭିନ୍ନ ଦେଶରେ ପରିବ୍ୟାପ୍ତ ଅସଂଖ୍ୟ ସୋଭିଏଟ୍ ଦୂତାବାସରେ କାର୍ଯ୍ୟ କରିବା ପାଇଁ ଏଠାରେ ତାଲିମ ଦିଆଯାଉଛି । ଅଧିକାଂଶ ପର୍ଯ୍ୟଟକଙ୍କ ପାଇଁ ସବୁଠାରୁ ଆକର୍ଷଣୀୟ ଥିଲା ବଲଶୋଇ ଥିଏଟର । ଯେଉଁ ହଲରେ ଏହି ଥିଏଟର ଅଭିନୀତ ହୁଏ, ସେଥିରେ ଅନ୍ୟୁନ ଛ' ହଜାର ଦର୍ଶକ ବସିବାର ବ୍ୟବସ୍ଥା ଅଛି । ବଲଶୋଇ ଥିଏଟର ଦେଖିବା ପାଇଁ ରୁଷୀୟ ଲୋକଙ୍କ ମଧ୍ୟରେ ଏତେ ଆଗ୍ରହ ଯେ, ଥିଏଟର ହଲ୍‌ରେ କେବେ ସିଟ୍ ଖାଲି ରହେ ନାହିଁ ଏବଂ ସିଟ୍ ପାଇବା ପାଇଁ ମାସ ମାସ ପୂର୍ବରୁ ସ୍ଥାନ ସଂରକ୍ଷଣ କରିବାକୁ ପଡ଼େ । କେବଳ ବିଦେଶାଗତ ପର୍ଯ୍ୟଟକମାନଙ୍କ ପାଇଁ ବିଶେଷ ବ୍ୟବସ୍ଥା କରାଯାଇଥାଏ ।

ସେ ସମୟରେ ସାତ ଆଠ ଜଣ ଓଡ଼ିଆ ଛାତ୍ର ମସ୍କୋରେ ରହି କିଏ ମେଡ଼ିସିନ୍‌ରେ ବା କିଏ ଇଂଜିନିଅରିଂ ବିଦ୍ୟାରେ ମୁଖ୍ୟତଃ ଏସୀୟ- ଆଫ୍ରିକାର ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଲୁମୁମ୍ବା ବିଶ୍ୱବିଦ୍ୟାଳୟରେ ଉଚ୍ଚ ଶିକ୍ଷା ଲାଭ କରୁଥିଲେ । ଆଫ୍ରିକା କଂଗୋର ପ୍ରଖ୍ୟାତ ଜାତୀୟବାଦୀ-ବାମପନ୍ଥୀ ନେତା ପ୍ୟାଟ୍ରି ଲୁମୁମ୍ବାଙ୍କୁ ସାମ୍ରାଜ୍ୟବାଦୀମାନେ ଭଡ଼ାଟିଆ ସୈନ୍ୟ ନିଯୁକ୍ତ କରି ହତ୍ୟା କରିଥିଲେ । ଲୁମୁମ୍ବାଙ୍କ ସ୍ମୃତି ଚାରଣ ପାଇଁ ମସ୍କୋ ଉପକଂଠରେ ଏହି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ସେ ସମୟରେ ମସ୍କୋ ରେଡ଼ିଓର ଓଡ଼ିଆ ବିଭାଗରେ ଜଣେ ଓଡ଼ିଆ ଅଫିସର ବାର୍ତ୍ତା ଘୋଷକ ରୂପେ କାର୍ଯ୍ୟ କରୁଥିଲେ ଓ ସେଠାରେ ନିଜର ପରିବାର ସହିତ ରହୁଥିଲେ । ତାଙ୍କ ଘରେ ଓଡ଼ିଆ ଛାତ୍ରମାନେ ଆମକୁ ଥରେ ରାତ୍ରି ଭୋଜନରେ ସଂବର୍ଦ୍ଧନା ଜଣାଇଥିଲେ । ଅଣ୍ଡରଗ୍ରାଉଣ୍ଡ ମେଟ୍ରୋ ଟ୍ରେନରେ ଯାଇ ଆମ୍ଭେମାନେ ନିମନ୍ତ୍ରଣକର୍ତ୍ତାଙ୍କ ଘରେ ପହଂଚିଲୁ । ସେ ସଂଧ୍ୟାଟି ଅତି ଆନନ୍ଦରେ କଟିଲା । ଛ' ହଜାର ମାଇଲ ଦୂରରେ ନିଜ ଦେଶର ପିଲାଙ୍କୁ ଦେଖି ଛାତି ଫୁଲି ଉଠିଲା ।

ଶେଷ ଦିନ ଆମର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନଥିଲା । ମନଇଚ୍ଛା ବୁଲିବା ପାଇଁ ଆମକୁ ପୂର୍ଣ୍ଣ ସୁଯୋଗ ଦିଆଯାଇଥାଏ । କିନ୍ତୁ ମସ୍କୋରେ ପ୍ରବାହିତ ମସ୍କୋ ନଦୀ, ପାର୍କ, ଯାଦୁଘର, କଳାକୁଞ୍ଜ, କୋଠାବାଡ଼ି ବା ରାସ୍ତାଘାଟ ଦେଖିବା ବ୍ୟତୀତ, କାହା ସହିତ ମିଶିବୁ, କାହା ସହିତ ଗଳ୍ପ କରିବୁ, କାହା ସହିତ ଭାବର ଆଦାନ ପ୍ରଦାନ କରିବୁ? ଭାଷାର ଅଭେଦ୍ୟ ପାଚେରୀ ଅତିକ୍ରମ କରିବା କ'ଣ ସମ୍ଭବ? ଆମକୁ ଋଷୀୟ ଭାଷା ଜଣା ନାହିଁ । ଏଣୁ ସାଧାରଣ ଲୋକଙ୍କ ସହିତ କୌଣସି ରାଜନୈତିକ ବା ସାମାଜିକ ସମସ୍ୟା ଉପରେ ମତାମତ ବିନିମୟ ସମ୍ଭବ ନଥିଲା । କୌଣସି ବିବାଦୀୟ ରାଜନୈତିକ ପ୍ରଶ୍ନ ଉପରେ ଆଲୋଚନା କରିବାକୁ ଗାଇଡ୍‌ମାନେ ସାଧାରଣତଃ ଶଙ୍କା ବୋଧ କରନ୍ତି, ଏଣୁ ଏମାନଙ୍କ ଜରିଆରେ ସାଧାରଣ ଲୋକଙ୍କ ସହିତ ମନଖୋଲା ଆଲୋଚନାର ଅବକାଶ କାହିଁ?

ଅକ୍ଟୋବର ମାସରେ ମସ୍କୋରେ ଥଣ୍ଡାର ପ୍ରକୋପ ଆରମ୍ଭ ହୁଏ । ଅକ୍ଟୋବର ପହିଲା ଦିନ ଆମେ ମସ୍କୋରେ ପହଂଚିଲା ବେଳକୁ ତାପମାତ୍ରା ଥିଲା ତିନି ଡିଗ୍ରୀ ସେଲ୍‌ସିୟସ । ଲେନିନ୍‌ଗ୍ରାଡ଼ରୁ ଫେରି ୧୨ ତାରିଖ ସକାଳେ ମସ୍କୋରେ ପହଂଚିଲା ବେଳକୁ ତାପମାତ୍ରା ମାଇନସ୍ ତିନି ଡିଗ୍ରୀ, ରୀତିମତ ହାଲୁକା ତୁଷାରପାତ ଓ ତା ସାଂଗକୁ ଥଣ୍ଡା ପବନ । ପହଂଚିବା ସମୟରେ ଗଛର ପତ୍ର ଥିଲା ହଳଦିଆ । ଫେରିବା ବେଳକୁ କୌଣସି ଗଛରେ ପତ୍ର ନଥିଲା । ରାସ୍ତା କଡ଼ରେ ଓ ପାର୍କ ମାନଙ୍କରେ ଶ୍ରୀହୀନ ଥୁଣ୍ଟା ଗଛ । ସେ ସମୟରେ ବ୍ରେଜନେଭ୍ ଓ କୋସିଜିନ୍ ସୋଭିଏତ୍ ୟୁନିଅନର କର୍ଣ୍ଣଧାର । ସେମାନେ କ୍ରୁଶ୍ଚେଭ୍‌କୁ ବିତାଡ଼ିତ କରି କ୍ଷମତାକୁ ଆସିଥିଲେ । କ୍ରୁଶ୍ଚେଭ ନିଜେ କ୍ଷମତାସୀନ ହୋଇଥିଲେ ପଲିଟ୍‌ବୁ୍ୟରୋ ମିଟିଂରେ ଷ୍ଟାଲିନଙ୍କର ଗୁପ୍ତଚର ବେରିଆଙ୍କର ଅସ୍ୱାଭାବିକ ମୃତ୍ୟୁପରେ । ପୃଥିବୀର ସର୍ବବୃହତ୍ ରାଷ୍ଟ୍ରର ନେତୃତ୍ୱ ପରିବର୍ତ୍ତନ ଯେ ପଲିଟବୁ୍ୟରୋର ଛ ସାତ ଜଣ ସଦସ୍ୟ ନିୟନ୍ତ୍ରଣ କରୁଥିଲେ, ଦୁନିଆର ବୁଦ୍ଧିଜୀବୀ ମହଲରେ ଏହା ଆଉ ଗୋପନୀୟ ନଥିଲା । ମସ୍କୋର ଶୀତ ପ୍ରବାହ ମଧ୍ୟରେ ବ୍ରେଜନେଭଙ୍କ ବିରୁଦ୍ଧରେ କୌଣସି ଉଷ୍ମମତ ପ୍ରବାହ ତତ୍ପର ଓ କ୍ରିୟାଶୀଳ ଥିଲା କି ନାହିଁ, ତାହା ଜାଣିବାର ଅବକାଶ ରହିଲା ନାହିଁ । ପନ୍ଦର ତାରିଖ ରାତିରେ ଆମ୍ଭେମାନେ ମସ୍କୋ ଛାଡ଼ିଲୁ । ଷୋଳ ଅକ୍ଟୋବର ସକାଳେ ପ୍ଲେନ ଦିଲ୍ଲୀ ବିମାନ ବନ୍ଦରରେ ଅବତରଣ କଲା ।



# ବିଭେଦର ତରଙ୍ଗ

ମସ୍କୋରୁ ଫେରି କଟକରେ ପହଂଚିଲା ବେଳକୁ ଓଡ଼ିଶାର ରାଜନୈତିକ ରଂଗମଂଚରେ ତୁମୂଳ ଝଡ଼ ଆରମ୍ଭ ହୋଇଯାଇଛି । କ୍ଷମତାସୀନ ସ୍ୱତନ୍ତ୍ର ଦଳ ଓ ଜନ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ବିଭେଦର ଅଭେଦ୍ୟ ପ୍ରାଚୀର ଦଣ୍ଡାୟମାନ । ସେପ୍ଟେମ୍ବର ମାସରେ ଡକ୍ଟର ମହତାବଙ୍କ ବିରୁଦ୍ଧରେ ଜଷ୍ଟିସ ମୁଧୋଲକରଙ୍କ ରିପୋର୍ଟ ଉପରେ ଯେଉଁ ଶୀତଳ ବାଦାନୁବାଦ ଆରମ୍ଭ ହୋଇଥିଲା ତାହା ବର୍ତ୍ତମାନ ଅବାଧ ଓ ଉନ୍ମୁକ୍ତ ବିଦ୍ରୋହରେ ପରିଣତ । ମହତାବ ବାବୁ ମନ୍ତ୍ରୀମଣ୍ଡଳକୁ ଭାଂଗି ଦେବାକୁ ବଦ୍ଧପରିକର ଥିଲା ଭଳି ମନେ ହେଉଥିଲା ।

ସେ ସମୟରେ କେନ୍ଦୁପତ୍ର ସଂଗ୍ରହ ବ୍ୟବସାୟ ଘରୋଇ ବ୍ୟବସାୟୀଙ୍କୁ ଅର୍ପଣ କରାଯାଉଥିଲା । ପ୍ରବାଦ ଥିଲା, କେନ୍ଦୁପତ୍ର ବ୍ୟବସାୟୀମାନେ ଓଡ଼ିଶା ରାଜନୀତିକୁ ନିୟନ୍ତ୍ରିତ କରୁଛନ୍ତି । ଜନ-କଂଗ୍ରେସ ଦଳ ଅଭିଯୋଗ କଲେ ଯେ ସ୍ୱତନ୍ତ୍ର ଦଳର ନେତାମାନେ କେନ୍ଦୁପତ୍ର ବ୍ୟବସାୟୀମାନଙ୍କଠାରୁ ପଚାଶ ଲକ୍ଷ ଟଂକା ଉତ୍କୋଚ ନେଇ ସେମାନଙ୍କୁ ଦର ନିୟନ୍ତ୍ରଣ କରିଆରେ ଏକ କୋଟି ଟଂକାର ଫାଏଦା ଦେବାକୁ ନିଷ୍ପତ୍ତି ନେଇଛନ୍ତି, ଅଥଚ ଏହି ବିଷୟଟି ରାଜ୍ୟର ମନ୍ତ୍ରୀମଣ୍ଡଳ ବା କ୍ୟାବିନେଟ୍ ଦ୍ୱାରା ଅନୁମୋଦିତ ହୋଇନାହିଁ । ଏପରି ଭାବରେ ପ୍ରତ୍ୟେକ ଗୋଷ୍ଠି ଅପର ବିରୁଦ୍ଧରେ ବିଭିନ୍ନ ପ୍ରକାରର ଅଭିଯୋଗ ଆଗତ କଲେ । ଜନ କଂଗ୍ରେସ ଦଳର ନେତା ଉପ-ମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ କେନ୍ଦୁପତ୍ର ରିହାତିର ପ୍ରତିବାଦରେ ମନ୍ତ୍ରୀ ମଣ୍ଡଳରୁ ତାଙ୍କ ଗୋଷ୍ଠୀର ସମର୍ଥନ ପ୍ରତ୍ୟାହାର କରିନେଲେ । ଅନନ୍ୟୋପାୟ ହୋଇ ମୁଖ୍ୟମନ୍ତ୍ରୀ ଆର. ଏନ୍. ସିଂହଦେଓ ୧୯୭୧ ଜାନୁଆରୀ ୯' ତାରିଖରେ ଇସ୍ତଫା ଦେଲେ । ସେତେବେଳେ ଓଡ଼ିଶାର ରାଜ୍ୟପାଳ ଡକ୍ଟର ଆନ୍‌ସାରୀ । ତାଙ୍କର ଶାସନ ବିଦ୍ୟାରେ କୌଣସ ଅଭିଜ୍ଞତା ନଥିଲା ବା ସାଂବିଧାନିକ ପରଂପରାର ଅନୁଭୂତି ନଥିଲା । ସମ୍ବିଧାନ ଅନୁଯାୟୀ ମନ୍ତ୍ରୀମଣ୍ଡଳର ବିନା ପରାମର୍ଶରେ ଶାସନ ଚଳି ପାରିବ ନାହିଁ । କିନ୍ତୁ ରାଷ୍ଟ୍ରପତି ଶାସନ ଜାରୀ ହେବା ପୂର୍ବରୁ ବା ବିକଳ୍ପ ବ୍ୟବସ୍ଥା ଗ୍ରହଣ କରିବା ପୂର୍ବରୁ, ରାଜ୍ୟପାଳ ଆନସାରୀ ମୁଖ୍ୟମନ୍ତ୍ରୀଙ୍କ ଇସ୍ତଫା ଗ୍ରହଣ କରିନେଲେ । ଏପରିକି ବିକଳ୍ପ ବ୍ୟବସ୍ଥା ହେବା ପର୍ଯ୍ୟନ୍ତ ଅସ୍ଥାୟୀ ଭାବରେ କାମଚଳା ଦାୟିତ୍ୱରେ ରହିବା ପାଇଁ ମଧ୍ୟ ଅନୁରୋଧ କଲେ ନାହିଁ । ରାଜ୍ୟପାଳଙ୍କ ଅବିମୃଷ୍ୟକାରିତା ହେତୁ ଅଯଥା ଏକ ସାଂବିଧାନିକ ସଂକଟର ସୂତ୍ରପାତ ହେଲା । ତାର ଦୁଇଦିନ ପରେ ଜାନୁଆରୀ ଏଗାର ତାରିଖ ଦିନ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରୀ ହେବା ପରେ ସଂକଟର ଅବସାନ ହେଲା ।

ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବା ପରେ, ପରଂପରା ଅନୁଯାୟୀ ଆଡ୍‌ଭୋକେଟ୍ ଜେନେରାଲ ଅଶୋକ ଦାସ ମଧ୍ୟ ଇସ୍ତଫା ଦେଲେ । ଓଡ଼ିଶାରେ ଏହି ଝଡ଼ ବହୁଥିବା ସମୟରେ ଦିଲ୍ଲୀରେ କମନ ଓେଲଥ ଆଇନ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ । ଅଶୋକ ହୋଟେଲର ବିରାଟ କନ୍‌ଭେନସନ୍ ହଲ୍‌ରେ ପ୍ରଥମ ଦିନର ଉଦ୍‌ଘାଟନ ଉତ୍ସବ । ଭାରତର ତତ୍‌କାଳୀନ ପ୍ରଧାନ ବିଚାରପତି ଜେ. ସି. ସାହା ସମ୍ମିଳନୀ ଉଦ୍‌ଘାଟନ କରୁଥାନ୍ତି । ସଭାପତି ପୂର୍ବତନ ଆଟର୍ଣ୍ଣି ଜେନେରାଲ ମୋତିଲାଲ ଶୀତଲବାଦ ଏବଂ ସେ ଦିନର ବିଶିଷ୍ଟ ବକ୍ତା ଇଂଲଣ୍ଡର ଲର୍ଡ଼ ଚାନ୍‌ସେଲର୍ ଲର୍ଡ଼ ସାଇମଣ୍ଡ । ଏହି ସମ୍ମିଳନୀରେ ଓଡ଼ିଶାରୁ ଯୋଗ ଦେଇଥାନ୍ତି ଜଷ୍ଟିସ ବାଳକୃଷ୍ଣ ପାତ୍ର; ଜଷ୍ଟିସ ରଙ୍ଗନାଥ ମିଶ୍ର, ଆଇନ ସଚେତକ ଡକ୍ଟର ବି. କେ. ମିଶ୍ର, ଆଡ୍‌ଭୋକେଟ୍ ରାଧାଚରଣ ପଟ୍ଟନାୟକ, ଓ୍ୟାଇ ଏସ. ଏନ୍ ମୂର୍ତ୍ତି, ମିସେସ୍ ଅମୀୟା କୁମାରୀ ପାଢ଼ୀ (ବର୍ତ୍ତମାନ ମିସେସ୍ ଜଷ୍ଟିସ୍ ପାଢ଼ୀ) ଆଇନ କଲେଜ ପ୍ରିନ୍ସିପାଲ ଡକ୍ଟର ସୁନୀଲ ଘୋଷ, ମୁଁ ଓ ଅନ୍ୟ କେତେଜଣ । ମନେ ଅଛି, ସମ୍ମିଳନୀ ଚାଲିଥିବା ସମୟରେ ଦିନେ ସଂଧ୍ୟାରେ ଓଡ଼ିଶାର ସମସ୍ତ ପ୍ରତିନିଧି ଓ କେନ୍ଦ୍ର ବାର୍ କାଉନ୍‌ସିଲ୍‌ର କେତେଜଣ ସଭ୍ୟଙ୍କୁ ଅଶୋକ ହୋଟେଲରେ ଏକ ରାତ୍ରି ଭୋଜନରେ ଚର୍ଚ୍ଚା କରିଥିଲି । ତିନି ଦିନ ପରେ ସମ୍ମିଳନୀ ଶେଷ ହେଲା । ଓଡ଼ିଶାର ବିଶେଷ ପରିସ୍ଥିତି ହେତୁ ଆଇନ ସଚେତକ ଡକ୍ଟର ମିଶ୍ର ଦଶ ତାରିଖ ଦିନ ଭୁବନେଶ୍ୱର ଫେରିଆସିଲେ । ପରଦିନ ମୁଁ ଭୁବନେଶ୍ୱର ଫେରିଲି । ସେଠାରେ ଜଣେ ସ୍ୱତନ୍ତ୍ର ବାର୍ତ୍ତାବହଠାରୁ ଖବର ମିଳିଲା, ନନ୍ଦିନୀ ଦେବୀ (କେନ୍ଦ୍ର ମନ୍ତ୍ରୀ ନନ୍ଦିନୀ ଶତପଥୀ) ତାଙ୍କୁ ଦେଖା କରିବାକୁ ମୋତେ ଅନୁରୋଧ କରିଛନ୍ତି । ନନ୍ଦିନୀ ଦେବୀ ସେ ସମୟରେ ଓଡ଼ିଶା ଆସିଲେ ତାଙ୍କର କଟକସ୍ଥିତ ପୀଠାପୁର ଘରେ ରହନ୍ତି । ମୁଁ କଟକ ଫେରିବା ବାଟରେ ନନ୍ଦିନୀ ଦେବୀଙ୍କୁ ତାଙ୍କ ପୀଠାପୁର ଘରେ ସାକ୍ଷାତ କଲି ।

ନନ୍ଦିନୀ ଦେବୀ ପଚାରିଲେ, "ଖବର କାଗଜରୁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରୀ ହେବା ବିଷୟ ଜାଣିଥିବ । ଆମେ ଚାହୁଁ, ତୁମେ ଆଡ୍‌ଭୋକେଟ ଜେନେରାଲ ଦାୟିତ୍ୱ ଗ୍ରହଣ କରିବ । ଆଜି ଉପରବେଳା ମୁଁ ଓ ମହତାବ ବାବୁ ରାଜ୍ୟପାଳ ଆନସାରୀଙ୍କୁ ସାକ୍ଷାତ କରିବୁ ଏବଂ ଅନ୍ୟାନ୍ୟ ବିଷୟ ମଧ୍ୟରେ ତୁମକୁ ତୁରନ୍ତ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ କରିବାକୁ ଆନସାରୀଙ୍କୁ ପ୍ରସ୍ତାବ ଦେବୁ ।"

ହଠାତ୍ କୌଣସି ଜବାବ୍ ନ ଦେଇ ମୁଁ ପଚାରିଲି, ''ମହତାବ ବାବୁଙ୍କର ଏ ବିଷୟରେ ମତ କ'ଣ ?''

ନନ୍ଦିନୀ ଦେବୀ ଉତ୍ତର ଦେଲେ, ''ତାଙ୍କ ମତରେ ଜଜ୍ ନିଯୁକ୍ତି ବ୍ୟାପାରରେ ତୁମ ପ୍ରତି ଘୋର ଅନ୍ୟାୟ କରାଯାଇଛି । ସେ ଏ ପ୍ରସ୍ତାବରେ ସଂପୂର୍ଣ୍ଣ ସହମତ ।''

ମୁଁ ଜାଣିଥିଲି ନନ୍ଦିନୀ ଶତପଥୀ ସେତେବେଳେ ଓଡ଼ିଶାରେ ପ୍ରଧାନମନ୍ତ୍ରୀଙ୍କ ମୁଖପାତ୍ର ରୂପେ ପରିଚିତ ଏବଂ ସେ ସୁପାରିଶ କଲେ ରାଜ୍ୟପାଳ ନିଶ୍ଚିତ ଭାବରେ ତାଙ୍କ ପ୍ରସ୍ତାବ ଗ୍ରହଣ କରିନେବେ । କିନ୍ତୁ ଏପରି ଦାୟିତ୍ୱ ଏ ପରିସ୍ଥିତିରେ ଗ୍ରହଣ କରିବା ବିଷୟରେ ମନରେ ଆଶଂଙ୍କା ଉଠିଲା । ରାଷ୍ଟ୍ରପତି ଶାସନ କେତେଦିନ ରହିବ - ଆଗାମୀ ନିର୍ବାଚନରେ କିଏ ଜିତିବ, କିଏ ନୂତନ ମୁଖ୍ୟମନ୍ତ୍ରୀ ହେବ, ନୂତନ ପରିସ୍ଥିତିରେ ମୋର ସ୍ଥାୟିତ୍ୱ କେତେ ଦିନ ? ଏ ସବୁ ପ୍ରଶ୍ନରେ ମୁଁ ବିଚଳିତ ହୋଇ ପଡ଼ିଲି । ହଠାତ୍ ଗୋଟାଏ ଉପାୟ ଦିଶିଲା । ମୁଁ ନନ୍ଦିନୀ ଦେବୀଙ୍କୁ କହିଲି, ''ଆଡ଼୍‌ଭୋକେଟ୍ ଜେନେରାଲ କିଏ ହେବ, ଏ ବିଷୟରେ ରାଜ୍ୟପାଳ ଚିଫ୍ ଜଷ୍ଟିସଙ୍କର ମତାମତ ନିଅନ୍ତୁ - ଏହାଦ୍ୱାରା ଏକ ସୁସ୍ଥ ପରଂପରା ସୃଷ୍ଟି ହେବ । ମୋର ଧାରଣା, ମତାମତ ଲୋଡ଼ିଲେ ଚିଫ୍ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ର ନିଶ୍ଚୟ ମୋର ନାମ ସୁପାରିଶ୍ କରିବେ ।'' ନନ୍ଦିନୀ ଶତପଥୀ ମୋର ପରାମର୍ଶ ଗ୍ରହଣ କରିନେଲେ ଏ କଥା ମଧ୍ୟ ମୁଁ ଶୁଣିଲି ଯେ ନନ୍ଦିନୀ ଦେବୀ ଓ ମହତାବ ବାବୁ ଏହି ମର୍ମରେ ରଜ୍ୟପାଳଙ୍କୁ ସୂଚନା ଦେଇଥିଲେ । ପରଦିନ ଉପରବେଳା ଦିଲ୍ଲୀ ଯିବା ପୂର୍ବରୁ ନନ୍ଦିନୀ ଶତପଥୀ ମତେ ଫୋନ୍ କଲେ ''ରାଜନୀତିରେ ତୁମେ ଜଣେ ଅବୋଧ ଶିଶୁ, ଅତି ଅବାସ୍ତବ । ଚିଫ୍ ଜଷ୍ଟିସଙ୍କୁ ପଚରା ହେଲା, ଏବଂ ସେ ଆଡ଼୍‌ଭୋକେଟ୍ ଜେନେରାଲ ପଦ ପାଇଁ ଶ୍ରୀକାନ୍ତ ମହାନ୍ତିଙ୍କ ନାମ ସୁପାରିଶ କରିଛନ୍ତି । ଏତିକି କହି ସେ ଫୋନ୍ ରଖିଦେଲେ ।

ଶ୍ରୀକାନ୍ତ ବାବୁଙ୍କ ମନୋନୟନରେ ମୋ ମନରେ ଦୁଃଖ ନଥିଲା । ସେ ମୋଠାରୁ ବୟସରେ ଅନ୍ତତଃ ପନ୍ଦର ଷୋଳ ବର୍ଷ ବଡ଼ । ସାଂବିଧାନିକ ବିବାଦରେ ତାଙ୍କର ସୀମିତ ଜ୍ଞାନ ଓ ଅନଭିଜ୍ଞତା ସତ୍ତ୍ୱେ ସେ ଥିଲେ ଅତି ସଚ୍ଚୋଟ ମଣିଷ ଓ ନିଷ୍ଠାପର ଅଧିବକ୍ତା । ଏଥି ପୂର୍ବରୁ ମଧ୍ୟ ସେ ହାଇକୋର୍ଟର ଗଭର୍ଣ୍ଣମେଣ୍ଟ ଆଡ଼ଭୋକେଟ୍ ଥିଲେ । ମୋର କେବଳ ମନେ ପଡ଼ିଲା ମହାକବି

କାଳିଦାସଙ୍କ ଉକ୍ତି "ସ୍କନ୍ଧଂ ନ ବାଧତେ ରାଜନ୍, ତବ ବାଧତି ବାଧତେ ।" ଚିଫ୍ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ର ଯେ ମୋର ନାମ ସୁପାରିଶ କଲେ ନାହିଁ, ଏହା ଥିଲା ମୋ ପକ୍ଷରେ ଅଧିକ ପୀଡ଼ା ଦାୟକ । ନନ୍ଦିନୀ ଦେବୀଙ୍କ ସହିତ ମୋର ଆଲୋଚନା ଏବଂ ତାଙ୍କର ଓ ମହତାବ ବାବୁଙ୍କର ରାଜ୍ୟପାଳଙ୍କ ସହିତ ବିଚାର ବିମର୍ଷ ଥିଲା ସଂପୂର୍ଣ୍ଣ ଗୋପନୀୟ । ଏ ବିଷୟ ମୁଁ କେବେ ଚିଫ୍ ଜଷ୍ଟିସ୍‌ଙ୍କ ନିକଟରେ ପ୍ରକାଶ କରି ନଥିଲି । କିନ୍ତୁ ମୁଁ ଯେ କ୍ଷୁବ୍ଧ ହୋଇଥିଲି, ଏହା ନିସଂଦେହରେ ସ୍ୱୀକାର କରୁଛି ।

ନନ୍ଦିନୀ ଦେବୀଙ୍କ ପ୍ରଶ୍ନର ମୁଁ ଯେ ସିଧାସଳଖ ଉତ୍ତର ଦେଇ ନଥିଲି ବା ତାଙ୍କର ପ୍ରସ୍ତାବରେ ବିଶେଷ ଉଲ୍ଲସିତ ନଥିଲି, ଏହାର ଯଥାର୍ଥତା ପ୍ରମାଣିତ ହେବାକୁ ବିଳମ୍ବ ହେଲା ନାହିଁ । ୧୯୭୧ ମାର୍ଚ୍ଚ ମାସରେ ପାର୍ଲିଆମେଣ୍ଟ ନିର୍ବାଚନ ସହିତ ଓଡ଼ିଶାରେ ବିଧାନସଭା ନିର୍ବାଚନ କରାହେଲା । ଏହି ନିର୍ବାଚନରେ କୌଣସି ଦଳ ସଂଖ୍ୟା ଗରିଷ୍ଠତା ହାସଲ କରି ପାରିଲେ ନାହିଁ । ନିର୍ଦ୍ଦଳୀୟ ନେତା ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଦଳ ଓ ଉତ୍କଳ କଂଗ୍ରେସର ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ପ୍ରାୟ ଛ' ମାସ ପରେ ଶ୍ରୀକାନ୍ତ ବାବୁ ତାଙ୍କ ପଦରୁ ବିଦାୟ ନେଲେ ଓ ତାଙ୍କ ସ୍ଥାନରେ ରାମଚନ୍ଦ୍ର ମିଶ୍ର ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ ହେଲେ । ତାଙ୍କ ପରମାୟୁ ମଧ୍ୟ ବର୍ଷଟାଏ ଟପିଲା ନାହିଁ । ମୁଁ ଆଶ୍ୱସ୍ତ ହେଲି ଯେ ଏ ଦାୟିତ୍ୱରୁ ଅଲଗା ରହିବା ବୋଧହୁଏ ବିଧିନିର୍ଦ୍ଦେଶ । କଥାରେ ଅଛି- 'କର୍ତ୍ତା ଯାହା କରନ୍ତି ମଂଗଳ ପାଇଁ ।'

ଚିଫ୍ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ରଙ୍କ ସଂପର୍କରେ ମୁଁ ଯେଉଁ ଧାରଣା ପୋଷଣ କରିଥିଲି, ତାହା ମଧ୍ୟ ସଂପୂର୍ଣ୍ଣ ଭୁଲ ବୋଲି ପରେ ଜଣା ପଡ଼ିଲା । ପରକାଳର କେତେକ ଘଟଣାରୁ ଏହା ପ୍ରମାଣିତ ହୋଇଛି । ୧୯୭୨ ମସିହା ଜୁନ୍ ମାସରେ ଚିଫ୍ ଜଷ୍ଟିସ୍ କଥା ପ୍ରସଂଗରେ ଏହି ଘଟଣାଟି ଉତ୍ଥାପନ କରିଥିଲେ । ସେ ଅବଶ୍ୟ ଜାଣି ନଥିଲେ ଯେ ତାଙ୍କ ସହିତ ରାଜ୍ୟପାଳ ପରାମର୍ଶ କରିବା ପାଇଁ ମୁଁ ସୂଚନା ଦେଇଥିଲି । ସେ କହିଲେ, ରାଜ୍ୟପାଳଙ୍କ ଅଫିସରୁ ତାଙ୍କ ନିକଟକୁ ଚିଠି ଆସିଲା, ଶ୍ରୀକାନ୍ତ ବାବୁଙ୍କୁ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ କଲେ ତାଙ୍କର ଆପତ୍ତି ଅଛି କି ନାହିଁ । କିନ୍ତୁ ଏହି ପଦରେ ନିଯୁକ୍ତି ପାଇଁ ନାମ ସୁପାରିଶ୍ କରିବାକୁ ତାଙ୍କୁ ଅନୁରୋଧ କରାଯାଇ ନଥିଲା । ଶ୍ରୀକାନ୍ତ ବାବୁଙ୍କ ବିରୁଦ୍ଧରେ କୌଣସି ଅଭିମତ ଦେବାକୁ ସେ ଉଚିତ ମନେ କରି

ନଥିଲେ । ପରବର୍ତ୍ତୀ ଅନୁସଂଧାନରୁ ଜାଣିଲି, ନନ୍ଦିନୀ ଦେବୀ ଓ ମହତାବ ବାବୁ ଚିଫ୍ ଜଷ୍ଟିସ୍‌ଙ୍କ ମତାମତ ଲୋଡ଼ିବା ପାଇଁ ରାଜ୍ୟପାଳଙ୍କ ସହିତ ଆଲୋଚନା କରିବା ସମୟରେ ମୋ ନାମ ମଧ୍ୟ ଉତ୍‌ଥାପନ କରିଥିଲେ । ତଦନୁଯାୟୀ ଚିଫ୍ ଜଷ୍ଟିସଙ୍କ ମତାମତ ଲୋଡ଼ିବା ପାଇଁ ରାଜ୍ୟପାଳ ତାଙ୍କ ସେକ୍ରେଟାରୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ସେକ୍ରେଟାରୀ ଏ ସଂକ୍ରାନ୍ତରେ ଆଇନ ବିଭାଗ ସହ ପରାମର୍ଶ କରିଥିଲେ ଏବଂ ନିୟମ ଅନୁଯାୟୀ ଏପରି ପରାମର୍ଶ କରିବା ଯଥାଯୁକ୍ତ । ରାଜ୍ୟପାଳଙ୍କ ସେକ୍ରେଟାରୀ ଓ ଆଇନ ବିଭାଗର ସଂପୃକ୍ତ କର୍ମକର୍ତ୍ତା ଥିଲେ ବୋତଲ-ବଂଧୁ । ଆଇନ ବିଭାଗର କର୍ମକର୍ତ୍ତା ମୋ ପ୍ରତି ଥିଲେ ଅତି ବିମୁଖ । ମୋ ନାମଟା ଯେପରି ବିଚାରର ପରିସରକୁ ନ ଆସେ, ସେଥିପାଇଁ ଜଣେ ଯୋଗ୍ୟ ବ୍ୟକ୍ତିଙ୍କ ନାମ ସୁପାରିଶ କରିବା ପାଇଁ ଅନୁରୋଧ କରିବା ପରିବର୍ତ୍ତେ ଗୋଟିଏ ମାତ୍ର ନିର୍ଦ୍ଦିଷ୍ଟ ନାମ ଚିଫ୍ ଜଷ୍ଟିସ୍‌ଙ୍କୁ ପଠାଯାଇଥିଲା । ରାଜ୍ୟପାଳ ଆନସାରୀଙ୍କ ବିଚାର ବୁଦ୍ଧି ସେତେବେଳେ ସଂପୂର୍ଣ୍ଣ ଅଚଳ । ବୟସାଧିକ୍ୟ ହେତୁ ହେଉ ବା ଅନ୍ୟ କୌଣସି କାରଣରୁ ସେ ସଂପୂର୍ଣ୍ଣ ଜରାଗ୍ରସ୍ତ । ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିଷ୍ପତ୍ତି ନେବା ପାଇଁ ସେ ଅନ୍ୟ ଉପରେ ନିର୍ଭରଶୀଳ । ତାଙ୍କ ପକ୍ଷରେ ଏ ଚକ୍ରାନ୍ତର ରହସ୍ୟ ଭେଦ କରିବା ସଂଭବ ନଥିଲା ।

ରାଜ୍ୟପାଳଙ୍କ ବିଚାର ବୁଦ୍ଧିର ଦାରିଦ୍ର୍ୟ ସଂପର୍କରେ ଅନ୍ୟ ଗୋଟିଏ ଉଦାହରଣ ଦିଆଯାଇପାରେ । ଜାନୁଆରୀ ଏଗାର ତାରିଖରେ ରାଷ୍ଟ୍ରପତି ଶାସନ ଜାରୀ ହୋଇଥିଲା ସତ୍ୟ କିନ୍ତୁ ବିଧାନସଭାକୁ ଭାଙ୍ଗିଦିଆଯାଇନଥିଲା । ସେ ସମୟରେ ଓଡ଼ିଶାର ରାଜନୈତିକ ଦଳମାନଙ୍କ ମଧ୍ୟରେ, ଏପରିକି ପ୍ରତ୍ୟେକ ଦଳ ମଧ୍ୟରେ ଥିବା ବିଭିନ୍ନ ଗୋଷ୍ଠି ମଧ୍ୟରେ ଏପରି ତିକ୍ତ ବିବାଦ ଓ ବୈଷମ୍ୟ ସୃଷ୍ଟି ହୋଇଥାଏ ଯେ ଏ ପରିସ୍ଥିତିରେ କୌଣସି ସୁଦୃଢ଼ ମନ୍ତ୍ରୀମଣ୍ଡଳ ଗଠିତ ହୋଇ ପାରିବାର ଆଦୌ ସଂଭାବନା ନଥାଏ । ଓଡ଼ିଶା ରାଜନୀତିରେ ଘଡ଼ିକେ ଘୋଡ଼ା ଛୁଟୁଥାଏ । ଡକ୍ଟର ମହତାବ ଜନ କଂଗ୍ରେସ ଦଳକୁ ଭାଂଗି ଦେଇ କଂଗ୍ରେସରେ ଯୋଗ ଦେବାକୁ ବ୍ୟାକୁଳତା ପ୍ରକାଶ କରୁଥାନ୍ତି ଏବଂ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ସହ ସୁସଂପର୍କ ପ୍ରତିଷ୍ଠା ପାଇଁ ଆପ୍ରାଣ ଉଦ୍ୟମ କରୁଥାନ୍ତି । ସତୁରୀ ମସିହା ମଇ ମାସରୁ ଶାସକ କଂଗ୍ରେସ ଦଳ ବିଭାଜିତ ହୋଇ ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ 'ଉତ୍କଳ କଂଗ୍ରେସ' ପ୍ରତିଷ୍ଠିତ ହୋଇଥାଏ । ଏସବୁ ବିକ୍ଷିପ୍ତ ଓ ବିଚ୍ଛିନ୍ନ ଗୋଷ୍ଠିମାନଙ୍କ ସମ୍ମିଳିତ ଉଦ୍ୟମରେ ଯେ କୌଣସି

ବିକଳ୍ପ ମନ୍ତ୍ରୀମଣ୍ଡଳ କାର୍ଯ୍ୟକାରୀ ହୋଇ ପାରିବ ନାହିଁ, ଏ ବିଷୟରେ ରାଜ୍ୟପାଳ କାହିଁକି ଭାରତ ସରକାରଙ୍କୁ ବିଧିବଦ୍ଧ ଭାବରେ ଅବଗତ କରାଇଲେ ନାହିଁ, ତାହା ଏକ ବିରାଟ ପ୍ରଶ୍ନବାଚୀ ।

ଯାହାହେଉ ୧୯୭୧ ଜାନୁଆରୀ ୨୩ ତାରିଖରେ ବିଧାନସଭାକୁ ଭାଂଗିଦେବା ପାଇଁ ରାଷ୍ଟ୍ରପତିଙ୍କ ଘୋଷଣା ପ୍ରକାଶ ପାଇଲା । ପାର୍ଲିଆମେଣ୍ଟ ନିର୍ବାଚନ ସହିତ ଓଡ଼ିଶା ବିଧାନ ସଭାକୁ ନିର୍ବାଚନ କରାହେବ ବୋଲି ନିର୍ବାଚନ କମିସନ ବିଜ୍ଞପ୍ତି ପ୍ରକାଶ କଲେ । ଆରମ୍ଭ ହେଲା ନିର୍ବାଚନ ଯୁଦ୍ଧ । ଏ ଯୁଦ୍ଧର ଫଳାଫଳ ଥିଲା ଅତି ବିସ୍ମୟକର । ଡକ୍ଟର ହରେକୃଷ୍ଣ ମହତାବ କଂଗ୍ରେସ ପ୍ରାର୍ଥୀ ଭାବରେ ଦୁଇଟି ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହୋଇଥିଲେ । ବିଜୁ ପଟ୍ଟନାୟକ ଚାରିଗୋଟି ବିଧାନସଭା ମଣ୍ଡଳୀ ଓ ଗୋଟିଏ ଲୋକସଭା ମଣ୍ଡଳୀରୁ ପ୍ରତିଦ୍ୱନ୍ଦିତା କରି ସମସ୍ତ ଆସନରୁ ପରାଜିତ । ଉତ୍କଳ କଂଗ୍ରେସ ପାଇଁ ଏହା ଥିଲା ଦାରୁଣ ବିପର୍ଯ୍ୟୟ । ପୂର୍ବତନ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ, ପୂର୍ବତନ ଉପମୁଖ୍ୟ ମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ, ବିଜୟ କୁମାର ପାଣି, ଦୀନବଂଧୁ ସାହୁ ଓ ସୋସାଲିଷ୍ଟ ନେତା ସୁରେନ୍ଦ୍ର ନାଥ ଦ୍ୱିବେଦୀ ଆଦି ସବୁ କଂଗ୍ରେସ ବିରୋଧୀ ନେତାମାନେ ଇନ୍ଦିରା ହାଓ୍ୱାରେ ଉଡ଼ି ଯାଇଥିଲେ । କିନ୍ତୁ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠତା ହାସଲ କରି ପାରି ନଥିଲେ । ଏକଶହ ଚାଳିଶଟି ଆସନ ମଧ୍ୟରୁ କଂଗ୍ରେସ ଏକାବନ, ଉତ୍କଳ କଂଗ୍ରେସ ବତ୍ରିଶ, ସ୍ୱତନ୍ତ୍ର ଦଳ ଛତ୍ରିଶ ଏବଂ ଝାଡ଼ଖଣ୍ଡ, କମ୍ୟୁନିଷ୍ଟ ଓ ପ୍ରଜା ସୋସାଲିଷ୍ଟ ଦଳର ସ୍ଥାନ ଥିଲା ପ୍ରତ୍ୟେକର ମାତ୍ର ଚାରୋଟି । ବହୁ କନ୍ଦଳ, ଛକାପଂଝା ଓ ମାରପେଂଚ ପରେ ଜଣେ ନିର୍ଦ୍ଦଳୀୟ ନେତା ଶ୍ରୀ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଏପ୍ରିଲ ତିନି ତାରିଖରେ ସ୍ୱତନ୍ତ୍ର, ଉତ୍କଳ କଂଗ୍ରେସ ଓ ଝାଡ଼ଖଣ୍ଡ ଦଳର ଏକ ମିଳିତ ମନ୍ତ୍ରୀମଣ୍ଡଳ ବାସ୍ତରୀ ଜଣ ସଭ୍ୟଙ୍କ ସମର୍ଥନରେ ଗଠିତ ହେଲା । ପରେ ବିଶ୍ୱନାଥ ଦାସ ରାଉରକେଲାରୁ ଏବଂ ବିଜୁ ପଟ୍ଟନାୟକ ଏକ ଉପନିର୍ବାଚନରେ ରାଜନଗରରୁ ବିଧାନସଭାକୁ ନିର୍ବାଚିତ ହେଲେ ।

ବିଶ୍ୱନାଥ ଦାସଙ୍କ କାର୍ଯ୍ୟକାଳ ସୁରୁଖୁରୁରେ ଚାଲିଲା ନାହିଁ । ମିଳିତ ଦଳ ମଧ୍ୟରେ ବିଭେଦର ଉଦ୍‌ବେଳନ ଦଳର ସଂହତିକୁ ବାରବାର ଆଘାତ କଲା । ପ୍ରତିଦ୍ୱନ୍ଦୀମାନଙ୍କର ବିଦ୍ରୋହ ଓ ବିକ୍ଷୋଭରେ ମିଳିତ ମନ୍ତ୍ରୀମଣ୍ଡଳର ମୂଳଦୁଆ ଟହଲିଗଲା । ବିଶେଷତଃ ରାଜନଗର ଉପନିର୍ବାଚନରେ ଜୟଲାଭ କରିବା ପରେ

ବିଜୁ ପଟ୍ଟନାୟକ ବିଶ୍ୱନାଥ ଦାସଙ୍କ ସ୍ଥାନରେ ମୁଖ୍ୟମନ୍ତ୍ରୀ ହେବା ପାଇଁ ଆରମ୍ଭ କରିଦେଲେ ଉତ୍କଟ ସଂଗ୍ରାମ । ଅବସ୍ଥା ଏପରି ହେଲା, ଉତ୍କଳ କଂଗ୍ରେସରୁ କେତେକ ସଭ୍ୟ କଂଗ୍ରେସକୁ ଫେରିଆସିବାକୁ ଉଦ୍ୟମ କଲେ । ପାଂଚୋଟି ନିର୍ବାଚନ ମଣ୍ଡଳୀରେ ପରାଜିତ ନେତାଙ୍କର ଖାମଖିଆଲି ଢ଼ଂଗରେ ବିବ୍ରତ ହୋଇ ଉତ୍କଳ କଂଗ୍ରେସ ନେତୃମଣ୍ଡଳୀରେ କଂଗ୍ରେସ ପ୍ରୀତି ବଢ଼ିବାକୁ ଲାଗିଲା । ଏ ମଧ୍ୟରେ ଉତ୍କଳ କଂଗ୍ରେସର ତିନି ଜଣ ଓ ସ୍ୱତନ୍ତ୍ର ଟିକଟରେ ନିର୍ବାଚିତ ଛ' ଜଣ ବିଧାନସଭା ସଦସ୍ୟ କଂଗ୍ରେସ ଦଳରେ ଯୋଗ ଦେଲେ । ପ୍ରଜା ସୋସାଲିଷ୍ଟ ଦଳ ମଧ୍ୟ କଂଗ୍ରେସରେ ମିଶିଯିବାକୁ ନିର୍ଦ୍ଧାରଣ ନେଲେ । ଜୁନ୍ ନ' ତାରିଖରେ ଉତ୍କଳ କଂଗ୍ରେସକୁ ଭାଂଗି କଂଗ୍ରେସରେ ପୁନର୍ବାର ମିଶିଯିବା ପାଇଁ ଉତ୍କଳ କଂଗ୍ରେସ ଯେଉଁ ପ୍ରସ୍ତାବ ଗ୍ରହଣ କଲେ, ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳର ଅସ୍ତିତ୍ୱ ଉପରେ ତାହାହିଁ ଥିଲା ଶେଷ ପ୍ରତିଘାତ । ଏହି ପ୍ରସ୍ତାବର ନକଲ ପାଇବା ପରେ ବିଶ୍ୱନାଥ ଦାସ ତୁରନ୍ତ ଇସ୍ତଫା ପ୍ରଦାନ କଲେ ଏବଂ ଓଡ଼ିଶା ରାଜନୀତିରେ ଏକ ନାଟକୀୟ ପରିସ୍ଥିତିର ସମାପ୍ତି ଘଟିଲା ।



# ଆଡ୍‌ଭୋକେଟ୍ ଜେନେରାଲ୍

ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବା ପରେ ଉତ୍କଳ କଂଗ୍ରେସର ବହୁ ସଭ୍ୟ ନୀଳମଣି ରାଉତରାୟଙ୍କ ଗହଣରେ କଂଗ୍ରେସରେ ଯୋଗ ଦେଲେ । ରାଉତରାୟ ଭାବିଥିଲେ ତାଙ୍କର ଦୀର୍ଘଦିନର ଅଭିଜ୍ଞତା ଦୃଷ୍ଟିରୁ ତାଙ୍କୁ ଦଳର ନେତା ନିର୍ବାଚିତ କରାଯିବ ଓ ସେ ମୁଖ୍ୟମନ୍ତ୍ରୀ ହେବେ । ଏଥିପାଇଁ ତତ୍‌କାଳୀନ ରାଜ୍ୟପାଳ ସର୍ଦ୍ଦାର ଯୋଗେନ୍ଦ୍ର ସିଂହ ଓ କେନ୍ଦ୍ରରେ ଉମା ଶଙ୍କର ଦୀକ୍ଷିତଙ୍କ ଜରିଆରେ ସେ ନାନା ପ୍ରକାର ଉଦ୍ୟମ କରୁଥିଲେ । କିନ୍ତୁ ସେ ଉଦ୍ୟମ ସଫଳ ହେଲା ନାହିଁ । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ସବୁବେଳେ ନିଜର ଅତି ବିଶ୍ୱସ୍ତ ସହକର୍ମୀମାନଙ୍କୁ ରାଜ୍ୟ ଶାସନ ଦାୟିତ୍ୱ ଅର୍ପଣ କରିଥାନ୍ତି । ସମାଲୋଚକମାନେ କହନ୍ତି, କେବଳ ନିଜ ସ୍ୱାର୍ଥର ସୁରକ୍ଷା ପାଇଁ ସେ ଏପରି କରନ୍ତି । ଯାହାହେଉ ୧୯୭୨ ମସିହା ଜୁନ୍ ବାର ତାରିଖରେ କଂଗ୍ରେସ ଦଳର ବୈଠକ ବସିଲା । କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ନନ୍ଦିନୀ ଶତପଥୀ କଂଗ୍ରେସ ଦଳର ନେତ୍ରୀ ନିର୍ବାଚିତ ହେଲେ । ପନ୍ଦର ତାରିଖ ଦିନ ସକାଳେ ସେ କଟକରେ ପହଂଚିଲେ ଓ ସେ ଦିନ ସେ ରାଜଭବନରେ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେଲେ । ତାଙ୍କ ସହିତ ବିନାୟକ ଆଚାର୍ଯ୍ୟ, ନୀଳମଣି ରାଉତରାୟ ବ୍ରଜମୋହନ ମହାନ୍ତି, ବାଙ୍କ ବିହାରୀ ଦାସ, ଲକ୍ଷ୍ମଣ ମଲ୍ଲିକ ଓ ଗଂଗାଧର ପ୍ରଧାନ କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଶପଥ ନେଇଥିଲେ ।

ନନ୍ଦିନୀ ଶତପଥୀ ସ୍ୱନାମଧନ କବି ଓ ଔପନ୍ୟାସିକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ପ୍ରଥମା କନ୍ୟା । ପାରବାରିକ ପ୍ରଭାବରେ ସେ ପିଲାଦିନୁ ସମାଜବାଦ ପ୍ରତି ଆକୃଷ୍ଟ ଥିଲେ ଏବଂ ଛାତ୍ରାବସ୍ଥାରେ ଛାତ୍ର ଫେଡ଼େରେସନ ଓ ଅନ୍ୟ ପ୍ରଗତିଶୀଳ ବାମପନ୍ଥୀ ଆନ୍ଦୋଳନ ସହିତ ଘନିଷ୍ଠ ଭାବରେ ଜଡ଼ିତ ଥିଲେ । କଲେଜ ଛାଡ଼ିଲା ପରେ କମ୍ୟୁନିଷ୍ଟ ବଂଧୁମାନଙ୍କ ସହ ମତ ପାର୍ଥକ୍ୟ ଓ ବାଦ ବିସମ୍ବାଦ ହେତୁ, ସେ କିଛି ବର୍ଷ ରାଜନୀତିରୁ ଦୂରରେ ରହି ୧୯୬୧ ମସିହାରେ ବିଧିବଦ୍ଧ ଭାବରେ କଂଗ୍ରେସରେ ଯୋଗ ଦେଲେ । ରାଜ୍ୟସଭା ସଦସ୍ୟା ଥିବା ସମୟରେ ଇନ୍ଦିରା ଗାନ୍ଧୀଙ୍କ ସହ ତାଙ୍କର ଘନିଷ୍ଠ ସଂପର୍କ ଗଢ଼ି ଉଠେ ଏବଂ ଇନ୍ଦିରାଙ୍କର ଜଣେ ବିଶ୍ୱସ୍ତ ସହକର୍ମୀ ଭାବରେ ସେ ସର୍ବ ଭାରତୀୟ ସ୍ତରରେ ପରିଚିତ ହୁଅନ୍ତି । ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ପରେ ନନ୍ଦିନୀ ଦେବୀ ପ୍ରଥମେ ଉପମନ୍ତ୍ରୀ ଓ ପରେ ରାଷ୍ଟ୍ରମନ୍ତ୍ରୀ ଦାୟିତ୍ୱ

ଗ୍ରହଣ କରିଥିଲେ । କେନ୍ଦ୍ର ମନ୍ତ୍ରୀ ଭାବରେ ତାଙ୍କର ପ୍ରତିଷ୍ଠା ଓ ସର୍ବ ଭାରତୀୟ ରାଜନୀତିରେ ତାଙ୍କର ଖ୍ୟାତି ଓଡ଼ିଶାର ପୁରୁଣା କଂଗ୍ରେସ ନେତାମାନଙ୍କ ପାଇଁ ଅସହନୀୟ ଥିଲା ଓ ବହୁ କ୍ଷେତ୍ରରେ ତାଙ୍କ ପ୍ରତି ଅସହିଷ୍ଣୁତା ପ୍ରକାଶ ପାଉଥିଲା । ନୀଳମଣି ରାଉତରାୟଙ୍କ ପରି ପୁରୁଖା ଅଭିଜ୍ଞ ନେତା ନ'ତାରିଖ ଜୁନ୍‌ରେ ବିରୋଧୀ ଉତ୍କଳ କଂଗ୍ରେସ' ଛାଡ଼ି କଂଗ୍ରେସ ଦଳରେ ଯୋଗଦେଲେ, ଅଥଚ ବାର ତାରିଖ ଜୁନ୍ ବୈଠକରେ ତାଙ୍କୁ କଂଗ୍ରେସ ଦଳର ନେତା ନିର୍ବାଚନ କରା ନ ଯିବାରୁ ସେ ମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ସତ୍ୟ, କିନ୍ତୁ ସେ ହେଲେ ଅତି କ୍ଷୁବ୍ଧ ଓ ଅସନ୍ତୁଷ୍ଟ ।

ପନ୍ଦର ଜୁନ୍ ସଂଧ୍ୟା ସାତଟା ସମୟରେ ଭୁବନେଶ୍ୱରରୁ ଏକ ଟେଲିଫୋନ୍ ଆସିଲା । ସେ ପଟୁ କହୁଥିଲେ ଚିଫ୍ ସେକ୍ରେଟାରୀ ଜୋନେଜା । ଚିଫ୍ ସେକ୍ରେଟାରୀ ମୋତେ ପଚାରିଲେ, ''ବର୍ତ୍ତମାନ କ୍ୟାବିନେଟ୍ ମିଟିଂରେ ଆପଣଙ୍କୁ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ କରିବା ପାଇଁ ନିଷ୍ପତ୍ତି ନିଆଯାଇଛି । ଆପଣଙ୍କର ଆପତ୍ତି ନାହିଁ ତ ?'' ମୁଁ ଅତି ଅନାସକ୍ତ ଭାବରେ ଉତ୍ତର ଦେଲି ''ନା, ମୋର କୌଣସି ଆପତ୍ତି ନାହିଁ ।''

ଜୋନେଜା କହିଲେ, ''କନ୍‌ଗ୍ରାଚ୍ୟୁଲେସନ୍''

ମୁଁ ଉତ୍ତର ଦେଲି ''ଆନ୍ତରିକ ଧନ୍ୟବାଦ ।''

ପରଦିନ ସକାଳେ ମୋର ବଂଧୁ ତତ୍‌କାଳୀନ ଆଇନ ସଚେତକ ଓ ଅତିରିକ୍ତ ସେକ୍ରେଟାରୀ କିଶୋର ଚନ୍ଦ୍ର ମିଶ୍ରଙ୍କ ଦସ୍ତଖତରେ ମୋର ନିଯୁକ୍ତି ପତ୍ର ଆସି ପହଂଚିଲା । ସେଥିରେ ଲେଖାଥିଲା ''ସମ୍ବିଧାନର ୧୬୫ (୧) ଅନୁଚ୍ଛେଦ ଅନୁଯାୟୀ ଓଡ଼ିଶାର ରାଜ୍ୟପାଳ ହାଇକୋର୍ଟରେ ଆଡ୍‌ଭୋକେଟ୍ ଗଂଗାଧର ରଥଙ୍କୁ ଓଡ଼ିଶା ରାଜ୍ୟର ଆଡ୍‌ଭୋକେଟ୍ ଜେନେରାଲ ରୂପେ ନିଯୁକ୍ତ କରିଛନ୍ତି'' । ୧୯୭୨ ଜୁନ ସତର ତାରିଖରେ ମୁଁ ରାମଚନ୍ଦ୍ର ମିଶ୍ରଙ୍କଠାରୁ କାର୍ଯ୍ୟଭାର ଗ୍ରହଣ କଲି ।

ଷୋଳ ତାରିଖ ସକାଳ ସାଢ଼େ ଛ'ଟାରେ ବ୍ରହ୍ମପୁରରୁ ଗୋଟିଏ ଫୋନ୍ ଆସିଲା । ଫୋନ୍ କରିଥିଲେ ଅବସରପ୍ରାପ୍ତ ବିଚାରପତି ଅଭିମନ୍ୟୁ ମିଶ୍ର, ମୋତେ ଅଭିନନ୍ଦନ ଜଣାଇବା ପାଇଁ । ମୁଁ ତାଙ୍କୁ ଧନ୍ୟବାଦ ଜଣାଇ ପଚାରିଲି, ଏ ନିଷ୍ପତ୍ତି ଗତ ରାତିରେ ନିଆଯାଇଛି, ସେ କେଉଁଠୁ ଜାଣିଲେ ? ଅଭିମନ୍ୟୁ ବାବୁ କହିଲେ, ସେ ପ୍ରତିଦିନ ସକାଳ ଛ'ଟାରେ ମାଡ୍ରାଜ ଷ୍ଟେସନରୁ ପ୍ରଚାରିତ

ଇଂରେଜୀ ସମ୍ବାଦ ଶୁଣନ୍ତି । ଆକାଶବାଣୀ ସମ୍ବାଦ ତାଙ୍କ ଖବରର ଆଧାର । ପରେ ପରେ ସକାଳେ ପ୍ରଚାରିତ ଆକାଶବାଣୀର ସ୍ଥାନୀୟ ସମ୍ବାଦ ଓ ଦିଲ୍ଲୀରୁ ପ୍ରଚାରିତ ଓଡ଼ିଆ, ହିନ୍ଦୀ ଓ ଇଂରେଜୀ ବାର୍ତ୍ତା ପରିବେଷଣରେ ଏ ସମ୍ବାଦଟି ସ୍ଥାନ ପାଇଥିଲା । ତା ପରେ ମୋ ଫୋନ୍‌କୁ ଆଉ ବିଶ୍ରାମ ମିଳିଲା ନାହିଁ । ଦିନ ତମାମ୍ ବିଭିନ୍ନ ବନ୍ଧୁ ଓ ଶୁଭାକାଂକ୍ଷୀମାନଙ୍କ ଠାରୁ ଶୁଭେଚ୍ଛା ବା ଶୁଭାଶିଷ । ନନ୍ଦିନୀ ଦେବୀ ଦିଲ୍ଲୀରୁ ଆସି ଭୁବନେଶ୍ୱର ସରକାରୀ ଗେଷ୍ଟ ହାଉସର ଗୋଟିଏ ସୁଇଟ୍‌ରେ ରହୁଥାଆନ୍ତି । ପ୍ରଥମ ସୁଯୋଗରେ ଗେଷ୍ଟ ହାଉସକୁ ଫୋନ୍ କରି ମୁଖ୍ୟମନ୍ତ୍ରୀଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଇଲି । କଟକରୁ ଚିଫ୍ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ର, ଅବସରପ୍ରାପ୍ତ ବିଚାରପତି ରାଜ କିଶୋର ଦାସ, ଓ ବହୁ ବିଶିଷ୍ଟ ଆଡ୍‌ଭୋକେଟ୍ ବନ୍ଧୁ ଶୁଭେଚ୍ଛା ଜଣାଇଲେ । ସକାଳ ଦଶଟାରେ ଫୋନ୍‌ରେ ଆସିଲା ମୋର ବିଶେଷ ଶୁଭାକାଂକ୍ଷୀ ସମାଜ ସଂପାଦକ ଡକ୍ଟର ରାଧାନାଥ ରଥଙ୍କ ଆଶୀର୍ବାଦ । ଦିନ ଚାରିଟାବେଳେ ଫୋନ୍ କଲେ ପ୍ରଜାତନ୍ତ୍ର ଅଫିସରୁ ଡକ୍ଟର ହରେକୃଷ୍ଣ ମହତାବ । ପରେ ପରେ ମୋର ପୂର୍ବତନ ସହକର୍ମୀ ତତ୍କାଳୀନ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ନବ କୁମାର ଦାସ, ଷ୍ଟାଣ୍ଡିଂ କାଉନସେଲ ଗୋପାଳ ବଲ୍ଲଭ ପଟ୍ଟନାୟକ ଓ ଆଡ଼ିସନାଲ ଷ୍ଟାଣ୍ଡିଂ କାଉନସେଲ ଆର. କେ. ପାତ୍ର ଆମ ଘରକୁ ଆସିଲେ ଶୁଭେଚ୍ଛାର ସଂଭାର ଧରି । ଆମ୍ଭେମାନେ ଏକତ୍ର ବସି କଫି ପାନ କଲୁ । ନବ ବାବୁ ଏ ମଧ୍ୟରେ ୧୯୭୫ ରୁ ୧୯୮୧ ମସିହା ପର୍ଯ୍ୟନ୍ତ ଜଜ୍ ପଦରେ ରହି ଅବସର ନେଇଛନ୍ତି । ଗୋପାଳ ବଲ୍ଲଭ ପଟ୍ଟନାୟକ ଓ ଆର. କେ. ପାତ୍ର ବର୍ତ୍ତମାନ ଓଡ଼ିଶା ହାଇକୋର୍ଟର ମାନ୍ୟବର ବିଚାରପତି ।

ସଂଧ୍ୟାରେ ଆଇନ ସଚେତକ କିଶୋର ଚନ୍ଦ୍ର ମିଶ୍ରଙ୍କ ଠାରୁ ଶୁଣିଲି, ମୁଖ୍ୟମନ୍ତ୍ରୀଙ୍କ ସୂଚନା ଅନୁଯାୟୀ ରାଜସ୍ୱ ମନ୍ତ୍ରୀ ବ୍ରଜ ମୋହନ ମହାନ୍ତି ଓ ଅର୍ଥମନ୍ତ୍ରୀ ବାଙ୍କ ବିହାରୀ ଦାସ ଆଡ୍‌ଭୋକେଟ ଜେନେରାଲ ପଦ ପାଇଁ ପ୍ରଥମ କ୍ୟାବିନେଟ୍ ବୈଠକରେ ମୋ ନାମ ପ୍ରସ୍ତାବ କରିଥିଲେ ଓ କ୍ୟାବିନେଟ ତାହା ଗ୍ରହଣ କରିଥିଲେ । ସରକାରୀ କାର୍ଯ୍ୟ-ନିର୍ବାହ ନିୟମାବଳୀରେ ବ୍ୟବସ୍ଥା ଅଛି ଯେ କ୍ୟାବିନେଟ୍ ପ୍ରଥମ ବୈଠକରେ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତି ସଂପର୍କରେ ନିର୍ଦ୍ଧାରଣ ନେବେ, ଅଥଚ ଆଜିକାଲି ଏ ନିୟମର ବ୍ୟତିକ୍ରମ କରାଯାଉଛି । ଏହି ସମୟରେ ଆସି ପହଂଚିଲେ ମୋର ଅତି ସମ୍ମାନନୀୟ ଅଧ୍ୟାପକ ଡକ୍ଟର ସଦାଶିବ ମିଶ୍ର । ମୁଁ ଥିଲି ସଦାଶିବ ବାବୁଙ୍କର ଅନ୍ୟତମ

ପ୍ରିୟ ଛାତ୍ର । ଷଷ୍ଠ ଦଶକରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଭାଇସ-ଚାନସେଲାର ଥିବା ସମୟରେ ମୁଁ ଥିଲି ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ । ହାଇକୋର୍ଟରେ ବିଶ୍ୱବିଦ୍ୟାଳୟ ବିରୁଦ୍ଧରେ ଆଗତ ସମସ୍ତ ମାଲିମୋକଦ୍ଦମାରେ ମୁଁ ଥିଲି ତାଙ୍କର ଅଧିବକ୍ତା । ମୋ ସଂପର୍କରେ ସମସ୍ତ କଥା ତାଙ୍କୁ ଜଣା ଅଧିକେ ଜଣାଥିଲା । ମତେ ଶୁଭେଚ୍ଛା ଜଣାଇବାକୁ ଯାଇ ଡକ୍ଟର ମିଶ୍ର କହିଲେ ''ହାଇକୋର୍ଟ ଜଜ୍‌ଠାରୁ ଆଡ୍‌ଭୋକେଟ ଜେନେରାଲ ପଦ ତୁମ ପାଇଁ ଅଧିକ ମର୍ଯ୍ୟାଦାଜନକ ।'' ତାଙ୍କ କଥା ଶୁଣି ଅତୀତର ବହୁ ଘଟଣା ଆଖି ଆଗରେ ନାଚିଗଲା । ମୁଁ କହିଲି ''ଏ ତ ଅଭିନନ୍ଦନ ନୁହେ, ମୋ ପାଇଁ ଏକ ଆଶୀର୍ବାଦ ।'' ସଂଧ୍ୟା ଆଠଟା ସମୟରେ ମାଡ୍ରାସରୁ ଫୋନ୍ କଲେ ଅବସରପ୍ରାପ୍ତ ମୁଖ୍ୟ ବିଚାରପତି ଓ ରେଲ୍‌ୱେ ଟ୍ରାଇବ୍ୟୁନାଲର ତତ୍‌କାଳୀନ ସଦସ୍ୟ ଜଷ୍ଟିସ ସତ୍ୟଭୂଷଣ ବର୍ମନ୍ । ଏମାନଙ୍କର ଶୁଭେଚ୍ଛାରେ ଯେଉଁ ଆନ୍ତରିକତା ଥିଲା, ମୁଁ ସେଥିରେ ଅଭିଭୂତ ହୋଇ ପଡ଼ିଲି ଏବଂ କେଉଁ ଭାବରେ କେଉଁ ଭାଷାରେ ସେମାନଙ୍କୁ ମୋର କୃତଜ୍ଞତା ଜଣାଇବି, ତାହା ଚିନ୍ତା କରି ପାରିଲି ନାହିଁ ।

ସେ ବର୍ଷ ଖରାଛୁଟି ପରେ ହାଇକୋର୍ଟ ଖୋଲିଲା ଜୁନ୍ ତୃତୀୟ ସପ୍ତାହରେ । କୋର୍ଟରେ ପହଂଚିବା ପରେ ବଂଧୁମାନଙ୍କର ସେଇ ଆଦର -ସଂଭାଷଣ । କିନ୍ତୁ କାମରେ କୌଣସି ଅସୁବିଧା ଦେଖା ଦେଇନଥିଲା । ଆଡ୍‌ଭୋକେଟ୍ ଜେନେରାଲ୍ ଅଫିସର ସବୁ କାର୍ଯ୍ୟ ମତେ ଟିକ୍‌ନିଖି ଜଣାଥିଲା । ୧୯୫୯ ଫେବ୍ରୁଆରୀରୁ ୧୯୬୯ ସେପ୍ଟେମ୍ବର ପର୍ଯ୍ୟନ୍ତ ମୁଁ ପ୍ରଥମେ ଷ୍ଟାଣ୍ଡିଂ କାଉନସେଲ ଓ ପରେ ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ ଭାବରେ ଏହି ଅଫିସ ସହ ସଂଶ୍ଳିଷ୍ଟ ଥିଲି । ସେ ସମୟରେ ଆଡ୍‌ଭୋକେଟ ଜେନେରାଲ୍‌ଙ୍କ ମାତ୍ର ଦୁଇଜଣ ସହକାରୀ ଥିଲେ, ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଓ ଷ୍ଟାଣ୍ଡିଂ କାଉନସେଲ୍ । ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ଥିବା ସମୟରେ ସବୁ ପ୍ରକାରର କେସ୍ କରିବା ପାଇଁ ସୁଯୋଗ ମିଳୁଥିଲା । ବିଶେଷତଃ ଆଡ଼ଭୋକେଟ୍ ଜେନେରାଲ ଦୀନବଂଧୁ ସାହୁ ବହୁ ସମୟରେ ଅସୁସ୍ଥତା ହେତୁ ବା ରାଜନୈତିକ ବ୍ୟସ୍ତତା ହେତୁ ହେଉ, କୋର୍ଟ କାର୍ଯ୍ୟ ପ୍ରତି ବିଶେଷ ଧ୍ୟାନ ଦେଇ ପାରୁ ନଥିଲେ । ୧୯୬୭ ମସିହାରେ ଅଶୋକ ବାବୁ ଦାୟିତ୍ୱ ନେବା ପରେ, ସେ ମଧ୍ୟ ଖାନ୍ନା କମିସନ୍ ଓ ଅନ୍ୟାନ୍ୟ କାର୍ଯ୍ୟ ହେତୁ ଅଧିକାଂଶ ଦିନ ହାଇକୋର୍ଟରୁ ଅନୁପସ୍ଥିତ ରହୁଥିଲେ । ଏଣୁ ସବୁ ବଡ଼ ବଡ଼ କେସ୍‌ର ପରିଚାଳନା ଦାୟିତ୍ୱ ମୋ ଉପରେ ପଡୁଥିଲା । ଏହି ଅଭିଜ୍ଞତା ବାସ୍ତରୀ ମସିହାର ନୂତନ ପରିସ୍ଥିତିରେ ମୋର ସହାୟକ ହେଲା ।

କେବଳ ଅଫିସର ପ୍ରଶାସନିକ କାର୍ଯ୍ୟ ନୁହେ, କୋର୍ଟ କାର୍ଯ୍ୟ ପରିଚାଳନାରେ ମଧ୍ୟ ମୁଁ କୌଣସି ଅସୁବିଧା ଅନୁଭବ କରି ନଥିଲି ।

ତାରିଖଟା ଠିକ୍ ମନେ ନାହିଁ, ୧୯୭୨ ମସିହା ପ୍ରଥମ ସପ୍ତାହରେ, ଗୋଟାଏ ବେଳର ବିଶ୍ରାନ୍ତି ସମୟରେ, ଦିନେ ଚିଫ୍ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ର ମୋତେ ଡକାଇ ପଠାଇଲେ । ବାର୍‌ରେ ଯୋଗ ଦେବା ଦିନଠାରୁ ଗତିକୃଷ୍ଣ ବାବୁଙ୍କ ସହ ମୋର ସୁସଂପର୍କ ଥିଲା । ମୋର ଧାରଣା, ଏହି ସୁସଂପର୍କର ଭିତ୍ତି ହେଲା ପରସ୍ପର ପ୍ରତି ସମ୍ମାନ ଓ ସମାଦର । ଜଣେ ଅଧିବକ୍ତା ଭାବରେ ଗତିବାବୁଙ୍କର କର୍ମନିଷ୍ଠା, ଦକ୍ଷତା ଓ ଖ୍ୟାତି ଏବଂ ବିଚାରକ ଭାବରେ ତାଙ୍କର ନିଷ୍ଠା ଓ ସାଧୁତା ଆଦର୍ଶସ୍ଥାନୀୟ ଥିଲା । ବିଳମ୍ବରେ ବାର୍‌ରେ ଯୋଗ ଦେଲେ ମଧ୍ୟ ମୋର ଆଇନ ତତ୍ତ୍ୱର ବିଶ୍ଳେଷଣ, ଭାଷା ବିନ୍ୟାସ ଓ ଉପସ୍ଥାପନା ଶୈଳୀକୁ ସେ ପସନ୍ଦ କରୁଥିଲେ । ସେ ଆଡଭୋକେଟ୍ ଥିବା ସମୟରେ ସୁବିଧା ଅସୁବିଧାରେ ମୁଁ ତାଙ୍କ ସହ ପରାମର୍ଶ କରୁଥିଲି । ଯାହାହେଉ, କାହିଁକି ଡକାଇ ପଠାଇଛନ୍ତି, ସେଥିପାଇଁ ଉତ୍କଣ୍ଠାର ସହ ମୁଁ ତାଙ୍କ ବିଶ୍ରାମ ପ୍ରକୋଷ୍ଠରେ ପ୍ରବେଶ କଲି । ସାମାନ୍ୟ ଅବତାରଣା ପରେ ଚିଫ୍ ଜଷ୍ଟିସ କହିଲେ, "ହାଇକୋର୍ଟର ଜଣେ ସ୍ଥାୟୀ ବିଚାରପତି ପଦ ଅର୍ପଣ କରିବା ପାଇଁ ମୁଁ ଆପଣଙ୍କୁ ଡକାଇଛି । ମୁଁ ଆପଣଙ୍କ ନାମ ସୁପାରିଶ କରିବାକୁ ଚାହେଁ । ଆଶାକରେ ଆପଣଙ୍କର ଆପତ୍ତି ନାହିଁ ।"

ମୁଁ ଅବିଳମ୍ବେ ଉତ୍ତର ଦେଲି "କ୍ଷମା କରିବେ, ମୁଁ ଏ ଦାୟିତ୍ୱ ନେବାକୁ ପ୍ରସ୍ତୁତ ନୁହେ ।"

ଚିଫ୍ ଜଷ୍ଟିସ ସ୍ତମ୍ଭୀଭୂତ ହୋଇଗଲେ । ଏପରି ଉତ୍ତର ସେ ଆଶା କରୁ ନଥିଲେ । ତା ପରେ ମୋତେ ସେ ବୁଝାଇବାକୁ ଚେଷ୍ଟା କଲେ । କିନ୍ତୁ ମୋର ସେହି ଗୋଟିଏ ଉତ୍ତର । ଚିଫ୍ ଜଷ୍ଟିସ ଭାବିଲେ, ବୋଧହୁଏ ତାଙ୍କ ବିରୁଦ୍ଧରେ ମୋର କୌଣସି ରାଗ ବା ଅଭିମାନ ଅଛି । ଅତୀତରେ କାହିଁକି ସେ ମୋର ନାମ ବିଚାରକୁ ନେଇ ନାହାନ୍ତି, ତାହାହିଁ ବୋଧହୁଏ ଏ ଅଭିମାନର କାରଣ । ତାପରେ ସେ ବିଭିନ୍ନ ସମୟରେ ନିଜର ନିଷ୍ପତ୍ତି ସଂପର୍କରେ କୈଫିୟତ ଦେବାକୁ ଆରମ୍ଭ କଲେ । ଏତିକିବେଳେ ସେ କହିଲେ ୧୯୭୧ ମସିହାରେ କେଉଁ ପରିସ୍ଥିତିରେ ଆଡ୍‌ଭୋକେଟ୍ ଜେନେରାଲ ପଦ ପାଇଁ ମୋର ନାମ ସୁପାରିଶ କରିବାକୁ ସୁଯୋଗ ପାଇଲେ ନାହିଁ ..ଇତ୍ୟାଦି । ଅଭିମାନ ଯେ ମୋର ନଥିଲା, ତା ନୁହେ । କିନ୍ତୁ ଚିଫ୍ ଜଷ୍ଟିସ୍‌ଙ୍କୁ ସ୍ପଷ୍ଟ କହିଲି "ଏ ନିଷ୍ପତ୍ତି

ମୁଁ ବହୁ ଦିନ ଆଗରୁ ନେଇଛି । ଆପଣଙ୍କ ବିରୁଦ୍ଧରେ ମୋର କୌଣସି ଅଭିଯୋଗ ନାହିଁ ।'' ଡକ୍ଟର ସଦାଶିବ ମିଶ୍ରଙ୍କ ଉକ୍ତି ମନେ ପଡ଼ିଲା । ମୁଁ ପୁଣି କହିଲି, ''ମୁଁ ମନେ କରୁନି ଯେ ବର୍ତ୍ତମାନ ଯେଉଁ ଦାୟିତ୍ୱରେ ଅଛି, ତାହା କମ୍ ମର୍ଯ୍ୟାଦାଜନକ ।''

ଆଲୋଚନା ଆଉ ଆଗେଇ ପାରିଲା ନାହିଁ । ପରିଶେଷରେ ସେ ଏତିକି କହିଲେ ''ଆପଣ ସ୍ତ୍ରୀଙ୍କ ସହ ପରାମର୍ଶ କରନ୍ତୁ, ଅନ୍ୟ ଶୁଭାକାଂକ୍ଷୀମାନଙ୍କ ସହ ଆଲୋଚନା କରନ୍ତୁ । ଧୀର ସ୍ଥିର ଭାବରେ ବିଚାର କରି ଆସନ୍ତା କାଲି ଆପଣଙ୍କର ନିଷ୍ପତ୍ତି ମୋତେ କହିବେ ।''

ସତ କହିବାକୁ ହେଲେ, ଧୀର ସ୍ଥିର ଭାବରେ ବିଚାର କରିବା ପାଇଁ ମୋର ମନୋବୃତ୍ତି ନଥିଲା । ମନରେ କେବଳ ଉଂକି ମାରୁଥିଲା ଚାରି ବର୍ଷ ପୂର୍ବର ନିର୍ଣ୍ଣୟ ''ବୃତ୍ତି ଆରମ୍ଭ କରିଥିଲି ଅଧିବକ୍ତା ଭାବରେ, ଶେଷ ପର୍ଯ୍ୟନ୍ତ ସେହି ଅଧିବକ୍ତା ହିଁ ରହିବି । ପୁଣି ଥରେ ଯଦି ଜଜ୍ ପଦ ପାଇଁ ସୁଯୋଗ ଆସେ ଏବଂ ମୁଁ ଯଦି ସେ ସୁଯୋଗକୁ ଦୃଢ଼ତାର ସହ ପ୍ରତ୍ୟାଖ୍ୟାନ କରିପାରେ, ତାହାହେଲେ ମୁଁ ହେବି ସବୁଠାରୁ ସୁଖୀ ମଣିଷ ।'' ମୁଁ କେବଳ ନିରୁପମାଙ୍କୁ ଖବରଟା ଦେଲି । କିନ୍ତୁ ପୂର୍ବ ନିଷ୍ପତ୍ତିରୁ ଓହରି ଯିବାର ପ୍ରଶ୍ନ ଉଠୁ ନଥିଲା । ପର ଦିନ ଅପ୍ରୀତିକର ପରିସ୍ଥିତିରୁ ଦୂରରେ ରହିବା ପାଇଁ ମୋର ନାସ୍ତିବାଚକ ନିଷ୍ପତ୍ତି ଫୋନ୍‌ରେ ଚିଫ୍ ଜଷ୍ଟିସଙ୍କୁ ଜଣାଇ ଦେଲି, ଅବଶ୍ୟ ଅତି ବିନୟ ସହ ।

ମୋର ମନେ ହେଲା, ମୋ ନିଷ୍ପତ୍ତିରେ ଗତିକୃଷ୍ଣ ବାବୁ କ୍ଷୁବ୍ଧ । ତାର ଯଥାର୍ଥତା ସେ ଗ୍ରହଣ କରି ପାରୁନାହାନ୍ତି । ମୁଁ ନୀରବ ରହିଲି । ପ୍ରାୟ ଦୁଇ ବର୍ଷ ପରେ ମୁଁ ଅନୁଭବ କଲି, ସେ ତାଙ୍କର ମତ ପରିବର୍ତ୍ତନ କରିଅଛନ୍ତି । ସେ ମୋତେ ଓ ଅନ୍ୟ ବଂଧୁମାନଙ୍କୁ କହିଲେ, ମୋର ନିର୍ଦ୍ଧାରଣ ଠିକ୍ । ଏ ମଧ୍ୟରେ ବାଇଶି ବର୍ଷ ଗତ ହୋଇ ଗଲାଣି । ଗତିକୃଷ୍ଣ ବାବୁ ଏବେ ମଧ୍ୟ କହନ୍ତି, ମୋର ନିଷ୍ପତ୍ତି ଠିକ୍ । ଜଷ୍ଟିସ କୁଞ୍ଜ ବିହାରୀ ପଣ୍ଡା ମୋତେ କହିଲେ, ''ଓଡ଼ିଶାରେ ସବୁ ଆଡ୍‌ଭୋକେଟ ଏ ପଦ ପାଇଁ ବ୍ୟାକୁଳ । ଆପଣ ପ୍ରତ୍ୟାଖ୍ୟାନ କରି ଇତିହାସ ସୃଷ୍ଟି କଲେ ।'' ମୁଁ କେବଳ ଏତିକି ଉତ୍ତର ଦେଲି ''ଇତିହାସରେ ପଦଚିହ୍ନ ରଖିବା ପାଇଁ ମୋର ସୌଭାଗ୍ୟ କାହିଁ ?''



# କାଠଗଡ଼ାରେ ରାଜମୁକୁଟ

ମୁଁ ଆଡ୍‌ଭୋକେଟ ଜେନେରାଲ ଦାୟିତ୍ୱ ନେବାର ପ୍ରାୟ ଦୁଇ ମାସ ପରେ ଡବଲ ସିଲରେ ସରକାରଙ୍କ ଠାରୁ ଗୋଟିଏ ଗୋପନୀୟ ଫାଇଲ ଆସିଲା । କେନ୍ଦୁ ପତ୍ର କାରବାର ନେଇ ପୂର୍ବ ସରକାର କ'ଣ ଦୁର୍ନୀତି କରିଛନ୍ତି, ତା'ର ସବିଶେଷ ସମୀକ୍ଷା କରି ରିପୋର୍ଟ ଦେବା ପାଇଁ ଅନୁରୋଧ । ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଓ ଅର୍ଥମନ୍ତ୍ରୀ ବାଙ୍କ ବିହାରୀ ଦାସ ଫୋନ୍ କରି ବିଷୟର ଗୁରୁତ୍ୱ ସଂପର୍କରେ ସୂଚନା ଦେଲେ । ମୁଁ ଅର୍ଥମନ୍ତ୍ରୀଙ୍କୁ ସ୍ପଷ୍ଟ କହିଲି, କେନ୍ଦୁପତ୍ର କାରବାର ସଂକ୍ରାନ୍ତରେ ଗତ ଦୁଇ ତିନି ବର୍ଷର ଫାଇଲ ପରୀକ୍ଷା ନ କରି କୌଣସି ନିର୍ଦ୍ଦିଷ୍ଟ ମତାମତ ଦେବା ସମ୍ଭବ ନୁହେ । ଏହା ପରେ ସେ ବିଭାଗର ଜଣେ ଅଣ୍ଡର ସେକ୍ରେଟାରୀ ଫାଇଲ ଗୁଡିକ ଆଣି ମୋ ଅଫିସରେ ଦାଖଲ କଲେ । ଏଥି ପୂର୍ବରୁ ବର୍ଷେ ଧରି ଖବର କାଗଜରେ କେନ୍ଦୁପତ୍ର ବ୍ୟାପାରରେ ସରକାରୀ ଦୁର୍ନୀତି ସଂପର୍କରେ ବାରମ୍ବାର ସମ୍ବାଦ ଓ ସମାଲୋଚନା ପ୍ରକାଶ ପାଉଥାଏ । ବସ୍ତୁତଃ ୧୯୭୧ ଜାନୁଆରୀ ଛ' ତାରିଖରେ ଉପମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ସ୍ୱତନ୍ତ୍ର ଦଳ ନେତାମାନଙ୍କ ବିରୁଦ୍ଧରେ ଏ ସଂପର୍କରେ ଗୁରୁତର ଅଭିଯୋଗ କରି ଆର. ଏନ୍. ସିଂହଦେଓଙ୍କ ମନ୍ତ୍ରୀମଣ୍ଡଳରୁ ଜନ କଂଗ୍ରେସ ଦଳର ସମର୍ଥନ ପ୍ରତ୍ୟାହାର କରି ନେଇଥିଲେ । ଏହି ରାଜନୈତିକ ବାଦ ବିସମ୍ବାଦ ଦ୍ୱାରା ପ୍ରଭାବିତ ନ ହୋଇ କେବଳ ସରକାରୀ କାଗଜ ପତ୍ରରୁ ସଂଗୃହୀତ ତଥ୍ୟ ଉପରେ ଏକ ନିଷ୍ପତ୍ତି ମୂଳକ ସିଦ୍ଧାନ୍ତରେ ଉପନୀତ ହେବା ପାଇଁ ମାସଟାଏ ସମୟ ଲାଗିଲା । ଷାଠିଏ ପୃଷ୍ଠାର ଗୋଟିଏ ରିପୋର୍ଟ ପ୍ରସ୍ତୁତ କରି ଦୁଇକିତା ମୁଖ୍ୟମନ୍ତ୍ରୀଙ୍କ ଅଫିସକୁ ଓ ଗୋଟିଏ ଚିଫ୍ ସେକ୍ରେଟାରୀଙ୍କ ନିକଟକୁ ପଠାଇଦେଲି । ମୁଁ ମତାମତ ଦେଇଥିଲି ଯେ ସଂପୃକ୍ତ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ଅଭିଯୋଗ ଭିତ୍ତିହୀନ ନୁହେ ଏବଂ ଏହାର ପ୍ରାଥମିକ ସତ୍ୟାସତ୍ୟ ଅଛି । କିନ୍ତୁ ଅଭିଯୋଗର ଗୁରୁତ୍ୱ ଦୃଷ୍ଟିରୁ ସତ୍ୟାସତ୍ୟ ନିରୂପଣ ପାଇଁ ଏକ କମିସନ ବସାଇ ବିଧିବଦ୍ଧ ତଦନ୍ତ ହେବା ଆବଶ୍ୟକ ।

କିଛି ଦିନ ପରେ ଚିଫ୍ ସେକ୍ରେଟାରୀ ଜୋନେଜା ଫୋନ୍ କଲେ ଯେ ମୋର ରିପୋର୍ଟ ବେଶ୍ ତଥ୍ୟମୂଳକ ହୋଇଛି ଏବଂ ତାହା କ୍ୟାବିନେଟ୍‌ରେ ପେଶ୍ କରାଯିବ । ଏହି ସମୟରେ କବି ସୀତାକାନ୍ତ ମହାପାତ୍ର ଆଇ.ଏ.ଏସ ନନ୍ଦିନୀ ଦେବୀଙ୍କ ସେକ୍ରେଟାରୀ ଭାବରେ କାର୍ଯ୍ୟ କରୁଥିଲେ । ଦିନେ

ସେକ୍ରେଟାରିଏଟ୍‌ରେ ହଠାତ୍ ଦେଖାହେଲା । ମହାପାତ୍ର କହିଲେ ''ଆପଣଙ୍କର ରିପୋର୍ଟ କେବଳ ତଥ୍ୟଭିତ୍ତିକ ନୁହେ, ଏହା ଏକ ଉଚ୍ଚ କୋଟୀର ସାହିତ୍ୟକୃତି 'ଲିଟରାରୀ ମାଷ୍ଟର ପିସ' ।'' ମୁଁ ମନେ ମନେ ଖୁସି ହେଲି ସତ୍ୟ, କିନ୍ତୁ ସୀତାକାନ୍ତ ମହାପାତ୍ରଙ୍କୁ ପଚାରିଲି ''କବିଦୃଷ୍ଟିରେ ଆପଣଙ୍କର ମୂଲ୍ୟାୟନ ନୁହେ, ପ୍ରଶାସନିକ ଦୃଷ୍ଟିରୁ ଆପଣଙ୍କର ମତାମତ କହିଲେ ଭଲ ହେବ ।'' ମହାପାତ୍ରେ ପ୍ରଶ୍ନର ସିଧାସଳଖ ଉତ୍ତର ନ ଦେଇ କହିଲେ, ''ଖୁବ୍ ଶୀଘ୍ର ଏହା କ୍ୟାବିନେଟରେ ପେଶ୍ କରାଯାଉଛି ।'' କାର୍ଯ୍ୟତଃ ରିପୋର୍ଟଟି କ୍ୟାବିନେଟ୍‌ରେ ପେଶ କରାଗଲା ଏବଂ ଆର.ଏନ୍. ସିଂହଦେଓ ଓ ଅନ୍ୟ ଦୁଇଜଣ ମନ୍ତ୍ରୀଙ୍କ ବିରୁଦ୍ଧରେ ୧୯୫୨ ମସିହାର କମିସନ ଅଫ ଇନକ୍ୱାରୀ ଆକ୍ଟ ଅନୁଯାୟୀ ଏକ କମିସନ ବସାଇବାକୁ ସ୍ଥିର ହେଲା ।

କିଏ କମିସନ୍ ଦାୟିତ୍ୱ ନେବେ, ଉଚ୍ଚତମ ସରକାରୀ ମହଲ ଏଥିପାଇଁ ମୋ ସହିତ ଆଲୋଚନା କଲେ । ମୁଁ ସୁପାରିଶ କଲି ଯେ ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ଗୁରୁତର ଦୁର୍ନୀତି ଅଭିଯୋଗ ହୋଇଥିବା ଦୃଷ୍ଟିରୁ ଜନ ସାଧାରଣଙ୍କ ସଂଦେହ ମୋଚନ ପାଇଁ ଜଣେ ଅବସର ପ୍ରାପ୍ତ ସୁପ୍ରିମକୋର୍ଟ ଜଜ୍‌ଙ୍କୁ କମିସନ ନିଯୁକ୍ତ କରାଯିବା ଉଚିତ । ଏଥି ପୂର୍ବରୁ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ତଦନ୍ତ ପାଇଁ ତତ୍କାଳୀନ ଦିଲ୍ଲୀ ହାଇକୋର୍ଟ ଜଜ୍ ଜଷ୍ଟିସ୍ ଏଚ. ଆର. ଖାନ୍ନାଙ୍କୁ କମିସନ ନିଯୁକ୍ତ କରାଯାଇଥିଲା । ଖାନ୍ନା କମିସନ୍‌ଙ୍କ ତଦନ୍ତ ଥିଲା ''ବହ୍ୱାଡ଼ମ୍ବରେ ଲଘୁକ୍ରିୟା'' । ବିଜୁ ବାବୁ ସରକାରୀ କାର୍ଯ୍ୟ ନିର୍ବାହରେ କେତେକ ତ୍ରୁଟି କରିଛନ୍ତି ବୋଲି ଖାନ୍ନା ରିପୋର୍ଟ ଦେଇଥିଲେ । ମୁଁ ସରକାରଙ୍କୁ କହିଲି ଯେ ପଂଜାବ ମୁଖ୍ୟମନ୍ତ୍ରୀ ସର୍ଦ୍ଦାର ପ୍ରତାପ ସିଂ କୈରନ୍‌ଙ୍କ କ୍ଷେତ୍ରରେ ସୁପ୍ରିମ କୋର୍ଟର ଅବସରପ୍ରାପ୍ତ ପ୍ରଧାନ ବିଚାରପତି ସୁଧୀରଂଜନ ଦାସ, କାଶ୍ମୀର ମୁଖ୍ୟମନ୍ତ୍ରୀ ବକ୍ସି ଗୁଲାମ ମହମ୍ମଦଙ୍କ କ୍ଷେତ୍ରରେ ସୁପ୍ରିମ କୋର୍ଟର ଅବସରପ୍ରାପ୍ତ ଜଜ୍ ଜଷ୍ଟିସ୍ ଆୟାଂଗାର ଓ ବିହାର ମୁଖ୍ୟମନ୍ତ୍ରୀଙ୍କ କ୍ଷେତ୍ରରେ ସୁପ୍ରିମ କୋର୍ଟର ଅବସରପ୍ରାପ୍ତ ବିଚାରପତି ସ୍ୱନାମଧନ୍ୟ ଆଇନଜ୍ଞ ଭେଂକଟରାମା ଆୟାରଙ୍କୁ କମିସନ ନିଯୁକ୍ତ କରାଯାଇଥିଲା । ଓଡିଶା ପାଇଁ ମଧ୍ୟ ସେହି ସ୍ତରୀୟ ଜଣେ ଖ୍ୟାତନାମା ଆଇନଜ୍ଞଙ୍କୁ ନିଯୁକ୍ତ କରାଯାଉ । ସରକାର ନୀତିଗତ ଭାବରେ ଏ ପ୍ରସ୍ତାବରେ ସହମତ ହେଲେ । କିନ୍ତୁ ସବୁ ଦିଗରୁ ବିଚାର ବିମର୍ଶ କରିବାରେ ଅନେକ ସମୟ ଗତ ହୋଇଗଲା । ପରିଶେଷରେ ସୁପ୍ରିମ କୋର୍ଟରୁ ନିକଟରେ ଅବସର ଗ୍ରହଣ କରିଥିବା ଜଷ୍ଟିସ୍ ଜି. କେ. ମିତ୍ରଙ୍କୁ

କମିସନ ନିଯୁକ୍ତ କରାହେଲା । ଏହି ସରକାରୀ ଘୋଷଣା ପ୍ରକାଶିତ ହେଲା ୧୯୭୩ ମସିହା ଫେବ୍ରୁଆରୀ ବାଇଶ ତାରିଖରେ । କିନ୍ତୁ ସପ୍ତାହକ ପରେ, ଫେବ୍ରୁଆରୀ ଶେଷରେ ଓଡ଼ିଶାର ରାଜନୈତିକ ରଂଗମଂଚରେ ଆଉ ଏକ ପ୍ରହେଳିକାର ଆବିର୍ଭାବ ହେଲା ।

ଏହି ନାଟକର ମୁଖ୍ୟ ନାୟକ ହେଲେ ନୀଳମଣି ବାବୁ । କେନ୍ଦୁପତ୍ର କମିସନଙ୍କ ଭବିଷ୍ୟତ ସଂପର୍କରେ ମନରେ ଆଶଙ୍କାର ଢେଉ ଉଠିଲା । ଯେଉଁ ନୀଳମଣି ବାବୁ ବିଜୁ ବାବୁଙ୍କ ସହ ଝଗଡା କରି ଉତ୍କଳ–କଂଗ୍ରେସ ଛାଡି କଂଗ୍ରେସ ଦଳରେ ଯୋଗ ଦେଇଥିଲେ, ସେ ଆଉ ଅଧିକ ଦିନ ଅସନ୍ତୁଷ୍ଟ ଅବସ୍ଥାରେ କଂଗ୍ରେସ ଦଳରେ ରହି ପାରିଲେ ନାହିଁ । ଫେବ୍ରୁଆରୀ ୨୮ ତାରିଖ ରାତିରେ ଉଦ୍ୟାନ ମାର୍ଗର ଏକ ନିଭୃତ କୋଠରୀରେ ଏକ ଗୁପ୍ତ ବୈଠକ ବସିଲା, ଯେଉଁଠି ଉପସ୍ଥିତ ଥିଲେ ବିଜୁ ବାବୁ, ମହତାବ ବାବୁ, ସିଂହଦେଓ ଓ ନୀଳମଣି ବାବୁ ଇତ୍ୟାଦି । ସେହି ଗୁପ୍ତ ବୈଠକର ନିଷ୍ପତ୍ତି ଅନୁଯାୟୀ ୨୧ ଜଣ ପୂର୍ବତନ ଉତ୍କଳ–କଂଗ୍ରେସ ବିଧାୟକ, କଂଗ୍ରେସ ଛାଡି ବିଜୁ ବାବୁଙ୍କ ନବଗଠିତ ପ୍ରଗତି ଦଳରେ ଯୋଗ ଦେଇଛନ୍ତି ବୋଲି ନୀଳମଣି ରାଉତରାୟ ମାର୍ଚ୍ଚ ପହିଲା ସକାଳେ ବାଚସ୍ପତିଙ୍କୁ ଜଣାଇ ଦେଲେ ।ଏ ସମ୍ବାଦ ଅଳ୍ପ ସମୟ ମଧ୍ୟରେ ବିଜୁଳି ବେଗରେ ବ୍ୟାପିଗଲା । ସେ ଦିନ ସକାଳେ ବିଧାନ ସଭାର ବୈଠକ୍ ଡକା ଯାଇଥାଏ । ଏହି ଆକସ୍ମିକ ସଂକଟର ସମ୍ମୁଖୀନ ହେବା ପାଇଁ କ୍ୟାବିନେଟର ଜରୁରୀ ବୈଠକ ବସିଲା ଓ ଇସ୍ତଫା ଦେବା ପାଇଁ ନିଷ୍ପତ୍ତି ନିଆହେଲା । ନନ୍ଦିନୀ ଦେବୀ ରାଜ୍ୟପାଳଙ୍କୁ ତାଙ୍କ ମନ୍ତ୍ରୀ–ପରିଷଦର ଇସ୍ତଫା ଦେଲେ । ମନ୍ତ୍ରୀ–ପରିଷଦ ବିନା ବିଧାନ ସଭାର ଅଧିବେଶନ ଚାଲି ପାରିବ ନାହିଁ, ଏଣୁ ମନ୍ତ୍ରୀ–ମଣ୍ଡଳର ଇସ୍ତଫା ଦୃଷ୍ଟିରୁ ରାଜ୍ୟପାଳ ତୁରନ୍ତ ବିଧାନ ସଭା ଅଧିବେଶନ ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍ଥଗିତ ରଖିବାକୁ ଆଦେଶ ପଠାଇଲେ । ଫଳରେ ମନ୍ତ୍ରୀ–ପରିଷଦ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଗତ କରିବାକୁ ବିରୋଧୀ ଦଳକୁ ସୁଯୋଗ ମିଳିଲା ନାହିଁ ।

ଓଡ଼ିଶାରେ ଏପରି ଘନଘଟା ସମୟରେ ମୁଁ ଥିଲି ଦିଲ୍ଲୀରେ ଏକ ସୁପ୍ରିମକୋର୍ଟ ମୋକଦ୍ଦମା ସଂକ୍ରାନ୍ତରେ । ମାର୍ଚ୍ଚ ପହିଲା ସକାଳେ ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ଫୋନ୍ ଆସିଲା । ନନ୍ଦିନୀ ଦେବୀ ପଚାରିଲେ "ଆଜି ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଛନ୍ତି । ସେହି କାରଣରୁ ରାଜ୍ୟପାଳ ଆଜିର ବିଧାନ ସଭା ବୈଠକ ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍ଥଗିତ ରଖିପାରିବେ ବି ନାହିଁ।"ମୁଁ ଉତ୍ତର ଦେଲି

''ସମ୍ବିଧାନର ବ୍ୟବସ୍ଥା ଅନୁଯାୟୀ ମନ୍ତ୍ରୀ ପରିଷଦ ବିନା ବିଧାନ ସଭା ଚାଲି ପାରିବ ନାହିଁ । ସମ୍ବିଧାନର ୧୭୪ ଅନୁଚ୍ଛେଦ ଅନୁଯାୟୀ ରାଜ୍ୟପାଳ ଉଚିତ ମନେ କଲେ ବିଧାନ ସଭା ବୈଠକ ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍ଥଗିତ ରଖି ପାରିବେ'' । ଏହାପରେ ମୁଁ ତୁରନ୍ତ ଓଡିଶା ଫେରି ଆସିବାକୁ ନିଷ୍ପତ୍ତି କଲି । ଦୁଇ ତାରିଖ ଦିନ ପ୍ଲେନରେ ସ୍ଥାନ ମିଳିଲା ନାହିଁ । ତିନି ତାରିଖ ଦିନ ଭୁବନେଶ୍ୱରରେ ପହଂଚିଲା ବେଳକୁ ଓଡିଶାରେ ରାଷ୍ଟ୍ରପତି—ଶାସନ ଜାରି ହୋଇ ଯାଇଥିଲା । ମନ୍ତ୍ରୀମଣ୍ଡଳର ପରିବର୍ତ୍ତନ ହେଲେ ଆଡଭୋକେଟ୍ ଜେନେରାଲ ଇସ୍ତଫା ଦେବାର ପରଂପରା ଅଛି । ଏ କ୍ଷେତ୍ରର ଅବଶ୍ୟ ନୂତନ ମନ୍ତ୍ରୀମଣ୍ଡଳ ଗଠିତ ହୋଇ ନଥିଲା । ତଥାପି ମୁଁ ଇସ୍ତଫା ଦେବାପାଇଁ ନିଷ୍ପତ୍ତି ନେଲି । ପ୍ରଥମେ ନନ୍ଦିନୀ ଦେବୀଙ୍କୁ ସାକ୍ଷାତ କରି ପରେ ସିଧା ରାଜଭବନକୁ ଗଲି ଓ ରାଜ୍ୟପାଳ ବି. ଡି. ଜତ୍ତିଙ୍କୁ ଇସ୍ତଫା ପତ୍ର ବଢ଼ାଇ ଦେଲି । ବି. ଡି. ଜତ୍ତି ଯେଉଁ ଦିନ ଭୁବନେଶ୍ୱର ଆସି ରାଜ୍ୟପାଳ ଦାୟିତ୍ୱ ନେଲେ, ସେ ଦିନ ଘଟଣାଚକ୍ରରେ ମୁଁ ମଧ୍ୟ ସେହି ପ୍ଲେନରେ କଲିକତାରୁ ଭୁବନେଶ୍ୱର ଆସୁଥିଲି । ପ୍ଲେନରେ ତାଙ୍କ ସହ ପ୍ରଥମ ପରିଚୟ । ରାଜ୍ୟପାଳ ଜତ୍ତି ମୋର ଇସ୍ତଫା ପତ୍ର ପଢ଼ି କହିଲେ ''ଆପଣ ମୋର ଆଇନ ପରାମର୍ଶଦାତା ଥିଲେ ଏବଂ ରହିବେ । ଏ ଇସ୍ତଫା ମୁଁ ଗ୍ରହଣ କରି ପାରିବି ନାହିଁ ।'' ଏତିକି କହି କାଗଜ ଖଣ୍ଡିକ ସେ ମୋତେ ଫେରାଇ ଦେଲେ । ଯାହା ହେଉ ମୁଁ ଆଡଭୋକେଟ୍ ଜେନେରାଲ ଭାବରେ ପୂର୍ବବତ୍ କାର୍ଯ୍ୟ କଲି ।

ଅପ୍ରତ୍ୟାଶିତ ରାଜନୈତିକ ପରିବର୍ତ୍ତନ ହେତୁ ଏ ମଧ୍ୟରେ କେନ୍ଦୁପତ୍ର କମିସନଙ୍କ କାର୍ଯ୍ୟ ଆରମ୍ଭରେ ବିଳମ୍ବ ହୋଇଗଲା । ରାଜ୍ୟପାଳ ଏପ୍ରିଲ ମାସରେ ଦିନେ ଚିଫ୍ ସେକ୍ରେଟାରୀ ରାମକୃଷ୍ଣାୟା, ହୋମ ସେକ୍ରେଟାରୀ ପଦ୍ମନାଭ ମିଶ୍ର, ଆଇନ ସଂଚେତକ କିଶୋର ଚନ୍ଦ୍ର ମିଶ୍ର ଓ ମୋ ସହିତ ପରାମର୍ଶ କରି କମିଶନ କାର୍ଯ୍ୟ ତ୍ୱରାନ୍ୱିତ କରିବା ନିମନ୍ତେ ନିଷ୍ପତ୍ତି ନେଲେ ଓ ତଦନୁଯାୟୀ ହୋମ ସେକ୍ରେଟାରୀଙ୍କୁ ସବୁ ବ୍ୟବସ୍ଥା କରିବା ପାଇଁ ନିର୍ଦ୍ଦେଶ ଦେଲେ । ସରକାରଙ୍କ ପକ୍ଷରୁ କମିସନଙ୍କ ନିକଟରେ ତଦନ୍ତ ପରିଚାଳନା କରିବାର ଦାୟିତ୍ୱ ଆଡ୍‌ଭୋକେଟ୍ ଜେନେରାଲଙ୍କ ଉପରେ ନ୍ୟସ୍ତ ହେଲା ଓ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଡଭୋକେଟ ସି. ବାମନ ମୂର୍ତ୍ତି, ବିପିନ ବିହାରୀ ମହାନ୍ତି ଓ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କୁ ନିଯୁକ୍ତ କରାହେଲା ।

ଆମ୍ଭେମାନେ ଅନୁଭବ କଲୁ, ଫେବୃଆରୀ ବାଇଶ ତାରିଖରେ କମିଶନ ନିଯୁକ୍ତି ଘୋଷଣାରେ କେତେକ ତ୍ରୁଟି ରହିଛି ଏବଂ ଅଭିଯୋଗ ଗୁଡିକର ଗୁରୁତ୍ୱ ଦୃଷ୍ଟିରୁ ଘୋଷଣାଟି ଯଥେଷ୍ଟ ବ୍ୟାପକ ନୁହେ । ମୋର ପ୍ରଥମ ରିପୋର୍ଟ ପରେ ଅନେକ ନୂତନ ତଥ୍ୟ ହସ୍ତଗତ ହୋଇଛି, ଯାହାକି ପୂର୍ବ ଘୋଷଣାର ପରିସର ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇ ପାରୁନାହିଁ । ଏଣୁ ଜୁନ ଚାରି ତାରିଖରେ ଘୋଷଣାଟିକୁ ସଂଶୋଧନ କରାହେଲା ଓ ତାହା ଗେଜେଟ୍‌ରେ ପ୍ରକାଶିତ ହେଲା । କମିସନ ମଇ ମାସ ୧୬ ତାରିଖରେ ଦାୟିତ୍ୱ ଗ୍ରହଣ କଲେ ଓ କମିସନଙ୍କ ପ୍ରଥମ ବୈଠକ ବସିଲା ଜୁନ ଛ' ତାରିଖରେ, ଓଡ଼ିଶା ବିଧାନ ସଭାର ଗୋଟିଏ ପ୍ରଶାସନିକ କକ୍ଷରେ । ସେ ଦିନ ସରକାରଙ୍କ ପକ୍ଷରୁ ଆଡଭୋକେଟ୍ ଜେନେରାଲ ଓ ଅପର ପକ୍ଷର ଆଡଭୋକେଟ୍‌ମାନଙ୍କୁ ଶୁଣିବା ପରେ ଜଷ୍ଟିସ ଜି.କେ. ମିତ୍ର କମିସନ କେଉଁଠି କିପରି ଚାଲିବ, କାର୍ଯ୍ୟବିଧି କ'ଣ ହେବ, ସରକାରଙ୍କ ତରଫରୁ କେଉଁ ତାରିଖ ମଧ୍ୟରେ ସତ୍ୟପାଠ ଦାଖଲ ହେବ, ପ୍ରତିବାଦୀମାନେ ତାର କେତେଦିନ ମଧ୍ୟରେ ଜବାବ ଦେବେ, ଏ ବିଷୟରେ ବିଧିବଦ୍ଧ ନିର୍ଦ୍ଦେଶ ଦେଲେ । ତିନି ତାରିଖ ଜୁଲାଇରେ ପୂର୍ବତନ ଉପମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ପକ୍ଷଭୁକ୍ତ ହେବା ପାଇଁ ଏକ ଦରଖାସ୍ତ ଦେଲେ ଓ ତାହା ମଧ୍ୟ ମଂଜୁର ହେଲା ।

ଜୁଲାଇ ତେଇଶ ତାରିଖରେ ରାଜ୍ୟ ସରକାରଙ୍କ ପକ୍ଷରୁ ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେଓ, ପୂର୍ବତନ ଜଙ୍ଗଲ ବିଭାଗ ମନ୍ତ୍ରୀ ହର ପ୍ରସାଦ ମହାପାତ୍ର ଓ ଅଇଁଠୁ ସାହୁ ଏବଂ ଜଙ୍ଗଲ ବିଭାଗ ସେକ୍ରେଟାରୀ ଏସ. ସୁନ୍ଦରରାଜନ ଓ ଅଣ୍ଡର ସେକ୍ରେଟାରୀ ଅର୍ଜୁନ ଶତପଥୀଙ୍କ ବିରୁଦ୍ଧରେ ଅଭିଯୋଗ ପତ୍ର ଦାଖଲ ହେଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସିଂହଦେଓ ମୁଖ୍ୟମନ୍ତ୍ରୀ ଥିବା ସମୟରେ ୧୯୬୮ ମସିହାରେ କେନ୍ଦୁପତ୍ର ସଂଗ୍ରହ କରିବା ଓ ବିକ୍ରୟ କରିବା ନିମନ୍ତେ କେବଳ ପୂର୍ବ ବର୍ଷର ଏଜେଣ୍ଟ ଓ ଖରିଦ୍‌ଦାର ମାନଙ୍କୁ ସରକାର ସୁଯୋଗ ଦେଇଥିଲେ । ସରକାରଙ୍କର ଏହି ନିଷ୍ପତ୍ତି ବିରୁଦ୍ଧରେ ଓଡିଶା ହାଇକୋର୍ଟରେ ଯେଉଁ ରିଟ୍ ଦରଖାସ୍ତ କରାଯାଇଥିଲା, ଦରଖାସ୍ତକାରୀଙ୍କ ପକ୍ଷରୁ ସେହି ମୋକଦ୍ଦମାରେ ବିଶିଷ୍ଟ ଆଇନଜ୍ଞ ଏମ. ସି. ଚଗଲା ବାଦାନୁବାଦ କରିଥିଲେ । ଓଡିଶା ହାଇକୋର୍ଟ ଏହି ଦରଖାସ୍ତ ଖାରଜ କରିବା ପରେ ସେହି ଆଦେଶ ବିରୁଦ୍ଧରେ ସୁପ୍ରିମ କୋର୍ଟରେ ଅପିଲ କରାଯାଇଥିଲା । ସୁପ୍ରିମ କୋର୍ଟ ଅପିଲ ମଂଜୁର କରି ଓଡିଶା ସରକାରଙ୍କ କାର୍ଯ୍ୟର କଠୋର ସମାଲୋଚନା କରିଥିଲେ । ରାସ ବିହାରୀ ପଣ୍ଡା ବନାମ ଓଡ଼ିଶା ସରକାର ଶୀର୍ଷକ ନିଷ୍ପତ୍ତି ୧୯୬୯ ମସିହାରେ ଆଇନ ପତ୍ରିକା ଅଲ ଇଣ୍ଡିଆ ରିପୋର୍ଟରରେ

ପ୍ରକାଶିତ ହୋଇଛି । କୋର୍ଟ ଅଭିମତ ଦେଇଥିଲେ ଯେ ଟେଣ୍ଡର ବା ଅକ୍ସନ ଜରିଆରେ ସର୍ବସାଧାରଣଙ୍କୁ କେନ୍ଦୁପତ୍ର ସଂଗ୍ରହ କରିବାର ସୁଯୋଗ ନ ଦେଇ ସରକାର ମୁଷ୍ଟିମେୟ ବ୍ୟବସାୟୀଙ୍କୁ ଅନୁଗ୍ରହ ଦେଖାଇଛନ୍ତି ଏବଂ ଏହା ଦ୍ୱାରା ସଂବିଧାନର ଚଉଦ ଅନୁଚ୍ଛେଦରେ ସନ୍ନିବିଷ୍ଟ 'ସମାନ–ଅଧିକାର' ନୀତିର ବିରୁଦ୍ଧାଚରଣ କରାଯାଇଛି ।

ଯାହାହେଉ, ୧୯୬୯ ମସିହାରେ ସିଂହଦେଓ ସରକାର କେନ୍ଦୁପତ୍ର ବ୍ୟବସାୟ ପାଇଁ ନୂତନ ନୀତି ଅବଲମ୍ବନ କଲେ । କେନ୍ଦୁପତ୍ର ବ୍ୟବସାୟ ନିୟନ୍ତ୍ରଣ ନିୟମାବଳୀରେ ପରିବର୍ତ୍ତନ କରାଗଲା । ସ୍ଥିର ହେଲା ଯେ ଏଣିକି ବିଭିନ୍ନ ଅଂଚଳ ବା ୟୁନିଟ୍ ଗୁଡ଼ିକରୁ କେନ୍ଦୁପତ୍ର ସଂଗ୍ରହ କରିବା ପାଇଁ ସରକାର ଏଜେଣ୍ଟ ନିଯୁକ୍ତ କରିବେ ଏବଂ ଏଜେଣ୍ଟମାନଙ୍କୁ ନିର୍ଦ୍ଦିଷ୍ଟ ହାରରେ ସଂଗୃହୀତ ବ୍ୟାଗ ପାଇଁ ପାରିଶ୍ରମିକ ଦିଆଯିବ । ଏଜେଣ୍ଟ ନିଯୁକ୍ତ ହେବା ପରେ ସେମାନେ ସ୍ଥାନୀୟ ଡିଭିଜନାଲ ଫରେଷ୍ଟ ଅଫିସରଙ୍କ ସହ ତିନି ବର୍ଷ ପାଇଁ ଚୁକ୍ତି କରିବେ । ଏହି ଚୁକ୍ତି ପତ୍ରରେ ପାରିଶ୍ରମିକ ହାର ସମେତ ସର୍ତ୍ତ ରହିବ ଯେ ନିର୍ଦ୍ଧାରିତ ସଂଖ୍ୟକ ବ୍ୟାଗରୁ କମ୍ କେନ୍ଦୁ ପତ୍ର ସଂଗ୍ରହ କଲେ ଏଜେଣ୍ଟମାନଙ୍କୁ ସର୍ଟଫଲ କଂପେନ୍‌ସେସନ୍ ଦେବାକୁ ହେବ । ସେହି ପରି କେନ୍ଦୁପତ୍ର ବିକ୍ରି ପାଇଁ ଖରିଦ୍‌ଦାର ନିଯୁକ୍ତି ନିମନ୍ତେ ଟେଣ୍ଡର ମଗାଯିବ ଏବଂ ଯାହାଙ୍କର ଅର୍ପିତ ମୂଲ୍ୟ ସବୁଠାରୁ ବେଶି ହେବ, ତାଙ୍କୁ ତିନି ବର୍ଷ ପାଇଁ ଖରିଦ୍‌ଦାର ନିଯୁକ୍ତ କରାଯିବ ଓ ତଦନୁଯାୟୀ ସେ ସରକାରଙ୍କ ସହ ଚୁକ୍ତି କରିବେ । ଉପରୋକ୍ତ ନୀତି ଅନୁଯାୟୀ ସରକାର ୧୯୬୯, ୭୦ ଓ ୭୧ ମସିହା ପାଇଁ ସଂଗ୍ରହକାରୀ ଏଜେଣ୍ଟ ଓ ଖରିଦ୍‌ଦାର ନିଯୁକ୍ତ କରିଥିଲେ । ଖରିଦ୍‌ଦାରମାନେ କେଉଁ ଦରରେ ସରକାରଙ୍କ ଠାରୁ ପତ୍ର କ୍ରୟ କରିବେ, ତାହା ସେମାନଙ୍କ ଚୁକ୍ତି ପତ୍ରରେ ସ୍ପଷ୍ଟ ଉଲ୍ଲେଖ ଥିଲା ।

ଗୁଡ଼ର ମିଠା ଯେ ଚାଖିଛି, ସେ ଗୁଡ଼ଖିଆ ଅଭ୍ୟାସ ଛାଡ଼ି ପାରିବ ନାହିଁ । ସିଂହଦେଓ ସରକାରଙ୍କ ଦଶା ତାହାହିଁ ହେଲା । କମିସନଙ୍କ ନିକଟରେ ସରକାରଙ୍କ ତରଫରୁ ଅଭିଯୋଗ କରାଯାଇଥିଲା ଯେ ଚୁକ୍ତିପତ୍ର ଦସ୍ତଖତ ହେବାର ଅଳ୍ପଦିନ ପରେ କେତେକ ଖରିଦ୍‌ଦାର ସେମାନେ ଚୁକ୍ତି କରିଥିବା ବ୍ୟାଗର ମୂଲ୍ୟରୁ ଅନ୍ତତଃ ଶତକଡ଼ା ଚାଳିଶରୁ ପଚାଶ ଭାଗ ଗିଆଡି ଦେବା ପାଇଁ ଦରଖାସ୍ତ କଲେ । ଜଙ୍ଗଲ ବିଭାଗ ସେକ୍ରେଟାରୀ ସି. ଜି. ସୋମାୟା ତାଙ୍କର ନୋଟ୍‌ରେ ବିକ୍ରୀ ମୂଲ୍ୟ କମ୍ କରିବା ପ୍ରସ୍ତାବର ଘୋର ବିରୋଧ କରିଥିଲେ । ତା' ସତ୍ତ୍ୱେ ମନ୍ତ୍ରୀ ହରପ୍ରସାଦ ମହାପାତ୍ର ୧୯୭୦ ଫେବ୍ରୁଆରୀ ଦଶ ତାରିଖରେ ଆଦେଶ ଦେଲେ ଯେ ଏ ବିଷୟରେ ବିଧିବଦ୍ଧ ତଦନ୍ତ କରାଯାଉ । କିନ୍ତୁ

ତଦନ୍ତ ଆରମ୍ଭ ହେବା ପୂର୍ବରୁ ଏପ୍ରିଲ ଛ' ତାରିଖରେ ମନ୍ତ୍ରୀ ମହାପାତ୍ର ନିର୍ଦ୍ଦେଶ ଦେଲେ ଯେ ଦରଖାସ୍ତ ଦେଇଥିବା ଖରିଦ୍‌ଦାରମାନେ ଚୁକ୍ତି ଦାମ୍‌ର ଶତକଡ଼ା ୫୦ ଭାଗ ଦାଖଲ କରି ୧୯୬୯ର କୋଟା ଉଠାଇନେଇ ପାରନ୍ତି । ଏହାପରେ ନୂଆ ନୂଆ ୟୁନିଟର ବଡ଼ ବଡ଼ ଗୁଜରାଟୀ ବ୍ୟବସାୟୀମାନଙ୍କଠାରୁ ଅନୁରୂପ ଦରଖାସ୍ତ ଆସିଲା । ପରବର୍ତ୍ତୀ ବିଭାଗୀୟ ସେକ୍ରେଟାରୀ ଅବନୀକାନ୍ତ ରାୟ ତାର ବିରୋଧ କରିଥିଲେ । କିନ୍ତୁ ମନ୍ତ୍ରୀ ମହାପାତ୍ର କେତେଗୁଡ଼ିଏ ୟୁନିଟର ଆବେଦନ ନଭେମ୍ବର ଛ' ତାରିଖ ଓ ଅନ୍ୟ କେତେଗୁଡ଼ିଏ ୟୁନିଟ୍‌ର ଖରିଦ୍‌ଦାରମାନଙ୍କର ଆବେଦନ ଓ ଗୋଟିଏ ୟୁନିଟ୍‌ର ଏଜେଣ୍ଟଙ୍କର ଆବେଦନ ୧୯୭୦ ମସିହା ନଭେମ୍ବର ସାତ ତାରିଖରେ ମଞ୍ଜୁର କରିବାକୁ ସୁପାରିଶ କରିଥିଲେ । ମୁଖ୍ୟମନ୍ତ୍ରୀ କେବଳ ଗୋଟିଏ 'ଆର୍' ଅକ୍ଷରରେ ଫାଇଲରେ ଦସ୍ତଖତ କରନ୍ତି । ସିଂହଦେଓ ନଭେମ୍ବର ଉଣେଇଶ ତାରିଖରେ ସେହି ଏକ ଅକ୍ଷରିଆ ଦସ୍ତଖତରେ ଆବେଦନଗୁଡ଼ିକୁ ଅନୁମୋଦନ କରିଥିଲେ । ଯାହାଫଳରେ ଓଡ଼ିଶା ସରକାରଙ୍କର ପ୍ରାୟ ଚାଳିଶ ଲକ୍ଷରୁ ଉର୍ଦ୍ଧ୍ୱ ଟଙ୍କା କ୍ଷତି ହେଲା । ଏହି ଅନୁମୋଦନ ପୂର୍ବରୁ ଅର୍ଥ ବିଭାଗ ସହିତ ପରାମର୍ଶ କରାଯାଇ ନଥିଲା ବା କ୍ୟାବିନେଟର ସମ୍ମତି ନିଆଯାଇ ନଥିଲା ।

ମନ୍ତ୍ରୀ ଅଇଁଠୁ ସାହୁ ଓ ସେକ୍ରେଟାରୀ ସୁନ୍ଦର ରାଜନ୍‌ଙ୍କ ବିରୁଦ୍ଧରେ କମିସନଙ୍କ ନିକଟରେ ଯେଉଁ ଅଭିଯୋଗ ପତ୍ର ଦାଖଲ ହୋଇଥିଲା ତାହା ଥିଲା ଆହୁରି ଚାଞ୍ଚଲ୍ୟକର । ୧୯୭୧ ମସିହାରେ ସାଧାରଣ ନିର୍ବାଚନ ପରେ ବିଶ୍ୱନାଥ ଦାସଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଯେଉଁ ମନ୍ତ୍ରୀ-ପରିଷଦ ଗଠିତ ହୋଇଥିଲା, ତହିଁରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଥିଲେ ପଲିଟିକାଲ ଓ ସର୍ଭିସେସ ବିଭାଗର ମନ୍ତ୍ରୀ ଓ ସ୍ୱତନ୍ତ୍ର ଦଳର ଅନ୍ୟତମ ସଭ୍ୟ ଅଇଁଠୁ ସାହୁ ଜଙ୍ଗଲ ବିଭାଗର ମନ୍ତ୍ରୀ । ଯଦିଓ କେନ୍ଦୁପତ୍ର ଏଜେଣ୍ଟ ଓ ଖରିଦ୍‌ଦାରମାନଙ୍କର ତିନିବର୍ଷିଆ ଚୁକ୍ତି ଏକସ୍ତରୀ ମସିହା ଶେଷ ପର୍ଯ୍ୟନ୍ତ ବଳବତ୍ତର ଥିଲା, ନୂତନ ମନ୍ତ୍ରୀମଣ୍ଡଳ କ୍ଷମତାକୁ ଆସିବାର ଅଳ୍ପଦିନ ପରେ ଜଙ୍ଗଲ ଦାୟିତ୍ୱରେ ଥିବା ସ୍ୱତନ୍ତ୍ର ଦଳ ମନ୍ତ୍ରୀ ପ୍ରଚଳିତ ଚୁକ୍ତି ଗୁଡ଼ିକୁ ନବୀକରଣ କରିବାପାଇଁ ଉଦ୍ୟମ ଆରମ୍ଭ କରିଦେଲେ । ସ୍ୱତନ୍ତ୍ର ଦଳର ନେତାମାନେ ବୋଧହୁଏ ବିଚାର କଲେ ରାଜନୀତିରେ କାହାର ଆୟୁଷ କେତେଦିନ- ତେଣୁ ଶୁଭସ୍ୟ ଶୀଘ୍ରଂ । ଯଦିଓ କେନ୍ଦୁପତ୍ର ଦାମ କ୍ରମାଗତ ଭାବରେ ବଢ଼ି ଚାଲିଲା, ୧୯୭୨ ମସିହା ପାଇଁ ଚୁକ୍ତିପତ୍ରରେ ଦାମ ବଢ଼ାଇବାର କୌଣସି ବ୍ୟବସ୍ଥା ନରଖି, ପୁରୁଣା ହାରରେ ଚୁକ୍ତି ନବୀକରଣ ପାଇଁ ଉଦ୍ୟମ ପଛରେ କ'ଣ ଦୁରଭିସନ୍ଧି ଥିଲା, ତାହା ସହଜରେ ଅନୁମେୟ । କିନ୍ତୁ ଏହି

ପ୍ରଚେଷ୍ଟାର କଣ୍ଟକ ହେଲା, କ୍ୟାବିନେଟର ନିଷ୍ପତ୍ତି । ମଇ ୩୧ ତାରିଖ କ୍ୟାବିନେଟ୍ ବୈଠକରେ ନିର୍ଦ୍ଧାରଣ ନିଆହେଲା ଯେ ରାଜସ୍ୱ ବଢ଼ାଇବା ପାଇଁ ବାସ୍ତରୀ ମସିହାରୁ ଅଧିକରୁ ଅଧିକ କେନ୍ଦୁପତ୍ର ୟୁନିଟର ବ୍ୟବସାୟ ସରକାର ହାତକୁ ନେବେ । ପରବର୍ତ୍ତୀ ଘଟଣାବଳୀରୁ ଦେଖାଗଲା, କ୍ୟାବିନେଟ ନିଷ୍ପତ୍ତିକୁ ଭ୍ରଷ୍ଟ କରିଦେବାକୁ ସ୍ୱତନ୍ତ୍ର ନେତାମାନେ ବଦ୍ଧପରିକର ।

ସେ ବର୍ଷ ରେଢ଼ାଖୋଲ ଡିଭିଜନର କେତେକ ୟୁନିଟ୍‌ରେ ଓଡ଼ିଶା ଫରେଷ୍ଟ କର୍ପୋରେସନ କାର୍ଯ୍ୟ କରୁଥିଲେ ଏବଂ କର୍ପୋରେସନର କାର୍ଯ୍ୟ ଥିଲା ଅତି ସନ୍ତୋଷଜନକ । କ୍ୟାବିନେଟ୍ ନିଷ୍ପତ୍ତି ଅନୁଯାୟୀ ୧୯୭୨ ମସିହାରୁ ରେଢ଼ାଖୋଲର କେତେକ ୟୁନିଟ୍‌ରେ ଫରେଷ୍ଟ କର୍ପୋରେସନ୍ ଓ ଅନ୍ୟ କେତେକ ୟୁନିଟରେ ଫରେଷ୍ଟ ଡିପାର୍ଟମେଣ୍ଟ କାର୍ଯ୍ୟ କରିବେ ବୋଲି ବିଭାଗୀୟ ସେକ୍ରେଟାରୀ ପ୍ରସ୍ତାବ ଦେଲେ । ମନ୍ତ୍ରୀ ଏ ପ୍ରସ୍ତାବ ଗ୍ରହଣ ନ କରି ଆଦେଶ ଦେଲେ ଯେ ଏ ନିଷ୍ପତ୍ତିର ପୁନର୍ବିଚାର କରାଯିବ । ଏପରି ଆଦେଶ ଥିଲା କ୍ୟାବିନେଟ ନିଷ୍ପତ୍ତିର ପୂର୍ଣ୍ଣ ବିରୋଧୀ ଏବଂ ପୁନର୍ବିଚାର ପାଇଁ ଏହା ପୁଣି କେବେ କ୍ୟାବିନେଟ୍‌କୁ ପଠାଯାଇ ନ ଥିଲା । ଅଥଚ ବିଭିନ୍ନ ଅବାନ୍ତର କାରଣ ଦର୍ଶାଇ ମୁଖ୍ୟତଃ ଗୁଜୁରାଟୀ ବ୍ୟବସାୟୀମାନଙ୍କର ଚୁକ୍ତି ପୁରୁଣା ସର୍ତ୍ତରେ ନୂଆ କରିବା ପାଇଁ ଉଦ୍ୟମ ଆଗେଇ ଚାଲିଲା ।

ସେ ସମୟରେ ବ୍ୟବସାୟୀମାନଙ୍କର ଲବି ଜଙ୍ଗଲ ବିଭାଗରେ ବେଶ୍ କାର୍ଯ୍ୟରତ ଥିଲେ । ବୋଧହୁଏ କ୍ୟାବିନେଟ ନିଷ୍ପତ୍ତିକୁ ଲୋକ-ଲୋଚନରୁ ଲୁଚାଯିତ ରଖିବା ପାଇଁ ଜଙ୍ଗଲ ବିଭାଗରେ ଗୋଟିଏ ନୂତନ ଫାଇଲ ଖୋଲାହେଲା ଏବଂ ଏହି ଫାଇଲରେ ସରକାର ବ୍ୟବସାୟ ହାତକୁ ନେବେ ନା ବ୍ୟବସାୟୀମାନଙ୍କର ଚୁକ୍ତିପତ୍ରକୁ ଆହୁରି ବର୍ଷକ ପାଇଁ ପୁରୁଣା ସର୍ତ୍ତରେ ନବୀକରଣ କରାଇବେ ତାର ଆଲୋଚନା ଚାଲିଲା । ଚୁକ୍ତିପତ୍ର ଗୁଡ଼ିକରେ ଗୋଟିଏ ସର୍ତ୍ତ ଥାଏ ଯେ ଏଜେଣ୍ଟ ଓ ଖରିଦ୍‌ଦାର ଯଦି ପୂର୍ବ ବର୍ଷରେ ସନ୍ତୋଷଜନକ ଭାବେ କାର୍ଯ୍ୟ କରିଥାନ୍ତି, ତାହାହେଲେ ଚୁକ୍ତିର ମିଆଦ ପୂରିବାର ପନ୍ଦର ଦିନ ପୂର୍ବରୁ ରିନିୱାଲ ପାଇଁ ଦରଖାସ୍ତ କରିପାରିବେ ଏବଂ ସର୍ତ୍ତାବଳୀ ସଂପର୍କରେ ଉଭୟ ପକ୍ଷ ସହମତ ହେଲେ ଚୁକ୍ତି ନବୀକରଣ କରାଯାଇ ପାରିବ । ଏ ପ୍ରକାର ସର୍ତ୍ତର ସମୀକ୍ଷା କରି ପୂର୍ବରୁ କୋର୍ଟମାନେ ଅଭିମତ ଦେଇଛନ୍ତି ଯେ ଏହାଦ୍ୱାରା ପୁନର୍ବିଚାର କରିବା ପାଇଁ ସରକାରଙ୍କୁ କ୍ଷମତା ଦିଆ ଯାଇଅଛି, କିନ୍ତୁ ପ୍ରଚଳିତ ସର୍ତ୍ତରେ ଚୁକ୍ତି ନବୀକରଣ ପାଇଁ ବ୍ୟବସାୟୀମାନଙ୍କୁ ଅଧିକାର ଦିଆଯାଇ ନାହିଁ ।

ଅଥଚ ଜଙ୍ଗଲ ବିଭାଗର କର୍ମକର୍ତ୍ତାମାନେ ରିନିୱାଲ ପାଇଁ ବ୍ୟବସାୟୀମାନଙ୍କର ଆଇନଗତ ଅଧିକାର ଅଛି, ଏହି ଭିତ୍ତିରେ ନବୀକରଣ ପାଇଁ ସୁପାରିଶ କଲେ । ମନ୍ତ୍ରୀ ସାହୁ ସେପ୍ଟେମ୍ବର ଦୁଇ ତାରିଖରେ ଜାପାନ ପରିଭ୍ରମଣରେ ଯିବା ହେତୁ ଜଙ୍ଗଲ ବିଭାଗ ଦାୟିତ୍ୱରେ ରହିଲେ ମନ୍ତ୍ରୀ ଆର. ଏନ୍. ସିଂହଦେଓ । ଦଶ ତାରିଖ ସେପ୍ଟେମ୍ବରରେ ଆଇନ ସଚେତକ ଡ଼କ୍ଟର ବି.ଏନ୍. ମିଶ୍ର ଏହି ରିନିୱାଲ ଧାରା ସଂପର୍କରେ ମତ ଦେଲେ ଯେ ଏଜେଣ୍ଟ ଓ ଖରିଦ୍‌ଦାରମାନେ ଯଦି ଚୁକ୍ତି ଅନୁଯାୟୀ ସନ୍ତୋଷଜନକ ଭାବରେ କାର୍ଯ୍ୟ କରିଥାନ୍ତି, ତାହାହେଲେ ଚୁକ୍ତିର ରିନିୱାଲ ବା ନବୀକରଣ ପାଇଁ ସେମାନେ ହକଦାର । ତତ୍‌କାଳୀନ ଆଡ୍‌ଭୋକେଟ ଜେନେରାଲ ରାମଚନ୍ଦ୍ର ମିଶ୍ର ମଧ୍ୟ ଅନୁରୂପ ମତ ଦେଲେ । ଚୁକ୍ତିର ମିଆଦ ଶେଷ ହେବା ପୂର୍ବରୁ କାର୍ଯ୍ୟ ସଂପାଦନ ସନ୍ତୋଷଜନକ ହୋଇଛି କି ନାହିଁ ତା ଯେ ଜଣାପଡିବ ନାହିଁ ଏବଂ ଚୁକ୍ତିର ସର୍ତ୍ତ ପରିବର୍ତ୍ତନ ସଂପର୍କରେ ଉଭୟପକ୍ଷ ସହମତ ନହେଲେ ରିନିୱାଲ କରାଯାଇ ପାରିବ ନାହିଁ, ଏ ବିଷୟ କେହି ବିଚାରକୁ ନେଲେ ନାହିଁ । ନୂତନ ଖରିଦଦାରମାନଙ୍କୁ ସୁଯୋଗ ନ ଦେବା ଓ ଟେଣ୍ଡର ନ ମଗାଇ ପୂର୍ବରେଟ୍ ଅନୁସାରେ ଚୁକ୍ତିର ନବୀକରଣ କରିବା ଯେ ସଂବିଧାନ ବିରୋଧୀ, ଏ ପ୍ରତି କାହାରି ଦୃଷ୍ଟି ପଡିଲା ନାହିଁ । ଅଙ୍ଗଁଠୁ ସାହୁ ୨୦ ତାରିଖ ସେପ୍ଟେମ୍ବରରେ ଜାପାନରୁ ଫେରି ଆଦେଶ ଦେଲେ ଯେ ସେ ଯିବା ପୂର୍ବରୁ ମୁଖ୍ୟମନ୍ତ୍ରୀଙ୍କୁ ସମସ୍ତ ବିଷୟ ବୁଝାଇ ଦେଇ ତାଙ୍କର ସମ୍ମତି ନେଇଛନ୍ତି, ଏଣିକି ଏଜେଣ୍ଟ ଓ ଖରିଦ୍‌ଦାରମାନଙ୍କର ପୂର୍ବବର୍ଷର କାର୍ଯ୍ୟ ସଂପାଦନ ଦୃଷ୍ଟିରୁ ଚୁକ୍ତି ନବୀକରଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଉ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସେପ୍ଟେମ୍ବର ୨୦ ଓ ୨୪ ତାରିଖ ମଧ୍ୟରେ ଏଜେଣ୍ଟ ଓ ଖରିଦ୍‌ଦାରମାନଙ୍କଠାରୁ ପ୍ରାୟ ଅଶିରୁ ଅଧିକ ଦରଖାସ୍ତ ପହଞ୍ଚିଲା । ୨୩ ଓ ୨୪ ତାରିଖ ସେପ୍ଟେମ୍ବର - ଏହି ଦୁଇ ଦିନ ମଧ୍ୟରେ ଅଶିରୁ ଅଧିକ ବ୍ୟବସାୟୀଙ୍କୁ ଚୁକ୍ତି ରିନିୱାଲ ପାଇଁ ଆଦେଶ ଦିଆଗଲା । ପୂର୍ବ ଚୁକ୍ତିର ମିଆଦ ପୂରିବାକୁ ଆଉ ଦୁଇଟି କ୍ୱାର୍ଟର ବାକି ଥିଲେ ମଧ୍ୟ, ଚୁକ୍ତି ରିନିୱାଲ କରିବା ପାଇଁ ଯେଉଁ ଅସ୍ୱାଭାବିକତା ପ୍ରଦର୍ଶନ କରାଗଲା, ତାହା ଥିଲା ସଂପୂର୍ଣ୍ଣ ବିସ୍ମୟକର । ସେପ୍ଟେମ୍ବର ୨୩ ତାରିଖରେ ଜଙ୍ଗଲ ବିଭାଗ ମନ୍ତ୍ରୀ ଗୋଟିଏ ଆଦେଶରେ ଲେଖିଥିଲେ "ଯେଉଁ ଏଜେଣ୍ଟ ଓ ଖରିଦ୍‌ଦାରମାନଙ୍କର ଚୁକ୍ତି ୧୯୭୨ ମସିହା ପାଇଁ ନବୀକରଣ ନିମନ୍ତେ ମୁଁ ଆଦେଶ ଦେଇଅଛି, ସେମାନେ ତୁରନ୍ତ ଆଦେଶର ନକଲ ନେବାକୁ ବ୍ୟଗ୍ର । ଯଦି ଡିପାର୍ଟମେଣ୍ଟ ଅର୍ଡରର ଫେଆର କପି ପ୍ରସ୍ତୁତ କରି ମୋ ଅଫିସକୁ

ପଠାଇ ଦିଅନ୍ତି, ତାହାହେଲେ ସେମାନେ ରସିଦ୍ ଦେଇ ଏଠାରୁ ସେ ଆଦେଶ ନେଇଯାଇ ପାରିବେ । ଏହାଦ୍ୱାରା ସେକ୍ରେଟାରୀଏଟ୍ ବାରଣ୍ଡାରେ ଗହଳି ରୋକାଯାଇ ପାରିବ ।'' ମୋର ମନେ ଅଛି, କମିଶନଙ୍କ ଆଗରେ ଏହି ଆଦେଶଟି ଯେତେବେଳେ ପଢ଼ାହେଲା, କମିଶନଙ୍କଠାରୁ ଆରମ୍ଭ କରି କୋର୍ଟରେ ଉପସ୍ଥିତ ସମସ୍ତଙ୍କ ମଧ୍ୟରେ ହାସ୍ୟରୋଳ ଉଠିଲା । ମନ୍ତ୍ରୀ ନିଜ ଅଫିସର ନିର୍ମଳତା ପ୍ରତି ଯେତେ ସଜାଗ ନଥିଲେ, ତାଠାରୁ ଅଧିକ ସଚେତନ ଥିଲେ ସେକ୍ରେଟାରୀଏଟ୍ ବାରଣ୍ଡାରେ ବ୍ୟବସାୟୀମାନଙ୍କର ଗହଳି ରୋକିବା ପାଇଁ ।

ଯଦିଓ ୨୩ ତାରିଖ ଜୁଲାଇରେ କମିଶନଙ୍କ ନିକଟରେ ଅଭିଯୋଗ-ପତ୍ରଗୁଡ଼ିକ ଦାଖଲ ହୋଇଥିଲା, ପ୍ରଥମ ତିନିଜଣ ପ୍ରତିବାଦୀ ଅର୍ଥାତ୍ ପୂର୍ବତନ ମନ୍ତ୍ରୀମାନେ ସେମାନଙ୍କର ଜବାବ ଦାଖଲ ନକରି କମିଶନଙ୍କ ଆଗରେ ବିଭିନ୍ନ ଦରଖାସ୍ତ ଦେବା ହେତୁ ସମୟ ଗଡ଼ି ଚାଲିଲା ଏବଂ ତାହାହିଁ ଥିଲା ସେମାନଙ୍କର ଉଦ୍ଦେଶ୍ୟ । ଶେଷରେ କମିଶନ ଆଦେଶ ଦେଲେ ଯେ ଚାରି ତାରିଖ ସେପ୍ଟେମ୍ବର ମଧ୍ୟରେ ପ୍ରତିବାଦୀମାନେ ସେମାନଙ୍କର ଜବାବ ଦାଖଲ କରିବେ । ଏହି ଆଦେଶ ବିରୁଦ୍ଧରେ ପ୍ରଥମ ତିନିଜଣ ମନ୍ତ୍ରୀ ପ୍ରତିବାଦୀ ଓଡ଼ିଶା ହାଇକୋର୍ଟରେ ଗୋଟିଏ ରିଟ୍ ପିଟିସନ ଦାଖଲ କଲେ ଓ ନିଜ ପକ୍ଷରେ ଗୋଟିଏ ମଧ୍ୟବର୍ତ୍ତୀକାଳୀନ ଆଦେଶ ମଧ୍ୟ ଆଣିଥିଲେ । ଆମ୍ଭେମାନେ ତୁରନ୍ତ କମିଶନଙ୍କ ଆଦେଶର ଯଥାର୍ଥତା ଦର୍ଶାଇ ଆଫିଡେଭିଟ୍ ଦାଖଲ କଲୁ । ସାତ ଦିନ ପରେ ରିଟ୍ କେସ୍ ଯେତେବେଳେ ବିଚାରକୁ ଆସିଲା, ଦରଖାସ୍ତକାରୀମାନେ ତାହା ଉଠାଇ ନେଇଥିଲେ । ପରିଶେଷରେ ପ୍ରତିବାଦୀମାନେ ସେମାନଙ୍କର ଜବାବ୍ ଦାଖଲ କଲେ ଅକ୍ଟୋବର ବାଇଶ ତାରିଖରେ ।

କମିଶନଙ୍କ ନିକଟରେ ଶୁଣାଣି ବିଳମ୍ବ କରିବା ପାଇଁ ପ୍ରତିବାଦୀମାନଙ୍କ ତରଫରୁ ନୂଆ ନୂଆ ଉଦ୍ୟମ ହେଲା । ଯଦିଓ ଅଭିଯୋଗ ସଂକ୍ରାନ୍ତୀୟ ସମସ୍ତ ସରକାରୀ ଫାଇଲ ଓ ଦଲିଲ ଦାଖଲ କରାଯାଇଥିଲା, ମନ୍ତ୍ରୀ-ପ୍ରତିବାଦୀମାନେ କେତେକ ଅବାନ୍ତର ଓ ଅନାବଶ୍ୟକ ଫାଇଲ ଦାଖଲ କରିବା ପାଇଁ ପୁନର୍ବାର ଦାବୀ କଲେ ଏବଂ ୭୧-୭୨ ମସିହାର ଆଇନ-ସଚେତକ ଡକ୍ଟର ବି.ଏନ୍.ମିଶ୍ର ଓ ତତ୍କାଳୀନ ଆଡ୍‌ଭୋକେଟ ଜେନେରାଲ ରାମଚନ୍ଦ୍ର ମିଶ୍ର, ଆଟର୍ଣ୍ଣି ଜେନେରାଲ ନୀରେନ୍ ଦେ ଓ ଅନ୍ୟ କେତେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ସାକ୍ଷୀ ଭାବରେ ତଲବ କରିବା ପାଇଁ ଦରଖାସ୍ତ କଲେ । କମିଶନ ଅନୁଭବ କରିଥିଲେ, ଯେଉଁମାନଙ୍କୁ ସାକ୍ଷୀ ଭାବରେ ଡାକରା ଯାଉଛି, ସେମାନଙ୍କ ମତାମତ ଫାଇଲରେ ଲିପିବଦ୍ଧ

ରହିଛି ଓ ଉକ୍ତ ଫାଇଲଗୁଡ଼ିକ କମିଶନଙ୍କ ପାଖରେ ଦାଖଲ କରାଯାଇଛି । ନୀରେନ୍ ଦେ କୌଣସି ମତାମତ ଦେଇନାହାନ୍ତି । ପୂର୍ବତନ ଆଟର୍ଣ୍ଣି ଜେନେରାଲ ସି. କେ. ଦପ୍ତରୀ ଚୁକ୍ତିର ନବୀକରଣ ପାଇଁ ଏଜେଣ୍ଟ ଓ ଖରିଦ୍‌ଦାରମାନଙ୍କର ଆଇନସଂଗତ ଅଧିକାର ନାହିଁ ବୋଲି ଯେଉଁ ମତ ଦେଇଥିଲେ, ତାହା ମଧ୍ୟ ଦାଖଲ ହୋଇଛି । ଏଣୁ ମୌଖିକ ସାକ୍ଷ୍ୟର ଆବଶ୍ୟକତା ନାହିଁ । ଏହି ଆଦେଶ ବିରୁଦ୍ଧରେ ରାଜେନ୍ଦ୍ର ନାରାୟଣ ସିଂହଦେଓ କଲିକତା ହାଇକୋର୍ଟରେ ଏକ ରିଟ୍ ପିଟିସନ୍ ଦାଖଲ କରିଥିଲେ ଓ ତାହା ବିଚାର ପାଇଁ ଗୃହୀତ ହୋଇଥିଲା ।

କଲିକତା ହାଇକୋର୍ଟରୁ ନୋଟିସ ପାଇବା ପରେ ମନେ ହେଲା, ମନ୍ତ୍ରୀ-ପ୍ରତିବାଦୀମାନ ଯେପରି କମିସନ ଶୁଣାଣିରେ ବିଳମ୍ବ କରିବା ପାଇଁ ବଦ୍ଧପରିକର । ସିଂହଦେଓ ଓ ତାଙ୍କର ଅନୁଗାମୀମାନେ ବୋଧହୁଏ ଭାବୁଛନ୍ତି, ଆସନ୍ତା ନିର୍ବାଚନ ପର୍ଯ୍ୟନ୍ତ ଯଦି କମିସନ-ବିଚାର ଗଡ଼ି ଯାଇପାରେ ଏବଂ ନିର୍ବାଚନରେ ଯଦି ସେ ଓ ତାଙ୍କର ସହଯୋଗୀ ଦଳ କ୍ଷମତାକୁ ଆସନ୍ତି, ତାହେଲେ ଏ କମିସନ୍-ନିଯୁକ୍ତି ଆଦେଶକୁ ସେ ସରକାରୀ ସ୍ତରରେ ବାତିଲ କରାଇଦେବେ । ଯାହାହେଉ ନୋଟିସ ପାଇ ମୁଁ କଲିକତା ହାଇକୋର୍ଟରେ ସୁଆଲ ଜବାବ କରିବା ପାଇଁ ଧାର୍ଯ୍ୟ ତାରିଖରେ ଉପସ୍ଥିତ ହେଲି । ୧୯୪୮ ମସିହାରେ ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠିତ ହେବା ପରେ, କଲିକତାର ବହୁ ବିଶିଷ୍ଟ ବାରିଷ୍ଟର କଟକ ଆସି ଓଡ଼ିଶା ହାଇକୋର୍ଟରେ ସୁଆଲ-ଜବାବ କରିଛନ୍ତି । ସାର ଏସ୍. ଏମ୍. ବୋଷ, ଅନିଲ ମିତ୍ର, ରଣଦେବ ଚୌଧୁରୀ, ସ୍ନେହାଂଶୁ ଆଚାର୍ଯ୍ୟ, ଏ.ଏନ୍.ରାୟ ଆଦି ବହୁ ଅଧିବକ୍ତାଙ୍କ ନାମ ଉଲ୍ଲେଖ କରାଯାଇପାରେ । କିନ୍ତୁ କଟକର ଆଡ୍‌ଭୋକେଟ କଲିକତା ହାଇକୋର୍ଟରେ ବାଦାନୁବାଦ କରିବାର ଦୃଷ୍ଟାନ୍ତ ବିରଳ । ଏଣୁ କଲିକତା ହାଇକୋର୍ଟରେ ମୋର ପ୍ରବେଶ ଥିଲା ଏକ ନୂତନ ଅଭିଜ୍ଞତା । ଏହି ମୋକଦ୍ଦମାରେ ମୋତେ ସାହାଯ୍ୟ କରୁଥିଲେ କଲିକତାର ବାରିଷ୍ଟର ଉର୍ମିବାଳା ମୁଖାର୍ଜି (ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ସ୍ୱର୍ଗୀୟ ବି.କେ.ରାୟଙ୍କ କନ୍ୟା) ଓ କଟକର ଆଡ୍‌ଭୋକେଟ୍ ବିପିନ ବିହାରୀ ମହାନ୍ତି । ପ୍ରାଥମିକ ଶୁଣାଣି ପରେ, ଜଷ୍ଟିସ ମୁରାରୀ ମୋହନ ଦତ୍ତ (ପରେ ସୁପ୍ରିମ କୋର୍ଟର ବିଚାରପତି) ରିଟ୍ ଆବେଦନଟି ଅଗ୍ରାହ୍ୟ କରିଥିଲେ ।

ମୋର ମନେ ଅଛି ମୋକଦ୍ଦମା ଜିତିବା ପରେ ଆମେ ଯେତେବେଳେ ଖୁସିରେ ବାହାରକୁ ଆସିଲୁ, ମିସେସ୍ ମୁଖାର୍ଜି କହିଲେ "ଆପଣଙ୍କୁ ଗୋଟିଏ ମଜା କଥା କହିବି । ଆପଣ ଯେତେବେଳେ ଜଷ୍ଟିସ ଦତ୍ତଙ୍କ କୋର୍ଟରେ ବାଦାନୁବାଦ

କରୁଥିଲେ, ମୋ ପାଖରେ ବସିଥିବା କେତେଜଣ ମହିଳା ଆଡ୍‌ଭୋକେଟ ବନ୍ଧୁ ପଚାରିଲେ, ଓଡ଼ିଶାର ଆଡ୍‌ଭୋକେଟ ଜେନେରାଲ କ'ଣ ଜଣେ ରାଜନୈତିକ ନେତା ?''

ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି ''ମୁଁ ତ ୧୯୫୦ ମସିହାରୁ ରାଜନୀତି ଛାଡ଼ିଛି । ଆପଣଙ୍କ ବନ୍ଧୁମାନେ ଏପରି ପ୍ରଶ୍ନ କଲେ କାହିଁକି ?''

ଲିଲି ଦେଇ (ମିସେସ୍ ମୁଖାର୍ଜି) ହସି ହସି କହିଲେ ''ସେମାନଙ୍କର ଧାରଣା ଯେ ରାଜନୈତିକ ନେତା ନ ହେଲେ, କୋର୍ଟ ରୁମ୍‌ରେ କେହି ଏପରି ଅନର୍ଗଳ ଭାଷଣ ଦେଇ ପାରିବେ ନାହିଁ ।''

ଘଟଣାଟି ଆମେ ସମସ୍ତେ ବେଶ୍ ଉପଭୋଗ କଲୁ ।

ସିଂହଦେଓ ଜଷ୍ଟିସ ଦତ୍ତଙ୍କ ଆଦେଶ ବିରୁଦ୍ଧରେ ଦୁଇଜଣିଆ ବେଞ୍ଚରେ ଅପିଲ କରିଥିଲେ । ଚିଫ୍ ଜଷ୍ଟିସ ଶଙ୍କର ପ୍ରସାଦ ମିତ୍ର ଓ ଜଷ୍ଟିସ ସବ୍ୟସାଚୀ ମୁଖାର୍ଜି ଅପିଲଟି ବିଚାର ପାଇଁ ଗ୍ରହଣ କରି ଆଦେଶ ଦେଲେ ଯେ କମିସନ ତାଙ୍କ ବିଚାରଧାରା ଚାଲୁ ରଖିପାରିବେ, ମାତ୍ର ଏହି ଅପିଲର ଶୁଣାଣି ଶେଷ ହେବା ପର୍ଯ୍ୟନ୍ତ ତାଙ୍କର ରିପୋର୍ଟ ଦେବେ ନାହିଁ । ଚାରି ସପ୍ତାହ ପରେ ଚିଫ ଜଷ୍ଟିସ ଓ ଜଷ୍ଟିସ ସଲିଲ ରାୟ ଚୌଧୁରୀଙ୍କ ଇଜଲାସରେ ଅପିଲର ଶୁଣାଣି ଆରମ୍ଭ ହେଲା । ଆପେଲାଣ୍ଟଙ୍କ ତରଫରୁ ସୁଆଲ ଜବାବ କରୁଥିଲେ ବରିଷ୍ଠ ଆଡ୍‌ଭୋକେଟ ତାପସ ରାୟ ଓ ତାଙ୍କର ସହକାରୀ ଥିଲେ କଟକର ଆଡ୍‌ଭୋକେଟ ଶୋଭେଶଚନ୍ଦ୍ର ରାୟ । ଓଡିଶା ସରକାରଙ୍କ ତରଫରୁ ଅଧିବକ୍ତା ପୂର୍ବବତ୍ ମୁଁ, ବାରିଷ୍ଟର ଲିଲି ମୁଖାର୍ଜି ଓ ବିପିନ ବିହାରୀ ମହାନ୍ତି । ବିଚାର ପ୍ରାୟ ଦୁଇସପ୍ତାହ ବ୍ୟାପୀ ଚାଲିଲା । ଆପେଲାଣ୍ଟଙ୍କ ତରଫରୁ ତାପସ ରାୟ ତିନି ଦିନ ଯୁକ୍ତି କରିସାରିବା ପରେ ଆମର ଜବାବ୍ ଦେବାର ପାଳି ପଡ଼ିଲା । ମୁଁ ବିତର୍କ କରିବା ସମୟରେ ଅନୁଭବ କଲି, ବିଚାରପତିମାନେ ମୋର ଯୁକ୍ତିଗୁଡ଼ିକ ଯେପରି ବିନାଦ୍ୱିଧାରେ ଗ୍ରହଣ କରୁଛନ୍ତି । ତାପସ ରାୟଙ୍କ ବାଦାନୁବାଦ ସମୟରେ ବିଚାରପତିମାନେ ନାନାପ୍ରକାର ପ୍ରଶ୍ନ କରି ତାଙ୍କୁ ବିବ୍ରତ କରି ଦେଉଥିଲେ, ଅଥଚ ମୋର ବଚନିକା ସମୟରେ କୋର୍ଟରୁ କୌଣସି ପ୍ରଶ୍ନ ନାହିଁ । ପ୍ରଥମ ଦିନ ଚାରିଟା ସମୟରେ କୋର୍ଟ ହଲ୍‌ରୁ ବାହାରିବା ପରେ ଲିଲି ଦେଇ ପରିହାସ କରି କହିଲେ ''ଚିଫ ଜଷ୍ଟିସ ଆପଣଙ୍କର ଯୁକ୍ତିଗୁଡ଼ିକ ପିଇ ଯାଉଛନ୍ତି ।'' ଆମ ତରଫରୁ ପ୍ରତ୍ୟୁତ୍ତର ତିନି ଦିନ ଧରି ଚାଲିବା ପରେ କୋର୍ଟ ଛୁଟି

ହେତୁ ବିଚାର ତୃତୀୟ ସପ୍ତାହକୁ ମୁଲତବୀ ରହିଲା । ବିଚାରପତି ମାନଙ୍କ ଆଚରଣରୁ ଆମ୍ଭେମାନେ ଅନୁଭବ କରୁଥିଲୁ ଯେ ନିଷ୍ପତ୍ତି ଆମ ପକ୍ଷରେ ଯିବ । ଯାହାହେଉ ପର ସପ୍ତାହରେ କୋର୍ଟ ଖୋଲିବା ପରେ ଯେତେବେଳେ ମୁଁ ଯୁକ୍ତି ପେଶ୍ କରିବା ପାଇଁ ଠିଆ ହୁଏ, ଅପର ପକ୍ଷର ଆଡ୍‌ଭୋକେଟ୍ ତାପସ ରାୟ ହଠାତ୍ ଠିଆ ହୋଇ କହିଲେ "ଆପେଲାଣ୍ଟ ତାଙ୍କର ଅପିଲ ଉଠାଇ ନେବା ପାଇଁ ଅନୁମତି ପ୍ରାର୍ଥନା କରୁଛନ୍ତି ।" ଆମ୍ଭେମାନେ ସ୍ତମ୍ଭୀଭୂତ ହୋଇଗଲୁ । ଚିଫ ଜଷ୍ଟିସ ଶଙ୍କର ପ୍ରସାଦ ମିତ୍ର ଆଶ୍ଚର୍ଯ୍ୟ ହୋଇ ପଚାରିଲେ "ଏତେ ବାଟ ଆଗେଇଲା ପରେ ଆପିଲ ଉଇଥଡ୍ର କରିବେ ? ଆମେ ଦୁଇ ସପ୍ତାହ ଧରି ଖୁବ୍ ଇଣ୍ଟରେଷ୍ଟିଂ ଆର୍ଗୁମେଣ୍ଟ ଶୁଣୁଅଛୁ । ଗୋଟିଏ ଅତି ଉପାଦେୟ ରାୟ ଦେବାରୁ ଆମକୁ ବଞ୍ଚିତ କରିବା ଉଚିତ ନୁହେ ।"

ଆଡଭୋକେଟ୍ ରାୟ ଯେତେବେଳେ ବାରମ୍ବାର ଅନୁରୋଧ କଲେ, ବିନା ସର୍ତ୍ତରେ ଆପିଲ ଉଠାଇନେବା ପାଇଁ ଅନୁମତି ଦେବା ପରିବର୍ତ୍ତେ, କୋର୍ଟ ଅପିଲଟି ଡିସମିସ୍ କରିଦେଲେ ।

ଜଷ୍ଟିସ ଶଙ୍କର ମିତ୍ର ଆଉ ଇହଧାମରେ ନାହାନ୍ତି । ୧୯୮୪ ମସିହାରୁ ତାଙ୍କର ସ୍ୱର୍ଗବାସ ହେଲାଣି । କଲିକତା ହାଇକୋର୍ଟରେ ଦୀର୍ଘ ଛ' ବର୍ଷ ଚିଫ ଜଷ୍ଟିସ ରହିବା ପରେ ଡିସେମ୍ବର ୧୯୭୯ ମସିହାରେ ସେ ଅବସର ନେଲେ । କିଛି ଦିନ ପରେ ସେ ରାଜ୍ୟସଭାକୁ କଂଗ୍ରେସ ସମର୍ଥନରେ ନିର୍ଦ୍ଦଳୀୟ ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇଥିଲେ । ଚିଫ ଜଷ୍ଟିସ ଥିବା ସମୟରେ ୧୯୭୬ ଏପ୍ରିଲ ମାସରେ ସେ ସୁପ୍ରିମ କୋର୍ଟର ବିଚାରପତି ଜଷ୍ଟିସ ଭଗବତୀଙ୍କ ସହ ଭୁବନେଶ୍ୱରରେ ଅନୁଷ୍ଠିତ ଏକ ଆଇନଜୀବୀ ସମ୍ମିଳନୀରେ ଯୋଗ ଦେଇଥିଲେ ମୁଖ୍ୟ ଅତିଥି ଭାବରେ । ଉକ୍ତ ସମ୍ମିଳନୀରେ ମୁଁ ସଭାପତିତ୍ୱ କରୁଥିଲି । ସଭା ମଞ୍ଚରୁ ଜଷ୍ଟିସ ମିତ୍ର ମୋ ସଂପର୍କରେ ଯେଉଁସବୁ ମର୍ଯ୍ୟାଦାଜନକ ମନ୍ତବ୍ୟ ଦେଇଥିଲେ, ତାହା କେବେ ଭୁଲି ପାରିବି ନାହିଁ । ୧୯୮୨ ମସିହାରେ ହାଇକୋର୍ଟରେ ଗୋଟିଏ ଅନୁଷ୍ଠାନରେ ଯୋଗ ଦେବା ପାଇଁ ସେ କଟକ ଆସିଥିଲେ । ବନ୍ଧୁ ପୁରଂଜନ ରାୟଙ୍କ ଏକ ପ୍ରଶ୍ନର ଉତ୍ତରରେ ସେ ସର୍ବ ସମକ୍ଷରେ ମୋ ସଂପର୍କରେ ଯେଉଁ ମତାମତ ଦେଇଥିଲେ, ତାହା କେବଳ ଜଣେ ଉଦାର, ଗୁଣଗ୍ରାହୀ ବ୍ୟକ୍ତି ପକ୍ଷରେ ସମ୍ଭବ ।

ଏ ମଧ୍ୟରେ ଭୁବନେଶ୍ୱରରେ ଜଷ୍ଟିସ ଜି.କେ. ମିତ୍ରଙ୍କ ଇଜଲାସରେ ବିଚାର ଆରମ୍ଭ ହେଲା । କମିସନ ଏଥି ପୂର୍ବରୁ ଆଦେଶ ଦେଇଥିଲେ ଯେ

କଲିକତା ହାଇକୋର୍ଟ ଯଦି ଶୁଣାଣି ସ୍ଥଗିତ ରଖିବାକୁ ଆଦେଶ ନ ଦିଅନ୍ତି, ତା ହେଲେ ସେ ଶୁଣାଣି ବନ୍ଦ ରଖିବେ ନାହିଁ। କଲିକତା ହାଇକୋର୍ଟର ନାସ୍ତିବାଚକ ଆଦେଶ ଦୃଷ୍ଟିରୁ, ୧୯୭୪ ଜାନୁଆରୀ ଆଠ ତାରିଖରେ ମୋର ଆର୍ଗୁମେଣ୍ଟ ଆରମ୍ଭ ହେଲା ଓ କ୍ରମାଗତ ଅଠର ତାରିଖ ପର୍ଯ୍ୟନ୍ତ ଚାଲିଲା। ସେଦିନ ହିଅରିଂ ପୁଣି ଫେବ୍ରୁଆରୀ ପାଞ୍ଚ ତାରିଖକୁ ମୁଲତବୀ ରହିଲା। କମିସନଙ୍କ ସମ୍ମୁଖରେ ମୋର ଯୁକ୍ତିର ବିସ୍ତୃତ ବିବରଣୀ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେଉଥାଏ। 'ସମାଜ'ରେ ପ୍ରକାଶିତ ମୋର ଯୁକ୍ତିର କେତେକ ବିବରଣୀ ଏ ପୁସ୍ତକରେ ସନ୍ନିବେଶିତ କରାଯାଇଛି। ଏହି ପ୍ରକାଶନ ଗୁଡ଼ିକରୁ ଦେଖାଯିବ ଯେ ସ୍ୱତନ୍ତ୍ର ଦଳ ନେତାମାନଙ୍କର ନୀତି-ଗତି ଓ କାର୍ଯ୍ୟକଳାପ ଉପରେ କମିସନରେ ପ୍ରଦତ୍ତ ମୋର ଯୁକ୍ତିର ବିବରଣୀ ଯେ କୌଣସି ରାଜନୈତିକ ମଞ୍ଚର ସମାଲୋଚନା ଠାରୁ ଅଧିକ ତଥ୍ୟଭିତ୍ତିକ ଓ ଫଳପ୍ରଦ ଥିଲା। କେନ୍ଦୁପତ୍ର ନିୟମାବଳୀର ବିରୁଦ୍ଧାଚରଣ କରି ବେଆଇନ ଭାବରେ ବ୍ୟବସାୟୀମାନଙ୍କୁ ଆର୍ଥିକ ସୁବିଧା ସୁଯୋଗ ଦେବା ଦ୍ୱାରା ରାଜକୋଷର ଯେ ପ୍ରଭୂତ କ୍ଷତି ସାଧିତ ହୋଇଛି ଏବଂ ମନ୍ତ୍ରୀମାନେ ବ୍ୟକ୍ତିଗତ ସ୍ୱାର୍ଥରକ୍ଷା ପାଇଁ ଜନ-ସ୍ୱାର୍ଥ ବିରୁଦ୍ଧରେ କାର୍ଯ୍ୟ କରିଛନ୍ତି, ଶତ ବକ୍ତୃତା ଠାରୁ ଏହି ବିବରଣୀ ଥିଲା ସେମାନଙ୍କ ପାଇଁ ଅଧିକ ମାରାତ୍ମକ। ତେଣୁ ନିର୍ବାଚନର ଅବ୍ୟବହିତ ପୂର୍ବରୁ ଏହି ବିବରଣୀର ପ୍ରକାଶନ ଯେପରି ବନ୍ଦ ରହେ, ସେଥିପାଇଁ ମନ୍ତ୍ରୀ-ପ୍ରତିବାଦୀମାନେ କମିସନଙ୍କ ନିକଟରେ ବାରମ୍ବାର ମହଲତ୍ ଦରଖାସ୍ତ ଦେଉଥିଲେ। ଗୋଟିଏ ମହଲତ୍ ଦରଖାସ୍ତରେ ଏ କଥା ମଧ୍ୟ ଲେଖାଥିଲା ଯେ ନିର୍ବାଚନ ପରେ ପରମ୍ପରା ଅନୁଯାୟୀ ଆଡ୍‌ଭୋକେଟ ଜେନେରାଲଙ୍କୁ ଇସ୍ତଫା ଦେବାକୁ ପଡ଼ିବ, ଏଣୁ ମାର୍ଚ୍ଚ ଶେଷ ପର୍ଯ୍ୟନ୍ତ ହିଅରିଂ ମୁଲତବୀ ରହିବା ଆବଶ୍ୟକ। କମିସନ୍ ବାଧ୍ୟ ହୋଇ ମାର୍ଚ୍ଚ ୨୫ ତାରିଖକୁ ହିଅରିଂ ଧାର୍ଯ୍ୟ କଲେ।

ଭାଗ୍ୟର କି ବିଡ଼ମ୍ବନା! ଯେଉଁ ନିର୍ବାଚନର ଫଳାଫଳ ଉପରେ ଭରସା କରି, ମନ୍ତ୍ରୀ-ପ୍ରତିବାଦୀମାନେ କମିସନ ନିଷ୍ପତ୍ତିରେ ବିଳମ୍ବ କରାଇବାକୁ ଉଦ୍ୟମ କରୁଥିଲେ, ସେହି ନିର୍ବାଚନ ଫଳାଫଳ ସେମାନଙ୍କ ପାଇଁ ଅନ୍ତରାୟ ହେଲା। ଫେବ୍ରୁଆରୀ ଶେଷରେ ଅନୁଷ୍ଠିତ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ଦଳ ବିଜୟୀ ହେଲେ ଓ ନନ୍ଦିନୀ ଶତପଥୀ ପୁଣି ଥରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ। ମୁଁ ମଧ୍ୟ ପୁନର୍ବାର ଆଡ୍‌ଭୋକେଟ ଜେନେରାଲ ମନୋନୀତ ହେଲି।

ଏହାପରେ କମିସନ୍‌ଙ୍କ ନିର୍ଦ୍ଦେଶ ଅନୁଯାୟୀ ମାର୍ଚ୍ଚ ସତେଇଶ ତାରିଖରେ ହିଅରିଂ ଆରମ୍ଭ ହେଲା ଏବଂ ମୋର ଆର୍ଗୁମେଣ୍ଟ ଏପ୍ରିଲ ଛ' ତାରିଖରେ ଶେଷ ହେଲା । ତାପରେ ଜଂଗଲ ବିଭାଗ ସେକ୍ରେଟାରୀ ସୁନ୍ଦରରାଜନଙ୍କ ପକ୍ଷରୁ ଆଡ୍‌ଭୋକେଟ ଶରତ ଚନ୍ଦ୍ର ମହାପାତ୍ର (ପରେ ବିଚାରପତି ମହାପାତ୍ର) ଓ ଅର୍ଜ୍ଜୁନ ଶତପଥୀଙ୍କ ତରଫରୁ ଭୁବନେଶ୍ୱରର ଆଡ୍‌ଭୋକେଟ୍ ରମେଶ ଚନ୍ଦ୍ର ଦାସ ସେମାନଙ୍କର ଯୁକ୍ତି ଶେଷ କଲେ । ରଣଜିତ୍ ମହାନ୍ତିଙ୍କର ଅସୁବିଧା ହେତୁ ଖରାଛୁଟି ପାଇଁ କୋର୍ଟ ବନ୍ଦ ହେବା ପରେ ପୁରୀରେ ଶୁଣାଣି ଆରମ୍ଭ ହେଲା । ମଇ ମାସ ତେର ଓ ଚଉଦ ତାରିଖରେ ଆଡ୍‌ଭୋକେଟ ଶୋଭେଶ ଚନ୍ଦ୍ର ରାୟ ଅଇଁଠୁ ସାହୁଙ୍କ ତରଫରୁ ଏବଂ ଏ. କେ. ଜଗଦେବ ମହାପାତ୍ର ହର ପ୍ରସାଦ ମହାପାତ୍ରଙ୍କ ପକ୍ଷରୁ ସୁଆଲ ଜବାବ ଶେଷ କଲେ । ଆର.ଏନ୍. ସିଂହଦେଓଙ୍କ ତରଫରୁ ବାରିଷ୍ଟର ରଣଜିତ ମହାନ୍ତି ମଇ ମାସ ସତର ତାରିଖ ଦିନ ତାଙ୍କର ବକ୍ତବ୍ୟ ଆରମ୍ଭ କରି ଅଠର ତାରିଖ ଦିନ ସମାପ୍ତ କଲେ । ପ୍ରତିପକ୍ଷର ବଂଧୁମାନେ ସେମାନଙ୍କର ବଚନିକା ପେଶ୍ କରିବା ସମୟରେ ମୁଁ କେବଳ ମନେ ମନେ ହସୁଥିଲି । ଯେଉଁ ବିବାଦୀୟ ଅଭିଯୋଗ ଗୁଡ଼ିକୁ ମୁଁ ତିନି ସପ୍ତାହ ଧରି ତଥ୍ୟଭିତ୍ତିରେ ଓ ଆଇନର ପରିପ୍ରେକ୍ଷୀରେ ସାବ୍ୟସ୍ତ କରିଗଲି, ପ୍ରତିପକ୍ଷର ଅଧିବକ୍ତାମାନେ ଦିନେ, ଓଳିଏ ବା ଦୁଇଦିନ ମଧ୍ୟରେ ତାର ଜବାବ୍ ଦେଇଥିଲେ । ଫଳାଫଳ ବିଷୟରେ ମନରେ ଆଉ ସଂଦେହ ରହିଲା ନାହିଁ । ଜଷ୍ଟିସ୍ ଜି.କେ. ମିତ୍ର ଅଗଷ୍ଟ ୨୯ ତାରିଖରେ ତାଙ୍କର ରିପୋର୍ଟ ଓଡ଼ିଶା ସରକାରଙ୍କ ନିକଟରେ ଦାଖଲ କଲେ । କମିସନ ସମସ୍ତ ପ୍ରତିବାଦୀଙ୍କୁ ବିଭିନ୍ନ ଅଭିଯୋଗରେ ଦୋଷୀ ସାବ୍ୟସ୍ତ କରିଥିଲେ ।

୧୯୭୧ ସେପ୍ଟେମ୍ବର ମାସରେ କେନ୍ଦୁପତ୍ର ଏଜେଣ୍ଟ ଓ ଖରିଦ୍‌ଦାରମାନଙ୍କ ସହ ଚୁକ୍ତି ନବୀକରଣ ସଂପର୍କରେ କମିସନ ତାଙ୍କର ମତାମତ ଓଡ଼ିଶା ସରକାରୀ ପ୍ରେସ୍‌ରେ ମୁଦ୍ରିତ ତାଙ୍କ ରିପୋର୍ଟର ପଂଚଦଶ ଅଧ୍ୟାୟରେ ଲିପିବଦ୍ଧ କରିଛନ୍ତି । କମିସନ ମତ ଦେଇଥିଲେ ଯେ ବିଭାଗୀୟ ସେକ୍ରେଟାରୀ ଶ୍ରୀ ସୁନ୍ଦରରାଜନ ନିଜକୁ ଗୋଟିଏ "କଣ୍ଡୁଇଟ୍ ପାଇପ" ଭାବରେ ବ୍ୟବହାର କରିଛନ୍ତି । ଜଂଗଲ ବିଭାଗର ପ୍ରଶାସନିକ ମୁଖ୍ୟ ଭାବରେ ସେ ନିଜର ସୁଚିନ୍ତିତ ମତାମତ ଦେଇ ସରକାରୀ ନିଷ୍ପତ୍ତିକୁ ପ୍ରଭାବିତ କରିବାକୁ ଉଦ୍ୟମ କରିନାହାନ୍ତି । ଫାଇଲ ଗୁଡ଼ିକ କେବଳ ତଳୁ ତାଙ୍କ ଜରିଆରେ ଓ ତାଙ୍କ ଦସ୍ତଖତ୍‌ରେ ମନ୍ତ୍ରୀଙ୍କ ନିକଟକୁ ପଠାଯାଇଛି । କମିସନ ଲେଖିଛନ୍ତି ଯେ ମନ୍ତ୍ରୀ ସାହୁଙ୍କ ଆଦେଶ ଗୁଡ଼ିକ ଆଇନ୍

ବିରୋଧୀ, ସମ୍ବିଧାନ ବିରୋଧୀ ଓ ସରକାରୀ ସ୍ୱାର୍ଥ ବିରୋଧୀ । ପ୍ରଚଳିତ ଚୁକ୍ତିରେ ଯେଉଁ ମୂଲ୍ୟର ଉଲ୍ଲେଖ ଥିଲା, ତାକୁ ବଢ଼ାଇବାକୁ ଉଦ୍ୟମ ନ କରି ବା ସେଥିପାଇଁ କୌଣସି ଟେଣ୍ଡର ନ ମଗାଇ ପୂର୍ବ ଚୁକ୍ତିର ନବୀକରଣ କରିବା ଅନ୍ୟାୟ ଓ ଅସଂଗତ । ଏଥିପାଇଁ ନିୟମ ଅନୁଯାୟୀ ଅର୍ଥ ବିଭାଗ ସହ ପରାମର୍ଶ କରାଯାଇ ନାହିଁ । ଯେପରି ତରବରିଆ ଭାବେ ଆଦେଶ ପ୍ରଦାନ କରାଯାଇଛି, ସେଥିରୁ ମନେ ହୁଏ ଯେ ମନ୍ତ୍ରୀଙ୍କ କାର୍ଯ୍ୟ ବୋନାଫାଇଡ୍ ବା ସାଧୁ ଉଦ୍ଦେଶ୍ୟ ପ୍ରଣୋଦିତ ନୁହେ ।

ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ବିଭିନ୍ନ ଆଦେଶ ସଂପର୍କରେ କମିସନ୍ ଯେଉଁ ନିର୍ଦ୍ଧାରଣମାନ ଦେଇଥିଲେ, ତାହା ସରକାରଙ୍କ ଦ୍ୱାରା ପ୍ରକାଶିତ ରିପୋର୍ଟର ୧୨୪ରୁ ୧୨୭ ପୃଷ୍ଠା ମଧ୍ୟରେ ଲିପିବଦ୍ଧ । କେନ୍ଦୁପତ୍ର ଏଜେଣ୍ଟ ଓ ଖରିଦ୍‌ଦାରମାନଙ୍କୁ ରିହାତି ଦେବା ପାଇଁ ଓ କମ୍ ମୂଲ୍ୟରେ ବିକ୍ରି କରିବା ପାଇଁ ସିଂହଦେଓ ଯେଉଁ ଆଦେଶ ଦେଇଥିଲେ, କମିସନଙ୍କ ମତରେ ସେ ଗୁଡ଼ିକ ସଂପୂର୍ଣ୍ଣ ଆଇନ ବିରୋଧୀ, ଅସଂଗତ ଓ ଅନ୍ୟାୟ । ଯେହେତୁ ଏହାଦ୍ୱାରା ରାଜସ୍ୱ ସଂଗ୍ରହ କ୍ଷତିଗ୍ରସ୍ତ ହୋଇଛି, ଏଣୁ ଏ ବିଷୟରେ ଅର୍ଥ ବିଭାଗର ମତାମତ ନିଆଯିବା ଉଚିତ ଥିଲା । ସରକାରୀ କାର୍ଯ୍ୟନିର୍ବାହ ନିୟମାବଳୀ ବା ରୁଲସ୍ ଅଫ୍ ବିଜିନେସ୍‌ର ଅଷ୍ଟମ ଧାରା ଅନୁଯାୟୀ ଏ ପ୍ରକାର ନିଷ୍ପତ୍ତି କ୍ୟାବିନେଟ୍‌ର ଅନୁମୋଦନ ସାପେକ୍ଷ, ଅଥଚ ଏହା କ୍ୟାବିନେଟରେ ବିଚାର କରାଯାଇ ନାହିଁ । ଅବଶ୍ୟ ୧୯୭୦ ମସିହା ଡିସେମ୍ବର ୩୧ ତାରିଖରେ ରାଜନୈତିକ ବିରୋଧ ହେତୁ ମୁଖ୍ୟମନ୍ତ୍ରୀ ତାଙ୍କର ନଭେମ୍ବର ୧୯ ତାରିଖରେ ଆଦେଶକୁ ସ୍ଥଗିତ ରଖିଥିଲେ, କିନ୍ତୁ ଏହି ସ୍ଥଗିତ ଆଦେଶ ଥିଲା ସଂପୂର୍ଣ୍ଣ ନିରର୍ଥକ । କାରଣ ସେତେବେଳେକୁ ବ୍ୟବସାୟୀମାନେ ଉଣେଇଶ ନଭେମ୍ବର ଆଦେଶ ମୁତାବିକ୍ ସମସ୍ତ ଫାଏଦା ଉଠାଇ ନେଇଥିଲେ, ଅଥଚ ବେଆଇନ ଭାବରେ ନେଇଥିବା ଆର୍ଥିକ ସୁବିଧା ବ୍ୟବସାୟୀମାନଙ୍କ ଠାରୁ ଆଦାୟ କରିବା ପାଇଁ କୌଣସି ଅର୍ଡ଼ର ଦିଆଯାଇ ନଥିଲା । ଏହି ଭାବରେ ସରକାରଙ୍କର ଚାଳିଶ ଲକ୍ଷ ଟଂକାରୁ ଅଧିକ କ୍ଷତି ହୋଇଥିଲା ।

କମିସନ୍‌ଙ୍କ ମତରେ ଏ ସବୁ ଆଦେଶ ଥିଲା ସଂପୂର୍ଣ୍ଣ କ୍ଷମତା ବହିର୍ଭୂତ କାର୍ଯ୍ୟ ଓ ଏହାଦ୍ୱାରା ସିଂହଦେଓ କ୍ଷମତାର ଅପବ୍ୟବହାର କରିଛନ୍ତି । ବିବାଦୀୟ ଆଦେଶ ଗୁଡ଼ିକ ମାଲାଫାଇଡ଼୍ ବା ପ୍ରବଂଚନାମୂଳକ ।



ତା ୧୯-୨-୭୪

## ଜଙ୍ଗଲବିଭାଗ ସେକ୍ରେଟରୀ
## ନିଜ କର୍ତ୍ତବ୍ୟ କରିନାହାନ୍ତି

ସେ ସରକାରଙ୍କୁ, ଠିକଣା ପରାମର୍ଶ ଓ ବାଟ ନ ଦେଖାଇ
ଏକ ଭୁଲ ନୀତିକୁ କାର୍ଯ୍ୟରେ ପରିଣତ କରିବାରେ
ସାହାଯ୍ୟ କରିଛନ୍ତି

କେନ୍ଦୁପତ୍ର ତଦନ୍ତ କମିଶନଙ୍କ ଆଗରେ
ଆଡଭୋକେଟ ଜେନେରାଲ ଶ୍ରୀ ରଥଙ୍କ ଯୁକ୍ତି

ତା ୫-୪-୭୪

## କେନ୍ଦୁପତ୍ର କାରବାରରେ
## ସରକାରୀ ନିୟମାବଳୀର ଘୋର
## ବ୍ୟତିକ୍ରମ ଘଟିଛି

ବିଭାଗୀୟ ମନ୍ତ୍ରୀ, ସେକ୍ରେଟାରୀ ଓ ଅଣ୍ଡର ସେକ୍ରେଟାରୀ
ପ୍ରମୁଖ ସମସ୍ତେ ଏକ ଲକ୍ଷ୍ୟରେ କାମ କରିଥିବା ସ୍ପଷ୍ଟ
ମନ୍ତ୍ର-କମିଶନଙ୍କ ଆଗରେ ଓଡ଼ିଶା ଆଡ଼ଭୋକେଟ
ଜେନେରାଲ ଶ୍ରୀ ରଥଙ୍କ ଯୁକ୍ତି

# ବିଜୁ ବନାମ ରାଷ୍ଟ୍ରପତି

ଆମେ ମାଟ୍ରିକ୍ୟୁଲେସନ ପଢ଼ିବା ସମୟରେ ସଂକ୍ଷେପ ଲିଖନ ବା ପ୍ରେସିସ୍ ଲେଖିବା ପାଇଁ ଇଂରାଜୀ ପରୀକ୍ଷାରେ ଗୋଟିଏ ପ୍ରଶ୍ନ ପଡ଼େ । ଗୋଟିଏ ସୁଦୀର୍ଘ ପାରାଗ୍ରାଫକୁ ଅଳ୍ପ କେତୋଟି ଧାଡ଼ିରେ ଲେଖି ବର୍ଣ୍ଣିତ ବିଷୟର ମର୍ମ ପ୍ରକାଶ କରିବାରେ ପରୀକ୍ଷାର୍ଥୀଙ୍କର ଯୋଗ୍ୟତା ବିଚାର କରାଯାଏ । ଇଂରାଜୀ ଭାଷାରେ ଲିଖିତ ବ୍ରିଟିଶ ଶାସନ ଅମଳରୁ ଭାରତରେ ପ୍ରଚଳିତ ବିଧି ବିଧାନ ଗୁଡ଼ିକ ସଂକ୍ଷିପ୍ତ ପ୍ରକାଶ ଭଂଗୀ ପାଇଁ ବିଖ୍ୟାତ । ଅଥଚ ଇଂରେଜ ଅମଳରୁ କଲିକତା ଓ ବମ୍ବେ ହାଇକୋର୍ଟରେ ଆଇନଗତ ବିବାଦ ଓ ବିଶ୍ଳେଷଣକୁ ସଂକ୍ଷେପରେ ବର୍ଣ୍ଣନା ନ କରିବାଟା ପରଂପରାରେ ପରିଣତ ହୋଇଥିଲା । ବାଦୀ ବା ଆବେଦନକାରୀଙ୍କର ଅର୍ଜି ବା ଆବେଦନ ପତ୍ର ଓ ପ୍ରତିବାଦୀଙ୍କର ଜବାବ୍‌କୁ ଯେତେ ଦୀର୍ଘ କରାଯାଇ ପାରେ, ସେଥିପାଇଁ ସତତ ଉଦ୍ୟମ ହେଉଥିଲା । ଅନ୍ୟାନ୍ୟ ବହୁ କାରଣ ମଧ୍ୟରେ ଏପରି ଦୀର୍ଘ ଅର୍ଜି ଜବାବ ପ୍ରସ୍ତୁତ କରିବାର ମୂଳ କାରଣ ଥିଲା ସଲିସିଟର ପ୍ରଥା । କଲିକତା ଓ ବମ୍ବେ ହାଇକୋର୍ଟରେ ସଲିସିଟରମାନେ ସବୁ ମାଲି ମୋକଦ୍ଦମାରେ ତଦ୍‌ବିର କରୁଥିଲେ । ଯେତେ ଦୀର୍ଘ ଅର୍ଜି ବା ଜବାବ ହେବ, ମହକିଲମାନଙ୍କ ଠାରୁ ଶବ୍ଦ ସଂଖ୍ୟା ବା ପୃଷ୍ଠା ସଂଖ୍ୟା ଅନୁଯାୟୀ ଫିସ୍ ଆଦାୟ କରାଯାଏ । ଅବଶ୍ୟ ସଲିସିଟର ପ୍ରଥା ପ୍ରାୟ ପନ୍ଦର ବର୍ଷ ପୂର୍ବେ ଉଠାଇ ଦିଆଯାଇଛି । କିନ୍ତୁ ଯେଉଁ ବିଷୟକୁ ସଂକ୍ଷେପରେ ପ୍ରକାଶ କରାଯାଇ ପାରିବ, ତାକୁ ଶବ୍ଦାଡ଼ମ୍ବର ଓ ପୁନରାବୃତ୍ତି ଦ୍ୱାରା ଅଯଥା ଦୀର୍ଘ ଓ ବିସ୍ତୃତ କରିବାର ପରଂପରା ଏବେ ମଧ୍ୟ ଯାଇ ନାହିଁ । ମୋ ମତରେ ଏପରି ଦୀର୍ଘ ବର୍ଣ୍ଣନା ପଦ୍ଧତି ଅର୍ଥୋପାର୍ଜନର ପଥ ସୁଗମ କରିପାରେ, କିନ୍ତୁ ଏହା ପାଣ୍ଡିତ୍ୟର ପରିଚାୟକ ନୁହେଁ । ବରଂ ପୁନରାବୃତ୍ତି ଦୋଷରେ ଲେଖନୀ ବହୁ କ୍ଷେତ୍ରରେ ଭାରସାମ୍ୟ ହରାଇ ବସେ ।

ଏ ସଂକ୍ରାନ୍ତରେ ଗୋଟିଏ ଘଟଣା ମନେ ପଡୁଛି । ପଂଚ ଦଶକରେ ମହାନଦୀରେ ହୀରାକୁଦ ବନ୍ଧ ତିଆରି ଶେଷ ହେଲା । ପାଣି ଆବଦ୍ଧ ରହି ଯେଉଁ ବିରାଟ ରିଜର୍ଭୟର ବା ଜଳଭଣ୍ଡାର ସୃଷ୍ଟି ହେଲା, ତହିଁରୁ ପାଣି ଝରି ସମ୍ବଲପୁର ନିକଟସ୍ଥ ରାମପୁର କୋଇଲା ଖଣି ଜଳାର୍ଣ୍ଣବ ହେଉଚି ବୋଲି ଅଭିଯୋଗ ହେଲା ଓ ଖଣି ମାଲିକ ଓଡ଼ିଶା ସରକାରଙ୍କ ବିରୁଦ୍ଧରେ ପଚାଶ ଲକ୍ଷ ଟଂକା କ୍ଷତିପୂରଣ ଦାବୀ କରି ସମ୍ବଲପୁର ସବ୍‌ଜଜ୍‌ଙ୍କ କୋର୍ଟରେ ଏକ

କେସ୍ଟି ଦାଏର କଲେ । ସେ କାଳରେ ଓଡ଼ିଶାରେ ପଚାଶ ଲକ୍ଷ ଟଂକା ଦାବୀ ସମ୍ବଳିତ ମୋକଦ୍ଦମା ନଥିଲା କହିଲେ ଚଳେ । ଯାହାହେଉ ମୋକଦ୍ଦମାର ଗୁରୁତ୍ୱ ଦୃଷ୍ଟିରୁ ସ୍ଥାନୀୟ ସରକାରୀ ଓକିଲ ଜବାବ ପ୍ରସ୍ତୁତ କରିବା ପାଇଁ ଆଇନ ବିଭାଗ ଜରିଆରେ କାଗଜପତ୍ର ଆଡ୍‌ଭୋକେଟ ଜେନେରାଲ ଅଫସିକୁ ପଠାଇଦେଲେ । ବାଦୀଙ୍କର ଅର୍ଜିଟି ଥିଲା ଅତି ଦୀର୍ଘ, ପ୍ରାୟ ଷାଠିଏ ପୃଷ୍ଠାର । ଏ.ଜି. ଅଫିସରେ ଦୁଇ ତିନି ବର୍ଷ ପଡ଼ି ରହିଲା ପରେ ମଧ୍ୟ ଏହାର ଜବାବ୍ ତିଆରି ହୋଇ ପାରିଲା ନାହିଁ । ଏ ମଧ୍ୟରେ ଶ୍ରୀ ହରିହର ମହାପାତ୍ର ପାଟନା ହାଇକୋର୍ଟର ବିଚାରପତି ନିଯୁକ୍ତ ହେବାର ଅବ୍ୟବହିତ ପୂର୍ବରୁ ୧୯୫୯ ମସିହା ଜୁନ୍ ମଧ୍ୟ ଭାଗରେ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ ହେଲେ । ଜୁଲାଇ ପ୍ରଥମ ସପ୍ତାହରେ ହରିହର ବାବୁ ଦିନେ ରାମପୁର କୋଲିଏରୀ ଅର୍ଜିଟି ମତେ ବଢ଼ାଇ ଦେଇ ଜବାବ୍ ତିଆର କରିବା ପାଇଁ ଅନୁରୋଧ କଲେ । ମୁଁ ସେତେବେଳେ ଷ୍ଟାଣ୍ଡିଂ କାଉନସେଲ । ରାମଚନ୍ଦ୍ର ମିଶ୍ର ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ । ମୋ ଉପରେ କାହିଁକି ଏପରି ଗୁରୁ ଦାୟିତ୍ୱ ଲଦି ଦିଆଗଲା, ତାର ମର୍ମ ବୁଝି ପାରିଲି ନାହିଁ । ନଥିର କଳେବର ଦେଖି ମନରେ ଆଶଂକା ହେଲା । ଅଫିସରେ ବସି ଅର୍ଜିଟି ପଢ଼ିବା ପରେ ଅନୁଭବ କଲି ସେଇ ଏକ କଥା ବାରବାର ବହୁ ପୃଷ୍ଠାରେ ଅବତାରଣା କରାଯାଇଛି, ଯାହାକି ଅତି ସଂକ୍ଷେପରେ ଲେଖାଯାଇ ପାରିଥାନ୍ତା । କୌଣସି ଦାୟିତ୍ୱ ପଡ଼ିଲେ ସେଥିରୁ ପଛଘୁଂଚା ଦେବା ମୋର ଅଭ୍ୟାସ ବିରୁଦ୍ଧ । କୋର୍ଟରୁ ଫେରିବା ବାଟରେ କଟକ ଲ' ଟାଇମ୍‌ସ ଦୋକାନରୁ ବିଖ୍ୟାତ ଆଇନ ବିଶାରଦ ସାମଣ୍ଡଙ୍କ ଲିଖିତ 'ଟର୍ଟ' ବହିର ଗୋଟିଏ ନୂତନ ସଂସ୍କରଣ କିଣି ଆଣିଲି । ଘରେ ନଥିଟି ମନୋଯୋଗ ସହ ପଢ଼ିବା ପରେ, ସାମଣ୍ଡ ବହିଟି ଯେତେବେଳେ ପଢ଼େ, ମୁଁ ଅନୁଭବ କଲି, ଅର୍ଜିର ପୃଷ୍ଠା ପରେ ପୃଷ୍ଠା ସାମଣ୍ଡଙ୍କ ବହିରୁ ନକଲ ହୋଇଛି ଓ ଏହି ଭାବରେ ପୁନରାବୃତ୍ତି ହେତୁ ଅର୍ଜିର କଳେବର ବୃଦ୍ଧି ପାଇଚି । କିନ୍ତୁ ସାମଣ୍ଡ ବହିର ଗୋଟିଏ ପୃଷ୍ଠାରେ ଯଦି କୌଣସି ନୀତି ବା ତତ୍ତ୍ୱର ବିଶ୍ଳେଷଣ ଅଛି, ଅପର ପୃଷ୍ଠାରେ ତା ବିପରୀତ ବିଶ୍ଳେଷଣ ମଧ୍ୟ ରହିଛି । ଅର୍ଜି ଲେଖକ ସଲିସିଟର ସାମଣ୍ଡ ବହିର ଯେଉଁ ପୃଷ୍ଠାରୁ ଗୋଟିଏ ତତ୍ତ୍ୱ ଉଦ୍ଧାର କରିଛନ୍ତି, ଜବାବ ଲେଖିବା ପାଇଁ ବହିର ଅପର ପୃଷ୍ଠାରେ ଲିଖିତ ତତ୍ତ୍ୱକୁ ଉଦ୍ଧାର କରିବାରେ ମୋର କୌଣସି ଅସୁବିଧା ହେଲା ନାହିଁ । ବାଦୀଙ୍କ ତରଫରୁ ସ୍ୱୀକାରୋକ୍ତି ନଥାଇ ଜଣେ ବିଖ୍ୟାତ ଆଇନବିତ୍‌ଙ୍କ ବହିରୁ ଯେପରି ନିର୍ଲଜ୍ଜ ଭାବରେ ଉଦ୍ଧାର କରାଯାଇଛି, ମୁଁ ଜବାବ ଲେଖିବାରେ

ଅପର ପରିଚ୍ଛେଦରୁ ନିର୍ବିକାର ଭାବରେ ସାମାନ୍ୟ ଭାଷାରେ ପରିବର୍ତ୍ତନ କରି ଉଦ୍ଧାର କରିବା ହେତୁ 'ଜବାବ୍'ର କଳେବର ମଧ୍ୟ ଅନୁରୂପ ବୃଦ୍ଧି ପାଇଲା । ଷାଠିଏ ପୃଷ୍ଠାର ଟାଇପ କରା ଜବାବ୍ ମୁଁ ଯେତେବେଳେ ଆଡ୍‌ଭୋକେଟ୍ ଜେନେରାଲଙ୍କୁ ଦିଏ, ସେ ତା ଉପରେ ଅଧଘଣ୍ଟାଏ ଆଖି ବୁଲାଇ ଦେଇ ତାକୁ ନିର୍ଦ୍ୱନ୍ଦରେ ଅନୁମୋଦନ କଲେ ଓ ମତେ ଖୁବ୍ ବାହାବା ଦେଲେ । ତା ପରେ ମୁଁ ତାଙ୍କୁ କହିଲି ସଫଳତାର ଭିତିରି କାହାଣୀ । ସେ କହିଲେ "ଶଠେ ଶାଠ୍ୟଂ ସମାଚରେତ୍ । ବନ୍ଧେ ସଲିସିଟରଙ୍କୁ ତୁମେ ଠିକଣା ଜବାବ ଦେଇଛ ।"

ଏହିପରି ଆଉ ଗୋଟିଏ ଘଟଣା ଘଟିଲା ୧୯୭୩ ମସିହା ଏପ୍ରିଲ ଶେଷ ସପ୍ତାହରେ । କିନ୍ତୁ ତା ଥିଲା ଭିନ୍ନ ପ୍ରକାରର, ଭିନ୍ନ ସ୍ୱାଦର । ଏପ୍ରିଲ ୨୯ ବା ୩୦ ତାରିଖ ଠିକ୍ ମନେ ପଡୁ ନାହିଁ । ମୁଁ ଦିଲ୍ଲୀରୁ ଫେରି ସଂଧ୍ୟାରେ ଦେଖେ, ପରଦିନର କୋର୍ଟ ବ୍ରିଫ୍ ଟେବୁଲ ଉପରେ ଥୁଆ ହୋଇଛି ଏବଂ ସେଥିରେ ଅଛି ଏକ ଛପା ହୋଇଥିବା ଦୀର୍ଘ ରିଟ୍ ପିଟିସନ - ଦାଖଲ କରିଛନ୍ତି ପ୍ରଗତି ଦଳର ସୁବିଖ୍ୟାତ ନେତା ବିଜୟାନନ୍ଦ ପଟ୍ଟନାୟକ ଓ ଅନ୍ୟ ୭୩ ଜଣ ବିଧାୟକ । ମାର୍ଚ୍ଚ ତିନି ତାରିଖର ରାଷ୍ଟ୍ରପତି-ଶାସନ ଘୋଷଣା ବିରୁଦ୍ଧରେ ପ୍ରଜାତନ୍ତ୍ର ପ୍ରେସ୍‌ରେ ମୁଦ୍ରିତ ଫୁଲସ୍କେପ ସାଇଜର ପ୍ରାୟ ଶହେ ପୃଷ୍ଠାର ରିଟ୍ ପିଟିସନ ଦେଖି ମୁଁ ଟିକିଏ ବିଚଳିତ ହୋଇ ପଡ଼ିଲି । ସକାଳୁଆ କଚେରୀ । ରାତି ମଧ୍ୟରେ ଏହି ସୁଦୀର୍ଘ ପିଟିସନ୍‌ଟି ପଢ଼ି ସକାଳେ ବାଦାନୁବାଦ ପାଇଁ ପ୍ରସ୍ତୁତ ହେବା ସମ୍ଭବ ମନେ ହେଲା ନାହିଁ । ମୋର୍ ସହଯୋଗୀ ଆଡ଼ିସନାଲ ଷ୍ଟାଣ୍ଡିଂ କାଉନସେଲ ଶ୍ରୀ ଆର. କେ. ପାତ୍ର କହିଲେ, ରାଷ୍ଟ୍ରପତି ଶାସନ ବିରୁଦ୍ଧରେ ଆଗତ ହୋଇଥିବା ରିଟ୍ ପିଟିସନ ନିଶ୍ଚିତ ଭାବରେ ବିଚାର ପାଇଁ ଗୃହୀତ ହେବ, ଏଣୁ କାଲି ପାଇଁ ସବିଶେଷ ପ୍ରସ୍ତୁତିର ପ୍ରୟୋଜନ ନାହିଁ । ତଥାପି ଆବେଦନ ପତ୍ର ଉପରେ କ୍ଷିପ୍ର ଦୃଷ୍ଟି ନ ପକାଇ ରହି ପାରିଲି ନାହିଁ । ପ୍ରଥମ ପୃଷ୍ଠାରେ ଆବେଦନ ପତ୍ରର ଶିରୋନାମା ତିନି ଚାରି ପୃଷ୍ଠା ବ୍ୟାପୀ ଚଉସ୍ତରୀ ଜଣ ଦରଖାସ୍ତକାରୀଙ୍କ ନାମ ଓ ଠିକଣା ଏବଂ ପ୍ରତିବାଦୀ ନାମ ତାଲିକାରେ ଅଛି ପ୍ରଥମ ପ୍ରତିବାଦୀ ରାଷ୍ଟ୍ରପତି, ଦ୍ୱିତୀୟ ପ୍ରତିବାଦୀ ଓଡ଼ିଶାର ରାଜ୍ୟପାଳ, ତୃତୀୟ ଓ ଚତୁର୍ଥ ପ୍ରତିବାଦୀ ଭାରତ ସରକାର ଓ ଓଡ଼ିଶା ସରକାର । ଅର୍ଜି ଶେଷରେ ଦେଖିଲି, ସମ୍ବିଧାନର ୩୫୬ ଅନୁଚ୍ଛେଦ ଅନୁଯାୟୀ ରାଷ୍ଟ୍ରପତି ଶାସନ ପାଇଁ ରାଷ୍ଟ୍ରପତିଙ୍କ ଘୋଷଣା ଓ ସେଥିପାଇଁ ରାଜ୍ୟପାଳଙ୍କ ସୁପାରିଶକୁ ଅକାମୀ କରିବା ପାଇଁ ଆବେଦନ । ପ୍ରତିବାଦୀ

ତାଲିକା ଦେଖି ମୋର ଆବେଗ ଓ ଆଶଂକା ବିସ୍ମୟରେ ପରିଣତ ହେଲା । ମନେ ହେଲା, ୩୫୬ ଅନୁଚ୍ଛେଦ ପ୍ରୟୋଗର ଆପତ୍ତିକାରୀ ୩୬୧ ଅନୁଚ୍ଛେଦ ସଂପର୍କରେ ଅବଗତ ନାହାନ୍ତି ।

ପରଦିନ ସକାଳେ କୋର୍ଟରେ ପହଂଚି ଦେଖିଲି, ଚିଫ୍ ଜଷ୍ଟିସ୍‌ଙ୍କ ଇଜଲାସ ଲୋକ ଗହଳିରେ ପରିପୂର୍ଣ୍ଣ । ବହୁ ଆଇନଜୀବୀଙ୍କ ସମେତ ଭୁବନେଶ୍ୱର ଓ କଟକର ବହୁ ପରିଚିତ ସାଂବାଦିକ, ପି. ଟି. ଆଇ, ଟାଇମ୍‌ସ ଅଫ ଇଣ୍ଡିଆ ଓ ଷ୍ଟେଟସ୍‌ମ୍ୟାନ ପ୍ରଭୃତି ଜାତୀୟ ଦୈନିକର ପ୍ରତିନିଧିମାନେ କୋର୍ଟରେ ଉପସ୍ଥିତ । ଚିଫ୍ ଜଷ୍ଟିସ୍ ଜି. କେ. ମିଶ୍ରଙ୍କର ସହଯୋଗୀ ବିଚାରକ ଥିଲେ ଜଷ୍ଟିସ ଏସ୍. କେ. ରାୟ । ଆବେଦନକାରୀଙ୍କ ତରଫରୁ ବରିଷ୍ଠ ଅଧିବକ୍ତା ବୀରେନ୍ଦ୍ର ମୋହନ ପଟ୍ଟନାୟକ ତାଙ୍କର ଆବେଦନ ପେଶ୍ କରି ସଂକ୍ଷେପରେ ତାଙ୍କର ଅଭିଯୋଗଗୁଡ଼ିକ ଉପସ୍ଥାପିତ କଲେ । ତାଙ୍କର ମୁଖ୍ୟ ଅଭିଯୋଗ ଥିଲା ଯେ ମାର୍ଚ୍ଚ ପହିଲା ତାରିଖିରେ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀ ମଣ୍ଡଳ ଇସ୍ତଫା ଦେବା ପରେ ବିଜୁ ପଟ୍ଟନାୟକ ରାଜ୍ୟପାଳଙ୍କୁ ଭେଟି ବିଧାନସଭାରେ ତାଙ୍କର ଅର୍ଦ୍ଧାଧିକ ସମର୍ଥନ ରହିଛି ବୋଲି ଦାବୀ କରିଥିଲେ । ରାଜ୍ୟପାଳ ତାଙ୍କୁ ବିଧାନ ସଭାରେ ସଂଖ୍ୟାଗରିଷ୍ଠତା ପ୍ରମାଣ କରିବାକୁ ସୁଯୋଗ ନଦେଇ, ସଂବିଧାନ ଅନୁଯାୟୀ ଶାସନ ଚାଲି ନପାରିବାର କାରଣ ଦର୍ଶାଇ ରାଷ୍ଟ୍ରପତି ଶାସନ ଜାରୀ କରିବାକୁ ସୁପାରିଶ କରିଛନ୍ତି । ଏହି ସୁପାରିଶ ସଂପୂର୍ଣ୍ଣ ଭିତ୍ତିହୀନ ଓ ସଦିଚ୍ଛା ବର୍ଜିତ । ଉପରିସ୍ଥ କଂଗ୍ରେସ ନେତୃତ୍ୱକୁ ସନ୍ତୁଷ୍ଟ କରିବା ପାଇଁ ଏପରି ପଦକ୍ଷେପ ନିଆଯାଇଛି । ରାଷ୍ଟ୍ରପତିଙ୍କ ଆଦେଶ ମଧ୍ୟ ଏହି କାରଣରୁ ଦୂଷିତ ଅଟେ ।

ସେ ଏପରି ପ୍ରାୟ କୋଡ଼ିଏ ପଚିଶ ମିନିଟ ବାଦାନୁବାଦ କରିବା ପରେ ମୁଁ ମାନ୍ୟବର ବିଚାରପତିମାନଙ୍କୁ ସଂବୋଧନ କରି କହିଲି "ଏ ଆବେଦନ ପତ୍ରର ଗ୍ରହଣୀୟତା ସଂପର୍କରେ ମୋର କେତେକ ମୌଳିକ ପ୍ରାରମ୍ଭିକ ଆପତ୍ତି ଅଛି ।"

ଚିଫ୍ ଜଷ୍ଟିସ କହିଲେ, "ମିଷ୍ଟର ଆଡ୍‌ଭୋକେଟ୍ ଜେନେରାଲ, ଯଦି ପ୍ରାରମ୍ଭିକ ଆପତ୍ତି ଅଛି, ତା ହେଲେ ଆରମ୍ଭରେ ଏ ପ୍ରଶ୍ନ ଉତ୍‌ଥାପନ କଲେ ନାହିଁ କାହିଁକି ?"

ମୁଁ ଉତ୍ତର ଦେଲି "ମୋକଦ୍ଦମାର ବିଷୟବସ୍ତୁ ସଂପର୍କରେ ଆପଣମାନଙ୍କର କିଂଚିତ୍ ଧାରଣା ହେବା ପରେ ମୁଁ ଆପତ୍ତି ଦର୍ଶାଇବା ଉଚିତ ମନେ କରୁଚି ।"

ଏହାପରେ ସଂବିଧାନର ୩୬୧ ଧାରା ପ୍ରତି କୋର୍ଟଙ୍କ ଦୃଷ୍ଟି ଆକର୍ଷଣ କରି ମୁଁ କହିଲି, ରାଷ୍ଟ୍ରପତି ଓ ରାଜ୍ୟପାଳଙ୍କୁ କୋର୍ଟକୁ ତଲବ କରିବା ବିରୁଦ୍ଧରେ ଏହି ଅନୁଚ୍ଛେଦରେ ସାଂବିଧାନିକ ନିଷେଧ ଅଛି । ଭାରତ ସରକାର ଓ ରାଜ୍ୟ ସରକାରଙ୍କୁ ପକ୍ଷଭୁକ୍ତ କରି ରାଷ୍ଟ୍ରପତି ବା ରାଜ୍ୟପାଳଙ୍କ ଆଦେଶର ବୈଧତା ବିଷୟରେ କୋର୍ଟରେ ଆପତ୍ତି କରାଯାଇ ପାରେ । କିନ୍ତୁ ରାଷ୍ଟ୍ରମୁଖ୍ୟ ଅଦାଲତର କ୍ଷମତା ପରିସରଭୁକ୍ତ ନୁହନ୍ତି ଏବଂ ତାଙ୍କୁ କୋର୍ଟରେ ହାଜର ହେବା ପାଇଁ ତଲବ କରାଯାଇ ପାରିବ ନାହିଁ । ଏହାପରେ ରାଷ୍ଟ୍ରପତି ଓ ରାଜ୍ୟପାଳଙ୍କୁ କିପରି ପକ୍ଷଭୁକ୍ତ କରାଯାଇଛି, ସେ ସଂପର୍କରେ ଚିଫ୍ ଜଷ୍ଟିସ ଆବେଦନକାରୀଙ୍କର ଆଡ୍‌ଭୋକେଟଙ୍କୁ ପ୍ରଶ୍ନ କଲେ । କିନ୍ତୁ ତାଙ୍କର କୌଣସି ଆଶୁ ଉତ୍ତର ନଥିଲା । ସେ ଏ ପ୍ରଶ୍ନଟି ଅନୁଧ୍ୟାନ କରିବା ପାଇଁ ଦିନଟିଏ ସମୟ ନେଲେ । ପର ଦିନ ମଇ ଦୁଇ ତାରିଖରେ କେସ୍‌ଟି ପୁନର୍ବାର ଲିଷ୍ଟଭୁକ୍ତ ହେଲା । କିନ୍ତୁ ସନ୍ତୋଷଜନକ ଉତ୍ତର ଦେବାକୁ ଆବେଦନକାରୀ ଅସମର୍ଥ ହେବାରୁ କୋର୍ଟ ଆଦେଶ ଦେଲେ ଯେ ରାଷ୍ଟ୍ରପତି ଓ ରାଜ୍ୟପାଳଙ୍କୁ କୌଣସି ନୋଟିସ ପଠାଯିବ ନାହିଁ । ଏହାପରେ ମୋକଦ୍ଦମା ବିଚାର ପାଇଁ ଗୃହୀତ ହୋଇ ଗ୍ରୀଷ୍ମ ଛୁଟି ପରକୁ ହିଅରିଂ ମୁଲତବୀ ରହିଲା । ଆମ୍ଭେମାନେ ଅନୁଭବ କଲୁ, ଅସଲ ବିବାଦରେ ପ୍ରବେଶ କରିବା ପୂର୍ବରୁ, ପ୍ରାଥମିକ ପ୍ରତିଆକ୍ରମଣଟା ବେଶ ଚାଂଚଲ୍ୟକର ଓ ଫଳପ୍ରଦ ହୋଇଛି ।

ଏହି ରିଟ୍ କେସ୍ ଚଳାଇବାରେ ମୋତେ ସାହାଯ୍ୟ କରୁଥିଲେ ତତ୍‌କାଳୀନ ଆଡ଼ିସନାଲ ଗଭର୍ଣମେଣ୍ଟ ଆଡ୍‌ଭୋକେଟ୍ (ସ୍ୱର୍ଗୀୟ) ରାଧାଚରଣ ପଟ୍ଟନାୟକ (ପରକାଳରେ ହାଇକୋର୍ଟ ଓ ସୁପ୍ରିମକୋର୍ଟର ବିଚାରପତି) ଏବଂ ଆଡ଼ିସନାଲ ଷ୍ଟାଣ୍ଡିଂ କାଉନସେଲ ରାଧାକୃଷ୍ଣ ପାତ୍ର (ବର୍ତ୍ତମାନ ହାଇକୋର୍ଟର ବିଚାରପତି) । ଆମ୍ଭେମାନେ କେତେଥର ସଂଧ୍ୟାରେ ମୋର ଜେଲ ରୋଡ୍ ଘରେ ମିଳିତ ହୋଇ ଏ ବିଷୟରେ ଆଲୋଚନା କରିଥିଲୁ । ରାଜ୍ୟପାଳଙ୍କର ମତାମତର ଯଥାର୍ଥତା ପ୍ରମାଣ କରିବାକୁ ଉଦ୍ୟମ କରିବା ଉଚିତ ହେବ କି ନାହିଁ ସେ ବିଷୟରେ ବିଚାର ବିମର୍ଶ କରିଥିଲୁ । ଆଇନ ସଚେତକ କିଶୋର ଚନ୍ଦ୍ର ମିଶ୍ର (ପରେ ଗୋଆର ଜୁଡ଼ିସିଆଲ କମିସନର) ମଧ୍ୟ ଏ ଆଲୋଚନାରେ ଯୋଗ ଦେଉଥିଲେ । ରାଜ୍ୟପାଳ ରାଷ୍ଟ୍ରପତିଙ୍କୁ ପ୍ରେରିତ ରିପୋର୍ଟରେ ଲେଖିଥିଲେ ଯେ ପୂର୍ବ ବର୍ଷ ଜୁନ୍ ମାସରେ 'ଉତ୍କଳ କଂଗ୍ରେସ' ଛାଡ଼ି ଯେଉଁ ସଦସ୍ୟମାନେ କଂଗ୍ରେସ ଦଳରେ ଯୋଗ ଦେଇଥିଲେ, ଆଠ ମାସ ପରେ ଫେବ୍ରୁଆରୀ

ଶେଷ ତାରିଖ ରାତିରେ ସେମାନେ କଂଗ୍ରେସ ଛାଡ଼ି ପ୍ରଗତି ଦଳରେ ଯୋଗ ଦେଇଛନ୍ତି । ମାର୍ଚ୍ଚ ପହିଲା ଉପରବେଳା ସେଥିରୁ ଦୁଇଜଣ ସଦସ୍ୟ ଅଭିଯୋଗ କରିଛନ୍ତି, ସେମାନେ କଂଗ୍ରେସ ଛାଡ଼ି ନାହାନ୍ତି, ଜବରଦସ୍ତ ସେମାନଙ୍କ ଦସ୍ତଖତ୍ ନିଆଯାଇ ସେମାନେ ପ୍ରଗତି ଦଳରେ ଯୋଗ ଦେଇଛନ୍ତି ବୋଲି ମିଥ୍ୟା ପ୍ରଚାର କରାଯାଉଛି । ଡକ୍ଟର ମହତାବ ରାଜ୍ୟପାଳଙ୍କୁ ସାକ୍ଷାତ କରି କୁଆଡ଼େ କହିଥିଲେ ଯେ ତୁରନ୍ତ ନୂତନ ମନ୍ତ୍ରୀମଣ୍ଡଳ ଗଠନ ପାଇଁ ନିଷ୍ପତ୍ତି ନେବା ଉଚିତ, ନଚେତ "ଆୟାରାମ୍ ଗୟା ରାମ୍" ରୀତିରେ ସଭ୍ୟମାନେ ପୁଣି ଦଳ ପରିବର୍ତ୍ତନ କରିବେ । ଏହି ସବୁ ଘଟଣା ଉଲ୍ଲେଖ କରି ରାଜ୍ୟପାଳ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ନଗ୍ନ ଦଳ ବଦଳ ଓଡ଼ିଶାରେ ସ୍ଥାୟୀ ସୁଦୃଢ଼ ସରକାର ଗଠନର ପ୍ରତିବନ୍ଧକ ହୋଇଛି ଓ ସାଂବିଧାନିକ ଶାସନ ଚଳାଇବାରେ ଅନ୍ତରାୟ ସୃଷ୍ଟି କରୁଚି । ଏଣୁ ବିଧାନସଭାକୁ ଭାଙ୍ଗି ଦେଇ ରାଷ୍ଟ୍ରପତି ଶାସନ ଜାରୀ କରିବା ପାଇଁ ସେ ସୁପାରିଶ୍ କରିଥିଲେ ।

ଆମ୍ଭେମାନେ ଦୀର୍ଘ ବିଚାର ବିମର୍ଶ ପରେ ସ୍ଥିର କଲୁ, ପ୍ରକୃତରେ କେଉଁ ଦଳର ସଂଖ୍ୟା କେତେ ଓ ରାଜ୍ୟପାଳଙ୍କ ରିପୋର୍ଟରେ ବର୍ଣ୍ଣିତ ବିବରଣୀ ସତ୍ୟ କି ନୁହେ ଏବଂ ନିର୍ଦ୍ଦିଷ୍ଟ ରାଜନୈତିକ ପରିସ୍ଥିତିରେ ରାଜ୍ୟପାଳ କ'ଣ କରିବା ଉଚିତ, ଏ ସମସ୍ୟା ଭିତରକୁ ନ ଯାଇ ଆମର ମୁଖ୍ୟ ଯୁକ୍ତି ହେବ ଯେ, ରାଜ୍ୟପାଳ ଓ ରାଷ୍ଟ୍ରପତିଙ୍କ ନିଷ୍ପତ୍ତି ସ୍ୱୀୟ ବିଚାର ସଂଭୂତ ଏବଂ ସେମାନଙ୍କର ବିଚାର ଓ ନିଷ୍ପତ୍ତି ତଥ୍ୟ ଭିତ୍ତିକ ନୁହେଁ, ଏଣୁ ଏ ନିଷ୍ପତ୍ତିର ଯଥାର୍ଥତା ନିର୍ଣ୍ଣୟ କରିବା କୋର୍ଟର କ୍ଷମତା ବହିର୍ଭୂତ । ଆଇନର ବ୍ୟତିକ୍ରମର ବିଚାର ଅଦାଲତଙ୍କ କର୍ତ୍ତବ୍ୟ, ମାତ୍ର ରାଜନୈତିକ ବିବାଦର ସମାଧାନ ଅଦାଲତ୍‌ଙ୍କ କାର୍ଯ୍ୟ ନୁହେ । ଏହି ମର୍ମରେ ଭାରତ ସରକାର ଓ ଓଡ଼ିଶା ସରକାରଙ୍କ ତରଫରୁ ସତ୍ୟପାଠ ଦାଖଲ ହେଲା ଓ ଆମ୍ଭେମାନେ ମଧ୍ୟ ଏ ଦିଗରେ ପ୍ରସ୍ତୁତି ଆରମ୍ଭ କଲୁ । ମୋକଦ୍ଦମାରେ କେନ୍ଦ୍ର ସରକାର ମଧ୍ୟ ମୋତେ ଆଡ୍‌ଭୋକେଟ୍ ନିଯୁକ୍ତ କରିଥିଲେ । ଏ କେସ୍ ପାଇଁ ପ୍ରସ୍ତୁତ ହେବାରେ ଆର୍. କେ. ପାତ୍ର ଗଭୀର ଅଧ୍ୟୟନ କରିଥିଲେ ଓ ମୋତେ ନିରନ୍ତର ସାହାଯ୍ୟ କରୁଥିଲେ । କୌଣସି ଦାୟିତ୍ୱ ନେଲେ, ତାକୁ ପ୍ରତିପାଳନ କରିବା ପାଇଁ ପାତ୍ର ଯେପରି ନିଷ୍ଠାପର ଉଦ୍ୟମ କରନ୍ତି, ତାର ବିକଳ୍ପ ନାହିଁ ।

ଏହି କେସର ହିଅରିଂ ଆରମ୍ଭ ହୋଇ ପ୍ରାୟ ସାତ ଦିନ ଚାଲିବା ପରେ ମୁଲତବୀ ରହିଲା । ଉଭୟ ବୀରେନ୍ଦ୍ର ମୋହନ ପଟ୍ଟନାୟକ ଓ ମୁଁ ଦିଲ୍ଲୀରେ

ବରଦାକାନ୍ତ ମିଶ୍ରଙ୍କ ମୋକଦ୍ଦମାରେ ବ୍ୟସ୍ତ ରହିବା ହେତୁ କଟକରେ କେସ ମୁଲତବୀ ରଖିବାର ଆବଶ୍ୟକତା ପଡ଼ିଲା । ସୁପ୍ରିମ କୋର୍ଟରେ ସୁଆଲ ଜବାବ କରୁଥିଲେ ବରଦାକାନ୍ତ ମିଶ୍ରଙ୍କ ତରଫରୁ ବରିଷ୍ଠ ଆଡ୍‌ଭୋକେଟ ଅଶୋକ ସେନ, ଓଡ଼ିଶା ହାଇକୋର୍ଟ ତରଫରୁ ଫଲି ନରିମ୍ୟାନ୍ ଓ ତାଙ୍କୁ ସାହାଯ୍ୟ କରୁଥିଲେ ବୀରେନ୍ଦ୍ର ମୋହନ ପଟ୍ଟନାୟକ ଏବଂ ଓଡ଼ିଶା ସରାକରଙ୍କ ତରଫରୁ ମୁଁ ଓ ମୋତେ ସାହାଯ୍ୟ କରୁଥିଲେ ଆର୍. କେ. ପାତ୍ର । ସୁପ୍ରିମ କୋର୍ଟରେ ବରଦାକାନ୍ତଙ୍କ ହିଅରିଂ ଶେଷ ହେବା ପରେ କଟକରେ ୩୫୬ ଧାରା ମୋକଦ୍ଦମାର ହିଅରିଂ ପୁନର୍ବାର ଆରମ୍ଭ ହେଲା ।

ଆବେଦନକାରୀଙ୍କର ମୁଖ୍ୟ ଯୁକ୍ତି ଥିଲା ଯେ ମାର୍ଚ୍ଚ ପହିଲାରେ ପ୍ରଗତି ଦଳ ବିଧାନ ସଭାରେ ସଂଖ୍ୟା ଗରିଷ୍ଠତା ହାସଲ କରିଥିବା ଦୃଷ୍ଟିରୁ ବିଜୁ ବାବୁଙ୍କୁ ସରକାର ଗଢ଼ିବାକୁ ସୁଯୋଗ ନ ଦେଇ ସାଂବିଧାନିକ ଶାସନ ଅସଫଳ ହୋଇଛି ବୋଲି ରାଜ୍ୟପାଳ ଯେଉଁ ମତାମତ ବ୍ୟକ୍ତ କରଛନ୍ତି ତାହା ପରଂପରା ବିରୋଧୀ । ରାଷ୍ଟ୍ରପତିଙ୍କ ଆଦେଶ ଏହି ମତାମତ ଉପରେ ପର୍ଯ୍ୟବସିତ ଥିବାରୁ ତାହା ଅଗ୍ରାହ୍ୟ ହେବା ଉଚିତ । ପ୍ରତିବାଦୀଙ୍କ ତରଫରୁ ଆମର ଜବାବ୍ ଥିଲା ଯେ ରାଷ୍ଟ୍ରପତିଙ୍କର ନିଷ୍ପତ୍ତିର ଭିତ୍ତି କେବଳ ରାଜ୍ୟପାଳଙ୍କ ସୁପାରିଶ ନୁହେ, ଅନ୍ୟ ଯେ କୌଣସି ସୂତ୍ରରୁ ସଂଗୃହୀତ ତଥ୍ୟ ଉପରେ ରାଷ୍ଟ୍ରପତି ନିଷ୍ପତ୍ତି ନେଇ ପାରିବେ ବୋଲି ସମ୍ବିଧାନର ୩୫୬ ଅନୁଚ୍ଛେଦରେ ସ୍ପଷ୍ଟ ଉଲ୍ଲେଖ ଅଛି । ଯେଉଁ ଘୋଷଣା ତଥ୍ୟଭିତ୍ତିକ ନୁହେ ଏବଂ ଯାହା ରାଷ୍ଟ୍ରପତିଙ୍କ ସନ୍ତୋଷ ସଂଭୂତ, ତାର ଯଥାର୍ଥତା ଅଦାଲତରେ ବିଚାର୍ଯ୍ୟ ନୁହେ । ବିଶେଷତଃ "ସାଂବିଧାନିକ ଶାସନର ସଫଳତା" ଏକ ରାଜନୈତିକ ପ୍ରଶ୍ନ ଏବଂ ଏ ପ୍ରକାରର ପ୍ରଶ୍ନର ସମାଧାନରେ କୋର୍ଟ ଜଡ଼ିତ ହେବା ଉଚିତ ନୁହେଁ ।

ରିଟ୍ କେସ୍‌ର ହିଅରିଂ ଦୀର୍ଘ ଦିନ ଧରି ଚାଲିଲା । କୋର୍ଟରେ ବାଦାନୁବାଦର ବିବରଣୀ ସ୍ଥାନୀୟ ସଂବାଦପତ୍ର ଓ ଭାରତର ବିଭିନ୍ନ ନାସନାଲ ଡେଲି ବା ଜାତୀୟ ସଂବାଦପତ୍ର ଗୁଡ଼ିକରେ ନିୟମିତ ପ୍ରକାଶିତ ହେଉଥାଏ । ଦିଲ୍ଲୀର ଟାଇମ୍‌ସ ଅଫ ଇଣ୍ଡିଆ, ହିନ୍ଦୁସ୍ଥାନ ଟାଇମ୍‌ସ, କଲିକତାର ଷ୍ଟେଟ୍‌ସମ୍ୟାନ, ଅମୃତ ବଜାର ଓ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ୍ ଆଦି କାଗଜରେ ତିନି ଚାରି କଲମ ହେଡ଼ିଂ ଦେଇ ମୋର ଯୁକ୍ତିର ବିବରଣୀ ପ୍ରକାଶିତ ହେଉଥାଏ । ସେଥିରୁ କେତେକ ବିବରଣୀର ଶିରୋନାମା ପୁରୁଣା ସ୍ମୃତିର ସନ୍ତକ ରୂପେ ଏ ବହିରେ ସନ୍ନିବେଶିତ ହୋଇଛି । ଭାରତୀୟ ସ୍ତରରେ ଏହି କେସ୍‌ଟି ଯେଉଁ ଗୁରୁତ୍ୱ

ଲାଭ କରିଥିଲା, ସମ୍ବାଦ ପତ୍ର ଗୁଡ଼ିକରେ ଏହି ବ୍ୟାପକ ପ୍ରକାଶନ ତାର ନିଦର୍ଶନ । ଏହି ସମୟରେ ଭାରତର ତତ୍‌କାଳୀନ ଆଟର୍ଣ୍ଣି ଜେନେରାଲ ନୀରେନ୍ ଦେଙ୍କ ଠାରୁ ଖଣ୍ଡେ ଚିଠି ମିଳିଲା । ସେ ମୋତେ ଧନ୍ୟବାଦ ଦେଇ ଲେଖିଥିଲେ, ମୋର ଯୁକ୍ତି ଠିକ୍ ବାଟରେ ଚାଲିଛି । ନୀରେନ୍ ଦେ'ଙ୍କ ସହିତ ସେ ଆଡ଼ିସନାଲ ସଲିସିଟର ଜେନେରାଲ ଥିବା ସମୟରୁ ପରିଚୟ । ସେ ଆଟର୍ଣ୍ଣି ଜେନେରାଲ ହେବା ପରେ ସଂପର୍କ ଆହୁରି ଘନିଷ୍ଠତର ହୋଇଥିଲା । ନୀରେନ୍ ଦେଙ୍କର ୧୯୭୭ ମସିହାରେ ଦେହାନ୍ତ ହେଲା ସୁଇଡ଼େନରେ । ଅନୁରୂପ ମନ୍ତବ୍ୟ ଆସିଥିଲା ପୂର୍ବତନ ସଲିସିଟର ଜେନେରାଲ ଆଲହାବାଦର ଜଗଦୀଶ ସ୍ୱରୂପ ଓ ଅନ୍ୟ କେତେକ ବଂଧୁଙ୍କ ଠାରୁ । ଏପରି ଅଯାଚିତ ସଦିଚ୍ଛା ଲାଭ ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଘଟେ ।

ଯାହାହେଉ, ସେ ବର୍ଷ ଅକ୍ଟୋବର ମାସ ୨୨ ତାରିଖରେ ହାଇକୋର୍ଟ ରାୟ ଦେଲେ । ରିଟ୍ କେସଟି ବିଚାରଯୋଗ୍ୟ ନଥିବା ହେତୁ ଡିସମିସ୍ ହୋଇଥିଲା । ଚିଫ୍ ଜଷ୍ଟିସ ରାୟରେ ଉଲ୍ଲେଖ କରିଥିଲେ ଯେ ରାଜ୍ୟପାଳଙ୍କ ରିପୋର୍ଟ ଓ ସେଥିରେ ସନ୍ନିହିତ ମତାମତର ଯଥାର୍ଥତା କୋର୍ଟର ବିଚାରଯୋଗ୍ୟ ନୁହେ । ମାର୍ଚ୍ଚ ପହିଲାରେ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବା ପରେ ବିଧାନ ସଭାର ଅଧିବେଶନ ସ୍ଥଗିତ ରଖିବା ଦ୍ୱାରା ରାଜ୍ୟପାଳ କୌଣସି କ୍ଷମତା ବହିର୍ଭୂତ କାର୍ଯ୍ୟ କରି ନାହାନ୍ତି । ରାଷ୍ଟ୍ରପତିଙ୍କ ଘୋଷଣା ସଂପର୍କରେ କୋର୍ଟ ମତ ଦେଇଥିଲେ ଯେ ସାଂବିଧାନିକ ଶାସନର ବିଫଳତା ହେତୁ ୩୫୬ ଧାରାର ଘୋଷଣା ଜାରୀ କରିବା ରାଷ୍ଟ୍ରପତିଙ୍କ ସନ୍ତୋଷ ଉପରେ ନିର୍ଭର କରେ ଏବଂ ଏହି ସନ୍ତୋଷ ଯଥାର୍ଥ କି ନୁହେଁ ତାହା ଅଦାଲତ ବିଚାର କରି ପାରିବେ ନାହିଁ । ଏହି କ୍ଷମତା ପାର୍ଲିଆମେଣ୍ଟ ଉପରେ ପ୍ରଦତ୍ତ । କାରଣ ପାର୍ଲିଆମେଣ୍ଟ ଅନୁମୋଦନ ନକଲେ, ରାଷ୍ଟ୍ରପତି ଶାସନ ଦୁଇ ମାସରୁ ଅଧିକ ସମୟ ବଳବତ୍ତର ରହିବ ନାହିଁ ।

ଉପରୋକ୍ତ ମର୍ମରେ ରାୟ ଦେଇ ରିଟ୍ କେସ ଖାରଜ୍ କରିବା ସତ୍ତ୍ୱେ, ଚିଫ୍ ଜଷ୍ଟିସ ରାଜ୍ୟପାଳଙ୍କ ସୁପାରିଶ ସଂପର୍କରେ କେତେକ କଟୁ ମନ୍ତବ୍ୟ ପ୍ରକାଶ କରିଥିଲେ । ତାଙ୍କ ମତରେ ନନ୍ଦିନୀ ଶତ୍‌ପଥୀ ମାର୍ଚ୍ଚ ପହିଲାରେ ଇସ୍ତଫା ଦେବା ପରେ ରାଜ୍ୟପାଳ ବିରୋଧୀ ଦଳ ନେତାଙ୍କୁ ସରକାର ଗଢ଼ିବାକୁ ସୁଯୋଗ ଦେବା ଉଚିତ ଥିଲା ଏବଂ ଏପରି ନ କରିବା ହେତୁ ସେ 'ସାଂବିଧାନିକ ପରଂପରା ଭଂଗ କରିଛନ୍ତି । ପରଂପରା ଜନିତ ଅଧିକାର ଅଦାଲତ ଜରିଆରେ

ପ୍ରବର୍ତ୍ତନ କରାଯାଇ ପାରିବ ନାହିଁ ବା ପରଂପରା ମାନିବା ପାଇଁ ହାଇକୋର୍ଟ ରିଟ୍ ଜାରୀ କରିପାରିବେ ନାହିଁ, ଏହି ମର୍ମରେ ରାୟ ଦେବା ପରେ ଉପରୋକ୍ତ ମନ୍ତବ୍ୟ ରାଜନୈତିକ ମହଲରେ ଚାଂଚଲ୍ୟ ସୃଷ୍ଟି କରିଥିଲା । ମୋ ମତରେ ସାଂବିଧାନିକ ପରଂପରା ଉଲ୍ଲଂଘନ ସଂପର୍କରେ ଚିଫ୍ ଜଷ୍ଟିସ ମିଶ୍ର ଯେଉଁ ମତାମତ ଦେଇଥିଲେ, ତାହା ହୁଏତ ଠିକ୍ । କିନ୍ତୁ ବିଧାୟକମାନଙ୍କର ଘନ ଘନ ଦଳ ବଦଳ ଦ୍ୱାରା ଯେଉଁ ଅନିଶ୍ଚିତତା ସୃଷ୍ଟି ହୋଇଥିଲା ଏବଂ ତାହାଦ୍ୱାରା ଏକ ଦୃଢ଼ ସାଂବିଧାନିକ ଶାସନର ସଂଭାବନା ଯେ ନଷ୍ଟ ହୋଇଥିଲା, ଏ ସଂପର୍କୀୟ ବିଚାର ଥିଲା ସଂପୂର୍ଣ୍ଣ ରାଜନୈତିକ ବିଷୟ ବା ଇଂରେଜୀରେ ଯାହାକୁ କହନ୍ତି ''ପଲିସି ମ୍ୟାଟ୍ରେ'' ଏବଂ 'ପଲିସି ମ୍ୟାଟର'ର ଯଥାର୍ଥତା କୋର୍ଟର ବିଚାର୍ଯ୍ୟ ବିଷୟ ନୁହେ ।

ଦୀର୍ଘ ଚାରିବର୍ଷ ପରେ ୧୯୭୭ ମସିହା ମାର୍ଚ୍ଚ ମାସରେ କେନ୍ଦ୍ରରେ ଜନତା ଦଳ ଶାସନ ପ୍ରତିଷ୍ଠିତ ହେଲା । ସାତଟି ରାଜ୍ୟରେ ପ୍ରତିଷ୍ଠିତ କଂଗ୍ରେସ ମନ୍ତ୍ରୀମଣ୍ଡଳର ବିଧାନ ସଭାରେ ସଂଖ୍ୟାଗରିଷ୍ଠତା ଥିଲେ ମଧ୍ୟ, ଜନତା ଗୃହ ମନ୍ତ୍ରୀ ଚରଣ ସିଂ ୩୫୬ ଧାରା କ୍ଷମତା ପ୍ରୟୋଗ କରି ଏହି ମନ୍ତ୍ରୀମଣ୍ଡଳ ଓ ବିଧାନ ସଭାକୁ କାହିଁକି ଭାଂଗି ଦିଆ ନଯିବ, ସେଥିପାଇଁ ସଂପୃକ୍ତ ରାଜ୍ୟ ସରକାରମାନଙ୍କ ଉପରେ ନୋଟିସ ଜାରୀ କରିଥିଲେ । ଚରଣ ସିଂହଙ୍କ ନୋଟିସ ବିରୁଦ୍ଧରେ କର୍ଣ୍ଣାଟକ ଓ ରାଜସ୍ଥାନର କଂଗ୍ରେସ ସରକାରଙ୍କ ତରଫରୁ ସୁପ୍ରିମ କୋର୍ଟରେ କେସ୍ ଦାଏର କରାଯାଇଥିଲା । ଓଡ଼ିଶା ସରକାରଙ୍କ ତରଫରୁ ବିଳମ୍ବରେ ହେଲେ ମଧ୍ୟ ମୁଁ ଗୋଟିଏ କେସ୍ ଦାଏର କରିଥିଲି । ସୁପ୍ରିମ କୋର୍ଟର ଏକ ସାତ ଜଣିଆ ବିଚାରକ ମଣ୍ଡଳୀରେ ଏହି ମୋକଦ୍ଦମା ଗୁଡ଼ିକର ବିଚାର ଚାଲୁଥିବା ସମୟରେ ଦେଖିଲି, କେନ୍ଦ୍ର ସରକାରଙ୍କ ଅଧିବକ୍ତା ସୋଲି ସୋରାବଜୀ ଓଡ଼ିଶା ହାଇକୋର୍ଟର ଏହି ରାୟର କେତେକ ପରିଚ୍ଛେଦ ବାରବାର ପଢ଼ି କଂଗ୍ରେସ ସରକାରମାନଙ୍କ ପକ୍ଷରୁ ଆଗତ ମୋକଦ୍ଦମା ଗୁଡ଼ିକ ବିଚାରଯୋଗ୍ୟ ନୁହେଁ ବୋଲି ଯୁକ୍ତି କରୁଛନ୍ତି । ଆନନ୍ଦରେ ମନ ଫୁଲି ଉଠିଲା ଯେ ଓଡ଼ିଶା ହାଇକୋର୍ଟର ଯେଉଁ ନିଷ୍ପତ୍ତି ସହିତ ମୁଁ ଏତେ ଘନିଷ୍ଠ ଭାବରେ ସଂପୃକ୍ତ, ତାହା ଉପରେ ସର୍ବୋଚ୍ଚ ଅଦାଲତରେ ଏପରି ଗୁରୁତ୍ୱ ପ୍ରଦାନ କରାଯାଉଛି ।



HINDUSTHAN STANDARD SATURDAY SEPTEMBER 15, 1973

# Power of President to take over State is sovereign : Rath

From Our Own Correspondent

CUTTACK, SEPT. 14.—Resuming his arguments in the writ case arising out of the Orissa petition filed by the Pragati Party leader, Mr Biju Patnaik and 73 other members of the dissolved State Assembly in the Orissa High Court, challenging the imposition of President's Rule in the State, Mr Gangadhar Rath, Advocate-General, Orissa, yesterday contended that a constitutional power like that under Article 356 of the Constitution was really an instance of sovereign power in the President.

... the myth of supplements should be ... as their projected ...

He also warned the PROs of public sector undertaking against being obsessed with the elite press, especially the English press. Mr. Kidwai suggested that public sector undertakings could take the help of his Ministry in ...

Inaugurating a ... ence of chief executive ... lic relations officers ... sector undertakings ... said radio, TV and ... the successful public sector ... prises had image-building ... at their disposal. The ... was how this could be ... ordinated and put together, ... added.

# No criteria for determining President's satisfaction: Rath

From Our Own Correspondent

CUTTACK, SEPT. 13.—Resuming his arguments in the writ case arising out of the petition, filed by Biju Patnaik and 73 other members of the dissolved State Assembly in the Orissa High Court, Mr. Gangadhar Rath, Advocate-General of Orissa yesterday contended that there was no satisfactory criteria for judicial determination of the President's satisfaction in the matter of taking over a State's administration under Article 356 of the Constitution.

Appearing for the Government of India, Mr. Rath submitted that no objective tests were indicated in the Article itself to examine the correctness of the satisfaction reached by the President. It was in the context of the emergency provision that Article 356 has been inserted. The factors which generally lead to the issue of the proclamation are hardly matters on which courts are competent to pronounce judgement.

Mr. Rath submitted ... Constitution has provided ... alternative forum ... the terms of the ...

General indicated that absence of undisputed majority in legislature was not the factor to be taken ... deration in ... issue of Proclamation ... circumstances ... breakdown ...

## ... Singh Deo And ... rs File Petition

... Staff Correspondent

... SWAR, Sept. 13.—Mr. ... Deo, a former Chief ... two others ... Ministers ... filed ...

# କଟକରୁ ଦିଲ୍ଲୀ

୧୯୭୨ ମସିହାରୁ ମୁଁ ନିୟମିତ ରୂପେ ସୁପ୍ରିମକୋର୍ଟରେ ବିତର୍କ ଆରମ୍ଭ କରିଥିଲି । ଅବଶ୍ୟ ୧୯୬୭ ମସିହାରୁ ସୁପ୍ରିମକୋର୍ଟ ଯିବା ଆରମ୍ଭ ହୋଇଥିଲା । କିନ୍ତୁ ସେ ସମୟରେ ମୁଁ ସାଧାରଣତଃ ଆଟର୍ଣ୍ଣି, ସଲିସିଟର ଜେନେରାଲ ଆଦି ବିଶିଷ୍ଟ ଅଧିବକ୍ତାମାନଙ୍କର ସହଯୋଗୀ ଭାବରେ କାର୍ଯ୍ୟ କରେ । ପୂର୍ବତନ ଆଟର୍ଣ୍ଣି ଜେନେରାଲ ମୋତିଲାଲ ଶୀତଲବାଦ, ସି. କେ. ଦପ୍ତରୀ, ନୀରେନ ଦେ, ଏସ. ଭି. ଗୁପ୍ତେ ଓ ଏମ୍. ସି. ଚଗଲା ଆଦି ବହୁ ବିଜ୍ଞ ସିନିଅରମାନଙ୍କୁ ମୁଁ ଓଡ଼ିଶାରୁ ପ୍ରେରିତ କେସ୍‌ରେ ସହାୟତା କରିଛି । କିନ୍ତୁ ଆଡ୍‌ଭୋକେଟ ଜେନେରାଲ ହେବା ପରେ ମୁଁ ଦିଲ୍ଲୀରେ ଅନ୍ୟ କାହାରି ସହାୟକ ଭାବରେ କାର୍ଯ୍ୟ କରିବାକୁ ଅପମାନଜନକ ମନେ କଲି । ସେ ସମୟରେ କେରଳ, କର୍ଣ୍ଣାଟକ, ବିହାର ଓ ମଧ୍ୟ ପ୍ରଦେଶର ଆଡ଼ଭୋକେଟ୍ ଜେନେରାଲମାନଙ୍କୁ ଆଟର୍ଣ୍ଣି ବା ସଲିସିଟରଙ୍କର ଜୁନିୟର ଭାବରେ କାର୍ଯ୍ୟ କରିବାର ଦେଖିଛି । କିନ୍ତୁ ଓଡ଼ିଶାର ସମ୍ମାନ ଓ ସ୍ୱାଭିମାନ ମତେ ସହାୟତା ଦାନ ପଥରୁ ନିବୃତ୍ତ କରାଇଲା । ପୂର୍ବରୁ ମୋର ବଦ୍ଧମୂଳ ଧାରଣ ଥିଲା ଓ ସୁପ୍ରିମ କୋର୍ଟରେ ଏହି କେତେ ବର୍ଷର ଅଭିଜ୍ଞତାରୁ ଅନୁଭବ କରିଥିଲି ଯେ ଓଡ଼ିଆମାନେ କୌଣସି ରାଜ୍ୟର ଲୋକଙ୍କ ଠାରୁ ନିଜକୁ ହୀନ ମନେ କରିବାର କାରଣ ନାହିଁ । ବିଦ୍ୟା ଓ ସାଧନା ଥିଲେ ଆମେ ସବୁରି ସମକକ୍ଷ ହୋଇ ପାରିବୁ । କିନ୍ତୁ ହୀନମନ୍ୟତା ଆମର ପଛୁଆ ରହିବାର ପ୍ରଧାନ କାରଣ । ଏହି ହୀନମନ୍ୟତାକୁ ପୋଡ଼ି ଜାଳି ନ ଦେଲେ ଆମେ ଭାରତୀୟ ଦରବାରରେ କେବେ ପ୍ରତିଷ୍ଠା ଲାଭ କରି ପାରିବୁ ନାହିଁ ।

୧୯୭୨ ମସିହା ନଭେମ୍ବର ମାସରେ ସୁବିଖ୍ୟାତ କେଶବାନନ୍ଦ ଭାରତୀ କେସ୍‌ର ବିଚାର ସମୟରେ ମୁଁ ଥିଲି ଉକ୍ତ କେସ୍‌ରେ ଓଡ଼ିଶା ସରକାରଙ୍କ ଅଧିବକ୍ତା । ସୁପ୍ରିମ କୋର୍ଟରେ ଆବେଦନକାରୀଙ୍କ ପକ୍ଷରୁ ନନୀ ପାଲଖିଓ୍ୱାଲା ଓ ଅପର ପକ୍ଷରୁ ଆଟର୍ଣ୍ଣି ଜେନେରାଲ ନୀରେନ୍ ଦେ ଓ ସ୍ୱତନ୍ତ୍ର ଭାବରେ ନିଯୁକ୍ତ ମହାରାଷ୍ଟ୍ରର ଆଡ୍‌ଭୋକେଟ୍ ଜେନେରାଲ ଶିରଭାଇଙ୍କ ଦୀର୍ଘ ବାଦାନୁବାଦ ଅନୁଧ୍ୟାନ କରିବାର ସୁଯୋଗ ମିଳିଥିଲା । ଏ କେସର ବିଚାର ତିନି ମାସରୁ ଅଧିକ ଦିନ ଚାଲିଲା । ଶେଷ ଆଡ଼କୁ ଜଜ୍, ଓକିଲ, ଶ୍ରୋତା ଓ ବକ୍ତା

ସମସ୍ତେ ଅବସନ୍ନ ଓ ବୀତସ୍ପୃହ ହୋଇ ପଡ଼ିଥିଲେ । ବିଭିନ୍ନ ରାଜ୍ୟର ଆଡ୍‌ଭୋକେଟ୍ ଜେନେରାଲମାନଙ୍କର ପାଳି ପଡ଼ିବା ବେଳକୁ କେହି ଶୁଣିବା ଅବସ୍ଥାରେ ନଥିଲେ । ଆମ୍ଭେମାନେ ପଦେ ପଦେ କହି ନିଜର ବୟାନ ସମାପ୍ତ କରିଥିଲୁ । କେଶବାନନ୍ଦ ଭାରତୀ ରାୟ ସଂବିଧାନ ସଂଶୋଧନ ଇତିହାସରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି । ତେର ଜଣ ବିଚାରପତି, ଏଗାରଟି ରାୟ ଦେଇ ନିଜର ଭିନ୍ନ ଭିନ୍ନ ମତ ପ୍ରକାଶ କରିବା ପରେ, ନ'ଜଣ ବିଚାରପତି ଏକ ମିଳିତ ନୋଟରେ ଘୋଷଣା କରିଥିଲେ ଯେ ସଂବିଧାନର ମୌଳିକ ଭିତ୍ତି (ବେସିକ୍ ଷ୍ଟ୍ରକ୍‌ଚର) ବ୍ୟତୀତ ଅନ୍ୟ ସମସ୍ତ ବ୍ୟବସ୍ଥା ୩୬୮ ଅନୁଚ୍ଛେଦ ପ୍ରକାରେ ପାର୍ଲିଆମେଣ୍ଟ ସଂଶୋଧନ କରି ପାରିବେ ।

୩୬୮ ଅନୁଚ୍ଛେଦ ଅନୁଯାୟୀ ସଂବିଧାନ ସଂଶୋଧନ ପାର୍ଲିଆମେଣ୍ଟର କ୍ଷମତାଧୀନ ବୋଲି ସିଧାସଳଖ ମତ ଦେଇ ଥିବାରୁ ଜଷ୍ଟିସ ଏ. ଏନ୍. ରାୟ ଓ ଅନ୍ୟ ତିନିଜଣ ବିଚାରପତିଙ୍କୁ କଠୋର ସମାଲୋଚନା କରାଯାଇଥିଲା । ଏଥି ପୂର୍ବରୁ ୧୯୬୯ ମସିହାରେ ବ୍ୟାଙ୍କ ଜାତୀୟକରଣ ଓ ପୂର୍ବତନ ଦେଶୀୟ ରାଜାମାନଙ୍କର ଭତ୍ତା ଉଚ୍ଛେଦ (ପ୍ରିଭି ପର୍ସ ଆବୋଲିସନ୍) କେସରେ ସ୍ୱତନ୍ତ୍ର ମତ ଦେଇ ଜଷ୍ଟିସ୍ ରାୟ ନିଜର ସ୍ୱାଧୀନ ମନୋଭାବର ପରିଚୟ ଦେଇଥିଲେ । ତାଙ୍କର ପ୍ରଗତିଶୀଳ ଦୃଷ୍ଟିକୋଣ ହେତୁ ସୁପ୍ରିମ କୋର୍ଟରେ ପ୍ରାଧାନ୍ୟ ପ୍ରତିଷ୍ଠା କରିଥିବା ବମ୍ବେ ଗୋଷ୍ଠୀର ସେ ଶରବ୍ୟ ହେଲେ । କେଶବାନନ୍ଦ ରାୟ ପ୍ରକାଶିତ ହେବା ପର ଦିନ ଚିଫ୍ ଜଷ୍ଟିସ୍ ସିକ୍ରି ପ୍ରଧାନ ବିଚାରପତି ପଦରୁ ଅବସର ନେବା ପରେ, ଉପରିସ୍ଥ ତିନି ଜଣ ସିନିଅର ଜଜ୍‌ଙ୍କୁ ବାଦ୍ ଦେଇ କେନ୍ଦ୍ର ସରକାର ଜଷ୍ଟିସ ଅଜିତ୍ ନାଥ ରାୟଙ୍କୁ ଭାରତର ପ୍ରଧାନ ବିଚାରପତି ପଦରେ ନିଯୁକ୍ତ କଲେ । ଏହି ନିଷ୍ପତ୍ତି ଗ୍ରହଣ କରିବାରେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କର ମୁଖ୍ୟ ପରାମର୍ଶଦାତା ଥିଲେ ତତ୍‌କାଳୀନ ଆଇନ ମନ୍ତ୍ରୀ ଏଚ୍. ଆର୍. ଗୋଖଲେ ଓ ଅନ୍ୟତମ ମନ୍ତ୍ରୀ ମୋହନ କୁମାର ମଙ୍ଗଳମ୍ ତଥା ସିଦ୍ଧାର୍ଥ ଶଙ୍କର ରାୟ । ପାର୍ଲିଆମେଣ୍ଟରେ ଏ. ଏନ. ରାୟଙ୍କ ନିଯୁକ୍ତିର ଯଥାର୍ଥତା ପ୍ରତିପାଦନ କରିବାକୁ ଯାଇ ମୋହନ କୁମାର ମଙ୍ଗଳମ୍ କହିଥିଲେ, ସରକାରଙ୍କ ନୀତି ଓ ଚିନ୍ତାଧାରାର ବିରୋଧୀ ସନାତନ ପନ୍ଥୀଙ୍କ ପରିବର୍ତ୍ତେ ଜଣେ ସମଭାବାପନ୍ନ ବିଚାରପତିଙ୍କୁ ପ୍ରଧାନ ବିଚାରପତି ନିଯୁକ୍ତ କରିବାରେ କୌଣସି ଅନିୟମିତ କାର୍ଯ୍ୟ ହୋଇ ନାହିଁ ।

ଯାହାହେଉ ଜଷ୍ଟିସ୍ ଅଜିତ ନାଥ ରାୟ ଚିଫ୍ ଜଷ୍ଟିସ ହେବା ପରେ ତାଙ୍କ କୋର୍ଟରେ ମୁଁ (ସ୍ୱର୍ଗତଃ) ବରଦାକାନ୍ତ ମିଶ୍ରଙ୍କ କେସ୍‌ରେ ବାଦାନୁବାଦ କରିଥିଲି । ପାଂଚ ଜଣ ଜଜ୍ ବିଶିଷ୍ଟ ଏହି ବିଚାରକ ମଣ୍ଡଳୀରେ ଚିଫ୍ ଜଷ୍ଟିସ୍‌ଙ୍କ ସହ ଅନ୍ୟତମ ବିଚାରକ ଥିଲେ ଜଷ୍ଟିସ ପି. ଏନ୍. ଭଗବତୀ ଓ ଜଷ୍ଟିସ ଭି. ଆର. କୃଷ୍ଣା ଆୟାର । ତତ୍‌କାଳୀନ ଜିଲା ଜଜ୍ ବରଦାକାନ୍ତ ମିଶ୍ର ଅଦାଲତ ଅବମାନନା ଅଭିଯୋଗରେ ହାଇକୋର୍ଟ ଦ୍ୱାରା ଦଣ୍ଡିତ ହୋଇଥିଲେ । ବରିଷ୍ଠ ଆଡ୍‌ଭୋକେଟ୍ ଅଶୋକ ସେନ୍ ଥିଲେ ତାଙ୍କର ଅଧିବକ୍ତା । ବରଦାକାନ୍ତଙ୍କ ଅପିଲ ଅବଶ୍ୟ ଖାରଜ ହେଲା ଓ ଆମେ ଜିତିଲୁ । ଏ ମୋକଦ୍ଦମାରେ ଜୟ ପରାଜୟର ମୋ ନିକଟରେ କୌଣସି ଗୁରୁତ୍ୱ ନଥିଲା । କିନ୍ତୁ ଏହି ଅପିଲର ବିଚାର ସମୟରେ ସୁପ୍ରିମ କୋର୍ଟର ତିନି ଜଣ ବିଚାରପତିଙ୍କ ସହିତ ଯେଉଁ ଘନିଷ୍ଠତା ଆରମ୍ଭ ହୋଇଥିଲା, ତାହା ଏବେ ମଧ୍ୟ ଅତୁଟ ରହିଛି । ଚିଫ୍ ଜଷ୍ଟିସ ରାୟ କଲିକତା ହାଇକୋର୍ଟରେ ବିଚାରପତି ନିଯୁକ୍ତ ହେବା ପୂର୍ବରୁ ଏକ ଖଣି ବିବାଦ ମୋକଦ୍ଦମାରେ ସୁଆଲ ଜବାବ କରିବା ପାଇଁ ୧୯୫୭ ମସିହାରେ କଟକ ଆସିଥିଲେ । ସେହି ସମୟରୁ ତାଙ୍କ ସହିତ ପରିଚୟ । ବରଦାକାନ୍ତଙ୍କ କେସ୍‌ରେ ବାଦାନୁବାଦ କରିବା ପାଇଁ ମୁଁ ଯେତେବେଳେ ଠିଆ ହୁଏ, ଚିଫ୍ ଜଷ୍ଟିସ ଓଡ଼ିଶା ସଂପର୍କରେ ଓ ଓଡ଼ିଶାର ବହୁ ବିଶିଷ୍ଟ ଆଇନଜୀବୀଙ୍କ ସଂପର୍କରେ ମତେ ନାନା ପ୍ରଶ୍ନ କଲେ । ଓଡ଼ିଶାର ଜନ-ଜୀବନ ସହିତ ତାଙ୍କର ଅନ୍ତରଂଗ ସଂପର୍କ ଦେଖି ମୁଁ ବିସ୍ମିତ ହେଲି । ଜଷ୍ଟିସ ଭଗବତୀଙ୍କ ସହ ପରିଚୟ ୧୯୭୧ ମସିହାରେ ଦିଲ୍ଲୀରେ ଅନୁଷ୍ଠିତ କମନୱେଲ୍‌ଥ ଲ' କନଫରେନ୍ସ ସମୟରୁ । ଭଗବତୀ ବିଚାରପତି ଥିବା ସମୟରେ ଓ ଭାରତର ପ୍ରଧାନ ବିଚାରପତି ପଦରୁ ଅବସର ନେବା ପରେ ମଧ୍ୟ ଅନେକ ଥର କଟକ ଆସିଛନ୍ତି । ମୋର ଭୁବନେଶ୍ୱର ଘରେ କେତେ ଥର ଅତିଥି ହୋଇଛନ୍ତି । ଜଷ୍ଟିସ କୃଷ୍ଣା ଆୟାର ଲ' କମିସନର ସଦସ୍ୟ ଥିବା ସମୟରେ ୧୯୭୨ ମସିହାରେ କଟକ ଆସିଥିଲେ । ଆଡ୍‌ଭୋକେଟ୍ ଜେନେରାଲ ଭାବରେ ସ୍ଥାନୀୟ ଆଡ୍‌ଭୋକେଟ୍‌ମାନଙ୍କ ତରଫରୁ ବିଚାର ବିଭାଗୀୟ ସମସ୍ୟା ଉପରେ ତାଙ୍କ ସହ ଆଲୋଚନା କରିବାର ଦାୟିତ୍ୱ ଥିଲା ମୋର । ୧୯୭୩ ମସିହାରେ ଏ ଦୁଇଜଣ ଆଇନବିତ୍ ସୁପ୍ରିମ କୋର୍ଟର ବିଚାରପତି ନିଯୁକ୍ତ ହୋଇଥିଲେ । ଉଭୟ ଭଗବତୀ ଓ କୃଷ୍ଣା ଆୟାର ଭାରତର ଦୁଇଜଣ ବିଖ୍ୟାତ ଜୁରିଷ୍ଟ ବା ଆଇନ ବିଶାରଦ । ଭାରତରେ ପ୍ରଗତିପନ୍ଥୀ ସମାଜବାଦୀ ଚିନ୍ତାଧାରାର ବିକାଶ ପାଇଁ ଯେଉଁ କେତେଜଣ ସୁପ୍ରିମ କୋର୍ଟ ବିଚାରପତିଙ୍କର ଅବଦାନ

ସବୁଠାରୁ ଅଧିକ, ସେମାନେ ହେଲେ ଜଷ୍ଟିସ କୃଷ୍ଣା ଆୟାର ଓ ଭଗବତୀ । ଏହି ପ୍ରଖ୍ୟାତ ଜୁରିଷ୍ଟମାନଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ହେତୁ, ମୁଁ ଗର୍ବ ଅନୁଭବ କରୁଛି ।

୧୯୭୪ ମସିହା ଫେବୃଆରୀ ଶେଷରେ ଓଡ଼ିଶାରେ ମଧ୍ୟବର୍ତ୍ତୀକାଳୀନ ସାଧାରଣ ନିର୍ବାଚନ ହେଲା । ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କଂଗ୍ରେସ ଦଳ ବିଧାନ ସଭାରେ ଅଣସ୍ତରୀଟି ଆସନ ଦଖଲ କରିଥିଲେ । ବିଜୁ ପଟ୍ଟନାୟକଙ୍କ ଉତ୍କଳ କଂଗ୍ରେସ ଦଳ ପଂଚତିରିଶ, ରାଜେନ୍ଦ୍ର ରାରାୟଣ ସିଂହଦେଓଙ୍କ ସ୍ୱତନ୍ତ୍ର ଦଳ 'ଏକୋଇଶ, କମ୍ୟୁନିଷ୍ଟ ଦଳ ସାତ ଓ ବାକିତକ ଆସନ ଅନ୍ୟାନ୍ୟ ଦଳ ମଧ୍ୟରେ ବିଭକ୍ତ ହୋଇଥିଲା । ରାଷ୍ଟ୍ରପତି ଶାସନର ଅବସାନ ହେଲା ଓ ନନ୍ଦିନୀ ଶତପଥୀ ପୁଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ମୁଁ ଦ୍ୱିତୀୟ ଥର ପାଇଁ ନୂତନ ସରକାରଙ୍କ ଦ୍ୱାରା ଆଡ୍‌ଭୋକେଟ୍ ଜେନେରାଲ ମନୋନୀତ ହେଲି ।

ସେ ବର୍ଷ ଜୁନ ଶେଷ ସପ୍ତାହରେ ଭାରତର ପ୍ରଧାନ ବିଚାରପତି ଏ. ଏନ୍. ରାୟଙ୍କ ଓଡ଼ିଶା ପରିଦର୍ଶନର କାର୍ଯ୍ୟକ୍ରମ ହାଇକୋର୍ଟରେ ପହଞ୍ଚିଲା । ଚିଫ୍ ଜଷ୍ଟିସ ଗତିକୃଷ୍ଣ ମିଶ୍ର ମୋତେ ତାଙ୍କ ପ୍ରକୋଷ୍ଠକୁ ଡକାଇ ଏ ବିଷୟରେ ଆଲୋଚନା କରିଥିଲେ । ପ୍ରଧାନ ବିଚାରପତିଙ୍କୁ ସରକାରୀ ଅତିଥି ଭାବରେ ରାଜଭବନରେ ରଖିବା ପାଇଁ ଘରୋଇ ବିଭାଗକୁ ଅନୁରୋଧ କରାଯାଇଥିଲା । ଏଣେ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଖବର ଆସିଲା ଯେ ପ୍ରଥମ ଦିନ ମୁଖ୍ୟମନ୍ତ୍ରୀ ରାୟ ଦମ୍ପତୀଙ୍କୁ ଭୁବନେଶ୍ୱର ଗେଷ୍ଟ ହାଉସରେ ଦିବା ଭୋଜନରେ ଚର୍ଚ୍ଚା କରିବେ । ମୁଁ ପ୍ରସ୍ତାବ କଲି ପ୍ରଧାନ ବିଚାରପତିଙ୍କ ସମ୍ମାନାର୍ଥେ ଦ୍ୱିତୀୟ ଦିନ ସଂଧ୍ୟାରେ ଏକ ରାତ୍ରି ଭୋଜନର ଆୟୋଜନ କରିବାକୁ ମୋତେ ସୁଯୋଗ ଦିଆଯାଉ । ଚିଫ୍ ଜଷ୍ଟିସ ମିଶ୍ର ବିବ୍ରତ ହୋଇ କହିଲେ ଦିଲ୍ଲୀ ସହିତ ପରାମର୍ଶ ନ କରି ସେ କୌଣସି କାର୍ଯ୍ୟକ୍ରମ ପାଇଁ ସ୍ୱୀକୃତି ଦେଇ ପାରିବେ ନାହିଁ । ଦୁଇଦିନ ପରେ ଜଷ୍ଟିସ ମିଶ୍ର ଜଣାଇଦେଲେ ଯେ ଆଡ୍‌ଭୋକେଟ୍ ଜେନେରାଲଙ୍କ ଡିନର ପ୍ରସ୍ତାବକୁ ଚିଫ୍ ଜଷ୍ଟିସ ଅଫ ଇଣ୍ଡିଆ ଗ୍ରହଣ କରିଛନ୍ତି । ଗତିକୃଷ୍ଣ ବାବୁ ସୂଚନା ଦେଲେ, ୫୦ ଜଣରୁ ଅଧିକ ସଂଖ୍ୟକ ଅତିଥି ଆମନ୍ତ୍ରଣ କରିବା ଉଚିତ ହେବ ନାହିଁ । ତାଙ୍କ ମନରେ ବୋଧହୁଏ ଆଶଂକା ଥିଲା ଯେ ଅତିଥି ସଂଖ୍ୟା ଅଧିକ ହେଲେ ଗୋଳମାଳ ହୋଇପାରେ । ଅତିଥି ସଂଖ୍ୟା ଏପରି ସଂକୁଚିତ କରିବାଟା ମୁଁ ଗ୍ରହଣ କରି ପାରିଲି ନାହିଁ । ଶେଷକୁ ସ୍ଥିର

ହେଲା, ଅତିଥି ସଂଖ୍ୟା ଦେଢ଼ ଶହରୁ ଅଧିକ ହେବ ନାହିଁ ଏବଂ ଡିନରରେ ପ୍ରୋଟୋକୋଲ ପାଳନ କରାଯିବ । ହାଇକୋର୍ଟର ସମସ୍ତ ବିଚାରପତି ଓ ସେମାନଙ୍କର ପତ୍ନୀ, ମୁଖ୍ୟମନ୍ତ୍ରୀ ଓ ତାଙ୍କର କ୍ୟାବିନେଟ୍ ସାଥୀଗଣ, ସମାଜ ସଂପାଦକ ଡକ୍ଟର ରଥ ଓ ଅନ୍ୟ କେତେକ ବିଶିଷ୍ଟ ସାଂବାଦିକ ଓ ହାଇକୋର୍ଟ ବାର୍ ଆସୋସିଏସନ୍‌ର ସବୁ ବରିଷ୍ଠ ବଂଧୁଙ୍କ ମେଳରେ ବାରବାଟୀ କ୍ଲବ ହାଉସର ଉପର ମହଲାରେ ଏହି ଉତ୍ସବର ଆୟୋଜନ କରାଯାଇଥିଲା । ଏହି ଉତ୍ସବ ଆୟୋଜନରେ ଯେଉଁମାନେ ମୋତେ ବିଶେଷ ଭାବରେ ସାହାଯ୍ୟ କରିଥିଲେ ସେମାନେ ହେଲେ ବଂଧୁ ରାମଚନ୍ଦ୍ର ରାମ, ଅମଲକୃଷ୍ଣ ରାୟ, ଶ୍ରଦ୍ଧେୟ ଦେବ ପ୍ରସାଦ ମହାପାତ୍ର ଓ ଗୋପାଳ ବଲ୍ଲଭ ପଟ୍ଟନାୟକ ଏବଂ ମୋର ବନ୍ଧୁ ପୁତ୍ର ଆଡ୍‌ଭୋକେଟ୍ ରଜତ କୁମାର ରଥ ।

ପରଦିନ 'ସମାଜ'ରେ ସଂବର୍ଦ୍ଧନା ଉତ୍ସବର ଦୁଇଟି ଫଟୋ ଚିତ୍ର ପ୍ରକାଶିତ ହୋଇଥିଲା । ରାଧାନାଥ ବାବୁ ସମାଜରେ ଏକ ନାତିଦୀର୍ଘ ସଂପାଦକୀୟ ଲେଖି ବିଚାର ବିଭାଗର ସମସ୍ୟା ଉପରେ ଚିଫ୍ ଜଷ୍ଟିସ ଏ. ଏନ୍. ରାୟଙ୍କ ମନ୍ତବ୍ୟ ପ୍ରତି ଜନସାଧାରଣ ଓ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଚିଫ୍ ଜଷ୍ଟିସ ରାୟ କଲିକତାରେ ପହଂଚି ମୋତେ ସାଧୁବାଦ ଜଣାଇ ଯେଉଁ ପତ୍ର ଖଣ୍ଡି ଲେଖିଥିଲେ, ତାହା ତାଙ୍କର ଆନ୍ତରିକ ସଦ୍‌ଭାବନାର ପରିଚାୟକ ।

ତାରିଖ ଠିକ୍ ମନେ ନାହିଁ । ନନ୍ଦିନୀ ଶତପଥୀ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ନିର୍ବାଚିତ ହେବା ପରେ, ତତ୍‌କାଳୀନ ଡି. ଆଇ. ଜି ନରସିଂହ ସ୍ୱାଇଁଙ୍କୁ ଆଇ. ଜି. ପଦରେ ନିଯୁକ୍ତ କଲେ । ସେ ସମୟରେ ଡାଇରେକ୍ଟର ଜେନେରାଲ ପଦବୀ ନଥିଲା । ଦୁଇ ଜଣ ମାତ୍ର ଇନସ୍ପେକ୍ଟର ଜେନେରାଲ, ଜଣେ ସାଧାରଣ ପୋଲିସ ବିଭାଗ ଦାୟିତ୍ୱରେ ଓ ଅନ୍ୟ ଜଣେ ଭିଜିଲାନ୍‌ସ ବିଭାଗ ଦାୟିତ୍ୱରେ । ସାଧାରଣ ପୋଲିସ ବିଭାଗର ଆଇ. ଜି. ପଦ ଏକ ବରିଷ୍ଠ ଆସନ ଭାବରେ ସ୍ୱୀକୃତ ହେଉଥିଲା । ସ୍ୱାଇଁଙ୍କୁ ପୋଲିସ ବିଭାଗର ସର୍ବୋଚ୍ଚ ପଦରେ ଅଧିଷ୍ଠିତ କରାଇବା ଦ୍ୱାରା ତାଙ୍କଠାରୁ ବରିଷ୍ଠ ଅନ୍ୟ ଅଫିସରମାନେ କ୍ଷୁବ୍ଧ ହୋଇଥିଲେ । ତତ୍‌କାଳୀନ ଭିଜିଲାନ୍ସ ଆଇ. ଜି. ଦାମୋଦର ଛୋଟରାୟ ସ୍ୱାଇଁଙ୍କ ପଦୋନ୍ନତି ବିରୁଦ୍ଧରେ ସୁପ୍ରିମ କୋର୍ଟରେ ସିଧାସଳଖ ଏକ ରିଟ୍ କେସ୍ ଦାଏର କଲେ । ପରେ ଓଡ଼ିଶା ପବ୍ଲିକ୍ ସର୍ଭିସ କମିସନ୍‌ର ଚେଆରମ୍ୟାନ ହୋଇଥିବା ନିକୁଞ୍ଜ କିଶୋର ରାୟ ମଧ୍ୟ ଏଥିରେ ପକ୍ଷଭୁକ୍ତ ହୋଇଥିଲେ । ଏମାନେ ସମସ୍ତେ ନରସିଂହ ସ୍ୱାଇଁଙ୍କ ଠାରୁ ଚାକିରୀରେ ସିନିୟର ।

କିଛି ଦିନ ପରେ ଘରୋଇ ବିଭାଗର ଏକ ଫାଇଲ ଆସିଲା । ଘରୋଇ ବିଭାଗର ସୁପାରିଶକ୍ରମେ ମୁଖ୍ୟମନ୍ତ୍ରୀ ଆଦେଶ ଦେଇଥିଲେ ଯେ ଦାମୋଦର ଛୋଟରାୟଙ୍କ ସୁପ୍ରିମକୋର୍ଟ ମୋକଦ୍ଦମାରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଆଟର୍ଣ୍ଣି ଜେନେରାଲ ଅଧିବକ୍ତା ନିଯୁକ୍ତ ହେବେ ଏବଂ ଆଡ୍‌ଭୋକେଟ୍ ଜେନେରାଲ ତାଙ୍କୁ ସହାୟତା ଦେବେ । ସେତେବେଳେ ଅତି ପରିଚିତ ପଦ ଭାଇନା (ପ୍ୟାରୀ ମୋହନ ମହାପାତ୍ରଙ୍କ ଶ୍ୱଶୁର ପଦ୍ମନାଭ ମିଶ୍ର) ଥିଲେ ଘରୋଇ ବିଭାଗର ସଚିବ । ମୋର ସଂଦେହ ହେଲା ସ୍ୱାଇଁଙ୍କ ପ୍ରରୋଚନାରେ ପଦ୍ମନାଭ ମିଶ୍ରେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଏପରି ଆଦେଶ କରାଇ ଆଣିଛନ୍ତି । ମୁଁ ଅଧିକ କାଳ ବିଳମ୍ବ ନ କରି ସେହି ଦିନ ଫାଇଲଟି ଫେରାଇ ଦେଲି ଏବଂ ସେଥିରେ ଲେଖିଥିଲି "ଆଟର୍ଣ୍ଣି ଜେନେରାଲଙ୍କ ହାତରେ ସରକାରଙ୍କ ସ୍ୱାର୍ଥ ସଂପୂର୍ଣ୍ଣ ନିରାପଦ । କିନ୍ତୁ ଆଡ୍‌ଭୋକେଟ୍ ଜେନେରାଲ ଭାବରେ ମୁଁ କାହାର ଜୁନିୟର ହେବାକୁ ଅକ୍ଷମ ।"

ଅବଶ୍ୟ ତତ୍‌କାଳୀନ ଆଟର୍ଣ୍ଣି ନୀରେନ୍ ଦେଙ୍କ ସହିତ ମୋର ଅତି ସୁସଂପର୍କ ଥିଲା ଓ ମୁଁ ତାଙ୍କୁ ସମ୍ମାନ କରୁଥିଲି । କିନ୍ତୁ ତା ସତ୍ତ୍ୱେ ନିଜ ହାତରେ ନିଜ ପଦର ମର୍ଯ୍ୟାଦା କ୍ଷୁଣ୍ଣ କରିବାକୁ ଚାହିଁଲି ନାହିଁ । ପ୍ରାୟ ସପ୍ତାହକ ପରେ ଫାଇଲଟି ପୁଣି ଥରେ ଫେରିଲା । ଚିଫ୍ ମିନିଷ୍ଟରଙ୍କ ସ୍ୱହସ୍ତ ଲିଖିତ ଆଦେଶରେ ଲେଖାଥିଲା "ଆଟର୍ଣ୍ଣି ଜେନେରାଲଙ୍କ ନିଯୁକ୍ତିର ଆବଶ୍ୟକତା ନାହିଁ । ଆଡ୍‌ଭୋକେଟ୍ ଜେନେରାଲ୍ ଓଡ଼ିଶା ସରକାରଙ୍କ ପ୍ରତିନିଧିତ୍ୱ କରିବେ ।" ଆଦେଶଟି ପଢ଼ି ଅବଶ୍ୟ ମନେ ମନେ ଖୁସି ହେଲି, କିନ୍ତୁ ମନେ ହେଲା, ପଦ ମର୍ଯ୍ୟାଦା ରକ୍ଷା କରିବାକୁ ଯାଇ ଯେପରି ଏକ ବିରାଟ ପଥରର ବୋଝ ମୁଣ୍ଡରେ ଲଦି ଦିଆଯାଇଛି ।

ଯାହାହେଉ ଛୋଟରାୟଙ୍କ ମୋକଦ୍ଦମା ବିଚାର ପାଇଁ ଉଠିଲା ଏକ ଚାରିଜଣିଆ ବିଚାରକ ମଣ୍ଡଳୀ ଆଗରେ । ବିଚାରକମାନଙ୍କ ମଧ୍ୟରେ ଥିଲେ ଚିଫ୍ ଜଷ୍ଟିସ ଏ. ଏନ୍. ରାୟ, ଜଷ୍ଟିସ ଜଗମୋହନ ରେଡ୍‌ଡ଼ି, ଜଷ୍ଟିସ ପାଲେକର୍ ଏବଂ ଜଷ୍ଟିସ ଖାନ୍ନା । ଛୋଟରାୟଙ୍କ ତରଫରୁ ସୁଆଲ ଜବାବ କଲେ ସ୍ୱନାମଧନ୍ୟ ଅଧିବକ୍ତା ପ୍ରାକ୍ତନ ଆଟର୍ଣ୍ଣି ଜେନେରାଲ ସି. କେ ଦଫ୍‌ତରୀ ଓ ତାଙ୍କ ସହିତ ଥିଲେ ପୂର୍ବତନ ଆଇନ ମନ୍ତ୍ରୀ ଅଶୋକ ସେନ୍ । ଦଫ୍‌ତରୀଙ୍କ ଯୁକ୍ତି ଶୁଣିବା

ପରେ ଚାରିଜଣ ବିଚାରକଙ୍କ ମଧ୍ୟରୁ ତିନିଜଣ ତାଙ୍କ ପକ୍ଷରେ ସହମତ ହେବା ପରି ମନେ ହେଲା । ମାଡ୍ରାସ ଚିଫ୍ ସେକ୍ରେଟାରୀ ରାୟାପାଙ୍କ ନିଷ୍ପତ୍ତିର ନଜିର ଦେଇ ମୁଁ ଜବାବ ଦେଲି ଯେ ଚିଫ୍ ସେକ୍ରେଟାରୀ ବା ଆଇ. ଜି. ପଦ ପୂରଣ କରିବା ପାଇଁ ସିନିଓରିଟି ଏକମାତ୍ର ବିଚାର୍ଯ୍ୟ ବିଷୟ ନୁହେଁ । ଏ ସବୁ ପଦରେ ନିଯୁକ୍ତି ଦାବୀ କରୁଥିବା ବରିଷ୍ଠ ଅଫିସରଙ୍କ ଉପରେ ସରକାରଙ୍କର ଆସ୍ଥା ଅଛି କି ନାହିଁ ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ ସବୁ ଦୃଷ୍ଟିରୁ ନରସିଂହ ସ୍ୱାଇଁଙ୍କ ନିଯୁକ୍ତିରେ କୋର୍ଟ ହସ୍ତକ୍ଷେପ କରିବା ଉଚିତ ନୁହେଁ । ମୋର ବିତର୍କ ଶୁଣିବା ପରେ ଦୁଇଜଣ ବିଚାରପତି ସେମାନଙ୍କ ମତ ପରିବର୍ତ୍ତନ କଲେ । କେବଳ ଜଷ୍ଟିସ ଖାନ୍ନା ତାଙ୍କ ପୂର୍ବ ମତରେ ଅଟଳ ରହିଲେ । ଫଳାଫଳ କ'ଣ ହେବ, ଏହି ଚିନ୍ତାରେ ମନ ଅସ୍ଥିର ଥାଏ । ତାପରେ ଚିଫ୍ ଜଷ୍ଟିସ ଓ ଜଷ୍ଟିସ ଖାନ୍ନା ପରସ୍ପର ଆଲୋଚନା କରି ଦାମୋଦର ଛୋଟରାୟଙ୍କ ଦରଖାସ୍ତ ଖାରଜ ହେଲା ବୋଲି ଆଦେଶ ଦେଲେ । ମୁଁ ଆଶ୍ୱସ୍ତ ହେଲି ଯେ ସ୍ୱ ଅର୍ଜିତ ବିରାଟ ବୋଝଟା ମୋ ମୁଣ୍ଡରୁ ଉଭାନ ହୋଇ ଯାଇଛି ।



# ସଭା ସମିତି

ସଭା ସମିତିରେ ଯୋଗ ଦେବା ଓ ସୁଯୋଗ ମିଳିଲେ ସଭାରେ ଭାଷଣ ଦେବା ଆରମ୍ଭ କରିଥିଲି ସ୍କୁଲରେ ପଢ଼ିବା ସମୟରୁ । ପରକାଳରେ ଯେତେବେଳେ ଯେଉଁ କ୍ଷେତ୍ରରେ କାର୍ଯ୍ୟ କରିଛି, ସେଠି ମୂକ ନୀରବ ଦ୍ରଷ୍ଟା ରହିବାକୁ କେବେ ପସନ୍ଦ କରିନାହିଁ । ନିକଟ ଅତୀତର କେତେଗୁଡ଼ିଏ ସଭା ସମିତିର ଅନୁଭୂତି ମନେ ପଡୁଛି । ୧୯୭୨ ମସିହାରେ କଲେଜ ଦିନର ବଂଧୁ ଡକ୍ଟର ମହେନ୍ଦ୍ର କୁମାର ରାଉତ ଥିଲେ ରେଭେନ୍ସା କଲେଜର ପ୍ରିନ୍ସିପାଲ । ଦିନେ ଡକ୍ଟର ରାଉତ ଫୋନ୍ କଲେ, ପଶ୍ଚିମ ଛାତ୍ରାବାସର ବାର୍ଷିକ ସମାରୋହରେ ମୁଖ୍ୟ ଅତିଥି ହେବା ପାଇଁ । ଆମେ ଉଭୟ ଥିଲୁ ପଶ୍ଚିମ ଛାତ୍ରାବାସର ଅନ୍ତେବାସୀ । ତାଙ୍କ ଅନୁରୋଧକୁ ଉପେକ୍ଷା କରିବାର ପ୍ରଶ୍ନ ନଥିଲା । ମୁଁ ଯଥା ସମୟରେ ଅନୁଷ୍ଠାନରେ ହାଜର ହେଲି । ଆବାହନ ସଂଗୀତ ଓ ଭାଷଣ ପର୍ବ ଶେଷ ହେବା ପରେ କୃତୀ ଛାତ୍ରମାନଙ୍କୁ ପୁରସ୍କାର ବିତରଣ କରାହେଲା । ତୃତୀୟ ବାର୍ଷିକ ଶ୍ରେଣୀର ଜଣେ ଛାତ୍ର ପ୍ରାୟ ସବୁ ପ୍ରଥମ ପ୍ରାଇଜ ଲାଭ କଲେ, ଅବଶ୍ୟ ଖେଳ କସରତ ପାଇଁ ଉଦ୍ଦିଷ୍ଟ ପ୍ରାଇଜ ବ୍ୟତୀତ । ମୁଁ ପ୍ରିନ୍ସିପାଲଙ୍କୁ କହିଲି, ମୁଁ ମଧ୍ୟ ଏ ଛାତ୍ରଙ୍କୁ ଗୋଟିଏ ପ୍ରାଇଜ ଦେବି । ଡକ୍ଟର ରାଉତ କହିଲେ ସେ ତ ସବୁ ପ୍ରାଇଜ ନେଇଛି, ଅନ୍ୟ କାହାକୁ ବାଛନ୍ତୁ । ମୁଁ ମତ ପରିବର୍ତ୍ତନ କରିବାକୁ ପ୍ରସ୍ତୁତ ନଥିଲି । ଉକ୍ତ ଛାତ୍ରଙ୍କ ନାମରେ ମୁଁ ନଗଦ ପାଂଚଶତ ଟଂକା ପୁରସ୍କାର ଦେଉଛି ବୋଲି ପ୍ରିନ୍ସିପାଲ ଘୋଷଣା କଲେ । ଏ ଘଟଣାର ଛ' ବର୍ଷ ପରେ ୧୯୭୮ ମସିହାରେ ମୁଁ ଓ ନିରୁପମା ଥରେ ମଶୌରୀ ବୁଲି ଯାଇଥିଲୁ । ମଶୌରୀ ''କ୍ୱିନ୍ ଅଫ୍ ହିଲ ଷ୍ଟେସନ'' ନାମରେ ଖ୍ୟାତ । ମଶୌରୀରେ ଇଣ୍ଡିଆନ ସିଭିଲ ସର୍ଭିସର ବିଭିନ୍ନ ବିଭାଗରେ ଯୋଗ ଦେଉଥିବା ଅଫିସରମାନଙ୍କ ପାଇଁ ଏକ ତାଲିମ କେନ୍ଦ୍ର ଅଛି । ଏଠି ସର୍ଭିସର ବିଭିନ୍ନ ବିଭାଗରେ ତାଲିମ୍ ନେଉଥିବା ଓଡ଼ିଆ ଅଫିସର ଛାତ୍ରମାନେ ଆମକୁ ଟା ଭୋଜୀକୁ ନିମନ୍ତ୍ରଣ କରିଥିଲେ । ନିମନ୍ତ୍ରଣକାରୀମାନଙ୍କ ମଧ୍ୟରୁ ଜଣେ ଅଫିସର ହଠାତ୍ ଆସି ଚିହ୍ନା ଦେଲେ ଯେ ସେ ପଶ୍ଚିମ ଛାତ୍ରାବାସରେ ଥିବା ସମୟରେ ମୋ ହାତରୁ ପାଂଚଶତ ଟଂକାର ପୁରସ୍କାର ଗ୍ରହଣ କରିଥିଲେ । ମୁଁ ମନେ ମନେ ଖୁସି ହେଲି, ବହୁଦିନ ଆଗେ, ମୋ ଦ୍ୱାରା ସୁଯୋଗ୍ୟ ବିବେଚିତ ହୋଇଥିବା ଛାତ୍ର ବର୍ତ୍ତମାନ ଆଇ.ଏ.ଏସ. ଅଫିସର ଭାବରେ ମନୋନୀତ ।

ସେ ବର୍ଷ ପୂଜା ପରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜ ୟୁନିଅନର କର୍ମକର୍ତ୍ତାମାନେ ତାଙ୍କ ୟୁନିଅନର ବାର୍ଷିକ ଉତ୍ସବ ଉଦ୍‌ଘାଟନ କରିବା ପାଇଁ ମୋତେ ନିମନ୍ତ୍ରଣ କରିଥିଲେ । ସେମାନେ ଅବଶ୍ୟ ପ୍ରିନ୍ସିପାଲଙ୍କ ଠାରୁ ଚିଠି ନେଇ ଆସିଥିଲେ । କିନ୍ତୁ ପ୍ରିନ୍ସିପାଲ କିଏ, ସେ କଥା ପଚାରିବାକୁ ଖିଆଲ ରହିଲା ନାହିଁ । ଚିଠିରେ କାହାର ଦସ୍ତଖତ୍ ଅଛି, ସେ ପ୍ରତି ମଧ୍ୟ ମୋର ନଜର ନଥିଲା । ନିର୍ଦ୍ଧାରିତ ଦିନ ସଂଧ୍ୟା ସମୟରେ କଲେଜ ପ୍ରାଙ୍ଗଣରେ ଉପସ୍ଥିତ ହୋଇ ଦେଖେ, ମୋତେ ଅଭ୍ୟର୍ଥନା କରୁଛନ୍ତି ମୋର ବାଲ୍ୟବଂଧୁ, କଲେଜିଏଟ୍ ସ୍କୁଲର ସହପାଠୀ କଲେଜର ଅଧ୍ୟକ୍ଷ ଡକ୍ଟର ସତ୍ୟବାଦୀ ମିଶ୍ର । ପ୍ରିନ୍ସିପାଲଙ୍କ ନାମ ଜାଣିବା ବିଷୟରେ ମୁଁ ଯେଉଁ ତ୍ରୁଟି କରିଥିଲି, ସେଥିପାଇଁ ମନେ ମନେ ଲଜ୍ଜିତ ହେଲି । ସେ ଦିନ ମୋର ବକ୍ତୃତା ଥିଲା ସଂପୂର୍ଣ୍ଣ ଭିନ୍ନ ରୁଚିର । ସତ୍ୟବାଦୀଙ୍କୁ ଦେଖି ଅତୀତର ବହୁ ଘଟଣା ମନେ ପଡ଼ିଲା- କଲେଜିଏଟ ସ୍କୁଲରେ ଅଧ୍ୟୟନ କରିବା ସମୟରୁ ଛାତ୍ର ଆନ୍ଦୋଳନରେ ଆମର ଭୂମିକା, ଅଗଷ୍ଟ ବିପ୍ଳବ ପରେ ଯୁବ ଓ ଛାତ୍ର ଆନ୍ଦୋଳନକୁ ପୁନର୍ଜୀବିତ କରିବା ପାଇଁ ଆମର ପ୍ରଚେଷ୍ଟା, ସ୍କୁଲ କଲେଜରେ ଅନୁଷ୍ଠିତ ବହୁ ସାଂସ୍କୃତିକ ଅନୁଷ୍ଠାନରେ ଆମର ମିଳିତ ସହଯୋଗ ଇତ୍ୟାଦି । ଏ ସବୁ ଅନୁଭୂତିକୁ ଭାଷଣର ଉପଜୀବ୍ୟ କରି ଛାତ୍ରମାନଙ୍କ ଆଗରେ ଉପସ୍ଥାପିତ କରିବା ପାଇଁ ଉଦ୍ୟମ କଲି । ଉଦ୍ୟମ ସଫଳ ହେଲା କି ନାହିଁ, ସେ କଥା ଲେଖିବା ମୋ ପକ୍ଷରେ ଅକ୍ଷମଣୀୟ ଧୃଷ୍ଟତା ହେବ । କିନ୍ତୁ ପ୍ରିନ୍ସିପାଲ ଖୁବ୍ ଆବେଗମୟ ଭାଷାରେ ମୋତେ ଧନ୍ୟବାଦ ଦେଇଥିଲେ । ସତ୍ୟବାଦୀ ଆଉ ନାହାନ୍ତି । ତିନି ବର୍ଷ ତଳେ ଆମ ସମସ୍ତଙ୍କଠାରୁ ଚିର ବିଦାୟ ନେଇଛନ୍ତି । କିନ୍ତୁ ସେ ସଂଧ୍ୟାରେ ଅନୁଷ୍ଠାନ ପରେ ସତ୍ୟବାଦୀଙ୍କ ଘରେ ତାଙ୍କ ପିଲାମାନଙ୍କ ସହ ପ୍ରସାଦ ସେବା ମୋ ପାଇଁ ଥିଲା ଅତୀତର ସ୍ନେହ ଓ ଶ୍ରଦ୍ଧାର ନିଦର୍ଶନ ।

ଜଷ୍ଟିସ ଅଭିମନ୍ୟୁ ମିଶ୍ର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ଥିବା ସମୟରେ ମୁଁ ଥରେ ଲିଙ୍ଗରାଜ ଆଇନ କଲେଜକୁ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରିତ ହୋଇଥିଲି । ଆଇନ କଲେଜ ତାର ନୂତନ ଆବାସକୁ ସ୍ଥାନାନ୍ତରିତ ହେବା ପରେ ମୁଁ ଦୁଇଥର ଆଇନ କଲେଜକୁ ଆମନ୍ତ୍ରିତ ହୋଇଛି, ଥରେ ୧୯୮୪ ମସିହାରେ ବଂଧୁ ରଣଜିତ ମହାନ୍ତିଙ୍କ ସହ ମୁଖ୍ୟ ଅତିଥି ଭାବରେ, ଆଉଥରେ ୧୯୮୬ ମସିହାରେ ସମାଜ ସଂପାଦକ ଡକ୍ଟର ରାଧାନାଥ ରଥଙ୍କ ସହ ମୁଖ୍ୟ ବକ୍ତା ଭାବରେ । ଉତ୍କଳ ବିଶ୍ୱବିଦ୍ୟାଳୟ ପରିଚାଳିତ ଭୁବନେଶ୍ୱର ଆଇନ କଲେଜ, କଟକରର ମଧୁସୂଦନ ଲ' କଲେଜ ଓ ପୋଷ୍ଟ ଗ୍ରାଜୁଏଟ୍ ଲ'

କଲେଜରେ କେତେ ଥର ବକ୍ତୃତା ଦେବାର ସୁଯୋଗ ମିଳିଛି । ଯାଜପୁର ଏନ. ସି. କଲେଜ, ଢେଙ୍କାନାଳ ମହିଳା କଲେଜ, ଆଠଗଡ଼ ଗୋପବଂଧୁ ବିଜ୍ଞାନ କଲେଜ ଆଦି ବହୁ ଶିକ୍ଷାନୁଷ୍ଠାନର ଛାତ୍ର ଓ ଅଧ୍ୟାପକଙ୍କ ସହ ମିଳିତ ହେବାର ସୌଭାଗ୍ୟ ହୋଇଛି । ଏଥିପାଇଁ ମୁଁ ସେ ସବୁ ଅନୁଷ୍ଠାନର ଅଧ୍ୟକ୍ଷ ଅଧ୍ୟାପକ ଓ ଛାତ୍ରମାନଙ୍କ ପ୍ରତି ଆଜୀବନ ଋଣୀ ।

ଏ ସବୁ ସଭା ସମିତିରେ ଯୋଗ ଦେବାର ଅନୁଭୂତି ବିଚିତ୍ର । ସବୁଦିନେ କୋର୍ଟ କଚେରୀରେ ଇଂରାଜୀ ଭାଷାରେ ବାକ୍ୟାଳାପ ଓ ବାଦାନୁବାଦ କରିବାର ଅଭ୍ୟାସ ହେତୁ, ଇଂରାଜୀରେ ଭାଷଣ ଦେବା ମୋ ପକ୍ଷରେ ସହଜସାଧ୍ୟ ହୁଏ । ଓଡ଼ିଆରେ କହିବାବେଳେ ମନରେ ସଂଦେହ ଥାଏ ଯେ ବୋଧହୁଏ ଇଂରାଜୀ ଶବ୍ଦର ଆଂଶିକ ବ୍ୟବହାର ମୋର ଭାଷଣକୁ ବିକୃତ କରିଦେବ । କିଛି ଦିନ ପରେ ଅନୁଭବ କଲି, ଓଡ଼ିଆ ବକ୍ତୃତାରେ ମୁଁ ଗୋଟିଏ ହେଲେ ଇଂରାଜୀ ଶବ୍ଦ ବ୍ୟବହାର କରୁନାହିଁ । ମୋ ମତରେ ଏହାହିଁ ଶ୍ରେୟ । ଉପନିବେଶବାଦର ଦାସ ସଂସ୍କୃତିରୁ ଆମ ଯୁଗର ଲୋକଙ୍କର ଜନ୍ମ । ଅନେକେ ପାଣ୍ଡିତ୍ୟ ଦେଖାଇବାକୁ ଯାଇ ଓଡ଼ିଆ ଭାଷଣ ମଝିରେ ଦୁଇ ଧାଡ଼ି ଇଂରାଜୀ ନ କହିଲେ ସନ୍ତୁଷ୍ଟ ହୁଅନ୍ତି ନାହିଁ । କେହି କେହି ଅଭ୍ୟାସ ଦୋଷରୁ ଇଂରାଜୀ ଓଡ଼ିଆ ମିଶା ଭାଷଣ ଦେଇଥାନ୍ତି । ମୁଁ ଏପରି ଖେଚୁଡ଼ୀ ପରଷାର ପକ୍ଷପାତୀ ନୁହେଁ ।

ପୃଥିବୀସାରା ଆଜିକାଲି ମୌଖିକ ଭାଷଣ ଓ ଦୀର୍ଘ ଭାଷଣର ଅଭିରୁଚି ଲୋପ ପାଇବାକୁ ବସିଲାଣି । ଦ୍ୱିତୀୟ ମହାଯୁଦ୍ଧ ସମୟରେ ନାଜୀ ବୋମା ବିଧ୍ୱସ୍ତ ବ୍ରିଟେନର ଜନସାଧାରଣଙ୍କୁ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ତାଙ୍କର ଜ୍ୱାଳାମୟୀ ଭାଷଣ ଜରିଆରେ ଅନ୍ତିମ ବିଜୟ ପାଇଁ ଉନ୍ନତ କରି ପାରିଥିଲେ । କିନ୍ତୁ ଆଜିକାଲି ସଭା ଯେତେ ବଡ଼, ଏବଂ ଆଲୋଚ୍ୟ ବିଷୟ ଯେତେ ଗୁରୁତ୍ୱପୂର୍ଣ୍ଣ, ଭାଷଣ ସେତିକି ସଂକ୍ଷିପ୍ତ ଏବଂ ଲିଖିତ । ବିଶେଷତଃ ଆନ୍ତର୍ଜାତିକ ସଭା ସମ୍ମିଳନୀରେ ସଂକ୍ଷିପ୍ତ ଓ ଲିଖିତ ଭାଷଣ ପଢ଼ିବାକୁ ନେତୃବର୍ଗ ପସନ୍ଦ କରୁଛନ୍ତି, କାରଣ କୌଣସି ଅଯାଚିତ ଶବ୍ଦ ଅନିଚ୍ଛାକୃତ ଭାବେ ତୁଣ୍ଡରୁ ବାହାରିଲେ, ଯେପରି ଅନାବଶ୍ୟକ ବିଷୟରେ ବକ୍ତା ବଚନବଦ୍ଧ ହୋଇ ନ ପଡ଼ନ୍ତି । ଏପରିକି ଭାରତବର୍ଷ ପରି ଦେଶ, ଯେଉଁଠି ସ୍ୱାଧୀନତା ସଂଗ୍ରାମର ଆୟୁଧ ଥିଲା ଭାଷଣ ଓ ସ୍ଲୋଗାନ୍ ଏବଂ ଯେଉଁ ଦେଶରେ ଭାବ ବିହ୍ୱଳ ଆବେଗମୟ ବକ୍ତୃତା ଏକ ଜାତୀୟ ପରଂପରାରେ ପରିଣତ ହୋଇଥିଲା, ସେ ଦେଶରେ ମଧ୍ୟ ଆଧୁନିକ ଯୁଗର ଶ୍ରୋତାମାନେ ଦୀର୍ଘ ଭାଷଣ ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି ।

ବକ୍ତୃତା ଶ୍ରୋତାମାନଙ୍କର ରୁଚିସଂଗତ ନ ହେଲେ କିମ୍ବା ଅତି ଦୀର୍ଘ ହେଲେ ସଭା ଗୃହରେ ଚପଲ ଘଷିବା, ଟେବୁଲ ବାଡ଼େଇବା ବା ହଲ ଛାଡ଼ି ଚାଲିଯିବା ନୂଆ କଥା ନୁହେ । ଏ ସବୁ ସଂକେତରୁ ବକ୍ତା ଯଥାଯୁକ୍ତ ସୂଚନା ଗ୍ରହଣ କରିବା ଉଚିତ ।

ଥରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଲଜପତ ରାୟ ଆଇନ କଲେଜକୁ ମୁଁ ଏକ ସାମ୍ବିଧାନିକ ସମସ୍ୟା ଉପରେ ଭାଷଣ ଦେବାକୁ ନିମନ୍ତ୍ରିତ ହୋଇଥିଲି । ଆଲୋଚନାର ବିଷୟ ଥିଲା ''ଭାରତୀୟ ସଂବିଧାନରେ ରାଷ୍ଟ୍ରପତିଙ୍କ ସ୍ଥାନ'' । ଗୋଟିଏ ଆଇନଗତ ସମସ୍ୟାକୁ ଇଂରାଜୀରେ ଉପସ୍ଥାପନା କରିବା ମୋ ପକ୍ଷରେ ଥିଲା ଅତି ସହଜ । ହଲ୍‌ରେ ବିଶୃଙ୍ଖଳାର ସୂଚନା ମଧ୍ୟ ନଥିଲା । ଏଣୁ ଅତି ଉତ୍ସାହିତ ହୋଇ ମୁଁ ଅନର୍ଗଳ କହି ଚାଲିଲି । ଭାଷଣ ଶେଷ ହେବାକୁ ପାଂଚ ଦଶ ମିନିଟ୍ ଅଛି, ଦେଖିଲି ଚାରିପାଂଚ ଜଣ ଛାତ୍ର ନୀରବରେ ଆପଣା ସ୍ଥାନ ଛାଡ଼ି ଚାଲିଗଲେ । ସମୟ ସୀମା ବିଷୟରେ ମୁଁ ହଠାତ୍ ସଜାଗ ହୋଇ ଘଣ୍ଟାକୁ ଚାହିଁ ଦେଖେ ଯେ ମୁଁ ପ୍ରାୟ ଘଣ୍ଟାଏ ପଚିଶ ମିନିଟ୍ କହି ସାରିଲିଣି । ପାଂଚ ମିନିଟ ମଧ୍ୟରେ ବକ୍ତୃତାରେ ପୂର୍ଣ୍ଣାହୁତି ଦେଇ ମୁଁ ଯେତେବେଳେ କ୍ଳାନ୍ତ ହୋଇ ବସି ପଡ଼େ, ମଂଚାସୀନ ଅଧ୍ୟାପକମାନେ ମୋତେ କହିଲେ, ''ଆପଣ ଦୀର୍ଘ ଦେଢ଼ ଘଣ୍ଟା ଧରି ଶ୍ରୋତାମାନଙ୍କୁ ତନ୍ମୟ କରି ରଖିଛନ୍ତି ।'' ମୁଁ ଉତ୍ତର ଦେଲି ''ତନ୍ମୟ ନୁହେ, ବିରକ୍ତ କରି ରଖିଛି । ସମୟ ସୀମା ଅତିକ୍ରମ କରିବା ମାତ୍ରେ ଆପଣ ମୋତେ ସତର୍କ କରି ଦେବା ଉଚିତ ଥିଲା ।'' ମୋ ମତରେ ବିଷୟବସ୍ତୁ ଯେତେ ଗୁରୁତ୍ୱପୂର୍ଣ୍ଣ ବା ଚିତ୍ତାକର୍ଷକ ହେଲେ ମଧ୍ୟ, ଭାଷଣ ଅଧଘଣ୍ଟାଏ ବା ପଇଁଚାଳିଶ ମିନିଟ୍‌ରୁ ବେଶି ହେବା ଉଚିତ ନୁହେଁ ।

ପ୍ରାୟ ପଚିଶ ବର୍ଷ ପୂର୍ବର ଗୋଟିଏ ଘଟଣା ମନେ ପଡୁଛି । ଥରେ ଉତ୍କଳ ବିଶ୍ୱବିଦ୍ୟାଳୟର ଏକ ଛାତ୍ରସଭାକୁ ମୁଁ ନିମନ୍ତ୍ରିତ ହୋଇଥିଲି । ପ୍ରଥମେ ୟୁନିଅନର ଉପଦେଷ୍ଟା ଜଣେ ବିଶିଷ୍ଟ ଅଧ୍ୟାପକ (ସେ କିଛି ଦିନ ମୋର ମଧ୍ୟ ଅଧ୍ୟାପକ ଥିଲେ) ମୋର ପରିଚୟ ଦେବାକୁ ଯାଇ ଏପରି ପ୍ରଶଂସାସୂଚକ ମନ୍ତବ୍ୟମାନ ଦେଲେ ଯେ ମୁଁ ଲଜ୍ଜାରେ ଝାଉଁଳି ପଡ଼ିଲି । ମୋର ଧାରଣା ହେଲା, ଯେ ମୋ ସଂପର୍କରେ ଯାହା ସବୁ କୁହାହେଲା ବୋଧହୁଏ ଶ୍ରୋତାମାନଙ୍କ ବିଚାରରେ ମୁଁ ସେଥିପାଇଁ ଯୋଗ୍ୟ ନୁହେଁ । ସଭାମଂଚର ରୀତିଗତିରେ ଅଭିଜ୍ଞ ମୋ ପରି ଲୋକ ଏପରି ମନ୍ତବ୍ୟରେ ବିଚଳିତ ହେବାର କୌଣସି କାରଣ ନଥିଲା । ଏହି ସମୟରେ କେତେଜଣ ଛାତ୍ରୀ ମୋ ସମେତ ମଂଚାସୀନ ଅତିଥିମାନଙ୍କୁ ଫୁଲମାଳ ଦେଇ ସମ୍ବର୍ଦ୍ଧନା କଲେ । ହଠାତ୍ ସଭାଗୃହରୁ ଉଠିଲା

ବିରାଟ କଳରବ । ହୁଳହୁଳି ଧ୍ୱନିରେ ମେଦିନୀ କଂପି ଉଠିଲା । ଝିଅମାନେ ଫୁଲମାଳ ଦେବା ହେତୁ ହଲ୍‌ରେ ବସିଥିବା ପୁଅ ପିଲାମାନେ ହୁଳହୁଳି ପକାଇ ମଜା କରୁଥିଲେ । କୋର୍ଟରୁମର ଶୃଙ୍ଖଳିତ ବାତାବରଣ ମଧ୍ୟରେ ଯେ କହିବାକୁ ଅଭ୍ୟସ୍ତ, ଏ ପ୍ରକାର ବିଶୃଙ୍ଖଳ ପରିସ୍ଥିତିର ସେ ସାମନା କରି ପାରିଲା ନାହିଁ । ଏ ପ୍ରଶଂସା ବାଣୀ ଓ ହୁଳହୁଳି ଧ୍ୱନିରେ ମୋର ସମସ୍ତ ଭାରସାମ୍ୟ ହଜିଗଲା । ଯାହା କହିବାକୁ ଭାବିଥିଲି, ସବୁ ଭୁଲିଗଲି । ପନ୍ଦର କୋଡ଼ିଏ ମିନିଟ୍ ମଧ୍ୟରେ ମୋର ଭାଷଣ ଶେଷ ହେଲା, ଯଦିଓ କୌଣସିଟି ଘଟଣା ବ୍ୟକ୍ତିଗତ ଭାବରେ ମୋ ବିରୁଦ୍ଧରେ ଉଦ୍ଦିଷ୍ଟ ନଥିଲା । ରାଜନୈତିକ ନେତାମାନେ ପ୍ରତିକୂଳ ପରିସ୍ଥିତିରେ ସହଜରେ ଭାଂଗି ପଡ଼ନ୍ତି ନାହିଁ । ବିରୋଧ, ବିଶୃଙ୍ଖଳା ଓ ଗଣ୍ଡଗୋଳ ମଧ୍ୟରେ କହି ଚାଲିବାକୁ ସେମାନେ ଅଭ୍ୟସ୍ତ । ଏ ଘଟଣାରୁ ମୋତେ ଏତିକି ଶିକ୍ଷା ମିଳିଥିଲା ଯେ, ଧୈର୍ଯ୍ୟ ଓ ମନବଳ ନ ହରାଇ ବକ୍ତା ଯଦି ନିଜର ସ୍ୱାଭାବିକ ଭଂଗୀରେ କହି ଚାଲନ୍ତି, ତେବେ ବିଶୃଙ୍ଖଳା ଆପେ ଆପେ ବନ୍ଦ ହୋଇଯିବ । ପରକାଳରେ ଏ ଶିକ୍ଷା ଓ ଅନୁଭୂତିର ମୁଁ ବେଶ ସଦୁପଯୋଗ କରିଥିଲି ।

୧୯୭୫ ମସିହା ଏପ୍ରିଲ ମାସରେ ଦିଲ୍ଲୀରେ ଏକ ନିଖିଳ ଭାରତୀୟ ଆଇନଜୀବୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । କଂଗ୍ରେସ ସମର୍ଥକ ଓ ବାମପନ୍ଥୀ ଆଇନଜୀବୀମାନେ ମିଳିତ ଭାବରେ ଏ ସମ୍ମିଳନୀର ଆୟୋଜନ କରିଥିଲେ । ସମ୍ମିଳନୀ ଉଦ୍‌ଘାଟନ କରିଥିଲେ ପ୍ରଧାନ ମନ୍ତ୍ରୀ ଇନ୍ଦିରା ଗାନ୍ଧୀ । ସମ୍ମିଳନୀରେ ଓଡ଼ିଶାରୁ ପ୍ରତିନିଧିତ୍ୱ କରିଥିଲୁ ମୁଁ ଓ ଅନ୍ୟ କେତେଜଣ । ଦ୍ୱିତୀୟ ଦିନର ସାଧାରଣ ଅଧିବେଶନରେ ସଭାପତିତ୍ୱ କରିବା ପାଇଁ ଡି.ପି. ସିଂହ (ତତ୍କାଳୀନ ରାଜ୍ୟସଭା ସଦସ୍ୟ) ମୋ ନାମ ପ୍ରସ୍ତାବ କଲେ ଓ ଅନୁମୋଦନ କରିଥିଲେ ଏସ. ସି. ଅଗରବାଲା (ବର୍ତ୍ତମାନ ସୁପ୍ରିମ କୋର୍ଟର ମାନ୍ୟବର ବିଚାରପତି) । ଏ ଅଧିବେଶନରେ କେତେଗୁଡ଼ିଏ ପ୍ରସ୍ତାବ ପେଶ୍ କରାଯାଇଥିଲା । ଦିଲ୍ଲୀର ଜଣେ ବିଶିଷ୍ଟ କଂଗ୍ରେସ ବିରୋଧୀ ଆଡ୍‌ଭୋକେଟ୍ ପି. ଏନ୍. ଲେଖି ଓ ତାଙ୍କର କେତେକ ସମର୍ଥକ ସଭାରେ ଗଣ୍ଡଗୋଳ କରି ପ୍ରସ୍ତାବ ଗୁଡ଼ିକର ବିରୋଧ କରିଥିଲେ । ଏ ଲେଖି ସେହି ଆଡ୍‌ଭୋକେଟ୍ ଯାହାଙ୍କୁ ଜନତା ସରକାର ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ଗଠିତ ଶାହା କମିସନରେ ଓକିଲ ନିଯୁକ୍ତ କରିଥିଲେ । ଯେଉଁ ନାଟକୀୟ ଭଂଗୀରେ ସେ ଶାହା କମିସନରେ କେସ୍ ପରିଚାଳନା କରୁଥିଲେ, ବୟସ୍କ ପାଠକ ବନ୍ଧୁ ତାହା ଖବର କାଗଜରୁ ପଢ଼ିଥିବେ । ପଚସ୍ତରୀ ମସିହାର ସମ୍ମିଳନୀରେ ସେ ଅନୁରୂପ ନାଟକ ପ୍ରଦର୍ଶନ

କରିଥିଲେ । ମହାରାଷ୍ଟ୍ରର ଆଡ୍‌ଭୋକେଟ ବସନ୍ତ ସାଠେ (ପରେ କେନ୍ଦ୍ରରେ କ୍ୟାବିନେଟ୍ ମନ୍ତ୍ରୀ) ଓ ଅନ୍ୟ କେତେଜଣ ବିଶିଷ୍ଟ ପ୍ରତିନିଧି ଲେଖିଙ୍କ ସଂଶୋଧନ ପ୍ରସ୍ତାବ ଗୁଡ଼ିକୁ ମୂଳରୁ ନାକଚ କରିଦେବାକୁ ମୋତେ ପରାମର୍ଶ ଦେଇଥିଲେ । ଗଣତନ୍ତ୍ରର ସୁରକ୍ଷା ପାଇଁ ଆୟୋଜିତ ସମ୍ମିଳନୀରେ ଅଗଣତାନ୍ତ୍ରିକ ପନ୍ଥାର ଆଶ୍ରୟ ନେବାକୁ ମୁଁ ସମୀଚୀନ ମନେ କଲି ନାହିଁ । ମୁଁ ଜାଣିଥିଲି, ସଭାରେ ଲେଖିଙ୍କ ସମର୍ଥନ ଥିଲା ନଗଣ୍ୟ । ବିଧିବଦ୍ଧ ରୀତିରେ ତାଙ୍କର ମୁକାବିଲା କରିବା ମୋ ବିବେଚନାରେ ଯଥାର୍ଥ ଥିଲା । ଲେଖିଙ୍କ ସଂଶୋଧନ ପ୍ରସ୍ତାବ ଗୁଡ଼ିକ ଆଲୋଚନା ପରେ ଅଗ୍ରାହ୍ୟ ହୋଇଥିଲା ଓ ମୂଳ ପ୍ରସ୍ତାବ ଗୁଡ଼ିକ ବହୁ ଭୋଟରେ ଗୃହୀତ ହୋଇଥିଲା ।

ସମ୍ମିଳନୀ ଶେଷରେ ଭାଷଣ ଦେଇଥିଲେ ତିନି ଜଣ ବିଶିଷ୍ଟ ଅତିଥି । ମିସେସ୍ ମାର୍ଗାରେଟ୍ ଆଲ୍‌ଭା, ସୁବିଖ୍ୟାତ କୂଟନୀତିଜ୍ଞ ଓ ବୁଦ୍ଧିଜୀବୀ ପି. ଏନ୍. ହକ୍‌ସର୍ ଏବଂ ଭାରତର ପ୍ରାକ୍ତନ ପ୍ରଧାନ ବିଚାରପତି ଗଜେନ୍ଦ୍ର ଗଡ୍‌କର୍ । ବନ୍ଧୁ ଆର. କେ. ଗାର୍ଗ ଦୃଢ଼ତାର ସହ ସଭା ପରିଚାଳନା କରିଥିବା ହେତୁ ମୋତେ ଧନ୍ୟବାଦ ଦେଇଥିଲେ । ମୋର ସେତେବେଳେ ମନେ ପଡୁଥିଲା ବିଶ୍ୱବିଦ୍ୟାଳୟ ଛାତ୍ର ୟୁନିଅନ ସଭାର ଅନୁଭୂତି ।

ଦିଲ୍ଲୀ ସମ୍ମିଳନୀ ପରେ କଟକରେ ଅନୁରୂପ ଏକ ଆଇନଜୀବୀ ସମ୍ମିଳନୀ ଅନୁଷ୍ଠିତ ହେଲା, ୧୯୭୫ ଅକ୍ଟୋବର ମାସରେ । ଅଭ୍ୟର୍ଥନା ସମିତିର ସଭାପତି ମୁଁ ଓ ସଦସ୍ୟ ଥିଲେ ପ୍ରବୀର ପାଲିତ, ରମାକାନ୍ତ ମହାପାତ୍ର, ଗୋପାଳ ବଲ୍ଲଭ ପଟ୍ଟନାୟକ, ଅମଳକୃଷ୍ଣ ରାୟ ଓ ଆର୍ତ୍ତତ୍ରାଣ ମହାନ୍ତି ପ୍ରମୁଖ । କଟକର ବିମଳ କୃଷ୍ଣ ପାଲ, ବଲାଙ୍ଗୀରର ଯୁଧିଷ୍ଠିର ମିଶ୍ର ଓ ବ୍ରହ୍ମପୁରର କିଶୋର ଚନ୍ଦ୍ର ପାଣିଗ୍ରାହୀଙ୍କୁ ନେଇ ସଭାପତି ମଣ୍ଡଳୀ ଗଠିତ ହୋଇଥିଲା । ବାରବାଟୀ ଷ୍ଟାଡ଼ିୟମ୍‌ର କ୍ଲବ୍ ହାଉସ୍‌ରେ ଅନୁଷ୍ଠିତ ଏହି ସମ୍ମିଳନୀ ଉଦ୍‌ଘାଟନ କରିଥିଲେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ । ଅତିଥି ଓ ପ୍ରତିନିଧିମାନଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇ ମୁଁ ପ୍ରଥମେ ପ୍ରାରମ୍ଭିକ ଭାଷଣ ଦେଇଥିଲି । ସାଢ଼େ ତିନିମାସ ପୂର୍ବରୁ ଦେଶରେ ଜରୁରୀ ପରିସ୍ଥିତି ଘୋଷଣା ଜାରୀ ହୋଇଥାଏ । କଂଗ୍ରେସ ବିରୋଧୀ ନେତୃବୃନ୍ଦଙ୍କୁ ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶରେ କାରାରୁଦ୍ଧ କରାଯାଇଥାଏ । ମୁଁ ଭାଷଣରେ ଜରୁରୀ ପରିସ୍ଥିତିର ଉଲ୍ଲେଖ କରିଥିଲି, ଅଥଚ 'ଆଇନର ଶାସନ' ପରିପ୍ରେକ୍ଷୀରେ ବ୍ୟକ୍ତି ସ୍ୱାଧୀନତା ଉପରେ ଏ ବର୍ବର ଆକ୍ରମଣର କଠୋର ସମାଲୋଚନା କରି ନଥିଲି । ମୁଁ କେବଳ ଦରିଦ୍ର ଅବହେଳିତ ଜନସାଧାରଣଙ୍କ ମଙ୍ଗଳ ପାଇଁ ଆଇନକୁ ଜନାଭିମୁଖୀ କରିବାକୁ ସୂଚନା ଦେଇଥିଲି ଓ ଜନସ୍ୱାର୍ଥ ଉପଯୋଗୀ

ନୂତନ ଆଇନ ପ୍ରଣୟନ କରିବା ପାଇଁ ଆହ୍ବାନ ଦେଇଥିଲି । ଏବେ ସେ ଘଟଣା ମନେ ପଡ଼ିଲେ ମୁଁ ଅନୁଭବ କରେ, ଯେପରି ମୁଁ କର୍ତ୍ତବ୍ୟରେ ଅବହେଳା କରିଛି ।

ପ୍ରଥମ ସଂଧ୍ୟାର ମୁଖ୍ୟବକ୍ତା ଥିଲେ ଆଇନ କମିଶନ୍‌ର ସଦସ୍ୟ ଡକ୍ଟର ପି. କେ. ତ୍ରିପାଠୀ । ତାଙ୍କ ପରେ ବକ୍ତୃତା ଦେଲେ ଦିଲ୍ଲୀରୁ ଆସିଥିବା ସୁପ୍ରିମ କୋର୍ଟ ବାର୍‌ର ଦୁଇଜଣ ବିଶିଷ୍ଟ ଆଡ୍‌ଭୋକେଟ ଆର. କେ. ଗାର୍ଗ ଓ ଡି. ପି. ସିଂହ । ଦ୍ୱିତୀୟ ଦିନର ମୁଖ୍ୟବକ୍ତା ଜଷ୍ଟିସ ପି. ଏନ୍ ଭଗବତୀ ଓ ସଭାପତି ଚିଫ୍ ଜଷ୍ଟିସ ଗତିକୃଷ୍ଣ ମିଶ୍ର । ଦ୍ୱିତୀୟ ଦିନ ସଭାରେ ''ଦୁର୍ଗତଙ୍କୁ ଆଇନ ସାହାଯ୍ୟ'' ଶୀର୍ଷକ ଏକ ନିବଂଧ ମୁଁ ପାଠ କରିଥିଲି । ପରଦିନ ଜଷ୍ଟିସ ଭଗବତୀଙ୍କୁ ଆମ୍ଭେମାନେ ଏୟାର ପୋର୍ଟରେ ବିଦାୟ ଦେଇ ଆସିଲୁ । ଏହି ସମ୍ମିଳନୀର ସଫଳତା ପାଇଁ ଆମ୍ଭମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇ ସେ ନଭେମ୍ବର ପହିଲାରେ ଯେଉଁ ଚିଠି ଲେଖିଥିଲେ, ତାର କିୟଦଂଶ ଉଦ୍ଧାର କରୁଛି :

''ପ୍ରିୟ ଶ୍ରୀ ରଥ,

ମୋର ଓଡ଼ିଶା ଯାତ୍ରା ସମୟରେ ତୁମେ ଯେଉଁ ଅସୀମ ଶ୍ରଦ୍ଧା ଓ ଆତିଥେୟତା ପ୍ରଦର୍ଶନ କରିଛ, ସେଥିପାଇଁ ମୁଁ ଅଶେଷ ଧନ୍ୟବାଦ ଜଣାଉଅଛି । ରାଜ୍ୟ ଆଇନଜୀବୀ ସମ୍ମିଳନୀରେ ତୁମ ସହିତ ଓ ତୁମର ସହଯୋଗୀମାନଙ୍କ ସହିତ ସାକ୍ଷାତ କରିବା ଥିଲା ଅତି ଆନନ୍ଦ ଦାୟକ । ସମ୍ମିଳନୀ ପର ଦିନ ତୁମର ଭୁବନେଶ୍ୱର ଘରେ ଆୟୋଜିତ ମଧ୍ୟାହ୍ନ ଭୋଜନରେ ତୁମର ବଂଧୁମାନଙ୍କୁ ଭେଟି ସେମାନଙ୍କ ସହ ଆଲୋଚନା କରିବା ଓ ଭାବ ବିନିମୟ କରିବା ଥିଲା ଅତି ସୁଖକର । ମୁଁ ଖୁସିହେଲି ଯେ ତୁମମାନଙ୍କ ମଧ୍ୟରେ କେତେକ ସମାଜବାଦୀ ମନୋଭାବାପନ୍ନ ଚିନ୍ତାଶୀଳ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଆଇନଜୀବୀମାନଙ୍କର ସାମାଜିକ ଦାୟିତ୍ୱ ବିଷୟରେ ସଜାଗ ଅଛନ୍ତି ଏବଂ ସମାଜବାଦ ପଥରେ ଦେଶର ଅଗ୍ରଗତି ପାଇଁ କାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି । ମୁଁ ଅନୁଭବ କରୁଚି, ତୁମ ସମ୍ମିଳନୀ ଆଇନଜୀବୀ ସଂପ୍ରଦାୟ ମଧ୍ୟରେ ବିରାଟ ଜାଗରଣ ଆଣି ଦେଇଛି ଏବଂ ସାମାଜିକ କର୍ତ୍ତବ୍ୟ ପୂରଣ ଲାଗି ସେମାନଙ୍କୁ ଅନୁପ୍ରାଣିତ କରିଛି...

ତୁମର

**ପି. ଏନ୍. ଭଗବତୀ''**

ରାଜ୍ୟ କଂଗ୍ରେସ ଆଇନ ସେଲ ୧୯୭୬ ମସିହା ଏପ୍ରିଲ ମାସରେ ଭୁବନେଶ୍ୱରରେ ଅନ୍ୟ ଏକ ଆଇନଜୀବୀ ସମ୍ମିଳନୀର ଆୟୋଜନ କରିଥିଲେ । ଗଂଗୁ ଭାଇନାଙ୍କୁ (ତତ୍କାଳୀନ ବିଧାନସଭା ସଦସ୍ୟ ଆଡ୍‌ଭୋକେଟ୍ ଗଂଗାଧର ମହାପାତ୍ର) ଆଗରେ ରଖି ଶଶିଭୂଷଣ ମିଶ୍ର ପ୍ରମୁଖ ଏହାର ଉଦ୍ୟୋକ୍ତା ଥିଲେ ଏବଂ କଂଗ୍ରେସ ଦଳ ସହ ସଂପୃକ୍ତ ଆଇନଜୀବୀମାନଙ୍କ ମଧ୍ୟରେ ଏହାକୁ ଆବଦ୍ଧ ରଖିବାକୁ ଉଦ୍ୟମ କରାଯାଇଥିଲା । ମୋ ପରି ନିର୍ଦ୍ଦଳୀୟ ଲୋକଙ୍କୁ ମଧ୍ୟ ସମ୍ମିଳନୀର ପରିଚାଳନା ସହିତ ସଂପୃକ୍ତ କରାଯାଇ ନଥିଲା । ମୁଖ୍ୟମନ୍ତ୍ରୀ ସମ୍ମିଳନୀରେ ସଭାପତିତ୍ୱ କରିବେ ଓ ସୁପ୍ରିମ୍‌କୋର୍ଟର ବିଚାରପତି ଜଷ୍ଟିସ ପି. ଏନ୍. ଭଗବତୀ ଓ କଲିକତା ହାଇକୋର୍ଟର ମୁଖ୍ୟ ବିଚାରପତି ଜଷ୍ଟିସ ଶଙ୍କର ପ୍ରସାଦ ମିତ୍ର ପ୍ରଧାନ ବକ୍ତା ଭାବରେ ଯୋଗଦେବେ ବୋଲି କାର୍ଯ୍ୟକ୍ରମ ପ୍ରକାଶ ପାଇଥାଏ । ସମ୍ବାଦପତ୍ରରୁ ବିଜ୍ଞାପନ ପଢ଼ି ଧାର୍ଯ୍ୟ ଦିନ ଦଶଟା ସମୟରେ ଆମ୍ଭେମାନେ ରବୀନ୍ଦ୍ର ମଣ୍ଡପରେ ଉପସ୍ଥିତ ହେଲୁ । ଦେଖାଗଲା ସଭା ଗୃହରେ ବହୁ ଆଇନଜୀବୀ ଓ ଅନ୍ୟ ରାଜ୍ୟରୁ ଆସିଥିବା ପ୍ରତିନିଧି ଉପସ୍ଥିତ, କିନ୍ତୁ ଉଦ୍ୟୋକ୍ତାମାନଙ୍କର ଦେଖାଦର୍ଶନ ନାହିଁ । ସେମାନେ କୁଆଡ଼େ ବିଶିଷ୍ଟ ଅତିଥି ମାନଙ୍କୁ ସଂଖୋଳିବା ପାଇଁ ଏଆର ପୋର୍ଟ ଯାଇଛନ୍ତି । ସେ କାଳରେ ଦିଲ୍ଲୀରୁ ଭୁବନେଶ୍ୱର ସିଧା ଫ୍ଲାଇଟ୍ ନଥିଲା । ଦିଲ୍ଲୀରୁ ଭୁବନେଶ୍ୱର କଲିକତା ବାଟ ଦେଇ ଆସିବାକୁ ହୁଏ ଏବଂ ଜଷ୍ଟିସ ଭଗବତୀ ଓ ଶଙ୍କର ପ୍ରସାଦ ମିତ୍ର କଲିକତା ପ୍ଲେନରେ ଆସୁଥାନ୍ତି । କିଛି ସମୟ ପରେ ଖବର ମିଳିଲା, ଦିନ ଦଶଟାରେ ପହଂଚିବା ପ୍ଲେନ୍ ତିନିଘଣ୍ଟା ବିଳମ୍ବ ଅଛି । ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ନୈରାଶ୍ୟ ଖେଳିଗଲା । ସକାଳ ଅଧିବେଶନ ସ୍ଥଗିତ ରଖାଯିବ ନା କ'ଣ କରାଯିବ ସେଥିପାଇଁ ସମସ୍ତେ ଚିନ୍ତିତ ହୋଇ ଉଠିଲେ । ଗଂଗୁ ଭାଇନା ମୋତେ ପଚାରିଲେ, ''କ'ଣ କରିବା ଉଚିତ ହେବ ?'' ମୁଁ ଉତ୍ତର ଦେଲି ''ଅଧିବେଶନ ସ୍ଥଗିତ ରଖିବା ଉଚିତ ହେବ ନାହିଁ । ଉପସ୍ଥିତ ଅତିଥିମାନଙ୍କୁ ନେଇ କୌଣସି ମତେ ସଭା ଚାଲୁ ରଖିବା ଉଚିତ ।''

ଦିନ ଏଗାରଟା ବେଳେ ନନ୍ଦିନୀ ଦେବୀ ଓ ଗଂଗାଧର ମହାପାତ୍ର ପ୍ରମୁଖ ସଭା ମଂଚକୁ ଉଠିଲେ, ସଭା ମଣ୍ଡପରୁ ମୁଖ୍ୟମନ୍ତ୍ରୀ ଘୋଷଣା କଲେ ''ଏ ଆଇନଜୀବୀ ସମ୍ମିଳନୀ ପରିଚାଳନା କରିବା ମୋ ପକ୍ଷରେ ଶୋଭନୀୟ ନୁହେଁ । ମୁଁ ଅନୁରୋଧ କରୁଛି ଆଡ୍‌ଭୋକେଟ ଜେନେରାଲ ମଂଚ ଉପରକୁ ଆସି ସଭାପତି ଦାୟିତ୍ୱ ଗ୍ରହଣ କରନ୍ତୁ ।'' ମୁଖ୍ୟମନ୍ତ୍ରୀଙ୍କ ଘୋଷଣା ଶୁଣି ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ କେତେକଙ୍କର ମୁହଁ ମଳିନ ପଡ଼ିଗଲା, କିନ୍ତୁ ଦର୍ଶକ ଗାଲେରୀରେ

ପଡ଼ିଲା ଘନ ଘନ କରତାଳି । ମୁଁ ତ ଏପରି ପରିବର୍ତ୍ତନର ପୂର୍ବ ସୂଚନା ପାଇ ନଥିଲି । ଯାହାହେଉ ମୁଖ୍ୟମନ୍ତ୍ରୀଙ୍କ ଆହ୍ୱାନ କ୍ରମେ ମୋତେ ମଂଚ ଉପରକୁ ଯିବାକୁ ହେଲା ।

ଏ ସମ୍ମିଳନୀ ଆୟୋଜନ କରାଯାଇଥିଲା, ଦରିଦ୍ର ଲୋକଙ୍କୁ ଆଇନଗତ ସାହାଯ୍ୟ ଦେବା ବିଷୟରେ ଆଲୋଚନା କରିବା ପାଇଁ । ଏଣୁ ଓଡ଼ିଶା ଓ ପଡ଼ୋଶୀ ରାଜ୍ୟମାନଙ୍କରେ ଏ ବିଷୟରେ କ'ଣ କରାଯାଉଛି, ତାହା ଉପସ୍ଥାପିତ କରିବା ପାଇଁ ବକ୍ତାମାନଙ୍କୁ ଆହ୍ୱାନ କଲି । ଉଦ୍ୟୋକ୍ତା ମାନଙ୍କ ପକ୍ଷରୁ ବିଧାୟକ ଗଂଗାଧର ମହାପାତ୍ର, ବିଧାନ ସଭାର ତତ୍‌କାଳୀନ ବାଚସ୍ପତି ବ୍ରଜମୋହନ ମହାନ୍ତି, କଲିକତାର ଆଡ୍‌ଭୋକେଟ୍ ଚିତ୍ତରଂଜନ ଦାସ, ଆନ୍ଧ୍ର ପ୍ରଦେଶର ପି. ଶିବଶଙ୍କର ଓ ଆସାମର ଦୀନେଶ ଗୋସ୍ୱାମୀ ଇତ୍ୟାଦି ଭାଷଣ ଦେଇଥିଲେ । ଶିବ ଶଙ୍କର ବର୍ଷଟାଏ ଆନ୍ଧ୍ର ପ୍ରଦେଶ ହାଇକୋର୍ଟରେ ଅତିରିକ୍ତ ଜଜ୍ ରହିବା ପରେ ଇସ୍ତଫା ଦେଇ ପୁଣି ବୃତ୍ତିରେ ଯୋଗ ଦେଇଥାନ୍ତି । ଏହିଠାରେ ତାଙ୍କ ସହ ପ୍ରଥମ ପରିଚୟ ଓ ପରେ ଏହା ଘନିଷ୍ଠ ବଂଧୁତାରେ ପରିଣତ ହୋଇଥିଲା । ଦଶବର୍ଷ କେନ୍ଦ୍ରମନ୍ତ୍ରୀ ରହିବା ପରେ ସେ ଏବେ ରାଜ୍ୟସଭାର ସଦସ୍ୟ ପଦରୁ ବିଦାୟ ନେଇ ଅଛନ୍ତି । ଆସାମର ପ୍ରତିନିଧି ଦୀନେଶ ଗୋସ୍ୱାମୀ ସେ ସମୟରେ ରାଜ୍ୟ ସଭାର ସଭ୍ୟ । ପରେ ୧୯୮୯ ମସିହାରେ ସେ ଆସାମ ଗଣ ପରିଷଦ ପକ୍ଷରୁ ଲୋକସଭାକୁ ନିର୍ବାଚିତ ହୋଇ କେନ୍ଦ୍ର ଆଇନମନ୍ତ୍ରୀ ପଦ ଗ୍ରହଣ କରିଥିଲେ । ଦୁଇ ବର୍ଷ ପୂର୍ବେ ଏକ ଆକସ୍ମିକ ଦୁର୍ଘଟଣାରେ ତାଙ୍କର ଦେହାନ୍ତ ହୋଇ ଯାଇଛି । ଅତିଥିମାନଙ୍କର ବକ୍ତୃତା ଓ ସେମାନଙ୍କର ପରିଚୟ ପ୍ରଦାନରେ ଦୁଇ ଘଣ୍ଟାରୁ ଅଧିକ ସମୟ ବିତି ଯାଇଥିଲା । ଏହି ଭାବରେ ମଧ୍ୟାହ୍ନ ଭୋଜନ ପର୍ଯ୍ୟନ୍ତ ଶ୍ରୋତା ଓ ପ୍ରତିନିଧିମାନଙ୍କୁ କାର୍ଯ୍ୟରତ ରଖିବାରେ ମୁଁ ସମର୍ଥ ହୋଇଥିଲି । ଉପରବେଳା ଅଧିବେଶନ ଆରମ୍ଭ ହେଲା ଠିକ୍ ତିନିଟା ସମୟରେ । ଜଷ୍ଟିସ ଭଗବତୀ ଓ ଜଷ୍ଟିସ ଶଙ୍କର ପ୍ରସାଦ ମିତ୍ର 'ଲିଗାଲ ଏଡ୍'' ସମସ୍ୟାର ଗୁରୁତ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କରି ଚିତ୍ତାକର୍ଷକ ଭାଷଣ ଦେଇଥିଲେ । ମୁଁ ସଭାପତି ଭାବରେ ଏହି ସମସ୍ୟା ଉପରେ ଏକ କ୍ଷୁଦ୍ର ଭାଷଣ ଦେଇ ଦ୍ୱିତୀୟ ଅଧିବେଶନର ସମାପ୍ତି ଘୋଷଣା କରିଥିଲି ।



# ଅମାବାସ୍ୟାର ଗ୍ରାସ

ନିଜର କ୍ଷମତା ବଜାୟ ରଖିବା ପାଇଁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ୧୯୭୫ ଜୁନ୍ ପଚିଶ ତାରିଖରେ ଜରୁରୀ ପରିସ୍ଥିତି ଘୋଷଣା ଜାରୀ କଲେ । ଅନ୍ଧକାରର ଛାଇ ଦେଶକୁ ଗ୍ରାସ କଲା । ସବୁ ବିଶିଷ୍ଟ ବିରୋଧୀ ନେତାଙ୍କୁ ମିଶା ଆଇନ ବଳରେ ଅଟକ ରଖାଯାଇଥିଲା । ଓଡ଼ିଶାରେ ମଧ୍ୟ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଓ ବିଜୁ ପଟ୍ଟନାୟକ ପ୍ରମୁଖଙ୍କୁ ବନ୍ଦୀ କରାଗଲା । ପ୍ରଚାର ହେଲା ଯେ ଜରୁରୀ ପରିସ୍ଥିତିରେ ଦେଶରେ ଶୃଙ୍ଖଳାର ଅଭ୍ୟୁଦୟ ଘଟିଛି । ଆଚାର୍ଯ୍ୟ ବିନୋବା ବାଭେ ଏହି ସମୟରେ ମୌନବ୍ରତ ଅବଲମ୍ବନ କରୁଥାନ୍ତି । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ତାଙ୍କୁ ସାକ୍ଷାତ କରିବାରେ ସେ କୁଆଡ଼େ ଖଣ୍ଡେ କାଗଜରେ ଗୋଟିଏ ଶବ୍ଦ ଲେଖିଦେଲେ "ଅନୁଶୀଳନ" । ଏଇଥିରୁ ପ୍ରଚାର ହେଲା ଯେ, ଜରୁରୀ ପରିସ୍ଥିତି ସମୟରେ ଶାସନ କ୍ଷେତ୍ରରେ ଯେପରି ଶୃଙ୍ଖଳା ପ୍ରବର୍ତ୍ତିତ ହୋଇଛି, ଆଚାର୍ଯ୍ୟ ବାଭେ ତାର ସମର୍ଥନ କରୁଛନ୍ତି । ଅବଶ୍ୟ ଏମରଜେନ୍ସି କାଳରେ ଟ୍ରେନ୍ ସବୁ ଠିକ୍ ସମୟରେ ଚାଲିଲା, କର୍ମଚାରୀମାନେ ଠିକ୍ ସମୟରେ ଅଫିସକୁ ଆସିଲେ, କଳ କାରଖାନା ବିଧିବଦ୍ଧ ଭାବରେ ଚାଲିଲା, ଚାରିଆଡ଼ ବିରାଜିଲା ଶ୍ମଶାନର ଶାନ୍ତି । କିନ୍ତୁ ଏହି ଶୃଙ୍ଖଳିତ ଆଚରଣ ପଛରେ ଥିଲା ଭୟ, ଗିରଫର ଭୟ, ଦମନର ଭୟ ଓ ଶାସ୍ତିର ଭୟ । ଜନସାଧାରଣ ସଂପୂର୍ଣ୍ଣ ଆତଙ୍କଗ୍ରସ୍ତ ।

ଏହି ମୌକାରେ କେତେକ ବଡ଼ବଡ଼ିଆ ସରକାରୀ ଅଫିସର ମଧ୍ୟ ଶୃଙ୍ଖଳା ଜ୍ଞାନର ପ୍ରତ୍ୟକ୍ଷ ପ୍ରମାଣ ଦେବାକୁ ଆରମ୍ଭ କଲେ । ଦିଲ୍ଲୀର ସମସ୍ତ ପ୍ରଶାସନିକ କ୍ଷମତା ପ୍ରୟୋଗର ଉତ୍ସ ହେଲେ ସଂଜୟ ଗାନ୍ଧୀ । ସେ ଘୋଷଣା କଲେ ରାସ୍ତା ଘାଟ ଚଉଡ଼ା ହେବ, ରାସ୍ତା ସୁନ୍ଦର ହେବ, ସରକାରୀ ଜମିରୁ ଅନଧିକାର ପ୍ରବେଶକୁ ଉଚ୍ଛେଦ କରାଯିବ ଇତ୍ୟାଦି । ଦେଶସାରା ଏହି ନିର୍ଦ୍ଦେଶର ପ୍ରତିଧ୍ୱନି ଉଠିଲା । କଟକରେ ସେତେବେଳେ କମିସନର୍ ନଳିନୀକାନ୍ତ ପଣ୍ଡା, ଜିଲ୍ଲା କଲେକ୍ଟର ଏସ୍. ଆର. ପାଲ ଓ ପୋଲିସ ସୁପରିଟେଣ୍ଡେଣ୍ଟ ଆପା ରାଓ । କଟକ ସହରକୁ ସୁନ୍ଦର କରିବା ପାଇଁ କମିସନର ଇଚ୍ଛା କଲେ ଯେ ରାସ୍ତାକୁ ଚଉଡ଼ା କରାଯିବ, ମ୍ୟୁନିସିପାଲିଟି ଜମି ଯେଉଁମାନେ ଦଖଲ କରିଛନ୍ତି ସେମାନଙ୍କୁ ବେଦଖଲ କରାଯିବ, ରାସ୍ତାକୁ ମଡ଼ାଇ ଯେଉଁମାନେ ଘରଦ୍ୱାର କରିଛନ୍ତି ତାକୁ

ଛବରଦସ୍ତ ଭାଂଗି ଦିଆଯିବ । କମିଶନ୍‌ରଙ୍କ ମୌଖିକ ନିର୍ଦ୍ଦେଶ, କଲେକ୍ଟରଙ୍କ ଲିଖିତ ଆଦେଶ ଓ ପୋଲିସଙ୍କ ବଂଧୁକ ଧମକରେ ଚାଲିଲା କଟକରେ ଘରଭଂଗା ଅଭିଯାନ । ରାଣୀହାଟ କଲେଜ ଛକ ଅଂଚଳରେ ରାସ୍ତା କଡ଼ରେ ଥିବା କେତେକ ପକ୍କା ଦୋକାନ ଘର ବୁଲଡ଼ୋଜର ଦ୍ୱାରା ଧୂଳିସାତ୍ କରି ଦିଆହେଲା । କ୍ରମେ ଏ ଅଭିଯାନ ବ୍ୟାପିଲା ସାରା ସହରରେ ।

ଦିନେ ଅପରାହ୍ନ ପାଂଚଟା ସମୟରେ ମୁଁ ବାସଗୃହ ସଂଲଗ୍ନ ଅଫିସ ଘରେ ବସି ଖଣି ବିଭାଗର ସଚିବ ନୀହାର ରଂଜନ ହୋତାଙ୍କ ସହିତ ତାଙ୍କ ଦପ୍ତରର ଗୋଟିଏ ବିବାଦ ସଂକ୍ରାନ୍ତରେ ଆଲୋଚନା କରୁଛି, ହଠାତ୍ ଦେଖାଗଲା ଆମ ଘର ସାମନା ଜେଲ୍ ରୋଡ୍ ରାସ୍ତାରେ ବିକଟାଳ କଡ଼ମଡ୍ ଶବ୍ଦ କରି ଦୁଇଟା ବୁଲ୍‌ଡୋଜର ଚାଲିଛି । ସାମନାରେ ଜଣେ ସର୍ଜେଣ୍ଟଙ୍କ ଅଧୀନରେ କେତେଜଣ ବଂଧୁକଧାରୀ ପୋଲିସ । ପଛରେ କୋଡ଼ି କୋଦାଳ ଧରି କେତେଜଣ କୁଲି । ଲୋକେ ଭୟରେ ଦୋକାନ ଦରଜା ବନ୍ଦ କରି ଦେଉଛନ୍ତି । ବୋଧହୁଏ ପଶ୍ଚିମ ପଟେ କେଉଁଆଡ଼େ ଅଭିଯାନ ସମାପ୍ତ କରି କିଲ୍ଲାରେ ଥିବା ଆଶ୍ରୟସ୍ଥଳକୁ ଚାଲିଛନ୍ତି ବୁଲ୍‌ଡୋଜର ଗୁଡ଼ାକ । ଏ ଦୃଶ୍ୟ ଦେଖି ମୁଁ ବିଚଳିତ ହୋଇ ପଡ଼ିଲି । ସ୍ୱାଧୀନତା ପ୍ରାପ୍ତିର ସତେଇଶ ବର୍ଷ ପରେ, ସଂବିଧାନ ଘୋଷିତ 'ଆଇନର ଶାସନ' ନାମରେ, ପ୍ରଚଳିତ ନିୟମ କାନୁନ ନ ମାନି ଚାଲିଛି ଆତଙ୍କ ରାଜ ! ହୋତା ସାହେବଙ୍କୁ ଘଣ୍ଟାଏ ଅପେକ୍ଷା କରିବାକୁ ଅନୁରୋଧ କରି ମୁଁ ଘରୁ ବାହାରି ପଡ଼ିଲି । ଗୋଟାଏ ହୁଡ୍ ଖୋଲା ରିକ୍ସାରେ ବସି ନିମିଚୌଡ଼ୀ ଛକ ପର୍ଯ୍ୟନ୍ତ ଯାଇ, ଫେରି ଆସିଲି ବାଖରାବାଦ, ଜାଉଁଳିଆପଟି ଓ ଚୌଧୁରୀ ବଜାର କେଉଟ ସାହୀ ବାଟେ । ଯାହା ଦେଖିଲି ସେ ଦୃଶ୍ୟ ଏବେ ମଧ୍ୟ ମନରେ ଜୀବନ୍ତ ରହିଛି । ବାଲୁ ବଜାର ବାଖରାବାଦ ଅଂଚଳରେ ପ୍ରତ୍ୟେକ ଘରେ ମିସ୍ତ୍ରୀ ମୂଲିଆ କାମ କରୁଛନ୍ତି । କିଏ ନିଜ ଘର ସାମନା ବାରଣ୍ଡା ଭାଂଗିବାରେ ବ୍ୟସ୍ତ, କିଏ ଘରର ଚାଳା ହାଣିବାରେ ବ୍ୟସ୍ତ । କିଏ ଘର ସାମନା ନଳା ଉପର ପାହାଚ ତାଡ଼ିବାରେ ବା କିଏ ଫିତା ପକାଇ ରାସ୍ତା ମଝିରୁ ଘରର ଦୂରତା ମାପିବାରେ ବ୍ୟସ୍ତ । ସମସ୍ତଙ୍କ ମୁହଁରେ ଭୟ ଓ ଆତଙ୍କର ଛବି । ସବୁରି ତୁଣ୍ଡରେ ଗୋଟିଏ ପ୍ରଶ୍ନ - କେଉଁ ଆଇନ ବଳରେ ଏ ଭଂଗାରୁଜା ଚାଲିଛି ?

ଘରକୁ ଫେରି ଆସି ନୀହାର ହୋତାଙ୍କ ସାମନାରେ ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍ କଲି । ନନ୍ଦିନୀ ଦେବୀ ଦୁଇ ବର୍ଷ ପୂର୍ବେ କଟକ ସହରରୁ ନିର୍ବାଚନେ ଲଢ଼ି ବୀରେନ ମିତ୍ରଙ୍କୁ ପରାସ୍ତ କରିଥିଲେ । ତାଙ୍କ ନିର୍ବାଚନକୁ ଅବୈଧ ଘୋଷଣା କରିବା ପାଇଁ ବୀରେନ୍‌ଦାଙ୍କ ଦ୍ୱାରା ହାଇକୋର୍ଟରେ ଏକ ନିର୍ବାଚନ ମୋକଦ୍ଦମା କରିଥିଲେ । ସେହି ନିର୍ବାଚନ କେସ୍‌ରେ ମୁଁ ଥିଲି ନନ୍ଦିନୀ ଦେବୀଙ୍କ ଅଧିବକ୍ତା । ବୀରେନ ମିତ୍ରଙ୍କ ଦ୍ୱାରାଙ୍କର ନିର୍ବାଚନ ଦରଖାସ୍ତ ଖାରଜ ହୋଇଥିଲା । ସେହି ନିର୍ବାଚନେ ଲଢ଼େଇ କଥା ସ୍ମରଣ କରାଇ ଦେଇ ମୁଁ ତାଙ୍କୁ ସିଧା ପଚାରିଲି "ତୁମେ ବୋଧହୁଏ ୭୩ ମସିହାର ନିର୍ବାଚନ ଲଢ଼େଇ କଥା ଭୁଲି ଯାଇଛ । ତା ନହେଲେ ଜବର-ଦଖଲ ଜମିରୁ ଉଚ୍ଛେଦ କରିବା ପାଇଁ, ଅବା ନିୟମର ବିରୁଦ୍ଧାଚରଣ କରି ତିଆରି ହୋଇଥିବା ଘର ଭାଙ୍ଗିବା ପାଇଁ ଆଇନ୍‌ରେ ଯେଉଁ ପଦ୍ଧତି ଅଛି, ତାକୁ ଅନୁସରଣ ନ କରି, ଏପରି ଜବରଦସ୍ତ ଘରଭଂଗା ଅଭିଯାନ ଚାଲୁ କରିବାର କାରଣ କ'ଣ ? ବର୍ତ୍ତମାନ ଏମରଜେନ୍ସି ଅଛି, ଲୋକେ କୋର୍ଟ କଚେରୀର ଆଶ୍ରୟ ନେବାକୁ ଭୟ କରୁଛନ୍ତି । ସବୁଦିନେ ଏମରଜେନ୍ସି ରହିବ ନାହିଁ । ପରେ ଆଇନ ଦୃଷ୍ଟିରେ କିଏ ଦଣ୍ଡନୀୟ ହେବ ତାହା ଭିନ୍ନ କଥା । କିନ୍ତୁ ପରବର୍ତ୍ତୀ ନିର୍ବାଚନରେ ଏହାର ପ୍ରତିକ୍ରିୟା କ'ଣ ହେବ, ତାହା କ'ଣ ତୁମେ ବିଚାରକୁ ନେଇଛ ?" ନନ୍ଦିନୀ ଦେବୀ ମତେ ଭାଇନା ବୋଲି ସମ୍ବୋଧନ କରନ୍ତି । ରୁକ୍ଷ ଭାଷାରେ ଏପରି ପ୍ରଶ୍ନ ସେ ଭାଇନାଙ୍କଠାରୁ ଆଶା କରୁ ନଥିଲେ । ସେ ଅତ୍ୟନ୍ତ ଗମ୍ଭୀର ଭାବରେ ହଁ ନାଁ କହି ବାକ୍ୟାଳାପ ଶେଷ କଲେ । ପରଦିନ ଭୁବନେଶ୍ୱର ଆଇନ ସଚିବଙ୍କ ଠାରୁ ଫୋନ ଆସିଲା, ଚିଫ୍ ମିନିଷ୍ଟରଙ୍କ ନିର୍ଦ୍ଦେଶରେ ସ୍ୱାୟତ୍ତ ଶାସନ ମନ୍ତ୍ରୀଙ୍କ ପ୍ରକୋଷ୍ଠରେ ଘରଭଂଗା ସମସ୍ୟା ଉପରେ ଆଲୋଚନା ହେବ - ଦିନ ତିନିଟା ସମୟରେ । ଆଡ୍‌ଭୋକେଟ୍ ଜେନେରାଲଙ୍କୁ ଆଲୋଚନାରେ ଯୋଗ ଦେବାକୁ ଅନୁରୋଧ କରାଯାଇଛି । ଆଇନ ସଚିବ ଲୋକନାଥ ମହାପାତ୍ର ମୋର ସହପାଠୀ, ତାଙ୍କୁ ଅବିଶ୍ୱାସ କରିବାର କାରଣ ନଥିଲା ।

ତିନିଟା ସମୟରେ ମୁଁ ଭୁବନେଶ୍ୱରରେ ପହଂଚିଲି । ସ୍ୱାୟତ୍ତ ଶାସନ ମନ୍ତ୍ରୀଙ୍କ କୋଠରୀରେ ମନ୍ତ୍ରୀଙ୍କ ସମେତ ଅତିରିକ୍ତ ଚିଫ୍ ସେକ୍ରେଟାରୀ ମିଷ୍ଟର ତାଭେ, ଆଇନ ସଚିବ ମହାପାତ୍ର, ସ୍ୱାୟତ୍ତ ଶାସନ ବିଭାଗ ସେକ୍ରେଟାରୀ ଓ କଟକ କଲେକ୍ଟର ଆଲୋଚନାରତ । କମିସନର ପଣ୍ଡା (ପରେ ଚିଫ୍ ସେକ୍ରେଟାରୀ)

ଦିଲ୍ଲୀ ଯାଇଥିବାରୁ ଅନୁପସ୍ଥିତ । ମ୍ୟୁନିସିପାଲିଟି ଆଇନର ସଂପୃକ୍ତ ଧାରା ଗୁଡ଼ିକ ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ମୁଁ କହିଲି, ଏ ପର୍ଯ୍ୟନ୍ତ ଯାହା କିଛି କରାଯାଇଛି, ସବୁ ବେଆଇନ୍ । ବିଧିସଂଗତ ପଦ୍ଧତି ଅନୁସରଣ କରିବା ପରିବର୍ତ୍ତେ ସବୁ ବେନିୟମ କାର୍ଯ୍ୟ ଚାଲିଛି । ଆଇନ ସଚିବ ମୋ ସହିତ ଏକମତ ହେଲେ । ମନ୍ତ୍ରୀ ସୋମନାଥ ରଥ ନିଜେ ଜଣେ ଆଡ଼୍‌ଭୋକେଟ୍ । ବିବାଦୀୟ ଆଇନଗତ ପ୍ରଶ୍ନର ମର୍ମ ବୁଝିବାରେ ତାଙ୍କ ପକ୍ଷରେ କୌଣସି ଅସୁବିଧା ନଥିଲା । ପ୍ରଶ୍ନ ଉଠିଲା ବର୍ତ୍ତମାନ କ'ଣ କରାଯିବ । ମୁଁ କଲେକ୍ଟର ପାଲ୍‌ଙ୍କୁ କହିଲି "ଆପଣଙ୍କର ଲିଖିତ ଆଦେଶ ଅନୁଯାୟୀ ଏ ଅଭିଯାନ ଚାଲିଛି । ଭବିଷ୍ୟତରେ ମାଲି ମୋକଦ୍ଦମା ହେଲେ ଆପଣ ହିଁ ବିପଦରେ ପଡ଼ିବେ ।" ମୋ କଥା ଶୁଣି ପାଲ୍‌ଙ୍କ ମୁହଁ ଶୁଖିଗଲା । ତାଙ୍କୁ ସାହସ ଦେବା ପାଇଁ ଅତିରିକ୍ତ ଚିଫ୍ ସେକ୍ରେଟାରୀ କହିଲେ, "ତୁମ ପଛରେ ଯେଉଁମାନଙ୍କର ସମର୍ଥନ ରହିଛି, ସେମାନେ ନିଶ୍ଚୟ ତୁମକୁ ସାହାଯ୍ୟ କରିବେ ।" ମୁଁ ତାଙ୍କ କଥାରେ ବାଧା ଦେଇ ଦୃଢ଼ତାର ସହ କହିଲି- "ଭୁଲ କଥା ମିଷ୍ଟର କଲେକ୍ଟର, ସଂପୂର୍ଣ୍ଣ ଭୁଲ କଥା । ତୁମେ ବିପଦରେ ପଡ଼ିଲେ କେହି ତୁମ ପଛରେ ଠିଆ ହେବେ ନାହିଁ । ମିଷ୍ଟର ତାଭେ ତ ନୁହନ୍ତି, ତୁମ ଷ୍ଟେନୋ ଟପ୍ରୋସି ମଧ୍ୟ ପଛେଇ ଯିବେ ।" ଏହାପରେ କମିସନ ବା ସରକାରଙ୍କଠାରୁ ନିର୍ଦ୍ଦିଷ୍ଟ ଆଦେଶ ଅଭାବରେ କଲେକ୍ଟର ଘରଭଂଗା ଫାଇଲରେ ଡୋରି ବାଂଧି ଦେଲେ ।

ଏମରଜେନ୍ସି ସମୟରେ ସମ୍ବିଧାନର ଏକ ବ୍ୟାପକ ସଂଶୋଧନ ପାଇଁ ଉଦ୍ୟମ ଆରମ୍ଭ ହେଇଥିଲା । ବିରୋଧୀ ପାର୍ଲିଆମେଣ୍ଟ ସଦସ୍ୟଙ୍କ ମଧ୍ୟରୁ ଅନେକ କାରାରୁଦ୍ଧ, ଏଣୁ ପାର୍ଲିଆମେଣ୍ଟରେ ଦୁଇ ତୃତୀୟାଂଶ ସମର୍ଥନ ପାଇବାରେ ମଧ୍ୟ ବାଧା ରହିଲା ନାହିଁ । ଏହି ସଂଶୋଧନ ୪୨ତମ ସଂଶୋଧନ ନାମରେ ଖ୍ୟାତ । ଏ ସଂପର୍କରେ ଚିଫ୍ ମିନିଷ୍ଟରମାନଙ୍କର ମତାମତ ପାଇଁ ପ୍ରଧାନମନ୍ତ୍ରୀଙ୍କ ଠାରୁ ପତ୍ର ଆସିଲା । ଅନୁରୂପ ପତ୍ର କଂଗ୍ରେସ ସଭାପତି ରାଜ୍ୟ କଂଗ୍ରେସ କମିଟି ସଭାପତିଙ୍କ ନିକଟକୁ ମଧ୍ୟ ପଠାଇଥିଲେ । ଏ ବିଷୟରେ ଚର୍ଚ୍ଚା କରିବା ପାଇଁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଓ ତତ୍କାଳୀନ ରାଜ୍ୟ କଂଗ୍ରେସ ସଭାପତି ଚିନ୍ତାମଣି ଜେନା ଭୁବନେଶ୍ୱର ଷ୍ଟେଟ୍ ଗେଷ୍ଟ ହାଉସ୍‌ରେ ଗୋଟିଏ ଆଲୋଚନା ସଭା ଡକାଇଥିଲେ । ମୁଁ, ସି. ବାମନ ମୂର୍ତ୍ତି ଓ ପୁରୀର ନାରାୟଣ ମିଶ୍ର ପ୍ରମୁଖ କେତେଜଣ ଆଡ଼୍‌ଭୋକେଟ ଏ ଆଲୋଚନାରେ ଯୋଗ ଦେଇଥିଲୁ ।

ମୂଳ ସଂବିଧାନରେ 'ଶିକ୍ଷା' ଓ 'ଜଙ୍ଗଲ' ଉପରେ ଆଇନ ପ୍ରଣୟନ କରିବା ପାଇଁ ରାଜ୍ୟମାନଙ୍କୁ ଯେଉଁ କ୍ଷମତା ଦିଆଯାଇଥିଲା, ତାକୁ ସଂଶୋଧନ କରି, ଉକ୍ତ ବିଷୟ ଦୁଇଟିକୁ ଯୁଗ୍ମ ତାଲିକା ବା କଂକରେଣ୍ଟ ଲିଷ୍ଟରେ ରଖି ପାର୍ଲିଆମେଣ୍ଟ ଯେପରି ଉକ୍ତ ଦୁଇଟି ବିଷୟରେ ଆଇନ ପ୍ରଣୟନ କରି ପାରିବେ ଓ କେନ୍ଦ୍ର ସରକାର ପ୍ରଶାସନିକ କ୍ଷମତା ପ୍ରୟୋଗ କରିପାରିବେ, ସେଥିପାଇଁ ପ୍ରସ୍ତାବ ଆସିଥିଲା । ପ୍ରସ୍ତାବିତ ସଂଶୋଧନରେ ଉଲ୍ଲେଖ ଥିଲା ଯେ ପାର୍ଲିଆମେଣ୍ଟ ଦ୍ୱାରା ପ୍ରଣୀତ ଆଇନର ବୈଧତା ହାଇକୋର୍ଟ ବିଚାର କରି ପାରିବେ ନାହିଁ । ପୁନଶ୍ଚ ୨୨୬ ଅନୁଚ୍ଛେଦର ସଂଶୋଧନ କରି ହାଇକୋର୍ଟର କ୍ଷମତା ସଂକୁଚିତ କରିବା ପାଇଁ ବ୍ୟବସ୍ଥା ହୋଇଥିଲା । ଓଡ଼ିଶା ସରକାର ଉପରୋକ୍ତ ସଂଶୋଧନ ଗୁଡ଼ିକର ବିରୋଧ କରିବା ପାଇଁ ମୁଁ ମତାମତ ଦେଇଥିଲି । ମୁଖ୍ୟମନ୍ତ୍ରୀ ତଦନୁଯାୟୀ କେନ୍ଦ୍ର ସରକାରଙ୍କୁ ଅନୁରୂପ ସୂଚନା ଦେଇଥିଲେ । କିନ୍ତୁ ପରେ ଏହି ମତାମତ ଯେ ନନ୍ଦିନୀ ଶତପଥୀଙ୍କ ବିରୁଦ୍ଧରେ ବ୍ୟବହୃତ ହେବ ତାହା ମୋତେ ଜଣା ନଥିଲା ।

ସଂଜୟ ଗାନ୍ଧୀ ମନ୍ତ୍ରୀ ନଥିଲେ ବା ପାର୍ଲିଆମେଣ୍ଟ ସଦସ୍ୟ ନଥିଲେ, ନିଖିଳ ଭାରତ କଂଗ୍ରେସ କମିଟିର କର୍ମକର୍ତ୍ତା ମଧ୍ୟ ନଥିଲେ । ଅଥଚ ଜରୁରୀ ପରିସ୍ଥିତିର ସୁଯୋଗ ନେଇ ସମସ୍ତ ରାଜନୈତିକ କ୍ଷମତା ନିଜ ହାତରେ ଠୁଳ କରିବା ପାଇଁ ସେ ଜୋରସୋର ଉଦ୍ୟମ ଆରମ୍ଭ କରିଦେଲେ । ଏହି ପ୍ରକ୍ରିୟାରେ ଯେଉଁମାନେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କର ବିଶ୍ୱସ୍ତ ସହଯୋଗୀ ରୂପେ ପରିଚିତ, ସେମାନଙ୍କୁ ସଂଜୟଙ୍କ ରୋଷର ଶିକାର ହେବାକୁ ପଡ଼ିଲା । ପଶ୍ଚିମ ବଙ୍ଗଳାରେ ସିଦ୍ଧାର୍ଥ ଶଙ୍କର ରାୟ, ଓଡ଼ିଶାରେ ନନ୍ଦିନୀ ଶତପଥୀ ଓ ବମ୍ବେ କଂଗ୍ରେସ କମିଟିର ସଭାପତି ରଜନୀ ପଟେଲ ପ୍ରମୁଖ ଏହି ବିଷ-ପ୍ରକ୍ରିୟାର ଅନ୍ତର୍ଭୁକ୍ତ । ଉପରୋକ୍ତ ନେତାମାନଙ୍କ ବିରୁଦ୍ଧରେ କଂଗ୍ରେସ ଦଳ ମଧ୍ୟରେ ବିରୋଧୀ ଗୋଷ୍ଠିକୁ ପ୍ରୋତ୍ସାହନ ଦିଆଯାଉଥାଏ । ପ୍ରତିଦିନ ନୂଆ ନୂଆ ଅଭିଯୋଗ ପତ୍ର ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରେ । ଡିସେମ୍ବର ପ୍ରଥମ ସପ୍ତାହରେ ନନ୍ଦିନୀ ଶତପଥୀଙ୍କୁ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦିଆହେଲା । ସଂବିଧାନର କେତେକ ଦଫାର ସଂଶୋଧନର ଆଂଶିକ ବିରୋଧ ଥିଲା ତାଙ୍କର ଅନ୍ୟତମ ଅପରାଧ ।

୧୯୭୬ ମସିହା ଜୁନ୍ ଦୁଇ ତାରିଖରେ ଅନୁଷ୍ଠିତ ମଧୁସୂଦନ ଆଇନ କଲେଜର ବାର୍ଷିକ ଉତ୍ସବ ମୋ ପାଇଁ ଥିଲା ଏକ ପରୀକ୍ଷାର ଦିନ । ଏହି ଅନୁଷ୍ଠାନରେ ସଭାପତିତ୍ୱ କରିଥିଲେ ବିଶ୍ୱବିଦ୍ୟାଳୟର ନବନିଯୁକ୍ତ ପ୍ରଶାସକ ଡକ୍ଟର ଗୌତମ ମାଥୁର । ଯୋଗ ଦେଇଥିଲେ କଲେଜ ପରିଚାଳନା କମିଟିର ସଭାପତି ଜଷ୍ଟିସ ରଂଗନାଥ ମିଶ୍ର । ପୋଲିସ୍ ଇନସପେକ୍ଟର ଜେନେରାଲ ନରସିଂହ ସ୍ୱାଇଁ ମୁଖ୍ୟ ଅତିଥି ଓ ମୁଁ ମୁଖ୍ୟବକ୍ତା । ମୁଁ ସଭାସ୍ଥଳରେ ପହଂଚିବା ମାତ୍ରେ ଛାତ୍ର ୟୁନିଅନ୍‌ର ଜଣେ ମୁଖ୍ୟ ନେତା ମନୋରଂଜନ ମହାନ୍ତି (ବର୍ତ୍ତମାନ ଆଡ୍‌ଭୋକେଟ୍) ପ୍ରଧାନମନ୍ତ୍ରୀଙ୍କ କୋଡ଼ିଏ ଦଫା ସମ୍ବଳିତ କାର୍ଯ୍ୟକ୍ରମ ଉପରେ କହିବା ପାଇଁ ମତେ ଅନୁରୋଧ କଲେ । ମୁଁ ତାଙ୍କୁ ସ୍ପଷ୍ଟ ଉତ୍ତର ଦେଲି "ମୁଁ କଂଗ୍ରେସ ସରକାରଙ୍କ ଆଡ୍‌ଭୋକେଟ୍ ଜେନେରାଲ ସତ୍ୟ, କିନ୍ତୁ ମୁଁ କଂଗ୍ରେସ ଦଳର ସଭ୍ୟ ନୁହେ । ମୋ ଠାରୁ ଏପରି ଭାଷଣ ଆଶା କରିବା ଉଚିତ ନୁହେ ।" ଇନ୍ସପେକ୍ଟର ଜେନେରାଲ ଗୋଟିଏ କ୍ଷୁଦ୍ର ଲିଖିତ ଭାଷଣ ପାଠ କଲେ । ତା ପରେ ପଡ଼ିଲା ମୋର ପାଳି । ମୁଁ ଠିଆ ହେବା ମାତ୍ରେ କେତେଜଣ କଂଗ୍ରେସ ସମର୍ଥକ ଛାତ୍ର ଦର୍ଶକ ମଂଚରୁ ଚିତ୍କାର କଲେ ସଂବିଧାନ ସଂଶୋଧନ ଉପରେ କହିବା ପାଇଁ । ମୁଁ ମନେ କଲି, ଏ ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିବା କାପୁରୁଷତା ହେବ ।

ଜୁନ ମାସ ବେଳକୁ ଅବଶ୍ୟ ସଂବିଧାନ ସଂଶୋଧନ ବିଲ୍ ପାର୍ଲିଆମେଣ୍ଟରେ ଗୃହୀତ ହୋଇ ନ ଥାଏ । କିନ୍ତୁ ସଂଶୋଧନର ଖସଡ଼ା ଉଣା ଅଧିକ ଜଣାଥାଏ ଏବଂ ଏ ସମ୍ବନ୍ଧରେ ସଂବାଦପତ୍ରରେ ଆଲୋଚନା ପ୍ରକାଶ ପାଉଥାଏ । ମୁଁ ପ୍ରସ୍ତାବିତ ସଂଶୋଧନର କେତେ ଗୁଡ଼ିଏ ବିଧେୟ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଥିଲି । ସମ୍ବିଧାନର ପ୍ରସ୍ତାବନା ବା ଉଦ୍ଦେଶ୍ୟିକାରେ 'ସମାଜବାଦ' ଓ 'ଧର୍ମନିରପେକ୍ଷ' ଶବ୍ଦ ଦୁଇଟିର ସଂଯୋଗ ଥିଲା ଅତି ବାଂଛନୀୟ । ଏକ ଧର୍ମ ନିରପେକ୍ଷ ସମାଜବାଦୀ ଓ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରତିଷ୍ଠା ଯେ ସମ୍ବିଧାନର ମୌଳିକ ଉଦ୍ଦେଶ୍ୟ, ଏହି ସଂଶୋଧନ ତାକୁ ସମ୍ୟକ୍ ଗୁରୁତ୍ୱ ଦେଉଥିଲା । ସେହିପରି ସଂବିଧାନର ଚତୁର୍ଥ ଭାଗରେ ୩୯ (କ) ଅନୁଚ୍ଛେଦର ପ୍ରସ୍ତାବିତ ସଂଯୋଗ ଦ୍ୱାରା ଦରିଦ୍ର ଜନସାଧାରଣଙ୍କୁ ନ୍ୟାୟ ବିଚାର ପାଇବାରେ ସାହାଯ୍ୟ କରିବା ରାଷ୍ଟ୍ରର କର୍ତ୍ତବ୍ୟ ବୋଲି ପ୍ରତିଭାତ ହେଉଥିଲା । ସଂବିଧାନ ସଂଶୋଧନ ପାଇଁ ପାର୍ଲିଆମେଣ୍ଟର ଅଖଣ୍ଡ କ୍ଷମତା ରହଛି, ଏହା ଥିଲା ମୋର ବ୍ୟକ୍ତିଗତ

ମତ । ତେଣୁ ୩୬୮ ଅନୁଚ୍ଛେଦରେ ଯେଉଁ ପରିବର୍ତ୍ତିତ ଭାଷା ପ୍ରୟୋଗ କରାଯାଇଥିଲା, ମୁଁ ତାକୁ ଦୃଢ଼ ଭାବରେ ସମର୍ଥନ କରୁଥିଲି । ମୋ ଭାଷଣରେ ସମର୍ଥନ ଯୋଗ୍ୟ ବ୍ୟବସ୍ଥା ଗୁଡ଼ିକୁ ପ୍ରାଞ୍ଜଳ ଭାବରେ ଉପସ୍ଥାପିତ କରିବାରେ କୌଣସି ଅସୁବିଧା ନଥିଲା । କିନ୍ତୁ ଅସଲ ସମସ୍ୟା ଥିଲା, କେତେକ ପ୍ରସ୍ତାବିତ ସଂଶୋଧନ ପ୍ରତି ମୋର ଆନ୍ତରିକ ବିରୋଧ । ବିଚାର ବ୍ୟବସ୍ଥାରେ କେତେକ କଟକଣା ଜାରୀ କରିବା ପାଇଁ ଏବଂ ହାଇକୋର୍ଟ ତଥା ସୁପ୍ରିମକୋର୍ଟର କ୍ଷମତା ସଂକୁଚିତ କରିବା ପାଇଁ ଯେଉଁସବୁ ବ୍ୟବସ୍ଥା ରଖାଯିବାର ପ୍ରସ୍ତାବ ହୋଇଥିଲା, ମୁଁ ଥିଲି ତାର ଘୋର ବିରୋଧୀ । ଏକେ ତ ମୁଁ ଆଡ୍‌ଭୋକେଟ୍ ଜେନେରାଲ, ଏଣେ ଜରୁରୀ ପରିସ୍ଥିତି ସମୟରେ ସ୍ୱାଧୀନ ମତାମତ ପ୍ରକାଶ କରିବା ଉପରେ ନାନା କଟକଣା । ଏ ପରିପ୍ରେକ୍ଷୀରେ, ଏକ ସାଧାରଣ ସଭାରେ ପ୍ରକାଶ୍ୟ ଭାବରେ ଏ ବିରୋଧକୁ ପ୍ରକଟିତ କରିବା କେତେଦୂର ସମୀଚୀନ, ଏହାହିଁ ଥିଲା ମୋ ଆଗରେ ଏକ ବିରାଟ ଦ୍ୱନ୍ଦ । କିନ୍ତୁ ମୁଁ ସ୍ଥିର କଲି, ପରିଣତି ଯାହା ହେଉନା କାହିଁକି, ମୁକ୍ତ କଂଠରେ ମୁଁ ମୋର ମତାମତ ବ୍ୟକ୍ତ କରିବି ।

ପଇଁଚାଳିଶ ମିନିଟ୍ ବ୍ୟାପୀ ମୋର ଦୀର୍ଘ ଇଂରାଜୀ ଭାଷଣର ବିସ୍ତୃତ ବିବରଣୀ ଉଭୟ 'ସମାଜ' ଓ 'ପ୍ରଜାତନ୍ତ୍ର'ରେ ପ୍ରକାଶିତ ହୋଇଥିଲା ।



# ଋତୁରାଜ ବସନ୍ତ

ବ୍ରହ୍ମପୁର ମ୍ୟୁନିସିପାଲ ଓଡ଼ିଆ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ବିନାୟକ ଆଚାର୍ଯ୍ୟଙ୍କର ବିଶେଷ ଖ୍ୟାତି ଥିଲା । ମୋର ଅତି ପ୍ରିୟ ସ୍ୱର୍ଗତଃ ବିଜୟ ଚନ୍ଦ୍ର ଦାସଙ୍କର ସେ ବଂଧୁ ଓ ସେ ସୂତ୍ରରେ ତାଙ୍କ ସହିତ ୧୯୪୫ ମସିହାରୁ ପରିଚୟ । ତାଙ୍କର ରାଜନୈତିକ ଜୀବନ ଆରମ୍ଭ ହୋଇଥିଲା କମ୍ୟୁନିଷ୍ଟ ସମର୍ଥକ ଭାବରେ । କିନ୍ତୁ ୧୯୫୯ ମସିହାରେ ସେ କଂଗ୍ରେସ ଦଳରେ ଯୋଗ ଦେଇଥିଲେ । ୧୯୭୧ ମସିହାର ସାଧାରଣ ନିର୍ବାଚନ ପରେ ସେ ବିଧାନ ସଭାରେ କଂଗ୍ରେସ ଦଳର ନେତା ନିର୍ବାଚିତ ହୋଇଥିଲେ । ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀ ପରିଷଦର ସେ ଥିଲେ ଜଣେ ବରିଷ୍ଠ ସଦସ୍ୟ ।

୧୯୭୬ ଶେଷ ଭାଗରେ ନନ୍ଦିନୀ ଶତପଥୀଙ୍କୁ ବିତାଡ଼ିତ କରିବା ପାଇଁ ସଂଜୟ ଗାନ୍ଧୀ ଚକ୍ରାନ୍ତ ଆରମ୍ଭ କରିଦେଇଥିଲେ । ଡିସେମ୍ବର ପ୍ରଥମ ସପ୍ତାହରେ ନନ୍ଦିନୀ ଶତପଥୀଙ୍କୁ ଇସ୍ତଫା ଦେବା ପାଇଁ ନର୍ଦ୍ଦେଶ ଦିଆହେଲା । ଦୁଇ ସପ୍ତାହ ପାଇଁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରୀ ହେଲା । ଶେଷ ସପ୍ତାହରେ ସଂଜୟ ଗାନ୍ଧୀ ବିନାୟକ ବାବୁଙ୍କ ମୁଣ୍ଡରେ ସୁନା କଳସ ଢାଳି ଦେଲେ । ଡିସେମ୍ବର ୨୭ ତାରିଖରେ ବିନାୟକ ବାବୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ।

ମନ୍ତ୍ରୀ ମଣ୍ଡଳ ପୁନଃ ଗଠିତ ହେଲେ, ଆଡ୍‌ଭୋକେଟ୍ ଜେନେରାଲ ତାଙ୍କ ପଦରୁ ଇସ୍ତଫା ଦେବାର ପରଂପରା ଅଛି । ତତ୍‌କାଳୀନ ବାଚସ୍ପତି ବ୍ରଜ ମୋହନ ମହାନ୍ତି ଓ ମନ୍ତ୍ରୀ ଶ୍ରୀ ବଲ୍ଲଭ ପାଣିଗ୍ରାହୀଙ୍କ ସହ ଏ ବିଷୟରେ ଆଲୋଚନା କଲି । ସେମାନଙ୍କ ମତରେ କଂଗ୍ରେସ ଦଳ ଏବେ ବି କ୍ଷମତାରେ ଅଛନ୍ତି, କେବଳ ମୁଖ୍ୟମନ୍ତ୍ରୀ ପରିବର୍ତ୍ତିତ ହୋଇଛନ୍ତି, ଏଣୁ ମୋର ଇସ୍ତଫା ଦେବାର ଆବଶ୍ୟକତା ନାହିଁ । ଏ ପରାମର୍ଶରେ ମୁଁ ସନ୍ତୁଷ୍ଟ ହୋଇ ପାରିଲି ନାହିଁ । ଅନୁଭବ କଲି, ପରିବର୍ତ୍ତନର ଧକ୍କା ଯେତେବେଳେ ଆସେ, ସେଥିରେ ନୂଆ ପୁରୁଣା, ଦରକାରୀ ଅଦରକାରୀ ସବୁ କିଛି ଭାଂଗି ରୁଜି ଯାଏ । ପରିବର୍ତ୍ତନର ପ୍ରବାହ ମୋତେ ସ୍ପର୍ଶ ନ କରିବ କାହିଁକି ? ଜାନୁଆରୀ ଦୁଇ ତାରିଖରେ ଖଣ୍ଡେ ଟାଇପ୍ କରା ଇସ୍ତଫା ପତ୍ର ପକେଟରେ ଧରି ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କଲି । ପରିବର୍ତ୍ତନ ପାଇଁ ବହୁସୂତ୍ରରୁ ତାଙ୍କ ଉପରେ ଚାପ ପଡୁଥିଲା । ସେ ସିଧାସଳଖ କୌଣସି ମତାମତ ନ ଦେଇ, ମୋତେ କେବଳ ପଚାରିଲେ ‘‘ଆଡ୍‌ଭୋକେଟ୍ ଜେନେରାଲ ପଦରେ ପରିବର୍ତ୍ତନ ପାଇଁ ସଂବିଧାନରେ ବ୍ୟବସ୍ଥା ନାହିଁ ସତ୍ୟ, କିନ୍ତୁ ପରଂପରା କ’ଣ ?’’ ମୁଁ ଉତ୍ତର ଦେଲି ‘‘ପରଂପରା

ଅନୁସଂଧାନ କରିବାର ପ୍ରୟୋଜନ ନାହିଁ । ମୁଁ ଇସ୍ତଫା ପତ୍ର ଦେଇ ଯାଉଛି । ଆପଣ ଯେଉଁ ମୁହୂର୍ତ୍ତରେ ଚାହିଁବେ, ବିନା ଦ୍ୱିଧାରେ ତାହା ଗ୍ରହଣ କରିନେବେ ।'' ଏହାପରେ ଇସ୍ତଫା ପତ୍ରଟି ତାଙ୍କ ପ୍ରାଇଭେଟ ସେକ୍ରେଟାରୀଙ୍କୁ ଦେଇ ରସିଦ୍‌ଟିଏ ହାତରେ ଧରି ଫେରି ଆସିଲି । ପନ୍ଦର ଦିନ ଅପେକ୍ଷା କରିବା ପରେ ମଧ୍ୟ କୌଣସି ଉତ୍ତର ଆସିଲା ନାହିଁ । ଆଇନ ସଚେତକ କିଶୋର ଚନ୍ଦ୍ର ମିଶ୍ର କହିଲେ, ସାଧାରଣତଃ ଇସ୍ତଫା ପତ୍ରଟି ଆଇନ ବିଭାଗକୁ ଆସିବା କଥା, କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ଏପରି କିଛି କାଗଜ ଆସି ନାହିଁ । ଆଇନ ମନ୍ତ୍ରୀ ଶ୍ରୀବଲ୍ଲଭ କହିଲେ, ମୁଖ୍ୟମନ୍ତ୍ରୀ ଆଡ୍‌ଭୋକେଟ ଜେନେରାଲ ପଦରେ ପରିବର୍ତ୍ତନ ଚାହାନ୍ତି ନାହିଁ । ଏହାର ମାସକ ପରେ ଦିନେ ବିନାୟକ ବାବୁଙ୍କ ସହ ଦିଲ୍ଲୀ ଯିବା ପଥରେ ପ୍ଲେନରେ ଦେଖାହେଲା । ସେ କହିଲେ, ମୋର ଇସ୍ତଫା ପତ୍ରଟି ସେ ଚିରି ଫୋପାଡ଼ି ଦେଇଛନ୍ତି ।

କଳିଙ୍ଗ ବିଜୟର ଉଦ୍‌ଯାପନ ଉପଲକ୍ଷେ ୧୯୭୭ ଜାନୁଆରୀ ଶେଷ ସପ୍ତାହରେ ସଂଜୟ ଗାନ୍ଧୀ ଓଡ଼ିଶା ପରିଭ୍ରମଣରେ ଆସିଲେ । ତାଙ୍କୁ ସଂବର୍ଦ୍ଧନା ଜଣାଇବା ପାଇଁ ବିଭିନ୍ନ ସ୍ଥାନରେ କଂଗ୍ରେସ ଦଳ ପକ୍ଷରୁ ସାଧାରଣ ସଭାର ଆୟୋଜନ କରାଯାଇଥିଲା । ବାରବାଟୀ କିଲ୍ଲା ପଡ଼ିଆ ସଭାରେ ଅନ୍ୟୂନ ତିରିଶ ହଜାର ଲୋକଙ୍କ ସମାବେଶ । ଅପାର କ୍ଷମତାର ଅଧିକାରୀ ପ୍ରଧାନମନ୍ତ୍ରୀଙ୍କ ପୁତ୍ର ସଂଜୟଙ୍କର ଯୋଜନା ଓ କାର୍ଯ୍ୟକ୍ରମ ଶୁଣିବା ପାଇଁ ଲୋକଙ୍କର କୌତୂହଳର ସୀମା ନଥିଲା । ମୁଁ ମଧ୍ୟ ସଭାସ୍ଥଳରେ ଉପସ୍ଥିତ ଥିଲି । ପ୍ରଥମେ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ ତାଙ୍କ ପୁଅଠାରୁ ସାନ ସଂଜୟ ଗାନ୍ଧୀଙ୍କୁ ''ସଂଜୟଜୀ'' ବୋଲି ସମ୍ବୋଧନ କରି ଭାଷଣ ଆରମ୍ଭ କଲେ । ଚାଟୁ ବାକ୍ୟ ପ୍ରୟୋଗରେ ସମସ୍ତଙ୍କୁ ଟପିଗଲେ ତତ୍‌କାଳୀନ କେନ୍ଦ୍ର ଉପମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ । ଜାନକୀ ବାବୁ ସଂଜୟଙ୍କ ଓଡ଼ିଶା ଭ୍ରମଣକୁ ''ଋତୁରାଜ ବସନ୍ତ''ର ଆଗମନ ସହ ତୁଳନା କଲେ । ଦର୍ଶକମାନଙ୍କ ମଧ୍ୟରେ ମୃଦୁ ହାସ୍ୟରୋଳ ଉଠିଲା । ଏଣେ ଦେଖାଗଲା, ସଂଜୟ ଗାନ୍ଧୀଙ୍କୁ ଆଦୌ ବକ୍ତୃତା ଦେଇ ଆସେ ନାହିଁ । ଜନ୍ମ ନିରୋଧ, ଯୌତୁକ ବର୍ଜନ ଓ ବୃକ୍ଷରୋପଣ ଉପରେ ମୋଟ ଚାରି ପାଂଚୋଟି ବାକ୍ୟ କହି ତିନି ଚାରି ମିନିଟ୍ ମଧ୍ୟରେ ସେ ତାଙ୍କର ଭାଷଣ ଶେଷ କଲେ । ସାଧାରଣ ଶ୍ରୋତା, ଏପରିକି କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ଗଭୀର ନୈରାଶ୍ୟ ଖେଳିଗଲା । ଆମ୍ଭେମାନେ ଆଶ୍ଚର୍ଯ୍ୟ ହେଲୁ ଯେ ଏହି ଅର୍ବାଚୀନ ବାଳକକୁ ଭାରତର ଭାଗ୍ୟବିଧାତା କରିବା ପାଇଁ ଏତେ ବ୍ୟାପକ ଷଡ଼ଯନ୍ତ୍ର ଚାଲିଛି ।

କିନ୍ତୁ ଋତୁରାଜ ବସନ୍ତଙ୍କର ପ୍ରତ୍ୟାଗମନ ଏତେ କ୍ଷିପ୍ର ହେବ ବୋଲି କେହି ସଂଦେହ କରି ନଥିଲେ କିମ୍ବା ପରେ ପରେ ପ୍ରବଳ ଗ୍ରୀଷ୍ମ ମାଡ଼ି ଆସିବ ବୋଲି କାହାରି କଳ୍ପନାରେ ନଥିଲା । ଜରୁରୀ ପରିସ୍ଥିତି ଘୋଷଣା ରଦ୍ଦ ହେବା ପରେ, ମାର୍ଚ୍ଚ ଆରମ୍ଭରେ ପାର୍ଲିଆମେଣ୍ଟକୁ ସାଧାରଣ ନିର୍ବାଚନ ହେଲା । ବିଭିନ୍ନ ଦଳର କାରାମୁକ୍ତ ନେତାମାନେ ଏକତ୍ର ବସି ଯେଉଁ ମେଣ୍ଟ ଗଠନ କଲେ, ସେଥିରେ ଯୋଗଦେଲେ କଂଗ୍ରେସ ଦଳରୁ ଇସ୍ତଫା ଦେଇଥିବା ଜଗଜୀବନ ରାମ ଓ ନନ୍ଦିନୀ ଶତପଥୀ ପ୍ରମୁଖ । ନିର୍ବାଚନରେ କଂଗ୍ରେସ ଦଳର ସଂପୂର୍ଣ୍ଣ ବିପର୍ଯ୍ୟୟ ଘଟିଲା । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଅଜ୍ଞାତ ରାଜନାରାୟଣଙ୍କ ଦ୍ୱାରା ପରାସ୍ତ ହେଲେ । ଆମେଥି ନିର୍ବାଚନ ମଣ୍ଡଳୀରେ ସଂଜୟ ଗାନ୍ଧିଙ୍କର ଅମାନତ୍ ଉଡ଼ିଗଲା । ଜୟ ପ୍ରକାଶ ନାରାୟଣଙ୍କ ଆଶୀର୍ବାଦରେ ଗଠିତ ଜନତା ପାର୍ଟି ସରକାର ଗଠନ କଲେ । ମୋରାରଜୀ ଦେଶାଇ ହେଲେ ପ୍ରଧାନ ମନ୍ତ୍ରୀ ଓ ଚରଣ ସିଂ ଗୃହ ମନ୍ତ୍ରୀ ।

ସଂବିଧାନର ୩୫୬ ଧାରାରେ ସଂବଳିତ ଯେଉଁ କ୍ଷମତାର ପ୍ରୟୋଗକୁ କଂଗ୍ରେସ ବିରୋଧୀ ନେତାମାନେ ଅହର୍ନିଶି ନିନ୍ଦା କରୁଥିଲେ, ଏବେ ସେହି କ୍ଷମତା ପ୍ରୟୋଗ କରିବାକୁ ସେମାନେ କୁଣ୍ଠିତ ହେଲେ ନାହିଁ । ବିଧାନ ସଭାରେ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ଥିବା ସତ୍ତ୍ୱେ, ଆଠଟି ରାଜ୍ୟରେ ପ୍ରତିଷ୍ଠିତ କଂଗ୍ରେସ ସରକାରଙ୍କୁ ଭାଂଗି ଦେବା ପାଇଁ ଦିଲ୍ଲୀରେ ନିଷ୍ପତ୍ତି ନିଆହେଲା । କେନ୍ଦ୍ର ଗୃହମନ୍ତ୍ରୀ ଚରଣ ସିଂ କଂଗ୍ରେସ ସରକାରମାନଙ୍କୁ ନୋଟିସ ଦେଲେ- ପାର୍ଲିଆମେଣ୍ଟ ନିର୍ବାଚନ ଫଳାଫଳରୁ ପ୍ରମାଣିତ ହୋଇଛି ଯେ, ଏହି ସବୁ ରାଜ୍ୟରେ କ୍ଷମତାସୀନ ଦଳ ଓ ସରକାରମାନେ ଜନ ସମର୍ଥନ ହରାଇଛନ୍ତି; ଏଣୁ ଏ ସବୁ ରାଜ୍ୟର ସରକାର ଓ ବିଧାନସଭାକୁ ଭାଂଗି ଦେଇ ପ୍ରଥମେ 'ରାଷ୍ଟ୍ରପତି ଶାସନ' ଜାରୀ କରାହେବ ଓ ପରେ ବିଧାନସଭାକୁ ସାଧାରଣ ନିର୍ବାଚନ ହେବ । ଏହି ନୋଟିସ୍ ବିରୁଦ୍ଧରେ କର୍ଣ୍ଣାଟକ ଓ ରାଜସ୍ଥାନ ସରକାର ସଂବିଧାନର ୧୩୧ ଅନୁଚ୍ଛେଦ ଅନୁଯାୟୀ କେନ୍ଦ୍ର ସରକାରଙ୍କ ବିରୁଦ୍ଧରେ ସୁପ୍ରିମ କୋର୍ଟରେ ସୁଟ ଦାଏର କରିଥିଲେ । ଏହି ସମ୍ବାଦ ପ୍ରକାଶିତ ହେବା ପରେ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ ଏପ୍ରିଲ ୧୭ ତାରିଖରେ ମୋ ସହିତ ଏ ବିଷୟରେ ଆଲୋଚନା କଲେ । ମୁଁ ବିଜୁ ପଟ୍ଟନାୟକଙ୍କ ମୋକଦ୍ଦମାରେ ରାଷ୍ଟ୍ରପତିଙ୍କ ଘୋଷଣା କୋର୍ଟରେ ବିଚାର୍ଯ୍ୟ ବିଷୟ ନୁହେ ବୋଲି ଓଡ଼ିଶା ହାଇକୋର୍ଟ ୧୯୭୩ ମସିହାରେ ଯେଉଁ ନିଷ୍ପତ୍ତି ଦେଇଥିଲେ, ତାହା ତାଙ୍କୁ ସ୍ମରଣ କରାଇ ଦେଇ କହିଲି ଯେ ନିକଟରେ ସଂବିଧାନରେ ୪୨ ତମ ସଂଶୋଧନରେ ୩୫୬ ଅନୁଚ୍ଛେଦରେ

ଗୋଟିଏ ନୂତନ ଉପଧାରା ସଂଯୋଗ କରାଯାଇ ସ୍ପଷ୍ଟ କରିଦିଆଯାଇଛି ଯେ, ରାଷ୍ଟ୍ରପତିଙ୍କ ସନ୍ତୋଷ ଜନିତ ନିଷ୍ପତ୍ତିର ବୈଧତା ଅଦାଲତ ବିଚାର କରି ପାରିବେ ନାହିଁ। ଏ ପରିସ୍ଥିତିରେ ସୁପ୍ରିମ କୋର୍ଟରେ ପ୍ରସ୍ତାବିତ କେସ୍ ଜିତିବାର କୌଣସି ସଂଭାବନା ନାହିଁ। ମୁଖ୍ୟମନ୍ତ୍ରୀ ମୋ ସହିତ ଏକମତ ହୋଇ ସୁପ୍ରିମ୍ କୋର୍ଟକୁ ଯିବା ପାଇଁ ଆଉ ଆଗଭର ହେଲେ ନାହିଁ।

ଚାରି ପାଂଚ ଦିନ ପରେ ପୁଣି କାଳିଆ ଲେଉଟିଲା। ଦିନେ ସଂଧ୍ୟାରେ ଭୁବନେଶ୍ୱରରେ ଜଣେ ବଂଧୁଙ୍କ ଘରେ ବିବାହ ଭୋଜିରେ ଯୋଗ ଦେଇଥିଲି। ରାତି ନ'ଟା ସମୟରେ ଚିଫ୍ ମିନିଷ୍ଟରଙ୍କ ଘରୁ ଗୋଟିଏ ଗାଡ଼ି ଆସି ପହଂଚିଲା, ମୋତେ ତୁରନ୍ତ ନେବା ପାଇଁ। ସେ କୁଆଡ଼େ ମୋର କଟକ ଘରକୁ ଫୋନ୍ କରି ଭୁବନେଶ୍ୱର ଆସିବା ସଂପର୍କରେ ଖବର ନେଇଥିଲେ। ବିନାୟକ ବାବୁଙ୍କ ଘରେ ଉପସ୍ଥିତ ଥିଲେ, ତାଙ୍କ ସହିତ ଆଇନ ମନ୍ତ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ, ସେକ୍ରେଟାରୀ ଭେଙ୍କଟ ରମନ ଓ ଅନ୍ୟ ଜଣେ ଦୁଇ ଜଣ ମନ୍ତ୍ରୀ। ମୋତେ ଅନୁରୋଧ କରା ହେଲା, ପର ଦିନ ସଂଧ୍ୟା ପ୍ଲେନ୍‌କୁ ଅପେକ୍ଷା ନ କରି, ସକାଳୁ ଓଡ଼ିଶା ସରକାରଙ୍କ ପ୍ଲେନ୍‌ରେ ଦିଲ୍ଲୀ ଯାଇ ସୁପ୍ରିମ କୋର୍ଟରେ ମୋକଦ୍ଦମା ଦାଖଲ କରିବା ପାଇଁ। ମନେ ହେଲା, କେନ୍ଦ୍ର କଂଗ୍ରେସ ନେତୃତ୍ୱ ମୁଖ୍ୟମନ୍ତ୍ରୀଙ୍କୁ ବୋଧହୁଏ ଏ ବିଷୟରେ ସୂଚନା ଦେଇ ଅଛନ୍ତି। ମୁଁ ଓ ଆଇନ ସଚେତକ କିଶୋର ଚନ୍ଦ୍ର ମିଶ୍ର ପରଦିନ ସକାଳୁ ଦିଲ୍ଲୀ ବାହାରିଲୁ। ଏହି କ୍ଷୁଦ୍ର ପ୍ଲେନ୍‌ଟି ଲକ୍ଷ୍ନୌରେ ଅଧା ଘଣ୍ଟାଏ ବିଶ୍ରାମ ନେଇ ଦିଲ୍ଲୀରେ ପହଂଚିବାକୁ ପାଂଚ ଘଣ୍ଟା ସମୟ ନିଏ। ମନେ ହୁଏ ଯେପରି କ୍ଷୁଦ୍ର ଚଢ଼େଇଟିଏ ନୀଳ ଆକାଶରେ ଉଡ଼ି ଉଡ଼ି ଚାଲିଛି। ମୋର ପୂର୍ବ ନିର୍ଦ୍ଦେଶ ଅନୁଯାୟୀ ଓଡ଼ିଶା ଭବନରେ ଦୁଇ ଜଣ ଷ୍ଟେନୋଗ୍ରାଫର ଆମକୁ ଅପେକ୍ଷା କରି ରହିଥିଲେ। ଦିନ ଗୋଟାଏ ବେଳେ ଓଡ଼ିଶା ଭବନରେ ପହଂଚି ଦୁଇଜଣ ଷ୍ଟେନୋଗ୍ରାଫରଙ୍କ ସାହାଯ୍ୟରେ ମୋତେ ତିରିଶ ପୃଷ୍ଠାର ଅର୍ଜି ପ୍ରସ୍ତୁତ କରିବାକୁ ହେଲା। ପ୍ଲେନ୍‌ରେ ବସି କ'ଣ ଡିକ୍ଟେସନ ଦେବି, ତାର ଗୋଟିଏ ଚିଠା ମନରେ ଆଙ୍କି ଦେଇଥିଲି। ଦିଲ୍ଲୀର ଆଡ୍‌ଭୋକେଟ୍ ଆର. କେ. ମେହେଟା ବିଶେଷ ଉଦ୍ୟମ କରି ସାଢ଼େ ଚାରିଟା ପୂର୍ବରୁ ତାହା କୋର୍ଟରେ ଦାଖଲ କଲେ ଓ ତାଙ୍କର ପୂର୍ବ ଅନୁରୋଧ ଅନୁଯାୟୀ, କେସ୍‌ଟି ପରଦିନ ଅନ୍ୟ କେସ୍ ସହିତ ବିଚାରକୁ ଆସିଲା।

ରାଜସ୍ଥାନ, କର୍ଣ୍ଣାଟକ, ମଧ୍ୟ ପ୍ରଦେଶ, ବିହାର, ଓଡ଼ିଶା, ପଂଜାବ ଓ ହିମାଚଳ ପ୍ରଦେଶ ଆଦି ସାତଟି ରାଜ୍ୟ ସରକାରଙ୍କ ତରଫରୁ ଦାଏର ହୋଇଥିବା ମୋକଦ୍ଦମାଗୁଡ଼ିକ ବିଚାର ପାଇଁ ଉଠିଥିଲା ଏକ ସାତ ଜଣିଆ ବିଚାରକ

ମଣ୍ଡଳୀ ସମ୍ମୁଖରେ । ଏହି କେସ୍‌ରେ ଆବେଦନକାରୀମାନଙ୍କ ପକ୍ଷରୁ ପ୍ରାକ୍ତନ ଆଟର୍ଣି ଜେନେରାଲ ନୀରେନ୍ ଦେ, ପ୍ରାକ୍ତନ ଆଇନ୍ ମନ୍ତ୍ରୀ ଏଚ. ଆର ଗୋଖ୍‌ଲେ, ଆର୍. କେ. ଗାର୍ଗ ଓ ମୁଁ ବାଦାନୁବାଦ କରିଥିଲୁ । ଅପର ପକ୍ଷରୁ ଜବାବ୍ ଦେଇଥିଲେ ତତ୍‌କାଳୀନ ଆଡ଼ିସନାଲ ସଲିସିଟର ଜେନେରାଲ ସୋଲି ସୋରାବ୍‌ଜୀ । ଶୁଣାଣି ସମୟରେ ଦେଖାଗଲା ଯେ ସାତଜଣ ବିଚାପତିଙ୍କ ମଧ୍ୟରୁ ଜଣେ ହେଲେ ଦରଖାସ୍ତକାରୀମାନଙ୍କ ପକ୍ଷରେ ନାହାନ୍ତି । ବିଭିନ୍ନ ଦୃଷ୍ଟି କୋଣରୁ ସବୁ ବିଚାରପତିଙ୍କର ମତ ଯେ କେନ୍ଦ୍ର ସରକାରଙ୍କ ବିରୁଦ୍ଧରେ ଏପରି ମୋକଦ୍ଦମା ଗ୍ରହଣ ଯୋଗ୍ୟ ହେଲେ ମଧ୍ୟ, ଆଲୋଚ୍ୟ ବିଷୟଟି ସଂପୂର୍ଣ୍ଣ ରାଜନୈତିକ ବିବାଦ ଏବଂ ଏହା କୋର୍ଟର ବିଚାର୍ଯ୍ୟ ବିଷୟ ନୁହେ । ୩୫୬ ଅନୁଚ୍ଛେଦ ସମ୍ବଳିତ କ୍ଷମତା ପ୍ରୟୋଗ କରି ରାଷ୍ଟ୍ରପତି ଶାସନ ଜାରି କରିବା ରାଷ୍ଟ୍ରପତିଙ୍କ ସନ୍ତୋଷ ଉପରେ ନିର୍ଭର କରେ । ସନ୍ତୋଷ ସଂପୂର୍ଣ୍ଣ ଭିତ୍ତିହୀନ ନହେଲେ, ସେଥିରେ ହସ୍ତକ୍ଷେପ କରିବା ପାଇଁ କୋର୍ଟର ଅଧିକାର ନାହିଁ । ଏପ୍ରିଲ ୨୯ ତାରିଖରେ ବିଚାର ଶେଷ ହେଲା ଓ ସୁଟ୍ ଗୁଡ଼ିକ ଖାରଜ ହୋଇଛି ବୋଲି ବିଚାରପତିମାନେ ଆଦେଶ ଦେଲେ । ବିସ୍ତୃତ ରାୟ ସପ୍ତାହକ ପରେ ପ୍ରକାଶିତ ହେଲା ।

୩୦ ତାରିଖ ଦିନ ମୁଁ ଆଡ୍‌ଭୋକେଟ୍ ଜେନେରାଲ ପଦରୁ ମୋର ଇସ୍ତଫା ପତ୍ର ପଠାଇ ଦେଲି । ସେହି ଦିନ ରାଷ୍ଟ୍ରପତି ଶାସନ ଜାରୀ ହେଲା ଓ ରାଜ୍ୟପାଳ ଶାସନ କ୍ଷମତା ଗ୍ରହଣ କଲେ । ରାଜ୍ୟପାଳ ଚାହୁଁଥିଲେ ଯେ ନିର୍ବାଚନ ପରେ ନୂତନ ମନ୍ତ୍ରୀମଣ୍ଡଳ ଗଠିତ ହେବା ପର୍ଯ୍ୟନ୍ତ ମୁଁ ଏହି ପଦରେ କାର୍ଯ୍ୟ କରିବି, ଏଣୁ ମୋ ଇସ୍ତଫା ତୁରନ୍ତ ଗୃହୀତ ହୋଇ ନଥିଲା । ମାତ୍ର ଅଧିକ ଦିନ ଏ ଦାୟିତ୍ୱ ଚଳାଇବାକୁ ମୁଁ ଥିଲି ସଂପୂର୍ଣ୍ଣ ବୀତସ୍ପୃହ । ଦଶ ଦିନ ପରେ ଖଣ୍ଡେ ସ୍ମାରକ ପତ୍ର ପଠାଇ ମୋତେ ତୁରନ୍ତ ଅବ୍ୟାହତି ଦେବା ପାଇଁ ଅନୁରୋଧ କଲି । ମଇ ମାସ ତେର ତାରିଖରେ ରାଜ୍ୟପାଳ ଦ୍ୱାରା ମୋର ଇସ୍ତଫା ପତ୍ର ଗ୍ରହଣ କଲେ । ଦୀର୍ଘ ପାଂଚ ବର୍ଷ ପରେ ମୁଁ ଆଡ୍‌ଭୋକେଟ୍ ଜେନେରାଲ ଦାୟିତ୍ୱରୁ ଅବ୍ୟାହତି ନେଲି ।



# ପ୍ରତିହିଂସାର ବହ୍ନି

ଗଣତନ୍ତ୍ରର ଜନ୍ମଭୂମି ଗ୍ରେଟ୍ ବ୍ରିଟେନରେ ରାଜନୈତିକ ହାରଜିତ୍‌କୁ କ୍ରିକେଟ୍ ଖେଳ ପରି ବିଚାର କରାଯାଏ । କିନ୍ତୁ ଭାରତରେ, ବିଶେଷତଃ ଓଡ଼ିଶାରେ ରାଜନୈତିକ ସଂଘର୍ଷ ବହୁ ସମୟରେ ପ୍ରତିହିଂସାପରାୟଣ ହୋଇ ଉଠେ । ଆଇନର ବାହୁଛାୟା ତଳେ, ବିରୋଧୀମାନଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାର ଦୃଷ୍ଟାନ୍ତ ଓଡ଼ିଶାରେ ସର୍ବାଧିକ । ଆଇନର ଜାଲରେ ଛନ୍ଦି ରାଜନୈତିକ ପ୍ରତିଦ୍ୱନ୍ଦୀମାନଙ୍କୁ ଅପଦସ୍ଥ କରିବା ଏବେ ପରଂପରାରେ ପରିଣତ ହୋଇଛି ।

୧୯୭୭ ଜୁନ୍ ମାସରେ ଅନୁଷ୍ଠିତ ବିଧାନସଭା ନିର୍ବାଚନରେ ଜନତା ଦଳ ବିଜୟୀ ହେଲେ । ମାର୍ଚ୍ଚ ମାସରେ ବିଜୁ ବାବୁ କେନ୍ଦ୍ର କ୍ୟାବିନେଟ୍‌ରେ ମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ଅନ୍ୟତମ ବିଶିଷ୍ଟ ନେତା ନୀଳମଣି ରାଉତରାୟ ହେଲେ ଜନତା ବିଧାୟକ ଦଳର ନେତା ଓ ରାଜ୍ୟର ମୁଖ୍ୟମନ୍ତ୍ରୀ । ପୂର୍ବରୁ ଜଗଜ୍ଜୀବନ ରାମଙ୍କ ସହ ନନ୍ଦିନୀ ଶତପଥୀ କଂଗ୍ରେସ ତ୍ୟାଗ କରିଥିଲେ । ବିଧାନ ସଭା ନିର୍ବାଚନରେ ସେ ଥିଲେ ଜନତା ଦଳ ଟିକଟରେ ଢେଙ୍କାନାଳରୁ ପ୍ରାର୍ଥୀ । କେତେକ ବିଶିଷ୍ଟ ଜନତା ନେତା ଓ ସୋସିଆଲିଷ୍ଟ ଗୋଷ୍ଠୀ ତାଙ୍କ ବିରୁଦ୍ଧରେ ମାଳତୀ ଦେବୀଙ୍କୁ (ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀଙ୍କ ପତ୍ନୀ ମାଳତୀ ଚୌଧୁରୀ) ସ୍ୱାଧୀନ ପ୍ରାର୍ଥୀ ରୂପେ ଠିଆ କରାଇଥିଲେ । ଜନତା ଦଳର ପରୋକ୍ଷ ବିରୋଧ ଓ କଂଗ୍ରେସ ପ୍ରତ୍ୟକ୍ଷ ବିରୋଧ ସତ୍ତ୍ୱେ ସେ ଢେଙ୍କାନାଳରୁ ଜୟଯୁକ୍ତ ହେଲେ । କିନ୍ତୁ ଏ ବିଜୟ ଥିଲା ତାଙ୍କ ପାଇଁ ଏକ କାଳ ରାତ୍ରି । ଏହି ସମୟରୁ ଆରମ୍ଭ ହେଲା ତାଙ୍କ ବିରୁଦ୍ଧରେ ଗଭୀର ଷଡ଼ଯନ୍ତ୍ର, ଯେଉଁଥିରେ ଲିପ୍ତ ଥିଲେ ଜନତା ଦଳର କେତେକ ବିଶିଷ୍ଟ ନେତା ଓ କେତେଜଣ ଉଚ୍ଚ ପଦସ୍ଥ ପୋଲିସ କର୍ମଚାରୀ । ଏହି ସମୟରୁ ଆରମ୍ଭ ହେଲା ନାନା ଲାଂଛନା, ଅପମାନ ଓ ନିର୍ଯ୍ୟାତନାର କାହାଣୀ ।

ଅଗଷ୍ଟ ମାସରେ ନନ୍ଦିନୀ ଶତପଥୀ ଜନତା ଦଳର ମଧୁ ଲିମାୟେ ପ୍ରମୁଖ କେତେଜଣ ବିଶିଷ୍ଟ ନେତାଙ୍କ ସହ ପୂର୍ବ ୟୁରୋପ ପରିଭ୍ରମଣରେ ଯାଇଥିବା ସମୟରେ ତାଙ୍କର ଭୁବନେଶ୍ୱର ଓ ଢେଙ୍କାନାଳ ଗାଁ ଘର, ପିତା କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ କଟକ ଘର ଓ ଅନ୍ୟ କେତେଜଣ ବଂଧୁବାଂଧବଙ୍କ ଘର ତଲାସି ହେଲା । ପୋଲିସ କୌଣସି ଗୁପ୍ତ ସଂଚିତ ଧନର ସଂଧାନ

ନ ପାଇଲେ ମଧ୍ୟ, ତାଙ୍କର ଭୁବନେଶ୍ୱର ଘର ହିସାବ ବହିର୍ଭୂତ ଅର୍ଥରେ ନିର୍ମିତ ହୋଇଛି ବୋଲି ଅଭିଯୋଗ କଲେ ଓ ଦୁର୍ନୀତି ନିରୋଧ ଆଇନ୍ ଅନୁଯାୟୀ ତାଙ୍କ ବିରୁଦ୍ଧରେ ଭୁବନେଶ୍ୱର ସ୍ପେଶିଆଲ ଜଜ୍ କୋର୍ଟରେ ଏକ ମୋକଦ୍ଦମା ରୁଜୁ ହେଲା । କିଛି ଦିନ ପରେ ୧୯୭୧-୭୨ ମସିହାରେ କଂଗ୍ରେସ ପାଣ୍ଠି ଆତ୍ମସାତ୍ କରିଥିବା ଅଭିଯୋଗରେ ନନ୍ଦିନୀ ଶତପଥୀ ଓ ସଂପାଦକ ରାମନାଥ ପଣ୍ଡାଙ୍କ ବିରୁଦ୍ଧରେ ଏକ ନୂତନ ମୋକଦ୍ଦମା ଦାଏର ହେଲା । କଂଗ୍ରେସ ପାଣ୍ଠିର ସୁରକ୍ଷା ପାଇଁ ଜନତା ନେତାମାନଙ୍କର ବ୍ୟାକୁଳତା ଦେଖି ସାଧାରଣ ଜନତା ମଧ୍ୟ ବିସ୍ମିତ ହେଲେ । ହିସାବ ବହିର୍ଭୂତ ଧନରେ ଘର ନିର୍ମାଣ ମୋକଦ୍ଦମାରେ ତାଙ୍କ ତରଫରୁ ବ୍ରହ୍ମପୁରର ଆଡ୍‌ଭୋକେଟ ଆର. ସି. ପଟନାୟକ ଓ କଟକର ପ୍ରଫୁଲ୍ଲ କୁମାର ମହାନ୍ତି ମୋକଦ୍ଦମା ପରିଚାଳନା କରୁଥିଲେ ଏବଂ ସରକାରଙ୍କ ତରଫରୁ ଲଢୁଥିଲେ ତତ୍‌କାଳୀନ ଆଡ୍‌ଭୋକେଟ୍ ଜେନେରରାଲ ବୀରେନ୍ଦ୍ର ମୋହନ ପଟ୍ଟନାୟକ । ତିନି ବର୍ଷ ବ୍ୟାପୀ ବିଚାର ପରେ ସେ ଅବଶ୍ୟ ନିର୍ଦ୍ଦୋଷରେ ଖଲାସ ହେଲେ । କିନ୍ତୁ ମୋକଦ୍ଦମା ଚାଲୁଥିବା ସମୟରେ, ତାଙ୍କ ବିରୁଦ୍ଧରେ ଆଉ ଏକ କେସ୍ ଚାଲୁ କରିବାର ଚକ୍ରାନ୍ତ ଆରମ୍ଭ ହୋଇଗଲା ।

ତଦନ୍ତ ସମୟରେ ମୁଦାଲାଙ୍କ ଠାରୁ ଜମାନବନ୍ଦୀ ନେବା ପାଇଁ ଫୌଜଦାରୀ କାର୍ଯ୍ୟବିଧି ଆଇନରେ ପୋଲିସକୁ କ୍ଷମତା ଦିଆଯାଇଅଛି । ଏହି କ୍ଷମତା ପ୍ରୟୋଗ କରି ତଦନ୍ତକାରୀ ପୋଲିସ ଡେପୁଟୀ ସୁପରିଟେଣ୍ଡେଣ୍ଟ ତାଙ୍କୁ ଉତ୍ତର ଦେବା ପାଇଁ ଏକ ଲିଖିତ ପ୍ରଶ୍ନପତ୍ର ଦେଲେ । ସେହି ପ୍ରଶ୍ନ ଗୁଡ଼ିକ ଏପରି ଭାବରେ ପ୍ରସ୍ତୁତ ହୋଇଥିଲା ଯେ ସେଗୁଡ଼ିକର ଉତ୍ତର ଦେଲେ ତାହା ବିଚାରାଧୀନ କେସ୍ ଗୁଡ଼ିକରେ ତାଙ୍କ ବିରୁଦ୍ଧରେ ବ୍ୟବହୃତ ହେବ । ନନ୍ଦିନୀ ଶତପଥୀ ବିବ୍ରତ ହୋଇ ଆମ୍ଭମାନଙ୍କର ସହାୟତା ଲୋଡ଼ିଲେ । ଦିନେ (ସ୍ୱର୍ଗତଃ) ରଣଜିତ ମହାନ୍ତିଙ୍କ ଘରେ ନନ୍ଦିନୀ ଦେବୀଙ୍କ ଉପସ୍ଥିତରେ ମୁଁ, ରଣଜିତ ଓ ପ୍ରବୀର (ଆଡ୍‌ଭୋକେଟ ପ୍ରବୀର ପାଲିତ୍) ଏ ବିଷୟରେ ଆଲୋଚନା କଲୁ । କଂଗ୍ରେସ ପାଣ୍ଠି ସଂକ୍ରାନ୍ତୀୟ କେସରେ ରଣଜିତ୍ ଥିଲେ ତାଙ୍କର ଆଡ୍‌ଭୋକେଟ୍ ଏବଂ କେସ୍ ଗୁଡ଼ିକର ବିଷୟବସ୍ତୁ ସଂକ୍ରାନ୍ତରେ ସେ ଓ ପ୍ରବୀର ସଂପୂର୍ଣ୍ଣ ଅବଗତ ଥିଲେ । ଆମ୍ଭେମାନେ ସବୁ ଦିଗରୁ ବିଚାର ବିମର୍ଶ କରି ଦେଖିଲୁ ଯେ ନନ୍ଦିନୀ ଦେବୀ ଏକ ବିରାଟ ସଂକଟର ସମ୍ମୁଖୀନ । ପ୍ରଶ୍ନବାଣ ଜରିଆରେ

ତାଙ୍କୁ ଏକ ଦ୍ୱନ୍ଦରେ ପକାଇ ଦିଆଯାଇଛି । ପ୍ରଶ୍ନର ଉତ୍ତର ଦେଲେ ତାହା ବିଚାରାଧୀନ ଥିବା କେସ୍‌ରେ ତାଙ୍କ ବିରୁଦ୍ଧରେ ବ୍ୟବହୃତ ହେବ ଏବଂ ଉତ୍ତର ନ ଦେଲେ ତାଙ୍କୁ ଏକ ନୂତନ ପୋଲିସ୍ କେସ୍‌ର ମୁକାବିଲା କରିବାକୁ ପଡ଼ିବ । ସମ୍ବିଧାନ ସ୍ରଷ୍ଟାମାନଙ୍କୁ ସ୍ମରଣ କରି ଆମ୍ଭେମାନେ ପରାମର୍ଶ ଦେଲୁ ଯେ ନିଜ ବିରୁଦ୍ଧରେ ସାକ୍ଷ୍ୟ ଦେବାପାଇଁ ତାଙ୍କୁ ବାଧ୍ୟ କରାଯାଇ ପାରିବ ନାହିଁ, ଏହାଦ୍ୱାରା ସମ୍ବିଧାନର ୨୦(୩) ଧାରାରେ ପ୍ରଦତ୍ତ ମୌଳିକ ଅଧିକାର ବ୍ୟାହତ ହେବ । ଏଣୁ ଉପରୋକ୍ତ ମର୍ମରେ ପତ୍ର ଲେଖି ସେ ଉତ୍ତର ଦେବାକୁ ରୋକଠୋକ୍ ମନା କରିଦିଅନ୍ତୁ । ସେ ଆମ ପରାମର୍ଶ ଅନୁଯାୟୀ କାର୍ଯ୍ୟ କଲେ ।

ଅଳ୍ପ ଦିନ ପରେ ଆରମ୍ଭ ହେଲା ଏକ ନୂତନ ମୋକଦ୍ଦମାର ସୂତ୍ରପାତ । ଜମାନବନ୍ଦୀ ଦେବା ପାଇଁ ପୋଲିସ ଅଫିସରଙ୍କ ନିର୍ଦ୍ଦେଶ ଅମାନ୍ୟ କରିବା ଅଭିଯୋଗରେ ଦଣ୍ଡବିଧି ଆଇନର ୧୭୯ ଦଫା ଅନୁଯାୟୀ କଟକରେ ତାଙ୍କ ବିରୁଦ୍ଧରେ ଏକ ଫୌଜଦାରୀ ମୋକଦ୍ଦମା ରୁଜୁ ହେଲା । ମୁଁ ଏକ କଳ୍ପନାତୀତ ଧର୍ମ ସଂକଟରେ ସମ୍ମୁଖୀନ ହେଲି । ଆମର ପରାମର୍ଶ ଗ୍ରହଣ କରି ସେ ଆଉ ଗୋଟିଏ ଫୌଜଦାରୀ ମୋକଦ୍ଦମାରେ ଜଡ଼ିତ ହେଲେ, ଅଥଚ ମାଜିଷ୍ଟ୍ରେଟ କୋର୍ଟରେ ମୁଁ ତାଙ୍କୁ ସହାୟତା ଦେବାକୁ ଅକ୍ଷମ ! ଏକେତ ବହୁ ବର୍ଷ ପୂର୍ବରୁ ମୁଁ ନିମ୍ନ କୋର୍ଟକୁ ଯିବା ଛାଡ଼ି ଦେଇଥିଲି, ପରନ୍ତୁ ମାଜିଷ୍ଟ୍ରେଟ ଯେ ତାଙ୍କର ସାଂବିଧାନିକ ଜବାବର ମର୍ମ ଓ ଗୁରୁତ୍ୱ ଉପଲବ୍ଧି କରି ପାରିବେ, ଏ ବିଶ୍ୱାସ ମଧ୍ୟ ନଥିଲା । କ'ଣ କରିବାକୁ ହେବ, ସ୍ଥିର କରି ପାରିଲି ନାହିଁ । ଦିନେ ଦୁଇଦିନ ବିଭିନ୍ନ ଦିଗରୁ ବିବାଦୀୟ ଅଭିଯୋଗଟିକୁ ପରୀକ୍ଷା ନିରୀକ୍ଷା କଲା ପରେ ସ୍ଥିର କଲି, ଏଥିପାଇଁ ହାଇକୋର୍ଟରେ ଏକ ରିଟ୍ ପିଟିସନ୍ ଦାଏର କରିବାକୁ ହେବ । ପୋଲିସର ଅଭିଯୋଗ ଗ୍ରହଣ କରି ମୋକଦ୍ଦମା ବିଚାରଯୋଗ୍ୟ ବୋଲି ମାଜିଷ୍ଟ୍ରେଟ୍ ଯେଉଁ ଆଦେଶ ଦେଇଅଛନ୍ତି, ତାକୁ ଅବୈଧ ଘୋଷଣା କରିବା ପାଇଁ ଆବେଦନ କରିବାକୁ ହେବ । ବନ୍ଧୁ ରଣଜିତ୍ ମହାନ୍ତି ମଧ୍ୟ ଏ ପ୍ରସ୍ତାବରେ ସହମତ ହେଲେ । ତଦନୁଯାୟୀ ମୁଁ ଏକ ରିଟ୍ ପିଟିସନ୍ ହାଇକୋର୍ଟରେ ଦାଖଲ କଲି ଓ ତାହା ବିଚାର ପାଇଁ ଗୃହୀତ ହେଲା ।

୧୯୭୫ ଅକ୍ଟୋବର ମାସରେ ଗତିକୃଷ୍ଣ ବାବୁ ଅବସର ନେବା ପରେ ଦିଲ୍ଲୀ ହାଇକୋର୍ଟର ବିଚାରପତି ଶଙ୍କରଙ୍କୁ ଓଡ଼ିଶାର ଚିଫ୍ ଜଷ୍ଟିସ ରୂପେ ନିଯୁକ୍ତ କରାଯାଇଥିଲା । ୧୯୭୭ରେ ଜନତା ସରକାର ପ୍ରତିଷ୍ଠିତ ହେବା ପରେ

ସର୍ବ ବରିଷ୍ଠ ବିଚାରପତି ସୁକାନ୍ତ କିଶୋର ରାୟ ଚିଫ୍ ଜଷ୍ଟିସ ଦାୟିତ୍ୱ ଗ୍ରହଣ କଲେ । ଚିଫ୍ ଜଷ୍ଟିସ ସୁକାନ୍ତ କିଶୋର ରାୟ ଓ ଜଷ୍ଟିସ ନବ କୁମାର ଦାସଙ୍କ କୋର୍ଟରେ ଏହି ରିଟ୍ ଆବେଦନଟି ବିଚାର ପାଇଁ ଉଠିଲା । ଅନେକ ଆଡ୍‌ଭୋକେଟ୍ ଓ ସାଂବାଦିକ ବଂଧୁ ମତେ ସତର୍କ କରାଇ ଦେଲେ ଯେ ୧୯୭୫ ମସିହାରେ ତାଙ୍କୁ ଉପେକ୍ଷା କରି ଶଙ୍କରଙ୍କୁ ଚିଫ୍ ଜଷ୍ଟିସ୍ ନିଯୁକ୍ତ କରିବା ହେତୁ ସୁକାନ୍ତ ବାବୁ ଅତ୍ୟନ୍ତ କ୍ଷୁବ୍ଧ । ଆଡ୍‌ଭୋକେଟ୍ ଜେନେରାଲ ବୀରେନ୍ ପଟ୍ଟନାୟକଙ୍କ ସହିତ ତାଙ୍କର ବ୍ୟକ୍ତିଗତ ସଂପର୍କ ଅତି ଘନିଷ୍ଠ, ଏଣୁ ଏ ଆବେଦନ ତାଙ୍କ କୋର୍ଟରେ ଫଳପ୍ରଦ ହେବ ନାହିଁ । ମୁଁ ଉତ୍ତର ଦେଲି, ସୁକାନ୍ତ ବାବୁଙ୍କ ସହ ମୋର ସଂପର୍କ କେବେ ତିକ୍ତ ନଥିଲା, ଏବେ ମଧ୍ୟ ନାହିଁ, ଏଣୁ ନ୍ୟାୟ ପ୍ରଦାନରେ କୌଣସି ପକ୍ଷପାତିତା ଆଶଂକା କରୁନାହିଁ । ଯାହହେଉ ଦୁଇ ସପ୍ତାହରୁ ଅଧିକ ସମୟ ଏହି କେସ୍‌ର ଶୁଣାଣି ଚାଲିଲା । ମୁଁ ପ୍ରଥମ ତିନି ଦିନ ବାଦାନୁବାଦ କଲି । ଆଡ୍‌ଭୋକେଟ୍ ଜେନେରାଲ ଚାରିଦିନ ଧରି ଜବାବ୍ ଦେଲେ । ମୋର ପ୍ରତି ଜବାବରେ ତିନିଦିନ ଗଡ଼ିଗଲା । ମୋର ଯୁକ୍ତି ଥିଲା ଯେ ପ୍ରଶ୍ନୋତ୍ତର ଜରିଆରେ ମୁଦାଲାଙ୍କୁ ନିଜ ବିରୁଦ୍ଧରେ ପ୍ରମାଣ ଯୋଗାଇ ଦେବାକୁ ବାଧ୍ୟ କରାଯାଇ ପାରିବ ନାହିଁ । ଏହାଦ୍ୱାରା ସଂବିଧାନର କୋଡ଼ିଏ ଅନୁଚ୍ଛେଦରେ ପ୍ରଦତ୍ତ ମୌଳିକ ଅଧିକାର କ୍ଷୁର୍ଣ୍ଣ ହେବ । ଏ ସଂପର୍କରେ ସୁପ୍ରିମ କୋର୍ଟର ଓ ବିଭିନ୍ନ ହାଇକୋର୍ଟର ଯେତେ ଯାହା ନଜିର ଥିଲା, ତାହା ପାଠ କଲି । କିନ୍ତୁ ମୋର ଯୁକ୍ତି ଗ୍ରହଣୀୟ ହେଲା ନାହିଁ । ରିଟ୍ ଆବେଦନ ପତ୍ରଟି ଖାରଜ ହେଲା ।

ହାଇକୋର୍ଟର ନିଷ୍ପତ୍ତି ମୋର ବିଦ୍ୟା ବୁଦ୍ଧି ଓ ଆଇନ ଜ୍ଞାନ ପ୍ରତି ଥିଲା ବିରାଟ ଆହ୍ୱାନ । ମୁଁ ଅନୁଭବ କଲି, ଏହି ଭ୍ରମାତ୍ମକ ନିଷ୍ପତ୍ତିର ପ୍ରତିରୋଧ କରିବା ମୋର ଆଇନଗତ କର୍ତ୍ତବ୍ୟ । ଶ୍ରୀମତୀ ଶତପଥୀ ଯଦି ରାଜନୈତିକ ପ୍ରତିହିଂସାର ଶିକାର ହୁଅନ୍ତି ଏବଂ ମୋର ପରାମର୍ଶ ଅନୁଯାୟୀ କାର୍ଯ୍ୟ କରି ଅଧିକ ବିପଦଗ୍ରସ୍ତ ହୁଅନ୍ତି, ତାଙ୍କୁ ବିପଦରୁ ଉଦ୍ଧାର କରିବା ମୋର ନୈତିକ ଦାୟିତ୍ୱ । ଦିନେ ଦୁଇ ଦିନ ମଧ୍ୟରେ ରାୟ ନକଲ ବାହାର କରି ସୁପ୍ରିମ କୋର୍ଟ ଅପିଲ ନିମନ୍ତେ ଅନୁମତି ପାଇଁ ହାଇକୋର୍ଟରେ ଦରଖାସ୍ତ କଲି । ଏହି ସମୟରେ ଚିଫ୍ ଜଷ୍ଟିସ୍ ଜିଲ୍ଲା ଜଜ୍ କୋର୍ଟ ପରିଦର୍ଶନ ସଂକ୍ରାନ୍ତରେ କଟକରୁ ଅନୁପସ୍ଥିତ ଥିଲେ । ଅନୁମତି ଦରଖାସ୍ତଟି ଆଦେଶ ପାଇଁ ଜଷ୍ଟିସ

ସଚ୍ଚିଦାନନ୍ଦ ଆଚାର୍ଯ୍ୟଙ୍କ କୋର୍ଟରେ ଉଠିଲା । କେଜାଣି କାହିଁକି ସେ ଏ ଦରଖାସ୍ତଟି ଶୁଣିବାକୁ ଅନିଚ୍ଛା ପ୍ରକାଶ କରି ଅନ୍ୟ ଜଜ୍‌ଙ୍କ ନିକଟରେ ଉଠାଇବା ପାଇଁ ଆଦେଶ ଦେଲେ । ପରଦିନ ଏ ଦରଖାସ୍ତ ଜଷ୍ଟିସ ରଂଗନାଥ ମିଶ୍ରଙ୍କ ଇଜଲାସରେ ଲିଷ୍ଟଭୁକ୍ତ ହେଲା । ଏ ନିଷ୍ପତ୍ତିରେ ସାଂବିଧାନିକ ପ୍ରଶ୍ନ ଜଡ଼ିତ ଥିବା ହେତୁ ଅନୁମତି ପାଇବାରେ କୌଣସି ଅସୁବିଧା ହେଲା ନାହିଁ । ହାଇକୋର୍ଟ ଅପିଲ୍ କରିବା ପାଇଁ ଅନୁମତି ପ୍ରଦାନ କରିଥିବା ହେତୁ ସୁପ୍ରିମ କୋର୍ଟରେ ସ୍ପେଶାଲ ଲିଭ ପାଇବା ମଧ୍ୟ ସହଜସାଧ୍ୟ ହେଲା ।

୧୯୭୮ ମାର୍ଚ୍ଚ ମାସରେ ଏହି ଅପିଲ ବିଚାର ପାଇଁ ତାଲିକାଭୁକ୍ତ ହେଲା । ବିଚାରକ ମଣ୍ଡଳୀର ସଭ୍ୟଥିଲେ ବରିଷ୍ଠ ବିଚାରପତି ଜଷ୍ଟିସ୍ ଭି. ଆର. କୃଷ୍ଣାଆୟାର, ଜଷ୍ଟିସ ଯଶୋବନ୍ତ ସିଂ ଓ ଜଷ୍ଟିସ ତୁଲଜାପୁରକର । ଜଷ୍ଟିସ କୃଷ୍ଣାଆୟାର ଓ ଜଷ୍ଟିସ ତୁଲଜାପୁରକର ଅତି ଟାଣୁଆ ଜଜ୍ ଓ ନିଜ ଚିନ୍ତାଧାରାରୁ ସେମାନେ ସହଜେ ଟଳିବାର ଲୋକ ନୁହନ୍ତି । ତୁଲଜାପୁରକାର ବମ୍ବେରେ ସଲିସିଟର ଥିବା ସମୟରେ ବମ୍ବେ ହାଇକୋର୍ଟରେ ପ୍ରାୟ ଦଶ ବର୍ଷ ଜଜ୍ ରହିବା ପରେ ସୁପ୍ରିମ କୋର୍ଟ ଜଜ୍ ଭାବରେ ପଦୋନ୍ନତି ପାଇଥିଲେ । କୃଷ୍ଣା ଆୟାରଙ୍କ ସହ ମୋର ପୂର୍ବରୁ ପରିଚୟ ଥିଲା ଏବଂ ଏଥି ପୂର୍ବରୁ ଅନେକ କେସ୍ ମୁଁ ତାଙ୍କ କୋର୍ଟରେ ବାଦାନୁବାଦ କରିଥିଲି । କିନ୍ତୁ ଜଷ୍ଟିସ୍ ତୁଲଜାପୁରକରଙ୍କ ପାଖରେ ମୁଁ ସଂପୂର୍ଣ୍ଣ ଅଜଣା । ପ୍ରଥମ ଦିନ ମଧ୍ୟାହ୍ନ ଭୋଜନ ପରେ ଅପିଲ୍‌ର ଶୁଣାଣି ଆରମ୍ଭ ହେଲା । ମୁଁ ଅଧଘଣ୍ଟା ମଧ୍ୟରେ ଅପିଲର ବିଷୟବସ୍ତୁ ପେଶ୍ କରିବା ପରେ ଅଦିନ ବଜ୍ରପାତ ପରି ହଠାତ୍ ବିରୋଧ ଆରମ୍ଭ ହେଲା ଜଷ୍ଟିସ ତୁଲଜାପୁରକରଙ୍କ ଆଡୁ ।

ସେ ପ୍ରଶ୍ନ ଆରମ୍ଭ କଲେ, ଏ ଆପତ୍ତି ମାଜିଷ୍ଟ୍ରେଟଙ୍କ କୋର୍ଟରେ ନିଆଯାଇ ପାରିବ ଏବଂ ମାଜିଷ୍ଟ୍ରେଟଙ୍କ ନିଷ୍ପତ୍ତି ବିରୁଦ୍ଧରେ ଫୌଜଦାରୀ କାର୍ଯ୍ୟ ବିଧି ଆଇନ ଅନୁଯାୟୀ ଉପରିସ୍ଥ କୋର୍ଟରେ ଅପିଲ୍ ବା ରିଭିଜନ କରାଯାଇ ପାରିବ । ଏଣୁ ବିଧାନ-ସମ୍ମତ ପ୍ରତିକାର ବ୍ୟବସ୍ଥା ଗ୍ରହଣ ନକରି ରିଟ୍ କୋର୍ଟର ଆଶ୍ରୟ ନିଆଯିବ କିପରି ? ମୁଁ ଅତି ବିନୟ ଭାବରେ ଉତ୍ତର ଦେଲି, ଯେଉଁ ଅଭିଯୋଗ ସଂବିଧାନ ସ୍ୱୀକୃତ ମୌଳିକ ଅଧିକାର କ୍ଷୁର୍ଣ୍ଣ କରୁଛି, ଆଇନ ଦୃଷ୍ଟିରୁ ତାହା ସଂପୂର୍ଣ୍ଣ ଅବୈଧାନିକ ଓ କ୍ଷମତା ବହିର୍ଭୂତ କାର୍ଯ୍ୟ ଏବଂ ଏପରି କାର୍ଯ୍ୟ ବିରୁଦ୍ଧରେ ରିଟ୍ କ୍ଷମତା ପ୍ରୟୋଗ କରିବା ବିଧିସଂଗତ । ପରନ୍ତୁ ହାଇକୋର୍ଟ ରିଟ୍ ଆବେଦନ ଗ୍ରହଣ କରି ନିଷ୍ପତ୍ତି ଦେବା ପରେ, ବିକଳ୍ପ ପ୍ରତିକାର ବ୍ୟବସ୍ଥା

ସଂପର୍କରେ ଆଲୋଚନା କରିବାର ପ୍ରୟୋଜନ ନାହିଁ । ଜଷ୍ଟିସ୍ ତୁଳଜାପୁରକର ମୋ ଉତ୍ତରରେ ସଂତୁଷ୍ଟ ହେଲେ ନାହିଁ । ଅନ୍ୟ ଦୁଇ ଜଣ ଜଜ୍ ଚୁପଚାପ ଶୁଣୁଥାନ୍ତି, କିନ୍ତୁ ସେ ମୋତେ ଗୁଡ଼େଇ ତୁଡ଼େଇ ପ୍ରଶ୍ନ କରିବାରେ ବ୍ୟସ୍ତ । ପ୍ରଥମେ ମୁଁ ଟିକେ ବିବ୍ରତ ହୋଇ ପଡ଼ିଲି । କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ମନବଳ ଫେରି ଆସିଲା । ମନେ ମନେ ସ୍ଥିର କରି ନେଲି, ପ୍ରଶ୍ନବାଣରେ ଭୟଭୀତ ହେବାର ବା ଜଜ୍‌ଙ୍କ ପ୍ରତି ସମ୍ମାନ ଦେଖାଇବାକୁ ଯାଇ ମହକିଲଙ୍କ ସ୍ୱାର୍ଥକୁ ଜଳାଂଜଳି ଦେବାର କାରଣ ନାହିଁ । ମୁଁ ଯଦି ଦୃଢ଼ତାର ସହ ଏହାର ପ୍ରତିରୋଧ କରିପାରେ, ହୁଏତ ଅନ୍ୟ ଦୁଇ ଜଣ ଜଜ୍‌ଙ୍କୁ ପ୍ରଭାବିତ କରିପାରିବି । ଏଣୁ ଅତି ସଂଭ୍ରମତା ତ୍ୟାଗ କରି ନିର୍ଭୟରେ ଓ ନିର୍ବିକାର ଭାବରେ ମୋତେ ମୋର ଯୁକ୍ତି ଉପସ୍ଥାପିତ କରିବାକୁ ହେବ । ଏହାପରେ ପ୍ରଶ୍ନ ଉପରେ ଗୁରତ୍ୱ ନ ଦେଇ, ସରସ ସାବଲୀଳ ଭାଷାରେ ଓ ଆବେଗପୂର୍ଣ୍ଣ କଂଠରେ ମୁଁ ମୋର ବକ୍ତବ୍ୟ ପେଶ୍ କରି ଚାଲିଲି ।

ଏବେ ସ୍ମରଣ ଅଛି, ଜଷ୍ଟିସ ତୁଳଜାପୁରକର ଆଲୋଚନା ମଧ୍ୟରେ ମୋତେ କହିଲେ, ‘‘ଜଣେ କ୍ରିମିନାଲ ଲୟର ଭାବରେ ଫୌଜଦାରୀ କାର୍ଯ୍ୟବିଧି ଆଇନରେ ସଂକଳିତ ବ୍ୟବସ୍ଥା ସଂପର୍କରେ ଆପଣ ନିଶ୍ଚୟ ଜାଣିଥିବେ ।’’ ମୁଁ ଦୃଢ଼ ସ୍ୱରରେ ଉତ୍ତର ଦେଲି, ‘‘ଫୌଜଦାରୀ ଆଇନ ମୋତେ ଜଣାଅଛି । କିନ୍ତୁ କିଏ ଆପଣଙ୍କୁ କହିଲା ଯେ ମୁଁ ଜଣେ କ୍ରିମିନାଲ ଲୟର? ବାଦାନୁବାଦ କରିବା ସମୟରେ ଅଧିବକ୍ତାଙ୍କୁ କ’ଣ ନିଜର ପରିଚୟ ଦେବାକୁ ହେବ?’’ ବିଚାରପତିଙ୍କ ମୁହଁ ଶୁଖିଗଲା । ଏତିକିବେଳେ ଜଷ୍ଟିସ କୃଷ୍ଣା ଆୟାର ତାଙ୍କ ଆଡ଼କୁ ଝୁଙ୍କି ପଡ଼ି ତାଙ୍କୁ ମୋର ପରିଚୟ ଦେଲେ । ଏହିପରି ସଂଘର୍ଷପୂର୍ଣ୍ଣ ପରିସ୍ଥିତିରେ ବାଦାନୁବାଦ ଚାଲିଥିବା ବେଳେ ଚାରିଟା ବାଜିଗଲା ଓ ପରଦିନକୁ କେସ୍ ମୁଲତବୀ ରହିଲା । ବିଚାରପତିମାନେ କୋର୍ଟ ହଲରୁ ଉଠିଯିବା ପରେ କୋର୍ଟ ହଲରେ ଉପସ୍ଥିତ ଆଡ୍‌ଭୋକେଟ୍‌ମାନେ ମତେ ବଧେଇ ଦେବାକୁ ଆରମ୍ଭ କଲେ । ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି । ସେମାନଙ୍କ ମତରେ ମୁଁ ଦୃଢ଼ତାର ସହ ପ୍ରତିରୋଧ କରି କେସ୍‌କୁ ବଂଚାଇ ଦେଇଛି, ନଚେତ୍ ଅପିଲ ଆଜି ଖାରଜ ହୋଇ ଯାଇଥାନ୍ତା । କେତେଜଣ ଆଡ୍‌ଭୋକେଟ୍ ବଂଧୁ ମନ୍ତବ୍ୟ ଦେଲେ, ଏଠି ସିନିଅର ଆଡ୍‌ଭୋକେଟ୍‌ମାନେ ବିଚାରପତିମାନଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହାନ୍ତି ନାହିଁ । କୋର୍ଟ ଆଡୁ ସାମାନ୍ୟ ବିରୋଧ ହେଲେ ହଁ ହାଁ ମାରି ବସି ପଡ଼ନ୍ତି । ଧନ୍ୟବାଦ ଯେ ଆପଣ ସେମାନଙ୍କର ପଦାଙ୍କ ଅନୁସରଣ କରିନାହାନ୍ତି ।

ପରଦିନ ଯେତେବେଳେ ହିଅରିଂ ଆରମ୍ଭ ହେଲା, ମୁଁ ଅନୁଭବ କଲି, ଜଷ୍ଟିସ ତୁଲଜାପୁରକରଙ୍କ ବିରୋଧ ଶିଥିଳ ହୋଇ ଯାଇଛି । ପ୍ରଥମ ଦିନ ମୁଁ ଯେଉଁ ନଜିରର ସୂଚନା ଦେଇଥିଲି, ପୂର୍ବ ରାତିରେ ସେ ବୋଧିହୁଏ ତା ଉପରେ ଆଖି ବୁଲାଇ ଦେଇଛନ୍ତି । ମୁଁ ଯେତେବେଳେ ଗୋଟି ଗୋଟି କରି ଆମ ସୁପ୍ରିମ କୋର୍ଟର ଓ ଆମେରିକାନ ସୁପ୍ରିମ କୋର୍ଟର ନିଷ୍ପତ୍ତି ପାଠ କରେ, ଦେଖିଲି ବିଚାରପତିମାନେ ମୋ ସହିତ ସେ ଗୁଡ଼ିକ ଧୈର୍ଯ୍ୟର ସହ ପଢ଼ୁଛନ୍ତି ଓ ତାର ଅର୍ନ୍ତନିହିତ ତତ୍ତ୍ୱ ଉପରେ ବିତର୍କ କରୁଛନ୍ତି । ଆଲୋଚନାରେ ମୁଖ୍ୟ ଅଂଶ ଗ୍ରହଣ କରୁଛନ୍ତି ଓ ବିତର୍କ ନିୟନ୍ତ୍ରଣ କରୁଛନ୍ତି, ବରିଷ୍ଠ ବିଚାରପତି ଜଷ୍ଟିସ କୃଷ୍ଣା ଆୟାର । ସେ ଦିନ କୋର୍ଟ ରୁମ୍‌ର ବାତାବରଣ ଥିଲା ଅତି ଉତ୍ସାହଜନକ । ସୁପ୍ରିମ କୋର୍ଟର ଏକ ସାଂବିଧାନିକ ବିଚାରକ ମଣ୍ଡଳୀ ୧୯୫୪ ମସିହାରେ ଏମ୍. ପି. ଶର୍ମା କେସ୍‌ରେ ଯେଉଁ ନିଷ୍ପତ୍ତି ଦେଇଥିଲେ, ତାକୁ ଉଦ୍ଧାର କରି ମୁଁ କହିଥିଲି ଯେ ମୁଦାଲାଙ୍କୁ ଧମକ ଚମକ ଦେଇ ସ୍ୱୀକାରୋକ୍ତି ଆଦାୟ କରିବା ପରିବର୍ତ୍ତେ ବିଧିବଦ୍ଧ ତଦନ୍ତ କରି ସତ୍ୟର ଉଦ୍‌ଘାଟନ କରିବା ପାଇଁ ବିଂଶ ଅନୁଚ୍ଛେଦର ତୃତୀୟ ଧାରା ଉଦ୍ଦିଷ୍ଟ । ସଂବିଧାନ ସ୍ରଷ୍ଟାମାନେ, ନିଜ ବିରୁଦ୍ଧରେ ସାକ୍ଷ୍ୟ ପ୍ରମାଣ ଦେବାକୁ ବାଧ୍ୟ କରିବା ବିରୁଦ୍ଧରେ ଯେଉଁ ପବିତ୍ର ନୀତିର ବୟାନ କରିଛନ୍ତି, ତାହା ବାସ୍ତବିକ ଏକ ମାନବିକ ଅଧିକାର- ଆମେରିକାନ ସଂବିଧାନରେ ଯାହାକୁ କହନ୍ତି ନୀରବ ରହିବାର ଅଧିକାର ବା 'ରାଇଟ୍ ଟୁ ସାଇଲେନ୍ସ' । ଏହି ନୀତିର ଉଲ୍ଲଂଘନ କଲେ 'ପୋଲିସ ତଦନ୍ତ ସମୟରେ ତୃତୀୟ ଶ୍ରେଣୀର ଉପାୟ ବା 'ଥାର୍ଡ୍ ଡିଗ୍ରୀ ମେଥଡ୍' ଅବଲମ୍ବନ କରିବାକୁ ପ୍ରୋତ୍ସାହିତ ହୁଅନ୍ତି, ମୁଦାଲା ବହୁ କ୍ଷେତ୍ରରେ ସାମୟିକ ଭାବରେ ଭୟଭୀତ ହୋଇ ଦୋଷ ସ୍ୱୀକାର କଲେ ମଧ୍ୟ, ଭବିଷ୍ୟତରେ ଆହୁରି କଠୋର ଓ ନିର୍ଦ୍ଦୟ ହେବାକୁ ପ୍ରତିଜ୍ଞାବଦ୍ଧ ହୁଏ ଓ ପରିଶେଷରେ ବିଚାର ପଦ୍ଧତିର ସମ୍ମାନ ଓ ନିରପେକ୍ଷତା ଉପରେ ଆସ୍ଥାହାନି ଘଟେ ।

ଷ୍ଟିଫେନ୍‌ଙ୍କର 'ହିଷ୍ଟ୍ରି ଅଫ୍ କ୍ରିମିନାଲ ଲ' ବହିରେ ଉଲ୍ଲିଖିତ କେତେକ ମୌଳିକ ବିଚାରଧାରା ପ୍ରତି ଜଜ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରି ମୁଁ କହିଥିଲି, ସଂବିଧାନ ସୃଷ୍ଟିର ବହୁ ପୂର୍ବରୁ ପୋଲିସ ଦ୍ୱାରା କ୍ଷମତାର ଅପବ୍ୟବହାର ଓ ମୁଦାଲାଙ୍କର ନୀରବ ରହିବାର ଅଧିକାର ବା 'ରାଇଟ୍ ଟୁ ସାଇଲେନ୍‌ସ' ନୀତି ସଂପର୍କରେ ଆନ୍ତର୍ଜାତିକ ସ୍ତରରେ ଆଲୋଚିତ ହୋଇଛି । ଅପରାଧ ଅନୁସଂଧାନ

ଓ ପ୍ରକୃତ ଦୋଷୀଙ୍କୁ ଦଣ୍ଡ ବିଧାନ କରିବା ପାଇଁ ମୁଦାଲାଠାରୁ ଜବରଦସ୍ତ ନିଜ ବିରୁଦ୍ଧରେ ପ୍ରମାଣ ଓ ସ୍ୱୀକାରୋକ୍ତି ସଂଗ୍ରହ କରିବା ଠାରୁ ନିନ୍ଦନୀୟ କାର୍ଯ୍ୟ ନାହିଁ । ଆସାମୀ ଉପରେ ମାନସିକ ଚାପ, ଧମକ ଏବଂ ଶାରୀରିକ ଅତ୍ୟାଚାର, ଛୁଂଚିଫୋଡ଼ା ଠାରୁ ଆରମ୍ଭ କରି ଆଖିରେ ଲଙ୍କା ଗୁଣ୍ଡ ପ୍ରୟୋଗ ଆଦି ବର୍ବର ପ୍ରଥା ସଂପର୍କରେ ସମ୍ବିଧାନ ସ୍ରଷ୍ଟାମାନେ ସଚେତନ ଥିଲେ । ଦୈହିକ ଓ ମାନସିକ ବଳ ପ୍ରୟୋଗ କରିବାର ସହଜ ପନ୍ଥା ଅବଲମ୍ବନ କରି ତଦନ୍ତକାରୀ ପୋଲିସ୍ ଅଫିସରମାନେ ପୁଙ୍ଖାନୁପୁଙ୍ଖ ଅନୁସଂଧାନ କରିବାରେ ଯେ ଅବହେଳା କରନ୍ତି, ସଂବିଧାନ ପ୍ରଣେତାମାନେ ଏ ବିଷୟରେ ଅବଗତ ଥିଲେ । ଏହି ସହଜ ପନ୍ଥା ସତ୍ୟ ଉଦ୍‌ଘାଟନର ସହାୟକ ନୁହେଁ ଏବଂ ବହୁ କ୍ଷେତ୍ରରେ ପ୍ରମାଣ ସଂଗ୍ରହ ଅତିରଂଜିତ ଓ ଏକତରଫା ହୋଇଯାଏ ଓ ପ୍ରକୃତ ଦୋଷୀଙ୍କୁ ଦଣ୍ଡ ବିଧାନ କରିବାରେ ଅନ୍ତରାୟ ହୁଏ । ସଂବିଧାନ ସ୍ରଷ୍ଟାମାନଙ୍କର ଏହି ଉପଲବ୍ଧି ୨୦ (୩) ଅନୁଚ୍ଛେଦର ଭିତ୍ତି ଏବଂ ଏହି ମୌଳିକ ଅଧିକାରକୁ ସଂକୁଚିତ କରିବାର ପ୍ରୟାସ ସର୍ବାଦୌ ଗ୍ରହଣୀୟ ନୁହେଁ ।

କେତେଗୁଡ଼ିଏ ଇଂଲିଶ ଓ ଆମେରିକାନ ନିଷ୍ପତ୍ତି ବିଶେଷତଃ ୧୯୬୬ ମସିହାର ମିରାଣ୍ଡା ବନାମ ଷ୍ଟେଟ୍ ଅଫ୍ ଅରିଜୋନା କେସ୍‌ରେ ଆମେରିକାନ୍ ସୁପ୍ରିମ କୋର୍ଟର ନିଷ୍ପତ୍ତି ଉଦ୍ଧାର କରି ମୁଁ କହିଥିଲି, ବିଂଶ ଅନୁଚ୍ଛେଦର ତୃତୀୟ ଧାରାରେ ବ୍ୟବହୃତ ଭାଷାରୁ ଏ କଥା ସ୍ପଷ୍ଟ ଯେ ନୀରବ ରହିବାର ଅଧିକାର କେବଳ କୋର୍ଟରେ ବିଚାର ସମୟରେ ଯେ ପ୍ରଯୁଜ୍ୟ ହେବ, ତା ନୁହେ, ବିଚାର ପୂର୍ବରୁ ପୋଲିସ ତଦନ୍ତ ସମୟରେ ମଧ୍ୟ ଉପଯୁକ୍ତ କ୍ଷେତ୍ରରେ ନୀରବ ରହିବାର ଅଧିକାର ପ୍ରୟୋଗ କରାଯାଇ ପାରେ ।

ମୋକଦ୍ଦମାର ଶୁଣାଣି ପ୍ରାୟ ଛ' ଦିନ ଚାଲିଲା । ମୁଁ ତିନି ଦିନ ବାଦାନୁବାଦ କରିବା ପରେ ସରକାରଙ୍କ ପକ୍ଷରୁ ଆଡ୍‌ଭୋକେଟ୍ ଜେନେରାଲ ପଟ୍ଟନାୟକ ଦୁଇ ଦିନ ଧରି ଜବାବ୍ ଦେବା ସମୟରେ ଏପରି ଏକ ଘଟଣା ଘଟିଲା, ଯାହାର ଛବି ଏବେ ମଧ୍ୟ ମନରେ ଜୀବନ୍ତ ରହିଛି । ବିତର୍କର ଶେଷ ଆଡ଼କୁ ଜଷ୍ଟିସ କୃଷ୍ଣା ଆୟାର ମନ୍ତବ୍ୟ ଦେଲେ, ସବୁ ନଜିର ବିଚାର କଲା ପରେ ମନେ ହେଉଛି ଯେ ଫୌଜଦାରୀ କାର୍ଯ୍ୟବିଧି ଆଇନର ୧୬୧ ଧାରା ଓ ସଂବିଧାନର ୨୦ (୩) ଅନୁଚ୍ଛେଦର ପାରସ୍ପରିକ ସଂପର୍କ ଉପରେ ଏ ପର୍ଯ୍ୟନ୍ତ ସୁପ୍ରିମକୋର୍ଟର କୌଣସି ସିଧା ସଳଖ ନିଷ୍ପତ୍ତି ନାହିଁ । ମୁଁ ଏ ମନ୍ତବ୍ୟର

ସୁଯୋଗ ନେଇ ହଠାତ୍ ଭାବବିହ୍ୱଳ ହୋଇ କହିଲି "ମାନ୍ୟବର ବିଚାରପତି ଗଣ ! ତାହାହିଁ ଯଦି ସତ୍ୟ, ଆଇନର ସ୍ୱରୂପ ଯଦି ଅନ୍ଧକାରାଚ୍ଛନ୍ନ, ରାଇଟ୍ ଟୁ ସାଇଲେନ୍ସ' ଅଧିକାରର ପରିସର ଯଦି ଏବେ ମଧ୍ୟ ଅସ୍ପଷ୍ଟ; ତାହାହେଲେ ଅଦାଲତର ଦରବାରରେ ଉପସ୍ଥିତ ଆବେଦନକାରିଣୀ ମହିଳା ନମ୍ରତାର ସହ ମାନ୍ୟବର ବିଚାରପତିମାନଙ୍କୁ ପ୍ରଶ୍ନ କରନ୍ତି, ଯଦି ଆଇନର ଅସ୍ପଷ୍ଟତା ସତ୍ତ୍ୱେ ଏହି ମୌଳିକ ଅଧିକାରର ପରିଧିକୁ ସେ ବ୍ୟାପକ ମନେ କରନ୍ତି ଓ ତଦନୁଯାୟୀ କାର୍ଯ୍ୟ କରନ୍ତି, ତାହାହେଲେ କ'ଣ ସେ ଅପରାଧୀ ବିବେଚିତ ହେବେ ? ଅସାଧୁ ଉଦ୍ଦେଶ୍ୟ ବା 'ମେନ୍‌ସରିଆ' ଯଦି ପ୍ରତ୍ୟେକ ଅପରାଧର ଉପାଦାନ ହୁଏ, ତା'ହେଲେ ଏ କ୍ଷେତ୍ରରେ ଅସାଧୁ ଉଦ୍ଦେଶ୍ୟ ପ୍ରମାଣିତ ହେଲା କିପରି ?"

ମୋର ଆବେଗପୂର୍ଣ୍ଣ ପ୍ରଶ୍ନର ଆଶୁ ଉତ୍ତର ମିଳିଲା ନାହିଁ । କିନ୍ତୁ ଉଭୟ ଜଷ୍ଟିସ କୃଷ୍ଣା ଆୟାର ଓ ଜଷ୍ଟିସ ଯଶୋବନ୍ତ ସିଂ ଚୌକିରେ ଆଉଜି ପଡ଼ି ମୁରୁକି ହସା ଦେବାକୁ ଆରମ୍ଭ କଲେ । ସେ ଦିନ ସେହି ମୁହୂର୍ତ୍ତରେ ମୁଁ ଅନୁଭବ କଲି, ଆଇନର ଅର୍ଥ ଅର୍ଥାନ୍ତର ଉପରେ ଯାହା ବିନ୍ୟାସ ହେଉ ପଛେ, ମୋକଦ୍ଦମାର ଫଳାଫଳ ଆମ ପକ୍ଷରେ ଯିବ । ଏହାପରେ ଜଷ୍ଟିସ କୃଷ୍ଣା ଆୟାରଙ୍କ ସହ ଅନେକ ଥର ଦେଖା ହୋଇଛି । ୧୯୮୦ ମସିହାରେ ଅବସର ନେବା ପରେ, ସେ ପାଂଚ ଛ'ଥର ଓଡ଼ିଶା ଆସିଛନ୍ତି । ଥରେ ମୋ ଘରେ ଅତିଥି ମଧ୍ୟ ହୋଇଛନ୍ତି । କିନ୍ତୁ ଯେବେ ଯେଉଁଠି ସାକ୍ଷାତ ହୁଏ, ସେ ସବୁବେଳେ କହନ୍ତି, ନନ୍ଦିନୀ ଶତପଥୀଙ୍କ ଆପିଲ୍‌ରେ ସେହି ସୁଦୀର୍ଘ ପ୍ରଶ୍ନଟିର ଭାଷା ଓ ଭଂଗୀ ସେ କେବେ ଭୁଲି ନାହାନ୍ତି ।

କୋର୍ଟ ରୁମ୍‌ରେ ଯେଉଁ ପ୍ରଶ୍ନର ଉତ୍ତର ମିଳି ନଥିଲା, ତାହା ମିଳିଲା ପନ୍ଦର ଦିନ ପରେ ପ୍ରଦତ୍ତ ସୁପ୍ରିମ କୋର୍ଟର ରାୟରେ । ନନ୍ଦିନୀ ଦେବୀ ମୋକଦ୍ଦମାରେ ଜୟଯୁକ୍ତ ହୋଇଥିଲେ । ପୋଲିସ ପ୍ରଶ୍ନର ଉତ୍ତର ନ ଦେବା ହେତୁ ତାଙ୍କ ବିରୁଦ୍ଧରେ ଆଗତ ଫୌଜଦାରୀ କେସ୍ ଖାରଜ୍ ହୋଇଥିଲା । ଭାରତର ସାଂବିଧାନିକ ବିକାଶର ଇତିହାସରେ ଜଷ୍ଟିସ୍ ଭି. ଆର୍. କୃଷ୍ଣା ଆୟାରଙ୍କର ଏହି ରାୟ ଏକ ଉଜ୍ଜ୍ୱଳ ଧ୍ରୁବତାରା । ତଦନ୍ତ ସମୟରେ ପୋଲିସ କ'ଣ କରିବେ ନ କରିବେ, ବିଶେଷତଃ ମହିଳା ଆସାମୀମାନଙ୍କ ଜମାନବନ୍ଦୀ ଗ୍ରହଣ କରିବା ସମୟରେ ପୋଲିସ କି ପ୍ରକାରର ସତର୍କତା ଅବଲମ୍ବନ କରିବେ, ସେ ବିଷୟରେ ଜଷ୍ଟିସ ଆୟାର ଅତି ମର୍ମାନ୍ତିକ ଚେତାବନୀ ଦେଇଛନ୍ତି ।

ତାଙ୍କ ମତରେ ଫୌଜଦାରୀ କାର୍ଯ୍ୟବିଧି ଆଇନ ଅନୁଯାୟୀ ଆସାମୀର ଜମାନବନ୍ଦୀ ନେବା ପୋଲିସର କ୍ଷମତାଧୀନ କାର୍ଯ୍ୟ, କିନ୍ତୁ ତାର ଅର୍ଥ ନୁହେ ଯେ ପ୍ରଶ୍ନଜାଲରେ ଛନ୍ଦି ସ୍ୱସ୍ୱାର୍ଥ ବିରୋଧୀ ସ୍ୱୀକାରୋକ୍ତି ଦେବା ପାଇଁ ତାଙ୍କୁ ବାଧ୍ୟ କରାଯାଇ ପାରିବ । ଯଦି ପୋଲିସଙ୍କ ଦ୍ୱାରା ପ୍ରସ୍ତୁତ ପ୍ରଶ୍ନାବଳୀ ମଧ୍ୟରୁ କେତେକ ସାଧାରଣ ଓ ସରଳ ପ୍ରଶ୍ନ ଅଥଚ ଅଧିକାଂଶ ପ୍ରଶ୍ନ ଶାରୀରିକ ବା ମାନସିକ ଚାପ ପ୍ରୟୋଗ କରି ଆସାମୀଙ୍କ ଠାରୁ ପ୍ରମାଣ ସଂଗ୍ରହ ପାଇଁ ଉଦ୍ଦିଷ୍ଟ, ତା ହେଲେ ସେପରି ପ୍ରଶ୍ନର ଉତ୍ତର ଦେବାକୁ ବାଧ୍ୟ କଲେ, ନୀରବ ରହିବା ବା 'ରାଇଟ୍ ଟୁ ସାଇଲେନ୍ସ' ଅଧିକାର ବ୍ୟାହତ ହେବ । ଜଷ୍ଟିସ ଆୟାର ପୁନଶ୍ଚ ସୂଚନା ଦେଇଥିଲେ ଯେ ପୋଲିସ ଥାନାର ପ୍ରତିକୂଳ ବାୟୁମଣ୍ଡଳରେ ଜଣେ ମହିଳାଙ୍କ ଠାରୁ ବୟାନ ସଂଗ୍ରହ କରିବା ଏକ ପ୍ରକାରର ଭୟ ଓ ଚାପ ପ୍ରୟୋଗ ସହିତ ସମାନ । ଏପରି ପରିସ୍ଥିତିରେ ମୁଦାଲାଙ୍କୁ ତାଙ୍କ ଓକିଲଙ୍କ ସହ ପରାମର୍ଶ କରିବା ପାଇଁ ପୂର୍ଣ୍ଣ ସୁଯୋଗ ଦେବା ଉଚିତ ।

ସୁପ୍ରିମ୍ କୋର୍ଟ ଯେଉଁ ଦିନ ରାୟ ପ୍ରଦାନ କଲେ ମୁଁ ସେ ଦିନ କୋର୍ଟରେ ଉପସ୍ଥିତ ଥିଲି । ପର ଦିନ ସକାଳେ ସମସ୍ତ ଜାତୀୟ ଦୈନିକ ସମ୍ବାଦ ପତ୍ରରେ ତିନି ଚାରି ସ୍ତମ୍ଭର ହେଡ୍ ଲାଇନ ସହ ରାୟର ବିବରଣୀ ପ୍ରକାଶିତ ହୋଇଥିଲା । ଦିଲ୍ଲୀ 'ଟାଇମ୍ସ ଅଫ ଇଣ୍ଡିଆ' ପୂରା ଅଢ଼େଇ କଲମ, 'ହିନ୍ଦୁସ୍ଥାନ ଟାଇମସ' ଓ ଇଣ୍ଡିଆନ ଏକ୍ସପ୍ରେସ'ରେ ଦୁଇ କଲମ ଓ ଷ୍ଟେଟସମ୍ୟାନ କାଗଜରେ ତିନି କଲମ ସଂବଳିତ ବିବରଣୀ ଛାପା ଯାଇଥିଲା । ରାଜନୈତିକ ପ୍ରତିହିଂସାର ବହ୍ନି ଅନ୍ତତଃ ସାମୟିକ ଭାବରେ ନିର୍ବାପିତ ହେଲା ।



# ଅଳକା ମହାବିଦ୍ୟାଳୟ

୧୯୭୯ ମସିହା ସେପ୍ଟେମ୍ବର ମାସ, ବର୍ଷା ପ୍ରାୟ ଛାଡ଼ି ଆସିଛି । ଦିନେ ସଂଧ୍ୟା ସମୟରେ ଆମ ଗାଁର ରତ୍ନାକର ଦାସ, ଭ୍ରମରବର ଦାଶ, ଦର୍ପ ନାରାୟଣ ଦାସ ପ୍ରମୁଖ କେତେଜଣ ଉତ୍ସାହୀ ବ୍ୟକ୍ତି ଆମ ଘରେ ପହଂଚିଲେ । ସେମାନେ ଆସିଥିଲେ ଅଳକା ମହାବିଦ୍ୟାଳୟ ପାଇଁ ମୋଠାରୁ ଚାନ୍ଦା ସଂଗ୍ରହ କରିବା ନିମନ୍ତେ । ସେମାନଙ୍କ ଠାରୁ ଶୁଣିଲି, ଆମ ଗାଁ ଲୋକେ ଏଠୁ ସେଠୁ ସାହାଯ୍ୟ ମାଗି ଅଳକା ନଦୀ ଶଯ୍ୟାରେ ଅନନ୍ତ ବଟ ନିକଟରେ ଚାରି ବଖରା ଚାଳଘର ତିଆର କରିଛନ୍ତି ଏବଂ ସେଠି ଆରମ୍ଭ ହୋଇଛି କଲେଜ । ଅନନ୍ତ ବଟର ସେଇ ବିରାଟ ବରଗଛ, କେତେ ଶହ ବର୍ଷ ବୟସ କାହାକୁ ଜଣା ନାହିଁ । ଣିଅ ମାଡ଼ି ମାଡ଼ି ଦଶ ବାର ଗୁଣ୍ଡ ଜାଗା ମାଡ଼ି ଯାଇଛି । ଶହେ ବର୍ଷ ତଳେ ଅଳକା ନଦୀର ମୁହଁ ବନ୍ଧ କରି ଦିଆଯାଇଛି, ଜଳ-ସେଚନ ସେବା ପ୍ରଚଳନ ପାଇଁ ଅନନ୍ତବଟ ନିକଟରେ ଶୁଷ୍କ ଅଳକା ଶଯ୍ୟାର ଉତ୍ତର ଓ ଦକ୍ଷିଣ ଦୁଇ ପଟେ ଦୁଇଟା ମଶାଣି । ରାତିରେ ସେ ବାଟେ ଲୋକେ ଯିବାକୁ ଭୟ କରନ୍ତି । ଅଥଚ ସେଇଠି ପୁଣି କଲେଜ । ଖଜୁରୀ ଗଛ ଖୁଣ୍ଟ ଉପରେ ଚାରି ବଖରା ଚାଳଘର କଥା ଶୁଣି ମନଟା ଆହୁରି ଫିକା ପଡ଼ିଗଲା । ମନେ ପଡ଼ିଲା ରେଭେନ୍ସା କଲେଜର ଛବି, ଯେଉଁଠି ୧୯୪୦ ମସିହାରେ ମୁଁ ଥିଲି ଜଣେ ଛାତ୍ର । କଲେଜ କହିଲେ ମୋ ଆଖି ଆଗରେ ଅନ୍ୟ କୌଣସି ଚିତ୍ର ଆସେ ନାହିଁ । ମୁଁ ଉଦ୍ୟୋକ୍ତାମାନଙ୍କୁ କହିଲି, ତୁମେମାନେ ଯେ ଗୋଟିଏ ମହାବିଦ୍ୟାଳୟ ଗଢ଼ି ପାରିବ, ଏ ବିଶ୍ୱାସ ମୋର ନାହିଁ । ପରେ କେତେବେଳେ ଆସ, ବିଚାର କରି ଦେଖିବି ।

ସେମାନେ ନିରାଶ ହୋଇ ଫେରିଗଲେ ସତ୍ୟ, କିନ୍ତୁ ପୁଣି ଫେରିଲେ ପନ୍ଦର ଦିନ ପରେ । ସେମାନଙ୍କ ସହିତ ଥିଲେ ବିଶିଷ୍ଟ ପ୍ରାବଂଧିକ ଅଧ୍ୟାପକ ଚିତ୍ତରଂଜନ ଦାସଙ୍କ ବଡ଼ ଭାଇ ମୋର ବଂଧୁ ନବନିଯୁକ୍ତ ପ୍ରିନ୍ସିପାଲ ଶ୍ରୀଚରଣ ଦାସ । ସେମାନଙ୍କୁ ଦେଖି ମୁଁ ମନରେ ଗୋଟିଏ ସାଲିସ ବାଂଧି ଦେଲି । ମଣିଷ ଯେତେ ବଡ଼ ହେଉ ପଛକେ, ଜନ୍ମ ହୁଏ କ୍ଷୁଦ୍ର ଶିଶୁ ଭାବରେ । ଆମ ପିଲାଦିନେ, ୧୯୨୭-୨୮ ମସିହାରେ ସେ ଅଂଚଳର ଏକମାତ୍ର ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ଥାପିତ ହୋଇଥିଲା ଆମ ଗାଁରେ ଚାରି ବଖରା ଚାଳ ଘରେ । ଏଣୁ ବାଗଲପୁରବାସୀଙ୍କ ଦକ୍ଷତା ଉପରେ ଟୀକା ଟିପ୍ପଣୀ ନ କରି ମୁଁ ପାଂଚ

ହଜାର ଟଙ୍କା ଶିର ଭାଇଙ୍କ (ଶ୍ରୀଚରଣ ଦାସ) ହାତକୁ ବଢ଼ାଇ ଦେଲି । ସେ ମଧ୍ୟ ଥିଲେ ମୋର ନନାଙ୍କ ଛାତ୍ର । ମୋର ଏକମାତ୍ର ଅନୁରୋଧ ଥିଲା, ଯଦି କଲେଜ ପାଇଁ କେବେ କୋଠାବାଡ଼ି ତିଆର କର, ମୋ ନନାଙ୍କ ସ୍ମୃତିରେ କଲେଜରେ ଗୋଟିଏ କୋଠରୀ କରିଦେବ । ଅଧିକ ଟଂକା ଆବଶ୍ୟକ ହେଲେ ମୁଁ ଦେବି ।

ପାଖଆଖ ଗାଁରୁ ନଡ଼ା ବାଉଁଶ ସଂଗ୍ରହ କରି ଯେଉଁମାନେ ଚାରି ବଖରା ଚାଳଘର ଟେକି ଦେଇଥିଲେ, ସେମାନଙ୍କ ପାଇଁ ଏକକାଳୀନ ପାଂଚ ହଜାର ଟଂକାର ଚାନ୍ଦା ଥିଲା ଖୁବ୍ ଉତ୍ସାହଜନକ । କିଛି ଦିନ ପରେ ମୋ ନିକଟକୁ ଏକ ନିମନ୍ତ୍ରଣ ଆସିଲା, ଅଳକାରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ଯୋଗ ଦେବା ପାଇଁ । ଅନୁରୋଧ ଭାଂଗି ପାରିଲି ନାହିଁ । ନଭେମ୍ବର ସାତ ତାରିଖ ଦିନ ସେ ସଭାରେ ଦେଖିଲି, ବାଗଲପୁର, ମଲ୍ଲିପୁର, ବାଲିଆ, ବସନ୍ତପୁର ସତ୍ପେଇ ଓ ସାତପୁରା, ବାସନ୍ଦ୍ରା, କଣ୍ଟିଲୋ ଓ ଅଡ଼ଙ୍ଗ ନାଇଲୋ ଆଦି ଗ୍ରାମର ବହୁ ମୁଖିଆ ଲୋକ ଉପସ୍ଥିତ । କଟକ ଓ ଭୁବନେଶ୍ୱରରେ ବସବାସ କରୁଥିବା ବାଗଲପୁରର ବହୁ ଲୋକ ମଧ୍ୟ ସଭାରେ ଯୋଗ ଦେଇଛନ୍ତି । ଏମାନଙ୍କର ଉତ୍ସାହ ଓ ଆଗ୍ରହ ଦେଖି ମୁଁ ବିହ୍ୱଳ ହୋଇ ପଡ଼ିଲି । ଦର୍ପ ନାରାୟଣ ଦାସ ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତି ଆରମ୍ଭ ହୋଇଥିବା ମହାବିଦ୍ୟାଳୟ ସଂପର୍କରେ କେତେକ ସୂଚନା ଦେଲେ । ରାଧାମୋହନ ବାବୁ (ଅବସରପ୍ରାପ୍ତ ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ସ୍ୱର୍ଗୀୟ ରାଧାମୋହନ ମହାନ୍ତି) ପ୍ରସ୍ତାବ କଲେ ମୁଁ ପରିଚାଳନା ସମିତିର ସଭାପତି ଦାୟିତ୍ୱ ନିଏ । ସେ ସେତେବେଳେ ଭୁବନେଶ୍ୱରର ସ୍ଥାୟୀବାସିନ୍ଦା ହୋଇଥିଲେ ମଧ୍ୟ, ତାଙ୍କର ଜନ୍ମ ବାଇଶି ମୌଜାରେ । ବୟସରେ ସେ ମୋ ଠାରୁ ବଡ଼, ବରଗଡ଼ ପଂଚାୟତ କଲେଜର ଆରମ୍ଭ କାଳରେ ସେ ବରଗଡ଼ର ସବ୍‌ଡ଼ିଭିଜନାଲ ଅଫିସର ଭାବରେ କଲେଜ ଗଢ଼ିବାର ମୁଖ୍ୟ ଦାୟିତ୍ୱ ଗ୍ରହଣ କରିଥିଲେ । ଭୁବନେଶ୍ୱର ବକ୍ସି ଜଗବଂଧୁ ଇଂଲିଶ୍ ମିଡ଼ିୟମ ସ୍କୁଲର ସେ ଅନ୍ୟତମ ପ୍ରତିଷ୍ଠାତା । ଏଭଳି ଅଭିଜ୍ଞ ବ୍ୟକ୍ତିଙ୍କ ସ୍ଥାନରେ ପରିଚାଳନା ଦାୟିତ୍ୱ ନେବା ପାଇଁ ମୁଁ ମନ ସ୍ଥିର କରିପାରିଲି ନାହିଁ । ସଭା ଡିସେମ୍ବର ଆଠ ତାରିଖକୁ ମୁଲତବୀ ରହିଲା ।

ଏ ମଧ୍ୟରେ ଦିନେ ରାଧାମୋହନ ମହାନ୍ତି ଆମ ଘରେ ପହଂଚିଲେ । ପରେ ଶୁଣିଲି ମତେ ପ୍ରଭାବିତ କରିବା ପାଇଁ ତାଙ୍କୁ କୁଆଡ଼େ ପଠାଯାଇଥିଲା । ଅଳକା କଲେଜ ସଂପର୍କରେ ଆଲୋଚନା ହେଲା । ସେ ମତ ଦେଲେ ଯେ

ମୁଁ ହାର୍ଦ୍ଦିକ ସହଯୋଗ ନକଲେ ଏ ଚାଳଘରଟା କେତେ ଦିନ ପରେ ଭୁଷୁଡ଼ି ପଡ଼ିବ । କଥା କେତେ ପଦ ଥିଲା ବେଶ୍ ଭାବବ୍ୟଞ୍ଜକ । ଡିସେମ୍ବର ଆଠ ତାରିଖ ୧୯୭୯ ମସିହା, ମୋ ଜୀବନର ଏକ ଉଲ୍ଲେଖନୀୟ ଦିନ । ସେ ଦିନର ସାଧାରଣ ସଭାରେ ସମସ୍ତେ ଦାବୀ କଲେ ଯେ ମୁଁ କଲେଜ ଗଭର୍ଣ୍ଣିଂ ବଡ଼ିର ସଭାପତି ଓ ରାଧାମୋହନ ମହାନ୍ତି ସଂପାଦକ ରହନ୍ତୁ । ଲୋକଙ୍କର ଆଗ୍ରହ ଉଲ୍ଲାସ ଦେଖି ମୁଁ ନାହିଁ କରି ପାରିଲି ନାହିଁ । ସେହିଦିନ ଠାରୁ ମୁଁ ଅଳକା ମହାବିଦ୍ୟାଳୟ ସହିତ ଛନ୍ଦି ହୋଇଗଲି, କାୟ ମନୋବାକ୍ୟରେ । ଅଳକା ବି ମତେ ଛାଡ଼ିଲା ନାହିଁ । ଏହାପରେ ଦୀର୍ଘ ବାର ବର୍ଷ ଧରି ଅଳକା ମହାବିଦ୍ୟାଳୟ ସହିତ ମୋର ଘନିଷ୍ଠ ଅଂଗାଙ୍ଗୀ ସଂପର୍କ ରହି ଆସିଛି । ଏ ସଂପର୍କ ଅବିଚ୍ଛିନ୍ନ, ଅବିଚ୍ଛେଦ୍ୟ । କଲେଜ ପରିଚାଳନା ସହ ମୁଁ ସଂପୃକ୍ତ ରହେ କି ନ ରହେ, ଜୀବନର ଶେଷ ନିଃଶ୍ୱାସ ଚାଲୁଥିବା ଯାଏ, ଅଳକାର ସ୍ମୃତି ଅବିସ୍ମରଣୀୟ ରହିବ ।

ଯେଉଁ ଚାରି ବଖରା ଚାଳଘରକୁ ଉଦ୍ୟୋକ୍ତାମାନେ ନିଜ କୃତିତ୍ୱର ପରାକାଷ୍ଠା ମନେ କରୁଥିଲେ, ତୁଣ୍ଡରେ ପ୍ରକାଶ ନ କଲେ ମଧ୍ୟ, ମୋ ଆଖିରେ ସେ ଥିଲା ନିପଟ ଦାରିଦ୍ର୍ୟ ଓ ଅଭାବର ଅବତାର । ଆଦି ଯୁଗର ମୁନି ଋଷିଙ୍କ ଆଶ୍ରମ, ସତ୍ୟବାଦୀର ଛୁରିଅନା ବଣ ବା ବାଣପୁରର ବନ ବିଦ୍ୟାଳୟର ଯୁଗ ଚାଲି ଯାଇଛି । ଆଧୁନିକ ଯୁଗର ଅନ୍ୟ ଶିକ୍ଷାନୁଷ୍ଠାନ ସହିତ ତାଳ ଦେଇ ଚାଲିବାକୁ ହେଲେ, ସାଧୁ ସୁଦକ୍ଷ ଅଧ୍ୟାପକ, ଉଚ୍ଚକୋଟୀର ଅଧ୍ୟାପନା ଓ ନୂତନ ଶିକ୍ଷାଦାନ ପ୍ରଣାଳୀର ପ୍ରୟୋଜନ ଏବଂ ତା ସହିତ ଆବଶ୍ୟକ ଆଧୁନିକ ଅଧ୍ୟାପନା ଗୃହ ବା ପାଠଶାଳା, ଶିକ୍ଷକମାନଙ୍କର ବସବାସର ବ୍ୟବସ୍ଥା, ଅଧ୍ୟୟନର ବାତାବରଣ ଓ ଉନ୍ନତ ପରିବେଶ । ନବ ପ୍ରତିଷ୍ଠିତ ମହା ବିଦ୍ୟାଳୟରେ ଏ ପ୍ରକାରର କୌଣସି ସୁବ୍ୟବସ୍ଥା ତ ନଥିଲା, ଏପରିକି ଅଧ୍ୟାପକ ଛାତ୍ରଛାତ୍ରୀମାନଙ୍କର ବ୍ୟବହାର ପାଇଁ ପିଇବା ପାଣିର ମଧ୍ୟ ବନ୍ଦୋବସ୍ତ ନଥିଲା । ସବୁ ଅବ୍ୟବସ୍ଥାର ଶିଖରରେ ଥିଲା ଅନ୍ଧାର ରାତ୍ରିର ଅସହ୍ୟ ନିର୍ଜ୍ଜନତା । ଅନତ ବଟର ବିରାଟ ଗଛର ଶିଅଗୁଡ଼ାକ ଉପରୁ ଝୁଲୁଥାନ୍ତି । ଯେଉଁ ଶିଅଗୁଡ଼ାକ ମାଟିରେ ଲାଗି ଯାଇଛି, ଛାପି ଛାପିକା ଜହ୍ନ ଆଲୁଅରେ ସେ ସବୁଦିଶେ ଗୋଟିଏ ଗୋଟିଏ ବିଶାଳ ରାକ୍ଷସର ଗୋଡ଼ ପରି । ନଈ ହୁଡ଼ା ଉପରେ ଆଉ କେତୁଟା ବରଗଛ । ନିକଟରେ ଝାଉଁ ଓ କାଜୁ ବଣ । ଦୁଇ ପଟରେ ଦୁଇଟା ଶ୍ମଶାନ । ଗାଁରେ ଲୋକମାନେ ବିଶ୍ୱାସ କରନ୍ତି, ବରଗଛର କୋଟର

ଓ ଗହଳିଆ ତାଳ ଭୂତ ପ୍ରେତଙ୍କର ଆଶ୍ରୟସ୍ଥଳ ଓ ଅନ୍ଧାର ରାତିରେ ଆରମ୍ଭ ହୁଏ ସେମାନଙ୍କର ଲୀଳା । ଏହି ପରିବେଶ ମଧ୍ୟରେ ଯେଉଁ ଚାରିଜଣ ଅଧ୍ୟାପକ ଗୋଟିଏ ଚାଳଘରେ ଏକତ୍ର ରହି ବସବାସ କରୁଥିଲେ, ସେମାନଙ୍କୁ ଅତି ସାହସୀ ଓ ନିର୍ଭୀକ ମନେ କରିବାକୁ ହେବ ।

କଲେଜ ପରିଚାଳନା ଦାୟିତ୍ୱ ନେବା ପରେ ମୋର ପ୍ରଥମ କାମ ହେଲା, କଲେଜ ପରିସର ମଧ୍ୟରୁ ଭୂତ ଭୟର ସଂହାର କରିବା । ବ୍ୟକ୍ତିଗତ ଭାବରେ ମୁଁ ଭୂତ ପ୍ରେତରେ ବିଶ୍ୱାସ କରେ ନାହିଁ କିମ୍ବା ଭୂତ ମହାରାଜଙ୍କ ସହ କେବେ ମୋର ସାକ୍ଷାତ ହୋଇନାହିଁ । କଲେଜର କୋଠାବାଡ଼ି ନିର୍ମାଣ ସଂକ୍ରାନ୍ତରେ ମତେ ଅନେକଥର ଅନନ୍ତବଟରେ ରାତି କଟାଇବାକୁ ହୋଇଛି । ଦୁଇଟା ବେଂଚ ଯୋଡ଼ି ବହୁବାର ଚାଳଘର ସାମନା ପଡ଼ିଆରେ ଏକଲା ଶୋଇଛି । କେବେ ଦିନେ ତଥାକଥିତ ପ୍ରେତଲୀଳାର ଦର୍ଶନ ସୁଯୋଗ ମିଳି ନାହିଁ । ମୋର ଧାରଣା ସବୁ କୁସଂସ୍କାର ଓ ଅନ୍ଧ ବିଶ୍ୱାସର ମୂଳରେ ଅଛି ଅଜ୍ଞାନ ଅନ୍ଧକାର । ଆଲୋକ କେବଳ ଜୀବନ ସୃଷ୍ଟି ଓ ସୁରକ୍ଷାର ଉପାଦାନ ନୁହେ, ଏହା ହିଁ ଅଗ୍ରଗତିର ନିୟାମକ । ଏଣୁ ଜ୍ଞାନ ବିକାଶ ପାଇଁ ସ୍କୁଲ କଲେଜ ଯେତିକି ଆବଶ୍ୟକ, ସେତିକି ଆବଶ୍ୟକ ଆଲୋକ, ଉଜ୍ଜ୍ୱଳ ଆଲୋକର ବ୍ୟବସ୍ଥା । ସେଥିପାଇଁ ମୋର ପ୍ରଥମ ଉଦ୍ୟମ ହେଲା କଲେଜ ହତାକୁ କିପରି ବିଜୁଳି ଆଲୁଅ ଆସିବ । ମୁଁ ସେ ସମୟରେ ଇଲେକ୍‌ଟ୍ରିସିଟି ବୋର୍ଡ଼ର ଆଡ୍‌ଭୋକେଟ ଥାଏ । ଏବେ ମଧ୍ୟ ଅଛି । ବୋର୍ଡ଼ର ଉପରିସ୍ଥ ଇଂଜିନିଅରମାନେ ଅନେକ ସମୟରେ ମୋ ପାଖକୁ ପରାମର୍ଶ ପାଇଁ ଆସନ୍ତି । ଏହି ସୁଯୋଗରେ ଦିନେ କଲେଜକୁ ବିଜୁଳି ସଂଯୋଗର ବ୍ୟବସ୍ଥା କରିବାକୁ ସେମାନଙ୍କୁ ଅନୁରୋଧ କଲି । କମର୍ସ ବିଭାଗର ସୁପରିଟେଣ୍ଡିଂ ଇଂଜିନିଅର ସେତେବେଳେ ମିଷ୍ଟର ନରସିଂହମ୍ ଓ ଏକଜିକ୍ୟୁଟିଭ୍ ଇଂଜିନିଅର ଶ୍ରୀ ପୀତାମ୍ବର କର । ଉଭୟ ପରେ ଚିଫ୍ ଇଂଜିନିଅର ଭାବରେ ଚାକିରୀରୁ ଅବସର ନେଇଛନ୍ତି । ଇଲେକ୍‌ଟ୍ରିକ ଲାଇନ୍ କଟକ ଜଗତସିଂହପୁର ରାସ୍ତା ଦେଇ କଲେଜରୁ ପ୍ରାୟ ଏକ କିଲୋମିଟର ଦୂରରେ ଯାଇଥାଏ । କଲେଜକୁ ଲାଇନ ଆଣିବା ପାଇଁ ବହୁ ଖର୍ଚ୍ଚାନ୍ତ ହେବାକୁ ପଡ଼ିଥାନ୍ତା । ବୋର୍ଡ଼ର ଉପରୋକ୍ତ ଦୁଇଜଣ ଇଂଜିନୟରଙ୍କ ସଦିଚ୍ଛା ଓ ସାହାଯ୍ୟ ହେତୁ ୧୯୮୦ ମସିହା ମାର୍ଚ୍ଚ ମାସରେ କଲେଜ ଦ୍ୱାରରେ ଇଲେକ୍‌ଟ୍ରିକ ଲାଇଟ ଖୁଣ୍ଟ ପଡ଼ିଲା । ଦିନେ ସଂଧ୍ୟାରେ ଅନ୍ଧାରର ବୁକୁ ଭେଦ କରି ଜଳି ଉଠିଲା ଆଲୋକ ବର୍ତ୍ତିକା । ଅନ୍ଧାର ଓ ଆଲୁଅର ପାର୍ଥକ୍ୟଟା ବର୍ତ୍ତମାନର କଲେଜ ଅନ୍ତେବାସୀମାନେ

ହୁଏତ ବୁଝି ପାରିବେ ନାହିଁ । କିନ୍ତୁ ସେ ଦିନ ଆମେ ଅନୁଭବ କରିଥିଲୁ, ଯେପରି ଏ ଅଂଚଳରେ ଗୋଟାଏ ବୈପ୍ଳବିକ ପରିବର୍ତ୍ତନ ଘଟି ଯାଇଛି ।

ସେହି ବର୍ଷ ମାର୍ଚ୍ଚ ମାସରେ ଅନୁଷ୍ଠିତ ଗଭର୍ଣ୍ଣିଂବଡ଼ିର ବୈଠକରେ ଉପସ୍ଥିତ ଥିଲେ ସଂପାଦକ ରାଧାମୋହନ ମହାନ୍ତି, ସଦସ୍ୟ ଲକ୍ଷ୍ମଣ ମଲ୍ଲିକ ଏମ୍.ପି., ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଭ୍ରମରବର ଦାସ, ଦର୍ପନାରାୟଣ ଦାସ, ଭାସ୍କର ଚନ୍ଦ୍ର ଜେନା, ଶ୍ୟାମାକାନ୍ତ ମହାନ୍ତି, ରତ୍ନାକର ଦାସ ପ୍ରମୁଖ । ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ ପିତୃପ୍ରତିମ ପାର୍ବତୀ ଚରଣ ଦାସ । ବୈଠକରେ ନିର୍ଣ୍ଣୟ ନିଆଗଲା ଯେ କଲେଜର କୋଠାବାଡ଼ି ନିର୍ମାଣ ପାଇଁ ଏକ ବିଧିବଦ୍ଧ ପ୍ଲାନ୍ ପ୍ରସ୍ତୁତ ହେବ ଓ ତଦନୁଯାୟୀ ସାମନା ପଟେ ଦୁଇ ଏକର ଜମି ଉଦ୍ୟାନ ପାଇଁ ବାଦ୍ ଦେଇ ପାଂଚଟି ହଲ ବିଶିଷ୍ଟ ଏକ ସିମେଣ୍ଟ କଂକ୍ରିଟ୍‌ର ଘର ନିର୍ମିତ ହେବ ଏବଂ ଏହି ଗୃହଟି ମୋର ନନା ସ୍ୱର୍ଗୀୟ ଲକ୍ଷ୍ମୀଧର ଶତପଥୀଙ୍କ ସ୍ମୃତିରେ ଅର୍ପିତ ହେବ । ପୁନଶ୍ଚ ସ୍ଥିର ହେଲା ଯେ ଛାତ୍ରଦତ୍ତ ବେତନ ଓ ସ୍ଥାନୀୟ ଚାନ୍ଦାକୁ ବାଦ୍ ଦେଇ ଗୃହ ନିର୍ମାଣ ପାଇଁ ଏକ ସ୍ୱତନ୍ତ୍ର ପାଣ୍ଠି ଖୋଲାଯିବ ଓ ନିର୍ମାଣ କାର୍ଯ୍ୟର ସମସ୍ତ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ରହିବ । ମୋର ସାନ ଭାଇ ଇଂଜିନିୟର ମୁରଲୀଧର ଶତପଥୀ (ବର୍ତ୍ତମାନ ଚିଫ୍ ଇଞ୍ଜିନିୟର) କଲେଜର କୋଠାବାଡ଼ି ନିର୍ମାଣ ପାଇଁ ଏକ ନକ୍ସା ପ୍ରସ୍ତୁତ କଲେ । ଦର୍ପ ଓ ମୁରଲୀ ଦିନେ ଅନନ୍ତବଟ ଯାଇ ସମ୍ମୁଖ ଭାଗ ଗୃହର ଫାଉଣ୍ଡେସନ ପାଇଁ ମାପଚୁପ କରି ଚିହ୍ନ ଦେଲେ । ମନେ ଅଛି, ଦିନେ ରବିବାର ସକାଳେ ମୁଁ କଟକରୁ କିଛି ରସଗୋଲା ସାଂଗରେ ଧରି ଅଳକାରେ ପହଂଚିଲି । ସ୍ୱର୍ଗତ ଭ୍ରମରବର ଦାସ ଅନନ୍ତବଟଙ୍କ ନିକଟରେ ଭୂମିପୂଜା କରିବା ପରେ ନିଅଁଖୋଳା ଆରମ୍ଭ ହେଲା ଓ ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଲା ।

ଏପରି ଏକ ରାସ୍ତା ଘାଟ ବିହୀନ ଅଂଚଳରେ ନଈ ବାଲି ଉପରେ ଘର ତିଆର କରିବା ପାଇଁ ଇଟା ସିମେଣ୍ଟ ଚିପ୍‌ସ ଓ ରଡ୍ ଆଦି ଘର ତିଆରିର ସମସ୍ତ ସରଂଜାମ କଟକରୁ ବୋହି ନେବାକୁ ହୁଏ । ଏପରିକି ବାଲି ମଧ୍ୟ ଦୂର ବିଲୁଆଖାଇରୁ ଟ୍ରାକ୍ଟର ଯୋଗେ ଆଣିବାକୁ ପଡ଼େ, କାରଣ ଅଳକା ନଦୀର ଧାର ବଂଦ ହୋଇଯିବା ପରେ ଏ ବାଲି ମାଟିମିଶା ଓ ନିର୍ମାଣ କାର୍ଯ୍ୟର ଉପଯୋଗୀ ନୁହେ । ସେତେବେଳେ ମାଛ ଗାଁ କେନାଲ ଉପରେ ବାଲିଆର କାଠପୋଲ ନ ଥିଲା ବା ଦଣ୍ଡିଲୋ ସାମନାରେ ନବନିର୍ମିତ ପକ୍କା ପୋଲ 'ଅଳକା-ସେତୁ' ନଥିଲା । ଛାତ୍ରଛାତ୍ରୀମାନଙ୍କର ଗମନାଗମନର ସୁବିଧା

ପାଇଁ କଲେଜର ସମସ୍ତ ମୁଖ୍ୟ ନିର୍ମାଣ କାର୍ଯ୍ୟ ଶେଷ ହେବା ପରେ ଏ ପୋଲ ନାନା ଉଦ୍ୟମ କରିବା ପରେ ୧୯୮୮-୮୯ ମସିହାରେ ନିର୍ମିତ ହୋଇଛି । ଏଣୁ ଧନୀପୁର ବାଟେ ବୁଲି ନାଳ ବଂଧର ମାଟି ରାସ୍ତା ଉପରେ ଟ୍ରକ ଆଣି ଅନନ୍ତବଟରେ ପହଂଚାଇବା କି ଦୁଃସାଧ୍ୟ କାର୍ଯ୍ୟ ତାହା କଳ୍ପନା କରି ହେବ ନାହିଁ । ଯାହାହେଉ ସବୁ ଅସୁବିଧା ସତ୍ତ୍ୱେ, ୧୯୮୧ ମସିହା ମଇ ମାସରେ ଏଇ ଅପନ୍ତରା ନଈବାଲି ମଝିରେ ଏକଶହ କୋଡ଼ିଏ ଫୁଟ ଦୀର୍ଘ ଏକ ମହଲା ଘରର ଯେଉଁଦିନ ଛାତ ଢଳେଇ ହେଲା ଏବଂ କଂକ୍ରିଟ୍ ମିକ୍ସଚରର ବିକଟ ଘଡ଼ ଘଡ଼ ଧ୍ୱନିରେ ଗଗନ ପବନ ପ୍ରକଂପିତ ହେଲା, ଦଳ ଦଳ ହୋଇ ସ୍ଥାନୀୟ ଲୋକେ ଏ ଦୃଶ୍ୟ ଦେଖିବାକୁ ଧାଇଁ ଆସିଲେ ।

୧୯୮୧ ମସିହାରେ କଲେଜକୁ ୮୦-୮୧ ପାଠ୍ୟ ବର୍ଷ ପାଇଁ ସରକାରୀ ଓ ବିଶ୍ୱବିଦ୍ୟାଳୟ ସ୍ୱୀକୃତି ମିଳିଥିଲା । ବୟାଅଶି ମସିହାରେ ଅଳକା କଲେଜର ଛାତ୍ର ଛାତ୍ରୀମାନେ ବିଶ୍ୱବିଦ୍ୟାଳୟ ପରିଚାଳିତ ଇଣ୍ଟରମେଡ଼ିଏଟ୍ ପରୀକ୍ଷା ଦେବା ପାଇଁ ଅନୁମତି ମିଳିଲା । ସେହିବର୍ଷ ଏପ୍ରିଲ ୨୬ ତାରିଖରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଆନୁଷ୍ଠାନିକ ଭାବରେ ''ଲକ୍ଷ୍ମୀଧର ଶତପଥୀ ସ୍ମୃତି ଭବନ'' ଉଦ୍‌ଘାଟନ କରିଥିଲେ । ଏ ଅଂଚଳର ବନ୍ଧୁ ନେତୃସ୍ଥାନୀୟ ଲୋକଙ୍କ ସମେତ ପ୍ରାୟ ଦଶ ହଜାର ସ୍ଥାନୀୟ ଲୋକ ସଭାରେ ଯୋଗ ଦେଇଥିଲେ । ବିଶିଷ୍ଟ ଅତିଥିମାନଙ୍କ ମଧ୍ୟରେ ଥିଲେ ଶିକ୍ଷାମନ୍ତ୍ରୀ ଗଂଗାଧର ମହାପାତ୍ର, ସେଚ-ମନ୍ତ୍ରୀ ନିରଂଜନ ପଟ୍ଟନାୟକ, ଜଗତ୍‌ସିଂହପୁର ଲୋକସଭା ସଦସ୍ୟ ଲକ୍ଷ୍ମଣ ମଲ୍ଲିକ ପ୍ରମୁଖ । ପରିଚାଳନା ସମିତିର ସଂପାଦକ ରାଧାମୋହନ ମହାନ୍ତି ସାଧାରଣ ସଭାରେ ପଠିତ ତାଙ୍କର ବିବରଣୀରେ ଲେଖିଥିଲେ : ''ଜାତୀୟ ନେତାମାନଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ, ବାଇଶି ମୌଜା ଅଂଚଳରେ ଶିକ୍ଷା ପ୍ରସାର ପାଇଁ ଏ ଶତାବ୍ଦୀର ଦ୍ୱିତୀୟ ପାଦରେ ଯେଉଁ କେତେଜଣ ଉତ୍ସାହୀ ଯୁବକ ଅଗ୍ରଣୀ ହୋଇଥିଲେ, ସ୍ୱର୍ଗୀୟ ଲକ୍ଷ୍ମୀଧର ଶତପଥୀ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ସେହି ପ୍ରଖ୍ୟାତ ବିଦ୍ୟାନୁରାଗୀ ଛାତ୍ରବତ୍ସଳ ଜନପ୍ରିୟ ଶିକ୍ଷକ ସ୍ୱର୍ଗତ ଲକ୍ଷ୍ମୀଧର ଶତପଥୀଙ୍କ ସମ୍ମାନାର୍ଥେ ଏହି ନୂତନ ଭବନ ଉତ୍ସର୍ଗୀକୃତ ।''

ଏହାପରେ କଲେଜର ଅଗ୍ରଗତିର ଧାରା ଥିଲା ଅତି କ୍ଷିପ୍ର । ସଭା ସ୍ଥଳରେ ଏହି ଭବନର ଉପର ମହଲା ନିର୍ମାଣ କରିବା ପାଇଁ ଭୁବନେଶ୍ୱରର ବିଶିଷ୍ଟ ବ୍ୟବସାୟୀ ଶ୍ରୀ ଜଗଦୀଶ ଚନ୍ଦ୍ର ବୁଦ୍ଧରାଜା କୋଡ଼ିଏ ହଜାର ଟଂକାର

ଅନୁଦାନ ଘୋଷଣା କରିଥିଲେ । ସେହି ବର୍ଷ ଉପର ମହଲା କାମ ଆରମ୍ଭ ହୋଇ ୧୯୮୩ ଏପ୍ରିଲ ମାସରେ ଶେଷ ହେଲା । "ବୁଦ୍ଧରାଜା ଭବନ"ର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା ୧୯୮୫ ମସିହାରେ । ଚାରିଟି ବଡ଼ ହଲ ବିଶିଷ୍ଟ ଏହି ଅଟ୍ଟାଳିକାର ନିର୍ମାଣ ଖର୍ଚ୍ଚ ବହନ କରିଛନ୍ତି ଶ୍ରୀ ଜଗଦୀଶ ଚନ୍ଦ୍ର ବୁଦ୍ଧରାଜା । ଜଗଦୀଶ ବାବୁଙ୍କର ଆମ ଅଂଚଳ ସହିତ କୌଣସି ସଂପର୍କ ନାହିଁ । ମୁଁ ଅବଶ୍ୟ ତାଙ୍କର ଆଡ୍‌ଭୋକେଟ । ମୋ ସହିତ ସଦ୍‌ଭାବ ହେତୁ ସେ କଲେଜର ଗୃହ ନିର୍ମାଣ ପାଣ୍ଠିକୁ ବିଭିନ୍ନ ସମୟରେ ଚାରି ଲକ୍ଷରୁ ଅଧିକ ଟଂକା ଦାନ କରିଅଛନ୍ତି । ତାଙ୍କ ପରି ସାଧୁ ସନ୍ଥ ଓ ବଦାନ୍ୟ ବ୍ୟକ୍ତି ଏ ଯୁଗରେ ବିରଳ । ବିଜ୍ଞାନ ଭବନର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା ୧୯୮୭ ମସିହାରେ । ଆଠଟି ବଡ଼ ହଲ୍ ବିଶିଷ୍ଟ ଏହି ବିରାଟ ଅଟ୍ଟାଳିକା ପାଇଁ ପ୍ରାୟ ଛ' ଲକ୍ଷରୁ ଅଧିକ ଟଂକା ବ୍ୟୟ ହୋଇଛି । ଏହା ପରେ ଲାବୋରେଟାରୀ ପାଇଁ ଆହୁରି ଏକ ଲକ୍ଷ ଟଂକା ଖର୍ଚ୍ଚ ହୋଇଛି । ବର୍ତ୍ତମାନ ଅଳକା ଏକ ପୂର୍ଣ୍ଣାଙ୍ଗ କଲେଜ । ଏହି ଡିଗ୍ରୀ କଲେଜର ଛାତ୍ର ସଂଖ୍ୟା ପ୍ରାୟ ଏଗାର ଶହରୁ ଅଧିକ । ତହିଁରୁ କେବଳ ମହିଳା ଛାତ୍ରୀଙ୍କ ସଂଖ୍ୟା ଚାରିଶହରୁ ବେଶି ହେବ ।

କଲେଜର ପାଠାଗାରର ଉନ୍ନତି ପାଇଁ ଶିକ୍ଷା ନିର୍ଦ୍ଦେଶକଙ୍କ ଅଫିସରୁ ପତ୍ର ଆସିଥିଲା । କଲେଜର ପୃଷ୍ଠପୋଷକ ଓ ପରିଚାଳନା ସମିତର ସଭ୍ୟମାନେ ଏ ଅଭାବ ପୂରଣ କରିବା ପାଇଁ ନିଜ ଶକ୍ତି ଅନୁଯାୟୀ ଦାନ କରିଥିଲେ । ବାଗଲପୁରର ବୟୋଜ୍ୟେଷ୍ଠ (ସ୍ୱର୍ଗତଃ) ପାର୍ବତୀ ଚରଣ ଦାସଙ୍କ ନାମ ଏ ସଂକ୍ରାନ୍ତରେ ବିଶେଷ ଉଲ୍ଲେଖଯୋଗ୍ୟ । ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ମନୋନୀତ ଗଭର୍ଣ୍ଣିଂ ବଡ଼ିର ସଭ୍ୟା ଅଧ୍ୟାପିକା ବୀଣାପାଣି ମହାନ୍ତି ଏଥିପାଇଁ ପାଂଚ ହଜାର ଟଂକାର ପୁସ୍ତକ ଦାନ କରିଛନ୍ତି । ପରକାଳରେ ଡାକ୍ତର ଶ୍ରୀମତୀ ନିରୁପମା ରଥଙ୍କ ସାହାଯ୍ୟରେ ଏକ ସମୁନ୍ନତ ପାଠାଗାର ପ୍ରତିଷ୍ଠା କରାଯାଇଛି । ନାମ ରଖାଯାଇଛି "ସୁବ୍ରତ ମେମୋରିଆଲ ଲାଇବ୍ରେରୀ" । ତରିକୁନ୍ଦ ସାମନା ମାଛଗାଁ କେନାଲ ସ୍ରୋତରେ ଯେଉଁ ପୁତ୍ରର ଅକାଳ ତିରୋଧାନ ଘଟିଥିଲା, ତାର ସ୍ମୃତି ରକ୍ଷା ପାଇଁ ଜଣେ ଶୋକ ବିଧୁରା ମାଆର ଏହି ଅବଦାନ ।

ପ୍ରାରମ୍ଭିକ ଅବସ୍ଥାରେ ମହାବିଦ୍ୟାଳୟର ଜମିର ପରିମାଣ ଥିଲା ମାତ୍ର ଚାରି ଏକର ପଚିଶ ଡିସିମିଲ୍ । ପରକାଳରେ ତେର ଏକରରୁ ଅଧିକ ଜମି ଆହରଣ କରାଯାଇଛି । ବର୍ତ୍ତମାନ ମୋଟ ଜମି ପରିମାଣ ସତର ଏକରରୁ

ଅଧିକ । ଥରେ କିଛି ଅନାବାଦୀ ଜମି ପଟାସୂତ୍ରରେ କଲେଜକୁ ଦେବା ପାଇଁ ଅନୁରୋଧ କରିବା ନିମନ୍ତେ, ମୁଁ ଓ ରାଧାମୋହନ ବାବୁ କଟକ କଲେକ୍ଟରଙ୍କ କୋଠିକୁ ଯାଇଥିଲୁ । ସେ ସମୟରେ ତତ୍କାଳୀନ ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ଚନ୍ଦ୍ରମଣି ନାୟକ କଲେକ୍ଟରଙ୍କ ନିକଟରେ ଉପସ୍ଥିତ ଥିଲେ । ଆମର ଅନୁରୋଧ ଶୁଣି ଚନ୍ଦ୍ରମଣି ବାବୁ କହିଲେ, ଦରଖାସ୍ତଟି ମତେ ଦିଅନ୍ତୁ । ମୁଁ ନ ପାରିଲେ କଲେକ୍ଟର ଦେଖିବେ । ଏହାପରେ ଜମି ଆହରଣରେ କୌଣସି ଅସୁବିଧା ଉପୁଜି ନଥିଲା । ଚନ୍ଦ୍ରମଣି ବାବୁ ଜଣେ ସାଧୁ ନିଷ୍ଠାପର ଓ ଦକ୍ଷ ଅଫିସର । ଚାକିରୀରୁ ଅବସର ନେଲା ବେଳକୁ ରାଧାମୋହନ ମହାନ୍ତି ଇହଧାମ ତ୍ୟାଗ କରିଥିଲେ । ତାଙ୍କର ପ୍ରଶାସନିକ ଅଭିଜ୍ଞତା ଦୃଷ୍ଟିରୁ, ଚନ୍ଦ୍ରମଣି ବାବୁ ଆମ ଅଂଚଳର ଲୋକ ନ ହେଲେ ମଧ୍ୟ, ମୁଁ ତାଙ୍କୁ ଗଭର୍ଣ୍ଣିଂ ବଡ଼ିର ସଦସ୍ୟ ଭାବରେ ମନୋନୀତ କରିଥିଲି । ନବଗଠିତ ଜନତା ସରକାର ୧୯୯୨ ମସିହାରେ ସବୁ ଘରୋଇ କଲେଜର ଗଭର୍ଣ୍ଣିଂ ବଡ଼ିକୁ ଭାଙ୍ଗି ଦେଇ, କଲେଜର ପ୍ରତିଷ୍ଠାତାମାନଙ୍କୁ ବାଦ୍ ଦେଇ ନୂଆ ପରିଚାଳନା ସମିତି ଗଠନ କରିଛନ୍ତି । ସେହି ପ୍ରକ୍ରିୟାରେ ମୋ ସହିତ ଚନ୍ଦ୍ରମଣି ନାୟକ ମଧ୍ୟ ପରିଚାଳନାରୁ ବାଦ୍ ପଡ଼ିଛନ୍ତି । ଗତ ଜାନୁଆରୀ ୧୪ ତାରିଖ ଦୈନିକ ''ସମ୍ବାଦ''ରେ ''ଏକ ମହାବିଦ୍ୟାଳୟର କାହାଣୀ'' ଶୀର୍ଷକ ଏକ ପାଂଚକଲମ ବ୍ୟାପୀ ଦୀର୍ଘ ନିବଂଧରେ ଚନ୍ଦ୍ରମଣି ନାୟକ ଲେଖିଥିଲେ ''ଅନ୍ତଃସଲିଳା ଫଲଗୁ ପରି 'ଅଳକା' କଟକ ଜିଲ୍ଲା ଜଗତ୍‌ସିଂହପୁରର ଏକ ପ୍ରାଚୀନତମ ନଦୀ । ଅଳକାର ଧାର ବର୍ତ୍ତମାନ କ୍ଷୀଣ ହୋଇ ପଡ଼ିଛି । ଅନେକ ସ୍ଥାନରେ ନଦୀ ଗର୍ଭ ବାଲିରେ ପୋତି ହୋଇ ଗଲାଣି । ଯେଉଁ ଦୁଇଟି ମହାବିଦ୍ୟାଳୟ ଅଳକା ନାଁକୁ ବହୁବର୍ଷ ଧରି ବଂଚାଇ ରଖିବେ, ସେମାନେ ହେଲେ ଜଗତସିଂହପୁରର ସ୍ୱାମୀ ବିବେକାନନ୍ଦ ମେମୋରିଆଲ କଲେଜ ଓ ଅନ୍ୟଟି ଅଣଖିଆ ନିକଟସ୍ଥ ଅଳକା କଲେଜ । ଯେହେତୁ ଶେଷୋକ୍ତ କଲେଜଟି ଅଳକା ଗର୍ଭର ବାଲୁକା ଖଣ୍ଡରେ ଦଣ୍ଡାୟମାନ, ଏହାର ନାମକରଣ ହୋଇଛି 'ଅଳକା ମହାବିଦ୍ୟାଳୟ' ... କଲେଜର ମୁଖ୍ୟ କୋଠାଘର ସାମନାରେ ଗୋଟିଏ ଫଳକ ସ୍ଥାପିତ ହୋଇଅଛି । ଅଳକା କଲେଜ କଟକର ଜଣେ ଖ୍ୟାତନାମା ଆଇନଜୀବୀଙ୍କର ସ୍ୱପ୍ନ ଓ ସାଧନାର ସ୍ମାରକୀ ବୋଲି ଫଳକରେ ଲେଖା ଅଛି... ଜଣେ ସୁପ୍ରସିଦ୍ଧ ଆଇନଜୀବୀ, ଶିକ୍ଷାବିତ୍ ଓ ସମାଜ ସଂସ୍କାରକ ହିସାବରେ କୃତିତ୍ୱର ଶୀର୍ଷ ସ୍ଥାନରେ ପହଂଚି ପାରିଥିଲେ ମଧ୍ୟ, କେଉଁ ସ୍ୱପ୍ନ ତାଙ୍କୁ ଏପରି ଏକ ମହାବିଦ୍ୟାଳୟ ଗଢ଼ିବା ପାଇଁ ପ୍ରେରଣା ଦେଲା ଏବଂ ତାଙ୍କର ବହୁମୂଲ୍ୟ ସମୟ ଶ୍ରମ ଓ ଅଂଚଳର ଲୋକମାନଙ୍କର ଆନ୍ତରିକ ସାହାଯ୍ୟ

ସହଯୋଗ ଫଳରେ, ଅଳକା ଓଡ଼ିଶାର ଏକ ସୁପ୍ରତିଷ୍ଠିତ ମହାବିଦ୍ୟାଳୟ ରୂପେ ଗଣା ହେଲା, ତାହା ଜାଣିବା ଅବଶ୍ୟ ସମ୍ଭବ ନୁହେ । ...ଅଳକା କଲେଜ ଏକ ଡିଗ୍ରୀ କଲେଜ । ଉପକରଣ, ପାଠାଗାର ବିଜ୍ଞାନାଗାର, ଉଦ୍ୟାନ, ଯୋଗ୍ୟ ଶିକ୍ଷକ ନିଯୁକ୍ତି, ଅଧ୍ୟୟନ ଓ ଶୃଙ୍ଖଳାରେ ଏହା ପ୍ରଥମ ସ୍ଥାନ ଅଧିକାର କରିବ । ଜଣେ ଆଖିରେ ଦେଖିଲେ ଜାଣିବେ, କିପରି ଜଣେ ପ୍ରଖ୍ୟାତ ଆଇନଜୀବୀ ନିଜ ଦାୟିତ୍ୱ ଅତି ଦକ୍ଷତା ଓ ନିଷ୍ଠାର ସହ ପାଳନ କରି, ଏ ଅନୁଷ୍ଠାନ ଗଢ଼ିବାରେ ନିଜ ଜୀବନକୁ ଉତ୍ସର୍ଗ କରି ପାରିଛନ୍ତି ।..."

ଅଳକା କଲେଜ ସାମନାରେ ପ୍ରାୟ ଦେଢ଼ ଏକର ଜମିରେ ଯେଉଁ ପୁଷ୍ପଭରା ଉଦ୍ୟାନ ମୁଣ୍ଡ ଟେକିଛି, ଓଡ଼ିଶାର କୌଣସି ସରକାରୀ ବା ବେସରକାରୀ ଶିକ୍ଷାନୁଷ୍ଠାନରେ ଏପରି ଉଦ୍ୟାନ ନାହିଁ । ଅଳକାର ଶୁଷ୍କ ବାଲିଶଯ୍ୟା ଉପରେ ଏ କଲେଜ ପ୍ରତିଷ୍ଠିତ । ବାଲିରେ ଦୂବଘାସ ମଧ୍ୟ କଅଁଳେ ନାହିଁ । କିନ୍ତୁ ଉତ୍ତର ପଶ୍ଚିମ ଓ ଦକ୍ଷିଣରେ ଥିବା ତିନୋଟି ଦୁଇ ମହଲାର ଅଟ୍ଟାଳିକା ମଧ୍ୟବର୍ତ୍ତୀ ପନ୍ଦର ହଜାର ବର୍ଗଫୁଟ ପରିସରର ବାଲି ଉପରେ ଦୂରରୁ ଅଣାଯାଇଥିବା ମାଟି ଓ ଖତ ବିଂଚି ଏକ ଲନ୍ ବା ଘାସର ଗାଲିଚା ପ୍ରସ୍ତୁତ କରାଯାଇଛି । ଏଣେ ସାମନା ପଟ ଉଦ୍ୟାନରେ କେବଳ ଶୀତଦିନିଆ ଫୁଲ ନୁହେ; ଲଗାଯାଇଛି ବର୍ଷରେ ଆଠ ମାସ ଫୁଲ ଫୁଟୁଥିବା ଏକଶହରୁ ଅଧିକ ରଂଗ ବେରଂଗର ବୋଗେନଭିଲା (କାଗଜ ଫୁଲ) ଗଛ, ବର୍ଷସାରା ଫୁଲ ଫୁଟୁଥିବା ସିଂଗାପୁରୀ ଏକ୍‌ଜୋରା ଓ ମୁସେଣ୍ଡା ଫୁଲ ଗଛ । ସବୁ ଋତୁରେ ଉଦ୍ୟାନରେ ଫୁଲ ଭରି ରହିଥାଏ । ଗଛ ସବୁ ଆସିଥିଲା ଦିଲ୍ଲୀ ବା କଲିକତାରୁ । ବାଲିରେ ଗାତ ଖୋଳି ଖତ ମାଟି ଭର୍ତ୍ତି କରି ଗଛ ଲଗାଯାଇଥାଏ । ଏ ବାବଦରେ ଅପର୍ଯ୍ୟାପ୍ତ ଟଂକା ଖର୍ଚ୍ଚ ହୋଇଛି, କିନ୍ତୁ କଲେଜ ପାଣ୍ଠିରୁ ନୁହେ । କାଳେ ଭବିଷ୍ୟତରେ କଲେଜ କର୍ତ୍ତୃପକ୍ଷ ଉଦ୍ୟାନ ପ୍ରତି ଅବହେଳା କରିବେ, ସେଥିପାଇଁ ଏକ ଲକ୍ଷ ଟଂକାର ସ୍ୱତନ୍ତ୍ର ପାଣ୍ଠି ଫିକ୍‌ସଡ୍ ଡିପୋଜିଟ୍ ଆକାରରେ ବ୍ୟାଙ୍କରେ ରଖା ଯାଇଛି । ଏହି ସ୍ଥାୟୀ ଜମାରୁ ପ୍ରତିବର୍ଷ ସୁଧ ଆକାରରେ ମିଳୁଥିବା ପ୍ରାୟ ବାର ହଜାର ଟଂକା କେବଳ ଉଦ୍ୟାନର ରକ୍ଷଣାବେକ୍ଷଣ ପାଇଁ ଖର୍ଚ୍ଚ କରାଯିବ ବୋଲି ପରିଚାଳନା ସମିତି ନିଷ୍ପତ୍ତି ନେଇଛନ୍ତି । ଏଥିପାଇଁ ଉଦ୍ୟୋକ୍ତାମାନେ ଏବଂ କଲେଜର କର୍ମଚାରୀ ରବୀନ୍ଦ୍ର ନାଥ ସ୍ୱାଇଁ ଓ ଦେବେନ୍ଦ୍ର କୁମାର ଶତପଥୀ ଯେଉଁ କଠିଣ ଶ୍ରମ ଓ ଉଦ୍ୟମ କରିଛନ୍ତି ଓ କରୁଛନ୍ତି, ତାହା ଅତୁଳନୀୟ ।

ଆଲ୍ଲାଦିନର କାଉଁରୀ କାଠି ପରଶରେ ଅଳକାରେ ସ୍ୱପ୍ନର ଆବାସ ଗଢ଼ି ଉଠି ନାହିଁ । ଯେଉଁ ଦୁଃଖ କଷ୍ଟ, ଶ୍ରମ ଓ ସାଧନା ମହାବିଦ୍ୟାଳୟର ସ୍ଥିତି ଓ ଅଗ୍ରଗତିର ସହାୟକ ହୋଇଛି, ଯେଉଁ ଅବିରତ ସଂଗ୍ରାମର ପରିପ୍ରକାଶ ଏହାର ସୌଧ ଗୁଡ଼ିକରେ ଆତ୍ମବିକାଶ କରିଛି, ଯେଉଁ ଅନାବିଳ ତତ୍ତ୍ୱାବଧାନ ଓ ସୌନ୍ଦର୍ଯ୍ୟବୋଧ ଉଦ୍ୟାନକୁ ପରିପୁଷ୍ଟ କରିଛି ଓ ଅଳକାର ନୀରସ ବାଲୁକା ତୀରକୁ ସଜୀବ ଓ ପ୍ରାଣବନ୍ତ କରିଛି, ତାହାର କାହାଣୀ କହିବେ ଅଗଣିତ ଛାତ୍ରଛାତ୍ରୀ, ଯେଉଁମାନେ ଆଶା ଆବେଗ ଉଦ୍ଦୀପନାର ସଂଭାର ଧରି ନିତ୍ୟ ନୂତନ ବେଶରେ ଏଠାକୁ ବର୍ଷକୁ ବର୍ଷ ଆସନ୍ତି ଓ ଦୁଇ ଚାରି ବର୍ଷରେ ଅଧ୍ୟୟନ ସମାପ୍ତ କରି ବିଦାୟ ନିଅନ୍ତି । ତାର କାହାଣୀ କହିବେ, କୋଡ଼ିଏଟି ହଲ ବିଶିଷ୍ଟ ତିନୋଟି ଅଟ୍ଟାଳିକାର ପ୍ରତି ଇଟାଖଣ୍ଡ; ଉଦ୍ୟାନର ପୁଷ୍ପଗୁଚ୍ଛ, ଲାଲ ଫୁଲ ଭରା ଧାଡ଼ି ଧାଡ଼ି 'ମୈଶୁର କୁଇନ' 'ବଟଲ ବ୍ରୁଶ' ଏବଂ ମନ୍ଦିର ଝାଉଁ ଓ ପାମ୍ ଗଛ । ଏଇମାନେ ସମସ୍ୱରରେ କହିବେ କଠୋର ସଂଗ୍ରାମର କାହାଣୀ, ସାଧନାର କାହାଣୀ, ଆତ୍ମତ୍ୟାଗ ଓ ଅନୁଦାନର କାହାଣୀ, ସୁପ୍ତ ଅଳକାର ଶୁଷ୍କ ବାଲିଶଯ୍ୟା ଉପରେ ଗଢ଼ି ଉଠିଥିବା ଏହି 'ମରୁଦ୍ୱୀପ'ର କାହାଣୀ ।





ଲକ୍ଷ୍ମୀଧର ଶତପଥୀ ସ୍ମୃତି ଭବନ - ଅଳକା ମହାବିଦ୍ୟାଳୟ



ବୁଦ୍ଧରାଜା ଭବନ - ଅଳକା ମହାବିଦ୍ୟାଳୟ

# ତ୍ରାହି ନିରଂଜନ

କେନ୍ଦୁଝରର ନିରଂଜନ ପଟ୍ଟନାୟକ ୧୯୮୦ ମସିହାରେ ବିଧାନ ସଭାକୁ ସଦସ୍ୟ ନିର୍ବାଚିତ ହୋଇଥିଲେ । କଂଗ୍ରେସ ନେତା ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳରେ ସେ ହେଲେ ଜଣେ ରାଷ୍ଟ୍ରମନ୍ତ୍ରୀ । ଏଥି ପୂର୍ବରୁ ସେ ଥିଲେ କେନ୍ଦୁଝର ମ୍ୟୁନିସିପାଲିଟିର ଚେଆରମ୍ୟାନ । ବିଧାନ ସଭା ନିର୍ବାଚନର ବହୁ ପୂର୍ବରୁ ତାଙ୍କର ଖଣି ବ୍ୟବସାୟ ଥିଲା । ଓଡ଼ିଶା ସରକାରଙ୍କ ଠାରୁ ବଡ଼ବିଲରେ ଲୁହାପଥର ଖଣି ପଟ୍ଟା ନେଇ ସେ ଓଡ଼ିଶା ମାଇନିଂ କରପୋରେସନକୁ ଲୁହା ପଥର ଯୋଗାଇବା ପାଇଁ ଚୁକ୍ତି କରିଥିଲେ । ପରକାଳରେ ମନ୍ତ୍ରୀ ପଦ ଗ୍ରହଣ କଲେ ମଧ୍ୟ ମାଇନିଂ କର୍ପୋରେସନକୁ ଲୁହା ପଥର ଯୋଗାଣ ପୂର୍ବବତ୍ ଚାଲୁ ରହିଥିଲା । ତାଙ୍କ ବିରୁଦ୍ଧରେ ସମାଲୋଚନା ହେଲା ଯେ ମନ୍ତ୍ରୀ ହୋଇ ଗୋଟିଏ ସରକାରୀ କଂପାନୀକୁ ମାଲ ଯୋଗାଇବା ଦ୍ୱାରା ସେ କ୍ଷମତାର ଅପବ୍ୟବହାର କରୁଚନ୍ତି । ମନ୍ତ୍ରୀ ପଟ୍ଟନାୟକ ଏକ ଅଡୁଆ ପରିସ୍ଥିତିରେ ସମ୍ମୁଖୀନ ହେଲେ । ହୁଏତ ତାଙ୍କୁ ଖଣି ମାଲିକାନା ଛାଡ଼ିଦେବାକୁ ହେବ, ନଚେତ୍ ମନ୍ତ୍ରୀପଦ । ଏହି ଦ୍ୱନ୍ଦ ମଧ୍ୟରେ କୌଣସି ସ୍ଥିର ନିଷ୍ପତ୍ତି ନେବା ପୂର୍ବରୁ ଓଡ଼ିଶା ଜନତା ଦଳର କେତେଜଣ ଏମ୍.ଏଲ.ଏ. ରାଜ୍ୟପାଳଙ୍କ ନିକଟରେ ସଂବିଧାନର ୧୯୨ ଅନୁଚ୍ଛେଦ ଅନୁଯାୟୀ ଏକ ଦରଖାସ୍ତ କଲେ ଯେ ମନ୍ତ୍ରୀ ରହି ସରକାରଙ୍କୁ ଲୁହାପଥର ଯୋଗାଉ ଥିବାରୁ ତାଙ୍କ ନିର୍ବାଚନ ଓ ମନ୍ତ୍ରୀତ୍ୱକୁ ଅବୈଧ ଘୋଷଣା କରାଯାଉ । ବିଚରା ପଟ୍ଟନାୟକ ଡାକ ଛାଡ଼ିଲେ "ତ୍ରାହି ନିରଂଜନ" ।

ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ ବିଧାନ ସଭା ସଦସ୍ୟଙ୍କ ଯୋଗ୍ୟତା ସଂପର୍କୀୟ ଆପତ୍ତି ଦରଖାସ୍ତ ଉପରେ ରାଜ୍ୟପାଳ ନିର୍ବାଚନ କମିସନଙ୍କ ସହ ପରାମର୍ଶ କରି ନିଷ୍ପତ୍ତି ଦେବେ । ନିର୍ବାଚନ କମିସନ ଅଭିଯୋଗର ସତ୍ୟତା ବିଷୟରେ ତଦନ୍ତ କରିବେ, ଉଭୟ ପକ୍ଷଙ୍କୁ ସେମାନଙ୍କର ବକ୍ତବ୍ୟ ପେଶ୍ କରିବା ପାଇଁ ଯଥାବିଧି ସୁଯୋଗ ଦେବେ ଏବଂ ପରିଶେଷରେ କମିସନ ଯେଉଁ ସୁପାରିଶ କରିବେ, ରାଜ୍ୟପାଳ ତଦନୁଯାୟୀ କାର୍ଯ୍ୟ କରିବେ । ଉପରୋକ୍ତ ବ୍ୟବସ୍ଥା ଦୃଷ୍ଟିରୁ ରାଜ୍ୟପାଳ ନିରଂଜନ ପଟ୍ଟନାୟକ ବିରୁଦ୍ଧରେ ଆଗତ ଅଭିଯୋଗ ପତ୍ର ଦିଲ୍ଲୀ ନିର୍ବାଚନ କମିସନଙ୍କ ନିକଟକୁ ପଠାଇ ଦେଇଥିଲେ । କମିସନଙ୍କ ଅଫିସରୁ ନୋଟିସ ଜାରୀ ହେବା ପରେ ଦିନେ ପଟ୍ଟନାୟକଙ୍କ ସେକ୍ରେଟାରୀ ଗୋପବଂଧୁ ଦାସ ମୋ ସହିତ ଆଲୋଚନା ପାଇଁ ସମୟ ଧାର୍ଯ୍ୟ କରିବା

ନିମନ୍ତେ ଫୋନ୍ କଲେ । ଗୋପ ବହୁ ଦିନରୁ ମୋର ଅତି ପରିଚିତ । ତାଙ୍କ ପରି ଭଲ ମଣିଷ ମୁଁ କ୍ବଚିତ୍ ଦେଖିଛି । ପରଦିନ ସଂଧ୍ୟାରେ ମନ୍ତ୍ରୀ ପଟ୍ଟନାୟକ ତାଙ୍କ ସେକ୍ରେଟାରୀଙ୍କ ସହ ଆମ ଘରେ ପହଂଚିଲେ ।

ନିର୍ବାଚନ କମିସନଙ୍କ ଅଫିସରୁ ଆସିଥିବା ଅଭିଯୋଗ ପତ୍ରଟି ମୁଁ ତନ୍ନ ତନ୍ନ କରି ପଢ଼ିଲି । ମାଇନିଂ କର୍ପୋରେସନ ସହିତ ଯେଉଁ ଚୁକ୍ତିକୁ ନିରଂଜନ ପଟ୍ଟନାୟକଙ୍କ ବିରୁଦ୍ଧରେ ଅମୋଘ ଅସ୍ତ୍ର ରୂପେ ବ୍ୟବହାର କରାଯାଇଥିଲା, ମୋ ମତରେ ତାହା ଥିଲା ଏକ ଭଂଗପ୍ରବଣ କାଉଁରିଆ କାଠି । ଚୁକ୍ତି ପତ୍ର କାର୍ଯ୍ୟକାରୀ ହୋଇଥିଲା ନିର୍ବାଚନର ବହୁ ପୂର୍ବରୁ । ଲୋକ ପ୍ରତିନିଧି ନିର୍ବାଚନ ଆଇନରେ ବ୍ୟବସ୍ଥା ଅଛି ଯେ କୌଣସି ବ୍ୟକ୍ତି ଯଦି ସରକାରଙ୍କ ସହ ମାଲ ଯୋଗାଣ ବା କାର୍ଯ୍ୟ ସଂପାଦନ ପାଇଁ ଚୁକ୍ତିବଦ୍ଧ ହୋଇଥିବେ, ତାହାହେଲେ ସେ ବିଧାନ ସଭା ନିର୍ବାଚନରେ ପ୍ରାର୍ଥୀ ହେବାକୁ ଅଯୋଗ୍ୟ ବିବେଚିତ ହେବେ । ଏଣୁ ଅଭିଯୋଗ ଯଦି ସତ୍ୟ ହୁଏ, ତାହାହେଲେ ପଟ୍ଟନାୟକଙ୍କର ନିର୍ବାଚନ ହୁଏତ ଅସିଦ୍ଧ ଘୋଷିତ ହୋଇପାରେ । ମାତ୍ର ନିର୍ବାଚନକୁ ଅସିଦ୍ଧ ଘୋଷଣା କରିବା ପାଇଁ ନିର୍ବାଚନ ଟ୍ରିବ୍ୟୁନାଲ୍‌ରେ ଅର୍ଥାତ୍ ଚିଫ୍ ଜଷ୍ଟିସଙ୍କ ଦ୍ୱାରା ମନୋନୀତ ହାଇକୋର୍ଟ ଜଜ୍‌ଙ୍କ ନିକଟରେ ଆବେଦନ ପତ୍ର ଦାଖଲ କରିବାକୁ ହେବ ଏବଂ ସେ ଅଭିଯୋଗର ଯଥାର୍ଥତା ବିଚାର କରି ନିର୍ବାଚନ ଫଳାଫଳ ଉପରେ ନିଷ୍ପତ୍ତି ଦେବେ । କିନ୍ତୁ ଅଯୋଗ୍ୟ ପ୍ରାର୍ଥୀଙ୍କ ନିର୍ବାଚନ ବିରୁଦ୍ଧରେ ଯଦି ନିର୍ବାଚନ ଟ୍ରିବ୍ୟୁନାଲରେ ଲୋକ ପ୍ରତିନିଧି ନିର୍ବାଚନ ଆଇନରେ ଧାର୍ଯ୍ୟ ସମୟ ସୀମା ମଧ୍ୟରେ ଆପତ୍ତି କରା ନ ଯାଏ, ତାହାହେଲେ ଉପରୋକ୍ତ ଆପତ୍ତି ପରେ ରାଜ୍ୟପାଳ ବିଚାର କରି ପାରିବେ ନାହିଁ । ପ୍ରାର୍ଥୀ ନିର୍ବାଚିତ ହେବା ପରେ ଯଦି କୌଣସି ଅଯୋଗ୍ୟତା ହାସଲ କରିଥାନ୍ତି, ତାହାହେଲେ କେବଳ ଏ ପ୍ରକାରର ନବଜାତ ଅଯୋଗ୍ୟତା ରାଜ୍ୟପାଳଙ୍କ ଦ୍ୱାରା ବିଚାର୍ଯ୍ୟ ଓ ସେଥିପାଇଁ ସେ ନିର୍ବାଚନ କମିସନ୍‌ଙ୍କ ସହ ପରାମର୍ଶ କରି କମିସନ୍‌ର ସୁପାରିଶ୍ ଅନୁଯାୟୀ ଆପଣାର ନିଷ୍ପତ୍ତି ଦେବେ । ଉପରୋକ୍ତ ଦୃଷ୍ଟିରୁ ବିଚାର କଲେ, ଅଭିଯୋଗ ପତ୍ରଟି ଗ୍ରହଣୀୟ ନୁହେ କିମ୍ବା କମିସନ୍‌ଙ୍କ ଦ୍ୱାରା ବିଚାର ସାପେକ୍ଷ ନୁହେ ।

ଉପରୋକ୍ତ ବିବାଦ ସଂପର୍କରେ ଆମ୍ଭମାନଙ୍କ ମଧ୍ୟରେ ବିଚାର ବିମର୍ଶ ଚାଲିଥିବା ବେଳେ ମୋର ମନେ ପଡ଼ିଲା ୧୯୫୩ ମସିହାର ସୁପ୍ରିମ କୋର୍ଟର ଏକ ନିଷ୍ପତ୍ତି, ଇଲେକ୍‌ସନ୍ କମିସନର ବନାମ ସାକା ଭେଙ୍କଟ ରାଓ କେସରେ ।

ଏହି କେସ୍‌ରେ ତତ୍‌କାଳୀନ ଚିଫ୍ ଜଷ୍ଟିସ୍ ପାତଂଜଳି ଶାସ୍ତ୍ରୀ ମୋର ପରିଚିତ ବଂଧୁ (ସ୍ୱର୍ଗୀୟ) ମୋହନ କୁମାର ମଙ୍ଗଳମ୍‌ଙ୍କ ବିତର୍କ ସଂପର୍କରେ ଖୁବ୍ ଉଚ୍ଚ କୋଟିର ମନ୍ତବ୍ୟ ଦେଇଥିଲେ । ସେଥିପାଇଁ ଏ ନିଷ୍ପତ୍ତିଟି ମୋର ମନେ ଥାଏ । ଭେଙ୍କଟ ରାଓ ୧୯୪୨ ଆନ୍ଦୋଳନରେ ଗିରଫ ହୋଇ ସାତ ବର୍ଷ ପାଇଁ ଦଣ୍ଡିତ ହୋଇଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ୧୯୪୭ ଅଗଷ୍ଟ ମାସରେ ଅନ୍ୟ ବହୁ ବଂଦୀଙ୍କ ସହ କାରାମୁକ୍ତ ହେଲେ । ନିୟମ ଅନୁଯାୟୀ କାରାମୁକ୍ତ ହେବା ଦିନଠାରୁ ପାଂଚ ବର୍ଷ ଗତ ହୋଇ ନଥିବାରୁ, ୧୯୫୨ ମସିହା ପ୍ରଥମ ସାଧାରଣ ନିର୍ବାଚନରେ ଭାଗ ନେବାକୁ ସେ ଅଯୋଗ୍ୟ ଥିଲେ । ଏ ସଂପର୍କରେ ନିର୍ବାଚନ କମିସନଙ୍କ ସହ ସେ ଯେଉଁ ପତ୍ରାଳାପ କରିଥିଲେ, ତାର ଉତ୍ତର ଯଥା ସମୟରେ ମିଳିଲା ନାହିଁ । ଭେଙ୍କଟ ରାଓ କାକିନାଡ଼ା ନିର୍ବାଚନ ମଣ୍ଡଳୀରୁ ମାନ୍ଦ୍ରାଜ ବିଧାନ ସଭାକୁ ନିର୍ବାଚିତ ହେଲେ । ସେ ସଦସ୍ୟ ଭାବରେ ଶପଥ ନେବା ପରେ ଆରମ୍ଭ ହେଲା ତାଙ୍କ ନିର୍ବାଚନର ବୈଧତା ସଂପର୍କରେ ବିବାଦ । ମାନ୍ଦ୍ରାଜ ହାଇକୋର୍ଟ ନିଷ୍ପତ୍ତି ଦେଲେ ଯେ ତାଙ୍କ ନିର୍ବାଚନର ବୈଧତା ନିର୍ବାଚନ କମିସନ ନିର୍ଣ୍ଣୟ କରି ପାରିବେ ନାହିଁ ।

ହାଇକୋର୍ଟଙ୍କ ଏ ନିର୍ଣ୍ଣୟ ବିରୁଦ୍ଧରେ କମିସନର ସୁପ୍ରିମ କୋର୍ଟରେ ଅପିଲ କଲେ । ସୁପ୍ରିମ କୋର୍ଟ ଏ ମୋକଦ୍ଦମାରେ ଯେଉଁ ରାୟ ଦେଇଥିଲେ ତାହା ପରବର୍ତ୍ତୀ କାଳରେ ଏହି ପ୍ରଶ୍ନ ଉପରେ ପ୍ରଦତ୍ତ ସବୁ ନିଷ୍ପତ୍ତିରେ ନଜିର ଭାବରେ ବ୍ୟବହୃତ ହେଉଛି । ସୁପ୍ରିମ କୋର୍ଟ ମୋହନ କୁମାର ମଙ୍ଗଳମ୍‌ଙ୍କ ଯୁକ୍ତି ଗ୍ରହଣ କରି ଲେଖିଥିଲେ ଯେ ନିର୍ବାଚନ ପରେ ବିଧାନ ସଭା ସଦସ୍ୟ ଯଦି ସଂବିଧାନ ବା ପାର୍ଲିଆମେଣ୍ଟ ପ୍ରଣୀତ ଆଇନରେ ବର୍ଣ୍ଣିତ ଅଯୋଗ୍ୟତା ହାସଲ କରନ୍ତି, ସେ ପ୍ରକାରର ବିବାଦରେ କେବଳ ରାଜ୍ୟପାଳ ଦିଲ୍ଲୀରେ ପ୍ରତିଷ୍ଠିତ ନିର୍ବାଚନ କମିସନଙ୍କ ସହ ପରାମର୍ଶ କରି ନିଷ୍ପତ୍ତି ଦେଇ ପାରିବେ । ଅନ୍ୟଥା, ନିର୍ବାଚନ ପ୍ରାର୍ଥୀ ଯଦି କୌଣସି କାରଣରୁ ପ୍ରତିଦ୍ୱନ୍ଦିତା କରିବାକୁ ଅଯୋଗ୍ୟ, ତାହାହେଲେ ସେ ବିବାଦ କେବଳ ନିର୍ବାଚନ ଟ୍ରିବ୍ୟୁନାଲଙ୍କ ଦ୍ୱାରା ବିଚାର୍ଯ୍ୟ, ରାଜ୍ୟପାଳଙ୍କ ଦ୍ୱାରା ନୁହେ । ଓଡ଼ିଶାର ଜଣେ ପୂର୍ବତନ ମନ୍ତ୍ରୀ ସ୍ୱର୍ଗୀୟ ବୃନ୍ଦାବନ ନାୟକଙ୍କ ମୋକଦ୍ଦମାରେ ସୁପ୍ରିମ କୋର୍ଟର ଏକ ପାଂଚଜଣିଆ ବିଚାରକ ମଣ୍ଡଳୀ ଅନୁରୂପ ମନ୍ତବ୍ୟ ଦେଇଥିଲେ । ନିରଂଜନ ପଟ୍ଟନାୟକଙ୍କ ଅନୁରୋଧକ୍ରମେ ମୁଁ ଉପରୋକ୍ତ ମର୍ମରେ ଏକ ଜବାବ୍ ପ୍ରସ୍ତୁତ କଲି ଓ ତାହା ଦିଲ୍ଲୀ ନିର୍ବାଚନ କମିସନଙ୍କ ଅଫିସରେ ଦାଖଲ ହେଲା ।

ଧାର୍ଯ୍ୟ ତାରିଖରେ ଦିଲ୍ଲୀ ନିର୍ବାଚନ କମିସନ ଅଫିସରେ ଆମ୍ଭେମାନେ ହାଜର ହେଲୁ । ନିରଂଜନ ପଟ୍ଟନାୟକ, ଗୋପ, ମୋର ସହକାରୀ ଦିଲ୍ଲୀର ଆଡ୍‌ଭୋକେଟ୍ ଆର. କେ. ମେହେଟା । ସେ ସମୟରେ ମିଷ୍ଟର ଶକଧର ଥିଲେ ନିର୍ବାଚନ କମିସନର । ଶକଧର ଲୋକସଭାର ଜଣେ ସାଧାରଣ କିରାନୀରୁ କାଳକ୍ରମେ ପଦୋନ୍ନତି ପାଇ ଲୋକସଭାର ସାଧାରଣ ସଚିବ ଭାବରେ ବହୁବର୍ଷ କାର୍ଯ୍ୟ କରିଥିଲେ । ଚାକିରୀର ଶେଷାବସ୍ଥାରେ ତାଙ୍କୁ ନିର୍ବାଚନ କମିସନର ପଦରେ ନିଯୁକ୍ତି ଦିଆଯାଇଥିଲା । ଶକଧର ଅବଶ୍ୟ ଲୋକସଭାର ଅନ୍ୟ ଜଣେ ପୂର୍ବତନ ସଚିବ ଏମ୍. ଏନ୍. କଲ୍‌ଙ୍କ ସହ ମିଶି 'ପାର୍ଲିଆମେଣ୍ଟାରୀ ପ୍ରାକ୍‌ଟିସ' ଉପରେ ଏକ ପ୍ରସିଦ୍ଧ ପୁସ୍ତକ ରଚନା କରିଅଛନ୍ତି । କିନ୍ତୁ ବିଚାର ପଦ୍ଧତି ଓ ନ୍ୟାୟନୀତି ସଂପର୍କରେ ତାଙ୍କର ଅଭିଜ୍ଞତା ଓ ଦକ୍ଷତା ସଂପର୍କରେ ମୋର କୌଣସି ଧାରଣା ନଥିଲା । ଆବେଦନକାରୀଙ୍କ ପକ୍ଷରୁ ସୁପ୍ରିମ କୋର୍ଟର ବରିଷ୍ଠ ଆଡ୍‌ଭୋକେଟ୍ ମିଷ୍ଟର ଗୋୟେଲ ଓ ରାଣୀ ଜେଥମାଲାନୀ ଯେତେବେଳେ ସେମାନଙ୍କର ବାଦାନୁବାଦ ଆରମ୍ଭ କଲେ, ସେତେବେଳେ ମୁଁ ଅନୁଭବ କଲି ଶକଧରଙ୍କର ଜ୍ଞାନର ପରିସୀମା । ସମ୍ବିଧାନର ୧୯୨ ଧାରାର ପରିସର ଉପରେ ସେ ଅଧିବକ୍ତାମାନଙ୍କୁ ବାରବାର ଚେତାବନୀ ଦେଉଥିଲେ ଯେ ମାଇନିଂ କର୍ପୋରେସନକୁ ଖଣିଜ ପଦାର୍ଥ ଯୋଗାଇବା ପାଇଁ ପଟ୍ଟନାୟକ ନିର୍ବାଚିତ ହେବାର ବହୁ ପୂର୍ବରୁ ଚୁକ୍ତି କରିଥିଲେ । ନିର୍ବାଚିତ ହେବା ପରେ ସେ କୌଣସି ଅଯୋଗ୍ୟତା ହାସଲ କରି ନାହାନ୍ତି, ଏଣୁ ଏ ବିବାଦ ତାଙ୍କ ଦ୍ୱାରା ବିଚାର୍ଯ୍ୟ ନୁହେ । ପ୍ରତିବାଦୀଙ୍କ ତରଫରୁ ମୁଁ ଯେତେବେଳେ ବିତର୍କ ଆରମ୍ଭ କରି ସାକା ଭେଙ୍କଟ ରାଓ ଓ ବୃନ୍ଦାବନ ନାୟକଙ୍କ କେସ୍‌ରେ ସୁପ୍ରିମ କୋର୍ଟର ନିଷ୍ପତ୍ତି ଉଦ୍ଧାର କଲି, ମୁଁ ଦେଖିଲି କମିସନର ଏ ବିଷୟରେ ପୂର୍ଣ୍ଣ ଅବଗତ । ସେ କେବଳ ଏତିକି କହିଲେ, ପ୍ରତିବାଦୀଙ୍କର ଲିଖିତ ଜବାବ ସେ ବିଶେଷ ଭାବରେ ଅନୁଧ୍ୟାନ କରିଅଛନ୍ତି ଏବଂ ମୋ ସହିତ ସେ ସଂପୂର୍ଣ୍ଣ ସହମତ । ଏହାପରେ ଆମ୍ଭମାନଙ୍କୁ ବିଶେଷ ଶ୍ରମ କରିବାକୁ ପଡ଼ିଲା ନାହିଁ । ଆବେଦନ ପତ୍ରଟି ଖାରଜ ହେଲା ।

ଦୁର୍ବିପାକର ଆକ୍ରମଣ ଥରକେ ଶେଷ ହୁଏ ନାହିଁ, ଆକ୍ରମଣ ଆସେ ତୁହାକୁ ତୁହା । ପ୍ରାୟ ପନ୍ଦର ଦିନ ପରେ ଦିଲ୍ଲୀରୁ ଆର. କେ. ମେହେଟା ଫୋନ୍ କଲେ, ନିରଂଜନଙ୍କ ବିରୁଦ୍ଧରେ ସୁପ୍ରିମ କୋର୍ଟରେ ଅପିଲ ପେଶ୍

କରା ଯାଇଛି । ତାଙ୍କୁ ନିର୍ଦ୍ଦେଶ ଦିଆହେଲା, ଆଗତୁରା ଅପିଲରେ ହାଜର ହେବା ପାଇଁ, ଯେପରିକି ଅପିଲ ଆବେଦନ ପତ୍ରଟିକୁ ଆମେ ପ୍ରଥମାବସ୍ଥାରେ ବିରୋଧ କରିବାକୁ ସୁଯୋଗ ପାଇବୁ । ତଦନୁଯାୟୀ ଆଡ୍‌ଭୋକେଟ ମେହେଟା ନୋଟିସ ପାଇବା ପୂର୍ବରୁ ହାଜର ହେଲେ ଓ ସ୍ପେଶିଆଲ ଲିଭ ପିଟିସନର ବିରୋଧ କରିବା ପାଇଁ ଆମ୍ଭେମାନେ ପ୍ରସ୍ତୁତ ହେଲୁ ।

ଦିଲ୍ଲୀ ଯିବା ଦିନ ଖବର ମିଳିଲା, ଏହି ଆବେଦନ ପତ୍ର ଜଷ୍ଟିସ ଭଗବତୀଙ୍କ କୋର୍ଟରେ ବିଚାର ପାଇଁ ଉଠିଛି । ସ୍ମରଣ ଅଛି, କେତେଜଣ ରାଜନୈତିକ ବଂଧୁ ନିରଂଜନ ପଟ୍ଟନାୟକଙ୍କୁ ପରିହାସ କରି କହିଲେ, ‘‘ଜଷ୍ଟିସ ଭଗବତୀ ଗଂଗାଧର ବାବୁଙ୍କର ବଂଧୁ, ଜୟ ସୁନିଶ୍ଚିତ, ଅଯଥା ଏତେ ବ୍ୟସ୍ତ କାହିଁକି ?’’ ମୁଁ ସେମାନଙ୍କ କଥାରେ ବାଧା ଦେଇ କହିଲି ‘‘ଆପଣମାନେ ଭଗବତୀଙ୍କୁ ଜାଣନ୍ତି ନାହିଁ । ନ୍ୟାୟ ବିଚାର କ୍ଷେତ୍ରରେ ତାଙ୍କ ନିକଟରେ ବ୍ୟକ୍ତିଗତ ବଂଧୁତାର ସ୍ଥାନ ନାହିଁ ।’’ କିନ୍ତୁ ମୋର ମନ୍ତବ୍ୟ ପ୍ରତି ରାଜନୀତିଜ୍ଞମାନେ ଗୁରୁତ୍ୱ ଦେଲେ ନାହିଁ । ଅଥଚ ମୁଁ ଯାହା କହିଥିଲି, ତାହାହିଁ ସତ୍ୟ ପ୍ରମାଣିତ ହେଲା । ଜଷ୍ଟିସ ଭଗବତୀଙ୍କ ଅଧ୍ୟକ୍ଷତାରେ ଗଠିତ ବିଚାରକ ମଣ୍ଡଳୀରେ ତାଙ୍କର ସହଯୋଗୀ ଥିଲେ ଜଷ୍ଟିସ ଏ. ଏନ୍. ସେନ୍ ଓ ଜଷ୍ଟିସ ଇରାଡ୍ରୀ । ଜଷ୍ଟିସ ସେନ୍ କଲିକତା ହାଇକୋର୍ଟରୁ ଓ ଜଷ୍ଟିସ ଇରାଡ୍ରୀ କେରଳ ହାଇକୋର୍ଟରୁ ସର୍ବୋଚ୍ଚ ଅଦାଲତକୁ ପଦୋନ୍ନତି ପାଇଥିଲେ । ଆବେଦନକାରୀ ବିଜୟ ମହାପାତ୍ରଙ୍କ ତରଫରୁ ସିନିଅର ଆଡ୍‌ଭୋକେଟ୍ ଗୋଏଲ ଦରଖାସ୍ତ ପକ୍ଷରେ ଦୁଇ ତିନୋଟି ବାକ୍ୟ କହିଛନ୍ତି କି ନାହିଁ ହଠାତ୍ ଜଷ୍ଟିସ ଭଗବତୀ ମତେ ଅପ୍ରତ୍ୟାଶିତ ଭାବରେ ପ୍ରଶ୍ନ କଲେ ‘‘ଅପିଲ କରିବା ପାଇଁ ଅନୁମତି କାହିଁକି ନ ଦିଆଯିବ ?’’ ନିର୍ବାଚନ କମିସନଙ୍କ ମତାମତର ଯଥାର୍ଥତା ପ୍ରତିପାଦନ କରିବାକୁ ଯାଇ ମୁଁ ସୁପ୍ରିମ କୋର୍ଟର ପୂର୍ବ ନିଷ୍ପତ୍ତି ଗୁଡ଼ିକର ନଜିର ଦେଖାଇ ଯଥାରୀତି ମୋର ବକ୍ତବ୍ୟ ପେଶ୍ କଲେ ମଧ୍ୟ ଭଗବତୀ ସନ୍ତୁଷ୍ଟ ହେଲେ ନାହିଁ । ସେ କହିଲେ ‘‘ପୂର୍ବ ନିଷ୍ପତ୍ତି ଗୁଡ଼ିକ ଯେ ଆପଣଙ୍କ ସପକ୍ଷରେ ମୁଁ ତାହା ଅସ୍ୱୀକାର କରୁନାହିଁ । କିନ୍ତୁ ମନ୍ତ୍ରୀ ହୋଇ ଜଣେ ରାଜ୍ୟ ସରକାରଙ୍କ ସହ ବ୍ୟବସାୟ କରି ପାରିବ ଏହାର ଯଥାର୍ଥତା ମୁଁ ଗ୍ରହଣ କରିବାକୁ ଅକ୍ଷମ । ଯଦି ଭେଙ୍କଟ ରାଓ ଓ ବୃନ୍ଦାବନ ନାୟକ କେସର ନିଷ୍ପତ୍ତି ଏପରି ନୀତିକୁ ସମର୍ଥନ କରୁଥାଏ, ମୋ ମତରେ ତାର ପୁନର୍ବିଚାର ହେବା ଉଚିତ ।’’ ମୁଁ ଯେତେବେଳେ କହିଲି ଯେ ଉପରୋକ୍ତ କେସ୍ ଦୁଇଟି ପାଂଚଜଣିଆ ବିଚାରକମଣ୍ଡଳୀ ଦ୍ୱାରା ପ୍ରଦତ୍ତ, ଭଗବତୀ ଉତ୍ତର

ଦେଲେ ''ଆବଶ୍ୟକ ମନେ କଲେ, ଆମେ ଏ କେସ୍‌ଟିକୁ ଅଧିକ ସଂଖ୍ୟକ ଜଜ୍‌ଙ୍କୁ ନେଇ ଗଠିତ ବିଚାରକ ମଣ୍ଡଳୀକୁ ପଠାଇ ଦେଇ ପାରୁ ।''

ସ୍ପେଶିଆଲ ଲିଭ ପିଟିସନର ବିଚାର ସାଧାରଣତଃ ପାଂଚ ଦଶ ମିନିଟ ମଧ୍ୟରେ ଶେଷ ହୋଇଯାଏ । କିନ୍ତୁ ମୋର ବିତର୍କ ଅଧଘଣ୍ଟାଏରୁ ଅଧିକ ସମୟ ଚାଲିଲେ ମଧ୍ୟ ମୋର ଯୁକ୍ତି ଭଗବତୀଙ୍କ ପାଇଁ ସନ୍ତୋଷଜନକ ନଥିଲା । ଆଲୋଚନା ମଧ୍ୟରେ ମୁଁ ଉପଲବ୍ଧି କଲି, ଜଷ୍ଟିସ ଇରାଡ଼ୀ ସଂପୂର୍ଣ୍ଣ ଭାବରେ ମୋ ସହ ଏକମତ, ଜଷ୍ଟିସ ସେନ୍ ଦୋଦୁଲ୍ୟମାନ ଅବସ୍ଥାରେ, କିନ୍ତୁ ଜଷ୍ଟିସ ଭଗବତୀ ଅପିଲ ପାଇଁ ଅନୁମତି ଦେବାକୁ ବଦ୍ଧ ପରିକର । ତାଙ୍କ ମତରେ ଜଣେ ବିଧାୟକ ବା ମନ୍ତ୍ରୀ ସରକାରଙ୍କ ସହ ବ୍ୟବସାୟ କରିବା ଦ୍ୱାରା ଜନ-ପ୍ରତିନିଧି ନିର୍ବାଚନ ଆଇନରେ ବର୍ଣ୍ଣିତ ଅଯୋଗ୍ୟତାର ପୁନରାବୃତ୍ତି କରୁଛନ୍ତି । ହଠାତ୍ ମନେ ପଡ଼ିଗଲା ପୂର୍ବତନ ଆଟର୍ଣ୍ଣି ଜେନେରାଲ ପ୍ରଖ୍ୟାତ ଅଧିବକ୍ତା ସ୍ୱର୍ଗୀୟ ସି. କେ. ଦପ୍ତରୀଙ୍କ ଉପସ୍ଥାପନା ଶୈଳୀ । ବିଚାରକମାନଙ୍କ ଆଡୁ ପ୍ରତିରୋଧର ସମ୍ମୁଖୀନ ହେଲେ, ଯଥାସମ୍ଭବ ସଂଘର୍ଷର ପଥ ଛାଡ଼ି ସେ ତାଙ୍କର ଯୁକ୍ତିକୁ ଭିନ୍ନ ଦିଗରୁ ବା ନୂତନ ଦୃଷ୍ଟିକୋଣରୁ ଉପସ୍ଥାପିତ କରନ୍ତି । ମୋ ମନରେ ଗୋଟାଏ ଝଲକ୍ ଖେଳିଗଲା । ମୁଁ ତୁରନ୍ତ ନିଷ୍ପତ୍ତି ନେଲି, ପୁନରାବୃତ୍ତିରେ ଲାଭ ନାହିଁ । ମୋତେ ବିଷୟଟିକୁ ଭିନ୍ନ ଦିଗରୁ ପେଶ୍ କରିବାକୁ ହେବ ।

ଜଷ୍ଟିସ ଭଗବତୀଙ୍କୁ ସମ୍ବୋଧନ କରି ମୁଁ କହିଲି, କ୍ଷେତ୍ର ବିଶେଷର ନିର୍ବାଚନ ପୂର୍ବରୁ ଅର୍ଜିତ ଅଯୋଗ୍ୟତାର ପୁନରାବୃତ୍ତି ହେଲେ ନିର୍ବାଚନ ହୁଏତ ଅସିଦ୍ଧ ହୋଇପାରେ, କିନ୍ତୁ ମାଲ ଯୋଗାଣ କ୍ଷେତ୍ରରେ ଚୁକ୍ତି ସରକାରଙ୍କ ସହ ହୋଇଥିବା ଦରକାର । ଆଇନରେ କେବଳ ସରକାରଙ୍କ ସହ ଏ ପ୍ରକାର ଚୁକ୍ତିକୁ ନିଷିଦ୍ଧ କରାଯାଇଛି । କିନ୍ତୁ ମାଇନିଂ କର୍ପୋରେସନ ଏକ ଯୌଥ ଅନୁଷ୍ଠାନ ବା ଲିମିଟେଡ୍ କଂପାନୀ, ଆଇନ୍ ଦୃଷ୍ଟିରେ ଯାହାର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଓ ଅସ୍ତିତ୍ୱ ଅଛି । ସରକାର ଏହି କଂପାନୀର ସର୍ବୋଚ୍ଚ ଅଂଶୀଦାର ହୋଇ ପାରନ୍ତି, କିନ୍ତୁ ସରକାରୀ କଂପାନୀ ଓ ଖୋଦ୍ ସରାକରଙ୍କ ମଧ୍ୟରେ ଯେଉଁ ମୌଳିକ ପାର୍ଥକ୍ୟ ରହିଛି ତାକୁ ଉପେକ୍ଷା କରାଯାଇ ପାରିବ ନାହିଁ । ଭଗବତୀଙ୍କ ନିଜ ନିଷ୍ପତ୍ତି ଗୁଡ଼ିକରେ ଏ ବ୍ୟବଧାନ ଉପରେ ଯେଉଁ ଗୁରୁତ୍ୱ ଦିଆଯାଇଛି, ସେ ପ୍ରତି ବିଚାରପତିମାନଙ୍କର ଦୃଷ୍ଟି ଆକର୍ଷଣ କରି ମୁଁ କହିଲି, ସରକାରୀ

କଂପାନୀ ସହିତ ବାଣିଜ୍ୟ ପାଇଁ ଚୁକ୍ତି କଲେ ଏ ପ୍ରତିବନ୍ଧକ ପ୍ରଯୁଜ୍ୟ ନୁହେ । ଅନ୍ୟଥା ଆଇନର ସଂଶୋଧନ କରିବାକୁ ହେବ । ଏହି ଦୃଷ୍ଟିରୁ ମନ୍ତ୍ରୀ ପଟ୍ଟନାୟକଙ୍କର ନିର୍ବାଚନ କେବେ ଅସିଦ୍ଧ ନଥିଲା, ଏବେ ମଧ୍ୟ ନୁହେ ।

ଏହି ବିବାଦ ଉପରେ ନୂତନ ଆଲୋକପାତ କରିଥିବା ହେତୁ, ଉଭୟ ଜଷ୍ଟିସ ସେନ୍ ଓ ଜଷ୍ଟିସ ଭଗବତୀ ମୋ ଉପରେ ସାଧୁବାଦ ଅଜାଡ଼ି ଦେଲେ । ପ୍ରଥମ ଯୁକ୍ତି ଉପରେ ବିଚାରପତିମାନଙ୍କ ମଧ୍ୟରେ ମତଭେଦ ଥିଲା । କିନ୍ତୁ ଦ୍ୱିତୀୟ ଯୁକ୍ତିଟି ସର୍ବୋଚ୍ଚ ଅଦାଲତ ବିନା ଦ୍ୱିଧାରେ ଗ୍ରହଣ କରିନେଲେ । ଅପିଲ ଆବେଦନ ପ୍ରାଥମିକ ଅବସ୍ଥାରେ ଖାରଜ ହେଲା ଓ ନିରଂଜନ ପଟ୍ଟନାୟକ ଜୟଲାଭ କଲେ । ଏକ ବିରାଟ ବିପଦରୁ ତ୍ରାହି ମିଳିଲା ।

ଅଳ୍ପଦିନ ପରେ ମୋ ପରାମର୍ଶକ୍ରମେ ପଟ୍ଟନାୟକ ଏ ଖଣିର ମାଲିକାନା ହସ୍ତାନ୍ତର କରି ଦେଇଥିଲେ ।



# ଆଇନଜୀବି ସମ୍ମିଳନୀ

ଦୀର୍ଘ କୋଡ଼ିଏ ବର୍ଷ ପରେ ନିଦ୍ରାଭଂଗ ହେଲା। ୧୯୮୦ ମସିହା ଡିସେମ୍ବର ଶେଷ ସପ୍ତାହରେ ବ୍ରହ୍ମପୁରରେ ନିଖିଳ ଉତ୍କଳ ଆଇନଜୀବି ସମ୍ମିଳନୀ ଅନୁଷ୍ଠିତ ହେଲା। ପୁର୍ନଜନ୍ମ କହିଲେ ଠିକ୍ ହେବ। ୧୯୬୦ ମସିହାର ଢେଙ୍କାନାଳ ସମ୍ମିଳନୀ ଥିଲା ଶେଷ ରାଜ୍ୟସ୍ତରୀୟ ମିଳନ। ହାଇକୋର୍ଟ ବାର ଆସୋସିଏସନର ତତ୍କାଳୀନ ସଭାପତି ଲଳିତ କୁମାର ଦାସଗୁପ୍ତ ଏହି ସମ୍ମଳନୀରେ ଅଧ୍ୟକ୍ଷତା କରିଥିଲେ। ମନେ ଅଛି, ଏହି ସଭାରେ କଟକରୁ ଗତିକୃଷ୍ଣ ମିଶ୍ର (ପରେ ଜଷ୍ଟିସ ମିଶ୍ର), ଗୌର ଗୋପାଳ ଦାସ, ରଘୁନାଥ ଦାସଙ୍କ ସମେତ ମୁଁ ମଧ୍ୟ ଯୋଗ ଦେଇଥିଲି। ତା ପରେ କେଉଁ ପ୍ରକାରର ତନ୍ଦ୍ରା ଗ୍ରାସ କଲା ଯେ ଦୀର୍ଘ କୋଡ଼ିଏ ବର୍ଷ ଧରି ଚାରିଆଡ଼ ଶୂନ୍‌ଶାନ। ବ୍ରହ୍ମପୁର ସମ୍ମିଳନୀର ମୁଖ୍ୟ ଆୟୋଜକ ଥିଲେ ଆଡ଼ଭୋକେଟ୍ ବସନ୍ତ କୁମାର ପାଣିଗ୍ରାହୀ, ବିପିନ ବିହାରୀ ରଥ ଓ ନରସିଂହ ପଣ୍ଡା ପ୍ରମୁଖ। ପାଣିଗ୍ରାହୀ ସବୁପ୍ରକାର ସାଧାରଣ କାର୍ଯ୍ୟରେ ସବୁବେଳେ ଆଗୁଆ, ଯଦିଓ ସେ କୌଣସି ରାଜନୈତିକ ଦଳ ସହିତ ସଂପୃକ୍ତ ନୁହନ୍ତି। କଟକରୁ ସେମାନଙ୍କର ସହଯୋଗୀ ଥିଲେ ରଣଜିତ ମହାନ୍ତି, ଅଜିତ ପଶାୟତ୍ ଓ ଅନ୍ୟମାନେ। ପ୍ରଥମ ଦିନର ଅଧିବେଶନରେ ସଭାପତିତ୍ୱ କରିଥିଲେ ଏକଦା ଆଇନଜୀବି ସମାବେଶର ପୁରୋଧା ସ୍ୱନାମଧନ୍ୟ ଜଷ୍ଟିସ ହରିହର ମହାପାତ୍ର। ଦ୍ୱତୀୟ ଦିନର ଶେଷ ଅଧିବେଶନରେ ମୁଖ୍ୟବକ୍ତା ଥିଲେ ଦୁଇଜଣ ପ୍ରାକ୍ତନ ଆଡ଼୍‌ଭୋକେଟ୍ ଜେନେରାଲ ସ୍ୱର୍ଗୀୟ ଅଶୋକ ଦାସ ଓ ମୁଁ। ସଭା ଶେଷରେ ବୟୋଜ୍ୟେଷ୍ଠ ଅଧିବକ୍ତାମାନଙ୍କୁ ମାନପତ୍ର ଓ ଉପଢ୍ୌକନ ପ୍ରଦାନ କରାଯାଇଥିଲା। ପରବର୍ଷ ପାଇଁ ସଭାପତି ନିର୍ବାଚିତ ହେଲେ ବସନ୍ତ କୁମାର ପାଣିଗ୍ରାହୀ ଓ ସଂପାଦକ ଅରିଜିତ ପଶାୟତ (ବର୍ତ୍ତମାନ ଜଷ୍ଟିସ ପଶାୟତ)

ଦ୍ୱିତୀୟ ସମ୍ମିଳନୀ ଅନୁଷ୍ଠିତ ହେଲା ପୁରୀରେ, ୧୯୮୧ ବଡ଼ଦିନ ଛୁଟିରେ। ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଥିଲେ ଆଡ଼୍‌ଭୋକେଟ୍ ନାରାୟଣ ମିଶ୍ର ଓ ଅନ୍ୟ ଉଦ୍ୟୋକ୍ତା ଥିଲେ ବରିଷ୍ଠ ଆଡ୍‌ଭୋକେଟ ଉମାକାନ୍ତ ମିଶ୍ର, ପ୍ରହଲ୍ଲାଦ ମହାନ୍ତି ଓ ଅନ୍ୟ ବହୁ ଯୁବ ଆଇନ୍‌ଜୀବି। ବିଭିନ୍ନ ଜିଲ୍ଲାରୁ ବହୁ ସଂଖ୍ୟାରେ ପ୍ରତିନିଧି ଯୋଗ ଦେଇଥିଲେ। ପ୍ରଥମ ଦିନର ମୁଖ୍ୟ ବକ୍ତା ଥିଲେ ପଶ୍ଚିମ ବଂଗଳାର

ଅନ୍ଧ ବାରିଷ୍ଟର ଓ ଅତିରିକ୍ତ ଆଡ୍‌ଭୋକେଟ୍ ଜେନେରାଲ ସାଧନ ଗୁପ୍ତ, ଦିଲ୍ଲୀ ଆଇନ ବିଦ୍ୟାଳୟର ପ୍ରାଧ୍ୟାପକ (ବର୍ତ୍ତମାନ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଉପକୁଳ ପତି) ଡକ୍ଟର ଉପେନ୍ଦ୍ର ବକ୍ସି, ମୁଁ ଓ ରଣଜିତ୍ ମହାନ୍ତି। ରାଜନୀତିରେ ବୈଶିଷ୍ଟ୍ୟ ଅର୍ଜନ କରିଥିବା ପୂର୍ବତନ ବାଚସ୍ପତି ଓ ତତ୍କାଳୀନ କେନ୍ଦ୍ର ଉପମନ୍ତ୍ରୀ ବ୍ରଜ ମୋହନ ମହାନ୍ତି ଓ ପାର୍ଲିଆମେଣ୍ଟ ସଦସ୍ୟ ସୋମନାଥ ରଥ ମଧ୍ୟ ଭାଷଣ ଦେଇଥିଲେ। ଦ୍ୱିତୀୟ ଦିନର ଉଦ୍‌ଯାପନ ଉତ୍ସବରେ ପୌରୋହିତ୍ୟ କରିଥିଲେ ସମାଜ ସଂପାଦକ ଡକ୍ଟର ରାଧାନାଥ ରଥ ଓ ମୁଖ୍ୟ ବିଚାରପତି ଜଷ୍ଟିସ ରଂଗନାଥ ମିଶ୍ର। ପର ବର୍ଷ ପାଇଁ ସର୍ବସମ୍ମତି କ୍ରମେ ମୁଁ ସଭାପତି ଓ ପଶାୟତ ସଂପାଦକ ନିର୍ବାଚିତ ହୋଇଥିଲୁ।

୧୯୮୨ ଡିସେମ୍ବର ଶେଷ ସପ୍ତାହରେ ତୃତୀୟ ଆଇନଜୀବି ସମ୍ମିଳନୀ ଅନୁଷ୍ଠିତ ହେଲା ପଶ୍ଚିମ ଓଡ଼ିଶା ସଂସ୍କୃତିର ପ୍ରାଣକେନ୍ଦ୍ର ସମ୍ବଲପୁର ସହରରେ। ନଭେମ୍ବର ଶେଷ ସପ୍ତାହରେ ମୁଁ ଓ ପଶାୟତ୍ ଥରେ ସମ୍ବଲପୁର ଯାଇ ବାର ଆସୋସିଏସନ ହଲରେ ଆୟୋଜିତ ଏକ ସଭାରେ ପ୍ରାଥମିକ ବ୍ୟବସ୍ଥା କରିବା ପାଇଁ ସଭ୍ୟମାନଙ୍କୁ ଅନୁରୋଧ କରିଥିଲୁ। ଏହି ସଭାରେ ‘‘ଆଇନଜୀବି ଓ ରାଜନୀତି’’ ସଂକ୍ରାନ୍ତରେ ମୁଁ ଏକ କ୍ଷୁଦ୍ର ଭାଷଣ ଦେଇଥିଲି। ଅଭ୍ୟର୍ଥନା ସମିତିର ସଭାପତି ଆଡ୍‌ଭୋକେଟ୍ କିଶୋରୀ ମୋହନ ପଣ୍ଡା ଉପ -ସଭାପତି ଜଗନ୍ନାଥ ହୋତା ଏବଂ ବିପିନ ବିହାରୀ ନାୟକ, ରମଣୀ ରଂଜନ ଦୁବେ, ପ୍ରାଣକୃଷ୍ଣ ମିଶ୍ର ଓ ହର ପ୍ରସାଦ ନାୟକ ପ୍ରମୁଖ ବନ୍ଧୁ ବଂଧୁ ସମ୍ମିଳନୀର ସଫଳତା ପାଇଁ ପ୍ରାଣପାତ ଉଦ୍ୟମ କରିଥିଲେ। ବରିଷ୍ଠ ଅଧିବକ୍ତା ସ୍ୱର୍ଗୀୟ ଶ୍ରଦ୍ଧାକର ସୂପକାର ଓ ସ୍ୱର୍ଗୀୟ ମାନ ଭଂଜନ ବହିଦାରଙ୍କର ପୂର୍ଣ୍ଣ ସହଯୋଗ ଓ ସମ୍ମିଳନୀ ପ୍ରାଂଗଣରେ ସେମାନଙ୍କର ଉପସ୍ଥିତି ଆମ୍ଭମାନଙ୍କୁ ଅସୀମ ପ୍ରେରଣା ଦେଇଥିଲା। ସମ୍ମିଳନୀର ସାଧାରଣ ଅଧିବେଶନ ଉଦ୍‌ଘାଟନ କରିଥିଲେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି (ପରକାଳରେ ଭାରତର ପ୍ରଧାନ ବିଚାରପତି) ଜଷ୍ଟିସ ରଂଗନାଥ ମିଶ୍ର। ସେ ତାଙ୍କର ଲିଖିତ ଭାଷଣ ପାଠ କରି ଆଇନ ବୃତ୍ତିରେ ନୈତିକତା ଅବଲମ୍ବନ ଉପରେ ବିଶେଷ ପ୍ରାଧାନ୍ୟ ଦେଇଥିଲେ। ସଂପାଦକ ଅରିଜିତ ପଶାୟତ ବାର୍ଷିକ ବିବରଣୀ ପାଠ କରିବା ପରେ ମୁଁ ସଭାପତି ଅଭିଭାଷଣ ପ୍ରଦାନ କରିଥିଲି।

ପ୍ରଥମ ସଂଧ୍ୟାର ସାଧାରଣ ଅଧିବେଶନ ପରେ ଅଭ୍ୟର୍ଥନା ସମିତି ପକ୍ଷରୁ ଆୟୋଜିତ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରଦର୍ଶିତ ହୋଇଥିଲା। ବରଗଡ଼ର ଏକ ସାଂସ୍କୃତିକ ଅନୁଷ୍ଠାନ ନୃତ୍ୟ ବିଚିତ୍ରା ପ୍ରଦର୍ଶନ କରିଥିଲେ। ସମ୍ବଲପୁରର ସୁପ୍ରସିଦ୍ଧ କଣ୍ଠଶିଳ୍ପୀ ଫକୀର ମୋହନ ପଟ୍ଟନାୟକଙ୍କ ଗୀତ ଗୁଡ଼ିକ ଥିଲା ଅତି ଚିତ୍ତାକର୍ଷକ। ଦ୍ୱିତୀୟ ଦିନ ସକାଳେ ଜମିଜମା ସଂସ୍କାର ଓ ଫୌଜଦାରୀ କାର୍ଯ୍ୟବିଧିର ପରିବର୍ତ୍ତନ ସଂପର୍କରେ ଆଲୋଚନାଚକ୍ର ଅନୁଷ୍ଠିତ ହେଲା। ସଂଧ୍ୟା ଅଧିବେଶନର ମୁଖ୍ୟ ଅତିଥି ଥିଲେ ପୂର୍ବତନ ଚିଫ୍ ଜଷ୍ଟିସ ଗତିକୃଷ୍ଣ ମିଶ୍ର ଓ ଅନ୍ୟମାନଙ୍କ ମଧ୍ୟରେ ସ୍ୱର୍ଗୀୟ ଶ୍ରଦ୍ଧାକର ସୂପକାର ଓ ଲିଙ୍ଗରାଜ ରଥ (ବର୍ତ୍ତମାନ ଜଷ୍ଟିସ ରଥ) ନିଜ ନିଜର ବକ୍ତବ୍ୟ ପ୍ରଦାନ କରିଥିଲେ। ଟେପ ରେକର୍ଡ କରାଯାଇଥିବା ମୋର ସଭାପତି ଅଭିଭାଷଣର କେତେକାଂଶର ଓଡ଼ିଆ ଅନୁବାଦ ଏଠାରେ ଉଦ୍ଧାର କରିବାର ଲୋଭ ସମ୍ବରଣ କରି ପାରୁନାହିଁ। ଅନ୍ୟ ଅନେକ କଥା ମଧ୍ୟରେ ମୁଁ କହିଥିଲି :

''.... ବଂଧୁଗଣ ! ଆଇନଜୀବିମାନଙ୍କର ଏହି ବାର୍ଷିକ ସମ୍ମିଳନୀରେ ବିଗତ ବର୍ଷର କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ସଂପର୍କରେ ସୂଚନା ଦେବାକୁ ଉଚିତ ବିବେଚନା କରୁଛି। ଗତ ବର୍ଷକ ମଧ୍ୟରେ ଆମ ମଧ୍ୟରୁ କେତେକ ପ୍ରତିଷ୍ଠିତ ବର୍ଷୀୟାନ ଆଇନଜୀବି ଅନ୍ତିମ ବିଦାୟ ନେଇଛନ୍ତି। ଅବଶ୍ୟ ସେମାନଙ୍କ ମଧ୍ୟରୁ କେତେକ ଜୀବନର ଚତୁର୍ଥ ପାଦରେ ପହଂଚି ସାରିଥିଲେ। କିନ୍ତୁ ବରିଷ୍ଠ ବଂଧୁମାନଙ୍କର ବିୟୋଗରେ ଆମ୍ଭେମାନେ ସେମାନଙ୍କର ସ୍ନେହ ସଂଭାଷଣ, ବିଭିନ୍ନ ସମସ୍ୟା ଉପରେ ଦିଗ୍‌ଦର୍ଶନ ଓ ସେମାନଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ପ୍ରତିଛବି ହରାଇ ବସିଛୁ। କେତେଜଣ ତରୁଣ ଆଇନଜୀବି, ଯେଉଁମାନେ ଏ ରଂଗଭୂମିରେ ନିଜ ନିଜର ଅଭିନୟ ସମାପ୍ତ କରି ନଥିଲେ, ମୃତ୍ୟୁର କରାଳ ଗ୍ରାସ ସେମାନଙ୍କୁ ଛଡ଼ାଇ ନେଇଛି। ଏହି ସ୍ୱର୍ଗତଃ ତରୁଣ ଅଧିବକ୍ତାମାନଙ୍କ ମଧ୍ୟରେ ଅଖିଳ ମୋହନ ପଟ୍ଟନାୟକଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ। ଅଖିଳର ଅକାଳ ବିୟୋଗ କେବଳ ଏ ବୃତ୍ତି ପାଇଁ ନୁହେଁ, ଓଡ଼ିଆ ସାହିତ୍ୟ ବିଶେଷତଃ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ଅପୂରଣୀୟ ଶୂନ୍ୟତା ସୃଷ୍ଟି କରିଛି। ତାଙ୍କର ପ୍ରକାଶ ଶୈଳୀ, ଦାରୁଣ ବ୍ୟଂଗୋକ୍ତି ଓ ଗଭୀର ମାନବବାଦ ପାଇଁ ଚିରଦିନ ସ୍ମରଣୀୟ ହୋଇ ରହିବେ। ମୃତ୍ୟୁର ଆମନ୍ତ୍ରଣ ମଣିଷର କ୍ଷମତାର ବହିର୍ଭୂତ ଏବଂ ଆମେ କେବଳ ନୀରବ ଦ୍ରଷ୍ଟା ଭାବରେ ତାଙ୍କର ଅକାଳ ମୃତ୍ୟୁରେ ଶୋକ ପ୍ରକାଶ କରୁଛୁ।

ଏହି ଅବସରରେ ଆଇନ କ୍ଷେତ୍ରରେ ଗତ ବର୍ଷକ ମଧ୍ୟ ଯେଉଁ ସବୁ ବିରାଟ ପରିବର୍ତ୍ତନ ଓ ପ୍ରଗତି ପରିଲକ୍ଷିତ ହୋଇଛି, ତାର ସମୀକ୍ଷା ପ୍ରୟୋଜନ। ଏ ପରିବର୍ତ୍ତନ କେବଳ ଆଇନଜୀବି ସଂପ୍ରଦାୟକୁ ପ୍ରଭାବିତ କରିନାହିଁ, ସମାଜ ଜୀବନ ଓ ବିଚାର ବ୍ୟବସ୍ଥା ଉପରେ ତାର ପ୍ରଭାବ ସୁଦୂରପ୍ରସାରୀ । ବିଚାର ସଂସ୍ଥା ବର୍ତ୍ତମାନ ବହୁପ୍ରକାର ସମାଲୋଚନାର ଶରବ୍ୟ ହୋଇଛି। ମୋକଦ୍ଦମା ଫଏସଲାରେ ଅହେତୁକ ବିଳମ୍ବ, କାର୍ଯ୍ୟବିଧି ପ୍ରଣାଳୀର ଜଟିଳତା ହେତୁ ବିଚାର ପ୍ରକ୍ରିୟାରେ ଅସ୍ୱାଭାବିକ ମନ୍ଥରତା ଓ ମୋକଦ୍ଦମା ଖର୍ଚ୍ଚର ଅତ୍ୟଧିକ ବୃଦ୍ଧି ଏହି ସବୁ ସମାଲୋଚନାର କାରଣ ଏବଂ ଏ ସମାଲୋଚନାର ଯଥାର୍ଥତା ଅଛି। କିନ୍ତୁ ପ୍ରଚଳିତ ବିଚାର ବ୍ୟବସ୍ଥାର ବିକଳ୍ପ ସଂପର୍କରେ କେହି ସୁନିର୍ଦ୍ଦିଷ୍ଟ ସୂଚନା ଦେଇ ପାରୁନାହାନ୍ତି। ବିଚାର ବ୍ୟବସ୍ଥା ଆମ ସଂବିଧାନର ଏକ ଅପରିହାର୍ଯ୍ୟ ଅଂଗ ଏବଂ ତାର ସୁରକ୍ଷା ପାଇଁ ଆମକୁ ଯତ୍ନବାନ ହେବାକୁ ପଡ଼ିବ। ଅବଶ୍ୟ ଏ ବ୍ୟବସ୍ଥାର ତ୍ରୁଟି ଦୂର କରିବା ଆବଶ୍ୟକ ଓ ଏହାର ଅନ୍ତର୍ନିହିତ ଦୁର୍ବଳତା ଦୂର କରିବା ପାଇଁ ସଂଗ୍ରାମ କରିବାକୁ ହେବ। ଆଇନଜୀବିମାନେ ଯେତେବେଳେ ବାର୍ଷିକ ସମ୍ମିଳନୀରେ ମିଳିତ ହୁଅନ୍ତି, ଆଲୋଚନାର ପରିସରକୁ କ୍ଷୁଦ୍ର ସାମୟିକ ଘଟଣାବଳୀ ମଧ୍ୟରେ ଆବଦ୍ଧ ନ ରଖି, ଆଇନ ସମସ୍ୟାର କିପରି ସମାଧାନ ହେବ ଓ ବିଚାର ବ୍ୟବସ୍ଥାରେ ସଂସ୍କାର ଅଣାଯାଇ ପାରିବ, ସେ ବିଷୟରେ ଅଧିକ ଧ୍ୟାନ ଦେବା ଉଚିତ।

ବିଗତ ବର୍ଷରେ ଆଇନ ତତ୍ତ୍ୱ ଓ ବିଧି ଶାସ୍ତ୍ରରେ ଯେଉଁ ସବୁ ମୌଳିକ ପରିବର୍ତ୍ତନ ହୋଇଛି, ତାର ସମୀକ୍ଷା କରିବା ଉଚିତ ମନେ କରୁଚି। ଏ ପରିବର୍ତ୍ତନ ଆଇନର ସଂଶୋଧନ ଜରିଆରେ ସମ୍ଭବ ହୋଇ ନାହିଁ। ପରିବର୍ତ୍ତନ ଆସିଛି ସର୍ବୋଚ୍ଚ ଅଦାଲତ ବା ସୁପ୍ରିମକୋର୍ଟଙ୍କର ସମୟୋପଯୋଗୀ ବିଶ୍ଳେଷଣ ଓ ନିର୍ଦ୍ଧାରଣ ବଳରେ। କୋର୍ଟର ଆଶ୍ରୟ ନେବା ସଂପର୍କରେ ସୁପ୍ରିମକୋର୍ଟ ଯେଉଁ ନୀତିର ବୟାନ କରିଛନ୍ତି, ନ୍ୟାୟ ପ୍ରାର୍ଥୀଙ୍କ ପାଇଁ ତାହା ନୂତନ ଓ ବ୍ୟାପକ ସୁଯୋଗ ସୃଷ୍ଟି କରିଛି। ''ଜଜେସ ଟ୍ରାନ୍ସଫର'' ମୋକଦ୍ଦମାରେ ସୁପ୍ରିମ କୋର୍ଟ ଯେଉଁ ଘୋଷଣା କରିଛନ୍ତି, ତାହା ଫଳରେ ଯେ କୌଣସି ବ୍ୟକ୍ତି ପ୍ରତ୍ୟକ୍ଷ ଭାବରେ କ୍ଷତିଗ୍ରସ୍ତ ନ ହେଲେ ମଧ୍ୟ, ସର୍ବସାଧାରଣ ସ୍ୱାର୍ଥର ସୁରକ୍ଷା ପାଇଁ କୋର୍ଟର ଆଶ୍ରୟ ନେଇ ପାରିବେ। ପୂର୍ବେ ଫୌଜଦାରୀ ଆଇନର ପ୍ରୟୋଗ କ୍ଷେତ୍ରରେ ଅବଶ୍ୟ ଏହି ନୀତି ପ୍ରଚଳିତ ଥିଲା। ବର୍ତ୍ତମାନ ସୁପ୍ରିମକୋର୍ଟର

ନିଷ୍ପତ୍ତି ଫଳରେ ପୂର୍ବର "ଲୋକ ଷ୍ଟାଣ୍ଡି' ନୀତିରେ ଆମୂଳଚୂଳ ପରିବର୍ତ୍ତନ ଘଟିଛି। ବର୍ତ୍ତମାନ ସନ୍ଧିତା ବର୍ଜିତ ନ ହୋଇଥିଲେ, ସଂବିଧାନର ୨୨୬ ଧାରା ବା ୩୨ ଧାରା ଅନୁଯାୟୀ ଯେ କୌଣସି ବ୍ୟକ୍ତି ଯଥାକ୍ରମେ ହାଇକୋର୍ଟ ଓ ସୁପ୍ରିମ କୋର୍ଟରେ ସର୍ବସାଧାରଣ ସ୍ୱାର୍ଥରକ୍ଷା ପାଇଁ ଆବେଦନ କରି ପାରିବେ।

ଚଳିତ ବର୍ଷ ଆଇନ କ୍ଷେତ୍ରରେ ଏକ ନୂତନ କିସମର ପରିବର୍ତ୍ତନର ସୂତ୍ରପାତ ହୋଇଛି। ମୋକଦ୍ଦମା ବିଚାର ସମୟରେ ସରକାର ବା ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀମାନେ ଗୋପନୀୟତାର ଦ୍ୱାହି ଦେଇ କୋର୍ଟ ବା ପକ୍ଷମାନେ ତଲବ କରିଥିବା ଦଲିଲ ଗୁଡ଼ିକ ଦାଖଲ ନ କରିବା ପାଇଁ ଯେଉଁ ବିଶେଷ ଅଧିକାର ବା ପ୍ରିଭିଲେଜ ଦାବୀ କରନ୍ତି, ତାର ମୂଳୋତ୍ପାଟନ କରାଯାଇଛି। ପ୍ରଚଳିତ ନିୟମ ଅନୁଯାୟୀ ଗୋପନୀୟ ଦଲିଲ ଦାଖଲ କରିବା ପାଇଁ ସରକାର ବା ବିଭାଗୀୟ କର୍ତ୍ତୃପକ୍ଷ ବିଶେଷ ଅଧିକାର ଦାବୀ କଲେ, କୋର୍ଟ ଦଲିଲ ଉପସ୍ଥାପନା ପାଇଁ ବାଧ୍ୟ କରି ପାରୁ ନଥିଲେ। ପ୍ରମାଣ ଆଇନର ୧୨୩ ଧାରାର ବିଶ୍ଳେଷଣ କରି ୧୯୬୧ ମସିହାରେ ସୁପ୍ରିମକୋର୍ଟ ସୁଖଦେବ ସିଂ କେସ୍‌ରେ ଏହି ନୀତିକୁ ସାବ୍ୟସ୍ତ କରିଥିଲେ। ଆନନ୍ଦର କଥା, ଏହି ବିଚାର ତତ୍ତ୍ୱକୁ ବର୍ତ୍ତମାନ ପ୍ରତ୍ୟାଖାନ କରାଯାଇଛି ଏବଂ ସୁପ୍ରିମ କୋର୍ଟଙ୍କ ମତରେ ସାଧାରଣ ଶାସନ କାର୍ଯ୍ୟରେ ନିଆଯାଇଥିବା ନିଷ୍ପତ୍ତି ସଂବଳିତ ନଥିକୁ ଗୋପନୀୟତା ନାମରେ ବିଚାରାଳୟର ସମୀକ୍ଷାରୁ ଲୁଚାଇ ରଖିବା ଆଇନ-ଶାସନର ପରିପନ୍ଥୀ ଓ ଏହାଦ୍ୱାରା ଶାସନ ତାନ୍ତ୍ରିକ ବ୍ୟଭିଚାର ପ୍ରଶ୍ରୟ ପାଏ। ଏହି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିର ପରିସର ଓ ତାତ୍ପର୍ଯ୍ୟ ସଂପର୍କରେ ଆଇନଜୀବିମାନେ ଅବହିତ ଓ ସଜାଗ ରହିବା ଉଚିତ।

ବିଚାର କ୍ଷେତ୍ରରେ ଚଳିତ ବର୍ଷ ଅନ୍ୟ ଯେଉଁ ଗୁରୁତ୍ୱପୂର୍ଣ୍ଣ ଅଗ୍ରଗତି ପରିଲକ୍ଷିତ ହୋଇଛି, ତାହା ହେଲା ପବ୍ଲିକ ଇଣ୍ଟରେଷ୍ଟ ଲିଟିଗେସନ ବା ଜନସ୍ୱାର୍ଥ ସମ୍ବଳିତ ମୋକଦ୍ଦମା ସଂପର୍କୀୟ ନୂତନ ନୀତି। 'ଏସିଆଡ୍' କେସ ଓ ଅନ୍ୟ କେତେକ କେସ୍‌ରେ ଜଷ୍ଟିସ୍ ପି.ଏନ୍ ଭଗବତୀ ଏହି ତତ୍ତ୍ୱର ବିଶ୍ଳେଷଣ କରି କହିଛନ୍ତି ଯେ ବ୍ୟକ୍ତିଗତସ୍ୱାର୍ଥ ବାଧାପ୍ରାପ୍ତ ନ-ହୋଇଥିଲେ ମଧ୍ୟ, ଦରିଦ୍ର ଜନସାଧାରଣଙ୍କ ହିତ ପାଇଁ ବା ସମୂହ ସ୍ୱାର୍ଥର ସୁରକ୍ଷା ପାଇଁ ଯେ କୌଣସି ବ୍ୟକ୍ତି କୋର୍ଟରେ ଆଶ୍ରୟ ନେଇ ପାରିବେ ଏପରିକି ବିଧିବଦ୍ଧ ରୀତିରେ ମକଦ୍ଦମା ଦାଏର

କରିବାକୁ ଆର୍ଥିକ ସ୍ୱଚ୍ଛଳତା ନଥିଲେ, ଉପଯୁକ୍ତ କ୍ଷେତ୍ରରେ ଖଣ୍ଡେ ସାଧାରଣ ପତ୍ର ମାଧ୍ୟମରେ ଯେ କୌଣସି ବ୍ୟକ୍ତି ହାଇକୋର୍ଟ ବା ସୁପ୍ରିମକୋର୍ଟର ଦୃଷ୍ଟି ଆକର୍ଷଣ କରି ପାରନ୍ତି ଓ ନ୍ୟାୟ ବିଚାର ଦାବୀ କରି ପାରନ୍ତି। ଦେଶର ଅଗଣିତ ଅଶିକ୍ଷିତ ଓ ନିଷ୍ପେସିତ ଜନ ସାଧାରଣଙ୍କୁ କାର୍ଯ୍ୟବିଧି ଆଇନର କଠୋର ପ୍ରୟୋଗ ଦ୍ୱାରା ନ୍ୟାୟ ବିଚାର ପାଇବାରୁ ବଂଚିତ କରିବା ଉଚିତ ନୁହେଁ। ଆଇନଜୀବିମାନେ ଏହି ନୂତନ ତତ୍ତ୍ୱର ସାରମର୍ମ ବୁଝିବା ଉଚିତ ଓ ଦରିଦ୍ର ଲୋକଙ୍କ ସ୍ୱାର୍ଥରକ୍ଷା ପାଇଁ ଏହି ନୀତିର କିପରି ବ୍ୟାପକ ପ୍ରୟୋଗ କରାଯାଇ ପାରେ, ସେ ବିଷୟରେ ଚିନ୍ତା କରିବା ଉଚିତ।

... ବଂଧୁଗଣ ! ବିଚାର ତତ୍ତ୍ୱ କ୍ଷେତ୍ରରେ ଏହି ଅଗ୍ରଗତି ନ୍ୟାୟପ୍ରାର୍ଥୀମାନଙ୍କ ପାଇଁ ବ୍ୟାପକ ସୁଯୋଗ ସୃଷ୍ଟି କରିଛି। ନ୍ୟାୟ ବିଚାର କ୍ଷେତ୍ରରୁ ବହୁ ବାଧା ବିଘ୍ନ ଦୂର ହୋଇ ପାରିଛି। ବର୍ତ୍ତମାନ ଏହି ନୂତନ ନିର୍ଦ୍ଧାରଣ ଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଆଇନଜୀବିମାନେ ଆଗେଇ ଆସିବା ଉଚିତ। ବିଚାର ବିଭାଗ ବିରୁଦ୍ଧରେ ଜାଗି ଉଠୁଥିବା ଅସନ୍ତୋଷ ବିରୁଦ୍ଧରେ ଅନ୍ୟମାନଙ୍କୁ ଦୋଷାରୋପ କରିବା ପରିବର୍ତ୍ତେ ଆଇନଜୀବିମାନେ ବିଚାର ବିଭାଗର ଅନ୍ତର୍ନିହିତ ତ୍ରୁଟି ନିରାକରଣ ପାଇଁ ନିଜେ ତତ୍ପର ହେବା ଉଚିତ। ବିଚାରକମାନେ ଆମରି ମଧ୍ୟରୁ ମନୋନୀତ ହୁଅନ୍ତି। ଆମେ ଯଦି କିଂଚିତ୍ ଆତ୍ମ ବିଶ୍ଳେଷଣ କରିବା ଓ ନିଜର ଚିନ୍ତାଧାରା ଓ ଆଚରଣକୁ ମାର୍ଜିତ କରିବା, ତାହହେଲେ ଆମର ଆଦର୍ଶ ନିଶ୍ଚିତ ଭାବରେ ବିଚାର ବିଭାଗରେ ପ୍ରତିଫଳିତ ହେବ .....।''



# ତୃତୀୟ ଥର

ତୃତୀୟ ଥର ପାଇଁ ଯେ ମୋତେ ଆଡ୍‌ଭୋକେଟ୍ ଜେନେରାଲ ଦାୟିତ୍ୱ ଗ୍ରହଣ କରିବାକୁ ହେବ ଏବଂ ମୋଟ ସାଢ଼େ ବାର ବର୍ଷ ଏ ଦାୟିତ୍ୱ ବହନ କରିବାକୁ ହେବ, ଏ କଥା ମୋ କଳ୍ପନାରେ ନଥିଲା । ୧୯୭୨ ମସିହାରେ ମୁଁ ପ୍ରଥମେ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତ ହେବାର ନ'ମାସ ପରେ ମନ୍ତ୍ରୀମଣ୍ଡଳ ଭାଙ୍ଗିଲା ଓ ରାଷ୍ଟ୍ରପତି ଶାସନ ଜାରୀ ହେଲା । ତତ୍‌କାଳୀନ ରାଜ୍ୟପାଳ ଏହି ଆସନରେ କୌଣସି ପରିବର୍ତ୍ତନ ଚାହିଁଲେ ନାହିଁ ଓ ମୋତେ ପୂର୍ବବତ୍ କାର୍ଯ୍ୟ କରିବାକୁ ହେଲା । ୧୯୭୪ ମସିହା ମାର୍ଚ୍ଚ ମାସର ସାଧାରଣ ନିର୍ବାଚନ ପରେ ନୂତନ କଂଗ୍ରେସ ମନ୍ତ୍ରୀମଣ୍ଡଳ ମୋତେ ସେହି ପଦରେ ପୁନଃନିଯୁକ୍ତି ଦେଇଥିଲେ । ଦୀର୍ଘ ପାଂଚ ବର୍ଷ ପରେ ୧୯୭୭ ମସିହା ମଇ ମାସରେ ମୋର ଇସ୍ତଫା ପତ୍ର ଗୃହୀତ ହେଲା । ତିନି ବର୍ଷର ଜନତା ଦଳ ଶାସନ ପରେ ୧୯୮୦ ମସିହା ଜୁନ୍ ମାସରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ପୁଣି ଯେତେବେଳେ କଂଗ୍ରେସ ଦଳ କ୍ଷମତାକୁ ଆସିଲେ, ଚାରିଆଡ଼େ ବିଶେଷତଃ ସେକ୍ରେଟାରୀଏଟ ଓ ହାଇକୋର୍ଟ ବାର୍‌ରେ ଚର୍ଚ୍ଚା ଆରମ୍ଭ ହେଲା ଯେ ମୁଁ ପୁଣିଥରେ ଆଡ୍‌ଭୋକେଟ ଜେନେରାଲ ହେଉଛି । ମୁଁ ଅବଶ୍ୟ କଂଗ୍ରେସ ଦଳ ବା ଅନ୍ୟ କୌଣସି ରାଜନୈତିକ ଦଳର ସଭ୍ୟ ନଥିଲି । କିନ୍ତୁ କେତେଜଣ ପରିଚିତ କଂଗ୍ରେସୀ ମନ୍ତ୍ରୀ ମୋତେ ଫୋନ୍‌ରେ କହିଲେ, ଜନତା ଶାସନରେ ନିଯୁକ୍ତ ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କୁ ପରିବର୍ତ୍ତନ କରିବା ପାଇଁ ନିଷ୍ପତ୍ତି ନିଆଯାଇଛି ଓ ଏ ସଂକ୍ରାନ୍ତରେ ମୋର ନାମ ବିଚାରାଧୀନ ଅଛି । ସେମାନେ ପରାମର୍ଶ ଦେଲେ ଯେ ଜାନକୀ ବାବୁଙ୍କ ସହିତ ସାକ୍ଷାତ କରି ଏ ବିଷୟରେ ଆଲୋଚନା କରିବା ଉଚିତ । ଏ କଥା ମଧ୍ୟ ଶୁଣିଲି ଯେ ମୁଖ୍ୟମନ୍ତ୍ରୀ ଚିଫ୍ ସେକ୍ରେଟାରୀ ସୁଧାଂଶୁ ମୋହନ ପଟ୍ଟନାୟକ ଓ ଆଇନ ବିଭାଗର ସଚିବ କେ.ପି. ମହାପାତ୍ରଙ୍କ (ପର କାଳରେ ଜଷ୍ଟିସ ମହାପାତ୍ର) ସହିତ ଏ ବିଷୟରେ ଆଲୋଚନା କରିଥିଲେ ଓ ସେମାନେ ସମସ୍ୱରରେ ମୋର ନାମ ପ୍ରସ୍ତାବ କରଚିନ୍ତି । ମୁଁ କିନ୍ତୁ ସ୍ଥିର କଲି ଯେ ମୁଖ୍ୟମନ୍ତ୍ରୀଙ୍କ ସହିତ ସାକ୍ଷାତ କରି ନିଜକୁ ଯଚେଇ କରିବା ସମ୍ମାନଜନକ ହେବ ନାହିଁ । ସରକାର ଯଦି ଆପଣାଛାଏଁ ଏ ଦାୟିତ୍ୱ ଅର୍ପଣ ନ କରନ୍ତି, ସେଥିପାଇଁ ମୋ ତରଫରୁ ବ୍ୟାକୁଳତା ପ୍ରକାଶ କରିବା ଅନୁଚିତ ।

ଏହି ସମୟରେ ମୋର ଜଣେ ଘନିଷ୍ଠ ଶୁଭାକାଂକ୍ଷୀ ଭୁବନେଶ୍ଵରର (ସ୍ଵର୍ଗୀୟ) ରାଧାମୋହନ ମହାନ୍ତି ଆମ ଘରେ ଆସି ପହଂଚିଲେ । ତାଙ୍କ ସାନପୁଅ ଛାତ୍ର କଂଗ୍ରେସର ସଭ୍ୟ । ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତି ସଂପର୍କୀୟ ଗୁଜବ୍ ତାଙ୍କୁ ଭଣା ଅଧିକେ ଜଣାଥିଲା । ସେ ଜିଦ୍ କଲେ ଯେ ଏ ବିଷୟରେ ମୁଁ ନିଜ ତରଫରୁ କିଛିଟା ଉଦ୍ୟମ କରିବା ଉଚିତ । ମୁଁ ଅସାମର୍ଥ୍ୟ ପ୍ରକାଶ କଲି । ସେ ଟିକିଏ ବିରକ୍ତ ହୋଇ କହିଲେ, "ଏପ୍ରକାରର ଜିଦ୍‌ଖୋର ଢଂଗ ଶୋଭନୀୟ ନୁହେ ।" ସଂସ୍କୃତରୁ ଚାଣକ୍ୟ ଶ୍ଳୋକଟି ଉଦ୍ଧାର କରି ସେ କହିଲେ, "ଦାମ୍ଭିକତା ସର୍ବଥା ବର୍ଜନୀୟ ।" ମୁଁ ଉତ୍ତର ଦେଲି "ମୁଁ ଆପଣଙ୍କ ସହ ଏକମତ । କିନ୍ତୁ ଦାମ୍ଭିକତା ଓ ମର୍ଯ୍ୟାଦାବୋଧ ମଧ୍ୟରେ ବିରାଟ ପାର୍ଥକ୍ୟ ଅଛି । ଆତ୍ମ ମର୍ଯ୍ୟାଦା ତ୍ୟାଗ କଲେ ବ୍ୟକ୍ତିତ୍ଵ ମୁହୂର୍ତ୍ତକେ ଭୂଇଁରେ ଲୋଟି ପଡ଼ିବ ।" ମୁଁ ପୁଣି କହିଲି, "ଜାନକୀ ବାବୁଙ୍କ ସହ ମୋର ବହୁ କାଳରୁ ପରିଚୟ । ସେ ଯଦି କୌଣସି କାରଣରୁ ଅନ୍ୟ କାହା କଥା ବିଚାର କରୁଥାଚି, ସେଥିରେ କ୍ଷୁବ୍ଧ ହେବାର କାରଣ ନାହିଁ । ବୃତ୍ତିରେ ପ୍ରତିଷ୍ଠା ବା ଅର୍ଥୋପାର୍ଜନ ଦୃଷ୍ଟିରୁ ମଧ୍ୟ ମୋ ପକ୍ଷରେ ଏପରି ବ୍ୟଗ୍ରତା ପ୍ରକାଶ କରିବାର ଆବଶ୍ୟକତା ନାହିଁ ।" ପ୍ରାୟ ସପ୍ତାହକ ପରେ ମୋର ଜଣେ ବଂଧୁ ଏହି ପଦରେ ନିଯୁକ୍ତ ହେଲେ ।

ଏହି ସମୟରେ ହାଇକୋର୍ଟରେ ଦକ୍ଷ ସିନିଅର ଆଡ୍‌ଭୋକେଟ୍‌ଙ୍କ ସଂଖ୍ୟା ଥିଲା ଅତି ସୀମିତ । ଅଧିକାଂଶ ବଡ଼ ବ୍ରିଫ୍ ଥାଏ ରଣଜିତ ମହାନ୍ତିଙ୍କ ଅଫିସ୍ ଓ ମୋ ଅଫିସରେ । ହାଇକୋର୍ଟରେ ବଡ଼ ବଡ଼ କେସ୍ ମାନଙ୍କରେ ମୁଖ୍ୟତଃ ସେ ଓ ମୁଁ ପରସ୍ପର ବିରୋଧୀ ଭୂମିକାରେ ଅବତରଣ କରୁ । ଏଣୁ ନୂତନ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତି ବିଷୟରେ ଆମ୍ଭେମାନେ ଚିନ୍ତିତ ନଥିଲୁ ବା ବିବ୍ରତ ନଥିଲୁ । କିଛି ଦିନ ପରେ ଶୁଣା ହେଲା ମୁଖ୍ୟମନ୍ତ୍ରୀ ଉପରୋକ୍ତ ପଦାଧିକାରୀଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ନୁହନ୍ତି । ୧୯୮୨ ଆରମ୍ଭରେ ହାଇକୋର୍ଟ ବାର ଓ ସେକ୍ରେଟାରୀଏଟ୍‌ରେ ପ୍ରବଳ ଗୁଜବ ଉଠିଲା ଯେ ପରିବର୍ତ୍ତନ ଆସନ୍ନ ଏବଂ ଅବଶ୍ୟମ୍ଭାବୀ । ଏପ୍ରିଲ ମାସ ପ୍ରଥମ ସପ୍ତାହରେ ମୁଁ ଅନ୍ୟ ଜଣେ ବଂଧୁଙ୍କ ସହ ଅଲକା କଲେଜର "ଲକ୍ଷ୍ମୀଧର ଶତପଥୀ ସ୍ମୃତି ଭବନ" ଉଦ୍‌ଘାଟନ କରିବାନିମନ୍ତେ ମୁଖ୍ୟମନ୍ତ୍ରୀଙ୍କୁ ଆମନ୍ତ୍ରଣ କରିବା ପାଇଁ ଯାଇଥିଲି । କଥା ପ୍ରସଙ୍ଗରେ ଜାନକୀ ବାବୁ କହିଲେ, "ଆପଣ ମଝିରେ ମଝିରେ କିଛି ସରକାରୀ କେସ୍ କରୁ ନାହାନ୍ତି କାହିଁକି ?" ମୋର ହଠାତ୍ ମନେ ପଡ଼ିଲା ଇତିହାସର ଗୋଟିଏ

ବିସ୍ମୃତ ପୃଷ୍ଠା-ଆଲେକ୍ଜାଣ୍ଡର ଓ ପୁରୁରାଜଙ୍କ କଥୋପକଥନ । ମୁଁ ଉତ୍ତର ଦେଲି, ‘‘ଓକିଲାତି ମୋର ବୃତ୍ତି । ହାଇକୋର୍ଟରେ ସବୁ ବଡ଼ ବଡ଼ କେସ୍ ସରକାରଙ୍କ ବିରୁଦ୍ଧରେ । ମହକିଲମାନେ ଜାଣନ୍ତି ଯେ ସରକାର ବିରୋଧୀ ମୋକଦ୍ଦମାରେ ମୋର ସାହାଯ୍ୟ ମିଳି ପାରିବ । ଏଣୁ ମୁଁ କିଛି ସରକାରୀ କେସ୍ କରିବି କିପରି ?’’ ମୋ ଉତ୍ତରରୁ ସେ କ'ଣ ବୁଝିଲେ କେଜାଣି, ଆଲୋଚନା ଆଉ ଆଗେଇଲା ନାହିଁ । ପରେ ମୋର ଧାରଣା ହେଲା, ଏପରି ପ୍ରଶ୍ନ ପଚାରି ସେ ବୋଧହୁଏ ମୋର ମନ ବିନ୍ତୁ ଥିଲେ ।

ମଇ ମାସ ଆରମ୍ଭରେ ଏପରି ଗୋଟିଏ ଘଟଣା ଘଟିଲା, ଯେଉଁଥିରୁ ମୋର ହୃଦ୍‌ବୋଧ ହେଲା ଯେ ପରିବର୍ତ୍ତନ ଗୁଜବ୍‌ରେ କିଛିଟା ସତ୍ୟ ଅଛି । ଟାଟା କଂପାନୀ ସମେତ କେତୋଟି ବଡ଼ ବଡ଼ କଂପାନୀ ଓଡ଼ିଶା ସରକାରଙ୍କ ସେସ୍ ଆଇନ୍ ବିରୁଦ୍ଧରେ ସୁପ୍ରିମ କୋର୍ଟରେ ସାତଟି ରିଟ୍ କେସ୍ ଦାଖଲ କରି ସେସ୍ ଆଦାୟ ବିରୁଦ୍ଧରେ ରହିତାଦେଶ ଆଣିଥିଲେ । ସୁପ୍ରିମ କୋର୍ଟରେ ଓଡ଼ିଶା ସରକାରଙ୍କ ତରଫରୁ ଏହି ସବୁ କେସ୍ ଚଳାଇବା ପାଇଁ ଅତି ଅପ୍ରତ୍ୟାଶିତ ଭାବରେ ଆଇନ ବିଭାଗରୁ ମୋ ନିକଟକୁ ଗୋଟିଏ ପତ୍ର ଆସିଲା ଏବଂ ଫିଜ ହାର ଇତ୍ୟାଦି ସ୍ଥିର କରିବା ପାଇଁ ଆଇନ ସଚେତକ ମୋ ସହିତ ଯୋଗାଯୋଗ ସ୍ଥାପନ କଲେ । ମୁଁ ତାଙ୍କୁ ସ୍ପଷ୍ଟ କହିଲି ଯେ ଆଡ଼୍‌ଭୋକେଟ୍ ଜେନେରାଲ୍ ପରିବର୍ତ୍ତେ ମୋ ପକ୍ଷରେ ସୁପ୍ରିମ କୋର୍ଟରେ ସରକାରୀ କେସ୍ କରିବା ଶୋଭନୀୟ ହେବ ନାହିଁ । ଆଇନ ସଚେତକ ଉତ୍ତର ଦେଲେ, ଚିଫ୍ ମିନିଷ୍ଟର ଫାଇଲ୍‌ରେ ଯାହା ଲେଖିଛନ୍ତି, ସେ ଦୃଷ୍ଟିରୁ ଆପଣ ଏ ନିଯୁକ୍ତିକୁ ଉପେକ୍ଷା କରିବା ଅନୁଚିତ । ଚିଫ୍ ମିନିଷ୍ଟର ତାଙ୍କ ଆଦେଶରେ ଲେଖିଥିଲେ ‘‘ଭାରତର ଜଣେ ଖ୍ୟାତନାମା ଆଡ଼୍‌ଭୋକେଟ୍ ଶ୍ରୀ ଗଂଗାଧର ରଥଙ୍କୁ ସୁପ୍ରିମ କୋର୍ଟ କେସ୍‌ରେ ନିଯୁକ୍ତ କରାଯାଉ ।’’ ଏହାପରେ ଅସମ୍ମତିର ଅବକାଶ ରହିଲା ନାହିଁ । ଅବଶ୍ୟ ଏ କେସ୍ ଗୁଡ଼ିକରେ ମୁଁ ସୁପ୍ରିମ କୋର୍ଟରେ ହାଜର ହୋଇ ରହିତାଦେଶ ଉଠାଇଦେବା ପାଇଁ ଦରଖାସ୍ତ କରିଥିଲି । ଟାଟା କଂପାନୀ ପକ୍ଷରୁ ସିନିଅର ଆଡ଼୍‌ଭୋକେଟ୍ ଫଲି. ଏସ୍. ନରିମ୍ୟାନ ବାଦାନୁବାଦ କରିଥିଲେ । ଉଭୟ ପକ୍ଷର ବିତର୍କ ଶୁଣିବା ପରେ ସୁପ୍ରିମ କୋର୍ଟ ମଧ୍ୟବର୍ତ୍ତୀକାଳୀନ ରହିତାଦେଶ ରଦ୍ଦ କରି ଦେଇଥିଲେ ।

ଅକ୍ଟୋବର ମଧ୍ୟ ଭାଗରେ କେତୋଟି ସୁପ୍ରିମ କୋର୍ଟ କେସ୍ ସଂକ୍ରାନ୍ତରେ ମୁଁ ଦିଲ୍ଲୀ ଯାଇଥିଲି । କୋର୍ଟ କାର୍ଯ୍ୟ ଶେଷ ହେବା ପରେ ମୁଁ ୨୦ ତାରିଖ

ଦିନ କଟକ ଫେରୁଥାଏ । ଦୈବାତ୍ ଦିଲ୍ଲୀ ଏଆର ପୋର୍ଟରେ ଓଡ଼ିଶାର ଜଣେ ପରିଚିତ ମନ୍ତ୍ରୀଙ୍କ ସହ ଦେଖା ହେଲା । କଥା ପ୍ରସଂଗରେ ସେ କହିଲେ, ନୂତନ ଆଡ୍‌ଭୋକେଟ୍ ଜେନେରାଲ ନିଯୁକ୍ତି ପାଇଁ ଶେଷ ନିଷ୍ପତ୍ତି ହୋଇ ଯାଇଛି । ସୌଜନ୍ୟ ଦୃଷ୍ଟିରୁ ଇସ୍ତଫା ଦେବା ପାଇଁ ଲିଖିତ ନିର୍ଦ୍ଦେଶ ନ ଦେଇ, ମୁଖ୍ୟମନ୍ତ୍ରୀ ଆଇନ ମନ୍ତ୍ରୀ ରଘୁନାଥ ପଟ୍ଟନାୟକଙ୍କ ଜରିଆରେ ଆଡ୍‌ଭୋକେଟ ଜେନେରାଲଙ୍କୁ ସରକାରୀ ନିଷ୍ପତ୍ତି ଜଣାଇ ଦେଇଥିଲେ । ତା ପରେ ସେ ଇସ୍ତଫା ପତ୍ର ପଠାଇ ଦେଇଛନ୍ତି । ଆପଣ ଭୁବନେଶ୍ୱରରେ ପହଂଚିବା ମାତ୍ରେ ମୁଖ୍ୟମନ୍ତ୍ରୀ ଆପଣଙ୍କ ସହ ଆଲୋଚନା କରିବେ । ଜାନକୀ ବାବୁ ଯେ ଅତି ଭଦ୍ର, ଏ କଥା ମତେ ଅଜଣା ନଥିଲା । ସହଯୋଗୀ ଓ ସହକର୍ମୀମାନଙ୍କ ସହ ତାଙ୍କର ବ୍ୟବହାର ଥିଲା ଅତି ମାର୍ଜିତ ଓ ମଧୁର । ରାଜନୈତିକ ରଂଗମଂଚରେ ପ୍ରତିଦ୍ୱନ୍ଦୀଙ୍କ ବିରୁଦ୍ଧରେ ଚକ୍ରବ୍ୟୂହ ରଚନା କରିବାରେ ସେ ଅପାରଗ ନଥିଲେ । କିନ୍ତୁ ଆଗ ପଛ ନ ବିଚାରି ହଠାତ୍ କୌଣସି ନିଷ୍ପତ୍ତି ନେବା ଥିଲା ତାଙ୍କର ଅଭ୍ୟାସ ବିରୁଦ୍ଧ । ଭାବିଚିନ୍ତି କାର୍ଯ୍ୟ କରିବା ତାଙ୍କର ଚିରନ୍ତନ ସ୍ୱଭାବ ଓ କାର୍ଯ୍ୟନିର୍ବାହରେ ସୌଜନ୍ୟ ଓ ଶାଳୀନତା ତାଙ୍କର ପ୍ରତି ରକ୍ତ ବିନ୍ଦୁରେ ମିଶି ରହିଥିଲା ।

ଯାହାହେଉ ଖବରଟା ଶୁଣି ମନ ଚଂଚଳ ହୋଇ ଉଠିଲା । ଏ ନିଷ୍ପତ୍ତିର ତାତ୍ପର୍ଯ୍ୟ ବୁଝିବାକୁ ସମୟ ଲାଗିଲା ନାହିଁ । କିନ୍ତୁ ମୋର କ'ଣ କରିବା ଉଚିତ ହେବ ନ ହେବ, ତାହା ଚିନ୍ତା କରୁ କରୁ ପ୍ଲେନ ଭୁବନେଶ୍ୱର ଏଆରପୋର୍ଟରେ ଅବତରଣ କଲା । ୧୯୮୨ ମସିହା ଅକ୍ଟୋବର ବାଇଶ ତାରିଖରେ ମୁଁ ତୃତୀୟ ଥର ପାଇଁ ଆଡ୍‌ଭୋକେଟ୍ ଜେନେରାଲ ଦାୟିତ୍ୱ ଗ୍ରହଣ କଲି ।



# ବୃତ୍ତିର ନାଗଫାଶରେ

ନୂତନ ଦାୟିତ୍ୱ ଗ୍ରହଣ କରିବାର ଅଳ୍ପ ଦିନ ମଧ୍ୟରେ ମତେ ଅନେକଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ କେସ୍ ହାଇକୋର୍ଟରେ ଚଳାଇବାକୁ ହେଲା । ଓଡ଼ିଶା ସେସ୍ ଆଇନର ବୈଧତା ସଂପର୍କରେ ଓଡ଼ିଶା ସିମେଣ୍ଟ କଂପାନୀ ଦାଏର କରିଥିବା ରିଟ୍ କେସ୍ ବିଚାର ପାଇଁ ଫୁଲ ବେଂଚ ବା ତିନିଜଣିଆ ବିଚାରକ ମଣ୍ଡଳୀକୁ ପ୍ରେରିତ ହୋଇଥାଏ । ଜଷ୍ଟିସ୍ ପି. କେ. ମହାନ୍ତି, ଡକ୍ଟର, ବି. ଏନ୍. ମିଶ୍ର ଓ ଜଷ୍ଟିସ୍ ଆର. ସି. ପଟ୍ଟନାୟକଙ୍କୁ ନେଇ ଗଠିତ ବିଚାରକ ମଣ୍ଡଳୀ ସିମେଣ୍ଟ କଂପାନୀର ଆଡ୍‌ଭୋକେଟ୍ ଗୋବିନ୍ଦ ଦାସ ଓ ସରକାରଙ୍କ ତରଫରୁ ମୋର ବାଦାନୁବାଦ ଶୁଣିବା ପରେ ରିଟ୍ ଆବେଦନକୁ ଖାରଜ କରିଥିଲେ । ସିମେଣ୍ଟ କଂପାନୀର ଅପିଲ ୧୯୯୧ ମସିହାରେ ସୁପ୍ରିମ କୋର୍ଟରେ ମଂଜୁର ହୋଇଅଛି । ଅବଶ୍ୟ ସେତେବେଳକୁ ମୁଁ ଆଡ୍‌ଭୋକେଟ ଜେନେରାଲ ନଥିଲି । ସୁପ୍ରିମ କୋର୍ଟରେ ସେସ୍ ଆଇନ୍ ଅବୈଧ ଘୋଷିତ ହେବା ହେତୁ ଓଡ଼ିଶା ସରକାର ବର୍ଷକୁ ୨୦୦ କୋଟି ଟଂକାରୁ ଅଧିକ ରାଜସ୍ୱ ହରାଇଛନ୍ତି ।

୧୯୮୨ ମସିହା ନଭେମ୍ବର ମାସରେ ଓଡ଼ିଶା ବନ୍ୟଜାତ ଦ୍ରବ୍ୟ ବ୍ୟବସାୟ ନିୟନ୍ତ୍ରଣ ଆଇନ ସଂଶୋଧନ କରିବା ପାଇଁ ଏକ ଅଡ଼ିନାନ୍ସ ଜାରୀ ହେଲା । ଅବଶ୍ୟ ଅଡ଼ିନାନ୍ସ ଜାରୀ ହେବା ପୂର୍ବରୁ ମୋ ସହିତ ବିଧିବଦ୍ଧ ଭାବରେ ପରାମର୍ଶ କରାଯାଇଥିଲା । ସରକାର ଏହି ଅଧ୍ୟାଦେଶ ବଳରେ ଶାଳ ମଂଜି ବ୍ୟବସାୟ ହାତକୁ ନେଲେ । କାହିଁକି ଏ ପଦକ୍ଷେପ ନିଅଗଲା, ତା'ର ଭିତିରି କାରଣ ଅତି ରହସ୍ୟମୟ । କିନ୍ତୁ ଦଳୀୟ ରାଜନୀତିରୁ ଦୂରରେ ରହିଥିବା ବ୍ୟକ୍ତି ପକ୍ଷରେ, ରାଜନୈତିକ ପଶାଖେଳର ସଦ୍ୟ ଚାଲ୍ ଉପରେ ଆଲୋକପାତ କରିବା ଉଚିତ ହେବ ନାହିଁ । ସମ୍ବଲପୁରର ପ୍ରସିଦ୍ଧ ବ୍ୟବସାୟୀ ଜଗଦୀଶ ଚନ୍ଦ୍ର ଲାଠ ଥିଲେ ଶାଳ ମଂଜି ବ୍ୟବସାୟର ମୁଖ୍ୟ ପୁରୋଧା । ଶାଳ ମଂଜିରୁ ତେଲ ନିର୍ଯ୍ୟାସ ଓ ତା'ର ପ୍ରୟୋଗ ସଂପର୍କରେ ତାଙ୍କର ପ୍ରତିଷ୍ଠାନ ଦ୍ୱାରା ସବୁ ଗବେଷଣା ହୋଇଛି ବୋଲି ସେ ଦାବୀ କରୁଥିଲେ । ଶାଳ ମଂଜି ସଂଗ୍ରହର ଏକଚାଟିଆ ଅଧିକାର ଲୋପ ହେବା ପରେ ତାଙ୍କର ଦୁଇଟି କଂପାନୀ ହାଇକୋର୍ଟରେ ଦୁଇଟି ଆବେଦନ ପେଶ୍ କରିଥିଲେ । ଲାଠ୍‌ଙ୍କ ତରଫରୁ ସ୍ୱର୍ଗୀୟ ରଣଜିତ ମହାନ୍ତି ଓ ଅନଙ୍ଗ ପଟ୍ଟନାୟକ ଏବଂ ଅପର ପକ୍ଷରୁ ମୁଁ, ନିଜ ନିଜର ବକ୍ତବ୍ୟ ପେଶ କରିଥିଲୁ । ସୁଦୀର୍ଘ ବିତର୍କ ପରେ ଲାଠଙ୍କ ମୋକଦ୍ଦମା ଖାରଜ ହେଲା ଓ ସରକାରୀ ଆଦେଶ ଆଇନ-ସଂଗତ ଘୋଷିତ ହେଲା ।

ଲାଠ ଛାଡ଼ିବା ଲୋକ ନୁହନ୍ତି । ହାଇକୋର୍ଟ ନିଷ୍ପତ୍ତି ବିରୁଦ୍ଧରେ ସେ ସୁପ୍ରିମ କୋର୍ଟରେ ଦୁଇଟି ଅପିଲ ଦାଏର କଲେ । ୧୯୮୭ ଆରମ୍ଭରେ ପ୍ରଥମ ଅପିଲ୍‌ଟି ଜଷ୍ଟିସ୍ ଚିନାପା ରେଡ଼ି ଓ ଜଷ୍ଟିସ୍ ଖାଲିଦ୍‌ଙ୍କ କୋର୍ଟରେ ବିଚାର ପାଇଁ ଉଠିଲା । ଏହି ସମୟରେ ସରକାରଙ୍କ ସହିତ ମୋର କେତେକ ବିଷୟରେ ଗୁରୁତର ମତଭେଦ ଉପୁଜିଥାଏ । ଏ ସଂକ୍ରାନ୍ତୀୟ ଫାଇଲରେ ନିଷ୍ପତ୍ତି ନେବା ପରିବର୍ତ୍ତେ, ଫାଇଲଟି ଚିଫ୍ ମିନିଷ୍ଟରଙ୍କ ଅଫିସରେ ପଡ଼ି ରହିଥାଏ । ଏଣୁ ଜଙ୍ଗଲ ବିଭାଗ ଓ ଆଇନ ବିଭାଗର ସବୁ ଅନୁରୋଧ ଓ ପ୍ରରୋଚନା ସତ୍ତ୍ୱେ ମୁଁ ଦିଲ୍ଲୀ ଯିବାକୁ ମନା କରିଦେଲି । ଆଇନ ବିଭାଗ ଯେତେବେଳେ ଅଧିକ ଚାପ ଦେଲେ, ମୁଁ ସ୍ପଷ୍ଟ ଜଣାଇଦେଲି ଯେ ସରକାର ଇଚ୍ଛା କଲେ ମତେ ଆଡ୍‌ଭୋକେଟ୍ ଜେନେରାଲ ଦାୟିତ୍ୱରୁ ଅବ୍ୟାହତି ଦେଇ ପାରନ୍ତି । ଏହାପରେ ଏ କେସ୍ ଚଳାଇବା ପାଇଁ ସରକାର ତତ୍‌କାଳୀନ ଆଡ଼ିସନାଲ ସଲିସିଟର ଜେନେରାଲ (ପରେ ଆଟର୍ଣ୍ଣି ଜେନେରାଲ) ଜି. ରାମସ୍ୱାମୀଙ୍କୁ ଆଡ୍‌ଭୋକେଟ ନିଯୁକ୍ତ କଲେ । କିନ୍ତୁ ଫଳ ହେଲା ଓଲଟା । ବିଚରା ରାମସ୍ୱାମୀ ହାରିଗଲେ ଓ ଲାଠ ଜୟଲାଭ କଲେ ।

ଏ ଘଟଣା ପରେ ମୁଖ୍ୟମନ୍ତ୍ରୀ ମୋର ସହଯୋଗ ପାଇଁ ପୁଣି ତତ୍ପର ହୋଇ ଉଠିଲେ । ଏ ସଂକ୍ରାନ୍ତରେ ଯେଉଁ ଫାଇଲଟି ଚିଫ୍ ମିନିଷ୍ଟରଙ୍କ ଅଫିସରେ ପଡ଼ି ରହିଥିଲା, ସେ ଫାଇଲରେ ତୁରନ୍ତ ନିଷ୍ପତ୍ତି ନିଆହେଲା ଓ ମତଭେଦର କାରଣ ଦୂର କରି ଦିଆହେଲା । ମୁଁ ପୁନର୍ବାର ସହଯୋଗ କରିବା ପାଇଁ ଆଗେଇ ଆସିଲି । ସୁପ୍ରିମ କୋର୍ଟର ନିଷ୍ପତ୍ତିକୁ ଅକାମୀ ଘୋଷଣା କରିବା ପାଇଁ ମୋ ପରାମର୍ଶକ୍ରମେ ଆଇନ୍‌ରେ କେତେକ ସଂଶୋଧନ କରାଯାଇ ଆଉ ଏକ ଅଡ଼ିନାନ୍ସ ଜାରୀ ହେଲା । ଲାଠଙ୍କ ଦ୍ୱିତୀୟ ଅପିଲ୍‌ଟିର ଶୁଣାଣି ହେଲା ସେପ୍ଟେମ୍ବର ମାସରେ । ଲାଠଙ୍କ ତରଫର ବରିଷ୍ଠ ଆଡ୍‌ଭୋକେଟ୍ ଫଲି ନରିମ୍ୟାନ ଓ ପୂର୍ବତନ ସଲିସିଟର ଜେନେରାଲ କାକଡ୍‌ଙ୍କର ସବୁ ପ୍ରକାର ଉଦ୍ୟମ ଆମ୍ଭମାନଙ୍କର ପ୍ରତିରୋଧ ଭାଂଗି ପାରିଲା ନାହିଁ । ସୁପ୍ରିମ କୋର୍ଟ ଅଡ଼ିନାନ୍ସକୁ ସଂବିଧାନ ସମ୍ମତ ଘୋଷଣା କଲେ ଓ ଲାଠଙ୍କ ଅପିଲ ନାମଂଜୁର କଲେ । ଏକଦା ଜଗଦୀଶ ପ୍ରସାଦ ଲାଠ ଥିଲେ ଓଡ଼ିଶା ରାଜନୀତିର ଜଣେ ପ୍ରଚ୍ଛନ୍ନ କର୍ଣ୍ଣଧାର । ସୁପ୍ରିମ କୋର୍ଟରେ ହାରିଯିବା ପରେ ତାଙ୍କର ପୂର୍ବ ପ୍ରାଧାନ୍ୟ ଅନେକାଂଶରେ ହ୍ରାସ ପାଇଛି ।

୧୯୩୭ ମସିହାରୁ ଓରିଏଣ୍ଟ ପେପର୍ ମିଲ ଓଡ଼ିଶା ସରକାରଙ୍କ ସହ ଚୁକ୍ତି କରି ଅତି କମ୍ ରେଟ୍‌ରେ ରୟାଲ୍‌ଟି ଦେଇ ବିଭିନ୍ନ ଜଂଗଲରୁ ବାଉଁଶ ସଂଗ୍ରହ କରିବାପାଇଁ ଏକଚାଟିଆ ଅଧିକାର ପାଇଥିଲେ । ପରେ ଯେ. କେ ପେପର୍ ମିଲ ଓ ଟିଟାଗଡ଼ ପେପର ମିଲ୍ ମଧ୍ୟ ସରକାରଙ୍କ ସହ ଅନୁରୂପ ଚୁକ୍ତି କରିଥିଲେ। ରୟାଲ୍‌ଟି ହାର ବଢ଼ାଇବା ପାଇଁ ସମସ୍ତ ଉଦ୍ୟମ ବିଫଳ ହେବା ପରେ ୧୯୮୭ ମସିହାରେ ବାଉଁଶ ଜାତୀୟକରଣ ଆଦେଶନାମା ଜାରୀ ହେଲା ଓ ପେପର ମିଲ୍‌ମାନଙ୍କର ଏକଚାଟିଆ ଅଧିକାର ଲୋପ କରି ଦିଆହେଲା । ଯଦିଓ ସରକାରଙ୍କ ନୂତନ ନୀୟମାବଳୀରେ କାଗଜ କଳଗୁଡ଼ିକୁ ବଜାର ଦରରେ ବାଉଁଶ ବିକ୍ରୟ କରିବା ପାଇଁ ବିହିତ ବ୍ୟବସ୍ଥା ଥିଲା, ପେପର ମିଲ୍‌ମାନେ ସେଥିରେ ସନ୍ତୁଷ୍ଟ ହେଲେ ନାହିଁ ଓ ଚୁକ୍ତି ଭଂଗ ଅଭିଯୋଗରେ ହାଇକୋର୍ଟରେ ରିଟ୍ ଦରଖାସ୍ତ କଲେ । ପ୍ରଥମ ଆବେଦନକାରୀ ଥିଲେ ଯେ. କେ. ପେପର ମିଲ୍ । ସୁପ୍ରିମ କୋର୍ଟର ବରିଷ୍ଠ ଆଡ୍‌ଭୋକେଟ୍ ଓ ପୂର୍ବତନ କେନ୍ଦ୍ର ଆଇନ ମନ୍ତ୍ରୀ ଅଶୋକ କୁମାର ସେନ୍, ଯେ. କେ. ପେପର ମିଲ୍ ତରଫରୁ ସୁଆଲ ଜବାବ୍ କରିଥିଲେ । ମିଷ୍ଟର ସେନ୍‌ଙ୍କ ଯୁକ୍ତି ଶୁଣିବା ପାଇଁ କୋର୍ଟରୁମ ଭରପୂର ଥିଲା, ଏପରିକି ଅନ୍ୟ କଂପାନୀର ପ୍ରତିନିଧିମାନେ ମଧ୍ୟ ଉପସ୍ଥିତ ଥିଲେ । ସେନ୍‌ଙ୍କ ଯୁକ୍ତିକୁ ଖଣ୍ଡନ କରି ମୁଁ ମୋର ବକ୍ତବ୍ୟ ପେଶ୍ କରିଥିଲି । ଜଷ୍ଟିସ୍ ରାଧାଚରଣ ପଟ୍ଟନାୟକ ଓ ଜଷ୍ଟିସ୍ ଏସ. ସି. ମହାପାତ୍ର ରିଟ୍ କେସ୍‌ଟିକୁ ଖାରଜ କରି ଦେଇଥିଲେ । ପରେ ପରେ ଓରିଏଣ୍ଟ ପେପର୍ ମିଲ୍ ମଧ୍ୟ ଅନୁରୂପ ଦରଖାସ୍ତ କରିଥିଲେ ଓ ତାହା ମଧ୍ୟ ଡିସ୍‌ମିସ୍ ହେଲା ।

ହାଇକୋର୍ଟର ନିଷ୍ପତ୍ତି ବିରୁଦ୍ଧରେ ଓରିଏଣ୍ଟ ପେପର୍ ମିଲ୍ ଓ ଯେ. କେ. ପେପର୍ ମିଲ୍ (ଷ୍ଟ ପ୍ରୋଡ଼କ୍ଟସ୍ ଲିମିଟେଡ୍) ସୁପ୍ରିମ କୋର୍ଟରେ ଯେଉଁ ଅପିଲ୍ କରିଥିଲେ ତାହା ବିଚାର ପାଇଁ ଉଠିଲା ୧୯୮୯ ମସିହା ସେପ୍ଟେମ୍ବର ମାସରେ । ବିଚାରକ ଥିଲେ ଜଷ୍ଟିସ୍ ଏଲ୍. ଏମ୍. ଶର୍ମା, ଡକ୍ଟର ଜଷ୍ଟିସ୍ ଥୋମେନ୍ ଓ ଜଷ୍ଟିସ ସାଇକିଆ । ତିନିଦିନ ବାଦାନୁବାଦ ଚାଲିବା ପରେ କେତେକ ପ୍ରଶାସନିକ କାରଣରୁ ଶୁଣାଣି ସ୍ଥଗିତ ରହିଲା । ୧୯୯୦ ମସିହାରେ ଅଗଷ୍ଟ ମାସରେ ପୁନର୍ବାର ବିଚାର ହେଲା ଓ ସୁପ୍ରିମ କୋର୍ଟ ପେପର୍ ମିଲ୍‌ଗୁଡ଼ିକର ଅପିଲ ଖାରଜ କଲେ । ଅନ୍ତିମ ବିଜୟରେ ଭାଗୀଦାର ହେବା ପାଇଁ ମୋର ସୌଭାଗ୍ୟ ନଥିଲା, କାରଣ ମୁଁ ଏଥିପୂର୍ବରୁ ଇସ୍ତଫା ଦେଇ ସାରିଥିଲି । ଡିସେମ୍ବର

ମାସରେ ଅନୁଷ୍ଠିତ ଲୋକସଭା ନିର୍ବାଚନର କଂଗ୍ରେସର ପରାଜୟ ହେତୁ ନୈତିକ ଦାୟିତ୍ୱ ଦୃଷ୍ଟିରୁ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଇସ୍ତଫା ଦେଇଥିଲେ । ପରଂପରା ଅନୁଯାୟୀ ମୁଁ ମଧ୍ୟ ସାତ ତାରିଖ ଦିନ ଇସ୍ତଫା ଦେଲି । ନୂତନ ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳ ମୋର ଇସ୍ତଫା ଗ୍ରହଣ ନ କରି ଆଗାମୀ ସାଧାରଣ ନିର୍ବାଚନ ପର୍ଯ୍ୟନ୍ତ ଦାୟିତ୍ୱରେ ରହିବା ପାଇଁ ଅନୁରୋଧ କଲେ । ୧୯୯୦ ମସିହା ଫେବ୍ରୁଆରୀ ମାସରେ ବିଧାନସଭା ନିର୍ବାଚନରେ କ୍ଷମତାସୀନ କଂଗ୍ରେସ ଦଳ ପରାଜିତ ହେବା ପରେ ମାର୍ଚ୍ଚ ଦୁଇ ତାରିଖରେ ମୁଁ ପୁନର୍ବାର ଇସ୍ତଫା ଦେଲି ଓ ତୁରନ୍ତ ମତେ ଅବ୍ୟାହତି ଦେବା ପାଇଁ ରାଜ୍ୟପାଳଙ୍କୁ ଅନୁରୋଧ କଲି । ମାର୍ଚ୍ଚ ଆଠ ତାରିଖରେ ମୋର ଇସ୍ତଫା ଗୃହୀତ ହେଲା ।

ଏବେ ମାଲିମୋକଦ୍ଦମାରେ ଜୟ ପରାଜୟ ଆଉ ଉଲ୍ଲାସ ବା ଉନ୍ମାଦନା ସୃଷ୍ଟି କରୁନାହିଁ। କୋର୍ଟ କଚେରୀର ଆକର୍ଷଣ ଧୀରେ ମନ୍ଥର ହୋଇ ଆସୁଛି। କେତେ ବଂଧୁ ଗତ ଦଶ ବର୍ଷରେ ବିଦାୟ ନେଲେଣି। ବରିଷ୍ଠ ଅଧିବକ୍ତା ଓ ପୂର୍ବତନ ଆଡ୍‌ଭୋକେଟ୍ ଜେନେରାଲ ଅଶୋକ ଦାସ ୧୯୮୬ ମଇ ମାସରେ ଚଉସ୍ତରୀ ବର୍ଷ ବୟସରେ ଇହଧାମ ତ୍ୟାଗ କଲେ। ଦିଲ୍ଲୀ ଆର୍ୟୁବିଜ୍ଞାନ ହସପିଟାଲରେ ତାଙ୍କର ତିରୋଧାନ ସଂବାଦ ଶୁଣି ମନେ ହେଲା, ପଶ୍ଚିମ ଗଗନରେ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ଅସ୍ତ ହୋଇ ଯାଇଛି। ତିନି ବର୍ଷ ପରେ ୧୯୮୯ ମସିହା ସେପ୍ଟେମ୍ବର ମାସରେ ଶ୍ରଦ୍ଧେୟ ରଣଜିତ ମହାନ୍ତି ଇହଲୀଳା ସଂବରଣ କରିଛନ୍ତି। ଅଶୋକ ବାବୁ ବୟସରେ ମୋ ଠାରୁ ଆଠ ବର୍ଷ ବଡ଼, ରଣଜିତ ଆଠ ବର୍ଷରୁ ଅଧିକ ସାନ। କିନ୍ତୁ ଓକିଲାତି, ରାଜନୀତି ଓ ସମାଜ ସେବା କାର୍ଯ୍ୟରେ ନିକଟ ଅତୀତରେ ଯେଉଁ କେତେଜଣ ଅଧିବକ୍ତା ସୁନାମ ଓ ଯଶ ଅର୍ଜନ କରିଥିଲେ, ରଣଜିତ୍‌ର ସ୍ଥାନ ସେମାନଙ୍କ ମଧ୍ୟରେ ସର୍ବାଗ୍ରେ। ତାର ଅକାଳ ବିୟୋଗରେ ଜଣେ ସ୍ନେହୀ ଅନୁଜର ସାନିଧ୍ୟ ହରାଇ ମୁଁ ଅତ୍ୟନ୍ତ ବ୍ୟଥିତ। ଗତ ଦୁଇମାସ ପୂର୍ବେ ୧୯୯୩ ନଭେମ୍ବର ଶେଷ ସପ୍ତାହରେ ମୋର ବାଲ୍ୟବଂଧୁ ପ୍ରାଣପ୍ରିୟ ସାଥୀ ରାମଚନ୍ଦ୍ର ରାମଙ୍କର ଅକାଳ ବିୟୋଗ କେବଳ ଅଧିବକ୍ତା ବଂଧୁ ନୁହନ୍ତି, ବହୁ ସ୍ୱାଧୀନତା ସଂଗ୍ରାମୀ, ବହୁ ବିପ୍ଳବୀ ସହକର୍ମୀ ଓ ସମଧର୍ମୀଙ୍କ ପ୍ରତି ଏକ ଦାରୁଣ ଧକ୍କା। ବାରବାର ମନରେ ପ୍ରଶ୍ନ ଉଠୁଛି [illegible]ତ ଦିନକାଳ ଆଉ କେତେ ଦିନ? ମୋ ପାଇଁ ପୁଣି ଘଣ୍ଟା ବାଜୁଛି କେ[illegible]

ପରିଣତ ବୟସରେ ଜୀବନ ହୋଇ ଉଠିଛି ଅଧିକ କର୍ମମୁଖର। 'ଅଳକା ମହାବିଦ୍ୟାଳୟ'ର ପ୍ରତିଷ୍ଠା ଓ ପରିବୃଦ୍ଧି ସାଧନରେ ବାର ବର୍ଷ ବିତିଗଲା। ଏବେ ସରକାରଙ୍କ ଆଶୀର୍ବାଦରୁ 'ଅଳକା'ରୁ ମୁଁ ବିଚ୍ଛିନ୍ନ। ଲେଖାଲେଖି ପ୍ରତି ପୂର୍ବଦିନର ମମତା ଫେରାଇ ଆଣିବାକୁ ଚେଷ୍ଟା କରିଛି। ୧୯୯୦ ମସିହା ଶେଷ ଆଡ଼କୁ ''ଭାରତୀୟ ସଂବିଧାନ'' ପୁସ୍ତକର ଲେଖା ଶେଷ ହେଲା। ୟୁନିଭର୍ସରେ ଅନୁଷ୍ଠିତ ଉତ୍ସବରେ ପୁସ୍ତକଟି ଉଦ୍‌ଘାଟନ କରିଥିଲେ ଲୋକସଭାର ତତ୍‌କାଳୀନ ବାଚସ୍ପତି ବଂଧୁ ରବି ରାୟ। ତାଙ୍କର ଅଭିଭାଷଣ ଓ ଏହି ଉତ୍ସବରେ ପୌରୋହିତ୍ୟ କରିଥିବା ମୋର ପୂଜ୍ୟ ଅଧ୍ୟାପକ ଡକ୍ଟର ସଦାଶିବ ମିଶ୍ର ଓ ବଂଧୁ ଜଷ୍ଟିସ ନବ କୁମାର ଦାସଙ୍କ ପ୍ରବଚନ ସ୍ମୃତି ପଟରେ ଶାଶ୍ୱତ ରହିଛି।

ଜୀବନର ସାୟଂ କାଳରେ ବୃତ୍ତି ପ୍ରତି ଆଉ ଆସକ୍ତି ନାହିଁ। ଅଦାଲତ ପ୍ରାଙ୍ଗଣରେ ଆଉ ଅଧିକ ଦିନ ବିତାଇବାକୁ ସ୍ପୃହା ନାହିଁ। କିନ୍ତୁ ଏ ଜଞ୍ଜାଳରୁ ଅବ୍ୟାହତି ନେବା ସହଜ ନୁହେଁ। ଏବେ ମଧ୍ୟ ବହୁ ବଡ଼ ବ୍ୟାଂକ୍ କଂପାନୀ ଓ କର୍ପୋରେସନ ଆଦି ମହକିଲ ମତେ ଜାବୋଡ଼ି ଧରିଛନ୍ତି। ବୃତ୍ତିର ନାଗଫାଶରେ ମୁଁ ଯେପରି ବନ୍ଦି ହୋଇ ଯାଇଛି। କେବେ ପୁଣି ନାଗଫାଶ ଛିନ୍ନ ହେବ ଓ ମୁକ୍ତି ମିଳିବ, ମୁଁ ବଂଚି ରହିଛି ସେଇ ଦିନର ଆକୁଳ ପ୍ରତୀକ୍ଷାରେ।

ବୃତ୍ତିରେ ସଫଳତା ହାସଲ କରିବାକୁ ଯାଇ କେତେ ଅଧିବକ୍ତା ନିଜର ସ୍ୱାତନ୍ତ୍ର୍ୟ ହରାଇ ବସନ୍ତି। ମହକିଲଙ୍କ ସେବା କରିବାକୁ ଯାଇ କେତେ ଅଧିବକ୍ତା କ୍ଷେତ୍ର ବିଶେଷରେ ନିଜର ବ୍ୟକ୍ତିତ୍ୱକୁ ଜଳାଂଜଳି ଦିଅନ୍ତି। ସମାଜ ସେବା ପାଇଁ, ସାହିତ୍ୟ ବା ସଂସ୍କୃତି ଚର୍ଚ୍ଚା ବା ଜନହିତକର କାର୍ଯ୍ୟ ପାଇଁ ସେମାନଙ୍କର ସମୟ ନଥାଏ। ସଫଳତା ହାସଲ କରିବାକୁ ଯାଇ ମୁଁ ଅଶେଷ ସଂଗ୍ରାମ ଓ ସାଧନା କରିଛି ସତ୍ୟ, କିନ୍ତୁ ବୃତ୍ତିରେ ମଗ୍ନ ହୋଇ ଯାଇନାହିଁ ବା ତହିଁରେ ଆବଦ୍ଧ ହୋଇ ରହିନାହିଁ। ସାଫଲ୍ୟ ଅର୍ଜନ କରିବାକୁ ଯାଇ ମୁଁ କେବେ ଅସୂୟା ବା ପରଶ୍ରୀକାତରତାର ବଶବର୍ତ୍ତୀ ହୋଇନାହିଁ। ଅପର ପକ୍ଷର ଅଧିବକ୍ତାଙ୍କ ପ୍ରତି ବିଦ୍ୱେଷ ଦ୍ୱାରା ପ୍ରଭାବିତ ହୋଇ ନାହିଁ କିମ୍ବା ଲୋଭ ନିନ୍ଦା ପ୍ରଶଂସା ମତେ ନ୍ୟାୟନିଷ୍ଠ ଆଚରଣରୁ ବିଚ୍ୟୁତ କରିନାହିଁ। ସେତିକିରେ ହିଁ ମୋର ଆନନ୍ଦ।